# କ୍ଷେମଙ୍କର କ୍ଷେତ୍ରବାସୀ

## (ଡଃ କ୍ଷେତ୍ରବାସୀ ନାୟକ : ସୃଷ୍ଟି-ସମୀକ୍ଷା ଓ ସ୍ମୃତିଚିତ୍ର)

ସଂପାଦନା :
ଡକ୍ଟର ହରେକୃଷ୍ଣ ପାତ୍ର
ଶ୍ରୀ ସୁଧୀର ଚନ୍ଦ୍ର ବେହୁରା
ଡକ୍ଟର ଲାବଣ୍ୟ ନାୟକ




୨୦୧୦
ଓଡ଼ିଆ ଗବେଷଣା ପରିଷଦ
ସାରସ୍ୱତ ନିଳୟ, ଶ୍ରୀ ଅରବିନ୍ଦ ନଗର
ମଧୁପାଟଣା, କଟକ - ୭୫୩୦୧୦

# କ୍ଷେମଙ୍କର କ୍ଷେତ୍ରବାସୀ

(ଡଃ କ୍ଷେତ୍ରବାସୀ ନାୟକ : ସୃଷ୍ଟି-ସମୀକ୍ଷା ଓ ସ୍ମୃତିଚିତ୍ର)

ସଂପାଦନା :

ଡଃ ହରେକୃଷ୍ଣ ପାତ୍ର

ଶ୍ରୀ ସୁଧୀର ଚନ୍ଦ୍ର ବେହୁରା

ଡଃ ଲାବଣ୍ୟ ନାୟକ

ପ୍ରଥମ ପ୍ରକାଶ : ୨୦୧୦

ପ୍ରକାଶକ ଓଡ଼ିଆ ଗବେଷଣା ପରିଷଦ, କଟକ



ଅକ୍ଷରସଜ୍ଜା : ଶ୍ରୀ କମ୍ପ୍ୟୁଟରସ୍, କଟକ

ମୁଦ୍ରଣ : ଶ୍ରୀ ଗଣେଶ ପ୍ରିଣ୍ଟର୍ସ, କଟକ

ମୂଲ୍ୟ : ଟ ୨୫୦.୦୦ ମାତ୍ର

## Kshemankar Kshetrabasi

(Memoirs and Literary Criticism :
on writings of Dr. Kshetrabasi Nayak)

Edited By :
**Dr. Harekrushna Patra**
**Sri. Sudhir Chandra Behura**
**Dr. Labanya Nayak**

1st Edition : **2010**

**Published by the Institute of Oriya Studies, Cuttack**

D.T.P by : **Shree Computers, Cuttack**

Printed at : **Sri Ganesh Printers, Cuttack**

**Price : Rs.250.00**

# ସଂପାଦକୀୟ

ମାନବ-ସଭ୍ୟତା ଇତିହାସରେ ଉତ୍କୃଷ୍ଟ ଗ୍ରନ୍ଥର ଗୁରୁତ୍ୱ ସର୍ବଦା ସ୍ୱୀକୃତ ହୋଇ ଆସିଛି । କେହି କେହି ଏହାକୁ 'ମଣିଷର ଜୀବନ ଦେବ' କହିଥିଲାବେଳେ, ଆଉ କେହି କେହି କହିଛନ୍ତି - 'ଶୋଷିତ ସମାଜର ଅମୋଘ ଅସ୍ତ୍ର' । କିନ୍ତୁ ଉତ୍କୃଷ୍ଟ ଗ୍ରନ୍ଥର ରଚନା ତଥା ପ୍ରକାଶ ପ୍ରାୟ ସର୍ବତ୍ର ସୀମାବଦ୍ଧ । ସେଥିପାଇଁ ବିଭିନ୍ନ ସାଂସ୍କୃତିକ ସଂସ୍ଥା ଓ ସାରସ୍ୱତ ଅନୁଷ୍ଠାନ ବହୁବିଧ କାର୍ଯ୍ୟକ୍ରମ ମଧ୍ୟରେ ଉତ୍କୃଷ୍ଟ ଗ୍ରନ୍ଥ ରଚନା ପାଇଁ ଲେଖକମାନଙ୍କୁ ଉତ୍ସାହିତ କରିବା ଏବଂ ସେହିଭଳି ଗ୍ରନ୍ଥର ପ୍ରକାଶନ ଦାୟିତ୍ୱ ବହନ କରିବାରେ କାର୍ଯ୍ୟକ୍ରମ ଗ୍ରହଣ କରିଥାଆନ୍ତି । 'ଓଡ଼ିଆ ଗବେଷଣା ପରିଷଦ' ମଧ୍ୟ ନିଜର ବିଭିନ୍ନ ଉଦ୍ଦେଶ୍ୟ ମଧ୍ୟରେ "ପ୍ରକାଶଯୋଗ୍ୟ ନୂତନ/ ପୁରାତନ ଗ୍ରନ୍ଥର ସଂଗ୍ରହ ଓ ମୁଦ୍ରଣ" ଉଦ୍ଦେଶ୍ୟ ସ୍ଥିର କରିଛି ।

ପରିଷଦର ତ୍ରୟୋବିଂଶତିତମ ପ୍ରକାଶନ ରୂପେ ଏହି 'କ୍ଷେମଙ୍କର କ୍ଷେତ୍ରବାସୀ' ଗ୍ରନ୍ଥଟି ଏବେ ଆମେ ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗ କରୁଛୁଁ ।

ଗୋଟିଏ ଜନ୍ମ ତାରିଖ ଏବଂ ଗୋଟିଏ ମୃତ୍ୟୁ ତାରିଖକୁ ନେଇ ଜୀବନର ପରିମାପ ହୁଏ ନାହିଁ । 'କର୍ମେ ଜୀଏ ନର କର୍ମ ଏକା ତା'ର ଜୀବନର ମାନଦଣ୍ଡ ।' ସ୍ୱର୍ଗତ ଡକ୍ଟର କ୍ଷେତ୍ରବାସୀ ନାୟକଙ୍କର ଅକାଳ ମୃତ୍ୟୁ ଘଟିଥିଲେ ମଧ୍ୟ ନିଜ ଜୀବନ କାଳ ମଧ୍ୟରେ ଓଡ଼ିଆ ସାହିତ୍ୟର ବିକାଶ ନିମନ୍ତେ ସେ ଯେଉଁ ପ୍ରଚେଷ୍ଟା କରିଯାଇଛନ୍ତି, ତାହା ଅନନ୍ୟ । ଗଳ୍ପ, କବିତା, ସମ୍ପାଦନା ଓ ସମୀକ୍ଷା-ସାହିତ୍ୟର ବହୁ ବିଭାଗରେ ସେ ହାତ ଦେଇଛନ୍ତି । ସବୁଥିରେ ଯଥାସମ୍ଭବ ସଫଳ ବି ହୋଇଛନ୍ତି । ଅବଶ୍ୟ ସମୀକ୍ଷା କ୍ଷେତ୍ରରେ ତାଙ୍କର ସଫଳତା, ଅନ୍ୟ କ୍ଷେତ୍ରଗୁଡ଼ିକରେ ତାଙ୍କ କୃତିତ୍ୱକୁ ଘୋଡ଼ାଇ ପକାଇଛି । ସେ ହିଁ ଓଡ଼ିଆ ସାହିତ୍ୟ ସମୀକ୍ଷଣ ପଦ୍ଧତିରେ ଅନ୍ତର୍ବିଦ୍ୟା ସମୀକ୍ଷାଧାରା ଓ ତୁଳନାତ୍ମକ ସମୀକ୍ଷା ଧାରାର ସଫଳ ଓ ଯଶସ୍ୱୀ ପ୍ରୟୋଗକାରୀ ଥିଲେ ବୋଲି କୁହାଯାଇପାରେ ।

ବିଷୟ ପୃଷ୍ଠାଙ୍କ



## ସ୍ମୃତି ଚିତ୍ର

# ପ୍ରବଳପ୍ରାଣ କ୍ଷେତ୍ରବାସୀ

ଶ୍ରୀ କ୍ଷେତ୍ରବାସୀ ନାୟକ (ଜନ୍ମ - ୧୯୩୯) ମୋ ପକ୍ଷରେ କେବଳ ଜଣେ ଛାତ୍ର ବା ସହକର୍ମୀ ନଥିଲେ, ଥିଲେ ଏକ ସକ୍ରିୟ ଶକ୍ତି - ଏକ ପ୍ରଚ୍ଛନ୍ନ ପ୍ରେରଣା । ଏହି ପ୍ରବଳପ୍ରାଣ ମଣିଷଟିର ସାନ୍ନିଧ ଓ ସହଯୋଗ ପାଇ ନଥିଲେ, ମୋର ଉତ୍ତର ଜୀବନ ଉତ୍ତୀର୍ଣ୍ଣ ହୋଇ ପାରି ନ ଥାନ୍ତା ।

ଗତ ବିଂଶ ଶତାବ୍ଦୀର ଷଷ୍ଠ ଦଶକର କଥା । କ୍ଷେତ୍ରବାସୀ, ଶ୍ରୀଯୁଗଳକିଶୋର ପଟ୍ଟନାୟକ ଓ ଅନ୍ୟ ଜଣେ ଦୁଇ ଜଣ ସତୀର୍ଥଙ୍କ ସହ  କେଜାଣି କାହିଁକି ଭଦ୍ରକ କଲେଜରେ ବିଭିନ୍ନ ଅଧ୍ୟାପକ ଥାଉଁ ଥାଉଁ ମୋର ନିକଟତର ହୋଇଥିଲେ  । ଷ୍ଟୁଡେଣ୍ଟସ୍ ଇଉନିୟନ୍‌ର ମୁଖ୍ୟପତ୍ର ପ୍ରକାଶନ ତଥା ଭଦ୍ରକରେ କିଛି ସାଂସ୍କୃତିକ କାର୍ଯ୍ୟକ୍ରମ ପାଇଁ ମୋ ସହିତ ବିଚାର ବିମର୍ଷ କରୁଥିଲେ । ସେହି ଦିନରୁ କ୍ଷେତ୍ରବାସୀଙ୍କ ସହ ମୋର ଘନିଷ୍ଠ ସମ୍ପର୍କ । ସେହି ସମ୍ପର୍କ ଆମର ଆଦାନ-ପ୍ରଦାନ ସୂତ୍ରରେ ବଜାୟ ରହିଥିଲା ତାଙ୍କର ଅକାଳ ମୃତ୍ୟୁ ପର୍ଯ୍ୟନ୍ତ । ସଂପର୍କର ଇତିହାସ ଟିକିଏ ଦୀର୍ଘ । ତହିଁରୁ କେତେ କଥା ବା ଏଠାରେ ଉଲ୍ଲେଖ କରିହେବ ?

ଭଦ୍ରକ କଲେଜ ଛାଡ଼ି କ୍ଷେତ୍ରବାସୀ ଉଚ୍ଚ ଶିକ୍ଷା ପାଇଁ କଟକ ରେଭେନ୍ସା କଲେଜକୁ  ଗଲେ । ମଝିରେ ମଝିରେ ବିଭିନ୍ନ ଛୁଟିରେ ସେ ଭଦ୍ରକ ଆସୁ ଥାଆନ୍ତି । ଭଦ୍ରକ ହାଇସ୍କୁଲ (ବର୍ତ୍ତମାନ ଜିଲ୍ଲା ସ୍କୁଲ) ପଛପଟେ ତାଙ୍କର ପୈତୃକ ବାସଗୃହ । ଆମର ସାକ୍ଷାତ ଆଲୋଚନା ହେଉଥାଏ । ଲକ୍ଷ୍ୟ କରୁଥାଏଁ - ଚଗଲା ସାନ ପିଲାଙ୍କ ପରି ସେ ସର୍ବଦା କର୍ମଚଞ୍ଚଳ । କିଛିନାକିଛି ଗୋଟାଏ ସାଂସ୍କୃତିକ କାର୍ଯ୍ୟରେ ଲାଗି ଥାଆନ୍ତି । ଆଳସ୍ୟ ତାଙ୍କ ଜାତକରେ ନ ଥିଲା । କଟକଠାରେ କେତେକ ସାହିତ୍ୟ-କର୍ମରେ ସେ ଜଡ଼ିତ ହୋଇପଡ଼ିଥିଲେ । ତାଙ୍କୁ ମୁଁ ପରାମର୍ଶ ଦେଉଥିଲି – ସେହି ସବୁ ବାହାର କାମରେ ଲାଗିବ ଏମ୍.ଏ. ପରୀକ୍ଷା ପରେ । ଏବେ ମନଧ୍ୟାନ ଦେଇ ପଢ଼ାରେ ଲାଗିଯାଅ । ଏମ୍. ଏ. ପରୀକ୍ଷା ଦେଇ ସାରି ସେ ଘରେ ଥାଆନ୍ତି । ସର୍ବଶ୍ରୀ ଶୈଳେନ୍ଦ୍ର ମହାପାତ୍ର, ନବକିଶୋର ମହାନ୍ତି (ଉଭୟ ପରେ ହେଲେ ଅଧ୍ୟାପକ), ସତ୍ୟେନ୍ଦ୍ରନାଥ ବେନାର୍ଜି (ଶିକ୍ଷକ), ରଘୁନାଥ ସାମଲ (ସମାଜ ସେବୀ) ପ୍ରମୁଖ ଯୁବକମାନଙ୍କୁ ଘେନି ତାଙ୍କ ନେତୃତ୍ୱରେ ଗୋଟାଏ ବଡ଼ ଧରଣର ସାହିତ୍ୟ-ସମାବେଶ କରିବା ପାଇଁ ଚିନ୍ତା କଲି । ଭଦ୍ରକର ଏକ ଉଲ୍ଲେଖନୀୟ ସାରସ୍ୱତ ପରମ୍ପରା ରହିଛି । ପୁଣି, ଆଲୋଚ୍ୟ ସମୟରେ ବହୁ ପ୍ରବୀଣ ଓ ତରୁଣ କବି ଲେଖକ ସାହିତ୍ୟ-ସାଧନାରେ ସକ୍ରିୟ ଥିଲେ । ସେମାନଙ୍କୁ ଏକତ୍ର କରି ଭାବ-ବିନିମୟ

କରିବା ତଥା ସାହିତ୍ୟ ସୃଷ୍ଟି ପାଇଁ ପ୍ରେରଣା-ପ୍ରଚୋଦନା ଯୋଗାଇବା ଆବଶ୍ୟକ ଥିଲା । ଆମେ ବହୁ ବିଚାର ବିମର୍ଶ କରି 'ଭଦ୍ରକ ଲେଖକ ସମ୍ମେଳନ' କରାଇବା ପାଇଁ ସିଦ୍ଧାନ୍ତ ନେଲୁ । ସାହିତ୍ୟିକ ଉଦୟନାରାୟଣ ମହାନ୍ତିଙ୍କ ସଭାପତିତ୍ୱ ଏବଂ କ୍ଷେତ୍ରବାସୀ ନାୟକଙ୍କ ସଂପାଦକତ୍ୱରେ ଏକ ପନ୍ଦର-ଜଣିଆ ଅଭ୍ୟର୍ଥନା ସମିତି ସେଥିପାଇଁ ଗଠିତ ହେଲା । ୧୯୬୩ ମସିହା ଅକ୍ଟୋବର ୧୨ ଓ ୧୩ ତାରିଖ ଦୁଇ ଦିନ କାଳ ଭଦ୍ରକ ହାଇସ୍କୁଲ ପରିସର ମଧ୍ୟରେ ଲେଖକ ସମ୍ମେଳନ ଅନୁଷ୍ଠିତ ହୋଇଥିଲା । ସମଗ୍ର ସବ୍‌ଡ଼ିଭିଜନ୍‌ରୁ (ସେତେବେଳେ ଭଦ୍ରକ ଜିଲ୍ଲା ହୋଇ ନ ଥିଲା) ବହୁ କବି ଲେଖକ ଏଥିରେ ଯୋଗ ଦେଇ କବିତା ପାଠ ତଥା ବିଭିନ୍ନ ଆଲୋଚନାଚର୍ଚ୍ଚାରେ ଯୋଗ ଦେଇଥିଲେ । ତା' ପୂର୍ବରୁ ଭଦ୍ରକଠାରେ ଏତେ ବଡ଼ ଲେଖକ ସମ୍ମେଳନ ହୋଇ ନଥିଲା ମୋ ଜାଣିବାରେ ।

ଏହି ସମ୍ମେଳନ ଉପଲକ୍ଷେ ଏକ ଶୋଭନୀୟ ସ୍ମରଣିକା ପ୍ରକାଶ ପାଇଥିଲା । ଏଥିରେ ଡଃ ହରେକୃଷ୍ଣ ମହାତାବ, ଶ୍ରୀ ଗୋକୁଳାନନ୍ଦ ନାୟକ, ଶ୍ରୀ ନିତ୍ୟାନନ୍ଦ ମହାପାତ୍ର, ଶ୍ରୀ ଶତ୍ରୁଘ୍ନ ନାଥ ପ୍ରମୁଖ ବିଭିନ୍ନ କବି-ଲେଖକଙ୍କର କେତେକ ଉପାଦେୟ ଲେଖା ପ୍ରକାଶିତ ହୋଇଥିଲା । ସ୍ମରଣିକାର ପରିଶିଷ୍ଟରେ ଦେଢ଼ ଶହରୁ ବେଶି ଭଦ୍ରକର କବି ଲେଖକଙ୍କ ସଂକ୍ଷିପ୍ତ ପରିଚୟ ପ୍ରଦାନ କରାଯାଇଥିଲା । ଏହି ପରିଚୟ ପଞ୍ଜିକାରେ ଅତୀତର କେତେକ ସାହିତ୍ୟ-ସାଧକ ଯଥା - କବିଶେଖର ଚିନ୍ତାମଣି ମହାନ୍ତି, 'ଶବ୍ଦନିଧି'ର ସଂକଳୟିତା ଚତୁର୍ଭୁଜ ପଟ୍ଟନାୟକ, କବି ବଂଶୀବଲ୍ଲଭ ଗୋସ୍ୱାମୀ, କବି ଜଗନ୍ନାଥ ପାଣି, 'ରତ୍ନକୋଷର'ର ସଂପାଦକ ନାଟ୍ୟକାର ଭାଗୀରଥି ମହାପାତ୍ର ପ୍ରମୁଖଙ୍କ ସହିତ ସେତେବେଳେ କର୍ମରତ ଥିବା ବହୁ କବିଲେଖକଙ୍କ କୃତି ଓ କୃତିତ୍ୱ ସନ୍ନିବେଶିତ ହୋଇଥିଲା । ସ୍ମରଣିକାଟିର ମୁଦ୍ରଣ ଓ ପ୍ରକାଶରେ ବିଶେଷ ସହାୟତା କରିଥିଲେ ଭଦ୍ରକର ବିଶିଷ୍ଟ ସାମ୍ବାଦିକ ଓ ଶ୍ରୀ ପ୍ରେସ୍‌ର ସଞ୍ଚାଳକ ଶ୍ରୀ ବାବାଜୀଚରଣ ନାୟକ । କ୍ଷେତ୍ରବାସୀ ନାୟକଙ୍କ ସମେତ ନବକିଶୋର ମହାନ୍ତି ଓ ଶୈଳେନ୍ଦ୍ର ମହାପାତ୍ର ଏହାର ସଂକଳନ-ସଂପାଦନା କାର୍ଯ୍ୟ ତୁଲାଇଥିଲେ ।

ସମ୍ମେଳନର ଶେଷ ଦିନ ଉଦ୍‌ଯାପନ ଉତ୍ସବ ପୂର୍ବରୁ ଯୋଗଦେଇଥିବା ଲେଖକ -ଲେଖିକାମାନଙ୍କୁ ହଦଗଡ଼ ସାଳନ୍ଦୀ ପ୍ରୋଜେକ୍ଟ ଅଞ୍ଚଳକୁ ପ୍ରମୋଦ-ପରିଭ୍ରମଣରେ ନିଆଯାଇଥିଲା । ହଦଗଡ଼ରୁ ଭଦ୍ରକକୁ ବାହୁଡ଼ିବାରେ ସେମାନଙ୍କର କିଞ୍ଚିତ୍ ବିଳମ୍ବ ହୋଇଯାଇଥିଲା । ଭଦ୍ରକ ହାଇସ୍କୁଲ ସମ୍ମେଳନ ସ୍ଥାନରେ ପହଞ୍ଚି ସେମାନେ ଦେଖିଲେ- ଉଦ୍‌ଯାପନୀ ଉତ୍ସବ ଆରମ୍ଭ ହୋଇଯାଇଛି । ଅଧ୍ୟକ୍ଷତା କରୁଛନ୍ତି ସମ୍ମେଳନର ସଭାପତି ସାହିତ୍ୟିକ ଉଦୟନାରାୟଣ ମହାନ୍ତି । ସଭାମଞ୍ଚରେ ଜଣେ ମନ୍ତ୍ରୀଙ୍କ ସହିତ ବସିଛନ୍ତି

କେତେକ ରାଜନୈତିକ ବ୍ୟକ୍ତି, ଯେଉଁମାନଙ୍କ ନାମ ଉଦ୍‌ଯାପନ ଅଧିବେଶନର କାର୍ଯ୍ୟ-ସାରଣୀରେ ନ ଥିଲା । ସମ୍ମେଳନର ସଂପାଦକ କ୍ଷେତ୍ରବାସୀ ନାୟକ, ଯୁଗ୍ମ ସଂପାଦକ ରଘୁନାଥ ସାମଲ, ସତ୍ୟେନ୍ଦ୍ରନାଥ ବେନାର୍ଜି ତଥା କେତେ ଜଣ ଲେଖକ ଏଥିରେ ବିରକ୍ତ ହୋଇ ପାଟିତୁଣ୍ଡ, ଗୋଳମାଳ ଆରମ୍ଭ କରିଦେଲେ । ଏହି ପରିସ୍ଥିତିରେ ମୁଁ ମଧ୍ୟ ବିଚଳିତ ହୋଇପଡ଼ିଥିଲି (ଲେଖକ ସମ୍ମେଳନର ମୁଁ ଥିଲି କୋଷାଧ୍ୟକ୍ଷ) । କୁଆଡ଼େ ଥିଲେ ସମ୍ମେଳନର ଉପସଭାପତି ବାବାଜୀଚରଣ ନାୟକ, ସଭାମଞ୍ଚ ପାଖରେ ପାଟିତୁଣ୍ଡ ଗୋଳମାଳ କରୁଥିବା ଲେଖକମାନଙ୍କ ଗହଣରେ ପଶିଯାଇ ସମସ୍ତଙ୍କୁ ଶାନ୍ତ କରିବାରେ ଲାଗିଲେ । କ୍ଷେତ୍ରବାସୀ ତଥା ଉତ୍ତ୍ୟକ୍ତ ଲେଖକମାନଙ୍କର ଯୁକ୍ତି ଥିଲା - ସମ୍ମେଳନର ସଂପାଦକ, ଯୁଗ୍ମସଂପାଦକ, କୋଷାଧ୍ୟକ୍ଷ ଏବଂ ଅଧିକାଂଶ ଲେଖକଙ୍କ ଅନୁପସ୍ଥିତିରେ ଉଦ୍‌ଯାପନ ଉତ୍ସବ କିପରି ଓ କାହିଁକି ଆରମ୍ଭ କରାଗଲା ! ବାବାଜୀ ବାବୁ ଆମ୍ଭମାନଙ୍କୁ ବୁଝାଶୁଝା କଲେ - ଏପରି ପାଟିତୁଣ୍ଡ ଗୋଳମାଳରେ ଉଦ୍‌ଯାପନ ଉତ୍ସବକୁ ଭଣ୍ଡୁର କରି ଲାଭ କ'ଣ ? ଉତ୍ସବ ସୁରୁଖୁରୁରେ ଶେଷ ହୋଇଯାଉ ।

ଉତ୍ସବ ଭଲରେ ଉଦ୍‌ଯାପିତ ହୋଇଗଲା । ସେଦିନ ବାବାଜୀ ବାବୁ ଲେଖକମାନଙ୍କୁ କହିବୋଲି ଶାନ୍ତ କରାଇ ନଥିଲେ, ଉତ୍ସବରେ ଗୋଟାଏ କିଛି ଅଘଟଣ ଘଟି ଯାଇଥାନ୍ତା ! ଯୋଗ୍ୟତା, ସାମର୍ଥ୍ୟ ନ ଥିଲେ ହେଁ ଆମର କେତେକ ମନ୍ତ୍ରୀ ଓ ନେତା ସାହିତ୍ୟ ସଂସ୍କୃତିର ସଭାମାନଙ୍କରେ ମଞ୍ଚାସୀନ ହେବାକୁ ଲଜ୍ଜା ଓ ସଙ୍କୋଚ ଅନୁଭବ କରୁନଥିବାର ଦେଖାଯାଉଛି - ଚଣ୍ଡିପାଠ ଠାରୁ ଯୋତା ସିଲାଇ ପର୍ଯ୍ୟନ୍ତ ଯାବତୀୟ ବିଷୟରେ ସର୍ବଜ୍ଞାନତା ଭଳି ବକ୍ତୃତା ଦେଉଥିବାର ମନେ ହେଉଛି । ଆମ ଲେଖକ ଓ ସଂସ୍କୃତି-ପ୍ରେମୀ ବ୍ୟକ୍ତିମାନଙ୍କ ମଧ୍ୟରେ ନେତା-ମନ୍ତ୍ରୀଙ୍କର କିଛି ତୋଷାମୋଦକାରୀ ଗୋଡ଼ାଣିଆ ଅଛନ୍ତି, ଯେଉଁମାନେ ସେମାନଙ୍କୁ ସାହିତ୍ୟ-ସଂସ୍କୃତିର ସଭାକୁ ଆଣି ଠାକୁର ଭଳି ସିଂହାସନରେ ବିଜେ କରାଉଛନ୍ତି । ଏହା କି ବିଡ଼ମ୍ବନାର ବିଷୟ ! ଯେଉଁ ମନ୍ତ୍ରୀ ବା ନେତାମାନେ ସାହିତ୍ୟ ସଂସ୍କୃତି କ୍ଷେତ୍ରରେ କିଛି କାର୍ଯ୍ୟ କରିଛନ୍ତି ବା କରୁଛନ୍ତି; ସେମାନେ ସାଂସ୍କୃତିକ ସଭାକୁ ଆସନ୍ତୁ, ଆପତ୍ତି ନାହିଁ । କିନ୍ତୁ ସାହିତ୍ୟର 'ସ' ଅକ୍ଷର ଜାଣି ନ ଥିବା ଏବଂ ତୁଚ୍ଛା ରାଜନୀତି କରୁଥିବା ପଞ୍ଚାୟତ ସମିତି ବା ମ୍ୟୁନିସିପାଲିଟିର ଚେୟାରମେନ୍, ଏମ୍.ପି, ଏମ୍. ଏଲ୍. ଏ., କିମ୍ବା ମନ୍ତ୍ରୀମାନେ ଆସି ସାହିତ୍ୟ ସଭା ମଣ୍ଡନ କରି ଲମ୍ବା ଚୌଡ଼ା ଭାଷଣରେ ବାଜେ ଅପ୍ରାସଙ୍ଗିକ କଥା ଗପିବାରେ କି ସମୀଚୀନତା ରହିଛି ? ଆଲୋଚ୍ୟ ପ୍ରସଙ୍ଗରେ ଯେଉଁ ମନ୍ତ୍ରୀ ମହୋଦୟଙ୍କ କଥା ବୋଲାଯାଇଛି, ତାଙ୍କର ସେପରି କିଛି ସାହିତ୍ୟ-କର୍ମ ନ ଥିଲା । ମନ୍ତ୍ରୀ ହେବା ପୂର୍ବରୁ ସେ ଅଳ୍ପକାଳ ପାଇଁ 'ପ୍ରଜାତନ୍ତ୍ର' ର

ସଂପାଦକ ଥିଲେ ଏବଂ ଏ ଦୁର୍ଭାଗ୍ୟଜନକ ଘଟଣାର ଢେର୍ ପରେ ତାଙ୍କର ପୃଥୁଳକାୟ ଆତ୍ମ ଜୀବନୀଟିଏ ମାତ୍ର ପ୍ରକାଶ ପାଇଥିଲା ।

କ୍ଷେତ୍ରବାସୀ ହାତଗୋଡ଼ ବାନ୍ଧି ତୁନି ହୋଇ ବସିବାର ବ୍ୟକ୍ତି ନ ଥିଲେ । 'ଭଦ୍ରକ ଲେଖକ ସମ୍ମେଳନ' ପରେ ତାଙ୍କ ମଥାରେ ଆଉ ଏକ ଯୋଜନା ଭଙ୍କି ମାରିଲା । ସେ ଶୈଳେନ୍ଦ୍ର ମହାପାତ୍ର, ନବକିଶୋର ମହାନ୍ତି ପ୍ରମୁଖ ଆପଣାର କେତେକ ଯୁବବନ୍ଧୁଙ୍କୁ ଘେନି ଏକ ସାହିତ୍ୟ-ପ୍ରକାଶନ ସଂସ୍ଥା ସ୍ଥାପନ ଏବଂ ସଂସ୍ଥା ପକ୍ଷରୁ ଖଣ୍ଡିଏ ପତ୍ରିକା ପ୍ରକାଶ ପାଇଁ ଉଦ୍ୟମ କଲେ । ତା ହେଉଛି ୧୯୬୪ ମସିହା ଆରମ୍ଭର କଥା । ଏ ସଂପର୍କରେ ସେମାନେ ଆସି ମୋ ସହିତ ପରାମର୍ଶ କଲେ । କଲିକତାର 'ଅଗ୍ରଣୀ' ଓ 'କବିତା' ତଥା କଟକର 'ଡ଼ଗର' ପତ୍ରିକା ପ୍ରକାଶନ-ସଂସ୍ଥାରେ ମୁଁ ଲାଭ କରିଥିବା ଅଭିଜ୍ଞତା ଭିତ୍ତିରେ ସେମାନଙ୍କୁ କିଛି ବାଟ ବତାଇ ଦେଲି । ଆରମ୍ଭ ହେଲା ଭଦ୍ରକର 'ଶତରୂପା ପ୍ରକାଶନୀ' ଏବଂ ତାହାର ଦ୍ୱିମାସିକ ମୁଖପତ୍ର 'ଶତରୂପା' । ଭଦ୍ରକ ସହର ମଧ୍ୟ ସ୍ଥଳରେ ଥିବା ବାବାଜୀ ବାବୁଙ୍କର ଶ୍ରୀ ପ୍ରେସ୍‌ରେ 'ଶତରୂପା' ଛପା ହେବାର ବ୍ୟବସ୍ଥା କରାଗଲା । ସାମ୍ବାଦିକ ସୁବଳ ଜେନା ପ୍ରକାଶନୀର ପ୍ରସାର ଦାୟିତ୍ୱରେ ରହିଲେ । କଚେରୀ ବଜାରରେ ଥିବା ତାଙ୍କ ପୁସ୍ତକ-ପତ୍ରିକା ଦୋକାନରେ 'ଶତରୂପା'ର ବିକ୍ରିବଟା ଓ ଗ୍ରାହକମାନଙ୍କୁ ଯୋଗାଣର ବ୍ୟବସ୍ଥା ହେଲା । ପତ୍ରିକା ପ୍ରକାଶ ପାଇଁ ଅସଲ କଞ୍ଚାମାଲ ଯୋଗାଡ଼ କଲାବେଳକୁ ଦେଖାଗଲା - ଗଳ୍ପର ଘୋର ଅଭାବ । ସୁଲେଖକ ମଙ୍ଗଳଚରଣ ବିଶ୍ୱାଳଙ୍କ ଠାରୁ ଗଳ୍ପଟିଏ ମିଳିଥାଏ । ଖ୍ୟାତନାମା ଅନୁବାଦକ ଲକ୍ଷ୍ମୀନାରାୟଣ ମହାନ୍ତି ଅନୂଦିତ ଗଳ୍ପଟିଏ ଦେବାକୁ କହିଥାଆନ୍ତି । ଏହି ପରିସ୍ଥିତିରେ 'ଶତରୂପା'ର ଗଳ୍ପ ସଂପାଦନା ଦାୟିତ୍ୱରେ ଥିବା କ୍ଷେତ୍ରବାସୀ ମୋ ପାଖରେ ଯାଇ ପହଞ୍ଚିଲେ ଗଳ୍ପଟିଏ ପାଇଁ । ସେତେବେଳକୁ ଗଳ୍ପ ରଚନାରେ ମୋର ଯତ୍‌କିଞ୍ଚିତ ଖ୍ୟାତି ବୋଧହୁଏ କ୍ଷେତ୍ରବାସୀଙ୍କୁ ମୋ ପ୍ରତି ଆକୃଷ୍ଟ କରାଇଥିଲା । ପାଖରେ ଥିଲା ମୋର 'ବେଦୀ' ଗଳ୍ପ । କ୍ଷେତ୍ରବାସୀଙ୍କୁ ତାହା ପଢ଼ି ଶୁଣାଇଲି । ସେ ସଙ୍ଗେ ସଙ୍ଗେ ଗଳ୍ପଟିକୁ 'ଶତରୂପା' ପାଇଁ ଘେନିଯିବାକୁ ବାହାରିଲେ । ମୁଁ କହିଲି - ଏହି ଗଳ୍ପ ସଂପର୍କରେ କେହି କେହି ପ୍ରତିକ୍ରିୟା ପ୍ରକାଶ କରିପାରନ୍ତି; ତମେ ଯଦି ସେ ପ୍ରତିକ୍ରିୟାର ସମ୍ମୁଖୀନ ହେବା ପାଇଁ ପ୍ରସ୍ତୁତ, ଗଳ୍ପଟି ନେଇ ଛାପି ଦେଇପାରେ । ପୂର୍ବରୁ ମନୋଜ ଦାସଙ୍କ 'ଦିଗନ୍ତ' ପତ୍ରିକା ତଥା 'ଡଗର' ପତ୍ରିକାରେ ଏହାର ପ୍ରକାଶ ପାଇଁ ମୁଁ ଉଦ୍ୟମ କରିଥିଲି, ମାତ୍ର ପ୍ରକାଶରେ ସଫଳ ହୋଇପାରି ନ ଥିଲି । କ୍ଷେତ୍ରବାସୀ ମୋ ମନା ମାନିଲେ ନାହିଁ । 'ବେଦୀ' ଗଳ୍ପର ପାଣ୍ଡୁଲିପି ମୋ ପାଖରୁ ଘେନିଗଲେ । 'ଶତରୂପା'ର ପ୍ରଥମ ସଂଖ୍ୟାରେ ଗଳ୍ପଟି ପ୍ରକାଶ ପାଇଲା ପରେ ମୁଁ ଯାହା ଆଶଙ୍କା କରୁଥିଲି, ତାହା ହିଁ ଘଟିଲା । ପ୍ରଥମେ 'ନିଆଁଖୁଣ୍ଟା' ପ୍ରତିକାରେ ଗଳ୍ପଟି

ସଂପର୍କରେ ଏକ ତୀବ୍ର ଆକ୍ଷେପ ମୂଳକ ମନ୍ତବ୍ୟ ପ୍ରକାଶ ପାଇଲା । ପରେ ପରେ 'କଳିଙ୍ଗ', 'ମାତୃଭୂମି' ଆଦି ସମ୍ବାଦପତ୍ରମାନଙ୍କରେ ବିଭିନ୍ନ ସମ୍ବାଦ ତଥା ଗଳ୍ପର ଶ୍ଳୀଳତା-ଅଶ୍ଳୀଳତା' ଘେନି କିଛି ଅଭିମତ ପ୍ରକାଶିତ ହେଲା । ରାଜ୍ୟର ବିଭିନ୍ନ ଅଞ୍ଚଳରୁ ମୋର କେତେକ ପରିଚିତ ବନ୍ଧୁ ଓ ଅପରିଚିତ ପାଠକ - କେହି ଗଳ୍ପ ଉପରେ କଟୁ ଆଲୋଚନା କରି, କେହି ବା ଅନୁକୂଳ ମନ୍ତବ୍ୟ ଦେଇ ମୋତେ ପତ୍ର ଲେଖିଲେ । ମୋଟାମୋଟି ଆମ ସାହିତ୍ୟ କ୍ଷେତ୍ରରେ 'ବେଦୀ' ଗଳ୍ପ ସେତେବେଳେ ବିବାଦ ଓ ବିତର୍କର ଏକ କେନ୍ଦ୍ର ହୋଇ ଉଠିଲା ।

ଏହା ଭିତରେ କ୍ଷେତ୍ରବାସୀ ସରକାରୀ କର୍ମନିଯୁକ୍ତ ଘେନି ପଶ୍ଚିମ ଓଡ଼ିଶାକୁ ଚାଲି ଯାଇଥିଲେ ଏବଂ ସେ ଅଞ୍ଚଳର କବି ଲେଖକବନ୍ଧୁମାନଙ୍କ ସହ 'ବେଦୀ' ଗଳ୍ପର ଆତ୍ମିକ ଓ ଆଙ୍ଗିକ ଦିଗ ସଂପର୍କରେ ଆଲୋଚନା କରିଥିଲେ । ବିତର୍କର ଝଡ଼ ଟିକିଏ ଥମିଗଲା ପରେ ମୋ 'ଅଶ୍ଳୀଳତା ବିପକ୍ଷରେ' ଆଲୋଚନା ପୁସ୍ତକଟି ପ୍ରକାଶିତ ହେଲା । କ୍ଷେତ୍ରବାସୀ ପୁସ୍ତକ ପଢ଼ି ମୋତେ ପତ୍ର ଲେଖିଥିଲେ -

"ବଲାଙ୍ଗୀର

୧୪।୮।୬୬

ପୂଜନୀୟେଷୁ,

ପ୍ରଣତି । ଆପଣଙ୍କ ଚିଠି ପାଇଛି । 'ଅଶ୍ଳୀଳତା ବିପକ୍ଷରେ' ବହି ଖଣ୍ଡକ ମିଳିଲା । x x x ଆପଣଙ୍କ ବହିର ଅନେକ ପ୍ରବନ୍ଧ ମୁଁ ଆଗରୁ ପଢ଼ିଥିଲି । ଶେଷ ପ୍ରବନ୍ଧଟି ମଧ୍ୟ - ଅଶ୍ଳୀଳତା ସଂପର୍କରେ ଲିଖିତ ପ୍ରବନ୍ଧ ଖୁବ୍ ଭଲ ହୋଇଛି । ଆଲୋଚନା ଓ ସଜ୍ଜୀକରଣରେ ଅନେକ କିଛି ନୂତନତାର ସୂଚନା ଦିଏ । ଯାହାହେଉ, 'ଶତରୂପା' ପାଇଁ ହୁଏତ ଏଇ ବହିଟିର ସୃଷ୍ଟି । ଧନ୍ୟ 'ଶତରୂପା' । ଧନ୍ୟ ସେ 'ବେଦୀ' x x x ।

ଇତି କ୍ଷେତ୍ରବାସୀ ନାୟକ"

ପଶ୍ଚିମ ଓଡ଼ିଶାର ବିଭିନ୍ନ ସ୍ଥାନରେ କ୍ଷେତ୍ରବାସୀ ନାନା ସାହିତ୍ୟ-କର୍ମରେ ଲିପ୍ତ ଥିବାର ଖବର ପାଉଥିଲି । କେବଳ ସାହିତ୍ୟ ସୃଷ୍ଟି ନୁହେଁ, ସାହିତ୍ୟ -ସଙ୍ଗଠନରେ ମଧ୍ୟ ଜାଣୁଥିଲି ତାଙ୍କର କୃତିତ୍ୱ । ବିଭିନ୍ନ ସଭାସମିତିରେ ଭାଷଣ ଦେବା, ସାଂସ୍କୃତିକ ପ୍ରତିଷ୍ଠାନ ଗଠନ କରିବା, ଗଳ୍ପ-କବିତାଦି ପ୍ରକାଶ କରିବା ଇତ୍ୟାଦି କାର୍ଯ୍ୟରେ ତାଙ୍କର ନିପୁଣତା ମୋତେ ବେଶ୍ ଆନନ୍ଦିତ କରୁଥିଲା । ସେତେବେଳେ 'ଓଡ଼ିଆ ଯୁବ ଲେଖକ ସମ୍ମେଳନ' ସାରା ରାଜ୍ୟରେ ଏକ ନବ ଜାଗରଣ ସୃଷ୍ଟି କରିଥିଲା । ଏହାର ସମ୍ବଲପୁର ଅଧିବେଶନ (୧୯୬୮) ଓ ବଲାଙ୍ଗିର ଅଧିବେଶନ (୧୯୬୯) ସଙ୍ଗଠନ-କାର୍ଯ୍ୟରେ କ୍ଷେତ୍ରବାସୀ

ସକ୍ରିୟ ଭୂମିକା ଗ୍ରହଣ କରିଥିଲେ । ସମ୍ବଲପୁର ଅଧିବେଶନରେ ଆମର ସାକ୍ଷାତ ବେଳେ ମୁଁ ତାଙ୍କୁ ଗବେଷଣା କରିବା ପାଇଁ ପରାମର୍ଶ ଦେଇଥିଲି । ଦୁଇ ତିନିଟି ବିଷୟ ଗବେଷଣା-କାର୍ଯ୍ୟ ପାଇଁ ବାଛି ଦେଇ ତନ୍ମଧ୍ୟରୁ ଆପଣା ରୁଚି ଓ ପସନ୍ଦ ଅନୁଯାୟୀ ଏକ ନିର୍ଦ୍ଦିଷ୍ଟ ବିଷୟ ଗ୍ରହଣ କରିବା ପାଇଁ କହିଥିଲି । ସେତେବେଳେ ସେ ଇଂରେଜୀ ସାହିତ୍ୟ ବୋଧ ହୁଏ ବେଶି ପଢ଼ାପଢ଼ି କରୁଥିଲେ । ନିଜର ଅଧ୍ୟାପିକା ପତ୍ନୀ ଓ ସହକର୍ମୀମାନଙ୍କ ସହ ଆଲୋଚନା କରି, 'ଆଧୁନିକ ଓଡ଼ିଆ କାବ୍ୟସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ' ବିଷୟ ଠିକ୍ କଲେ, ଏବଂ ନବ ପ୍ରତିଷ୍ଠିତ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଗବେଷକ ଭାବରେ ନିଜକୁ ପଞ୍ଜୀକୃତ କରାଇ ନେଲେ । ଆଉ ଆଉ ସମସ୍ତ ଶିକ୍ଷା ଓ ସଂସ୍କୃତି ସଂପର୍କିତ କାର୍ଯ୍ୟ ମଧ୍ୟରେ ସେ ଗବେଷଣାକୁ ଗୁରୁତ୍ୱ ଦେଇଥିଲେ, ଏବଂ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଗବେଷଣା-ପ୍ରବନ୍ଧର ପ୍ରଥମ ଚିଠା ପ୍ରସ୍ତୁତ କରି ମୋ ପାଖକୁ ପଠାଇ ଦେଲେ । ସେତେବେଳକୁ ଭଦ୍ରକ କଲେଜ ସରକାରୀ ପରିଚାଳନାଧୀନ ହୋଇଯାଇଥିଲା; ବଦଳି ପ୍ରକ୍ରିୟାରେ ମୁଁ ଯାଇ ପହଞ୍ଚିଥିଲି ବାରିପଦାସ୍ଥ ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜରେ । କ୍ଷେତ୍ରବାସୀଙ୍କ ଗବେଷଣାପ୍ରବନ୍ଧ ଦେଖି ସାରିଲା ପରେ ମୁଁ ତାଙ୍କୁ ବାରିପଦାକୁ ଡକାଇଲି । ବାରିପଦାଠାରେ ସେତେବେଳେ କବି ରାଧାମୋହନ ଗଡ଼ନାୟକ ନିଜର ଜଣେ ବନ୍ଧୁଙ୍କ ଘରେ ଥାଆନ୍ତି । ଗବେଷଣା ପ୍ରବନ୍ଧର ଆଧୁନିକ ଓଡ଼ିଆ କବିତାର ଛନ୍ଦ ସଂପର୍କିତ ପରିଚ୍ଛେଦଟି ଗଡ଼ନାୟକଙ୍କୁ ଦେଖାଇ ଆମେ ତାଙ୍କ ସହିତ ଆଲୋଚନା କଲୁ ଏବଂ ତାଙ୍କର କେତେକ ପରାମର୍ଶ ଗ୍ରହଣ କଲୁ । କଲେଜର କେତେ ଜଣ ଇଂରେଜୀ-ଓଡ଼ିଆ ବିଭାଗର ଅଧ୍ୟାପକଙ୍କ ସହିତ ମଧ୍ୟ ପ୍ରବନ୍ଧର ବିଭିନ୍ନ ବିଭାବ ଘେନି ଆଲୋଚନା କରିଥିଲୁ ।

ଆପଣା ଗବେଷଣା ପ୍ରବନ୍ଧର ଚିଠାକୁ ଅନ୍ୟ କାହାରିକୁ ଦେଖାଇ ତାହା ଉପରେ ଆଲୋଚନା ଚର୍ଚ୍ଚା କରିବା ପାଇଁ କ୍ଷେତ୍ରବାସୀ କୁଣ୍ଠିତ ଥିବାର ଲକ୍ଷ୍ୟ କଲି । ମୁଁ ତାଙ୍କୁ ବୁଝାଇ କହିଲି - ଗବେଷଣା ବ୍ୟାପାରଟା ଆଦୌ ଗୋପନୀୟ ବା କନଫିଡେନସିଆଲ୍ ନୁହେଁ । ବିଶ୍ୱବିଦ୍ୟାଳୟରେ ଗବେଷଣା-ପ୍ରବନ୍ଧ ଦାଖଲ କରିବା ପର୍ଯ୍ୟନ୍ତ ଏହା ସଂପୃକ୍ତ ସମସ୍ତଙ୍କ ପାଇଁ ଉନ୍ମୁକ୍ତ; ତଦ୍‌ବିଦ୍ ବ୍ୟକ୍ତିମାନଙ୍କ ସହ ଏହା ସଂପର୍କରେ ଆଲୋଚନା-ଚର୍ଚ୍ଚା କରାଯାଇପାରେ । ତାହାଦ୍ୱାରା ଲାଭ ଛଡ଼ା ଆଦୌ କ୍ଷତି ନାହିଁ । କିନ୍ତୁ ଗବେଷଣା-ପ୍ରବନ୍ଧ ପରୀକ୍ଷା ପାଇଁ ବିଶ୍ୱବିଦ୍ୟାଳୟରେ ଦାଖଲ ହୋଇଗଲା ପରେ ତାହା ହୋଇଯାଏ ଗୋପନୀୟ ବା ଅପ୍ରକାଶ୍ୟ । ଏବେ ଆମର ଅନେକ ଗବେଷକ, ଯାହା ମୁଁ ଦୁଃଖର ସହିତ ଲକ୍ଷ୍ୟ କରୁଛି, ନିଜ ନିଜର ଗବେଷଣା-କାର୍ଯ୍ୟ ବିଷୟରେ ସଂପୃକ୍ତ ତଦ୍‌ବିଦ୍ ବ୍ୟକ୍ତିମାନଙ୍କ ସହ ଆଲୋଚନା କରିବାକୁ ପଶ୍ଚାତ୍‌ପଦ । ଏପରିକି କେତେକ ଗବେଷକ ନିଜ ଗବେଷଣାର ବିଷୟ ଅନ୍ୟଠାରୁ ଲୁଚାଇ ରଖିବାକୁ ଚାହାଁନ୍ତି । ଏଥିପାଇଁ ସେମାନଙ୍କର

ନିର୍ଦ୍ଦେଶକ ବା ଗାଇଡ୍ କୁଆଡ଼େ ପରାମର୍ଶ ଦେଇଥାଆନ୍ତି ! ପରାମର୍ଶଟା ଏହିପରି - 'ତମେ ତ ଡକ୍ଟରେଟ୍ ଡିଗ୍ରୀ ପାଇବ ! ତାହା ଗାଇଡ୍ ଭାବରେ ମୁଁ କରାଇ ଦେବି । ଗବେଷଣା-ପ୍ରବନ୍ଧରେ କ'ଣ କିପରି ଲେଖାଲେଖି କରୁଛ, ସେ ସଂପର୍କରେ ଅନ୍ୟମାନଙ୍କ ସହ ଆଲୋଚନା କରିବା ଦରକାର କ'ଣ ?' ଏପରି କି ଗବେଷକ ଡକ୍ଟରେଟ୍ ଡିଗ୍ରୀ ପାଇଗଲା ପରେ ଅନୁମୋଦିତ ଗବେଷଣା-ପ୍ରବନ୍ଧ ଅନ୍ୟମାନଙ୍କୁ ଦେଖାଇବାକୁ ଚାହୁଁ ନାହାନ୍ତି । କାଳେ ନିଜର ଦୋଷତ୍ରୁଟି ତଥା ଗାଇଡ୍‌ଙ୍କର ଦୁର୍ବଳତା ପଦାରେ ପଡ଼ିଯିବ ! ଆମର ଅଧିକାଂଶ ଅନୁମୋଦିତ ଥେସିସ୍ ସେଇଥିପାଇଁ ମୁଦ୍ରାଯନ୍ତ୍ରର ମୁହଁ ଦେଖିପାରୁ ନାହିଁ । ସାତ ମହଣ ଘିଅ ପୋଡ଼ାଗଲା ପରେ ଯେଉଁ ରାଧା ନାଚୁଛନ୍ତି, ତାଙ୍କର ନାଚ କାହାରି ଆଖିରେ ପଡୁନାହିଁ ।

କର୍ମଠ କ୍ଷେତ୍ରବାସୀ ଠିକ୍ ସମୟରେ ଗବେଷଣା-ପ୍ରବନ୍ଧର ସ୍ୱଷ୍ଟାକ୍ଷର ନକଲ ପ୍ରସ୍ତୁତ କରି ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଦାଖଲ କରିଦେଲେ । ପ୍ରବନ୍ଧ ଉପରେ ମୌଖିକ ପରୀକ୍ଷା ହେଲା କଲିକତାଠାରେ - ଅନ୍ୟତମ ପରୀକ୍ଷକ ପ୍ରଫେସର୍ ସୁକୁମାର ସେନ୍‌ଙ୍କ ବାସଭବନରେ । ଇତି ମଧ୍ୟରେ କ୍ଷେତ୍ରବାସୀ ପଶ୍ଚିମ ଓଡ଼ିଶାରୁ ଆସି ଦକ୍ଷିଣ ଓଡ଼ିଶାରେ ଅବସ୍ଥାପିତ ହୋଇଥାଆନ୍ତି,ଏବଂ ମୁଁ ଥାଏ କଟକ ରେଭେନ୍ସା କଲେଜରେ । ଥେସିସ୍ ଦାଖଲ ହେଲା ପଶ୍ଚିମ ଓଡ଼ିଶାରେ, ଗବେଷକ ରହିଲେ ଦକ୍ଷିଣ ଓଡ଼ିଶାରେ ଏବଂ ତାଙ୍କର ଗାଇଡ୍ ଉତ୍ତର ଓଡ଼ିଶାରେ । ଏହି ପରିସ୍ଥିତିରେ କ୍ଷେତ୍ରବାସୀଙ୍କ ପରୀକ୍ଷାଫଳ ପ୍ରକାଶ ପାଇବାରେ କିଛି ବିଳମ୍ବ ଘଟିଥିଲା । ଯାହାହେଉ, କ୍ଷେତ୍ରବାସୀ ସମ୍ବଲପୁର ବିଶ୍ୱବିଦ୍ୟାଳୟର ପ୍ରଥମ ଡକ୍ଟରେଟ୍ ଡିଗ୍ରୀଧାରୀ ସ୍କଲାର୍ ଭାବରେ ଉତ୍ତୀର୍ଣ୍ଣ ହୋଇଗଲେ । ପରେ ପରେ ୧୯୭୭ ମସିହା ଆଦ୍ୟ ଭାଗରେ ତାଙ୍କର ଗବେଷଣା ପ୍ରବନ୍ଧଟି ମୁଦ୍ରିତାକାରରେ ପ୍ରକାଶ ପାଇଗଲା ।

କ୍ଷେତ୍ରବାସୀ ଯେତେବେଳେ ଦକ୍ଷିଣ ଓଡ଼ିଶାରୁ କଟକ ବଦଳି ହୋଇ ଆସିଲେ, ସେତେବେଳେ ତାଙ୍କ ଜୀବନରେ ଏକ ନୂତନ ପର୍ବ ଆରମ୍ଭ ହେଲା । ପ୍ରତିଷ୍ଠିତ ହେଲା 'ଓଡ଼ିଆ ଗବେଷଣା ପରିଷଦ' ବା The Institute of Oriya Studies । ସେ ହେଲେ ଏହାର ପ୍ରତିଷ୍ଠାତା-ସମ୍ପାଦକ । ୧୯୮୦ ରୁ ୧୯୮୬ ଏହି ସ୍ୱଳ୍ପ ସମୟ ମଧ୍ୟରେ ସେ ନିଜର ସମସ୍ତ ଶକ୍ତି ସାମର୍ଥ୍ୟ ଦେଇ ପ୍ରତିଷ୍ଠାନକୁ ଗଢ଼ି ତୋଳିଲେ । ପରିଷଦର ମୁଖପତ୍ର 'ଏଷଣା' ନିୟମିତ ପ୍ରକାଶ ପାଇଲା, କିଛି ଆଲୋଚନା ଗ୍ରନ୍ଥ ଓ ପ୍ରାଚୀନ ସାହିତ୍ୟର ପୁସ୍ତକ ମଧ୍ୟ ପ୍ରକାଶିତ ହେଲା । ଏ ଦିଗରେ ତାଙ୍କର ଅକ୍ଳାନ୍ତ ପରିଶ୍ରମ ଓ ନବ ନବ ଉଦ୍ୟମ ଲକ୍ଷ୍ୟ କରି ମୁଁ ବିସ୍ମିତ ହେଉଥିଲି । ଗବେଷଣା ପରିଷଦ ପ୍ରତିଷ୍ଠିତ ହେବାର ପ୍ରାୟ ବର୍ଷକ ପରେ ମୋର କଟକରୁ କନ୍ଧମାଳର ଫୁଲବାଣୀ କଲେଜକୁ ବଦଳି ହୋଇଗଲା ।

ଫୁଲବାଣୀଠାରେ ମୁଁ ଯେଉଁ ପାଞ୍ଚ ବର୍ଷକାଳ ରହିଲି, କ୍ଷେତ୍ରବାସୀ ପରିଷଦର କାର୍ଯ୍ୟକାରୀ ସମିତି ସଭ୍ୟଙ୍କୁ ଘେନି ସବୁକାର୍ଯ୍ୟ କରୁଥିଲେ । ଏହା ସହିତ କଟକ ଶ୍ରୀ ଅରବିନ୍ଦ ନଗରରେ ନିଜର ଏକ ବାସଭବନ ନିର୍ମାଣ କାର୍ଯ୍ୟ ଚଳାଇଥିଲେ । ଅତିରିକ୍ତ କାର୍ଯ୍ୟ ଚାପରେ ତାଙ୍କ ସ୍ୱାସ୍ଥ୍ୟର ଅବନତି ଘଟିଲା । କେବଳ ଅତିରିକ୍ତ କାର୍ଯ୍ୟଚାପ ନୁହେଁ, କିଛି ପାରିବାରିକ ଝଞ୍ଜାଳ ଓ ଗୁପ୍ତ ଶତ୍ରୁଙ୍କ କାରସାଦି ଯୋଗୁ ପୂର୍ବରୁ ସେ ମାନସିକ ଅଶାନ୍ତି ଭୋଗୁଥିଲେ । ବ୍ରହ୍ମପୁରରୁ ଥରେ ସେ ଏକ ପତ୍ରରେ ମୋତେ ଲେଖିଥିଲେ -

"ହାତୀବନ୍ଧ ସାହି, ବ୍ରହ୍ମପୁର

୨୫.୧୦. ୭୫

ପୂଜନୀୟ ସାର୍, ପ୍ରଣତି ।

ଆପଣଙ୍କ ଚିଠି ପାଇଛି । ନନ୍ଦକିଶୋରଙ୍କୁ ଆଲୋଚନା କରିବି, ଯେମିତି ଆପଣ ଚାହୁଁଛନ୍ତି । ମନ ଭିତରେ ଯେତେ ସାରସ୍ୱତ ସ୍ୱପ୍ନ ଉଙ୍କି ମାରୁଛି, ସବୁ ଯଦି ସଫଳ ହୁଅନ୍ତା, ଆମ ସାହିତ୍ୟରେ କିଛି ହେଲା ବୋଲି ଜାଣନ୍ତୁ । ବ୍ୟକ୍ତିଗତ ଶକ୍ତି ତ ସୀମିତ, ଏଥି ଭିତରେ ଧୀରେ ଧୀରେ କାମ କରିବା ଛଡ଼ା ଉପାୟ ନାହିଁ । ସ୍ୱପ୍ନ ଦେଖିଛି ସତ, ନନ୍ଦକିଶୋରଙ୍କ ଉପରେ ଏକ ଚରିତାତ୍ମକ ସମାଲୋଚନା ଗ୍ରନ୍ଥ ଲେଖିବି, ଆପଣଙ୍କର କଲ୍ୟାଣ ଓ ଜଗନ୍ନାଥଙ୍କର କୃପା କଣିକା ପାଇଲେ ତାହା ସଫଳ ହେବ । ଦେଖାଯାଉ, ଲାଗିଛି ତ ।

ମଝିରେ ମଝିରେ ଅସୁବିଧା ଆସି ଉପୁଜୁଛି - ଏଣୁ ତେଣୁ ଝମେଲା ପଶିଯାଉଛି । ଏକାଥରେ ଅଣନିଶ୍ୱାସୀ ହୋଇ ଲାଗିହେଉ ନାହିଁ । ଆପଣଙ୍କର ସ୍ମାରକୀ ଗ୍ରନ୍ଥ ପାଇଁ ପ୍ରବନ୍ଧଟିଏ ଯିବ । x x x x ବର୍ତ୍ତମାନ ଏପରି ଅଚାନକ ଝଞ୍ଜାଳ ଆସି ମୋତେ ବିବ୍ରତ କରୁଛି ଯେ, ମୁଁ ଖୁବ୍ ଶଙ୍କିତ ହୋଇଯାଉଛି- ପରିସ୍ଥିତି ତ ସବୁ ଦୁର୍ଯ୍ୟୋଗର ସ୍ତମ୍ଭ ଆଉ କ'ଣ କରାଯାଇ ପାରେ ! ତେବେ ଭାଗ୍ୟକୁ ନିନ୍ଦିବା ଛଡ଼ା ଉପାୟ ନାହିଁ । ଅବଶ୍ୟ ଏ ସବୁ ସାହିତ୍ୟ ଘେନି ନୁହେଁ । ଅନ୍ୟ ବିଷୟ, ପରେ ସାକ୍ଷାତରେ କହିବି । ଏପରି କେତେକ ଅଚାନକ ଘଟଣା ଯୋଗୁ ମୁଁ ବେଳେବେଳେ ମାନସିକ ଅସ୍ଥିରତା ଅନୁଭବ କରୁଛି ।

ଆପଣ ପରା କହନ୍ତି, ସବୁ ଦୁଃସ୍ଥିତି ଓ ଦୁର୍ଯ୍ୟୋଗକୁ ଭୁଲିବାର ଏକମାତ୍ର ମାଧମ ହେଉଛି ସାହିତ୍ୟ । ସେହି ସାହିତ୍ୟ ଓ ଜଗନ୍ନାଥ ସେବା ଏ ଦୁଇଟି ଭିତରେ ଏ ସବୁକୁ ଭୁଲିବାକୁ ଚେଷ୍ଟା କରୁଛି । ତଥାପି ମଣିଷର ମନ ତ ! ବେଳେବେଳେ ପୁଣି ଦୃଢ଼ତା ହରାଇ ଦେଉଛି । ଦେଖାଯାଉ, ଜଗନ୍ନାଥଙ୍କ ପରୀକ୍ଷା କେତେ ବାଟ ଯାଉଛି ! x x x

ସ୍ନେହର କ୍ଷେତ୍ରବାସୀ ନାୟକ"

ଏହି ଅଶାନ୍ତି ଓ ଶାରୀରିକ ଦୁର୍ବଳତା ହେତୁ କ୍ଷେତ୍ରବାସୀ ବୋଧ ହୁଏ ଐଶୀଶକ୍ତି ଉପରେ ନିର୍ଭରଶୀଳ ହୋଇପଡ଼ିଥିଲେ, ଅଧିକରୁ ଅଧିକ ଶ୍ରୀ ଜଗନ୍ନାଥଙ୍କ ସେବାପୂଜାରେ ଧ୍ୟାନ ଦେଉଥିଲେ । ଆପଣା ବାସଗୃହରେ ଜଗନ୍ନାଥ ବିଗ୍ରହ ସ୍ଥାପନା କରି ବିଧିବଦ୍ଧ ଭାବେ ଦେବନୀତି ପାଳନ କରୁଥିଲେ । ଫଳରେ ତାଙ୍କର ସାହିତ୍ୟ କର୍ମରେ ଭଟ୍ଟା ପଡ଼ି ଆସିଲା । ଓଡ଼ିଆ ଗବେଷଣା ପରିଷଦ କାର୍ଯ୍ୟ ଶିଥିଳ ହୋଇ ପଡ଼ିଲା । ମୁଁ ଚଣ୍ଡାଳ ସେତେବେଳେ ତାଙ୍କର ଏ ଶକ୍ତିକ୍ଷୟ ହୃଦୟଙ୍ଗମ କରି ନ ପାରି ବିରକ୍ତ ହେଉଥିଲି । ଗବେଷଣା ପରିଷଦର କାର୍ଯ୍ୟ ପୂର୍ବ ପରି ଠିକ୍ ଭାବରେ ଚାଲୁ ନାହିଁ ଲକ୍ଷ୍ୟ କରି କାର୍ଯ୍ୟକାରୀ ସମିତି ବୈଠକରେ ଥରେ ମୁଁ ସଭାପତି ପଦରୁ ଓହରି ଆସିବାକୁ ଅଡ଼ି ବସିଥିଲି । ବର୍ତ୍ତମାନ ସେ କଥା ଭାବିଲେ, ପ୍ରାଣରେ ବଡ଼ ପୀଡ଼ା ଅନୁଭବ କରୁଛି । ଯାହା ହେଉ, କ୍ଷେତ୍ରବାସୀଙ୍କ ଦୁର୍ଗତିର ଚରମ ପରିଣତି ହେଲା - ସିରୋସିସ୍ ଅଫ୍ ଲିଭର୍ । ଜଗନ୍ନାଥେ ତାଙ୍କୁ ରକ୍ଷା କରିପାରିଲେ ନାହିଁ । ପରିବାରର ସମସ୍ତ ଦାୟିତ୍ୱ ପତ୍ନୀଙ୍କ ଉପରେ ଲଦି ଦେଇ ଏବଂ ଗବେଷଣା ପରିଷଦର ଗୁରୁଭାର ଆମ ଉପରେ ଛାଡ଼ି ଦେଇ ୧୯୮୬ ମସିହାରେ ସେ ଗତାସୁ ହୋଇଗଲେ । ତାଙ୍କର ଏ ଅକାଳ ମୃତ୍ୟୁ କେବଳ ଆମକୁ ନୁହେଁ, ସମସ୍ତ ସାହିତ୍ୟ ଜଗତ୍‌କୁ ବ୍ୟସ୍ତ ବ୍ୟାକୁଳ କରି ପକାଇଥିଲା ।

ତାଙ୍କର କିଛି କୁଅଭ୍ୟାସ ନ ଥିଲା; ତାମ୍ବୁଳ ସେବା ବ୍ୟତୀତ ମୋ ଜାଣିବାରେ ସେ ଶରୀର ଉପରେ ଅନ୍ୟ କିଛି ଅନାଚାର କରୁ ନଥିଲେ । ନୀତିନିଷ୍ଠ ସାଧୁ ଜୀବନଚର୍ଯ୍ୟା । ତଥାପି ତାଙ୍କର ମାତ୍ର ସତଚାଳିଶ ବର୍ଷର କର୍ମମୟ ଜୀବନର ଏପରି ହୃଦୟବିଦାରକ ପରିସମାପ୍ତି କିପରି ଘଟିଲା, ବୁଝି ହୁଏ ନାହିଁ । ବିଶ୍ୱପ୍ରକୃତିର ଏହା ବିଚିତ୍ର ବିଡ଼ମ୍ବନା ନୁହେଁ ତ ଆଉ କ'ଣ ? ଭାସ୍କର ଦାସ ଗଲା, ନିତ୍ୟାନନ୍ଦ ପତି ଗଲା, ଗଲା କ୍ଷେତ୍ରବାସୀ ନାୟକ, ବୟସ୍କ ଶିକ୍ଷକ ବଞ୍ଚି ଥାଉଁ ଥାଉଁ ଯୁବଛାତ୍ରମାନଙ୍କର ଜୀବନାବସ୍ଥାନ ବଡ଼ ମର୍ମଘାତୀ - ବଡ଼ ଦୁର୍ବିସହ ।

'ଓଡ଼ିଆ ଗବେଷଣା ପରିଷଦ' ସେତେବେଳକୁ ମାତ୍ର ଛଅ ବର୍ଷର ଶିଶୁ । ଏହି ଦୁଗ୍ଧପୋଷ୍ୟ ଶିଶୁର ଲାଳନପାଳନ ଦାୟିତ୍ୱ କ୍ଷେତ୍ରବାସୀ ଆମ ଉପରେ ନ୍ୟସ୍ତ କରି ଚାଲିଗଲେ । ଏବେ ଏହି ପ୍ରତିଷ୍ଠାନଟି ଯେ ତିରିଶ ବର୍ଷର ଏକ ସମର୍ଥ ଯୁବକରେ ପରିଣତ ହୋଇଛି, ତାହା ତାଙ୍କ କର୍ମନିଷ୍ଠା ଓ ଅଧ୍ୟବସାୟର ଅନୁପ୍ରେରଣା ବ୍ୟତୀତ ଆଉ କ'ଣ ହୋଇପାରେ ?

କଟକ-୭୫୩୦୧୨ **କୃଷ୍ଣଚରଣ ବେହେରା**
୧୫.୧.୨୦୧୦ ସଭାପତି, ଓଡ଼ିଆ ଗବେଷଣା ପରିଷଦ



# କ୍ଷେତ୍ରବାସୀ ଇତିହାସ

**ଅସିତ ମହାନ୍ତି ଓ ପ୍ରଦୀପ୍ତ ଶ୍ରୀଚନ୍ଦନ**

**ସେ** ଫୁଲକୁ ଭଲ ପାଉଥିଲେ । ଫୁଲଟି ଯେଉଁ ରଙ୍ଗର ହେଉ ବା ଯେଉଁଠି ଫୁଟିଥାଉ, ତାହା ତାଙ୍କ ପାଇଁ ବଡ଼ କଥା ନଥିଲା । ବଡ଼ କଥା ଥିଲା ଫୁଲଟିର ମହକ । କେବଳ ଫୁଲ ନୁହେଁ; ପୃଥିବୀର ଛୋଟବଡ଼ ଯେ କୌଣସି ବସ୍ତୁ ହେଉ, ତା' ଭିତରେ ଯଦି କିଛି ଭଲଗୁଣ ସେ ଦେଖୁଥିଲେ, ତାହା ହୋଇଯାଉଥିଲା ତାଙ୍କର ଅତୀବ ପ୍ରିୟ-ପ୍ରିୟତମ । ସେଥିପାଇଁ ନିଜର ବନ୍ଧୁମାନଙ୍କୁ ଚିଠି ଲେଖିଲାବେଳେ ସେ ପ୍ରାୟତଃ ସମ୍ବୋଧନ କରୁଥିଲେ 'ପ୍ରିୟତମ' ବୋଲି ଓ ସର୍ବୋପରି ଭଲ ପାଉଥିଲେ ମଣିଷକୁ । ସେ ମଣିଷଟି ଯେଉଁ ଜାତି, ଗୋତ୍ର, ବର୍ଣ୍ଣ, ପରିବାର ବା ପରିବେଶର ହେଉ, କିଛି କଥା ନାହିଁ; କିନ୍ତୁ ତା'ର ପ୍ରଥମ ଓ ପ୍ରଧାନ ବିଶେଷତ୍ୱ ହେଉଛି ତାର ମଣିଷପଣିଆ । ତାର ଭଲ ଗୁଣ, ତା'ର ମହକ । ସଂକ୍ଷେପରେ କହିଲେ, ଫୁଲର ମହକ ପରି, ମଣିଷର ମହକ ଥିଲା ତାଙ୍କର ପ୍ରିୟ ଜିନିଷଗୁଡ଼ିକ ମଧ୍ୟରେ ପ୍ରିୟତମ ଓ ସେ ନିଜେ ହିଁ ଥିଲେ ଜଣେ ମହକଭରା ପ୍ରିୟତମ ମଣିଷ ।

ରୋଗା ଦୁର୍ବଳ ସ୍ୱାସ୍ଥ୍ୟ ହେତୁ ପିଲାଦିନେ ଡାକନାମ ଥିଲା 'ଶୁକୁଟା' । ମାତ୍ର ଜାତକରେ ଶ୍ରଦ୍ଧା ନାମ ରହିଥିଲା କ୍ଷେତ୍ରବାସୀ । କିନ୍ତୁ ପରେ ଯେତେବେଳେ ତାଙ୍କୁ ଓଡ଼ିଶାରେ ସମସ୍ତେ ଜାଣିବାକୁ ଆରମ୍ଭ କଲେ, ସେତେବେଳକୁ ସେ ଆଉ 'ଶୁକୁଟା' ବା କେବଳ 'କ୍ଷେତ୍ରବାସୀ' ହୋଇ ନାହାନ୍ତି; ସେତେବେଳକୁ ସେ ହେଲେଣି ଡକ୍ଟର କ୍ଷେତ୍ରବାସୀ ନାୟକ - ଓଡ଼ିଶାର ବୁଦ୍ଧିଜୀବୀମାନଙ୍କ ଭିତରୁ ଜଣେ ଓ ଜଣେ ଜଣାଶୁଣା ବ୍ୟକ୍ତି ।

ଜନ୍ମ ୧୯୩୯ ମସିହାରେ ଭଦ୍ରଖ ସହରର ବଙ୍କ ସାହିରେ । ସେତେବେଳେ ଭଦ୍ରଖ ହାଇସ୍କୁଲ ପଛପଟକୁ କଚେରୀ ପାଖାପାଖି ଏଇ ବଙ୍କ ସାହିରେ ଥିଲା ତାଙ୍କର ଗୋଟିଏ ଜୀର୍ଣ୍ଣଶୀର୍ଣ୍ଣ ଛୋଟ ନୁଆଁଣିଆ ଚାଳଛପର ଘର ଏବଂ ସେଇ ଅନ୍ଧାରୁଆ ଛୋଟ ଚାଳଛପର ଘରେ ଏକ ଉଜ୍ଜ୍ୱଳ ଶରତ ସକାଳେ ଜନ୍ମଗ୍ରହଣ କରିଥିଲେ କ୍ଷେତ୍ରବାସୀ । ଇଂରାଜୀ ତାରିଖ ଅନୁଯାୟୀ ସେ ଦିନଟି ଅକ୍ଟୋବର ୪, ୧୯୩୯ ଓ ଓଡ଼ିଆ ତିଥି ନକ୍ଷତ୍ର ଅନୁଯାୟୀ ସେଇ ଦିନଟି ଆଶ୍ୱିନ କୃଷ୍ଣଷଷ୍ଠୀ ବା ଗଜଷଷ୍ଠୀ ।

ଜନ୍ମନାଡ଼ ଭଲ ଭାବରେ ନଶୁଖୁଣୁ, ଅର୍ଥାତ୍ ମାତ୍ର ମାସେ ଅଠର ଦିନର ହୋଇଥିଲାବେଳେ ସେ ହୋଇଗଲେ ମା' ଛେଉଣ୍ଡ । କୁହାଯାଏ ସେ କୁଆଡ଼େ ମାଆଙ୍କର ମୁଖ ଦର୍ଶନ କରିଥିଲେ ଶ୍ମଶାନରେ । ଉପରକୁ କେହି ନାହିଁ କି ତଳକୁ କେହି ନାହିଁ; ସେ

ଥିଲେ ତାଙ୍କ ବାପାଙ୍କର ଦ୍ୱିତୀୟ ପକ୍ଷ ସ୍ତ୍ରୀଙ୍କର ଏକମାତ୍ର ସନ୍ତାନ । ତାଙ୍କର ଜନ୍ମ ବେଳକୁ ପୁଣି ପରିବାର ବୋଇଲେ-ଥିଲା ଜେଜେ ବାପା, ବାପା ଓ ପିଉସୀ ମା' ଓ ସେ ନିଜେ- ଏମିତି ମାତ୍ର ସାଢ଼େ ତିନିଜଣର ସଂସାର ।

ଭାରତ ସ୍ୱାଧୀନ ହେବାର ପ୍ରାୟ ଗୋଟିଏ ଦଶନ୍ଧି ପୂର୍ବରୁ ଓଡ଼ିଶାରେ ଅଳ୍ପବୟଃ-ବିବାହ ଏକ ସାଧାରଣ ଘଟଣା ଥିଲା । ତେଣୁ ତାଙ୍କ ପିତାଙ୍କର ବିବାହ ହୋଇଥିଲା ମାତ୍ର ୧୯ ବର୍ଷ ବୟସରେ ଓ ବିବାହର ବର୍ଷେ ନ ପୁରୁଣୁ ସେ ହରାଇଥିଲେ ତାଙ୍କର ପ୍ରଥମା ପତ୍ନୀଙ୍କୁ । ପ୍ରଥମା ପତ୍ନୀଙ୍କ ବିୟୋଗର ପ୍ରାୟ ବର୍ଷେ ପୂରିଲା ବେଳକୁ ସେ ପୁନର୍ବିବାହ କରିଥିଲେ ଓ ତାଙ୍କୁ ଯେତେବେଳେ ମାତ୍ର ୨୧ ବର୍ଷ ସେତେବେଳକୁ ଜନ୍ମ ହୋଇଥିଲେ କ୍ଷେତ୍ରବାସୀ ।

ଏହା ହୁଏତ ଏକ ଆକସ୍ମିକ ଯୋଗାଯୋଗ ହୋଇପାରେ- ମାତ୍ର ଜେଜେବାପା ଥିଲେ ଅତ୍ୟନ୍ତ ଧର୍ମପରାୟଣ । ମାତୃ ମାସେ ଅଠର ଦିନର ହୋଇଥିଲାବେଳେ ଯେତେବେଳେ ସେ ମା' ଛେଉଣ୍ଡ ହୋଇଗଲେ ସେତେବେଳେ ସମସ୍ତେ ତାଙ୍କ ବଞ୍ଚିବାର ଆଶା ଛାଡ଼ି ଦେଲେ । ଏକେ ତ ସେ ଥିଲେ ଖୁକୁଟା ଓ ରୋଗା, ପୁଣି ଦୁଜେ ହେଲେ ମାତୃ ସ୍ତନ୍ୟପାନରୁ ବଞ୍ଚିତ । ସେ ବଞ୍ଚିବେ କେମିତି ? ଈଶ୍ୱରଙ୍କ ବିଧାନ କିନ୍ତୁ ଥିଲା ଅନ୍ୟରକମ । ୧୨ ବର୍ଷ ବୟସରେ ବିବାହ ହୋଇଥିଲା ତାଙ୍କ ପିଉସୀ ମା'ଙ୍କର ଓ ବର୍ଷେ ପୁରୁଣୁ ନ ପୁରୁଣୁ ସେ ନିଃସନ୍ତାନ ଥାଇ ବିଧବା ହୋଇଯାଇଥିଲେ । ଫଳରେ କ୍ଷେତ୍ରବାସୀଙ୍କ ଜନ୍ମର ଆଖପାଖ ସମୟକୁ ସେ ମନ ପରିବର୍ତ୍ତନ ପାଇଁ ଆସି ରହୁଥିଲେ ଭଦ୍ରଖରେ । ତେଣୁ କ୍ଷେତ୍ରବାସୀଙ୍କ ଜନ୍ମର ଅଳ୍ପ କିଛି ଦିନ ଭିତରେ ଦ୍ୱିତୀୟା ଭାଉଜଙ୍କ ମୃତ୍ୟୁ ଘଟନ୍ତେ କ୍ଷେତ୍ରବାସୀଙ୍କ ଲାଳନପାଳନର ସଂପୂର୍ଣ୍ଣ ଦାୟିତ୍ୱ ଆସି ପଡ଼ିଲା ତାଙ୍କ ଉପରେ ଏବଂ ନିଆଶ୍ରୀକୁ ଦଇବ ସାହା ହେଲା ପରି ସେ ମା' ଛେଉଣ୍ଡଟିକୁ ଅପତ୍ୟ ସ୍ନେହରେ ଆଦରି ନେଇ ବୈଧବ୍ୟ ଦୁଃଖ ଭୁଲିଯିବାକୁ ଚେଷ୍ଟା କଲେ । କହିବା ବାହୁଲ୍ୟ, ତା' ପରଠାରୁ ପିଉସୀ ମା' ଆଉ ଶାଶୁଘରକୁ ଫେରିନାହାନ୍ତି ।

ପ୍ରାୟ ଅର୍ଦ୍ଧଶତାବ୍ଦୀ ତଳର ଘଟଣା ଏସବୁ ଏବଂ କାହିଁ କେଉଁ ଦିନରୁ କ୍ଷେତ୍ରବାସୀଙ୍କ ଜେଜେବାପା କୁଆଡ଼େ ମରିହଜି ଗଲେଣି । କିନ୍ତୁ ଏବେ ତାଙ୍କ ବାପାଙ୍କୁ ପଚାରିବାରେ ସେ କହନ୍ତି - "ପିଲାଦିନୁ ତା'ର ମା' ମରିଯିବା ପରେ ବାପା ଓ ମୁଁ ତାକୁ ଜଗନ୍ନାଥଙ୍କୁ ସମର୍ପି ଦେଇଥିଲୁ । ତେଣୁ ତାର ନାଁ ରଖିଥିଲୁ କ୍ଷେତ୍ରବାସୀ ।"

ଜଗନ୍ନାଥ ଅପାର କରୁଣାର ସେ ବଞ୍ଚିଲେ ଏବଂ ଜଗନ୍ନାଥଙ୍କ ନାମ ଟେକ ରଖିଲେ ପରବର୍ତ୍ତୀ କାଳରେ । ତେଣୁ ପରବର୍ତ୍ତୀ କାଳରେ ତାଙ୍କୁ ଯେଉଁମାନେ ଜାଣିଛନ୍ତି -

ଜାଣିଛନ୍ତି ଜଣେ ସାହିତ୍ୟିକ ଓ ସଂଗଠକ ଭାବରେ ଏବଂ ଜାଣିଛନ୍ତି ଜଗନ୍ନାଥଙ୍କର ଜଣେ ତଦ୍‌ଗତ ଭକ୍ତ ଭାବରେ । ତେବେ ଏ ପ୍ରସଙ୍ଗ ବାରାନ୍ତରେ ଆଲୋଚ୍ୟ ।

ଆଶ୍ୱିନ କୃଷ୍ଣ ଷଷ୍ଠୀ ଦିନ ସେ ଯେଉଁ ଲଗ୍ନରେ ଭୂମିଷ୍ଠ ହୋଇଥିଲେ ସେ ଲଗ୍ନର ଗ୍ରହାବସ୍ଥିତି ଆଦି ଗଣନା କରି ଜ୍ୟୋତିଷମାନେ ନିର୍ଦ୍ଧାରଣ କରିଥିଲେ ଯେ - କ୍ଷେତ୍ରବାସୀଙ୍କର ରାଶି ହେଉଛି ବୃଷ ଏବଂ ଫଳିତ ଜ୍ୟୋତିଷ ଅନୁଯାୟୀ ତାଙ୍କର ଜନ୍ମ ଲଗ୍ନରେ ଗ୍ରହ ନକ୍ଷତ୍ରାଦିର ଅବସ୍ଥିତିକୁ ବିଶ୍ଳେଷଣ କରି କହିଥିଲେ - ଏ ଦାସୀ ପୁତ୍ର ଘୋଡ଼ା ଚଢ଼ିବ । ଅର୍ଥାତ୍ ଦାରିଦ୍ର୍ୟ, ଦୁଃସ୍ଥିତି ଓ ଅନଟନ ଭିତରେ ଭୂମିଷ୍ଠ ଓ ଲାଳିତ ହେଲେ ହେଁ ଏ ପିଲା ନିଜ ଶିଙ୍ଗରେ ମାଟି ତାଡ଼ିବ ଓ ନିଜ ହାତରେ ଚଉଦ ପା' ହବ ।

ଜ୍ୟୋତିଷମାନଙ୍କର ଏହି ଭବିଷ୍ୟତବାଣୀ କ୍ଷେତ୍ରବାସୀଙ୍କୁ ଭାଗ୍ୟବାଦୀ କରିଥିଲା ଯେତିକି ସେତିକି ମଧ କରିଥିଲା ଆତ୍ମ-ପ୍ରତ୍ୟୟୀ ଓ ଈଶ୍ୱର ବିଶ୍ୱାସୀ । ସେ ଏଥିରୁ ପ୍ରେରଣା ବି ପାଉଥିଲେ ପ୍ରଚୁର । କହିବାକୁ ଗଲେ, ତାଙ୍କର ଈଶ୍ୱର ବିଶ୍ୱାସ ଓ ଜାଗତିକ ସ୍ଥିତି ଆତ୍ମଜ୍ଞାନ ନିୟନ୍ତ୍ରିତ ହୋଇଥିଲା ଏହି ବିଶ୍ୱାସ, ପ୍ରତ୍ୟୟ ଓ ପ୍ରେରଣା ଦ୍ୱାରା । ଏ ପ୍ରସଙ୍ଗରେ ତାଙ୍କର ଧର୍ମପତ୍ନୀ ଡକ୍ଟର ଲାବଣ୍ୟ ନାୟକ କୁହନ୍ତି - "ମୋର ଧାରଣା, ଠାକୁରଙ୍କୁ ଭଲ ପାଇବା ଥିଲା ତାଙ୍କର ଏକ ସହଜାତ ଗୁଣ । ପୂର୍ବରୁ ସେ ଥିଲେ ଚଣ୍ଡୀଭକ୍ତ ଓ ପରେ ବେଶି ଘନିଷ୍ଠ ହେଲେ ଜଗନ୍ନାଥଙ୍କ ପ୍ରତି । ସେ ଯେଉଁପରି ଭାବରେ ଜଗନ୍ନାଥଙ୍କୁ ପୂଜା କରୁଥିଲେ ତାହା ତାଙ୍କ ପରିବାରର ପ୍ରଭାବ ବୋଲି ମନେ ହୁଏ ନାହିଁ । ଥରେ ମୁଁ ତାଙ୍କୁ ଏକଥା ପଚାରିଥିଲି ଓ ସେ ମତେ କହିଥିଲେ ଯେ, "ମୋର ସ୍ୱତଃ ଗୋଟେ ଅବବୋଧ ଆସେ । ଆଗ୍ରହ ଜନ୍ମେ । ଶ୍ରଦ୍ଧା ଲାଗେ । ମୁଁ କରେ ।"

କ୍ଷେତ୍ରବାସୀଙ୍କ ବାପା ଥିଲେ ଭଦ୍ରଖ କଲେଜର ଏକ ଚତୁର୍ଥ ଶ୍ରେଣୀ କର୍ମଚାରୀ । କହିବାକୁ ଗଲେ, ପିଉସୀ ମା' ହୁଅନ୍ତୁ ବା ବାପା ହୁଅନ୍ତୁ – ଉଭୟେ ଥିଲେ ଆପାତତଃ ନିରକ୍ଷର । ତଥାପି କର୍ତ୍ତବ୍ୟ ଓ ଦାୟିତ୍ୱବୋଧର ଦାୟରେ କ୍ଷେତ୍ରବାସୀଙ୍କୁ ସେମାନେ ପାଠ ପଢ଼ାଇଲେ । ସାଧାରଣ ଭାବେ ପ୍ରାଥମିକ ଶିକ୍ଷା ଆରମ୍ଭ ହେଲା ଚାଟଶାଳୀରୁ ଏବଂ ପରେ ଭଦ୍ରଖ ହାଇସ୍କୁଲ ଓ ଭଦ୍ରଖ କଲେଜରୁ ଯଥାକ୍ରମେ ସେ ସମାପ୍ତ କରିଥିଲେ ତାଙ୍କର ଉଚ୍ଚ ମାଧ୍ୟମିକ ଓ ସ୍ନାତକ ଶିକ୍ଷା ।

୧୯୬୩ ମସିହାରେ ରେଭେନ୍‌ସା କଲେଜରୁ ଓଡ଼ିଆରେ ଏମ୍.ଏ ପାସ୍ କଲେ ସେ । ତା' ପରେ ବି ତାଙ୍କର ଇଚ୍ଛା ଥିଲା ପାଠ ପଢ଼ିବା ପାଇଁ । ଏ ସଂପର୍କରେ ତାଙ୍କ ବଡ଼ ଝିଅ ଲିପି କୁହେ - "ଏମ୍. ଏ. ପାସ୍ କଲା ପରେ ବାପା କିଛିଦିନ ଲ' ପଢୁଥିଲେ । ମାତ୍ର ସେ ପଢ଼ା ତାଙ୍କୁ ଭଲ ଲାଗିଲା ନାହିଁ । ସେ ଲ' ପଢ଼ିବା ଛାଡ଼ିଦେଲେ ।"

ସତ୍ୟ ଅବଶ୍ୟ; ଅଦୂର ଭବିଷ୍ୟତରେ ଯାହାଦ୍ୱାରା ଓଡ଼ିଶାର ସାହିତ୍ୟ ସମୃଦ୍ଧ ହେବା ଥିଲା ଅବଧାରିତ - ସେ ଓକିଲ ହୋଇ ସାମାଜିକ ନୀତି-ଅନୀତିର ମୀମାଂସା କରିଥାନ୍ତେ ବା କେମିତି ?

ଭଦ୍ରଖ ହାଇସ୍କୁଲ ଓ ଭଦ୍ରଖ କଲେଜରେ ଅଧ୍ୟୟନ କାଳ କ୍ଷେତ୍ରବାସୀଙ୍କର ସାରସ୍ୱତ ଜୀବନର ଭିତ୍ତି ଓ ଉନ୍ମେଷ କାଳ । ୧୯୫୬ ରେ ଭଦ୍ରଖ ହାଇସ୍କୁଲରୁ ଉଚ୍ଚଇଂରାଜୀ ଶିକ୍ଷା ସମାପ୍ତ କରିବା ପରେ ସେ ଆସି ନାମ ଲେଖାନ୍ତି ଭଦ୍ରଖ କଲେଜରେ ଏବଂ କ୍ରମେ ତାଙ୍କର ପରିଚୟ ଓ ଘନିଷ୍ଠତା ହୁଏ ପୂର୍ବତନ ରାଜସ୍ୱ ମନ୍ତ୍ରୀ ଶ୍ରୀ ଯୁଗଳ କିଶୋର ପଟ୍ଟନାୟକଙ୍କ ସହ । ଅତୀତ ଛାତ୍ର ଜୀବନର ସେଇ ସ୍ମୃତିଚାରଣ କରି ଯୁଗଳ ବାବୁ କୁହନ୍ତି - "କ୍ଷେତ୍ରବାସୀ ସହ ମୋର ସଂପର୍କ ପ୍ରାୟ ୧୯୫୬ ପରବର୍ତ୍ତୀ । ମୁଁ ଥିଲି ବି.ଏମ୍. ହାଇସ୍କୁଲର ଛାତ୍ର ଓ ସେ ଭଦ୍ରଖ ହାଇସ୍କୁଲର ଛାତ୍ର । 1st year Arts ରେ ନାଁ ଲେଖେଇଲୁ । କଲେଜରେ ପଢ଼ିଲା ପରେ ଆମର ପରିଚୟ ହେଲା । ସେତେବେଳେ ଆମେ ଥାଉ Students Organisation ର ସଭ୍ୟ । ତେଣୁ ଆମେ କ୍ରମେ ପରସ୍ପରର ଚିହ୍ନା ହୋଇ ଯାଇଥିଲୁ । ସେଇଦିନଠାରୁ ସେ, ମୁଁ, ଆଉ ରତ୍ନାକର ବାରିକ ଯେ କି ଚଣ୍ଡିକା ହାଇସ୍କୁଲର ହେଡ୍‌ମାଷ୍ଟର ଭାବେ ଅବସର ଗ୍ରହଣ କରିଛନ୍ତି - ଆମ ତିନିଜଣଙ୍କର ଘନିଷ୍ଠତା । ସେତେବେଳେ ଆମକୁ ସମସ୍ତେ ତ୍ରିନାଥ ବୋଲି କହୁଥିଲେ । ତିନିହେଁ ଥିଲୁ ଅଦ୍ଭୁତ ସମାହାର । କ୍ଷେତ୍ରବାସୀ ଧୀର, ସ୍ଥିର, ଶାନ୍ତ । ସେ କେବେ ନିଜକୁ ପ୍ରକାଶ କରେନି । ତେଣୁ ତା' ଭିତରେ କି ପ୍ରତିଭା ଅଛି କେହି ଜାଣୁ ନଥିଲେ ।"

କ୍ଷେତ୍ରବାସୀଙ୍କୁ ପରବର୍ତ୍ତୀ କାଳରେ ଯେଉଁମାନେ ଜାଣିଛନ୍ତି ସେମାନଙ୍କୁ ଜଣାଇବା ଅନାବଶ୍ୟକ ଯେ- ମୃତ୍ୟୁ ଯାବତ୍ ସେ ଥିଲେ ସେଇ ପରି ଧୀର, ସ୍ଥିର ଓ ଶାନ୍ତ । ଆର୍ଥିକ ଅସ୍ୱଚ୍ଛଳତା ଓ ଅନଟନ ତାଙ୍କୁ ହୀନମନ୍ୟକରି ନଥିଲା - ବରଂ ବରଦାନ ଦେଇଥିଲା ବିନମ୍ରତା । ତେଣୁ ସେ ଦାରିଦ୍ର୍ୟ ପାଇଁ ସେ କାହାକୁ କେବେହେଲେ ଦାୟୀ କରି ନାହାନ୍ତି ବା ତାଙ୍କ ମନରେ ସେଥିପାଇଁ କେବେ ହୀନମନ୍ୟତା ଜାତ ହୋଇ ନାହିଁ । ଏ ସଂପର୍କରେ ତାଙ୍କର ଛାତ୍ର ଜୀବନର ଅନ୍ତରଙ୍ଗ ବନ୍ଧୁ ଯୁଗଳ ବାବୁ କହନ୍ତି - " କ୍ଷେତ୍ରବାସୀ ପରିବାରର ଆର୍ଥିକ ସ୍ଥିତି ଥିଲା ନିମ୍ନମାନର । ତେଣୁ ସେ ବହୁତ କଷ୍ଟରେ ଚଳେ । ଷ୍ଟୁଡେଣ୍ଟ୍ କିନ୍ତୁ ବହୁତ ଭଲ ଥିଲା । ସେ କୌଣସି ଅଭାବକୁ mind କରେନି । ପଇସାପତ୍ର ଅସୁବିଧାରୁ ବାହାରେ ପ୍ରାୟ କିଛି ଖାଏନି । ଏପରିକି ପ୍ୟାଣ୍ଟସାର୍ଟ ପିନ୍ଧିବାରେ ବି ବରାବର ଅଭାବ । କିନ୍ତୁ ଦରିଦ୍ର ଓ ମେଧାବୀ ଛାତ୍ର ହେତୁ ସ୍କୁଲରୁ ବରାବର ଛାତ୍ର ପାଉଥିଲା । ନିଜକୁ ନିଜେ ସଂକୁଚିତ ହୋଇ ରୁହେ, କିନ୍ତୁ ଆମକୁ ଜଣେଇବାକୁ ଚାହେଁନି । ତା'ର ସବୁବେଳେ

ଆଗକୁ ଯିବାକୁ ଇଚ୍ଛା ଥାଏ, ପ୍ରଚେଷ୍ଟା ଥାଏ; କିନ୍ତୁ ମନରେ କେମିତି ଗୋଟାଏ ସନ୍ତର୍ପଣ ଭାବ । କିନ୍ତୁ ଗୋଟିଏ କଥା - ସେ ଥିଲା ଖୁବ୍ ସିନ୍‌ସିଅର । ମୁଁ କେବେ ଭାବେନି ଯେ ସେ ଗରିବ । ସେ ମଧ୍ୟ କେବେ ଅନୁଭବ କରେନି ଯେ ସେ ଗରିବ । ମୁଁ କିନ୍ତୁ ଥିଲି ଓଲଟା । ତେଣୁ ପ୍ରକୃତରେ କହିଲେ, ତାର ଲାଜକୁଳା ସନ୍ତର୍ପଣ ଭାବ ଓ ମୋର Activeness - ଆମ ଦୁହିଁଙ୍କ ବ୍ୟକ୍ତିତ୍ୱର ଏଇ ବୈପରୀତ୍ୟ ଚୁମ୍ବକର ଦୁଇ ବିଷମ ମେରୁ ପରି ଆମକୁ ପରସ୍ପରର ନିକଟତର କରି ଦେଇଥିଲା ।"

ଆଜିପରି, ସେତେବେଳେ ବି ଭଦ୍ରଖ ଥିଲା ସାହିତ୍ୟ-ସଂସ୍କୃତିର ଏକ ପୀଠଭୂମି । ବି.ଏ ପଢ଼ିଲାବେଳେ, ସେଠାରୁ ପ୍ରକାଶ ପାଉଥିବା ପତ୍ରିକା 'ପଲ୍ଲୀ ଭାରତୀ' ଓ ସାହିତ୍ୟ ସମାଜର ପତ୍ରିକା 'ଅର୍ଘ୍ୟ'ରେ ପ୍ରାୟତଃ ଲେଖା ଲେଖି କରୁଥିଲେ କ୍ଷେତ୍ରବାସୀ । ଛାତ୍ର ସଂଘର ସଂଗଠନ କାର୍ଯ୍ୟ ଓ ଯଥାସାଧ୍ୟ ସାହିତ୍ୟ- ସାଧନା, ଉଭୟ କାର୍ଯ୍ୟ ସମାନୁପାତିକ ଭାବରେ ଚାଲିଥିଲା । କୌଣସିଟି କୌଣସିଟିର ପରିପନ୍ଥୀ ନୁହେଁ, ବରଂ ପ୍ରତିଟି ପ୍ରତିଟିର ଅନୁପୂରକ । କ୍ଷେତ୍ରବାସୀ ନାୟକଙ୍କର ପରବର୍ତ୍ତୀ ଜୀବନ-ଚର୍ଯ୍ୟାର ବିଶଦ ଇତିବୃତ୍ତ ଯେଉଁମାନେ ଜାଣିଛନ୍ତି, ସେମାନେ ନିଶ୍ଚୟ ଏକମତ ହେବେ ଯେ - ଏଇ ଉଭୟ କାର୍ଯ୍ୟ -ସଂଗଠନ ଓ ସାହିତ୍ୟ ସାଧନା-ଶେଷ ପର୍ଯ୍ୟନ୍ତ ସେ ଅବ୍ୟାହତ ରଖିଥିଲେ । ଅତୀତ ଜୀବନର ସେଇ ଅନୁଦ୍‌ଘାଟିତ ଅଧ୍ୟାୟ ଉପରେ ଆଲୋକପାତ କରି ଯୁଗଳ ବାବୁ କୁହନ୍ତି - "ଭଦ୍ରଖ, ବାଲେଶ୍ୱର ଓ କଟକ - ଏକାଠି ହୋଇ ଆମେ ସବୁ ଜାଗାକୁ ଯାଉ । ଛାତ୍ର ସଂଘ କାମ, ଡିବେଟ୍ ଆଲୋଚନା, ସବୁଥିରେ ଭାଗ ନେଉଥାଉ । ସେତେବେଳେ ଆମେ ଦ୍ୱିତୀୟ ବର୍ଷ କଳାର ଛାତ୍ର । ସେତେବେଳେ ଛାତ୍ର ସଂଘର ମୁଖପତ୍ର 'ରଶ୍ମି'ର ସଂପାଦନା ଦାୟିତ୍ୱ ମଧ୍ୟ ନେଇଥାଉ । ତା'ର ପ୍ରଥମ ସଂଖ୍ୟା ଭଦ୍ରଖରୁ ଛପା ହେଲା ଓ ପରବର୍ତ୍ତୀ ସଂଖ୍ୟା ଛପା ହେଲା କଟକ ପ୍ରଜାତନ୍ତ୍ର ପ୍ରେସ୍‌ରେ । ପରେ ଅବଶ୍ୟ ଅକ୍ଷୟ ପଣ୍ଡା, ରମେଶ ଧଳ ପ୍ରଭୃତି ଆସିଲେ; ମାତ୍ର ସାହିତ୍ୟିକ କାର୍ଯ୍ୟକଳାପରେ ଆମେ ସବୁବେଳେ ଆଗୁଆ ଥାଉ । ଭଦ୍ରଖରେ ଆମର ଖୁବ୍ ସାହିତ୍ୟ ଆଲୋଚନା ହୁଏ । କ୍ଷେତ୍ରବାସୀ ସବୁବେଳେ ଆଗୁଆ ଥାଏ । ଗଳ୍ପ, କବିତା ଓ ପ୍ରବନ୍ଧ ସବୁ ଲେଖାଯାଏ, ଆମର ତ ଆଉ କିଛି Media ନଥାଏ । ତେଣୁ ଏକାଠି ବସି ଜଣେ ପଢ଼ିବ- ଅନ୍ୟମାନେ ଶୁଣିବେ । ଆଲୋଚନା ହେବ । ଏହା ଥିଲା ଆମର କାମ ।"

ଭଦ୍ରଖର ଏଇ ପ୍ରତିଶ୍ରୁତିପୂର୍ଣ୍ଣ ଛାତ୍ର ଜୀବନ ପର୍ବରେ ଡକ୍ଟର କୃଷ୍ଣ ଚରଣ ବେହେରାଙ୍କ ସହ ପରିଚୟ ହୋଇଥିଲା କ୍ଷେତ୍ରବାସୀଙ୍କର - ଯାହା ତାଙ୍କ ଜୀବନର ଏକ ବିଶେଷ ଘଟଣା । ତା' ପରଠାରୁ ଡକ୍ଟର ବେହେରା ଏକାଧାରାରେ ହେଲେ,

କ୍ଷେତ୍ରବାସୀଙ୍କର ଗୁରୁ, ବନ୍ଧୁ ଓ ବଡ଼ ଭାଇ । ମାଟ୍ରିକ୍ ପାସ କରିବା ପରେ ୧୯୫୬ ରେ କ୍ଷେତ୍ରବାସୀ ଯୋଗ ଦିଅନ୍ତି ଭଦ୍ରଖ କଲେଜରେ ଏବଂ ଆଖପାଖ ସେଇ ସମୟକୁ ଭଦ୍ରଖ କଲେଜରୁ ତାଙ୍କର ଅଧ୍ୟାପକ ଜୀବନ ଆରମ୍ଭ କରନ୍ତି ଡକ୍ଟର ବେହେରା । ସେତେବେଳେ ଭଦ୍ରଖ କଲେଜ ଥିଲା ଏକ ନୂଆ ଧରଣର ଶିକ୍ଷାନୁଷ୍ଠାନ । କଲେଜ ସହ ସଂପୃକ୍ତ ସମସ୍ତ କର୍ମକର୍ତ୍ତା ତଥା ଅଧ୍ୟାପକ ଅଧ୍ୟାପିକାଙ୍କର ମୂଳ ଲକ୍ଷ୍ୟ ଥାଏ ଭଦ୍ରଖ କଲେଜକୁ ଏକ ନୂଆ ଧରଣର ଶିକ୍ଷାନୁଷ୍ଠାନ କରି ଗଢ଼ିବେ । ଶ୍ରୀଯୁକ୍ତ ନରେନ୍ଦ୍ର ପ୍ରସାଦ ଦାସ ଥାଆନ୍ତି କଲେଜର ସେକ୍ରେଟାରୀ ଏବଂ ଡକ୍ଟର ହରେକୃଷ୍ଣ ମହତାବଙ୍କ ପରାମର୍ଶ ଓ ପ୍ରେରଣାରେ କାର୍ଯ୍ୟ ନିର୍ବାହ ହେଉଥାଏ । ସେତେବେଳେ ଛାତ୍ର ଇଉନିଅନ୍‌ର ଉପଦେଷ୍ଟା ରୂପେ କାର୍ଯ୍ୟ କରୁଥାଆନ୍ତି ଡକ୍ଟର ବେହେରା । ତେଣୁ ଛାତ୍ର ସଂଗଠନର କର୍ମୀ ଭାବରେ ଯୁଗଳ କିଶୋର ଓ କ୍ଷେତ୍ରବାସୀଙ୍କ ସହ ପରିଚୟ ହୁଏ ତାଙ୍କର । କ୍ରମେ ଏଇ ପରିଚୟ ଆତ୍ମୀୟତାରେ ପରିବର୍ତ୍ତିତ ହୁଏ ଏବଂ ସାହିତ୍ୟ-ପ୍ରୀତି ସେହି ଆତ୍ମୀୟତାର ଗ୍ରନ୍ଥିକୁ ସୁଦୃଢ଼ କରେ । କ୍ଷେତ୍ରବାସୀଙ୍କର ଘର ତ ଥାଏ ଭଦ୍ରଖ ହାଇସ୍କୁଲ ପଛପଟେ । ତେଣୁ ପ୍ରାୟ ଅଧିକାଂଶ ସମୟରେ ଉଭୟଙ୍କ ମଧ୍ୟରେ ସାକ୍ଷାତ ଆଲୋଚନା ହେଉଥାଏ । ଏ ସଂପର୍କରେ ଡକ୍ଟର ବେହେରା କୁହନ୍ତି - "ସେଇ ଯେ ସଂପର୍କର ଆୟମାରମ୍ଭ ହୋଇଥିଲା, ତାହା ଶେଷ ପର୍ଯ୍ୟନ୍ତ ନିବିଡ଼ ଥିଲା । ସେତେବେଳେ କ୍ଷେତ୍ରବାସୀ ଲେଖାଲେଖି କରୁଥାଏ । ମୁଁ ସେସବୁକୁ ଆବଶ୍ୟକ ମୁତାବକ ସଂଶୋଧନ କରେ । ତାକୁ ଉସ୍‌କାଏ, ଯେପରି ସେ ବୃହତ୍ତର କ୍ଷେତ୍ରରେ ପରିଚିତ ହେବ ।"

ସେ ସମୟରେ ଭଦ୍ରଖର ପରିବେଶ ଥିଲା ବେଶ୍ ସାହିତ୍ୟିକ ଓ ସାଂସ୍କୃତିକ । କଲେଜ ବାହାରେ ମଧ୍ୟ କେତୋଟି ଅନୁଷ୍ଠାନ ବେଶ୍ ସକ୍ରିୟ ଭାବେ କାର୍ଯ୍ୟରତ ଥିଲେ । ସେମାନେ ପ୍ରାୟ ପ୍ରତି ସପ୍ତାହ ବା ପ୍ରତି ପକ୍ଷରେ ନିୟମିତ ଭେଟୁଥିଲେ ଓ ଗଳ୍ପ, କବିତା, ପ୍ରବନ୍ଧ ଆଦି ଆଲୋଚନା କରୁଥିଲେ । ସେତେବେଳେ ଏସବୁ ସହିତ ବେଶ୍ ଆନ୍ତରିକତାର ସହିତ ସହଯୋଗ କରୁଥିଲେ କ୍ଷେତ୍ରବାସୀ । ଏଥି ସହିତ ମିଳିଲା ଡକ୍ଟର ବେହେରାଙ୍କ ଉତ୍ସାହ ଏବଂ କ୍ରମେ ବୃହତ୍ତର କିଛି କରିବା ପାଇଁ ସେ ମନ ବଳାଇଲେ ।

ପୂର୍ବରୁ କୁହାଯାଇଛି ଯେ, ଭଦ୍ରଖ କଲେଜରୁ ସ୍ନାତକ ଶିକ୍ଷା ଶେଷ କରିବା ପରେ କ୍ଷେତ୍ରବାସୀ ଯୋଗ ଦେଇଥିଲେ ରେଭେନ୍‌ସା କଲେଜର ସ୍ନାତକୋତ୍ତର ଓଡ଼ିଆ ଶ୍ରେଣୀରେ । ବସ୍ତୁତଃ ଏଇ ସମୟରୁ ମୁକୁଳିତ ହେବାକୁ ଆରମ୍ଭ କରିଥିଲା କ୍ଷେତ୍ରବାସୀଙ୍କର ସାହିତ୍ୟ ପ୍ରସୂନ । ଏମ୍.ଏ. ଶ୍ରେଣୀରେ ଅଧ୍ୟୟନ କାଳରେ ତାଙ୍କ ଭିତରେ ଅନ୍ତର୍ନିହିତ ପ୍ରତିଭା ଓ ସାରସ୍ୱତ-ସୁବାସର ପରିଚୟ ମିଳିଥିଲା । ଯଥାସମୟରେ ଏମ୍. ଏ. ପରୀକ୍ଷା

ଶେଷ ହେଲା ଓ ବୃହତ୍ତର କ୍ଷେତ୍ରରେ କିଛି କରିବା ପାଇଁ ସେ ପ୍ରବୃତ୍ତ ହେଲେ । ହାତରେ ସେମିତି କିଛି କାର୍ଯ୍ୟ ନଥାଏ; କିନ୍ତୁ ସାରା ଜୀବନ କାମ କରିବା ପାଇଁ ଯେ ସଂକଳ୍ପବଦ୍ଧ, ସେ କର୍ମକୁଣ୍ଠ ହୋଇ ବସି ରହନ୍ତେ ବା କେମିତି ? ତାଙ୍କ ସହିତ ଆସି ମିଶିଲେ ବନ୍ଧୁ ଶୈଳେନ୍ଦ୍ର ମହାପାତ୍ର ଏବଂ ଉଭୟେ ମିଶି ଦିନେ ଯାଇ ପହଞ୍ଚିଗଲେ ଡ଼କ୍ଟର କୃଷ୍ଣଚରଣ ବେହେରାଙ୍କ ଭଦ୍ରଖ ବସାଘରେ । ଉଦ୍ଦେଶ୍ୟ- ପତ୍ରିକାଟିଏ ପ୍ରକାଶ କରିବେ । ସେତେବେଳକୁ କିନ୍ତୁ ସବୁ ଠିକ୍ କରି ରଖିଥିଲେ କ୍ଷେତ୍ରବାସୀ । ଏପରିକି ପତ୍ରିକାର ନାଁ ଟିଏ ବି ବଛା ସରିଥିଲା ଏବଂ ରେଜିଷ୍ଟ୍ରି ପାଇଁ ଦରଖାସ୍ତ ମଧ୍ୟ ଦିଆସରିଥିଲା ।

କ୍ଷେତ୍ରବାସୀ ନାୟକଙ୍କ ସମ୍ପାଦନାରେ ଭଦ୍ରଖରୁ ପ୍ରକାଶ ପାଇଲା 'ଶତରୂପା' ର ପ୍ରଥମ ସଂଖ୍ୟା । ଅନେକେ ହୁଏତ ଜାଣି ନଥିବେ – ଡକ୍ଟର କୃଷ୍ଣ ଚରଣ ବେହେରାଙ୍କ ବହୁ ନିନ୍ଦିତ ଓ ବହୁଚର୍ଚ୍ଚିତ 'ବେଦୀ' ଗଳ୍ପ ପ୍ରଥମେ ପ୍ରକାଶ ପାଇଥିଲା 'ଶତରୂପା'ର ସେହି ପ୍ରଥମ ସଂଖ୍ୟାରେ ୧୯୬୩ ମସିହାରେ । 'ଶତରୂପା'ରେ ପ୍ରକାଶ ପାଇବା ଆଗରୁ 'ବେଦୀ' ଗଳ୍ପ ପ୍ରତ୍ୟାଖ୍ୟାତ ହୋଇସାରିଥାଏ ଓଡ଼ିଶାର ଦୁଇ ଦୁଇଟି ବିଶିଷ୍ଟ ପତ୍ରିକା 'ଡଗର' ଓ 'ଦିଗନ୍ତ'ରୁ । 'ଡଗର'ର ସେତେବେଳକାର ସଂପାଦକ ଥାଆନ୍ତି ନିତ୍ୟାନନ୍ଦ ମହାପାତ୍ର ଓ ମନୋଜ ଦାସ ସଂପାଦନା କରୁଥାନ୍ତି 'ଦିଗନ୍ତ' । କେବଳ ପତ୍ରିକାର ନୁହେଁ ସାହିତ୍ୟିକ ତଥା ସଂପାଦକ ଭାବେ ମଧ୍ୟ ଉଭୟଙ୍କର ନାମଡାକ ଥାଏ । 'ଦେବୀ' ଗଳ୍ପର ବେଶ୍ କିଛି ଅଂଶ ଆପତ୍ତିଜନକ ହେତୁ ପରିବର୍ତ୍ତନ କରିବାକୁ ପରାମର୍ଶ ଦେଇଥାଆନ୍ତି ନିତ୍ୟାନନ୍ଦ ବାବୁ ଓ କହିଥାଆନ୍ତି ଯେ ପରାମର୍ଶ ମୁତାବକ ପରିବର୍ତ୍ତନ ନ କଲେ ଗଳ୍ପଟି ଛାପିବା ସମ୍ଭବ ହେବ ନାହିଁ । ମନୋଜ ବାବୁ କିନ୍ତୁ କିଛି ମନ୍ତବ୍ୟ ଦେଇନଥାନ୍ତି ଏବଂ ଗଳ୍ପଟି ନଛାପି ନୀରବ ରହିଥାଆନ୍ତି । ସବୁ ଜାଣି ଶୁଣି କ୍ଷେତ୍ରବାସୀ ଆଗଭର ହେଲେ ଗଳ୍ପଟି ଛାପିବା ପାଇଁ ଓ ଦ୍ୱିଧାହୀନ ଦୃଢ଼ ସ୍ୱରରେ କହିଲେ – ' ଏ ଗଳ୍ପ ଛପା ହେବ । ନିଶ୍ଚୟ ଛପା ହେବ ଏବଂ 'ଶତରୂପା' ର ପ୍ରଥମ ସଂଖ୍ୟାରେ ହିଁ ଛପା ହେବ ।' ଏହା ପଛରେ ହୁଏତ କାମ କରୁଥିଲା ଯୁବକସୁଲଭ ଏକ ସ୍ପର୍ଦ୍ଧା, ମାତ୍ର ପ୍ରକୃତ ପକ୍ଷେ ଦେଖିଲେ ସେହି ଦ୍ୱିଧାହୀନ ଦୃଢ଼ ସ୍ୱରର ନେପଥ୍ୟରେ ଅନ୍ତର୍ନିହିତ ଥିଲା ଏକ ପ୍ରବୃତ୍ତି – ଯାହା ଯୋଗ୍ୟକୁ ଯଥୋଚିତ ସମ୍ମାନ ଦେବା ପାଇଁ ହିଁ ଥିଲା ଅଭିପ୍ରେତ । ଏଇ ପ୍ରବଣତା ମୃତ୍ୟୁଯାବତ୍ ତାଙ୍କ ଭିତରେ ଅକ୍ଷୁର୍ଣ୍ଣ ଥିଲା ।

କହିବା ଅନାବଶ୍ୟକ,ସେତେବେଳର ଓଡ଼ିଆ ସାହିତ୍ୟରେ 'ବେଦୀ' ଗଳ୍ପ ଥିଲା ଏକ ବିସ୍ମୟ । ନୀତିବାଗୀଶମାନେ ନାକ ଟେକିଲେ, ରକ୍ଷଣଶୀଳ ପୁରୋଧା ପୁରୁଷମାନେ ପ୍ରତିବାଦ ଜଣାଇଲେ । ମାତ୍ର କ୍ଷେତ୍ରବାସୀଙ୍କ ପାଇଁ ଏହା ଥିଲା ଏକ ଦୁଃସାହସିକ ପ୍ରଚେଷ୍ଟା

ଓ ତାଙ୍କ ସାହିତ୍ୟ ଆବିଷ୍କାରର ଅୟମାରମ୍ଭ । ଏହାର ପ୍ରତିଫଳ ତେଣୁ ଥିଲା ସୁଦୂରପ୍ରସାରୀ । ଏ ସଂପର୍କରେ ଡକ୍ଟର ବେହେରା କୁହନ୍ତି – " ଏ ଘଟଣା କ୍ଷେତ୍ରବାସୀ ସହ ମୋର ସଂପର୍କକୁ ଆହୁରି ଘନିଷ୍ଠ କରିଦେଲା । ତା'ପ୍ରରେ ମୁଁ ତାକୁ ଗଳ୍ପ ଲେଖିବାକୁ କହିଲି । ସେ ଆଗରୁ ତ କବିତା ଲେଖୁଥିଲା, ଏଣିକି ଗଳ୍ପ ଲେଖିବା ଆରମ୍ଭ କଲା । ତେବେ 'ବେଦୀ' ଗଳ୍ପ ପ୍ରକାଶନ କ୍ଷେତ୍ରବାସୀର ଏକ ଦୁଃସାହସିକ ପ୍ରଚେଷ୍ଟା ଏବଂ ସେଥିପାଇଁ ସେତେବେଳକାର କୌଣସି ପ୍ରତିକ୍ରିୟାକୁ ସେ ଖାତିର ମଧ କରିନଥିଲା ।"

ସେତେବେଳେ ଭଦ୍ରଖରେ 'ଶତରୂପା'ର ଏକ ଅନୁଷ୍ଠାନ ଥିଲା ଏବଂ ତାର ନିୟମିତ ବୈଠକ, ସାହିତ୍ୟ-ସଭା ଆଦି ହେଉଥିଲା । ସେ ସବୁରେ ସକ୍ରିୟ ଅଂଶଗ୍ରହଣ କରୁଥିଲେ କ୍ଷେତ୍ରବାସୀ । 'ଶତରୂପା' ଥିଲା ଏକ ତ୍ରୟମାସିକ ପତ୍ରିକା ଏବଂ ତାର ସର୍ବମୋଟ ୪ ଟି ସଂଖ୍ୟା ପ୍ରକାଶ ପାଇଥିଲା । ସେହି ସଂଖ୍ୟାଗୁଡ଼ିକୁ ସେ ଆଉ କେତେଜଣ ସାହିତ୍ୟାନୁରାଗୀ ବନ୍ଧୁଙ୍କ ସହ ମିଶି ରେଳଷ୍ଟେସନ୍, ବସ୍‌ଷ୍ଟାଣ୍ଡ, ଭଦ୍ରଖ ବଜାର ଆଦିରେ ବୁଲିବୁଲି ବିକ୍ରି କରୁଥିଲେ । ୧୯୬୩ ମସିହାର ଏମ.ଏ. ପାସ୍ କରିଥିବା ଏକ ଯୁବକ-ସେ ପୁଣି ନିଜେ ବୁଲି ବୁଲି ପତ୍ରିକା ହକରିଂ କରିବ- ଆଜିର ନବ୍ୟ-ଶିକ୍ଷିତ କେହି ଏ କଥା ଶୁଣିଲେ ହୁଏତ ଭ୍ରୂକୁଂଚନ କରିପାରନ୍ତି; ମାତ୍ର ଏହା ପଛରେ ଥିଲା କ୍ଷେତ୍ରବାସୀଙ୍କର ଆନ୍ତରିକ ସାହିତ୍ୟାନୁରାଗ । ଏହିପରି ଥରେ ରେଳବଗି ଭିତରେ ବୁଲି ପତ୍ରିକା ବିକ୍ରି କରୁଥିଲାବେଳେ ତାଙ୍କର ଭେଟ ହୋଇଥିଲା ସ୍ୱନାମଧନ୍ୟ କବି ରାଧାମୋହନ ଗଡ଼ନାୟକଙ୍କ ସହିତ । ସେତେବେଳକୁ ଗଡ଼ନାୟକଙ୍କୁ ଥରେ ହେଲେ ବି ଦେଖି ନଥାନ୍ତି କ୍ଷେତ୍ରବାସୀ । ମାତ୍ର ସେଦିନ ତାଙ୍କଠାରୁ ଆଦରରେ ପତ୍ରିକା ଖଣ୍ଡିଏ ନେଇ ଉଚିତ ମୂଲ୍ୟଠାରୁ ଅଧିକା ଦାମ୍ ବଢ଼େଇ ଦେଇଥିଲେ ଗଡ଼ନାୟକ ଓ ତାଙ୍କ ମୁଣ୍ଡରେ ହାତ ଥୋଇ ସାଦର ଆଶୀର୍ବାଦ କରିଥିଲେ ତାଙ୍କୁ । କହିବା ବାହୁଲ୍ୟ - ତାହା ଥିଲା କ୍ଷେତ୍ରବାସୀଙ୍କର ଆଦି-ସଙ୍ଗଠକ ଜୀବନର ଏକ ଅତ୍ୟନ୍ତ ପ୍ରେରଣାଦାୟକ ଘଟଣା ଏବଂ ପରବର୍ତ୍ତୀ କାଳରେ ଏହି ପ୍ରେରଣା ତାଙ୍କୁ ଚିର କର୍ମପ୍ରବଣ କରି ରଖିଥିଲା । ତା'ପରଠାରୁ ବୃହତ୍ତର ସ୍ୱାର୍ଥ ପାଇଁ କ୍ଷୁଦ୍ର ଅହଂଟିକୁ ଉଜେଇଁ ଦେବାରେ ସେ କେବେହେଲେ ପଶ୍ଚାତ୍‌ପଦ ହୋଇନାହାନ୍ତି ।

ଯଥାସମୟରେ ପରୀକ୍ଷା ଫଳ ପ୍ରକାଶ ପାଇଲା ଓ କ୍ଷେତ୍ରବାସୀ କୃତିତ୍ୱର ସହ ପ୍ରଥମ ଶ୍ରେଣୀରେ ଏମ୍.ଏ. ପାସ୍ କଲେ । ଆଜିକାଲି ପରି ସେତେବେଳେ ଛତୁଫୁଟିଲା ପରି ଯୁଆଡ଼େ, ସିଆଡ଼େ କଲେଜମାନ ନଥିଲା ଏବଂ ଶହ ଶହ ସଂଖ୍ୟାରେ ଏମ.ଏ. ପାସ୍ କଲା ଯୁବକ କର୍ମସଂସ୍ଥାନ ପାଇଁ ଘୂରି ବୁଲୁ ନଥିଲେ । ଚାକିରୀ ସଂକଟ ବି ଆଜିକାଲି ପରି ସେତେ ଉତ୍କଟ ନଥିଲା ବା ପ୍ରିୟାପ୍ରୀତି ତୋଷଣ ଏତେ ବ୍ୟାପକ ନଥିଲା । ତେଣୁ

ଅତି କମ୍‌ରେ ଅଧ୍ୟାପକ ଚାକିରୀଟିଏ ପାଇବା ଥିଲା ନିଶ୍ଚିତ । ତେଣୁ ଏମ୍.ଏ ପରୀକ୍ଷା ଫଳ ପ୍ରକାଶ ପାଇବାଠାରୁ ଅଧ୍ୟାପକ ଚାକିରୀ ପାଇବାର ଯତ୍ ସାମାନ୍ୟ ବ୍ୟବଧାନ ମଧ୍ୟରେ ଗୋଟିଏ ସରକାରୀ ଅଫିସ୍‌ରେ କିରାଣୀ ଚାକିରୀ କରୁଥିଲେ କ୍ଷେତ୍ରବାସୀ । ଉଦ୍ଦେଶ୍ୟ ଥିଲା - ବେକାର ନବସି ଯତ୍‌କିଂଚିତ୍ ଗୁଜୁରାଣ ମେଣ୍ଟାଇବା । ୨/୩ ମାସ କିରାଣୀ ଚାକିରୀ କରିବା ପରେ ସେ ଅଧ୍ୟାପକ ଚାକିରୀ ପାଇଲେ । ବସ୍ତୁତଃ ତାହା ଥିଲା ଜୟପୁର କଲେଜରେ ଏକ ଅସ୍ଥାୟୀ (Adhoc) ନିଯୁକ୍ତି ଏବଂ ଜୟପୁର କଲେଜ ସେତେବେଳେ ସରକାରୀ ନଥିଲା । ତେଣୁ ତାହା ଗ୍ରହଣ କରି ନଥିଲେ କ୍ଷେତ୍ରବାସୀ । ସମ୍ଭବତଃ ଅଭିମାନଟିଏ ଥିଲା ଯେ- ଅଧ୍ୟାପକ ଚାକିରୀ କରିବି ତ ବେସରକାରୀ କଲେଜରୁ, ପୁଣି ଆଡ୍‌ହକ୍‌ରେ କାହିଁକି ? ସ୍ୱାଭିମାନ ବଳବତ୍ତର ରହି ଓ ଅଳ୍ପ କିଛି କାଳ ପରେ ୧-୧-୧୯୬୪ରୁ ସେ ସ୍ଥାୟୀ ଭାବେ ଅଧ୍ୟାପକ ଜୀବନ ଆରମ୍ଭ କଲେ ସମ୍ବଲପୁର ଗଙ୍ଗାଧର ମେହେର ସାନ୍ଧ୍ୟ ମହାବିଦ୍ୟାଳୟରୁ । ପରେ ୧୯୬୫ ରେ ପବ୍ଲିକ୍ ସର୍ଭିସ୍ କମିଶନ ପରୀକ୍ଷା ଦେଇ ସେ ସ୍ଥାୟୀ ଅଧ୍ୟାପକ ହେଲେ ।

ଅଧ୍ୟାପକ ରୂପେ କର୍ମ ଜୀବନ ଆରମ୍ଭ କରିବାର ପ୍ରାୟ ୬ ମାସ ପରେ ତାଙ୍କର ବିବାହ ହେଲା ଡକ୍ଟର ଲାବଣ୍ୟ ନାୟକଙ୍କ ସହ । ଲାବଣ୍ୟ ଦେବୀ ଥିଲେ ରେଭେନ୍‌ସା କଲେଜରେ କ୍ଷେତ୍ରବାସୀଙ୍କର ସହପାଠିନୀ ଏବଂ ଅଧ୍ୟୟନ ସମୟରୁ ଉଭୟଙ୍କ ମଧ୍ୟରେ ମୁହାଁ ଚାହାଁ ପରିଚୟ ଥିଲା ଓ କିଛି ଆନ୍ତରିକତା ବି ହୁଏତ ଥିଲା । ତେଣୁ ପରେ ଉଭୟଙ୍କୁ ଦାମ୍ପତ୍ୟ ପାଶରେ ଆବଦ୍ଧ ହେବା ଦେଖି କେହି କେହି ଖୁବ୍ ସ୍ୱାଭାବିକ ଭାବରେ ଅନ୍ଦାଜଟିଏ କରି ନିଅନ୍ତି ଯେ - ଉଭୟେ ପ୍ରେମ ବିବାହ କରିଥିଲେ । କିନ୍ତୁ ପ୍ରକୃତରେ ଦେଖିଲେ ତାହା ସଂପୂର୍ଣ୍ଣତଃ ସତ୍ୟ ନୁହେଁ । ଏ ସଂପର୍କରେ ପଚାରିବାରେ ଲାବଣ୍ୟ ଦେବୀ କୁହନ୍ତି - "ସେ ମୋର ସହପାଠୀ ଥିଲେ । ଏକା ସାଙ୍ଗରେ ଆମେ ଦୁହେଁ ପି.ଜି. କରୁଥିଲୁ । ତାଙ୍କର ସାହିତ୍ୟିକ କୃତିତ୍ୱର ମୁଁ ପ୍ରତ୍ୟକ୍ଷଦର୍ଶୀ । ବାହାଘର କିନ୍ତୁ ହୋଇଥିଲା ପାରମ୍ପରିକ ଭାବେ । ୧୯୬୪ ମସିହାର କଥା । ସେତେବେଳକୁ ସେ ଥାଆନ୍ତି ଗଙ୍ଗାଧର ମେହେର ସାନ୍ଧ୍ୟ ମହାବିଦ୍ୟାଳୟରେ ଅଧ୍ୟାପକ । ମୋର ଜଣେ ମାମୁ ପୁଅ ଭାଇ ସେଠାରେ ଚାକିରି କରୁଥିଲେ । ତାଙ୍କ ମାଧ୍ୟମରେ ପ୍ରସ୍ତାବ ଆସିଥିଲା । ତେବେ ତା ଆଗରୁ ମୋ ବୋଉ ତାଙ୍କୁ ଦେଖିଥିଲା ଏବଂ ପସନ୍ଦ କରିଥିଲା । ମୁଁ ପି.ଜି. କରୁଥିବାବେଳେ ଥରେ ମତେ ହାଡ଼ଫୁଟି ହୋଇଥାଏ ଓ ମୁଁ ହସ୍‌ପିଟାଲରେ ଥାଏ । ବନ୍ଧୁ ସହପାଠୀ ସହପାଠିନୀ ମତେ ଦେଖିବାକୁ ଆସୁଥାଆନ୍ତି । ସେତେବେଳେ ମୋ' ବୋଉ କାହିଁକି କେଜାଣି ତାଙ୍କୁ ଦେଖି ପସନ୍ଦ କରିଥିଲା । ତେଣୁ ପ୍ରକୃତରେ କହିଲେ ମୁଁ ସେମିତି କିଛି ବିଶେଷ ଶ୍ରଦ୍ଧା କରିବା ଆଗରୁ ମୋ' ବୋଉ ତାଙ୍କୁ ଶ୍ରଦ୍ଧା କରିବା ଆରମ୍ଭ କରି ଦେଇଥିଲା ।"

ବାହାଘର ହେଲା ଜୁଲାଇ ୪, ୧୯୬୪ ରେ । ବାହାଘର ପ୍ରସ୍ତାବ ଅବଶ୍ୟ ଆସିଥିଲା ବିଧିମୁତାବକ; କିନ୍ତୁ ବାହାଘର ବେଳେ କିଛି ବିଭେଦ ପ୍ରତିରୋଧର ସୂତ୍ରପାତ ହୋଇଥିଲା । କାରଣ ଲାବଣ୍ୟ ଦେବୀ ଥିଲେ ଦାସ ସାଙ୍ଗିଆରେ କରଣ ଓ କ୍ଷେତ୍ରବାସୀଙ୍କ ଠାରୁ ଉଚ୍ଚ ଜାତିର । ଏହି ଜାତିଗତ ବିଭେଦ ଓ ଦାରିଦ୍ର୍ୟ କାରଣରୁ ହିଁ ବିଭେଦର ସୂତ୍ରପାତ ହୋଇଥିଲା । ତେବେ ଏହା ସେମାନଙ୍କ ଭିତରେ କୌଣସି ବିଭେଦର ସୂତ୍ରପାତ ନ କରି ବରଂ ଉଭୟଙ୍କୁ ପରସ୍ପରର ଆହୁରି ନିକଟତର କରିଦେଲା ।

ବାସ୍ତବତଃ, ଲାବଣ୍ୟ ଦେବୀ ଥିଲେ କ୍ଷେତ୍ରବାସୀଙ୍କର ଯଥାର୍ଥ ସହଧର୍ମିଣୀ । ସେ କେବଳ ନର୍ମଦାୟିନୀ ନଥିଲେ, ଥିଲେ ମଧ୍ୟ କର୍ମସହୀ । ଏ ବିଷୟରେ ସବୁଠୁ ଭଲ ସୁପାରିଶ ଦିଅନ୍ତି ଯୁଗଳବାବୁ । ସେ କୁହନ୍ତି - "କ୍ଷେତ୍ରବାସୀର ଲାଜକୁଳା ଭାବ ଥିଲା କଟକ ପର୍ଯ୍ୟନ୍ତ । ତା'ପରେ ତାହା କଟି ଯାଇଥିଲା ଏବଂ ସେ ସାହିତ୍ୟ ପାଇଁ ଏକ ଅନୁକୂଳ ପରିବେଶ ପାଇଥିଲା । ପ୍ରଥମତଃ କଟକର ପରିବେଶ, ଦ୍ୱିତୀୟତଃ ପି.ଜି. ଡିଗ୍ରୀ ଏବଂ ସର୍ବୋପରି ସେ ଗୋଟେ ଭଲ ସହଧର୍ମିଣୀ ପାଇଗଲା । ସତ କହିଲେ - ଲାବଣ୍ୟ ଥିଲା ଖୁବ୍ ଡେଆରିଂ । ବିବାହବେଳେ ସେତେବେଳେ ଯେଉଁ ପ୍ରତିରୋଧର ସୂତ୍ରପାତ ହୋଇଥିଲା ତାହାକୁ ସେ ଖୁବ୍ ସାହସର ସହ ମୁକାବିଲା କରିଥିଲା ଏବଂ ସମ୍ଭବତଃ ସେଇ ମୁହୂର୍ତ୍ତରୁ ସେ ନିଜର ଆଗାମୀ ଜୀବନର କର୍ମପନ୍ଥା ସ୍ଥିର କରି ନେଇଥିଲା ।"

କ୍ଷେତ୍ରବାସୀ ଓ କ୍ଷେତ୍ରବାସୀଙ୍କ ପରିବାରକୁ ଯେଉଁମାନେ ଖୁବ୍ ପାଖରୁ ଦେଖିଛନ୍ତି, ସେମାନେ ଜାଣିଛନ୍ତି - କେତେ ସହାବସ୍ଥାନର ସହିତ ସେ ପରିବାରଟି ଗଠିତ । କେହି ନ୍ୟୁନ ନୁହେଁ କି କେହି ବରିଷ୍ଠ ନୁହେଁ; ବରଂ ପରସ୍ପର ପରସ୍ପରର ପରିପୂରକ । ଘରର ନାଁ ତ ଆରମ୍ଭରୁ ରଖାଯାଇଥିଲା "ସାରସ୍ୱତ ନିଳୟ" ଏଣିକି ତାହା ପୂର୍ଣ୍ଣତଃ ହେଲା ସାରସ୍ୱତ ସାଧନାର ନିଳୟ । ମଧୁଶଯ୍ୟା ରାତ୍ରିରେ କୁଳଦୀପକୁ ସମ୍ମୁଖରେ ରଖି କ୍ଷେତ୍ରବାସୀ ଶପଥ କରେଇ ନେଇଥିଲେ ଲାବଣ୍ୟଙ୍କୁ ଯେ- 'ଏଇ କୁଳଦୀପକୁ ସାକ୍ଷୀ ରଖି ଶପଥ କର- ଆମର ଜୀବନ ଆଉ ପାଞ୍ଚଟା ଜୀବନ ପରି ସାଧାରଣ ସାଂସାରିକ ମୋହ ଭିତରେ ଐହିକ ସୁଖ ପାଇଁ ଉଦ୍ଦିଷ୍ଟ ହେବ ନାହିଁ; ଆମର ଜୀବନ ହେବ ଏକ ସାରସ୍ୱତ ଜୀବନ । ଆମର ପରିବାର ହେବ ଏକ ସାରସ୍ୱତ ପରିବାର ।' ସେଦିନ କୁଳଦୀପକୁ ସାକ୍ଷୀ ରଖି ଶପଥ କରିଥିଲେ ଲାବଣ୍ୟଦେବୀ - ଏବଂ ତା' ପରଠାରୁ ଉଭୟେ କେବେ ହେଲେ ଏଇ ଶପଥ ପାଳନରୁ ବିଚ୍ୟୁତ ହୋଇ ନାହାନ୍ତି । ତେଣୁ ପରବର୍ତ୍ତୀ କାଳରେ ଆମେ କ୍ଷେତ୍ରବାସୀଙ୍କର ଯେଉଁ ବିପୁଳ ସାହିତ୍ୟ-ସମ୍ଭାର ଦେଖୁଁ ଯଥାର୍ଥତଃ ଏଇଠାରୁ ହିଁ ସେହି ସାରସ୍ୱତ ସାଧନାର ଅୟମାରମ୍ଭ ।

ବସ୍ତୁତଃ କ୍ଷେତ୍ରବାସୀ ଥିଲେ ତ୍ରିଧା ବିଭକ୍ତ । ତିନିଖଣ୍ଡରୁ ଖଣ୍ଡେ ସାହିତ୍ୟ, ଆଉ ଖଣ୍ଡେ ସଂସାର ଓ ଅପର ଖଣ୍ଡକ ଖଣ୍ଡିଆ ଠାକୁର ଜଗନ୍ନାଥ । କିନ୍ତୁ ଏ ତିନି ଖଣ୍ଡକୁ ଏକାଠି କରି ଦେଖିଲେ ଯେଉଁ ବ୍ୟକ୍ତିଟି ଆଖି ଆଗରେ ଆସି ଠିଆ ହୁଏ ସେ କିନ୍ତୁ ମୂଳତଃ ଗୋଟିଏ ଅବିଭକ୍ତ ଖଣ୍ଡ - ଗୋଟିଏ ବ୍ୟକ୍ତିତ୍ୱ- ଏବଂ ସେଇ ବ୍ୟକ୍ତିତ୍ୱଟି ହେଉଛି କ୍ଷେତ୍ରବାସୀଙ୍କର ନିଜସ୍ୱ ରୂପ । ନିଜ ପରିବାରଟିକୁ ବି ସେ ଗଢ଼ିଥିଲେ ଠିକ୍ ସେମିତି । ଆଜିକାଲି ବହୁ ପରିବାରର ମୁରବୀମାନେ ନିଜ ନିଜ ପରିବାରଟିମାନ ବେଅକ୍ତିଆର ହୋଇଯାଉଥିବା ହେତୁ ଅନୁଶୋଚନା ଓ ମନସ୍ତାପରେ ଘାରି ହେଉଥିବା ବେଳେ ସେମାନଙ୍କୁ ଦେଖେଇ ଦେବା ପରି ପରିବାରଟି କ୍ଷେତ୍ରବାସୀଙ୍କର - ଯାହା ଆଉ କିଛି ହେଉ ନହେଉ ଅନ୍ତତଃ ଗୋଟିଏ ଦୃଷ୍ଟାନ୍ତ ଯେ- 'ନିଜ ହାତ ଗଢ଼ା ଦିଅଁ କେବେ ମାଙ୍କଡ଼ ହୋଇପାରେନା । ତୁମେ ଯେପରି କରିବ ସେପରି ପାଇବ - 'As you sow, so you reap ।'

ଆଗରୁ କୁହାଯାଇଛି - ଘରର ନାଁ ଥିଲା 'ସାରସ୍ୱତ ନିଳୟ' ଓ ମଧୁଶଯ୍ୟା ରାତ୍ରିରେ କୁଳଦୀପକୁ ସାକ୍ଷୀ ରଖି ଦୁହେଁ ଶପଥ କରିଥିଲେ ଯେ- ସେମାନଙ୍କର ଜୀବନ ଆଉ ପାଞ୍ଚଟା ସ୍ୱାମୀ ସ୍ତ୍ରୀଙ୍କ ଜୀବନ ପରି ନ ହୋଇ ହେବ ସାହିତ୍ୟ ପାଇଁ ଉତ୍ସର୍ଗୀକୃତ ଏକ ଜୀବନ-ଏକ ସହାବସ୍ଥିତ ସାରସ୍ୱତ ଜୀବନ । କାର୍ଯ୍ୟତଃ ଉଭୟେ ତାହା ନିଷ୍ଠାର ସହିତ ପାଳନ କରିଥିଲେ । ଆଜି ଆପଣ ଯଦି କଟକ ଅରବିନ୍ଦ ନଗରସ୍ଥ ତାଙ୍କ ନିଜ ଘରକୁ ଯାଆନ୍ତି- ତେବେ ଦେଖିପାରିବେ ଯେ - ତା'ର ସମ୍ମୁଖ ଭାଗର ଦେୱାଲରେ ଅବସ୍ଥାପିତ ହୋଇଛି ଛୋଟ ଚାରିକଣିଆ ଧଳା ମାର୍ବଲରଏକ ଖୋଦିତ ନାମ ଫଳକ ଏବଂ ସେଥିରେ ଘରର ନାଁ ସହିତ ଲେଖା ଅଛି ଛୋଟ ଏକ ଦ୍ୱିପାଦୀ କବିତା । ତାହା ଏହିପରି -

"ଆଶାର ବୋଇତ ବାହି
ଅତିକ୍ରମି ସମୟ ସାଗର
ଶ୍ରଦ୍ଧାରେ ରଚିବା ଆମେ
ନୂଆ ଘର ସୁନ୍ଦର ସଂସାର ।"

-ଲାବଣ୍ୟ/କ୍ଷେତ୍ରବାସୀ

ସତରେ, ସମୟ ସାଗର ତୀରରେ ଶ୍ରଦ୍ଧାରେ, ସୁନ୍ଦର ସଂସାରଟିଏ ରଚିଥିଲେ କ୍ଷେତ୍ରବାସୀ । ତାଙ୍କ ଗଢ଼ା ସେହି ପରିବାରଟିରେ କେହି ନ୍ୟୂନ ନଥିଲେ କି କେହି ବରିଷ୍ଠ ନ ଥିଲେ । ବରଂ ପ୍ରତ୍ୟେକ ଥିଲେ ପ୍ରତ୍ୟେକଙ୍କର ପରିପୂରକ । ସେଥିପାଇଁ କ୍ଷେତ୍ରବାସୀ ତାଙ୍କ ସନ୍ତାନମାନଙ୍କର ନାଁ ରଖିଥିଲେ ତାଙ୍କର ଏବଂ ଲାବଣ୍ୟ ଦେବୀଙ୍କର ଟାଇଟଲ୍

ଅନୁଯାୟୀ - 'ଦାସ ନାୟକ' । ତେଣୁ ତାଙ୍କ ବଡ଼ ଝିଅ 'ଲିପି' ର ନାଁ 'କେବଳ ଲୋପାମୁଦ୍ରା ଦାସ' ବା କେବଳ 'ଲୋପାମୁଦ୍ରା ନାୟକ' ନ ରଖାଯାଇ ରଖାଯାଇଥିଲା ଲୋପାମୁଦ୍ରା ଦାସ ନାୟକ' ଓ ଠିକ୍ ସେମିତି ବଡ଼ ପୁଅ 'ବାବୁନି' ଓ ସବା ସାନଝିଅ 'କୁନି ମାମା' ର ନାଁ ଯଥାକ୍ରମେ ରଖାଯାଇଥିଲା ଅନୁରକ୍ତ ଓ ଗତସର୍ବା ଦାସ ନାୟକ ।

ସେ ସଂସାରଟିକୁ ଦେଖିଲେ କେହି କେବେ କଳ୍ପନା କରି ପାରିବ ନାହିଁ ଯେ ଏ ହେଉଛି ସେହି ପିଲାଟିର ନିଜ ଗଢ଼ା ସଂସାର, ଯେ ଦିନେ ଭୂମିଷ୍ଠ ହୋଇଥିଲା ଭଦ୍ରଖ ହାଇସ୍କୁଲ ପଛପଟର ଛୋଟ ଏକ ନୂଆଁଣିଆ ଚାଳଛପର ଘରେ ବିକଟ ଅନଟନ ଭିତରେ । ଏହାର କାରଣ କ'ଣ ହୋଇପାରେ ? ଏ ସଂପର୍କରେ ଯୁଗଳ ବାବୁ କୁହନ୍ତି - "କ୍ଷେତ୍ରବାସୀ ଯାହା କରୁଥିଲା କେବଳ ନିଜ ବାହୁ ବଳରେ । କାଲିକି କ'ଣ ହେବ ସେକଥା ସେ ଚିନ୍ତା କରୁ ନଥିଲା ।" ତେଣୁ ସଂକ୍ଷେପରେ କହିଲେ ନିଜ ଶିଙ୍ଗରେ ସେ ମାଟି ତାଡୁଥିଲେ ଓ ଆଗକୁ ପଥର ଅଛି କି ଶିଙ୍ଗ ଭାଙ୍ଗି ଲହୁଲୁହାଣ ହେବ ତାହା ଚିନ୍ତା କରୁ ନଥିଲେ ।

ଏଇଠି କହି ରଖିବା ଆବଶ୍ୟକ ଯେ ୧୯୬୪ ରେ ଲାବଣ୍ୟ ଦେବୀଙ୍କ ସହ ତାଙ୍କର ବିବାହ ସମୟକୁ ଲାବଣ୍ୟ ଦେବୀ ପ୍ରାୟ ଲେଖା ଲେଖି କରୁ ନଥିଲେ । ତେବେ ଏମ୍.ଏ ପଢ଼ିଲାବେଳେ 'ରଶ୍ମି'ରେ ତାଙ୍କର ଗୋଟିଏ ଦୁଇଟି ଲେଖା ପ୍ରକାଶ ପାଇଥିଲା । ଆଗରୁ କୁହାଯାଇଛି, ସେତେବେଳେ କ୍ଷେତ୍ରବାସୀ 'ରଶ୍ମି'ର ସଂପାଦନା ଦାୟିତ୍ୱରେ ଥିଲେ ଏବଂ ସେଥିପାଇଁ ସେ ପ୍ରାୟସବୁ ବନ୍ଧୁଙ୍କୁ ଲେଖିବାକୁ କହୁଥିଲେ । ବନ୍ଧୁ ସହପାଠୀମାନଙ୍କୁ ତାଗିଦା କରି ଲେଖାଇ ସେଇ ଲେଖାକୁ ଆବଶ୍ୟକ ସ୍ଥଳେ ସଂଶୋଧନ ଓ ସଂପାଦନ କରି ସେ ପ୍ରକାଶ କରୁଥିଲେ । ଏଇ ସମୟରେ 'ରଶ୍ମି'ର ସଂପାଦନା ସହିତ ଆଉ ଦୁଇଟି ବିଶେଷ କାମରେ ମଧ୍ୟ ସେ ହାତ ଦେଇଥିଲେ । ତାହା ହେଉଛି 'ଗଙ୍ଗାଧର ଶତବାର୍ଷିକୀ ଗ୍ରନ୍ଥ' ଓ 'ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ' ଗ୍ରନ୍ଥ । ଗଙ୍ଗାଧର ମେହେରଙ୍କ ଶତବାର୍ଷିକୀ ଉତ୍ସବ ଅବସରରେ ହେଉଥିଲା ଏକ ଅନୁପମ ସ୍ମାରକୀ ଗ୍ରନ୍ଥ - ଏବଂ ସେଥିରେ ଅନ୍ୟତମ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ କ୍ଷେତ୍ରବାସୀ । ଓଡ଼ିଆ ଉପନ୍ୟାସ ମାନଙ୍କର ସମୀକ୍ଷା ଦିଗରେ ଏକ ଉଲ୍ଲେଖନୀୟ ପ୍ରକଳ୍ପ ଥିଲା 'ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ' ଗ୍ରନ୍ଥ । ସହସ୍ରାଧିକ ପୃଷ୍ଠା ବିଶିଷ୍ଟ ଏହି ବିରାଟକାୟ ଗ୍ରନ୍ଥଟିର ସଂପାଦକମଣ୍ଡଳୀ ମଧ୍ୟରୁ କ୍ଷେତ୍ରବାସୀ ଥିଲେ ଅନ୍ୟତମ । ଯଥାରୀତି ଅବଶ୍ୟ ସେହି ବିରାଟ ଗ୍ରନ୍ଥଟି ପ୍ରକାଶ ପାଇଥିଲା ଓ ସେଥିରେ କ୍ଷେତ୍ରବାସୀଙ୍କ ସମେତ ସମଗ୍ର ସଂପାଦନାମଣ୍ଡଳୀର ଏକ ଫଟୋଚିତ୍ର ସ୍ଥାନ ପାଇଥିଲା । ମାତ୍ର ଏହି କାର୍ଯ୍ୟ ସମାପ୍ତ ନ ହେଉଣୁ ଅଧ୍ୟାପକ ରୂପେ ତାଙ୍କର ନିଯୁକ୍ତି

ଆଦେଶ ଆସିଲା ଗଙ୍ଗାଧର ମେହେର ସାନ୍ଧ୍ୟ ମହାବିଦ୍ୟାଳୟରୁ । ତେଣୁ ସେହି କାର୍ଯ୍ୟ ନିର୍ବାହ କରିବା ପାଇଁ ସେ ସମର୍ଥ ହୋଇ ପାରିନଥିଲେ । ଯେ କେହି ସାହିତ୍ୟାନୁରାଗୀ ଏଥିରେ ଅବଶ୍ୟ ଅତୃପ୍ତ ହେବା କଥା ମାତ୍ର କ୍ଷେତ୍ରବାସୀଙ୍କ ପାଇଁ ଏହି ଅତୃପ୍ତି ବା ଅବଶୋଷ ଦୀର୍ଘସ୍ଥାୟୀ ହୋଇପାରିନଥିଲା । ତାର କାରଣ ସମ୍ଭବତଃ 'ଦୁଇଟି - ଗୋଟିଏ ନୂତନ କର୍ମକ୍ଷେତ୍ରରେ ଆହ୍ୱାନ ଓ ଅନ୍ୟଟି ନୂତନ ଦାମ୍ପତ୍ୟ ଜୀବନ ।

କିନ୍ତୁ ବିବାହର ମାସେ ପୂରୁଣୁ ନ ପୂରୁଣୁ ଏହି ସୁଖକର ଓ ସାରସ୍ୱତ ଦାମ୍ପତ୍ୟ ଜୀବନରେ ବିଚ୍ଛେଦର ଘନଘଟା ଦେଖାଦେଲା । ଅଧ୍ୟାପିକା ରୂପେ ଲାବଣ୍ୟ ଦେବୀଙ୍କର ନିଯୁକ୍ତି ଆଦେଶ ଆସିଲା ବଲାଙ୍ଗୀର ମହିଳା ମହାବିଦ୍ୟାଳୟରୁ ଏବଂ ସେଥିପାଇଁ ସମ୍ବଲପୁରରୁ ଆସି ତାଙ୍କୁ ରହିବାକୁ ପଡ଼ିଲା ବଲାଙ୍ଗୀରରେ । ଏହାର ପରବର୍ତ୍ତୀ ପ୍ରାୟ ଦେଢ଼ ବର୍ଷ ଭିତରେ ମଧ୍ୟ ପାରିବାରିକ ଜୀବନରେ ଆଉ ଦୁଇଟି ଗୁରୁତ୍ୱପୂର୍ଣ୍ଣ ଘଟଣା ଘଟିଥିଲା - ଯାହା ତାଙ୍କୁ କିଛି କାଳ ପାଇଁ ସାରସ୍ୱତ-ସାଧନାରୁ ବିଚ୍ୟୁତ କରିଥିଲା । ସେଥିରୁ ପ୍ରଥମଟି ହେଉଛି ତାଙ୍କ ଜେଜେବାପାଙ୍କର ବିୟୋଗ ଏବଂ ଅନ୍ୟଟି ତାଙ୍କର ପ୍ରଥମା କନ୍ୟା 'ଲିପି'ର ଆବିର୍ଭାବ । ତେଣୁ ୧୯୬୪ ଅଗଷ୍ଟରୁ ୧୯୬୬ ଏପ୍ରିଲ୍, ପ୍ରାୟ ଦେଢ଼ ବର୍ଷ, କ୍ଷେତ୍ରବାସୀଙ୍କ ସାରସ୍ୱତ ଜୀବନରେ ଏକ ଅନୁତ୍ପାଦନର ପର୍ଯ୍ୟାୟ । ତେବେ ଏଇ ସମୟ ଭିତରେ ଉଭୟ ଲାବଣ୍ୟ ଓ କ୍ଷେତ୍ରବାସୀଙ୍କ ପ୍ରଚେଷ୍ଟାରେ ପ୍ରକାଶ ପାଇଥିଲା 'ପ୍ରବନ୍ଧ ଓ ପ୍ରାବନ୍ଧିକ' ନାମରେ ଏକ ନୂତନ ଧରଣର ଗ୍ରନ୍ଥ - ଯାହା ପରବର୍ତ୍ତୀ କାଳରେ ପାଠ୍ୟ ପୁସ୍ତକ ରୂପେ ନିର୍ବାଚିତ ହୋଇଥିଲା । ଏହା ବ୍ୟତୀତ ଏଇ ପ୍ରାୟ ଦେଢ଼ ବର୍ଷ ଭିତରେ ସେ ତାଙ୍କର ଅନେକ ପୁସ୍ତକ ଓ ଆଲୋଚନାର ପ୍ରାଥମିକ ଖସଡ଼ା ପ୍ରସ୍ତୁତ କରିଥିଲେ ଓ ମୁଖ୍ୟତଃ ପ୍ରସ୍ତୁତ ହେଉଥିଲେ ଗବେଷଣା ସନ୍ଦର୍ଭ ରଚନା ପାଇଁ । ତେଣୁ ୧୯୬୬ ର ଦ୍ୱିତୀୟ ଷଣ୍ମାସରେ ଆମେ କ୍ଷେତ୍ରବାସୀଙ୍କର ଯେଉଁ ପୁସ୍ତକ ଓ ଆଲୋଚନାଗୁଡ଼ିକୁ ଆତ୍ମ-ପ୍ରକାଶ କରିବାର ଦେଖୁଁ ତାହା ମୁଖ୍ୟତଃ 'ଆତ୍ମପ୍ରକାଶନୀ' ବଲାଙ୍ଗୀର ସହ ସଂପୃକ୍ତ ହେବା ପରର ରଚନା ।

କ୍ଷେତ୍ରବାସୀଙ୍କର ଚରିତ୍ରର ଏଇ ବିଶେଷ  ବିଶେଷତ୍ୱ ହେଉଛି, ସେ ଯେଉଁ ସ୍ଥାନକୁ ଯାଉଥିଲେ ସେଠାର ପରିବେଶକୁ ନିଜକୁ ସୁହାଇଲା ପରି ସଜାଡ଼ି ନେଉଥିଲେ । ତାଙ୍କର ସବୁବେଳେ ଆବଶ୍ୟକ ହେଉଥିଲା ଏକ ସାରସ୍ୱତ ପରିବେଶ ଏବଂ ତା' ବ୍ୟତିରେକେ ସେ ନିଜକୁ ପାଣି ବାହାରେ ଥିବା ମାଛଟିଏ ପରି ଅଣନିଃଶ୍ୱାସୀ ଅନୁଭବ କରୁଥିଲେ ।

ତେଣୁ ୧୯୬୬ ଏପ୍ରିଲ୍‌ରେ ସମ୍ବଲପୁର ଗଙ୍ଗାଧର ମେହେର ସାନ୍ଧ୍ୟ ମହାବିଦ୍ୟାଳୟରୁ ବଦଳି ହୋଇ ରାଜେନ୍ଦ୍ର କଲେଜ ବଲାଙ୍ଗୀରରେ ଆସି ପହଞ୍ଚିବାପରେ ସେ ତୁରନ୍ତ ପ୍ରସ୍ତୁତ କରି ନେଇଥିଲେ ତାଙ୍କର ନୂତନ କର୍ମକ୍ଷେତ୍ରର ପରିବେଷ୍ଟନୀ ଏବଂ ଏହି ପରିବେଷ୍ଟନୀକୁ ପୂର୍ଣ୍ଣ କରିଥିଲା ଲାବଣ୍ୟଙ୍କ ସାହଚର୍ଯ୍ୟ ଓ ସାନ୍ନିଧ୍ୟ ।

କ୍ଷେତ୍ରବାସୀ ବଲାଙ୍ଗୀରରେ କଟାଇଥିଲେ ୧୯୬୬ ରୁ ୧୯୭୧ ପାଞ୍ଚବର୍ଷ । ଏଇ ପାଞ୍ଚବର୍ଷ କ୍ଷେତ୍ରବାସୀଙ୍କର ସାହିତ୍ୟିକ ତଥା ସଙ୍ଗଠକ ଜୀବନର ପ୍ରଥମ ସୁବର୍ଣ୍ଣ ପର୍ଯ୍ୟାୟ ।

୧୯୬୮ । ଏତେବେଳକୁ ବଲାଙ୍ଗୀରରେ ବେଶ୍ ଜମିଗଲେଣି କ୍ଷେତ୍ରବାସୀ । ୧୯୬୬ ଏପ୍ରିଲ୍‌ରେ ବଲାଙ୍ଗୀରକୁ ଆସିଲା ପରେ କ୍ଷେତ୍ରବାସୀ ଆସି ପହଞ୍ଚିଥିଲେ ଏପରି ଏକ କ୍ଷେତ୍ରରେ ଏବଂ ଏପରି କେତେକ ଗୁଣଗ୍ରାହୀଙ୍କ ଗହଣରେ ଯେ ସେମାନଙ୍କର ସମ୍ମିଳିତ ଚିନ୍ତାଧାରାରୁ ଆତ୍ମପ୍ରକାଶ କରିଥିଲା 'ଆତ୍ମପ୍ରକାଶନୀ' ନାମକ ଏକ ସଂସ୍ଥା । ଏହି ସମୟରୁ କ୍ଷେତ୍ରବାସୀ ଶ୍ରୀନିବାସ ଉଦ୍‌ଗାତା ଓ ରାଧାମୋହନ ମିଶ୍ରଙ୍କ ସଂସ୍ପର୍ଶରେ ଆସିଥିଲେ ଓ ସମେସ୍ତ ମିଶି ଗଢ଼ିଥିଲେ ଏଇ ଅନୁଷ୍ଠାନଟି । ଏହାର ମୂଳ ଲକ୍ଷ୍ୟ ଥିଲା ପୁସ୍ତକ ପ୍ରକାଶନ । ତେବେ ଏହି ସଂସ୍ଥା ଆତ୍ମପ୍ରକାଶ କରିବା ପଛରେ ମୂଳ ମସ୍ତିଷ୍କଟି ଥିଲା କ୍ଷେତ୍ରବାସୀଙ୍କର - କାରଣ ସେ ନିଜ ଦୂରଦୃଷ୍ଟି ବଳରେ ଲକ୍ଷ୍ୟ କରିଥିଲେ ଯେ- ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ, ବିଭିନ୍ନ ଅଞ୍ଚଳରେ, ବହୁ କବି ଲେଖକ ପ୍ରାବନ୍ଧିକ ଅଛନ୍ତି - ଯେଉଁମାନେ ନିଜ ଲେଖାର ପରିଚର୍ଚ୍ଚା ପାଇଁ ଅନୁକୂଳ ପରିବେଶ ପାଉ ନାହାନ୍ତି ଏବଂ ଅନେକେ ନବ୍ୟ-ସାହିତ୍ୟିକ ହୋଇଥିବାରୁ ନିଜର ବହି ଖଣ୍ଡିଏ ଛାପିବା ପାଇଁ ସେମାନଙ୍କୁ ବାରମ୍ବାର କଟକର ପ୍ରକାଶକମାନଙ୍କ ଦୟାଭିକ୍ଷା କରିବାକୁ ପଡୁଛି । କେବଳ ସେତିକି ନୁହେଁ - ଅନେକ ସମୟରେ ସେହିସବୁ ପ୍ରକାଶକମାନଙ୍କ ଦ୍ୱାରସ୍ଥ ହୋଇ ମଧ ବହିଟିଏ ଛାପିବା ସମ୍ଭବ ହେଉନାହିଁ; ଫଳରେ ସେମାନଙ୍କର କବି ପ୍ରତିଭା ଅଚିରେ ମଉଳି ଯାଉଛି । ଏହିସବୁ ସମସ୍ୟାର ଆଶୁ ପ୍ରତିକାର ଅଭିପ୍ରାୟରେ ଶ୍ରୀନିବାସ ଉଦ୍‌ଗାତା ପ୍ରମୁଖଙ୍କ ସହିତ ମିଶି ସଂସ୍ଥାଟିଏ ଗଠନ କଲେ କ୍ଷେତ୍ରବାସୀ । ଶ୍ରୀନିବାସ ଉଦ୍‌ଗାତା ରହିଲେ ସଂସ୍ଥାଟିର ସଭାପତି ଏବଂ ଆନୁଷ୍ଠାନିକ ଭାବରେ ନ ହେଲେ ମଧ କ୍ଷେତ୍ରବାସୀ ଥିଲେ ଅନୁଷ୍ଠାନଟିର ସର୍ବମୟ କର୍ତ୍ତା ।

ସେତେବେଳକୁ କ୍ଷେତ୍ରବାସୀ ମୁଖ୍ୟତଃ ଥିଲେ ସୃଜନଶୀଳ ସାହିତ୍ୟିକ । ସେତେବେଳେ ସେ ବେଶି ଭାଗ ଲେଖୁଥିଲେ କବିତା ଓ କଦବା କ୍ୱଚିତ୍ ସମାଲୋଚନା ଲେଖୁଥିଲେ । ତଥାପି ବି ୧୯୬୮ ରେ ଉଭୟ ଲାବଣ୍ୟ ଓ କ୍ଷେତ୍ରବାସୀଙ୍କ ମିଳିତ

ଅବଦାନରେ ପ୍ରକାଶ ପାଇଥିଲା 'ଅଳଙ୍କାର ଓ ଅଳଙ୍କାରତତ୍ତ୍ୱ' ପୁସ୍ତକ । ଏହି ପୁସ୍ତକଟିର ପ୍ରସଙ୍ଗ ଥିଲା Poetics ଓ ତାହା ଥିଲା ଓଡ଼ିଆ ସାହିତ୍ୟକୁ ଏକ ଉଲ୍ଲେଖନୀୟ ଅବଦାନ । କହିବା ଅନାବଶ୍ୟକ - ଜଣେ ଦୂରଦୃଷ୍ଟିସଂପନ୍ନ ସମୀକ୍ଷକ ଭାବେ ସେ ଓଡ଼ିଆ ସମୀକ୍ଷା ସାହିତ୍ୟ କ୍ଷେତ୍ରରେ ଯେଉଁ କେତୋଟି ପ୍ରୟାସ କରୁଥିଲେ - ସେଥିରେ ନିଜର ବିଦ୍‌ବତ୍ତା ପ୍ରକାଶ କରିବାର ପ୍ରବୃତ୍ତି ନ ରହି ସର୍ବଦା ରହୁଥିଲା ଓଡ଼ିଆ ସାହିତ୍ୟର ଅପୂର୍ଣ୍ଣତାକୁ ଭରିବାର ପ୍ରଚେଷ୍ଟା । ବସ୍ତୁତଃ 'ଅଳଂକାର ଓ ଅଳଂକାରତତ୍ତ୍ୱ' ଥିଲା ଏ ଦିଗରେ ଉଭୟଙ୍କରଏକ ପ୍ରାଥମିକ ଗୁଣାତ୍ମକ ପ୍ରୟାସ ।

ସେତେବେଳେ କ୍ଷେତ୍ରବାସୀ ନିଜେ ତ କବିତା ଲେଖୁଥିଲେ, ତାଙ୍କ ଚତୁଃ-ପାର୍ଶ୍ୱରେ ବି ପରିବେଷ୍ଟିତ ରହିଥିଲେ ବେଶ୍ ଏକ ସମ୍ବେଦନଶୀଳ କବି ଗୋଷ୍ଠୀ । ଅବଶ୍ୟ ଶ୍ରୀନିବାସ ଉଦ୍‌ଗାତାଙ୍କ ପରି କେତେ ଜଣ ଥିଲେ ଏ ସବୁରେ ପୁରୋଧା ଓ ଅଗ୍ରଜ ତୁଲ୍ୟ - ମାତ୍ର ସେତେବେଳେ ସନତ ଦାସ ପଟ୍ଟନାୟକ, ଚୈତନ୍ୟ ପ୍ରସାଦ ସେଠୀ, ରାଜକିଶୋର ମିଶ୍ର, ପ୍ରସନ୍ନ ମିଶ୍ର, ରତ୍ନାକର ଚଇନି ପ୍ରମୁଖ ବେଶ୍ କେତେକ ଯୁବବନ୍ଧୁ ତାଙ୍କୁ ସଖ୍ୟ ଦେଉଥିଲେ ଓ ତାଙ୍କ ସହିତ ପାରସ୍ପରିକ ଭାବ ବିନିମୟ କରୁଥିଲେ ।

'ଆତ୍ମପ୍ରକାଶନୀ' ବଲାଙ୍ଗୀରରୁ ବେଶ୍ କେତୋଟି ପୁସ୍ତକ ପ୍ରକାଶ ପାଇଲା । ଏସବୁ ମଧ୍ୟରେ କେତୋଟି ଥିଲା ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଅତ୍ୟନ୍ତ ଅଭିନବ ଓ ଅନେକତଃ ପରୀକ୍ଷା ନିରୀକ୍ଷା ଉପରେ ପର୍ଯ୍ୟବସିତ । ସେଥିମଧ୍ୟରୁ 'ବିଫଳତା' ସପକ୍ଷରେ' ପୁସ୍ତକ ଅନ୍ୟତମ । ଏହା ଥିଲା ଏକ ନୂତନ ପ୍ରୟାସ । କିଛି ବନ୍ଧୁ ଏକାଠି ବସୁଥିଲେ । ଜଣେ ବନ୍ଧୁ ଗୋଟିଏ କବିତାର ପ୍ରଥମ ପଦଟି ଲେଖୁଥିଲା ଏବଂ ଦ୍ୱିତୀୟ ବନ୍ଧୁ ତାକୁ ଖାପ ଖାଇଲା ପରି ଦ୍ୱିତୀୟ ପଦଟି ଲେଖୁଥିଲା । ତୃତୀୟ ବନ୍ଧୁ ଏ ଦୁଇଟିଯାକ ପଦର ଭାବକୁ ଉପଜୀବ୍ୟ କରି ଓ ତା' ସହିତ ସମନ୍ୱୟ ରଖି ତୃତୀୟ ପଦଟି ଲେଖୁଥିଲା ଏବଂ ଚତୁର୍ଥ ଜଣକ ତିନୋଟିଯାକ ପଦର ଭାବକୁ ଧରି ତା' ସହିତ ସଂହତି ରଖି ଶେଷ ପଦଟି ଲେଖୁଥିଲା । ବଙ୍ଗଳା 'ବାରୋୟାରୀ' ଓ ଓଡ଼ିଆ 'ବାସନ୍ତୀ' ଶୈଳୀରେ ଲିଖିତ ଏଇ କବିତାଗୁଡ଼ିକର ଏକ ସଂଗ୍ରହ 'ବିଫଳତା ସପକ୍ଷରେ' । ତେବେ ଏହାର ନାମ "ବିଫଳତା ସପକ୍ଷରେ" କାହିଁକି ? ଏଇ ପ୍ରଶ୍ନର ଉତ୍ତରରେ ଲାବଣ୍ୟ ଦେବୀ କୁହନ୍ତି - "ଏଇଥିପାଇଁ ଯେ, ଏପରି କବିତା ଲେଖିବା ସଫଳ କାର୍ଯ୍ୟ ନଥିଲା । ତେଣୁ ଏହି କବିତାଗୁଡ଼ିକ ବିଫଳ ହେଉ ପଛକେ - ତା' ସପକ୍ଷରେ କିଛି କହିବ- ଏହା ଥିଲା ତାଙ୍କର ପ୍ରୟାସ ଓ ଲକ୍ଷ୍ୟ ।"

ମାତ୍ର ଏହି ସମୟରେ କ୍ଷେତ୍ରବାସୀଙ୍କର ଅନ୍ୟ ଏକ ଅଭିନବ ପ୍ରୟାସ - 'ପୋଷ୍ଟର କବିତା' । ଜଣେ ସଂସ୍କୃତିପ୍ରେମୀ ଓ ସଚେତନ ନାଗରିକ ଭାବରେ କ୍ଷେତ୍ରବାସୀ ଲକ୍ଷ୍ୟ

କରିଥିଲେ - ସମାଜରେ ଏପରି କେତେକ କୁରୁଚିପୂର୍ଣ୍ଣ ବ୍ୟକ୍ତି ଓ ବିଷୟ ଅଛି ଯାହା ସାମଗ୍ରିକ ରୁଚିବୋଧକୁ ବିଭ୍ରାନ୍ତ କରିବାରେ ଚେଷ୍ଟିତ ରହିଛି । ରାସ୍ତାକୁ ବାହାରି ପଡ଼ିଲେ କାନ୍ଥ ବାଡ଼ରେ ଅଶ୍ଳୀଳ ଛବି, ପରିସ୍ରା କରିବା ପାଇଁ କେଉଁ ଏକ ଆକୁଆଳ ଜାଗାରେ ଠିଆ ହୋଇଗଲେ ଆଖିରେ ପଡ଼ିବ - ଅଶ୍ଳୀଳ ଉଲ୍ଲେଖ । ପୁଣି କଲେଜ କାନ୍ଥବାଡ଼, ପରିସ୍ରାଗାର ଓ ଗାର୍ଲ୍ସ ସ୍କୁଲ ବା ମହିଳା କଲେଜ ପ୍ରାଚୀର କଥା ତ କହିବାର ନୁହେଁ । ଏ ସବୁକୁ ବନ୍ଦ କରି ହେବ କେମିତି ? ବୁଦ୍ଧିଟିଏ ସେଦିନ ବିଜୁଳି ପରି ଝଟକି ଥିଲା କ୍ଷେତ୍ରବାସୀଙ୍କ ମୁଣ୍ଡରେ । ସାହିତ୍ୟ; ସାହିତ୍ୟ ହିଁ କରିପାରିବ ଏ ସବୁର ସମାଧାନ । ବ୍ୟକ୍ତିତ୍ୱର ବିଶେଷତ୍ୱରୁ ସେ ଅଳସୁଆମି ବା ଗୁଲି ଗପରେ ସମୟ ନଷ୍ଟ କରିବା ପସନ୍ଦ କରୁ ନଥିଲେ ଓ ସାହିତ୍ୟାନୁରାଗ ହେତୁ ସାହିତ୍ୟ ମାଧମରେ ଏସବୁର ସମାଧାନ ଚିନ୍ତା କରୁଥିଲେ । ତେଣୁ ଛପା ହେଲା "ପୋଷ୍ଟର କବିତା" । 'ଆତ୍ମ ପ୍ରକାଶନୀ' ଶତଦଳଟିକୁ ତ ସାରସ, ଚକ୍ରବାକ, ମଧୁମକ୍ଷିକା, ପ୍ରଜାପତି ପରି ବେଢ଼ି ରହିଥିଲେ କବିକୁଳ ! ଫଳରେ ଚିନ୍ତାଧାରାଟି କାର୍ଯ୍ୟକାରୀ କରିବାରେ ତାଙ୍କୁ ଅସୁବିଧା ହେଲାନାହିଁ । ତେଣୁ ଲେଖାଗଲା ୪/୫ ଧାଡ଼ି ବା ଖୁବ୍ ବେଶିରେ ୭/୮ ଧାଡ଼ି ବିଶିଷ୍ଟ ଖୁବ୍ ଛୋଟ ଭାବଧାରାର ଛୋଟ ଛୋଟ କବିତା ଓ ସେସବୁରୁ ୫/୬ ଟିକୁ ଏକାଠି କରି ଛୋଟ ଛୋଟ ପୋଷ୍ଟରରେ ଛପାଯାଇ ମରାଗଲା ସେ ସବୁ ଗାର୍ଲସ୍କୁଲ, ମହିଳା କଲେଜ ପ୍ରାଚୀରରେ, ରାସ୍ତାଘାଟରେ ମରାଯାଇଥିବା ଅଶ୍ଳୀଳ ପୋଷ୍ଟର ଓ ଲେଖା ଉପରେ ଓ କଲେଜ କାନ୍ଥ, କମନ୍‌ରୁମ୍ ବା ପରିସ୍ରାଗାରରେ । ଏହି 'ପୋଷ୍ଟର କବିତା' ଗୁଡ଼ିକ ଛପା ଯାଉଥିଲା 'ଆତ୍ମପ୍ରକାଶନୀ' ପକ୍ଷରୁ କ୍ଷେତ୍ରବାସୀଙ୍କ ସମ୍ପାଦନାରେ । ପ୍ରଥମ ପୋଷ୍ଟର କବିତାଟି ଛପା ଯାଇଥିଲା ୯-୧୧-୧୯୭୦ ରେ ଓ ପରେ ପରେ ଏହାର ବେଶ୍ କେତୋଟି ଫର୍ଦ୍ଦ ନିୟମିତ ପ୍ରକାଶ ପାଇଥିଲା । ସେତେବେଳେ ଏହା କେବଳ ଅଭିନବ ନଥିଲା - ଥିଲା ଏକ ଆନ୍ଦୋଳନ ଓ କ୍ରମେ ଦେଖାଯାଇଥିଲା - ଚପଳମତି ବାଳକମାନଙ୍କର ଦୁଷ୍ପ୍ରବୃତ୍ତି ଓ ଦୁଷ୍କାର୍ଯ୍ୟ କ୍ରମେ ସ୍ତିମିତ ଓ ସଂଯତ ହୋଇଆସୁଛି । ଦୁଃଖର ସହିତ କହିବାକୁ ପଡୁଛି - ସେଦିନ ଓଡ଼ିଶାର ଗୋଟିଏ ପ୍ରାନ୍ତରୁ କ୍ଷେତ୍ରବାସୀ ଏଇ ଯେଉଁ ଆନ୍ଦୋଳନ, ଏଇ ଯେଉଁ ଜୟଯାତ୍ରା ଆରମ୍ଭ କରିଥିଲେ - ଅଶ୍ଳୀଳତା ଉପରେ ଶ୍ଳୀଳତାର ବା କୁରୁଚି ଉପରେ ସୁରୁଚିର ସେପରି ବିଧିବଦ୍ଧ ପ୍ରୟାସ ପରେ ଆଉ ଦେଖାଯାଇ ନାହିଁ । ଆହା ! ସେଦିନ ଯଦି ଓଡ଼ିଶାର ସବୁ ପ୍ରାନ୍ତରୁ ଜଣେ ଜଣେ କ୍ଷେତ୍ରବାସୀ ମୁଖ ଟେକିଥାନ୍ତେ ଓ ହାତ ମିଳେଇଥାନ୍ତେ ଏ କ୍ଷେତ୍ରବାସୀଟି ସହିତ ତେବେ ଓଡ଼ିଶାରେ ଆଜି ପ୍ରଖର ଦିବାଲୋକରେ ଉଲଙ୍ଗତାର ଏପରି ସ୍ୱୈରିଣୀ ଆତଙ୍କ ଖେଳି ବୁଲୁନଥାନ୍ତା ।

ସେତେବେଳେ ଓଡ଼ିଆ ସାହିତ୍ୟରେ 'ମିନି' ଆନ୍ଦୋଳନ ଥିଲା ଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ । ଆକସ୍ମିକ ଭାବେ ଥୋକାଏ ସାହିତ୍ୟିକ ଛୋଟ ଛୋଟ ଭାବଧାରାର ପରିପ୍ରକାଶ ପାଇଁ 'ମିନି' ରଚନାର ଉପାଦେୟତା ଅନୁଭବ କରିଥିଲେ । ଫଳରେ ପ୍ରକାଶ ପାଇଥିଲା ମିନି ଗଳ୍ପ, ମିନି କବିତା, ମିନି ରମ୍ୟରଚନା ଆଦି । ଅନ୍ୟାନ୍ୟ ଅନେକଙ୍କ ସହ ରତ୍ନାକର ଚଇନି ଥିଲେ ବଲାଙ୍ଗୀରରେ ଏହି ଚିନ୍ତା ଧାରର ଅକୁଣ୍ଠ ସମର୍ଥକ । ବନ୍ଧୁ ଭାବରେ ସହଯୋଗ କରିଥିଲେ ତାଙ୍କୁ କ୍ଷେତ୍ରବାସୀ, ଫଳରେ ସେଇ ବଲାଙ୍ଗୀରରୁ ସେମାନେ ପ୍ରକାଶ କଲେ 'ଉତ୍ତେଜନା' ନାମରେ ଏକ ମିନି ପତ୍ରିକା । କ୍ଷେତ୍ରବାସୀ ନିଜେ ମଧ୍ୟ ସେଥିରେ ଲେଖାଲେଖି କରୁଥିଲେ । ମାତ୍ର ମିନି ଆନ୍ଦୋଳନର ଜୁଆରରେ ଭଟ୍ଟା ପଡ଼ିବା ସହିତ ସେ ପତ୍ରିକା ପ୍ରକାଶନରେ ମଧ୍ୟ ବିରତି ଆସିଗଲା । ଏସମୟରେ ଅନ୍ୟ ଏକ ପତ୍ରିକା ମଧ୍ୟ କ୍ଷେତ୍ରବାସୀଙ୍କ ସଂପାଦନାରେ ପ୍ରକାଶ ପାଉଥିଲା । ପତ୍ରିକାଟିର ନାଁ ରଖାଯାଇଥିଲା 'ପଞ୍ଚରଙ୍ଗ' ଏବଂ ସେଥିରେ ଗଳ୍ପ-କବିତାଦି ସୃଜନଶୀଳ ସୃଷ୍ଟି ସହିତ ସମୀକ୍ଷାତ୍ମକ ରଚନା ମଧ୍ୟ ପ୍ରକାଶ ପାଉଥିଲା । ବସ୍ତୁତଃ, ଏଇ ସମୟଟିରେ କ୍ଷେତ୍ରବାସୀଙ୍କୁ ଆମେ ମୁଖ୍ୟତଃ ଦେଖୁ ଜଣେ ସୃଜନଶୀଳ ସ୍ରଷ୍ଟା ଭାବରେ । ଏ ସମୟରେ 'ମୁକ୍ତ ଦଶକ' ନାମରେ ଏକ କବିତା ପୁସ୍ତକର ସଂକଳନ ମଧ୍ୟ ସେ କରିଥିଲେ । ସେଥିରେ ଅନ୍ୟ ୯ ଜଣ କବିଙ୍କ ସମେତ ତାଙ୍କର କବିତା ମଧ୍ୟ ପ୍ରକାଶ ପାଇଥିଲା । ଏତଦ୍‌ବ୍ୟତୀତ, ତାଙ୍କର ପ୍ରଥମ ଗଳ୍ପ ଗ୍ରନ୍ଥ 'ଫୁଲର କବର' ଏବଂ ପ୍ରଥମ କବିତା ସଂକଳନ 'ଉଚ୍ଚାରଣ' ମଧ୍ୟ ଏଇ ସମୟରେ ପ୍ରକାଶ ପାଇଥିଲା ।

ଏହି ପୁସ୍ତକଗୁଡ଼ିକ ମଧ୍ୟରୁ 'ମୁକ୍ତ ଦଶକ' ପୁସ୍ତକଟି ଥିଲା କ୍ଷେତ୍ରବାସୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ 'ଆତ୍ମପ୍ରକାଶନୀ' ରୁ ପ୍ରକାଶିତ ପ୍ରଥମ ପୁସ୍ତକ । 'ଦଶଟି ମୁକ୍ତ ପ୍ରାଣର ସରଳ ଓ ସହଜ ଉଚ୍ଚାରଣ' ଥିଲା ଏହି ପୁସ୍ତକଟିର ବିଶେଷତ୍ୱ । ଏଥିରେ ଚିନ୍ତାମଣି ବେହେରା ପ୍ରମୁଖ ୧୦ ଜଣ ପ୍ରତିଶ୍ରୁତିବାନ୍ ଓ ପ୍ରତିଷ୍ଠିତ କବିଙ୍କର କବିତା ସଙ୍କଳିତ ହୋଇଥିଲା ଏବଂ ସେହି ୧୦ ଜଣ କବିଙ୍କ ମଧ୍ୟରେ ଉଭୟ ଲାବଣ୍ୟ ଓ କ୍ଷେତ୍ରବାସୀ ଥିଲେ ଅନ୍ୟତମ । ଅନ୍ୟ ପୁସ୍ତକ ଦୁଇଟି କିନ୍ତୁ ଥିଲା କ୍ଷେତ୍ରବାସୀଙ୍କର ସଂପୂର୍ଣ୍ଣ ନିଜସ୍ୱ । ଏଥି ମଧ୍ୟରୁ ପ୍ରଥମଟି 'ଫୁଲର କବର' -ଯାହା କ୍ଷେତ୍ରବାସୀଙ୍କ ୧୬ ଟି ଗଳ୍ପର ଏକ ସଂକଳନ । ଏହି ସଂକଳନର 'ପୃଷ୍ଠବନ୍ଧ' ଲେଖିଥିଲେ ଶ୍ରୀମତୀ ଲାବଣ୍ୟ ନାୟକ । ଅନ୍ୟ ପୁସ୍ତକଟି କ୍ଷେତ୍ରବାସୀଙ୍କ ୩୦ଟି କବିତାର ଏକ ସ୍ତବକ ଏବଂ ଏହା ଲାବଣ୍ୟ ଦେବୀଙ୍କ ଦ୍ୱାରା ସଂପାଦିତ । ଏହି ପୁସ୍ତକଟିର ଆଭିମୁଖ୍ୟ କିନ୍ତୁ ଥିଲା ସଂପୂର୍ଣ୍ଣ ଭିନ୍ନ । କାରଣ କୌଣସି କବିଙ୍କ ଜୀବଦ୍ଦଶାରେ ତାଙ୍କ ରଚିତ କବିତା ଅନ୍ୟ କର୍ତ୍ତୃକ ସଂପାଦିତ

ହୋଇ ପ୍ରକାଶ ପାଇବା ଓଡ଼ିଆ ସାହିତ୍ୟରେ ଏକ ନୂଆ କଥା ଥିଲା । ପୁଣି, କେବଳ ଏହି ଦୃଷ୍ଟିରୁ 'ଉଚ୍ଚାରଣ' କବିତା ସଂକଳନଟି ଅଭିନବ ନଥିଲା; ଏହାର ଅନ୍ୟ ଏକ ବିଶେଷତ୍ୱ ଥିଲା ଯେ - ଏହି ପୁସ୍ତକରେ ସଂକଳିତ କବିତାଗୁଡ଼ିକ ବିଭିନ୍ନ ବ୍ୟକ୍ତିଙ୍କ ଦ୍ୱାରା ନିର୍ବାଚିତ । ଏହାର ପ୍ରସ୍ତୁତି ବଡ଼ କୌତୂହଳୋଦ୍ଦୀପକ । ପ୍ରଥମତଃ କ୍ଷେତ୍ରବାସୀଙ୍କ ସମସ୍ତ କବିତାର ଏକ ଫାଇଲ୍ ପ୍ରସ୍ତୁତ କରାଗଲା ଓ ତାହା ଜଣଙ୍କୁ ଦିଆଯାଇ ଅନୁରୋଧ କରାଗଲା ଯେ, ସେ କବିତାଗୁଡ଼ିକ ପଢ଼ିବେ ଏବଂ ସେଥିରୁ ଶ୍ରେଷ୍ଠ ୫ଟି କବିତା ବାଛି ଦେବେ । ସେ ତାହା କଲେ ଓ ତତ୍ପରେ ନିର୍ବାଚିତ ସେହି କବିତା ୫ଟିକୁ ବାଦ୍ ଦେଇ ବାକି କବିତାରେ ଫାଇଲଟି ଅନ୍ୟ ଜଣଙ୍କୁ ଦିଆଗଲା ଓ ସେ ଆଉ ୫ ଟି କବିତା ବାଛିଲେ । ଏହିପରି "ପାଣ୍ଡୁଲିପିର ପର୍ଯ୍ୟଟନ" କ୍ରମରେ ୬ ଜଣ ବ୍ୟକ୍ତିଙ୍କ ଦ୍ୱାରା ନିର୍ବାଚିତ ୩୦ ଟି ଶ୍ରେଷ୍ଠ କବିତାକୁ ନେଇ ପ୍ରସ୍ତୁତ ହେଲା "ଉଚ୍ଚାରଣ" କବିତା ପୁସ୍ତକ ଓ ଲାବଣ୍ୟ ଦେବୀ କବିତାଗୁଡ଼ିକର କ୍ରମବିନ୍ୟାସ କରିଥିଲେ । ନିଜସ୍ୱ ସୃଜନଶୀଳ ରଚନାର ସେହି ପ୍ରଥମ ସଂକଳନଟିକୁ କ୍ଷେତ୍ରବାସୀ ଉତ୍ସର୍ଗ କରିଥିଲେ ନିଜର ଦୁଇ ସନ୍ତାନଙ୍କୁ । 'ଉତ୍ସର୍ଗଲିପି' ରେ ଉଲ୍ଲେଖ ଥିଲା - "ଆଗାମୀ ସମୟରେ ସାହିତ୍ୟିକ ଦାୟାଦ ଶ୍ରଦ୍ଧାସ୍ପଦ ଶ୍ରୀମାନ୍ ଅନୁରକ୍ତ ଓ କଲ୍ୟାଣୀୟା ଲୋପାମୁଦ୍ରା (ଲିପି)ଙ୍କୁ" । ଉଲ୍ଲେଖନୀୟ ଯେ ନିଜର ଦୁଇ ସନ୍ତାନଙ୍କୁ ଏହି ପୁସ୍ତକଟି ଉତ୍ସର୍ଗ କରିବା ମୂଳରେ କ୍ଷେତ୍ରବାସୀଙ୍କର ସେଇ ମୂଳ ଅଭିଳାଷଟି କାମ କରୁଥିଲା ଯେ - ତାଙ୍କର ପରିବାର ଆଉ ପାଞ୍ଚଟା ପରିବାର ପରି ନ ହୋଇ ହେବ ଏକ ସାରସ୍ୱତ ପରିବାର; ଏବଂ ଆଗାମୀ ସମୟର ସାହିତ୍ୟିକ ଦାୟାଦ ହେବେ ତାଙ୍କର ସନ୍ତାନମାନେ ।

ମାତ୍ର ଏହାର ଆଖପାଖ ସମୟକୁ ଆମେ ଲକ୍ଷ୍ୟ କରୁ ଯେ - କ୍ଷେତ୍ରବାସୀଙ୍କର ଗଳ୍ପ କବିତା ରଚନା ସୀମିତ ହୋଇ ଆସୁଛି ଓ ସେ କ୍ରମେ ଅଧିକ ନିକଟତର ଓ ଅଧିକ ଅନୁରକ୍ତ ହେଉଛନ୍ତି ସାହିତ୍ୟର ସମୀକ୍ଷାତ୍ମକ ବିଭାବ ପ୍ରତି । ତେଣୁ ଏଣିକି ଆମେ ଯେଉଁ କ୍ଷେତ୍ରବାସୀଙ୍କୁ ଦେଖୁଁ ସେ ଆଉ ମୁଖ୍ୟତଃ ଗାଳ୍ପିକ ବା କବି କ୍ଷେତ୍ରବାସୀ ନୁହନ୍ତି - ଏଣିକି ସେ 'ଅନ୍ୱେଷା' ର ସଙ୍ଗଠକ କ୍ଷେତ୍ରବାସୀ ।

ଗଳ୍ପକବିତା ରଚନା ଓ ଗଳ୍ପ-କବିତାର ପୃଷ୍ଠପୋଷକତା କରିବା ଭିତରେ କ୍ଷେତ୍ରବାସୀ ଲକ୍ଷ୍ୟ କରିଥିଲେ ଯେ ଓଡ଼ିଆ ସାହିତ୍ୟରେ ସମୀକ୍ଷାମୂଳକ ରଚନା ବା ସମୀକ୍ଷା ଗ୍ରନ୍ଥର ଉତ୍କଟ ଅନଟନ । ଏହି ଅନଟନ, ଏହି ଅଭାବ ଦୂର ହେବ କିପରି ? ସେ ଠିକ୍ କଲେ, ନିଜେ ଲେଖିବେ ଓ ଅନ୍ୟମାନଙ୍କୁ ଲେଖାଇବେ । ତେଣୁ ବଲାଙ୍ଗୀରରୁ ହିଁ ଜନ୍ମ ନେଲା 'ଅନ୍ୱେଷା ସଂସଦ' ।ଏହି ଅନୁଷ୍ଠାନର କାର୍ଯ୍ୟ ଥିଲା ସାହିତ୍ୟିକ ମୂଲ୍ୟବୋଧର

ଅନ୍ୱେଷା । ଏହା ଥିଲା ସର୍ଜନାତ୍ମକ ସମାଲୋଚନାର ଏକ ଅନୁଷ୍ଠାନ ଏବଂ ଏହାର ମୂଳ ଲକ୍ଷ୍ୟ ଥିଲା ସାହିତ୍ୟର ବିଭିନ୍ନ ବିଭାବ ଉପରେ ସମୀକ୍ଷାତ୍ମକ ଓ ଗବେଷଣାତ୍ମକ ପ୍ରବନ୍ଧ ରଚନା । ସେତେବେଳେ ନିୟମିତ ଭାବେ ଏହାର ପାକ୍ଷିକ ପ୍ରବନ୍ଧ ପାଠ ଓ ଆଲୋଚନାଚକ୍ର ଅନୁଷ୍ଠିତ ହେଉଥିଲା । ବଲାଙ୍ଗୀରର ସବୁ ସାହିତ୍ୟିକ ଅଧ୍ୟାପକମାନେ ଏଥିରେ ଅଂଶଗ୍ରହଣ କରୁଥିଲେ । ମୂଳତଃ, ଏହା ଥିଲା ଏ ଦିଗରେ ଏକ ପ୍ରାଥମିକ ପ୍ରୟାସ ଯାହାର ପରବର୍ତ୍ତୀ ପରିବର୍ଦ୍ଧିତ ପ୍ରକରଣ ଆମେ ଦେଖୁଁ କ୍ଷେତ୍ରବାସୀଙ୍କ ଦ୍ୱାରା ପ୍ରତିଷ୍ଠିତ 'ଓଡ଼ିଆ ଗବେଷଣା ପରିଷଦ'ରେ ।

ବଲାଙ୍ଗୀରର ସମୟ ଖଣ୍ଡରେ କ୍ଷେତ୍ରବାସୀଙ୍କର ସବୁଠୁ ବଡ଼ କୃତି 'ଓଡ଼ିଆ ଯୁବ ଲେଖକ ସମ୍ମେଳନ'ର ଆୟୋଜନ । ଏଥିପୂର୍ବରୁ ୧୯୬୩ ରେ ପ୍ରତିଷ୍ଠାତା ସଂପାଦକ ରୂପେ ଉତ୍ତୁଙ୍ଗ ଲେଖକ ସମ୍ମିଳନୀର ଯେଉଁ ପ୍ରଥମ ଅଧିବେଶନ ସେ ଆୟୋଜନ କରିଥିଲେ - ସେହି ଅଭିଜ୍ଞତାର ଆଧାରରେ ଏହି ସମ୍ମେଳନ ପାଇଁ ସେ ଦମ୍ଭର ସହିତ ଅଣ୍ଟା ଭିଡ଼ିଥିଲେ ।

୧୯୬୯ ରେ ବଲାଙ୍ଗୀରରେ ଅନୁଷ୍ଠିତ ହେଲା ଯୁବ ଲେଖକ ସମ୍ମେଳନର ବାର୍ଷିକ ଉତ୍ସବ । କ୍ଷେତ୍ରବାସୀ ଥିଲେ ଏହି ସମ୍ମେଳନର ଅଭ୍ୟର୍ଥନା ସମିତିର ସାଧାରଣ ସମ୍ପାଦକ । ସେ ସମୟରେ ଯୁବ ଲେଖକ ସମ୍ମେଳନର ଛୋଟ ଅଫିସଟିଏ ଥିଲା ବଲାଙ୍ଗୀରରେ ଓ ଗୋଟିଏ ଟେଲିଫୋନ୍ ଦିଆଯାଇଥିଲା ତାଙ୍କୁ । ମୁଖ୍ୟତଃ କ୍ଷେତ୍ରବାସୀ ଯେପରି ଭାବେ ଆୟୋଜନ କରିଥିଲେ ସେ ଉତ୍ସବ, ତାହା ସେତେବେଳେ ବହୁ ସଂଗଠକଙ୍କର ଆଖି ଖୋଲିଦେଇଥିଲା । ତାହା ଦେଖିଥିବା ବହୁ ସାହିତ୍ୟିକ ଏବେ ବି କହିବାର ଶୁଣାଯାଏ  ଯେ ସମ୍ମେଳନର ସେପରି ଉତ୍ସବ, ସେପରି ଆୟୋଜନ ଆଗରୁ ହୋଇ ନଥିଲା କି ପରେ ହୋଇନାହିଁ । ଏ ସଂପର୍କରେ ସବୁଠୁ ଭଲ ସୁପାରିଶ ଦିଅନ୍ତି 'ଆମ ପ୍ରକାଶନୀ' ସଂସ୍ଥାର ଅନ୍ୟତମ ପୂର୍ବତନ ସଂପାଦକ ଡକ୍ଟର ଶଙ୍କରଲାଲ ପୁରୋହିତ । ସେ କହନ୍ତି - "ଗୋଟିଏ କଲମ, ଗୋଟିଏ ଟେଲିଫୋନ୍ ଓ ଗୋଟିଏ ବ୍ୟକ୍ତି - ନିଷ୍ଠାର ସହିତ କାମ କଲେ କେତେ ବିରାଟ ଆୟୋଜନ ଯେ କରିପାରେ ତାହା ନ ଦେଖିଲେ ବିଶ୍ୱାସ କରି ହେବନାହିଁ ।" କେବେ ଦିନେ ହୁଏତ କେଉଁ ଜଣେ ବୈଜ୍ଞାନିକ କହିଥିଲେ, 'ମତେ ପୃଥିବୀ ବାହାରେ ଖଣ୍ଡିଏ ଛୋଟ ଜାଗା ଓ ଖଣ୍ଡେ ଲମ୍ବା ବାଡ଼ି ଦିଅ - ମୁଁ ଏ ପୃଥିବୀକୁ ଓଲଟେଇ ଦେବି ।" କିନ୍ତୁ ସେଦିନ ଯୁବ ଲେଖକ ସମ୍ମେଳନର ସଙ୍ଗଠନାତ୍ମକ କାର୍ଯ୍ୟରେ କ୍ଷେତ୍ରବାସୀଙ୍କର ନିଷ୍ଠା ଓ କାର୍ଯ୍ୟଧାରା ଦେଖି ଅନେକଙ୍କର ମନେ ହୋଇଥିଲା, କେହି ଯଦି ତାଙ୍କୁ ପଚାରିଥାନ୍ତା, ସେ ହୁଏତ କହିଥାନ୍ତେ - 'ମତେ ଗୋଟିଏ କଲମ,

ଗୋଟିଏ ଟେଲିଫୋନ୍, ବସିବା ପାଇଁ ଛୋଟ ଖଣ୍ଡିଏ ଜାଗା ଦିଅ ଓ ସର୍ବୋପରି ଜଗନ୍ନାଥେ ଗୋଟିଏ ଏକାଗ୍ର ହୃଦୟ ଓ ସୁସ୍ଥ-ଚିନ୍ତାଶକ୍ତି ଦିଅନ୍ତୁ - ମୁଁ ଆମର ସମଗ୍ର ସାହିତ୍ୟ ଜଗତକୁ ଓଲଟ ପାଲଟ କରିଦେବି ।'

ଯୁବଲେଖକ ସମ୍ମେଳନ ଉତ୍ସବ ଯଥାରୀତି ଉଦ୍‌ଯାପିତ ହେଲା । କିନ୍ତୁ ତା' ପରଠାରୁ କ୍ଷେତ୍ରବାସୀ ହୋଇଯାଇଥିଲେ ବଲାଙ୍ଗୀରର ଘରେ ଘରେ ଅତି ଆପଣାର ମଣିଷ । ଏହିସବୁ ସଫଳତା, ପ୍ରସିଦ୍ଧି ଓ ତୃପ୍ତିକୁ ପୂର୍ଣ୍ଣ କରି ନିଜ ଗୃହାଙ୍ଗନରେ ବି ଘଟିଥିଲା ଏକ ଆନନ୍ଦଦାୟକ ଘଟଣା - ପୁଅ 'ବାବୁନି'ର ଜନ୍ମ । ତେଣୁ ୧୯୭୧ରେ ଯେତେବେଳେ ପୁଣି ଥରେ ବଦଳି ହେଲା ଖଲ୍ଲିକୋଟକୁ, ସେତେବେଳକୁ ତାଙ୍କର କେମିତି ଗୋଟାଏ ମାୟା ଲାଗିଯାଇଥିଲା ବଲାଙ୍ଗୀର ପ୍ରତି । ସେ ଚାହୁଁ ନଥିଲେ ସେଠାରୁ ଆସିବା ପାଇଁ । କିନ୍ତୁ ସରକାରୀ ଚାକିରିଆ ଜୀବନ-ଉଦ୍‌ବନ୍ତା ଚଢ଼େଇ- ଯୁଆଡ଼େ ଉଡ଼ିବାକୁ ପଡ଼ିବ ସିଆଡ଼େ ଉଡ଼ିବାକୁ ହବ । ଅବଶ୍ୟ ସବୁଠି ଚଢ଼େଇର ବସା ପାଇଁ ଗଛ ଅଛି ଓ ଯୋଉଠିକି ଗଲେ ବି ସିଏ ବସାଟିଏ ବାନ୍ଧି ନେଇ ପାରିବ - ଏମିତି ଗୋଟାଏ ସାନ୍ତ୍ୱନା ମନକୁ ମନ ଦେଇ କ୍ଷେତ୍ରବାସୀ ମା' ଚଢ଼େଇ ଓ ଅଳ୍ପ ଅଳ୍ପ ପର ଗଜୁରୁଥିବା ଓ ଜମା ପର ଲାଗିନଥିବା ଦିଓଟି ଛୁଆ ଚଢ଼େଇଙ୍କୁ ଧରି ବଲାଙ୍ଗୀର ଛାଡ଼ି ଉଡ଼ି ଆସିଲେ ଖଲ୍ଲିକୋଟକୁ ଓ ପୁଣି ଥରେ ଆରମ୍ଭ ହେଲା ନୂଆ ବସା ବାନ୍ଧିବାର ପ୍ରଚେଷ୍ଟା ।

ଖଲ୍ଲିକୋଟ କଲେଜ । ନୂଆ ଜାଗା । ପବନରେ ନୂଆ ନିଃଶ୍ୱାସ । ଏଠି ଯଦିଓ ନଥିଲା ବଲାଙ୍ଗୀର ପରି ସାଙ୍ଗଠନିକ ପରିବେଶ - ତଥାପି ବି କ୍ଷେତ୍ରବାସୀ ଲାଗି ପଡ଼ିଲେ ଯଥାରୀତି । ବଲାଙ୍ଗୀରର ବ୍ୟସ୍ତତା ଓ ବହୁମୁଖୀ କାର୍ଯ୍ୟ ଭିତରେ ଗବେଷଣା ସନ୍ଦର୍ଭର ପ୍ରସ୍ତୁତିରେ ବେଶ୍ କିଛି ଅଗ୍ରଗତି ହୋଇଥିଲା । ଖଲ୍ଲିକୋଟରେ ତାହାକୁ ପ୍ରଥମେ ସଂପୂର୍ଣ୍ଣ କରିବାରେ ଲାଗି ପଡ଼ିଲେ ସେ । ଏହି ସମୟରେ ସେ ପ୍ରକାଶ କରିଥିଲେ ତାଙ୍କ ଗବେଷଣା ସନ୍ଦର୍ଭର କିଛି ଅଂଶ ।

ଏତେବେଳକୁ ଗଳ୍ପ କବିତା ରଚନା ଅପେକ୍ଷା ଗବେଷଣା କାର୍ଯ୍ୟ ପ୍ରତି ସେ ଅଧିକ ଆବିଷ୍ଟ ହେଲେଣି । ମଝିରେ ମଝିରେ ଗଳ୍ପ କବିତା ଲେଖା ଓ ଛପା ନଚାଲିଥିଲା ନୁହେଁ କିନ୍ତୁ ମୁଖ୍ୟ ପ୍ରୟାସଟି ଥିଲା ସମୀକ୍ଷା ରଚନା ।

ବଲାଙ୍ଗୀରରେ ଥିଲା 'ଅନ୍ୱେଷା ସଂସଦ' । ଏଠି ସେମିତି ନକିଛି ହେଲେ ତ ଅସୁବିଧା । ତେଣୁ ଗଠିତ ହେଲା ଏକ ନୂଆ ଅନୁଷ୍ଠାନ - 'ସମୀକ୍ଷା ସଂସଦ ।' ସାଙ୍ଗରେ ଥିଲେ ଡକ୍ଟର ଅପର୍ଣ୍ଣା ପ୍ରଧାନ, ବ୍ରହ୍ମାନନ୍ଦ ସିଂହ, ସୁଦର୍ଶନ ଆଚାର୍ଯ୍ୟ ପ୍ରମୁଖ ବହୁ ବନ୍ଧୁ ଓ

ସହକର୍ମୀ ଏବଂ ସର୍ବୋପରି ସହଯାତ୍ରିଣୀ ଲାବଣ୍ୟ ଦେବୀ । ମାତ୍ର ଏହି ସଂସଦର ମୂଳ ଓ ମୁଖ୍ୟ ଲକ୍ଷ୍ୟଟି କେବଳ ପ୍ରବନ୍ଧ ପାଠ ବା ଆଲୋଚନା ମଧ୍ୟରେ ସୀମିତ ନରହି ଥିଲା ଆଉ ପାଦେ ଅଧିକା । ଓଡ଼ିଆ ସାହିତ୍ୟର ଅଧ୍ୟାପକ ଭାବେ କ୍ଷେତ୍ରବାସୀ ଲକ୍ଷ୍ୟ କରିଥିଲେ ଯେ, ଓଡ଼ିଆ ସାହିତ୍ୟରେ ଜୀବନୀ-ମୂଳକ ସମୀକ୍ଷା ଗ୍ରନ୍ଥର ଘୋର ଅଭାବ । ତେଣୁ 'ସମୀକ୍ଷା ସଂସଦ' ଗଢ଼ିବା ମୂଳରେ ଆଭିମୁଖ୍ୟଟିଏ ରହିଲା ଯେ ଏହି ଅନୁଷ୍ଠାନରୁ ନିୟମିତ ଭାବେ ବିଭିନ୍ନ ସ୍ରଷ୍ଟା ଓ ସାରସ୍ୱତ ସାଧକମାନଙ୍କ ଜୀବନୀ ଓ ସାହିତ୍ୟ ବିଷୟକ ପୁସ୍ତକମାନ ପ୍ରକାଶ ପାଇବ । ଏହି ପୁସ୍ତକଗୁଡ଼ିକର କଳେବର ପୃଥୁଳ ନହୋଇ ହେବ ସାନ୍ଦ୍ର ଓ ସୀମିତ ଯାହା ଫଳରେ କି ଆଗ୍ରହୀ ପାଠକମାନଙ୍କ ନିକଟରେ ଏହା ସହଜଲଭ୍ୟ ହୋଇପାରିବ । ସବୁ ସଭ୍ୟଙ୍କୁ ଭିନ୍ନ ଭିନ୍ନ ବିଷୟରେ ପୁସ୍ତକ ରଚନା ପାଇଁ ଦାୟିତ୍ୱ ଦିଆଗଲା । କହିବା ଅନାବଶ୍ୟକ- କ୍ଷେତ୍ରବାସୀ ଥିଲେ ସବୁଥିରେ ଅଗ୍ରଗାମୀ । ତେଣୁ ୧୯୭୨ ରେ ପ୍ରଥମେ ପ୍ରସ୍ତୁତ ହୋଇ ପ୍ରକାଶ ପାଇଲା କ୍ଷେତ୍ରବାସୀଙ୍କ ଦ୍ୱାରା ଲିଖିତ 'ସମୀକ୍ଷା ସଂସଦ'ର ପ୍ରଥମ ମନୋଗ୍ରାଫ - 'କବି ନୀଳକଣ୍ଠ' । ପରେ ବ୍ରହ୍ମାନନ୍ଦ ସିଂହ ଲେଖିଲେ ତାଙ୍କର ପ୍ରଥମ ପୁସ୍ତକ 'ଔପନ୍ୟାସିକ ଗୋପୀନାଥ' । ଏହି ଉଭୟ ପୁସ୍ତକର ପ୍ରକାଶକ ଥିଲେ ଶ୍ରୀ ଭାସ୍କର ପାତ୍ର ଏବଂ ସେସବୁ ପୁସ୍ତକଗୁଡ଼ିକ ପ୍ରକାଶ କରିବାକୁ ସମ୍ମତ ହୋଇଥିଲେ । କିନ୍ତୁ ଅନ୍ୟ ସଭ୍ୟସଭ୍ୟାମାନଙ୍କର ନିଷ୍କ୍ରିୟତା ଏହି ପ୍ରୟାସଟିକୁ ବିଘ୍ନିତ କରିଦେଇଥିଲା ।

ମାତ୍ର ଏହି ଅସଫଳତାରେ ଭାଙ୍ଗି ପଡ଼ିବା ପରି ଲୋକ ନଥିଲେ କ୍ଷେତ୍ରବାସୀ । ବରଂ ଏହି ଅସଫଳତା ତାଙ୍କୁ ଅଧିକ ଉତ୍ସାହିତ କରିଥିଲା ଏ ଦିଗରେ । ସେ ନିଷ୍ପତ୍ତି କଲେ ଯେ - ଆଉ କେହି ଲେଖନ୍ତୁ ନ ଲେଖନ୍ତୁ - ସେ ଏହି ପ୍ରୟାସଟି ଜାରି ରଖିବେ । ସେ ତାହା କଲେ ମଧ୍ୟ । ଫଳରେ ଓଡ଼ିଆ ସାହିତ୍ୟ ପରବର୍ତ୍ତୀ କାଳରେ ତାଙ୍କଠାରୁ ପାଇଲା 'କବି ଚରିତ ରାଧାନାଥ' (୧୯୭୫) ଓ 'ନାରୀକବି ଅନ୍ନପୂର୍ଣ୍ଣା' : କବିଚରିତ ଓ କାବ୍ୟଚର୍ଚ୍ଚା, (୧୯୭୯) ପରି ପୁସ୍ତକ । ଏଥି ସହିତ ସେ 'କବି ବାଞ୍ଛାନିଧି' (୧୫-୧-୧୯୭୫) ଓ 'ଗଙ୍ଗାଧର : କବି ଓ ମଣିଷ' (୧୩-୮-୧୯୭୩) ନାମକ ଗୋଟିଏ ରେଡ଼ିଓ ଟକ୍ ଓ ଗୋଟିଏ ସେମିନାର ଭାଷଣ ଦେଇଥିଲେ ଏବଂ କବି ଓ ସାହିତ୍ୟିକମାନଙ୍କ ସାରସ୍ୱତ ଜୀବନ ଓ ପ୍ରଣୟୀ ଜୀବନ ଉପରେ ଆଧାରିତ ଏକ ଗ୍ରନ୍ଥ 'କବି ଓ କାମିନୀ' (ପ୍ରକାଶ କାଳ ୧୯୮୨) ରଚନା କରିଥିଲେ । କେବଳ ଏତିକି ନୁହେଁ - ଏହି ପର୍ଯ୍ୟାୟରେ ତାଙ୍କର ଅନ୍ୟ ଏକ ପ୍ରୟାସ ଥିଲା 'ସାରସ୍ୱତ ଗ୍ରନ୍ଥମାଳା' । ଏହି ଯୋଜନା ସେ ଆରମ୍ଭ କରିଥିଲେ - ପ୍ରାଚୀନ କବିମାନଙ୍କଠାରୁ ଓ "ପ୍ରାଚୀନ କବି : ନୂତନ ନିରୀକ୍ଷା ଗ୍ରନ୍ଥମାଳା"

- ପର୍ଯ୍ୟାୟରେ ୧୯୮୪ ରେ ପ୍ରଥମେ ପ୍ରକାଶ କରିଥିଲେ ଷୋଡଶ ଶତାବ୍ଦୀର କବି ଅର୍ଜୁନ ଦାସଙ୍କ ଜୀବନୀ ଓ ସାହିତ୍ୟକୃତି ବିଷୟକ ଏକ ପୁସ୍ତକ 'କବି ଅର୍ଜୁନ ଦାସ' ।

ଏହିସବୁ ପୁସ୍ତକ ରଚନା ଓ ପ୍ରକାଶ ମଧ୍ୟରେ କ୍ଷେତ୍ରବାସୀ ଲକ୍ଷ୍ୟ କରିଥିଲେ ଯେ, ବ୍ରହ୍ମପୁରରେ ପୁସ୍ତକ ପ୍ରକାଶନ ସଂସ୍ଥାମାନେ ଯେଉଁ ପୁସ୍ତକଗୁଡ଼ିକ ପ୍ରକାଶ କରୁଛନ୍ତି, ସେ ସବୁର ମାନ ଅତ୍ୟନ୍ତ ଅନୁନ୍ନତ । ପ୍ରକାଶକମାନେ ଭଲ ବହି ଛାପୁ ନାହାନ୍ତି - ଫଳରେ ପାଠକ ଓ କ୍ରେତାମାନେ ଭଲ ବହି ପାଉନାହାନ୍ତି - ତେଣୁ ଗ୍ରାହକତାର ରୁଚି ବିଘ୍ନିତ ଓ ସ୍ଥଳ ବିଶେଷରେ ନିମ୍ନମୁଖୀ ହେଉଛି । ବ୍ରହ୍ମପୁରର ଅନ୍ୟତମ ପ୍ରକାଶକ ଥିଲେ ଶ୍ରୀ ନିତ୍ୟାନନ୍ଦ ଦାସ ଓ 'ପୁସ୍ତକ ଭଣ୍ଡାର' ନାମରେ ତାଙ୍କର ଗୋଟିଏ ସ୍ୱଳ୍ପଖ୍ୟାତ ପ୍ରକାଶନ ସଂସ୍ଥା ଥିଲା । କ୍ଷେତ୍ରବାସୀଙ୍କ ସହିତ ତାଙ୍କର ପରିଚୟ ଓ ସେହି ପରିଚୟ କ୍ରମେ ଆନ୍ତରିକତାରେ ପର୍ଯ୍ୟବସିତ ହେବା ପର୍ଯ୍ୟନ୍ତ ସେ ଯେଉଁ ପୁସ୍ତକଗୁଡ଼ିକ ପ୍ରକାଶ କରିଥିଲେ, ସେଗୁଡ଼ିକ ଥିଲା ନିମ୍ନମାନର । ଏହି ନିମ୍ନମାନର ପୁସ୍ତକଗୁଡ଼ିକ ଛାପିବା ପଛରେ ତାଙ୍କର ଅବଶ୍ୟ କୌଣସି ଦୁରଭିସନ୍ଧି ବା ଅସତ୍ ଉଦ୍ଦେଶ୍ୟ ନଥିଲା; ବରଂ ଥିଲା ଅନବହିତତା ଓ ଦୂରଦୃଷ୍ଟିର ଅଭାବ । କ୍ଷେତ୍ରବାସୀ ତାଙ୍କୁ ଉଚ୍ଚମାନର ପୁସ୍ତକ ଛାପିବା ପାଇଁ ପ୍ରଲୁବ୍ଧ ଓ ପ୍ରରୋଚିତ କରିଥିଲେ । ଏପରିକି ଲେଖକମାନଙ୍କୁ ପ୍ରଭାବିତ କରି ଭଲଭଲ ବହିର ପାଣ୍ଡୁଲିପି ପ୍ରକାଶ ପାଇଁ ତାଙ୍କୁ ଆଣି ଦେଉଥିଲେ ଓ ସମୟ ସମୟରେ ଛପାକାମ ତଦାରଖ କରିବା ସହିତ ନିଜେ ପ୍ରୁଫ୍ ମଧ୍ୟ ଦେଖୁଥିଲେ । ପରେ 'ପୁସ୍ତକ ଭଣ୍ଡାର' ର ଏକ ଶାଖା କଟକ ବାଙ୍କାବଜାର ଠାରେ ଖୋଲାଗଲା । ସେହି ଶାଖାଟି ଖୋଲିବା ଦିଗରେ ସମସ୍ତ ପ୍ରୟାସ ଓ ସାମଗ୍ରିକ ଭୂମିକା ଥିଲା କ୍ଷେତ୍ରବାସୀଙ୍କର । ଏପରିକି ସୋ' ରୁମ୍ ପାଇଁ ବାଙ୍କା ବଜାରରେ ଘରଟିଏ ଠିକ୍ କରିବା ସହିତ ପ୍ରକାଶନ ପାଇଁ ନୂଆ ନୂଆ ଗଳ୍ପ କବିତା ପୁସ୍ତକ ଓ ଗବେଷଣା ଗ୍ରନ୍ଥମାନ ବି ସେ ଯୋଗାଡ଼ କରିଦେଉଥିଲେ ।

ଖଲ୍ଲିକୋଟ କଲେଜରେ ଅଧ୍ୟାପନା ସମୟରେ କ୍ଷେତ୍ରବାସୀଙ୍କର ଅନ୍ୟତମ ମୁଖ୍ୟ କାର୍ଯ୍ୟଥିଲା କଳା-ସାହିତ୍ୟ-ସଂସ୍କୃତି କ୍ଷେତ୍ରରେ କାର୍ଯ୍ୟ କରୁଥିବା ବିଭିନ୍ନ ଅନୁଷ୍ଠାନ ସହ ସଂପୃକ୍ତି । ସମ୍ବଲପୁରର 'କୋଶଳ ସାହିତ୍ୟ ସମାଜ' ପରି 'କଳିଙ୍ଗ ସାହିତ୍ୟ ସମାଜ' ଥିଲା ଖଲ୍ଲିକୋଟରେ ଏକ ଅନୁଷ୍ଠାନ ଓ ତାହା ସାହିତ୍ୟ କ୍ଷେତ୍ରରେ ସକ୍ରିୟ ଭାବେ କିଛି କିଛି କାର୍ଯ୍ୟ କରୁଥିଲା । 'କଳିଙ୍ଗ ସାହିତ୍ୟ ସମାଜ' ବ୍ୟତୀତ ସେ 'ଗଞ୍ଜାମ କଳା ପରିଷଦ' ସହିତ ମଧ୍ୟ ପ୍ରତ୍ୟକ୍ଷ ଭାବେ ସଂପୃକ୍ତ ଥିଲେ ଏବଂ ଏ ସବୁର ସାଙ୍ଗଠନିକ କାର୍ଯ୍ୟରେ ସହଯୋଗ କରୁଥିଲେ ।

ଏହି ସମୟରେ ପାରିବାରିକ ଜୀବନରେ ଦୁଇଟି ଉଲ୍ଲେଖନୀୟ ଘଟଣା ଘଟିଥିଲା । ସେଥିରୁ ପ୍ରଥମଟି –ସବା ସାନ ଝିଅ ଶତପର୍ବା ଦାସ ନାୟକ ଓରଫ୍ 'କୁନିମାମା' ର ଜନ୍ମ ଓ ଅନ୍ୟଟି ଘରେ ଜଗନ୍ନାଥଙ୍କର ବିଗ୍ରହ ପ୍ରତିଷ୍ଠା । ଏ ଉଭୟ ମଧ୍ୟରୁ ପ୍ରଥମ ଘଟଣାଟି ଥିଲା ଗତାନୁଗତିକ; କିନ୍ତୁ ପରିବାରକୁ ସେତିକିରେ ସୀମିତ କରିବାକୁ ଚାହୁଁଥିଲେ କ୍ଷେତ୍ରବାସୀ । ଅନ୍ୟ ଘଟଣାଟି ଥିଲା ସଂପୂର୍ଣ୍ଣ ଅପ୍ରତ୍ୟାଶିତ ଏବଂ ତାହା କେବଳ ତତ୍କାଳରେ ନୁହେଁ, ପରବର୍ତ୍ତୀ କାଳରେ ମଧ୍ୟ କ୍ଷେତ୍ରବାସୀଙ୍କ ଜୀବନ, ପରିବାର ତଥା ସାହିତ୍ୟ ସାଧନା କ୍ଷେତ୍ରରେ ଏକ ବିଶିଷ୍ଟ ଅଧ୍ୟାୟ ସଂଯୋଜିତ କରିଥିଲା ।

କ୍ଷେତ୍ରବାସୀ ପ୍ରଥମେ ଥିଲେ ଶାକ୍ତ । ଦେବୀ ଭକ୍ତ । ସେ ପ୍ରଥମେ ଘରେ ଦୁର୍ଗା ବିଗ୍ରହ ପ୍ରତିଷ୍ଠା କରିବାକୁ ଚାହିଁଥିଲେ । କିନ୍ତୁ ଲାବଣ୍ୟ ଦେବୀ ତାଙ୍କୁ ସେଥିପାଇଁ ନିଷେଧ କରିଥିଲେ । କାରଣ ଉଭୟେ ଥିଲେ ସରକାରୀ ଚାକିରିଆ ଏବଂ ଚାକିରି ଓ ପିଲା ଛୁଆଙ୍କ ଜଞ୍ଜାଳ ଓ ସାହିତ୍ୟିକ କାର୍ଯ୍ୟ ଭିତରେ ନିଷ୍ଠାପର ଭାବେ ଭଗବତୀ ଆରାଧନା କରିବା ହୁଏତ ସମ୍ଭବପର ନ ହୋଇପାରେ । ବିଧିବଦ୍ଧ ଭାବେ ଘରେ ଜଗନ୍ନାଥ ବିଗ୍ରହ ପ୍ରତିଷ୍ଠା କରିବାକୁ ସେମାନେ ମଧ୍ୟ ବିଶେଷ ଆଗ୍ରହୀ ନଥିଲେ । ତେବେ ଇଚ୍ଛାମୟଙ୍କ ଇଚ୍ଛା ତ ଆନ ହେବାର ନୁହେଁ । ତେଣୁ ପରିଶେଷରେ ଅଧିଷ୍ଠାତା ଦେବତା ରୂପେ ଘରେ ପ୍ରତିଷ୍ଠା ପାଇଲେ ଜଗନ୍ନାଥେ । ଏଣିକି କ୍ଷେତ୍ରବାସୀ ଯଥାର୍ଥରେ ହେଲେ କ୍ଷେତ୍ରବାସୀ ।

ସେ କାହାଣୀ ବଡ଼ ବିଚିତ୍ର । କ୍ଷେତ୍ରବାସୀଙ୍କର ଜଗନ୍ନାଥଙ୍କ ପ୍ରତି ଏତେ ଅନୁରକ୍ତିର କରଣ କ'ଣ ହୋଇପାରେ ? ଆମର ଏଇ ଜିଜ୍ଞାସାର ଉତ୍ତରରେ ବଡ଼ ଆଗ୍ରହରେ ସେଦିନ ଲାବଣ୍ୟ ଦେବୀ ଆମ ଆଗରେ ବଖାଣି ବସିଥିଲେ ସେଇ କାହାଣୀ –

"୧୯୭୩ ମସିହାର କଥା । ସେ ବର୍ଷ ବ୍ରହ୍ମପୁରଠାରୁ ଆମେ ଯାଇଥାଉ ପୁରୀ", ରଥଯାତ୍ରା ଦେଖିବା ପାଇଁ । ଜଗନ୍ନାଥଙ୍କର ଜଣେ ପୂଜାପଣ୍ଡା ଆମର ପୂର୍ବ ପରିଚିତ । ରଥଯାତ୍ରା ବେଳେ ଆମର ତାଙ୍କ ସହିତ ଦେଖା ହେଲା ଓ ସେ କହିଲେ ଯେ – 'ଘରେ ଗୋଟିଏ ଜଗନ୍ନାଥ ବିଗ୍ରହ ପ୍ରତିଷ୍ଠା କର' । ସେତେବେଳେ ଆମେ ଆମର ଅବସ୍ଥା କଥା କହି ତାଙ୍କୁ ମନାକଲୁ । ସେ ଆମକୁ ବହୁତ ବୁଝେଇଲେ ଓ ରାଜି କରାଇବାକୁ ଚେଷ୍ଟା କଲେ । ତଥାପି ଆମେ ତାଙ୍କୁ ମନା କଲୁ ଓ ପୁଣି ବ୍ରହ୍ମପୁର ଫେରି ଆସିଲୁ । କିନ୍ତୁ ବ୍ରହ୍ମପୁର ଫେରିଲା ପରେ ଆମେ ବାରମ୍ବାର ଜଗନ୍ନାଥଙ୍କୁ ସ୍ୱପ୍ନ ଦେଖିଲୁ । ଜଗନ୍ନାଥଙ୍କୁ ବାରମ୍ବାର ସ୍ୱପ୍ନ ଦେଖିଲା ପରେ ଆମ ମନକୁ କେମିତି ଗୋଟାଏ ଖଟକା ଲାଗିଲା । ତଥାପି ଆମେ ଆମ ନିଷ୍ପତ୍ତିରେ ଅଟଳ ଥାଉ ଯେ, ଯେତେ ଯାହା ହେଉ ପଛେ ଆମେ ଜଗନ୍ନାଥଙ୍କୁ ରଖି ସମ୍ଭାଳି ପାରିବା ନାହିଁ । ତେଣୁ ରଖିବା ନାହିଁ । କିନ୍ତୁ

ଏମିତି ହେଲା, ଆମକୁ ପୁଣି ପୁରୀ ଯିବାକୁ ପଡ଼ିଲା । ସେଠି ସେହି ପୂଜାପଣ୍ଡା ପୁଣି ଦେଖା ହେଲେ ଓ ଆମକୁ ଘରେ ଶ୍ରୀ ବିଗ୍ରହ ପ୍ରତିଷ୍ଠା କରିବା ପାଇଁ କହିଲେ । ଆମେ ତଥାପି କୁହୁକୁହୁ ହେଉଥାଉ; ମାତ୍ର ତାଙ୍କୁ ବିଗ୍ରହ ଦେଖାଇବା ପାଇଁ କହିଲୁ । ସେ ଆମକୁ କେତୋଟି ବିଗ୍ରହ ଦେଖାଇଲେ, କିନ୍ତୁ କାହିଁକି କେଜାଣି ଆମ ମନକୁ ପାଇଲା ନାହିଁ । ତେଣୁ ତାଙ୍କୁ ପୁଣି ମନା କରି ପୁରୀରୁ ଫେରି ଆସିଲୁ । କିନ୍ତୁ କିଛିଦିନ ପରେ ଗୋଟିଏ ଚିଠି ଆମ ପାଖରେ ଆସି ପହଞ୍ଚିଲା । ତାହା ସେହି ପୂଜାପଣ୍ଡା ଲେଖିଥିଲେ ଓ ସେଥିରେ ଲେଖାଥିଲା ଯେ ସେ ଗୋଟିଏ ବିଗ୍ରହ ଧରି ଆସି ପହଞ୍ଚୁଛନ୍ତି । ସେ ଯେଉଁଦିନ ଆସିବା କଥା, ସେଦିନ ସକାଳୁ ଆମେ ଶୁଦ୍ଧପୂତ ହୋଇ ସ୍ନାନାଦି ଶେଷ କରି ତାଙ୍କୁ ଅପେକ୍ଷା କରି ରହିଥାଉ । କିନ୍ତୁ ଦିନ ପ୍ରାୟ ୧୧ଟା ବେଳକୁ ଆଉ ଗୋଟିଏ ଚିଠି ଆସି ପହଞ୍ଚିଲା ଯେ, କୌଣସି କାରଣରୁ ସେ ଶ୍ରୀ ବିଗ୍ରହ ନେଇ ଆସି ପାରୁନାହାନ୍ତି । ତା'ପରେ ଆମେ ଭାବିଲୁ, ବୋଧହୁଏ ଆମର ଅନିଚ୍ଛା ଯୋଗୁଁ ଜଗନ୍ନାଥେ ଆସିଲେ ନାହିଁ । କିନ୍ତୁ ତାର ୧୫/୨୦ ଦିନ ପରେ ଦିନେ ରାତିରେ ଅତି ଅଲୌକିକ ଭାବେ ଆମ ଘରର ସମସ୍ତେ ଜଗନ୍ନାଥଙ୍କୁ ସ୍ୱପ୍ନ ଦେଖିଲେ । ଏହା ପଛରେ କି ବିଚିତ୍ରତା ଅଛି ! ଘରର ସମସ୍ତେ ପ୍ରାୟ ଏକା ସମୟରେ,ଏକା ରାତିରେ, ଏକା ପ୍ରକାରର ସ୍ୱପ୍ନ ଦେଖିବା ଆମକୁ ଖୁବ୍ ବିଚିତ୍ର ମନେ ହେଲା । ଆମ ଘର ପାଖରେ ଥିବା ଜଣଙ୍କ ଘରକୁ ମଝିରେ ମଝିରେ ସେହି ପୂଜାପଣ୍ଡା ଆସନ୍ତି । ତେଣୁ ସକାଳୁ ସ୍ନାନାଦି ଶେଷ କରି ଡକ୍ଟର ନାୟକ ତାଙ୍କ ଘରକୁ ଯାଇ ଦେଖନ୍ତି ତ ପୂର୍ବଦିନ ରାତିରୁ ପୂଜାପଣ୍ଡା ଆସି ତାଙ୍କ ଘରେ ପହଞ୍ଚିଛନ୍ତି ଓ ଆମ ଘରେ ପ୍ରତିଷ୍ଠା ହେବା ପାଇଁ ଶ୍ରୀ ବିଗ୍ରହଙ୍କୁ ନେଇ ଆସିଛନ୍ତି । ତା' ପରେ ଆମର ଆଉ ନାହିଁ କରିବାର କିଛି ଉପାୟ ନଥିଲା । ସେହିଦିନ ହିଁ ଆମ ଘରେ ଯଥାରୀତି ନିରାଡ଼ମ୍ବର ଭାବେ ଶ୍ରୀ ବିଗ୍ରହ ପ୍ରତିଷ୍ଠା ପାଇଲେ ।"

କ୍ଷେତ୍ରବାସୀଙ୍କ ଘରେ ଶ୍ରୀ ବିଗ୍ରହ ପ୍ରତିଷ୍ଠାର ଏହି ସବିଶେଷ ବିବରଣୀ ଏଠାରେ ପ୍ରଦାନ କରିବାର ଉଦ୍ଦେଶ୍ୟ ହେଉଛି - ଏହା ଏପରି ଏକ ଘଟଣା - ଯାହା ପରବର୍ତ୍ତୀ କାଳରେ କ୍ଷେତ୍ରବାସୀଙ୍କ ଜୀବନ ଓ ସାହିତ୍ୟକୁ ବିଶେଷ ଭାବେ ପ୍ରଭାବିତ କରିଥିଲା ଏବଂ ଏହି ଶ୍ରୀ ବିଗ୍ରହ ପ୍ରତିଷ୍ଠା ପରେ ହିଁ କ୍ଷେତ୍ରବାସୀ ଓଡ଼ିଆ ସାହିତ୍ୟର ଏକ ବିଶେଷ ଅଭାବ ପ୍ରତି ଅବହିତ ହୋଇଥିଲେ ।

ଘରେ ଜଗନ୍ନାଥ ବିଗ୍ରହ ପ୍ରତିଷ୍ଠା ପରେ ନିୟମିତ ପୂଜାର୍ଚ୍ଚନା ତ ଚାଲିଲା; ତା'ଛଡ଼ା ପ୍ରତି ରବିବାର ସନ୍ଧ୍ୟାରେ ଘରେ ବସିଲା ଭଜନ-ମଣ୍ଡଳୀ । ଆଖପାଖର ୧୦/୧୫ ଜଣ ଲୋକ ନିୟମିତ ଆସନ୍ତି ଓ ଭଜନ କୀର୍ତ୍ତନ ଚାଲେ । କିଛି ସପ୍ତାହ ଏହିପରି ଚାଲିବା

ପରେ କ୍ଷେତ୍ରବାସୀ ଲକ୍ଷ୍ୟ କଲେ ଯେ – ପ୍ରତି ରବିବାରରେ ଯେଉଁ ସବୁ ଭଜନ ଗାୟନ ହେଉଛି – ସେଗୁଡ଼ିକ ସଂଖ୍ୟାତ୍ମକ ଦୃଷ୍ଟିରୁ ସ୍ୱଳ୍ପ ଏବଂ ସେ ସବୁକୁ ବାରମ୍ବାର ଗାଇବା ଦ୍ୱାରା କ୍ରମେ ତାର ଆବେଦନ ପୂର୍ବପରି ବଳବତୀ ରହୁ ନାହିଁ । କେବଳ ମନ ନୁହେଁ; କାନ ବି ସବୁବେଳେ ଚାହେଁ ନୂଆ । କିନ୍ତୁ ଯେଉଁମାନେ ଗାନ କରୁଥିଲେ – ସେମାନଙ୍କର ପାଣ୍ଠି ଥିଲା ସୀମିତ ! ସେମାନେ ଅଧିକ ଭଜନ ଜଣାଣ ଜାଣି ନଥିଲେ । ଏହାର କାରଣ କ'ଣ ହୋଇପାରେ ? ସ୍ୱତଃ ପ୍ରଶ୍ନଟିଏ ସେଦିନ ମୁଣ୍ଡ ଟେକିଥିଲା କ୍ଷେତ୍ରବାସୀଙ୍କ ମନରେ । ସେ ଏ ଦିଗରେ ଅଧିକ ଅନୁଧ୍ୟାନ କରି ଜାଣିବାକୁ ପାଇଲେ ଯେ – ଓଡ଼ିଶାର ହାଟ ବଜାର, ମେଳା-ମଉଚ୍ଛବ, ଭଠା ବହିଦୋକାନୀ ବା ବସ୍ ରେଳ ଷ୍ଟେସନ ପ୍ଲାଟଫର୍ମ୍ କଡ଼ରେ ଓଡ଼ିଆ ଭଜନ ଜଣାଣର ଯେଉଁ କେତେ ଖଣ୍ଡ ଚଟି ବହି ମିଳେ ମୁଖ୍ୟତଃ ସେଥିରୁ ହିଁ ସେମାନେ ଶିଖିଛନ୍ତି ସେଇସବୁ ଭଜନ ଜଣାଣ । ଓଡ଼ିଆ ସାହିତ୍ୟରେ ଭଜନ ଜଣାଣର ଏପରି କିଛି ଯୋଜନାବଦ୍ଧ ସଂକଳନ କରାଯାଇ ନାହିଁ – ଯେଉଁଥିରୁ କେହି ଜଣେ ହାତ ପାଆନ୍ତାରେ ଏକତ୍ର ପ୍ରାୟ ସବୁ ଭଜନ ଗୁଡ଼ିକ ପାଇପାରିବ । କ୍ଷେତ୍ରବାସୀଙ୍କର ସାହିତ୍ୟିକ ବ୍ୟକ୍ତିତ୍ୱ "ସାହିତ୍ୟ-ରାଜ୍ୟରେ ଏପରି କିଛି କାମ ଅଛି ଯାହା ଅସମ୍ଭବ" ଏ କଥାକୁ ସ୍ୱୀକାରକରୁ ନଥିଲା । ଅସଲ କଥା ହେଲା, ଅଭିରୁଚି ଓ ଅଧ୍ୟବସାୟ । ତେଣୁ ସେ ଠିକ୍ କଲେ ନିଜେ ଏ ଦିଗରେ କିଛି କରିବେ । ଏକେ ତ ସେ ଥିଲେ ଜଗନ୍ନାଥଙ୍କ ଭକ୍ତ । ପୁଣି ଗୃହ ଦେବତା ରୂପେ ପ୍ରତିଷ୍ଠିତ ହୋଇଥିଲେ ଜଗନ୍ନାଥେ । ତା' ଛଡ଼ା, ସେ ଲକ୍ଷ୍ୟ କରିଥିଲେ ଯେ ଓଡ଼ିଆରେ ଜଗନ୍ନାଥଙ୍କୁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ଉପଜୀବ୍ୟ କରି ଲେଖା ହୋଇଛି ସବୁଠୁ ବେଶି ଭଜନ । ତେଣୁ ସେ ଠିକ୍ କଲେ ଜଗନ୍ନାଥଙ୍କୁ ନେଇ ଲେଖାଯାଇଥିବା ଭଜନ ଜଣାଣଗୁଡ଼ିକର ସଙ୍କଳନ ଓ ସଂପାଦନା ସେ ନିଜେ କରିବେ ।

ଜଗନ୍ନାଥଙ୍କ କରୁଣାରୁ ସ୍ୱପ୍ନ ସାକାର ହେଲା । ଦୀର୍ଘ ଅଧ୍ୟବସାୟ ଓ ନିରବଚ୍ଛିନ୍ନ ସାଧନା ସହିତ ନିର୍ଦ୍ଦିଷ୍ଟ ଯୋଜନାନୁଯାୟୀ ସଂଗ୍ରହ କରାଗଲା ଭଜନ ଓ ଜଣାଣ ମାନ ଏବଂ ପ୍ରସ୍ତୁତ ହେଲା "ଜଗନ୍ନାଥ ପଦ୍ୟାବଳୀ" ର ପ୍ରଥମ ଖଣ୍ଡ । ୧୯୭୭ ମସିହା । ସେ ବର୍ଷ ହେଉଥାଏ ଶ୍ରୀ ଜୀଉମାନଙ୍କର ନବକଳେବର । ତେଣୁ ତାହାହିଁ ଜଗନ୍ନାଥ ପଦ୍ୟାବଳୀ'ର ଶୁଭ ପ୍ରକାଶ ପାଇଁ ଉପଯୁକ୍ତ ସମୟ ବୋଲି ମନେ କଲେ କ୍ଷେତ୍ରବାସୀ । ଫଳରେ ନବ କଳେବର ଓ ଶ୍ରୀ ଗୁଣ୍ଡିଚାର ଶୁଭ ଅବସରରେ ଶୁଭ ଆତ୍ମପ୍ରକାଶ ଘଟିଲା 'ଜଗନ୍ନାଥ ପଦ୍ୟାବଳୀ' ପ୍ରଥମ ଖଣ୍ଡର । ଶ୍ରୀଯୁକ୍ତ କାଶୀନାଥ ସିଂହାରୀ, ପୁଷ୍ପାଳକଙ୍କୁ ବହିଟି ନିବେଦନ କରି କ୍ଷେତ୍ରବାସୀ ଲେଖିଥିଲେ – "ଶ୍ରୀଯୁକ୍ତ କାଶୀନାଥ ସିଂହାରୀ ପୁଷ୍ପାଳକ, ପୂଜନୀୟେଷୁ... ଶ୍ରୀ ଜଗନ୍ନାଥଙ୍କର ଅଙ୍ଗଲଗା ସେବକ ଆପଣ । ଭକ୍ତ ଓ ସେବକଙ୍କ ଆକୁଳ ଆତ୍ମାର

ଭାବ-କୁସୁମର ସାଉଁଟା ଟାଙ୍ଗୁଡ଼ି ଭଏ । ମାଳାକାର ହୋଇ ଜାତି ଜାତିକା ଫୁଲର ମାଳାଟିଏ ଗୁନ୍ଥିଛି । ବାର ବଗିଚାରୁ ସାଉଁଟା ଫୁଲର ଏଇ ମାଳାଟିକୁ ଆପଣଙ୍କ ହାତକୁ ଟେକି ଦେଉଛି; ଆପଣ ଏଇ ମାଳାଟି ଚକାଡୋଳାଙ୍କୁ ଲାଗି କରେଇ ଦେବେ । ଗୁହାରି ମୋର ଶୁଣିବେ ।"

ଯଥାର୍ଥରେ "ଜଗନ୍ନାଥ ପଦ୍ୟାବଳୀ" ଥିଲା ଏଇଆ । ଭକ୍ତ ଓ ସେବକଙ୍କ ଆକୁଳ ଆତ୍ମାର ଭାବକୁସୁମର ମାଳା । ମାଳିଟିଏ ହିଁ ଥିଲେ କ୍ଷେତ୍ରବାସୀ । ତେବେ, ଗୁନ୍ଥିବା କାଳରେ ମାଳାଟିକୁ କେମିତି ଗୁନ୍ଥିଲେ ସାଜିବ ତାହା ସେ ସର୍ବାଦୌ ବିଚାର କରୁଥିଲେ । ଅବଶ୍ୟ ଏହି ଗୁନ୍ଥିବା କାମଟି ଏକ ନିର୍ଦ୍ଦିଷ୍ଟ ସମୟରେ ହେଉଥିଲା... ମାତ୍ର ଫୁଲଗୁଡ଼ିକୁ ବାଛିବା ହିଁ ଥିଲା ସେଥିରେ ସବୁଠୁ ବଡ଼ କଥା । ଏ ପ୍ରସଙ୍ଗରେ କ୍ଷେତ୍ରବାସୀ "ଜଗନ୍ନାଥ ପଦ୍ୟାବଳୀ" ପ୍ରଥମ ଖଣ୍ଡରେ କହିଛନ୍ତି - "ଓଡ଼ିଶାର ଇଷ୍ଟ ଶ୍ରୀ ଜଗନ୍ନାଥଙ୍କୁ ଉପଜୀବ୍ୟ କରି ବହୁକିସମର ପଦ୍ୟାବଳୀ ରଚିତ ହୋଇଛି । x x x ଏଗୁଡ଼ିକ ପ୍ରକାଶିତ ଗ୍ରନ୍ଥ, ଜ୍ଞାତ ଅଜ୍ଞାତ ପୋଥି, ଲୋକକବିଙ୍କ ପାଣ୍ଡୁଲିପି, ଓଡ଼ିଶାର ପଲ୍ଲୀ କୋଣରେ ଅବହେଳିତ ଓ ଅବଜ୍ଞାତ ପ୍ରତିଭାବାନ୍ କବି ପୁରୁଷଙ୍କ ଲେଖାରୁ ସଂଗୃହୀତ ହୋଇଛି । ସମୁଦାୟ ସଂଗ୍ରହର ସଂଖ୍ୟା ହେବ ପାଞ୍ଚଶହ ।"

"ଜଗନ୍ନାଥ ପଦ୍ୟାବଳୀ" ରେ ସଂକଳିତ ଜଣାଣଗୁଡ଼ିକ ଐତିହାସିକ ସମୟ କ୍ରମରେ ଉପସ୍ଥାପିତ । ଏହି 'ଜଗନ୍ନାଥ ପଦ୍ୟାବଳୀ ଗ୍ରନ୍ଥମାଳା' ର ଉଦ୍ଦେଶ୍ୟ ଥିଲା ତିନୋଟି - ଆଧ୍ୟାତ୍ମିକ, ଐତିହାସିକ ଓ ସାରସ୍ୱତ । ଶେଷ ପର୍ଯ୍ୟନ୍ତ କ୍ଷେତ୍ରବାସୀ ଏଇ ତିନିଟି ଉଦ୍ଦେଶ୍ୟକୁ ଆଖି ଆଗରେ ରଖି 'ଜଗନ୍ନାଥ ପଦ୍ୟାବଳୀ ଗ୍ରନ୍ଥମାଳା'ର ସଂପାଦନା କରୁଥିଲେ ।

"ଜଗନ୍ନାଥ ପଦ୍ୟାବଳୀ"ର କାମ ଯଥାରୀତି ଚାଲିଲା । ଗବେଷଣା ଓ ଅନ୍ୟାନ୍ୟ କାର୍ଯ୍ୟ କିନ୍ତୁ ତଥାପି ସ୍ତିମିତ ହୋଇଯାଇ ନଥିଲା । ଯଥାରୀତି ସେସବୁ ମଧ୍ୟ ଚାଲିଥିଲା । ଫଳରେ ଏଇ ବ୍ରହ୍ମପୁର ରହଣି କାଳରେ କ୍ଷେତ୍ରବାସୀ ସମାପ୍ତ କରିଥିଲେ ତାଙ୍କର ଗବେଷଣା ସନ୍ଦର୍ଭର କାମ ଓ ୧୯୭୬ ରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ତାଙ୍କୁ ଭୂଷିତ କରିଥିଲେ ପିଏଚ୍.ଡି ଉପାଧିରେ । ତାଙ୍କ ଗବେଷଣା ସନ୍ଦର୍ଭର ନାମ ଥିଲା "ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ ।" ଏହାର ବିଷୟବସ୍ତୁ କେବଳ ଅଭିନବ ନଥିଲା; ଏହାର ସମୀକ୍ଷା ପ୍ରଣାଳୀ ମଧ୍ୟ ଥିଲା ବିଶେଷତ୍ୱପୂର୍ଣ୍ଣ । ଏହା ଓଡ଼ିଆ କାବ୍ୟ-ସାହିତ୍ୟ-ସମୀକ୍ଷାର ଏକ ବହୁ ଦିନର ଅପୂର୍ଣ୍ଣତାକୁ ପୂରଣ କରିଥିଲା । ମାତ୍ର ଏଇ ବ୍ରହ୍ମପୁର ରହଣି କାଳରେ କ୍ଷେତ୍ରବାସୀଙ୍କର ସବୁଠୁ ବଡ଼ ଓ ସବୁଠୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଥିଲା - "ନାରୀ କବି ଅନ୍ନପୂର୍ଣ୍ଣା ରଚନା ଶ୍ରୀ" ଗ୍ରନ୍ଥର ସଂପାଦନା ।

କ୍ଷେତ୍ରବାସୀ ବଲାଙ୍ଗୀର ଛାଡ଼ିବା ବେଳକୁ ନାରୀକବି ଅନ୍ନପୂର୍ଣ୍ଣାଙ୍କ ମୃତ୍ୟୁର ପ୍ରାୟ ୪୦ ବର୍ଷ ଅତିକ୍ରାନ୍ତ ହୋଇଯାଇଥାଏ । ମାତ୍ର ସେ ଯାବତ୍ ତାଙ୍କର ରଚନାଗୁଡ଼ିକର ସଂକଳନ ହୋଇନଥାଏ । ଅନ୍ନପୂର୍ଣ୍ଣା ଦେବୀଙ୍କର କନ୍ୟା ମନୋରମା ପଟ୍ଟନାୟକ ଅନେକ ଚେଷ୍ଟା କରିଥିଲେ ଓ ଅନେକଙ୍କୁ ଏ କଥା କହିଥିଲେ ମଧ୍ୟ କେହି ସେ ଦିଗରେ ଆଗ୍ରହୀ ହୋଇନଥାନ୍ତି ବା କିଛି କାମ କରି ନଥାନ୍ତି । ସେତେବେଳେ ଦେବବାଳା ରାୟ ଥାଆନ୍ତି ବ୍ରହ୍ମପୁର ମହିଳା କଲେଜର ଅଧ୍ୟକ୍ଷା ଓ ମନୋରମା ପଟ୍ଟନାୟକଙ୍କ ସହିତ ତାଙ୍କର ଆତ୍ମୀୟତା ଥାଏ । ଲାବଣ୍ୟ ଦେବୀ ମଧ୍ୟ ସେତେବେଳେ ସେଠାରେ ଅଧ୍ୟାପିକା ଥାଆନ୍ତି । ଦିନେ କଥା ପ୍ରସଙ୍ଗରେ ଦେବବାଳାଙ୍କ ଠାରୁ ଲାବଣ୍ୟଦେବୀ ଏ ସବୁ ବିଷୟ ଶୁଣି କ୍ଷେତ୍ରବାସୀଙ୍କୁ କୁହନ୍ତେ ତତ୍କ୍ଷଣାତ୍ କ୍ଷେତ୍ରବାସୀ କହିଲେ ଯେ, ସେ ସେହି କାମଟି କରିବେ ଏବଂ ଠିକ୍ ସେଇ ମୁହୂର୍ତ୍ତରୁ ଆରମ୍ଭ ହେଲା "ନାରୀକବି ଅନ୍ନପୂର୍ଣ୍ଣା ରଚନାଶ୍ରୀ" ର ପ୍ରସ୍ତୁତି । ଏଥିପାଇଁ ଅବଶ୍ୟ ତାଙ୍କୁ ବହୁ ପରିଶ୍ରମ କରିବାକୁ ପଡ଼ିଥିଲା । କାରଣ ସେତେବେଳକୁ ଅନ୍ନପୂର୍ଣ୍ଣାଙ୍କର ଦେହାନ୍ତ ହେବାର ପ୍ରାୟ ୪୦ ବର୍ଷ ବିତି ଯାଇଥିଲା । ତେଣୁ ପାଣ୍ଡୁଲିପିଗୁଡ଼ିକ ପ୍ରାୟ ଜରାଜୀର୍ଣ୍ଣ ଓ କୀଟଦଂଷ୍ଟ ହୋଇପଡ଼ିଥିଲା । ସେଥିରୁ ପୁଣି ଅଧିକାଂଶ ଥିଲା ପେନ୍‌ସିଲ୍ ଲେଖା ଯୋଗୁଁ ଦୁଷ୍ପାଠ୍ୟ । ସେସବୁ ଉଦ୍ଧାର କରିବା ସହିତ ରମ୍ଭା ଲାଇବ୍ରେରୀ, ଉତ୍କଳ ବିଶ୍ୱବିଦ୍ୟାଳୟ ଲାଇବ୍ରେରୀ, ପାରଳାଖେମୁଣ୍ଡି ଲାଇବ୍ରେରୀ ଆଦିର ସାହାଯ୍ୟ ଓ ବିଭିନ୍ନ ପତ୍ର ପତ୍ରିକାରୁ ବ୍ୟକ୍ତିଗତ ଉଦ୍ୟମରେ ସେ ତାଙ୍କ ଲେଖାଗୁଡ଼ିକ ସଂଗ୍ରହ କରି ସଂପାଦନା ଓ ସଂକଳନ କଲେ । ଅନ୍ନପୂର୍ଣ୍ଣାଙ୍କର ପ୍ରକାଶିତ କବିତାର ସଂଖ୍ୟା ଥିଲା ମାତ୍ର ୩୭ । ମାତ୍ର ଏହି ସବୁ ସୂତ୍ରରୁ ସଂଗୃହୀତ କାବ୍ୟକୃତି ଓ କଥା ସାହିତ୍ୟଗୁଡ଼ିକ ଥିଲା ଏତେ ବିପୁଳ ଓ ବିଚିତ୍ର ଯେ ବିଷୟ ପ୍ରକରଣ ଓ ଚରିତ୍ର ଅନୁଯାୟୀ ସେ ସେଗୁଡ଼ିକୁ କାବ୍ୟଶ୍ରୀ ବିଭାଗ, ଗୀତିକାବ୍ୟଶ୍ରୀ ବିଭାଗ, ମନଶ୍ରୀ ବିଭାଗ, ବିଚ୍ଛେଦ ମିଳନ ବିଭାଗ, ବିବିଧ କବିତା ବିଭାଗ ଓ ସ୍ୱପ୍ନଶ୍ରୀ ବିଭାଗ ଆଦି ବିବିଧ ବିଭାଗରେ ବିଭକ୍ତ କରି ଗୋଟିଏ ପୂର୍ଣ୍ଣାଙ୍ଗ ଖଣ୍ଡରେ ପ୍ରକାଶ କରିଥିଲେ । ଏ ଦିଗରେ କ୍ଷେତ୍ରବାସୀଙ୍କର ପରବର୍ତ୍ତୀ କାର୍ଯ୍ୟ ଥିଲା "ନାରୀ କବି ଅନ୍ନପୂର୍ଣ୍ଣା କବି ଚରିତ ଓ କାବ୍ୟ ଚର୍ଚ୍ଚା" ନାମରେ ଏକ ମନୋଗ୍ରାଫ୍ । ଏହା "ନାରୀ କବି ଅନ୍ନପୂର୍ଣ୍ଣା ରଚନାଶ୍ରୀ" ପ୍ରକାଶ ପାଇବାର ପରବର୍ଷ ଅର୍ଥାତ୍ ୧୯୭୯ ରେ ପ୍ରକାଶ ପାଇଥିଲା ।

୧୯୭୮ ରେ ପୁଣି ବଦଳି ହେଲା କ୍ଷେତ୍ରବାସୀଙ୍କର । ଏତେବେଳକୁ ଅବଶ୍ୟ ପରିବାର ଆଉ ପରଇଗା ଅବସ୍ଥାରେ ନାହିଁ । ପିଲାମାନେ ଠେକ ଠେକ ହୋଇ ଗଲେଣି । ତେଣୁ ବିଶେଷ ଅସୁବିଧା ନଥିଲା; ପୁଣି ଏ ବଦଳି ଥିଲା ବହୁବାଞ୍ଛିତ କଟକକୁ । ତେଣୁ

ଅତ୍ୟନ୍ତ ଆଗ୍ରହରେ ବ୍ରହ୍ମପୁରରୁ କଟକ ଆସିଲେ କ୍ଷେତ୍ରବାସୀ । କଟକରୁ ଆସିବା ସହିତ ଏକ ସୁପ୍ତ ବାସନା ପୁଣି ଜାଗ୍ରତ ହୋଇ ସାକାରଲାଭ କଲା । ଫଳରେ ଜନ୍ମ ନେଲା "ଓଡ଼ିଆ ଗବେଷଣା ପରିଷଦ" ଓ ତା'ର ମୁଖପତ୍ର 'ଏଷଣା' । ଏହା ପଛରେ ଅବଶ୍ୟ ଦୁଇଟି କାରଣ ଥିଲା ମୁଖ୍ୟ । ଗୋଟିଏ କଟକର ପରିବେଶ ଓ ଅନ୍ୟଟି ଡକ୍ଟର କୃଷ୍ଣ ଚରଣ ବେହେରା ଓ ଶ୍ରୀ ଚିତ୍ତରଞ୍ଜନ ଦାସ ପ୍ରମୁଖଙ୍କ ସାନ୍ନିଧ ଓ ସହଯୋଗ । ବଲାଙ୍ଗୀର 'ଯୁବ ଲେଖକ ସମ୍ମେଳନ' ପରେ ମୁଖ୍ୟତଃ ଏହାହିଁ ହେଲା କ୍ଷେତ୍ରବାସୀଙ୍କ ସଙ୍ଗଠକ ଜୀବନର ଦ୍ୱିତୀୟ ସୁବର୍ଣ୍ଣ ପର୍ଯ୍ୟାୟ ।

'ଓଡ଼ିଆ ଗବେଷଣା ପରିଷଦ' ଥିଲା ପୂର୍ଣ୍ଣତଃ କ୍ଷେତ୍ରବାସୀଙ୍କ ମାନସ ପୁତ୍ର । ତାହାର ସମ୍ବିଧାନ (Constitution)ର ମୂଳ ଡ୍ରାଫ୍ଟ ଓ ବିଶଦ ଯୋଜନା (Detail Scheme) ପ୍ରସ୍ତୁତ କରିବାଠାରୁ କାର୍ଯ୍ୟ ନିର୍ବାହ ଓ ଅନ୍ୟାନ୍ୟ ସବୁରେ ଶେଷ ପର୍ଯ୍ୟନ୍ତ ସେ ମୁଖ୍ୟ କର୍ମକର୍ତ୍ତା ହୋଇ ରହିଥିଲେ ।

"ଓଡ଼ିଆ ଗବେଷଣା ପରିଷଦ" ର ମୁଖ୍ୟ କାର୍ଯ୍ୟ ଥିଲା ବହୁବିଧ; ମାତ୍ର ସବୁ ଭିତରେ ମୂଳ ଓ ମୁଖ୍ୟ ପ୍ରବୃତ୍ତିଟି ଥିଲା ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଥିବା ଅଭାବ ଓ ଅପୂର୍ଣ୍ଣତାକୁ ଭରିବା । କିନ୍ତୁ ଏ ଦିଗରେ ତାଙ୍କର ସ୍ୱପ୍ନ କ'ଣ ଥିଲା ? ଏ ସମ୍ପର୍କରେ ଆମ ଜିଜ୍ଞାସାର ଉତ୍ତରରେ ଡକ୍ଟର କୃଷ୍ଣଚରଣ ବେହେରା କୁହନ୍ତି - "ହଁ, ତାର ସ୍ୱପ୍ନ ଥିଲା ଅନେକ । ଆମର ଅନେକ ଥର ଏ ବିଷୟରେ ଆଲୋଚନା ହୋଇଛି । ଧରାଯାଉ, 'ଶୈଳୀ ବିଜ୍ଞାନ' (Stylistics) । ପାଶ୍ଚାତ୍ୟ ତଥା ପ୍ରତିବେଶୀ ସାହିତ୍ୟ ଯଥା ବଙ୍ଗଳା, ହିନ୍ଦୀ ଆଦି ସାହିତ୍ୟରେ ଏ ଦିଗରେ ବହୁତ ଆଲୋଚନା ହୋଇଛି । କିନ୍ତୁ ଓଡ଼ିଆ ସାହିତ୍ୟରେ ଏ ଦିଗରେ ପ୍ରାୟତଃ କିଛି ହୋଇନାହିଁ । ସେହିପରି 'ସାହିତ୍ୟ ସମୀକ୍ଷାରେ ଅନ୍ତର୍ବିଦ୍ୟାର ଭିତ୍ତି' - (Inter disciplinary Approach in the Study of Literature) । ସେହିପରି 'ନନ୍ଦନତତ୍ତ୍ୱ' (Aesthetics) । ତେଣୁ ଏ ସବୁ ଉପରେ ସ୍ୱତନ୍ତ୍ର ଆଲୋଚନାଚକ୍ରମାନ ଆୟୋଜନ କରାଗଲା । ଏହାକୁ ଅନୁଧାନ କଲେ ଜଣାପଡ଼ିବ, ସେ ଯେତେବେଳେ ଚିନ୍ତା କରିଛି, ସବୁବେଳେ ଚାହିଁଛି କିଛି ଗୋଟାଏ ନୂଆ କାମ କରିବା ପାଇଁ । ଏହିପରି ଗୋଟାଏ ଦିଗ ଥିଲା 'ଗବେଷଣା ବିଧି' ବା Research Methodology । ଏ ଦିଗରେ ଏକ ସ୍ୱତନ୍ତ୍ର ପୁସ୍ତକ ପ୍ରଣୟନ କରିବା ପାଇଁ ଯୋଜନା ମଧ୍ୟ ସେ କରିଥିଲେ । କିନ୍ତୁ ଅକାଳ ବିୟୋଗ ହେତୁ ତାହା କାର୍ଯ୍ୟକାରୀ ହୋଇ ପାରିଲା ନାହିଁ ।"

ମୂଳତଃ "ଓଡ଼ିଆ ଗବେଷଣା ପରିଷଦ" ଥିଲା ପ୍ରଫେସର ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପ୍ରତିଷ୍ଠିତ 'ପ୍ରାଚୀ ସମିତି'ର ଏକ ପରିମାର୍ଜିତ ଓ ପରିବର୍ଦ୍ଧିତ ପ୍ରତିଷ୍ଠାନ । 'ପ୍ରାଚୀ

ସମିତି' ମୁଖ୍ୟତଃ ପ୍ରାଚୀନ ସାହିତ୍ୟର ଉଦ୍ଧାର, ପ୍ରସାର ଓ ପ୍ରଚାର ପାଇଁ ଧ୍ୟାନ ଦେଉଥିଲା । କିନ୍ତୁ ଓଡ଼ିଆ ଗବେଷଣା ପରିଷଦର ଲକ୍ଷ୍ୟ ଥିଲା ଅଧିକ ବ୍ୟାପକ । ଏହା କେବଳ ପ୍ରାଚୀନ ଓଡ଼ିଆ ସାହିତ୍ୟର ଉଦ୍ଧାର, ପ୍ରକାଶନ, ପ୍ରଚାର ଓ ପ୍ରସାର ପାଇଁ ଧ୍ୟାନଶୀଳ ହେବାରେ ସୀମିତ ନଥିଲା । କ୍ଷେତ୍ରବାସୀ ନିଜେ ଭାରତୀୟ ସାହିତ୍ୟ ତତ୍ତ୍ୱ ଭଲ ଭାବରେ ଅଧ୍ୟୟନ କରିଥିଲେ ଏବଂ ପାଶ୍ଚାତ୍ୟ ସାହିତ୍ୟ ଓ ସାହିତ୍ୟତତ୍ତ୍ୱର ଯଥାସମ୍ଭବ ଟିକିନିଖି ଖବର ରଖୁଥିଲେ । ତେଣୁ ପ୍ରାଚୀନ ଓଡ଼ିଆ ସାହିତ୍ୟର ଉଦ୍ଧାର, ପ୍ରକାଶନ, ପ୍ରଚାର ଓ ପ୍ରସାର ସହିତ 'ଓଡ଼ିଆ ଗବେଷଣା ପରିଷଦ' ମାଧ୍ୟମରେ ଆଧୁନିକ ସାହିତ୍ୟ ପରିସରରେ ମଧ୍ୟ ଗୁଣାତ୍ମକ କିଛି କରିବା ଥିଲା ତାଙ୍କର ମୁଖ୍ୟ ପ୍ରୟାସ । ଏହି ପ୍ରୟାସ ମୂଳତଃ ଥିଲା ଦ୍ୱିବିଧ- ପ୍ରଥମତଃ, ଭାରତୀୟ ସାହିତ୍ୟ ତତ୍ତ୍ୱକୁ ଆଧୁନିକ ପରିପ୍ରେକ୍ଷୀରେ ଓଡ଼ିଶାରେ ଉପସ୍ଥାପନ କରିବା ଏବଂ ଦ୍ୱିତୀୟତଃ, ପାଶ୍ଚାତ୍ୟ ସାହିତ୍ୟ ତତ୍ତ୍ୱରେ ଯେଉଁ ସବୁ ନୂଆ ନୂଆ ଦିଗ ଆସୁଛି ତା ସଂପର୍କରେ ଅଭିହିତ ରହି ଗବେଷଣା ପରିଷଦର କାର୍ଯ୍ୟ ସାରଣୀରେ ତାହା ପ୍ରତିଫଳିତ କରିବା । ଏ ଦୁଇଟି ଦିଗ ଥିଲା କ୍ଷେତ୍ରବାସୀଙ୍କର ନିଜସ୍ୱ ବିଶିଷ୍ଟତା । ମୃତ୍ୟୁଯାବତ୍ ସେ ଏ ଦୁଇଟିଯାକ ବୈଶିଷ୍ଟ୍ୟ ବଜାୟ ରଖିଥିଲେ । ତେଣୁ ଏ ଦୃଷ୍ଟିରୁ ବିଚାର କଲେ ଓଡ଼ିଆ ସାହିତ୍ୟର ଇତିହାସରେ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଠାରୁ କ୍ଷେତ୍ରବାସୀଙ୍କର ସ୍ଥାନ ସ୍ୱତନ୍ତ୍ର ।

କ୍ଷେତ୍ରବାସୀଙ୍କର ଇଚ୍ଛା ଥିଲା, କିଛି ବର୍ଷ ପରେ ସେ ଅଧ୍ୟାପନା ବୃତ୍ତିରୁ ସ୍ୱେଚ୍ଛା ବିରତି ନେବେ ଓ ଶେଷ ଜୀବନଟି ସଂପୂର୍ଣ୍ଣ ଭାବରେ ସାହିତ୍ୟ-ସାଧନା ଓ ଭଗବତ୍ ଆରାଧନାରେ ଅତିବାହିତ କରିବେ । ସେତେବେଳେ ସେମାନେ ଗୋଟିଏ ଛୋଟ ଘର ନେଇ ପୁରୀରେ ରହିବେ ଏବଂ ସମଗ୍ର ସମୟ ଓ ହୃଦୟ ରହିବ ସାହିତ୍ୟ, ସମୁଦ୍ର ଓ ଜଗନ୍ନାଥଙ୍କୁ ନେଇ ବ୍ୟସ୍ତ । କିନ୍ତୁ ଦୁର୍ବିରୋଧ୍ୟ କାଳ ସବୁଥିରେ ଯବନିକା ଟାଣି ଦେଲା । ୨୫ ଜାନୁଆରୀ ୧୯୮୬ ଶନିବାର ମଧ୍ୟାହ୍ନରେ କଟକଠାରେ ତାଙ୍କର ଅକାଳ ତିରୋଧାନ ଘଟିଥିଲା ।

କ୍ଷେତ୍ରବାସୀଙ୍କ ଜୀବନର ବିବିଧ କାର୍ଯ୍ୟାବଳୀକୁ ଲକ୍ଷ୍ୟ କଲେ ଯେ କେହି ଗୋଟିଏ ସତ୍ୟରେ ଉପନୀତ ହେବ ଯେ-ମଣିଷ ସଂସାରକୁ କେବଳ ନିଜ ପାଇଁ ଆସି ନଥାଏ । ସୂର୍ଯ୍ୟଙ୍କର ଧାରେ କିରଣ ପରି ସେ ଏକ ବିରାଟ ସତ୍ତା ଓ ବିରାଟ ବିଶ୍ୱାସର ଅଂଶ ବିଶେଷ ଏବଂ ଏ ଦୃଷ୍ଟିରୁ ସେହି ବୃହତ୍ତର ସତ୍ତା ବା ବୃହତ୍ତର କ୍ଷେତ୍ରଟି ପ୍ରତି ତାର କିଛି ଦାୟିତ୍ୱ ଅଛି । ବ୍ୟକ୍ତିଗତ ପ୍ରଚେଷ୍ଟାରେ ହେଉ ବା ସାମୂହିକ ଭାବରେ ହେଉ - ପ୍ରତ୍ୟେକେ ନିଜ ଜୀବଦ୍ଦଶାରେ ଏଥିପ୍ରତି ଅଭିହିତ ରହି କର୍ତ୍ତବ୍ୟରତ ହେବା ପ୍ରୟୋଜନ ।



# ସମାଲୋଚନା ସାହିତ୍ୟରେ ଏକ ନିର୍ଭର ପ୍ରତିଶ୍ରୁତି

ପ୍ରଫେସର ବୈଷ୍ଣବ ଚରଣ ସାମଲ

**କ୍ଷେ**ତ୍ରବାସୀ ନାୟକ ଓଡ଼ିଆ ସାହିତ୍ୟରେ ଏକ ଶ୍ରଦ୍ଧାଶୀଳ ନାମ ମାତ୍ର ନୁହନ୍ତି; ସମାଲୋଚନା କ୍ଷେତ୍ରରେ ଏକ ନିର୍ଭର ପ୍ରତିଶ୍ରୁତି ଓ ସର୍ବଚିତ ସାରସ୍ୱତ ବ୍ୟକ୍ତିତ୍ୱ । ଅକାଳରେ ତାଙ୍କର ଦେହାନ୍ତ ହୋଇଗଲା (୧୯୮୬) ସତ ମାତ୍ର ତାଙ୍କର ଯେଉଁ କେତେକ ସମୀକ୍ଷାମୂଳକ ଗ୍ରନ୍ଥ ରହିଛି ତାହା ତାଙ୍କୁ ଓଡ଼ିଆ ସାହିତ୍ୟ ଇତିହାସରେ ଅମର କରିରଖିବ । ସେ କବିତା ଓ ଗଳ୍ପ ଲେଖିଛନ୍ତି; ଲେଖିଛନ୍ତି ମଧ୍ୟ କେତେକ ଚିନ୍ତାଧର୍ମୀ ମୌଳିକ ପ୍ରବନ୍ଧ, ସଂପାଦନା କରିଛନ୍ତି ଅନେକ କିଛି ମାତ୍ର ଜଣେ ସୂକ୍ଷ୍ମଦର୍ଶୀ ବିଚାରବନ୍ତ ସମାଲୋଚକ ଭାବରେ ସେ ତାଙ୍କର ସମକାଳରେ ଅତ୍ୟନ୍ତ ଦୀପ୍ତିମନ୍ତ ହୋଇଉଠିଥିଲେ । ବିଂଶ ଶତକର ଷଷ୍ଠ ଦଶକରୁ ତାଙ୍କର ସମାଲୋଚକୀୟ ପ୍ରତିଭାର ଉନ୍ମେଷ ହେବାକୁ ଲାଗିଲା ଓ କ୍ରମେ ସେହି ପ୍ରତିଭାର ହୋଇଛି ଭୂୟୋବିକାଶ । ବିଚାରବନ୍ତ ସମୀକ୍ଷକଙ୍କ ଭିତରେ ସେ ଛିଡ଼ା ହୋଯାଇଛନ୍ତି ଆଗଧାଡ଼ିରେ । ସେ ନିଷ୍ଠାପର ଭାବରେ ଭଲ ପାଉଥିଲେ ଓଡ଼ିଆ ଭାଷା ଓ ସାହିତ୍ୟକୁ । ଏଥିସହିତ ସେ ଅଧ୍ୟୟନ କରୁଥିଲେ ଇଂରାଜୀ, ବଙ୍ଗଳା ଓ ହିନ୍ଦୀ ସାହିତ୍ୟକୁ । ଅନ୍ୟ ଭାଷା ଓ ସାହିତ୍ୟକୁ ବି ସେ ଅଧ୍ୟୟନ କରୁଥିଲେ, ସଂସ୍କୃତ ଭାଷାର ପ୍ରାଚୀନ ଗ୍ରନ୍ଥ ଓ ସାହିତ୍ୟ ଶାସ୍ତ୍ର ପଢୁଥିଲେ ମାତ୍ର ସେ ଅନ୍ୟ ଭାଷାର ମୋହରେ ପଡ଼ି ନିଜ ଭାଷା ଓ ସାହିତ୍ୟକୁ ଗୌଣ ମନେକରୁ ନଥିଲେ। ତାଙ୍କ ଭିତରେ ଗୋଟାଏ ସ୍ୱାଭିମାନବୋଧ ଫୁଟି ଉଠୁଥିଲା ଯାହା ଫଳରେ ସେ ଓଡ଼ିଆ ଭାଷା ଓ ସାହିତ୍ୟକୁ ତାହାର ସମକକ୍ଷ କରିବାକୁ ଚାହୁଁଥିଲେ । ଏହାଦ୍ୱାରା ତାଙ୍କ ଭିତରେ ତୁଳନାତ୍ମକ ସାହିତ୍ୟ ଅଧ୍ୟୟନର ମର୍ମ ଧାରାଟିଏ ପ୍ରବାହିତ ହେଉଥିଲା । ଏହି କାରଣରୁ ସେ ଆଧୁନିକ ଓଡ଼ିଆ ସାହିତ୍ୟରେ ଜଣେ ଦକ୍ଷ ସାରସ୍ୱତ ସ୍ରଷ୍ଟା ଭାବରେ ଆବିର୍ଭୂତ ହେଲେ । ଗଳ୍ପ ଓ କବିତା ଲେଖୁ ଲେଖୁ ଗବେଷଣା କଲେ ଓ ଜଣେ ଏକନିଷ୍ଠ ଗବେଷକ ଭାବରେ ମାନ୍ୟତା ଅର୍ଜନ କଲେ । ସାରସ୍ୱତ ସଂଗଠନଟିଏ ପ୍ରତିଷ୍ଠା କଲେ - 'ଓଡ଼ିଆ ଗବେଷଣା ପରିଷଦ' । ଗବେଷଣାଧର୍ମୀ ପତ୍ରିକାଟିଏ ପ୍ରକାଶ କଲେ 'ଏଷଣା', ଯାହା ଏବେ ମଧ୍ୟ ନିୟମିତ ଭାବରେ ପ୍ରକାଶ ପାଉଅଛି ।

କ୍ଷେତ୍ରବାସୀ ଅନନ୍ୟ ସାରସ୍ୱତ ପ୍ରତିଭାର ଅଧିକାରୀ । ସେ ବାଣୀ-ବରଦ ସନ୍ତାନ । ସାହିତ୍ୟକୁ ଜୀବନ ଓ ସଂସ୍କୃତି ସହିତ ମିଳେଇ ଦେଖିବାରେ ସେ ସିଦ୍ଧହସ୍ତ । ସାହିତ୍ୟ ବିଭିନ୍ନ ଭାଷାର ସଂପତ୍ତି ହେଲେ ହେଁ ତାହାକୁ ତୁଳନାତ୍ମକ ଭାବରେ ବିଚାର କରି ପ୍ରତ୍ୟେକ

ସାହିତ୍ୟର ବୈଶିଷ୍ଟ୍ୟକୁ ଦର୍ଶାଇ ଦେବାରେ ସେ ଦକ୍ଷ । କାହାର ନିନ୍ଦା ନୁହେଁ; ବରଂ ଗୁଣକୁ ଆବିଷ୍କାର କରି ମଧୁମକ୍ଷିକା ସଦୃଶ ମଧୁ ସଂଗ୍ରହ କରିବାରେ ସେ ବ୍ରତୀ । ସେ ଗଳ୍ପ ଓ କବିତା ଲେଖି ସେଥିରେ ନିଜର ସର୍ଜନଶୀଳତାର ପରିଚୟ ଦେଇଅଛନ୍ତି । ମାତ୍ର ଅଚିରେ ସେ ସର୍ଜନ-ବୃତ୍ତରୁ ବିଦାୟ ନେଇ ସମାଲୋଚନା କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଛନ୍ତି ଓ ତାହାକୁ ଆପଣେଇ ନେଇ ସେଥିରେ ତାଙ୍କର ଜ୍ଞାନ, ଅନୁସନ୍ଧିତ୍ସା ଓ ସମ୍ବେଦନାକୁ କରିଛନ୍ତି ନିବେଦିତ । ପ୍ରଥମତଃ ସେ ଜଣେ ମୌଳିକ ସ୍ରଷ୍ଟା ହୋଇଥିବାରୁ ସମୀକ୍ଷା କଲାବେଳେ ଅନ୍ୟର ମତକୁ ଉଦ୍ଧାର କରି ଯୁକ୍ତିକୁ ବଳିଷ୍ଠ କରିବାକୁ ଚାହୁଁଥିଲେ ମଧ୍ୟ ସମୀକ୍ଷିତ ପୁସ୍ତକ ବା କବି/ଲେଖକଙ୍କର ଅଶରୀରୀ ସର୍ଜନାସତ୍ତା ସହିତ ନିଜର ସାରସ୍ୱତ ସତ୍ତାକୁ ମିଶାଇ ଯେଉଁ ସତ୍ୟ ଉପଲବ୍ଧ କରୁଥିଲେ ତାହାକୁ ସମାଲୋଚନାରେ ପ୍ରକାଶ କରୁଥିଲେ । ତେଣୁ ତାଙ୍କ ସମାଲୋଚନା ଆଦୌ ନିରସ ମନେ ହୁଏନାହିଁ ବରଂ ହୁଏ ଅତ୍ୟନ୍ତ ସରସ ଓ ରମ୍ୟ । ତାଙ୍କର ବିବିଧ ସମୀକ୍ଷା ଗ୍ରନ୍ଥ ମଧ୍ୟରେ 'ସାହିତ୍ୟିକ ବୀକ୍ଷା ଓ ନିରୀକ୍ଷା' (୧୯୭୦), 'କବି ନୀଳକଣ୍ଠ' (୧୯୭୧), 'ସାହିତ୍ୟ-ଚର୍ଚ୍ଚା' (୧୯୮୧), 'ଆଲୋଚନା ପତ୍ର' (୧୯୭୯), 'କବି ଅର୍ଜୁନ ଦାସ' (୧୯୮୩), 'ଭାରତୀୟ କାବ୍ୟତତ୍ତ୍ୱ' (୧୯୮୧), 'କବି ଚରିତ : ରାଧାନାଥ' (୧୯୮୦), 'କାବ୍ୟପୁରୁଷ କଥା' (୨୦୦୩), 'ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ' (୧୯୭୭), 'ଅଳଙ୍କାର ଓ ଅଳଙ୍କାର ତତ୍ତ୍ୱ (୧୯୬୮), 'ସାହିତ୍ୟର ସାମାନ୍ୟ କଥନ' (୧୯୭୦) ଇତ୍ୟାଦି ଉଲ୍ଲେଖଯୋଗ୍ୟ । ତାଙ୍କର ସମାଲୋଚନାର ବୈଶିଷ୍ଟ୍ୟ ଓ ଦୃଷ୍ଟିକୋଣ ସଂପର୍କରେ ସଂକ୍ଷେପରେ ଆଲୋଚନା କରାଯାଉଅଛି ।

**ତୁଳନାତ୍ମକ ଦୃଷ୍ଟିକୋଣର ଏକ ଅନନ୍ୟ କୃତି : ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ -**

ଓଡ଼ିଆ ସମାଲୋଚନାର ଉନ୍ମେଷ ପର୍ବରେ ତୁଳନାତ୍ମକ ସାହିତ୍ୟ ଅଧ୍ୟୟନରେ ଅନୁକୂଳ ବାତାବରଣ ସୃଷ୍ଟି ହୋଇ ନଥିଲା । ତଥାପି ଭକ୍ତକବି ମଧୁସୂଦନ ରାଓଙ୍କର 'ରାମାୟଣ' ଶୀର୍ଷକ ଆଲୋଚନା ପ୍ରଥମ ଥର ପାଇଁ ରାମାୟଣ ମହାକାବ୍ୟ ସହିତ ହୋମରଙ୍କ 'ଇଲିୟାଡ୍' ର ତୁଳନାତ୍ମକ ବିଚାରର ପ୍ରାଥମିକ ନିଦର୍ଶନ । ଏହା ପରେ ପଣ୍ଡିତ ଗୋପୀନାଥ ନନ୍ଦଙ୍କର 'ଶ୍ରୀଭାରତ ଦର୍ପଣ' ସଂସ୍କୃତ ମହାଭାରତ ଓ ସାରଳା ମହାଭାରତର ଏକ ପ୍ରାମାଣିକ ତୁଳନାତ୍ମକ ଆଲୋଚନା ପ୍ରକାଶ ପାଇଥିଲା । ପରେ ପରେ ଡକ୍ଟର ମାୟାଧର ମାନସିଂହ, ପଣ୍ଡିତ ନୀଳକଣ୍ଠ ଦାସ, ସୁରେନ୍ଦ୍ର ମହାନ୍ତି ପ୍ରମୁଖ ତୁଳନାତ୍ମକ ଆଲୋଚନା କରିଥିଲେ ମଧ୍ୟ ବିଧିବଦ୍ଧ ଭାବରେ ସେ ଦିଗରେ ଦୃଷ୍ଟିଦେଇ ନଥିଲେ । ତୁଳନାତ୍ମକ ଆଲୋଚନାର

ଆଭିମୁଖ୍ୟ, ବୈଶିଷ୍ଟ୍ୟ, ପ୍ରଭାବ, ସାଦୃଶ୍ୟ ଇତ୍ୟାଦି ଦୃଷ୍ଟିରୁ ଡକ୍ଟର କ୍ଷେତ୍ରବାସୀ ନାୟକ ବିଧିବଦ୍ଧ ଭାବରେ ଉଦ୍ୟମ କଲେ ଓ ତାହାର ପରିଣତି ହେଲା - 'ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ' । ଏହି ଗ୍ରନ୍ଥରେ ସେ ମୁଖ୍ୟତଃ ଇଉରୋପୀୟ ରେନେସାଁ ସହିତ ଓଡ଼ିଶାର ରେନେସାଁର ତୁଳନାତ୍ମକ ବିଚାର ଓ ତାହାରି ଭିତ୍ତିରେ ଆଧୁନିକ ଓଡ଼ିଆ ସାହିତ୍ୟର ଆଦିପର୍ବର ଓଡ଼ିଆ କବିତା ସହିତ ଇଂରାଜୀ କବିତାର ତୁଳନାତ୍ମକ ଅଧ୍ୟୟନ କରିଅଛନ୍ତି ଓ ବିଶେଷତଃ ପାଶ୍ଚାତ୍ୟ ପ୍ରଭାବ ଦ୍ୱାରା ସେକାଳର ଓଡ଼ିଆ କବିତା କିପରି ନୂତନ ଦୃଷ୍ଟିକୋଣ ଲାଭ କରିଛି ତାହାକୁ ଦର୍ଶାଇ ଦେଇଛନ୍ତି । ସେ ଉକ୍ତ ଗ୍ରନ୍ଥର ଉପକ୍ରମଣିକାରେ କହନ୍ତି - 'ମଣିଷର ସତର୍କ ଓ ଅନୁସନ୍ଧିତ୍ସୁ ମନ ସାଧାରଣତଃ ଆପଣା ଦେଶର ବେଢ଼ା ଡେଇଁ ଭିନ୍ନ ଦେଶର ମନ ସହିତ ସଂପର୍କ ସ୍ଥାପନ କରିବା ପାଇଁ ଆଗ୍ରହୀ ହୋଇଥାଏ । ମନୋରାଜ୍ୟ ବା ଭାବ ଜଗତରେ ଭିନ୍ନ ଭିନ୍ନ ଜାତିର ପରସ୍ପର ସହିତ ସଂପର୍କ ସ୍ଥାପନ ତଥା ଆଦାନପ୍ରଦାନ ସାଂସ୍କୃତିକ ସମୃଦ୍ଧିର ପରିଚାୟକ । ପ୍ରତ୍ୟେକ ଦେଶର ସାରସ୍ୱତ ଇତିହାସରେ ଏଇ ପ୍ରକ୍ରିୟାର ପରିଣାମରୁ ପରିବର୍ତ୍ତନ ଘଟିଥିବା ଲକ୍ଷ୍ୟ କରାଯାଏ । ଏପରି ପରିବର୍ତ୍ତନ ସାହିତ୍ୟ ପକ୍ଷରେ ପ୍ରାୟ ସବୁ ସମୟରେ ଲାଭଜନକ ହୋଇଥାଏ । ଆମର ସାରସ୍ୱତ ଇତିହାସରେ ଅନୁରୂପ ଘଟଣା ଘଟିଛି । ବହୁକାଳ ହେଲା ଆମେ ପାଶ୍ଚାତ୍ୟ ସହିତ ଇଂରାଜୀ ଭାଷା ଓ ଶିକ୍ଷା ମାଧ୍ୟମରେ ସମ୍ବନ୍ଧାନ୍ୱିତ ହୋଇଅଛୁ । ଏହା ଫଳରେ ଆମ ସାରସ୍ୱତ ଦିଗନ୍ତ କିପରି ନବ ନବ ରୂପ ରାଗରେ ମଣ୍ଡିତ ହୋଇଛି ତାହା ବୁଝିବା ଆବଶ୍ୟକ ।'[1] ଏହି ଦୃଷ୍ଟିରୁ ଉନ୍ମେଷ ପର୍ବରେ ରଚିତ ଓଡ଼ିଆ କବିତାଗୁଡ଼ିକୁ ପାଶ୍ଚାତ୍ୟ ଜଗତରେ ରଚିତ ଇଂରାଜୀ ଓ ଗ୍ରୀକ୍ କବିତା ଗୁଡ଼ିକ ସହିତ ତୁଳନାକରି ଓଡ଼ିଆ କବିତା ପାଶ୍ଚାତ୍ୟ କବିତାର ପ୍ରଭାବରେ କିପରି ପରିପୁଷ୍ଟ ହୋଇଛି ତାହାକୁ ଯଥାର୍ଥ ଭାବରେ ଦର୍ଶାଇଦେଇଛନ୍ତି । ସେ ପୁଣି କହନ୍ତି ଯେ ଏହି ତୁଳନାତ୍ମକ ବିଚାର ଦିଗଟି ଅବହେଳିତ ହୋଇ ରହିଥିଲା । 'କେବଳ ଏ ସଂପର୍କରେ ଅତ୍ରତତ୍ର କେତୋଟି କ୍ଷୁଦ୍ର ପ୍ରବନ୍ଧ ଓ ପୁସ୍ତିକା ପ୍ରକାଶ ପାଇଥିଲା । ମୋର ଏଇ ଗବେଷଣା ପ୍ରବନ୍ଧଟି ଏ ଦିଗରେ ପ୍ରଥମ ବିଧିବଦ୍ଧ ଓ ପୂର୍ଣ୍ଣାଙ୍ଗ କାର୍ଯ୍ୟବୋଲି କୁହାଯାଇପାରେ ।'

ବାସ୍ତବିକ, କ୍ଷେତ୍ରବାସୀଙ୍କ 'ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ' ଏକ ଅଭିନବ ପୂର୍ଣ୍ଣାଙ୍ଗ ଗ୍ରନ୍ଥ । ତାଙ୍କ ପୂର୍ବରୁ ଡକ୍‌ଟର ନଟବର ସାମନ୍ତରାୟ 'ଆଧୁନିକ

---

୧. ଆଧୁନିକ ଓଡ଼ିଆ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ, ପୁସ୍ତକ ଭଣ୍ଡାର, ବ୍ରହ୍ମପୁର (୧୯୭୭) - ପୃ ୮୧

୨. ଅତ୍ରୈବ

ଓଡ଼ିଆ ସାହିତ୍ୟର ଇତିହାସ' (୧୯୬୪) ଗ୍ରନ୍ଥରେ କବିବର ରାଧାନାଥ ରାୟଙ୍କର ବିଭିନ୍ନ କାବ୍ୟରେ କିପରି ହୋମରଙ୍କ ଓଡ଼େଶୀ, ଇଲିୟାଡ୍ କାବ୍ୟ ସହିତ ମିଲଟନଙ୍କ ପାରାଡାଇଜ ଲଷ୍ଟ, ଦାନ୍ତେଙ୍କ ଡିଭାଇନ୍ କମେଡ଼ି, ଏନିଡ଼ଙ୍କ 'ମେଟାମରଫସିସ୍' ଆଦି ଗ୍ରନ୍ଥର ପ୍ରଭାବ ପଡ଼ିଛି ତାହାକୁ ଉଲ୍ଲେଖ କରିବା ସହିତ ଜଗନ୍ମୋହନ ଲାଲ,ରାମଶଙ୍କର ରାୟ, ମଧୁସୂଦନ ରାଓ, ଫକୀରମୋହନ ସେନାପତି ପ୍ରମୁଖ କେତେଜଣ କବିଙ୍କ କାବ୍ୟ କବିତାରେ ମଧ୍ୟ ପାଶ୍ଚାତ୍ୟ ପ୍ରଭାବକୁ ଦର୍ଶାଇଦେଇଥିଲେ । ତେବେ ଡକ୍‌ଟର ନାୟକ ସେହି ଋଣକୁ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ସେ ସମୟରେ ପାଶ୍ଚାତ୍ୟ ସଂକ୍ରମଣରେ ବିବିଧ ପଥ ରୂପେ ଶିକ୍ଷା, ଶିକ୍ଷା-ସଂସ୍କାର, ଇଂରାଜୀ ଶିକ୍ଷା, ମୁଦ୍ରଣ ଶିଳ୍ପ, ପତ୍ରପତ୍ରିକା, ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନ, ରେନେସାଁର ନବ ଅଭ୍ୟୁଦୟ ସଂପର୍କରେ ଯେପରି ଆଲୋଚନା କରିଛନ୍ତି ଓ ନବଯୁଗର କାବ୍ୟ ଧାରାରେ ଯେପରି ପାଶ୍ଚାତ୍ୟ ପ୍ରଭାବ ପଡ଼ି ତାହାକୁ ପରିପୁଷ୍ଟ କରିଛି ସେ ବିଷୟରେ ସ୍ପଷ୍ଟ ସୂଚେଇ ଦେଇ ଅବଶେଷରେ ପ୍ରଶ୍ନଟିଏ ଛାଡ଼ି ଦେଇଛନ୍ତି - 'ଅତଏବ ପାଶ୍ଚାତ୍ୟ ପ୍ରଭାବରେ ଏହି ଫଳଶ୍ରୁତି ଉତ୍କଳୀୟ ଭଳି ଏକ ସାଂସ୍କୃତିକ ଐତିହ୍ୟମଣ୍ଡିତ ଜାତି ପକ୍ଷରେ କଲ୍ୟାଣକର ହୋଇନାହିଁକି ?'[୪] ଊନବିଂଶ ଶତାବ୍ଦୀର ଶେଷ ଦଶନ୍ଧିରେ ପ୍ରକାଶିତ 'ଉତ୍କଳ ପ୍ରଭା' ଓ 'ଉତ୍କଳ-ସାହିତ୍ୟ'[୫] (୧୮୯୭) ମତ ସହିତ ଡକ୍‌ଟର ନାୟକଙ୍କ ଅଭିମତ ସମତା ରକ୍ଷାକରିଛି । ସେ ତତ୍କାଳୀନ ପ୍ରାୟ ପ୍ରଚାଶ ବର୍ଷର ଓଡ଼ିଆ କବି ଓ କବିତାକୁ ପାଶ୍ଚାତ୍ୟ ଜଗତର ବିଭିନ୍ନ କବି ଓ କବିତା ସହିତ ତୁଳନା କରି ତାହା ଦ୍ୱାରା ଓଡ଼ିଆ କବିତା କିପରି ଉପକୃତ ହୋଇଛି ସୂଚାଇ ଦେଇଛନ୍ତି ଓ ପାଶ୍ଚାତ୍ୟ କବିତାର ରୂପଗତ ବିବିଧତା ପ୍ରଭାବରେ ଓଡ଼ିଆ କବିତାରେ କିପରି ଓଡ୍ (ସମ୍ବୋଧଗୀତି), ଏଲିଜି (ଶୋକଗୀତି), ବାଲାଡ୍ (ଗାଥା କବିତା), ଏପିକ୍ (ମହାକାବ୍ୟ), ଅମିତ୍ରାକ୍ଷରଛନ୍ଦ, ସନେଟ ଇତ୍ୟାଦି ରଚିତ ହୋଇଛି, ତାହାର ବିସ୍ତୃତ ଆଲୋଚନା କରିଛନ୍ତି । ଏହି ତୁଳନାତ୍ମକ ଅଧ୍ୟୟନ ଦ୍ୱାରା ସେ ଗୋଟିଏ ସତ୍ୟରେ ଉପନୀତ ହୋଇଛନ୍ତି ଯେ, ସାହିତ୍ୟ ଭିନ୍ନ ଭିନ୍ନ ଦେଶରେ ଭିନ୍ନ ଭିନ୍ନ ଭାଷାରେ ରଚିତ ହେଲେ ମଧ୍ୟ ମଣିଷର ମନ ଓ ହୃଦୟ ସବୁଠି ସମାନ । ସାହିତ୍ୟ ମନ ଓ ହୃଦୟର ସଂପତ୍ତି ହୋଇଥିବାରୁ ସେଥିରେ ସାଦୃଶ୍ୟ ରହିବା ସ୍ୱାଭାବିକ ଏବଂ ଉନ୍ନତ ସାହିତ୍ୟର ପ୍ରଭାବ ଅପେକ୍ଷାକୃତ ଅନୁନ୍ନତ ସାହିତ୍ୟ ଉପରେ

---

୩. ଅତ୍ରୈବ - ପୃ୩୦୧

୪. ଉତ୍କଳପ୍ରଭା - (୧୮୯୨), ୧ମ ବର୍ଷ / ୧ମ ସଂଖ୍ୟା

୫. ଉତ୍କଳ ସାହିତ୍ୟ - (୧୮୯୭), ୧ମ ବର୍ଷ / ୧ମ ସଂଖ୍ୟା

ପଢ଼ିବା ମଧ୍ୟ ଅବଧାର୍ଯ୍ୟ । ଡକ୍‌ଟର ନାୟକ ଯେପରି ଭାବରେ ବିବିଧ ଓଡ଼ିଆ କବିଙ୍କ କବିତାକୁ ପାଶ୍ଚାତ୍ୟ ଜଗତର ବିବିଧ କବିଙ୍କ କାବ୍ୟ କବିତା ସହିତ ତୁଳନା କରିଛନ୍ତି ତାହା ବାସ୍ତବିକ ପ୍ରଶଂସାର୍ହ ।

**କବି ଚରିତ : ରାଧାନାଥ**

'ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ' ର ପରିଣତି 'କବି ଚରିତ : ରାଧାନାଥ' (୧୯୮୩) ଓ ରାଧାନାଥ ରାୟଙ୍କ ଗ୍ରନ୍ଥାବଳୀ ସଂପାଦନା । ଏଥିରେ ସେ.ନୂତନ ସଂଯୋଗ କରିଛନ୍ତି 'ଉତ୍କଳ ରଚନା', 'ବ୍ୟାକରଣ ପରିଚୟ' ଓ ଆତ୍ମକଥାର କିୟଦଂଶ ।' ନଗେନ୍ଦ୍ରବାଳାଙ୍କ ସହିତ ରାଧାନାଥଙ୍କର ସଂପର୍କ ଓ ତଜ୍ଜନିତ ଅନୁତାପ ହିଁ ଏହି ଆତ୍ମକଥାର ମର୍ମଲିପି । ସମାଲୋଚକ କ୍ଷେତ୍ରବାସୀଙ୍କ ମତରେ- 'ରାଧାନାଥଙ୍କ ରଚନା ହେଉଛି ଶାଶ୍ୱତ ସାହିତ୍ୟ' (ନୂତନ ସଂସ୍କରଣର ଭୂମିକା) । ସେ ହେଉଛନ୍ତି ନାନ୍ଦନିକ ସମାଲୋଚକ ବା ସୌନ୍ଦର୍ଯ୍ୟବାଦୀ ସମାଲୋଚକ । ତେଣୁ ସେ ଯେତେବେଳେ ଯେଉଁ ସାହିତ୍ୟକୁ ବିଚାରକୁ ନେଇଛନ୍ତି ସେତେବେଳେ ତାଙ୍କ ମନ ଭିତରେ ସେହି ସେହି ସୌନ୍ଦର୍ଯ୍ୟାତ୍ମକ ଦୃଷ୍ଟିକୋଣଟି ପ୍ରାଧାନ୍ୟ ଲାଭ କରିଯାଇଥିବା ଲକ୍ଷ୍ୟ କରାଯାଏ । ରାଧାନାଥଙ୍କ ଜନ୍ମ, ଶୈଶବ ଜୀବନ, ବଂଶ ପରିଚୟ, ମାତୃବିୟୋଗ, ଶିକ୍ଷା, ସାରସ୍ୱତ ସଂପର୍କ ଓ ପରିବେଶ, କବି ପ୍ରତିଭା : ଉନ୍ମେଷ ଓ ଉତ୍ତରଣ, କବି ପ୍ରତିଭାର ପ୍ରସ୍ତୁତି କାଳ, ପ୍ରତିଭାର ପ୍ରତିଶ୍ରୁତି, ପ୍ରତିଭାର ପ୍ରକର୍ଷ ଓ ପ୍ରତିକ୍ରିୟା, ପ୍ରତିଭାର ପ୍ରଶାନ୍ତି ଓ ଅବରୋହ ଇତ୍ୟାଦି ପ୍ରସଙ୍ଗକୁ ରୂପ ଦେବା ସଙ୍ଗେ ସଙ୍ଗେ କବିକଳ୍ପି, ଶିକ୍ଷକ ଓ ପ୍ରଶାସକ ରାଧାନାଥଙ୍କ ସଂପର୍କରେ ମଧ୍ୟ ସେ ଆଲୋଚନା କରିଛନ୍ତି ।

ଏହି ଜୀବନୀଭିତ୍ତିକ ରଚନାରେ ରାଧାନାଥଙ୍କ କବିତ୍ୱ ବା କବି-ଶକ୍ତି ଉପରେ ଲେଖକ ଗୁରୁତ୍ୱ ଆରୋପ କରିଛନ୍ତି । ସେ ଯେପରି ଭାବରେ ରାଧାନାଥଙ୍କୁ ଭବଭୂତିଙ୍କ ସହିତ ତୁଳନା କରି ତାଙ୍କର ଜୀବନ-ଜିଜ୍ଞାସା, ନିଃସଙ୍ଗତାବୋଧ ଓ ଉଦାସୀନତା, ନାରୀ-ସଂସର୍ଗ ଓ ତଜ୍ଜନିତ ଅସହାୟତାବୋଧ, ଅନ୍ତର୍ମୁଖୀ ଚେତନା, ପ୍ରକୃତିପ୍ରାଣତା ଇତ୍ୟାଦି ବିଷୟରେ ସୁଚିନ୍ତିତ ମନ୍ତବ୍ୟ ଦେଇଛନ୍ତି ତାହା ଏକାନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ରାଧାନାଥଙ୍କ କାବ୍ୟ-ଦର୍ଶନ ବାସ୍ତବତାର ଆକର୍ଷଣରୁ ଉଦ୍‌ଭବ ଓ ତାର ପରିସମାପ୍ତି ଘଟିଛି ନୈତିକ ଆଦର୍ଶର ଇଂଗିତରେ । ଡକ୍‌ଟର ନାୟକ କହନ୍ତି - 'କବି ବୃହତ୍ତର ଜୀବନର ନଗ୍ନ ବାସ୍ତବତାକୁ ଉପଲବ୍ଧ କରିଛନ୍ତି; ଅନ୍ଧାରରେ ବୁଡ଼ି ରହିଥିବା ଜୀବନକୁ ଉଠାଇ ଆଲୋକର ଇଲାକା ଆଡ଼କୁ ଘେନିଯାଇଛନ୍ତି । ଏଇ ଆଲୋକର ଜଗତ ହେଉଛି, ନୀତିର ଜଗତ । ନଗ୍ନ ମାନବିକ ସତ୍ୟର କାବ୍ୟିକ ଅଭିବ୍ୟକ୍ତିରେ କବି ଖୁବ୍ ନିର୍ଭୀକ, ମାତ୍ର ଏହାର ଅନ୍ତରାଳରେ

ଅଛି ଜଣେ ନୀତିମନା ସମାଜ ଚେତନାର ମନ ।[୬] 'ପାର୍ବତୀ' ଓ 'ନନ୍ଦିକେଶରୀ' କାବ୍ୟ ପାଇଁ ରାଧାନାଥଙ୍କୁ ଅତୀତରେ ବହୁ କଟୁ ସମାଲୋଚନାର ଶରବ୍ୟ ହେବାକୁ ହୋଇଥିଲା । ମାତ୍ର ଡକ୍‌ଟର ନାୟକ ସେସବୁ ପ୍ରତିକୂଳ ସମାଲୋଚନାକୁ ମନ ଭିତରେ ରଖି ତାହାର ସମୁଚିତ ଉତ୍ତର ଦେଇଛନ୍ତି ଓ ରାଧାନାଥଙ୍କ ପ୍ରକୃତ କବି-ପ୍ରତିଭାର ଆବିଷ୍କାର କରିବାକୁ ସମର୍ଥ ହୋଇଛନ୍ତି । ଆଦିପର୍ବରେ ରାଧାନାଥ ଯେ ଗୌଣ କବି ନୁହଁନ୍ତି, ପ୍ରମୁଖ କବି ଓ ଯୁଗସ୍ରଷ୍ଟା ତାହା ସେ ପ୍ରତିପାଦନ କରିବା ସହିତ କହନ୍ତି - " x x x ରାଧାନାଥଙ୍କର କାବ୍ୟ-ଦର୍ଶନ, ବାହ୍ୟତଃ ରୋମାଣ୍ଟିକ୍ ଉଲ୍ଲାସର ନିର୍ବାଧ ଉଚ୍ଚାରଣ ପରି ଜଣାଯାଉଥିଲେ ମଧ ଏହାର ଅନ୍ତରାଳରେ କ୍ଲାସିକ୍-ମନ୍ମୟତାର ଭାବାବେଶ ବେଶ୍ ଲକ୍ଷଣୀୟ । ତେଣୁ ରାଧାନାଥଙ୍କର କବିତା ରୋମାଣ୍ଟିକ୍ ହୋଇ ମଧ କ୍ଲାସିକ୍ ସୌନ୍ଦର୍ଯ୍ୟରେ ସିକ୍ତ- ଏହାହିଁ ତାଙ୍କ କାବ୍ୟ-ଦର୍ଶନର ଅସାଧାରଣତ୍ୱର ଏକ ନମୁନା ।"[୭]

କବିବର ରାଧାନାଥଙ୍କର ଜୀବନ-ଦୃଷ୍ଟି, ସମାଜ-ଦୃଷ୍ଟି, ମାଟି ଓ ମାନବ-ଦୃଷ୍ଟି, ସଂସ୍କୃତି ଓ ପରଂପରା-ଦୃଷ୍ଟି, ଇତିହାସ-ଦୃଷ୍ଟି, ବାସ୍ତବ ଓ ଆଦର୍ଶ ଦୃଷ୍ଟି, ଭାଗ୍ୟବାଦୀ ଓ ଧାର୍ମିକ ଦୃଷ୍ଟି, ପ୍ରକୃତି ଓ ସୌନ୍ଦର୍ଯ୍ୟ-ଦୃଷ୍ଟି ଆଦିକୁ ଶ୍ରୀ ନାୟକ ଯେପରି ଭାବରେ ବିଚାର-ବିମର୍ଶ କରି ରାଧାନାଥଙ୍କ କବିତ୍ୱର ମହତ୍ତ୍ୱ ଓ ମହିମାକୁ ଦର୍ଶାଇ ଦେଇଛନ୍ତି ତାହା ବାସ୍ତବିକ ତାଙ୍କର ସୂକ୍ଷ୍ମ ବିଚାରଶୀଳତାର ପରିଚୟ ଦେଇଥାଏ । ରାଧାନାଥଙ୍କ ସାହିତ୍ୟକୁ ନେଇ ଯେତେ ଆଲୋଚନା ପ୍ରକାଶ ପାଇଛି, ସେସବୁ ଭିତରେ କ୍ଷେତ୍ରବାସୀଙ୍କ ଆଲୋଚନା ଯେ ସ୍ୱାତନ୍ତ୍ର୍ୟ ଦାବୀ କରେ; ଏହାକୁ ଅସ୍ୱୀକାର କରିହୁଏ ନାହିଁ ।

**ପ୍ରାଚୀନ ଓ ନବୀନ କତିପୟ କବିଙ୍କ ସଂପର୍କରେ ବିଚାର-ବିମର୍ଶ :**

କ୍ଷେତ୍ରବାସୀଙ୍କ ସମାଲୋଚନାର ବିଶେଷ ପରିସର ରାଧାନାଥ ଯୁଗ ହୋଇଥିଲେ ହେଁ, ଆଧୁନିକ ଯୁଗ ପର୍ଯ୍ୟନ୍ତ ତାଙ୍କର ଅଧ୍ୟୟନ ଓ ବିଚାର ଦୃଷ୍ଟି ସଂପ୍ରସାରିତ ହୋଇଆସିଛି । ବିଶେଷତଃ, ତାଙ୍କର ବିଚାର କାବ୍ୟ କବିତା ଆଧାରିତ । ଆଧୁନିକ ଯୁଗର ଆଦିପର୍ବର ଯୁଗସ୍ରଷ୍ଟା କବି ରାଧାନାଥଙ୍କ ସାରସ୍ୱତ କୃତିର ବିଚାର କରୁ କରୁ ତାଙ୍କର ଦୃଷ୍ଟି ପ୍ରସରିଯାଇଛି ପ୍ରାଚୀନ ଯୁଗକୁ । ଓଡ଼ିଆ ରୀତି କାବ୍ୟର ପ୍ରାଣପ୍ରତିଷ୍ଠାତା, ଅର୍ଜୁନ ଦାସ ଆସିଯାଇଛନ୍ତି ତାଙ୍କର ବିଚାର ପରିସର ମଧ୍ୟକୁ । 'କବି ଅର୍ଜୁନ ଦାସ' ଗ୍ରନ୍ଥ ଲେଖିବାକୁ ଯାଇ

---

୬. ରାଧାନାଥ ଗ୍ରନ୍ଥାବଳୀ, ସଂ. କ୍ଷେତ୍ରବାସୀ ନାୟକ, ପୁସ୍ତକ ଭଣ୍ଡାର, ବାଙ୍କାବଜାର, କଟକ-୨, ୨ୟ ସଂ, ୧୯୮୦, କବିଚରିତ : ରାଧାନାଥ, ପୃ.୯୧

୭. ଅତ୍ରୈବ - ପୃ.୯୧

'ସୂଚନା'ରେ ସେ କହନ୍ତି - 'ସାହିତ୍ୟ ସମାଲୋଚନାର ପାରଂପରିକ ଟେକ୍‌ନିକ ଯଥାସମ୍ଭବ ପରିହାର କରି ଆଧୁନିକ ଅନ୍ତର୍ଦୃଷ୍ଟି ବିନିଯୋଗରେ କବି ସମୀକ୍ଷା ଲାଗି ଏଥିରେ ଯତ୍‌କିଂଚିତ୍ ଉଦ୍ୟମ କରାଯାଇଛି । କବିର ଅନ୍ତର୍ବିଶ୍ୱାସ, ଉଚ୍ଚାରଣର ନାନ୍ଦନିକ ସ୍ୱଧର୍ମ, କାବ୍ୟ ସହ କବି ଆତ୍ମାର ସଂପର୍କ, ଆହରଣ ଓ ଅଭିବ୍ୟକ୍ତି କ୍ଷେତ୍ରରେ ନିଜସ୍ୱ ଦେୟ, ସମକାଳୀନ କାବ୍ୟ-ଶିଳ୍ପ ଓ ସଂସର୍ଗର କଷଟିରେ କବିକୃତିର ଅନନ୍ୟତା ଅନୁସଂଧାନ ଇତ୍ୟାଦି ଅବଲମ୍ବନର ଆଶ୍ରୟରେ ଆଲୋଚନାକୁ ଆକାର ଦିଆଯାଇଛି । ଜଣେ ପ୍ରାଚୀନ କବିଙ୍କୁ ଆଧୁନିକ ରୀତିରେ ଆଲୋଚନା କଲାବେଳେ ଆହୁରି ଅଧିକ ଅବଲମ୍ବନର ଆଶ୍ରୟ ନିଆଯାଇ ପାରେ । ତୁଳନାତ୍ମକ ଶୈଳୀର ସହାୟତାରେ କିମ୍ବା ଅନ୍ତର୍ବିଦ୍ୟାନୁଶୀଳନ ପନ୍ଥାରେ ତାହାକୁ ଅଧ୍ୟୟନ କରାଯାଇପାରେ ।'[୮]

'କବି ଅର୍ଜୁନ ଦାସ'- ସମୀକ୍ଷାମୂଳକ ଏକ ମନୋଗ୍ରାଫ୍ । ତେଣୁ ଏହାର ଆୟତନ ଦୀର୍ଘ ନୁହେଁ; ସୀମିତ । ମାତ୍ର ଏହାର ବିଚାର-ଦୃଷ୍ଟି ତୀକ୍ଷ୍ଣ । ଷୋଡ଼ଶ ଶତାବ୍ଦୀର କବି ଅର୍ଜୁନ ଦାସଙ୍କ ସଂପର୍କରେ ନାନା ସମାଲୋଚକ ନାନା ମତ ଦେଇଥିଲେ ମଧ୍ୟ ସେ ଯେ ପ୍ରଥମ ରୀତି କବି; ଏକଥା ସମସ୍ତେ ସ୍ୱୀକାର କରିଛନ୍ତି । କ୍ଷେତ୍ରବାସୀ ମଧ୍ୟ ସ୍ୱୀକାର କରିଛନ୍ତି ସେହି ସମୟକୁ । ମାତ୍ର ତାଙ୍କର ଆଲୋଚନା ଐତିହାସିକ ତଥ୍ୟଭିତ୍ତିକ ନୁହେଁ; ନାନ୍ଦନିକ ଓ ଜାତୀୟ ଦାୟିତ୍ୱବୋଧକ । ତାଙ୍କ ମତରେ - 'ଏ ଜାତିର ଐତିହ୍ୟ ଓ ଆଭିଜାତ୍ୟର ଆଲେଖ୍ୟ ଯଦି ତାର କାବ୍ୟ ଓ କଳା କର୍ମ ହୁଏ, ତେବେ ସେହି ଶିଳ୍ପୀ ବା କବି-ପୁରୁଷର ଅନ୍ୱେଷଣ ଓ ଅନୁଶୀଳନ ହେଉଛି ଉତ୍ତରାଧିକାରୀର ଜାତୀୟ ଦାୟିତ୍ୱ ।'[୯] ଏହି ଜାତୀୟ ଦାୟିତ୍ୱ ଦୃଷ୍ଟିରୁ ଡକ୍‌ଟର ନାୟକ ରଚନା କରିଛନ୍ତି 'କବି ଅର୍ଜୁନ ଦାସ', 'ନାରୀ କବି ଅନ୍ନପୂର୍ଣ୍ଣା', 'କବିଚରିତ : ରାଧାନାଥ' ଓ 'କବି ନୀଳକଣ୍ଠ' ପରି ସମୀକ୍ଷାତ୍ମକ ଗ୍ରନ୍ଥ ।

ଅର୍ଜୁନ ଦାସଙ୍କ 'ରାମବିଭା' ଓ 'କଳ୍ପଲତା' କାବ୍ୟଦ୍ୱୟର କାବ୍ୟ-କଥା ଓ କାବ୍ୟ-କୌଶଳ, କାବ୍ୟବିମ୍ବ, କାବ୍ୟନିର୍ମାଣ, କବି ମନର ଭୂମିକା, କାବ୍ୟରେ ମାନବ-ରୂପ, କବିଙ୍କ କାବ୍ୟତତ୍ତ୍ୱ, ଅପଭ୍ରଂଶ ସାହିତ୍ୟର ପ୍ରଭାବ ଇତ୍ୟାଦି ବିଷୟରେ ଡକ୍‌ଟର ନାୟକ ଯେପରି ସଂକ୍ଷେପରେ ଅନେକ କଥା କହିଛନ୍ତି, ତାହା ତାଙ୍କର ସମାଲୋଚକୀୟ ଦିଗନ୍ତକୁ ପ୍ରସାରିତ କରିଦିଏ । 'ନାରୀ କବି ଅନ୍ନପୂର୍ଣ୍ଣା' ତାଙ୍କର ଜାତୀୟ ଦାୟିତ୍ୱବୋଧର

---

୮. କବି ଅର୍ଜୁନ ଦାସ - ଡ. କ୍ଷେତ୍ରବାସୀ ନାୟକ, ସାରସ୍ୱତ ପ୍ରକାଶନୀ, ସାରସ୍ୱତ ନିଳୟ, ଶ୍ରୀଅରବିନ୍ଦନଗର, କଟକ-୧(୧୯୮୩), ସୂଚନା

୯. ଅତ୍ରୈବ - ପୃ.୪

ଅନ୍ୟତମ ସଫଳ କୃତି । ଉନବିଂଶ ଶତାବ୍ଦୀର ଶେଷ ପାଦରେ ଜନ୍ମ ନେଇ ବିଂଶ ଶତାବ୍ଦୀର ମଧ୍ୟଭାଗ ବେଳକୁ ମୃତ୍ୟୁବରଣ କରିଥିବା ଅନ୍ନପୂର୍ଣ୍ଣା ପଟ୍ଟନାୟକ ଆପଣାର ସାଧନା ଓ ଐଶୀଶକ୍ତି ତଥା ପାରିବାରିକ ପ୍ରଭାବରେ କବି-ଶକ୍ତିର ହେଲେ ଅନନ୍ୟ ଅଧିକାରିଣୀ । ପତ୍ରପତ୍ରିକାରେ ତାଙ୍କର କବିତା ପ୍ରକାଶ ପାଇଥିଲେ ହେଁ ପୁସ୍ତକାକାରରେ ନଥିବାରୁ ତାଙ୍କ ସଂପର୍କରେ ଆଲୋଚନା କରିବା ପାଇଁ ସୁବିଧା ନଥିଲା । ଏହି ଅନାଲୋଚିତା କବି ପ୍ରତିଭାଙ୍କ ସାରସ୍ୱତ କୃତିକୁ ବିଭିନ୍ନ ପତ୍ରପତ୍ରିକାରୁ ଖୋଜି ସେସବୁକୁ ଏକତ୍ର କରି 'ନାରୀ କବି ଅନ୍ନପୂର୍ଣ୍ଣା ରଚନାଶ୍ରୀ' (୧୯୭୮) ନାମରେ ପ୍ରକାଶ କଲେ କ୍ଷେତ୍ରବାସୀ । ୧୯୭୯ ମସିହାରେ ସେ ନାରୀକବିଙ୍କ ଉପରେ ରଚନା କଲେ ଏକ ମନୋଗ୍ରାଫ୍ । ଏହାହିଁ ବୋଧହୁଏ ନାରୀ କବି ଅନ୍ନପୂର୍ଣ୍ଣାଙ୍କ ସଂପର୍କରେ ପ୍ରଥମ ଆଲୋଚନା ଗ୍ରନ୍ଥ । ଏହି ଗ୍ରନ୍ଥର ଆରମ୍ଭରେ ଜାତି ଓ ଜାତିର ଭାଷା ସାହିତ୍ୟ ଐତିହ୍ୟକୁ ଭଲପାଉଥିବା ଲେଖକ ଡକ୍‌ଟର ନାୟକ କହନ୍ତି - 'ସ୍ଥପତିର ଶାଳଭଂଜିକା ପରି କବିର ଅକ୍ଷରମୂର୍ତ୍ତି ହେଉଛି ଓଡ଼ିଶାର ଅକ୍ଷୟ ଐଶ୍ୱର୍ଯ୍ୟ । ପ୍ରକୃତିର ବିପାକ କିମ୍ବା କାଳର ପ୍ରତୀପ ଆଚରଣ ହେତୁ କାହିଁ କେତେ କଳାକର୍ମ ଦୃଷ୍ଟିର ଅନ୍ତରାଳକୁ ଚାଲିଯାଇଛି ସତ; ତଥାପି ଅନ୍ୱେଷଣର ନୂତନ ଅଭିଷାରେ ତାହାର ପ୍ରତ୍ନୋଦ୍ଧାର ଏବେ ବି ଧାରଣା ଦିଏ ଯେ, ଓଡ଼ିଶା ହେଉଛି ବସ୍ତୁତଃ ରତ୍ନଗର୍ଭା । କେତେ କବି, କେତେ ଶିଳ୍ପୀ; କାହିଁ ତାଙ୍କର କଳନା ! ସୃଷ୍ଟି ପାଇଁ ସେମାନଙ୍କର ଶୁଭଦାନ ହିଁ ଏ ଜାତିର ପୁଣ୍ୟ ସମ୍ବଳ ।'[୧୦]

ଓଡ଼ିଆ ଜାତିର ଜୀବନ-ଧର୍ମ କଳା-ତପସ୍ୟା । ଏହି ତପସ୍ୟା ନିରବଚ୍ଛିନ୍ନ । ସେହି ତପସ୍ୟାର ଫଳଶ୍ରୁତି ନାରୀ କବି ଅନ୍ନପୂର୍ଣ୍ଣା । କ୍ଷେତ୍ରବାସୀଙ୍କ ଆଲୋଚନାରେ କବିଙ୍କ ଜନ୍ମ ଓ କୁଳ ପରିଚୟ, ବିବାହ, ଶିକ୍ଷା, ପାରିବାରିକ ଜୀବନ, ବିଶ୍ୱାସ ଓ ଆଧ୍ୟାତ୍ମିକ ନିଷ୍ଠା, ବୃତ୍ତି ଓ ପ୍ରବୃତ୍ତି, କବିତ୍ୱ ସ୍ଫୂର୍ତ୍ତି ଓ ପ୍ରେରଣା, କବି ମନର ଭୂମିକା, ସମାଜଚେତନା, ପ୍ରେମଚେତନା, ଈଶ୍ୱର ଭାବନା, ଆଧ୍ୟାତ୍ମିକ ମାନବତାବାଦ ଓ ଓଡ଼ିଶାର ନାରୀକବି-ପରଂପରାରେ ଅନ୍ନପୂର୍ଣ୍ଣାଙ୍କ ଭୂମିକା ଇତ୍ୟାଦି ବିଷୟରେ ଯେପରି ବିଚାର-ବିମର୍ଶ କରାଯାଇଛି ତାହା ବାସ୍ତବିକ ତାତ୍ପର୍ଯ୍ୟପୂର୍ଣ୍ଣ । ଏହା ଯେ ଡକ୍‌ଟର ନାୟକଙ୍କର ଏକ ଜାତୀୟ କର୍ତ୍ତବ୍ୟ-ସଂପାଦନ ତାହା ଉପଲବ୍ଧ ହୁଏ ।

'କବି ନୀଳକଣ୍ଠ' (୧୯୭୧) ଡକ୍‌ଟର ନାୟକଙ୍କର ଅନ୍ୟ ଏକ ମନୋଗ୍ରାଫ୍ ବା ଜୀବନୀଭିତ୍ତିକ ଆଲୋଚନା ଗ୍ରନ୍ଥ । ଆଲୋଚିତ ବା ସ୍ୱଳ୍ପାଲୋଚିତ କବିମାନଙ୍କ

---

୧୦. ନାରୀକବି ଅନ୍ନପୂର୍ଣ୍ଣା- ପୁସ୍ତକଭଣ୍ଡାର, ବ୍ରହ୍ମପୁର ୧, କଟକ-୨ (୧୯୭୯) ପୃ.୩

ସଂପର୍କରେ ମନୋଗ୍ରାଫ୍ ଲେଖିବା ପାଇଁ ସେ ଯେଉଁ ଯୋଜନା କରିଥିଲେ 'କବି ନୀଳକଣ୍ଠ' ତାହାର ପ୍ରଥମ ଫଳଶ୍ରୁତି । ବ୍ରହ୍ମପୁରର ସମୀକ୍ଷା ସଂସଦ ଆନୁକୂଲ୍ୟରେ ଏହାକୁ ବିଜୟ ବୁକ୍‌ଷ୍ଟୋର, ବ୍ରହ୍ମପୁର ପ୍ରକାଶ କରିଥିଲେ । ଏ ସଂପର୍କରେ ଲେଖକ କହନ୍ତି - 'ସତ୍ୟବାଦୀ କବିକୁଳଙ୍କ ମଧ୍ୟରୁ ଜଣେ ଦୁଇଜଣଙ୍କର କବିକୃତି ସଂପର୍କରେ ଆଲୋଚନା ହୋଇଛି । କିନ୍ତୁ ସେହି କାବ୍ୟ-ସ୍କୁଲର ଅନ୍ୟତମ କବି-କର୍ମ-ସାଧକ ପଣ୍ଡିତ ନୀଳକଣ୍ଠଙ୍କୁ ଘେନି ଏକକ କାବ୍ୟ-ଚର୍ଚ୍ଚାର ଅଭାବ ଥିଲା । ଏବେ ତାହା ଦୂର ହେଲା ଏବଂ ଏହା ଦ୍ୱାରା ସତ୍ୟବାଦୀ କାବ୍ୟ-ସ୍କୁଲର ପୂର୍ଣ୍ଣାଙ୍ଗ ଅଧ୍ୟୟନ ପାଇଁ ଅନୁସନ୍ଧିତ୍ସୁମାନେ ପ୍ରାଥମିକ ଅସୁବିଧାର ସମ୍ମୁଖୀନ ହେବେ ନାହିଁ ।'[11] ପଣ୍ଡିତ ନୀଳକଣ୍ଠ ଜଣେ ସଂସ୍କୃତିପ୍ରାଣ କବି । ସେ ଥିଲେ ପ୍ରଜ୍ଞା ଓ ପ୍ରତିଭାର ଏକ ମୂର୍ତ୍ତିମାନ ପ୍ରତୀକ । ତାଙ୍କର ପ୍ରଜ୍ଞା-ମାନସ ବ୍ୟାପକ ଓ ସୁଦୂରପ୍ରସାରୀ । ସେହି ମାନସ ଯାବତୀୟ ଭାନ୍ତିକ ମିଥ୍ୟାକୁ କଠୋର ସମାଲୋଚନା କରି ଯାହା ସତ୍ୟ ତାହାକୁ ପ୍ରତିପାଦନ କରିଛି । ତାଙ୍କର କବିତା ଓ କାବ୍ୟ ଓଡ଼ିଆ ସାହିତ୍ୟର ଗୋଟିଏ ଗୋଟିଏ ଅମଳିନ ବିଭବ । 'ପ୍ରଣୟିନୀ' ଓ 'ଦାସନାଏକ' ଦୁଇଟି ଅନୂଦିତ କାବ୍ୟ । 'କୋଣାର୍କେ' ଓ 'ଖାରବେଳ' ଦୁଇଟି ଇତିହାସ-ଆଧାରିତ କାବ୍ୟ । ଏଥିରେ ସେ ଜାତିର ଆତ୍ମିକ ବିଭବକୁ ଜୀବନ୍ତ ଭାବରେ ରୂପ ଦେଇଅଛନ୍ତି । ଡକ୍‌ଟର ନାୟକ ତାଙ୍କର କାବ୍ୟାନୁଶୀଳନ କରି କହନ୍ତି ଯେ 'ସେ ବ୍ୟକ୍ତି ଭୂମିରେ ଚାରଣ କରି କବି ହେବାକୁ ଇଚ୍ଛୁକ ନୁହନ୍ତି । ତାଙ୍କ ସୃଷ୍ଟି ତାଙ୍କ ପାଇଁ ନୁହେଁ; ଅନ୍ୟମାନଙ୍କ ପାଇଁ । ସେମାନଙ୍କର ଗ୍ରାହକତାରେ କବିର ସ୍ୱର୍ଗ ସୁଖ ।'[12] ତାଙ୍କର କାବ୍ୟ ଓଡ଼ିଆ ଜାତି ପାଇଁ ଉଦ୍ଦିଷ୍ଟ । ଜାତୀୟ ଜୀବନର କ୍ଷୋଭ, ବିପର୍ଯ୍ୟୟ ଓ ଜଡ଼ତାର କାରଣ ଅନ୍ୱେଷଣ ଓ ସେହି କାରଣଗୁଡ଼ିକର ନିରାକରଣ ପାଇଁ ଇତିହାସରୁ ଉପାଦାନ ସଂଗ୍ରହ ଓ ତାହାର କାବ୍ୟ ରୂପ ପ୍ରଦାନ ନୀଳକଣ୍ଠଙ୍କ କବିମନୀଷାର ଲକ୍ଷ୍ୟ । ତାଙ୍କର ଗୀତି କବିତା; ବିଶେଷତଃ ଭକ୍ତିଗୀତିକାର ମାର୍ମିକ ଅନୁଶୀଳନ ସହିତ ବାକ୍ୟଗୁଡ଼ିକର ଯଥାଯଥ ଆଲୋଚନା କରିଛନ୍ତି ଶ୍ରୀନାୟକ । ନୀଳକଣ୍ଠଙ୍କ କାବ୍ୟିକ ମାନସର ଭୂମିକା ଜ୍ଞାନ ଓ ଦର୍ଶନର ଅପୂର୍ବ ସଂଯୋଗ ବୋଲି ସେ ମତ ଦେଇଛନ୍ତି । 'ନାରୀର ସ୍ୱଭାବ ସୁନ୍ଦର ସତୀତ୍ୱ ପାଖେ ପୁରୁଷର ସାଧୁ ଓ ସୁକଠୋର ପ୍ରୀତି ସାଧନ ସାହିତ୍ୟ ରାଜ୍ୟରେ ଗୋଟିଏ ନୂତନ ବିଭାବ'-ଏହି ଆଦର୍ଶ ନୀଳକଣ୍ଠଙ୍କୁ 'ଦାସନାଏକ' (୧୯୨୩) କାବ୍ୟ ଅନୁବାଦ କରିବାକୁ ପ୍ରେରଣା

---

୧୧. କବି ନୀଳକଣ୍ଠ, ବିଜୟ ବୁକ୍‌ଷ୍ଟୋର, ବ୍ରହ୍ମପୁର (୧୯୭୧)- ସଂଳାପ

୧୨. ଅତ୍ରୈବ - ପୃ.୩

ଦେଇଥିଲା । ଟେନିସନଙ୍କ 'ଦି ପ୍ରିନ୍‌ସେସ୍' ଓ 'ଏନକ ଆଡ୍ରେନ' କାବ୍ୟଦ୍ୱୟକୁ 'ପ୍ରଣୟିନୀ' ଓ 'ଦାସନାଏକ' ନାମରେ ଅନୁବାଦ କରି ନୀଳକଣ୍ଠ ଓଡ଼ିଆ ପାଠକମାନଙ୍କ ପାଖରେ ଗୋଟିଏ ନୂତନ ଆଦର୍ଶ ପ୍ରତିଷ୍ଠା କଲେ । ଇତିହାସ ଓ କିମ୍ବଦନ୍ତୀକୁ ନେଇ ସେ ରଚନା କଲେ 'କୋଣାର୍କେ' ଓ 'ଖାଲବେଳ' ଶୀର୍ଷକ ଦୁଇଟି ମୌଳିକ କାବ୍ୟ । ଡକ୍‌ଟର ନାୟକ ଯେପରି କବି ନୀଳକଣ୍ଠଙ୍କର ପ୍ରଣୟ ଚେତନା, ଭକ୍ତି ଭାବନା, ସଂସ୍କୃତି ଅବବୋଧ, ଇତିହାସ ପ୍ରୀତି, ସୌନ୍ଦର୍ଯ୍ୟ ଦୃଷ୍ଟି, ସ୍ୱଦେଶାନୁରାଗ ଇତ୍ୟାଦି ସଂପର୍କରେ ବିଚାର ବିମର୍ଶ କରିଛନ୍ତି ତାହା ତାତ୍ପର୍ଯ୍ୟପୂର୍ଣ୍ଣ । ଅଧିକନ୍ତୁ, ନୀଳକଣ୍ଠଙ୍କ କାବ୍ୟ-ଗଠନ-ରୀତି, ଭାଷା ବିନ୍ୟାସ, ବିମ୍ବବିଧାନ ମଧ୍ୟ ତାଙ୍କ ଆଲୋଚନାରେ ସ୍ପଷ୍ଟ ହୋଇଉଠିଛି । ଇତିହାସ ଭିତରେ ନୀଳକଣ୍ଠ ସତେ ଯେପରି ସଶରୀର ଏକ ଆତ୍ମା ଭାବରେ ପ୍ରକାଶ ପାଇଛନ୍ତି । ସେହି ଇତିହାସ ଭିତର ଦେଇ ସେ ଆପଣାକୁ ଓ ଆପଣା ଜାତିର ସତ୍ତାକୁ ଖୋଜି ବଂଚେଇ ନେବାର ଅତୁଟ ଆଗ୍ରହ ରଖିଥିଲେ । ଡକ୍‌ଟର ନାୟକ କୋଣାର୍କ କାବ୍ୟର ପଙ୍‌କ୍ତି ଉଦ୍ଧାର କରି କହନ୍ତି - x x ଜାତୀୟ ଅଖଣ୍ଡତା ସାର୍ବଭୌମ ସୁରକ୍ଷା ପାଇଁ କବି ମନ ବ୍ୟଗ୍ର । 'x x ସୁତରାଂ କବିଙ୍କର କବିତା ଜାତିର ଆତ୍ମା ଅନ୍ୱେଷଣରେ ବ୍ରତୀ ଏବଂ ତାହାର ପରିଚର୍ଯ୍ୟା ପାଇଁ ତାଙ୍କର କବିତା ଲେଖା ।''[୧୩] କ୍ଷେତ୍ରବାସୀଙ୍କ ଜାତୀୟ ମାନସ ଓ ଜାତି-ସଂପ୍ରୀତି ନୀଳକଣ୍ଠଙ୍କ କାବ୍ୟିକ ବୈଶିଷ୍ଟ୍ୟ ଉଦ୍‌ଘାଟନରେ ଯେ ସଫଳ, ଏକଥା କହିଲେ ଅତ୍ୟୁକ୍ତି ହେବ ନାହିଁ ।

**ଅନ୍ୟାନ୍ୟ ସମାଲୋଚନା : କୃତି ଓ କୃତିତ୍ୱ :**

କ୍ଷେତ୍ରବାସୀ ନୀରବ ସାଧକ । ସମାଲୋଚନା ତାଙ୍କର ଏକାନ୍ତ ପ୍ରିୟ । ନାନା ସମାଲୋଚନା ମଧ୍ୟରେ 'ଭାରତୀୟ କାବ୍ୟତତ୍ତ୍ୱ' ଓ ' ଅଳଙ୍କାର ଓ ଅଳଙ୍କାର ତତ୍ତ୍ୱ' ଭିନ୍ନ ସ୍ୱାଦ ପ୍ରଦାନ କରେ । ଭରତ ମୁନି, ଆଚାର୍ଯ୍ୟ ଦଣ୍ଡୀ, ଭାମହ, ବାମନାଚାର୍ଯ୍ୟ, ଆନନ୍ଦବର୍ଦ୍ଧନ, ଭୋଜରାଜ, କ୍ଷେମେନ୍ଦ୍ର, ବିଶ୍ୱନାଥ, କୁନ୍ତକ, କବିରାଜ, ପଣ୍ଡିତ ଜଗନ୍ନାଥ ଆଦି ବହୁ କାବ୍ୟଶାସ୍ତ୍ର ପ୍ରଣେତା ଓ ଅଳଙ୍କାରତତ୍ତ୍ୱବିତ୍‌ଙ୍କ ଗ୍ରନ୍ଥମାନଙ୍କୁ ଅଧ୍ୟୟନ କରି ତାହାର ସାରତତ୍ତ୍ୱ ଗ୍ରହଣପୂର୍ବକ ସେ ରଚନା କରିଛନ୍ତି ଉପରୋକ୍ତ ଦୁଇଟି ଗ୍ରନ୍ଥ । ଏହା ପ୍ରମାଣ କରେ ଯେ, ସେ କେବଳ ସାହିତ୍ୟର ବିମୁଗ୍ଧ ସମୀକ୍ଷକ ନୁହଁନ୍ତି; କାବ୍ୟତତ୍ତ୍ୱ ଓ ଅଳଙ୍କାର ତତ୍ତ୍ୱର ମଧ୍ୟ ଦକ୍ଷ ଆଲୋଚକ । ଶବ୍ଦାର୍ଥବାଦ, ରସ, ଗୁଣ, ଧ୍ୱନି, ବକ୍ରୋକ୍ତି, ଔଚିତ୍ୟ ଆଦି ନାନା ପ୍ରସଙ୍ଗକୁ ସେ ଭାରତୀୟ କାବ୍ୟତତ୍ତ୍ୱରେ ବିଶ୍ଳେଷଣ କରିଅଛନ୍ତି । ସେଥିସହିତ

---

୧୩. ଅତ୍ରୈବ -ପୃ. ୬୩

ପାଶ୍ଚାତ୍ୟ କାବ୍ୟତତ୍ତ୍ୱର ମଧ୍ୟ ତୁଳନାତ୍ମକ ବିଚାର କରି ଆପଣାର ପାଣ୍ଡିତ୍ୟର ପରିଚୟ ଦେଇଛନ୍ତି । କାବ୍ୟରେ ଅଳଙ୍କାରର ପ୍ରୟୋଜନ, ଅଳଙ୍କାରର ବୈଚିତ୍ର୍ୟ ଓ ବିବିଧତାକୁ ମଧ୍ୟ ଆଲୋଚନା କରିଛନ୍ତି ' ଅଳଙ୍କାର ଓ ଅଳଙ୍କାରତତ୍ତ୍ୱ' ଗ୍ରନ୍ଥରେ ।

'ସାହିତ୍ୟିକ ବୀକ୍ଷା ଓ ନିରୀକ୍ଷା', 'ଆଲୋଚନା ପତ୍ର', 'କାବ୍ୟ ପୁରୁଷର କଥା', 'ସାହିତ୍ୟ-ଚର୍ଚ୍ଚା', 'ସାହିତ୍ୟର ସାମାନ୍ୟ କଥନ' ଆଦି ତାଙ୍କର ଉଲ୍ଲେଖଯୋଗ୍ୟ ସମାଲୋଚନା ଗ୍ରନ୍ଥ । ଏସବୁଥିରେ କବି ଓ ଲେଖକଙ୍କ ସହିତ ସାହିତ୍ୟିକ କୃତିର ସମୀକ୍ଷା ରହିଛି । ଗୀତି କବିତାର କଥା, ଗାଥା କବିତା : ଗୀତିକବିତା, ମେଘେର ସାହିତ୍ୟ: ଏକ ସମୀକ୍ଷା, ଏ ସୃଷ୍ଟି ଅମୃତମୟ ହେ, ପ୍ରମୋଦ ଶିଳ୍ପୀ ବ୍ରଜନାଥଙ୍କ ପ୍ରଜ୍ଞା ଓ ପ୍ରତିଭା, କବି ଫକୀରମୋହନ, ସାହିତ୍ୟ ଓ ସଂଗଠନ, ଲଳିତ କବି : କବିସୂର୍ଯ୍ୟ ବଳଦେବ ରଥ, ପ୍ରଣୟ ତାପସ କବି ଓ କବିପ୍ରିୟା, ଆଧୁନିକ କବି ଓ ତାହାର ନୂତନ ପୃଥିବୀ, ଗୀତି କବିତାର ବିକାଶ ଧାରା, ଆଧୁନିକତାର ଦର୍ଶନ, କବି ବାଞ୍ଛାନିଧି, ସାହିତ୍ୟର ଭାଷ୍ୟ, ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟର ଇତିହାସକୁ ୯ଜଣଙ୍କ ଅବଦାନ, କବି ସୂର୍ଯ୍ୟଙ୍କ ଭକ୍ତି କବିତା, ଭଞ୍ଜଙ୍କ କାବ୍ୟ କବିତାରେ ମାନବର ରୂପ, ଗଙ୍ଗାଧର : କବି ଓ ମଣିଷ, ସାଂପ୍ରତିକ ଜୀବନ ଓ ସାହିତ୍ୟ, କବିତା ପାଇଁ ସପ୍ତମ ଦଶକର ଘୋଷଣା, କବିତା ଚର୍ଚ୍ଚାର କଳା, ଭାଷାନ୍ତରର ଭାଷ୍ୟ, ଆଧୁନିକ ଓଡ଼ିଆ କବିତାରେ ବ୍ୟକ୍ତି-ବିଶ୍ୱ ଓ ବହିର୍ବିଶ୍ୱର ଅଭିବ୍ୟକ୍ତି, କବି ଉପେନ୍ଦ୍ର ପ୍ରସାଦ, ଓଡ଼ିଆ ସାହିତ୍ୟ ଓ ସଂଗଠନ, କାବ୍ୟ ପୁରୁଷର କଥା, କବିତା କାହିଁକି, ପ୍ରାଚୀନ କବିଙ୍କ କାବ୍ୟତତ୍ତ୍ୱ, ଜୀବନ ସତ୍ୟ ଓ କାବ୍ୟ ସତ୍ୟ, କାବ୍ୟ ପ୍ରୟୋଜନ ଓ ନୂତନ ତତ୍ତ୍ୱର କଥା, କବି-ଭକ୍ତି : ବକ୍ରୋକ୍ତି, କାବ୍ୟ ବିମ୍ବ ପ୍ରସଙ୍ଗ ଓ କବି ସାରଳା ଦାସ, ଆଧୁନିକତା ଓ ଆଧୁନିକ କବିତାତତ୍ତ୍ୱ, ଫକୀରମୋହନଙ୍କ ସାରସ୍ୱତ ଦୃଷ୍ଟି, ଲେଖକର ସ୍ୱର୍ଗ ଓ ମର୍ତ୍ତ୍ୟ, ପ୍ରେମ : ଏକ ଚେତନା, ସାହିତ୍ୟ ଓ ଆମ ସାହିତ୍ୟ, ଆଧୁନିକତା ଓ ଓଡ଼ିଆ ସାହିତ୍ୟ, ସଂପାଦନା ପ୍ରସଙ୍ଗ, ଗବେଷଣାର ସରହଦ ଓ ବିଷୟ ପରିକଳ୍ପନା ଆଦି ନାନା ଲେଖାରେ ତାଙ୍କର ବିଭିନ୍ନ ସମାଲୋଚନା - ପୁସ୍ତକ ରହିଛି । ଏସବୁ ଲେଖାରୁ କ୍ଷେତ୍ରବାସୀଙ୍କ ପାଣ୍ଡିତ୍ୟ, ବିଦ୍‌ବତ୍ତା, ଅନୁସନ୍ଧିତ୍ସା, ସୌନ୍ଦର୍ଯ୍ୟବୋଧ ଓ ମାନବିକତାବୋଧକୁ ଉପଲବ୍ଧ କରିହୁଏ ।

ବିଭିନ୍ନ ସେମିନାର ଓ ସାହିତ୍ୟିକ ଅନୁଷ୍ଠାନରେ ସେ ଅନେକ ଲିଖିତ ଅଭିଭାଷଣ ଦେଇଛନ୍ତି । ସେଥିମଧ୍ୟରୁ କେତୋଟି 'ଆଲୋଚନା ପତ୍ର' ରେ ସଂକଳିତ । ଲେଖକ କହନ୍ତି - 'ସାହିତ୍ୟ ଚର୍ଚ୍ଚା ଲାଗି ଆହୂତ ଅଧିବେଶନ ଓ ସେମିନାରମାନଙ୍କରେ ଉପସ୍ଥାପିତ ପ୍ରବନ୍ଧ ଓ ଅଭିଭାଷଣଗୁଡ଼ିକ ଏଥିରେ ସଂକଳିତ ହୋଇଛି । ମୁଁ ଆଶ୍ୱସ୍ତ ଯେ ସାହିତ୍ୟ

ବିଷୟକ କୌଣସି ବକ୍ତବ୍ୟକୁ ହଜେଇ ଦେଇନାହିଁ, ଜାତିର ଦାୟାଦଙ୍କ ପାଇଁ ତାହା ସାଇତି ରଖିଛି । ତାଙ୍କ ଚେତନା ବୃଦ୍ଧି ଲାଗି ଏହା କିଛି ଖୋରାକ ଯୋଗାଇବ କି ନା ତାହା ସେମାନଙ୍କୁ ଜଣା । କାରଣ ସାହିତ୍ୟ-ଚର୍ଚ୍ଚାର ଫଳାଫଳ ତତ୍‌କ୍ଷଣାତ୍ ଧରାପଡ଼େ ନାହିଁ, ଭଲ ମନ୍ଦ ଧାରଣା ଆସେ ପରେ । ସଭା କକ୍ଷର କଳରୋଳ ବା କରତାଳିର ଧ୍ୱନି-ପ୍ରତିଧ୍ୱନି ଭିତରେ ସାହିତ୍ୟର ମୂଲ୍ୟ ଉପଲବ୍ଧ ହୁଏ ନାହିଁ, ହୁଏ ଏକାନ୍ତ ଅଭିନିବେଶ ଅବସରରେ । ଏଥିପାଇଁ ଲୋଡ଼ା ଲିଖିତ / ମୁଦ୍ରିତ ଆଲୋଚନା-ନିବନ୍ଧ ବା ଅଭିଭାଷଣ । ମୁଁ ତାହାହିଁ କରିଛି ।'[୧୪] ଏହି ପୁସ୍ତକରେ ସଂକଳିତ ପ୍ରାୟ ପ୍ରବନ୍ଧଗୁଡ଼ିକରେ ଲେଖକଙ୍କ ବକ୍ତବ୍ୟ ସ୍ପଷ୍ଟ ଓ ପ୍ରଭାବଶାଳୀ । ଏଥିରେ ପ୍ରାଚୀନ କବି ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ବଳଦେବଙ୍କ ଠାରୁ ଆଧୁନିକ ଯୁଗର କବି ବାଞ୍ଛାନିଧି ମହାନ୍ତି, ଗଙ୍ଗାଧର ମେହେର, ଉପେନ୍ଦ୍ର ପ୍ରସାଦ ମହାନ୍ତିଙ୍କ ପର୍ଯ୍ୟନ୍ତ ନାନା କବିଙ୍କ ସଂପର୍କରେ ଯେପରି ସୁଚିନ୍ତିତ ମନ୍ତବ୍ୟ ରହିଛି ସେହିପରି ଆଧୁନିକତାର ଦର୍ଶନ, ଆଧୁନିକ ଓଡ଼ିଆ କବିତାରେ ବ୍ୟକ୍ତି-ବିଶ୍ୱ ଓ ବହିର୍ବିଶ୍ୱର ଅଭିବ୍ୟକ୍ତି, ସାହିତ୍ୟ ସଂଗଠନ ଇତ୍ୟାଦି ସଂପର୍କରେ ମଧ ଅଛି ସୁଷ୍ଠୁ ଆଲୋଚନା । 'ଓଡ଼ିଆ ସାହିତ୍ୟ ସଂଗଠନ' ପ୍ରବନ୍ଧରେ ସେ କହନ୍ତି – 'ଆତ୍ମନିରୀକ୍ଷା ହିଁ ଆମକୁ ଭବିଷ୍ୟତ ପାଇଁ ଶକ୍ତି ଦେଉ । ଏକ ପକ୍ଷରେ ସହିଷ୍ଣୁତା ଓ ଉଦାର ମୈତ୍ରୀବୋଧ, ଅନ୍ୟ ପକ୍ଷରେ ଅକ୍ଳାନ୍ତ ଅଧବସାୟ ଆମର ସାରସ୍ୱତ ତୀର୍ଥଯାତ୍ରାର ପାଥେୟ ହେଉ । ସାହିତ୍ୟ ସଂଗଠନ ବେଦୀରେ ବ୍ୟକ୍ତିଗତ ପ୍ରତିଷ୍ଠାକୁ ଭୁଲି ଜାତିର ଆତ୍ମପ୍ରତିଷ୍ଠା ଲାଗି ପ୍ରଣୋତ୍ସର୍ଗ କରିପାରିଲେ ହିଁ ଜୀବନ ସାର୍ଥକ ହେବ, କାରଣ କୌଣସି ଦେଶ ବା ଜାତିର ବଡ଼ପଣିଆ ତାହାର ଭାଷା ଓ ସାହିତ୍ୟର ଉଚ୍ଚ ବିଭବ ଉପରେ ନିର୍ଭର କରେ, ଆମେ ସେପରି ଗୌରବର ଅଧିକାରୀ ହେବା ଲାଗି ପ୍ରସ୍ତୁତ ହେବା ନାହିଁକି ?'[୧୫] ଏଥିରୁ ଡକ୍‌ଟର ନାୟକଙ୍କର ସ୍ୱମାତୃଭାଷା ଓ ସାହିତ୍ୟ ପ୍ରତି ମମତ୍ୱବୋଧ କେତେ ତାହା ଜଣାଯାଇଥାଏ । ଓଡ଼ିଆ ସାହିତ୍ୟକୁ ଗଭୀର ଭାବରେ ଭଲ ପାଉଥିବାରୁ ଓ ସାହିତ୍ୟ ମାଧମରେ ଜାତିର ଆତ୍ମପରିଚୟ ଓ ଆତ୍ମବିସ୍ତାର ସମ୍ଭବ ହେବା ଅନୁଭବ କରୁଥିବାରୁ ସେ ବ୍ୟକ୍ତିଗତ ପ୍ରତିଷ୍ଠା ପରିବର୍ତ୍ତେ ଜାତିର ପ୍ରତିଷ୍ଠାକୁ ଗୁରୁତ୍ୱ ଦେଇଛନ୍ତି । ତାଙ୍କର ସାହିତ୍ୟ-ସାଧନା ଜାତୀୟ ଅଙ୍ଗୀକାରବଦ୍ଧତାର ସାଧନା । କବିତାର ଲକ୍ଷ୍ୟ କ'ଣ, କାବ୍ୟପୁରୁଷର ବକ୍ତବ୍ୟ କ'ଣ, ଜୀବନ-ସତ୍ୟ ସହିତ କାବ୍ୟ-ସତ୍ୟର ସମ୍ବନ୍ଧ କ'ଣ, କାବ୍ୟର ଉଦ୍ଦେଶ୍ୟ କ'ଣ ଇତ୍ୟାଦି

---

୧୪. ଆଲୋଚନା ପତ୍ର – ସାଥୀ ମହଲ, ବିନୋଦ ବିହାରୀ, କଟକ-୨ (୧୯୭୯) ମୁଖବନ୍ଧ

୧୫. ଆଲୋଚନା ପତ୍ର – ଓଡ଼ିଆ ସାହିତ୍ୟ ଓ ସଂଗଠନ, ପୃ୧୫୯

ବିଷୟରେ ଡକ୍‌ଟର ନାୟକ ତାଙ୍କର କାବ୍ୟତତ୍ତ୍ୱମୂଳକ ପ୍ରବନ୍ଧଗୁଡ଼ିକରେ ସ୍ପଷ୍ଟ କରିଦେଇଛନ୍ତି ।

ଆଧୁନିକ ଓଡ଼ିଆ ସମାଲୋଚନା - ସାହିତ୍ୟରେ ଡକ୍‌ଟର କ୍ଷେତ୍ରବାସୀ ନାୟକ ଜଣେ ପ୍ରତିଷ୍ଠିତ ବ୍ୟକ୍ତି । ସ୍ୱକୀୟ ସାଧନା ବଳରେ ସେ ନିଜକୁ ଦୀପ୍ତିମାନ କରିଛନ୍ତି । ସାହିତ୍ୟକୁ କୌଣସି ସୀମିତ କାଳଖଣ୍ଡ 'ମଧ୍ୟରେ ଧରି ରଖିବାକୁ ସେ ଚାହିଁ ନାହାନ୍ତି । ପ୍ରାଚୀନ ଓଡ଼ିଆ ସାହିତ୍ୟଠାରୁ ଆରମ୍ଭ କରି ଆଧୁନିକ ଓଡ଼ିଆ ସାହିତ୍ୟ ପର୍ଯ୍ୟନ୍ତ ତାଙ୍କର ପଠନର ବ୍ୟାପ୍ତି । ସବୁ ଯୁଗର କବି ଓ କବିତା ତାଙ୍କର ପ୍ରିୟ । ସକଳ ପ୍ରତି ସେ ଆପଣା ହୃଦୟର ଶ୍ରଦ୍ଧା-ଅର୍ଘ୍ୟ ପ୍ରଦାନ କରିଛନ୍ତି । ତାଙ୍କ ଭିତରେ ସୃଷ୍ଟି ହୋଇଛି ନିଜର ଭାଷା ଓ ସାହିତ୍ୟକୁ ନେଇ ପ୍ରଚଣ୍ଡ ସ୍ୱାଭିମାନବୋଧ । ସେହି ସ୍ୱାଭିମାନବୋଧର ଯଥାର୍ଥ ଅଭିବ୍ୟକ୍ତି ତାଙ୍କର ସମାଲୋଚନା । ଓଡ଼ିଆ ସାହିତ୍ୟରେ ତାହା ଅକ୍ଷୟ ସାରସ୍ୱତ କୀର୍ତ୍ତି ହୋଇ ରହିବ ।



# ସରସ୍ୱତୀ କ୍ଷେତ୍ରବାସୀ

ପ୍ରଫେସର ଆଦିକନ୍ଦ ସାହୁ

ଏ ମହାବିଶ୍ୱର ପ୍ରତିଟି ଜନପଦ ତ ଜନ୍ମ ମୃତ୍ୟୁର ଗୋଟେ ଗୋଟେ ଆବର୍ତ୍ତ । ଆମେ କାଳ ପ୍ରବାହ ଭିତରେ ସଭିଏଁ ଯେପରି ମରଣମୁଖୀ ଜୀବନ ବଞ୍ଚୁଛନ୍ତି । ଅମର ହେବା ପାଇଁ କଳା ସାଧନା ହିଁ ଏକମାତ୍ର ପନ୍ଥା । କଳା ସାଧନା ଆମକୁ ମୁକ୍ତି ଆଣି ଦିଏ ।

କ୍ଷେତ୍ରବାସୀଙ୍କ ଏହି ସହଜାତ ମୁକ୍ତି କାମନା ତାଙ୍କ ଆଜନ୍ମ ସାରସ୍ୱତକୁ ରୂପାନ୍ତରିତ ହୋଇଯାଇଥିଲା । ସେ ମୂଳରୁ ଥିଲେ ସେମିତି । ବିଦ୍ୟାର୍ଥୀ ଓ ଅନୁରାଗୀ । ଆପଣା ଜୀବନ ସହିତ ସେ କଳାପକ୍ଷକୁ ବେଶ୍ ନିବିଡ଼ ଭାବେ ମିଶାଇ ଦେଇପାରିଥିଲେ ।

ସେ ଥିଲେ ପୁସ୍ତକପ୍ରେମୀ । ତାଙ୍କର ଏ ପ୍ରେମିକତା ତାଙ୍କ ପରିବାରରେ ନୂଆ କୌଳିନ୍ୟ ତିଆରି କରିଛି । ନିପୁଣ ଗୋଟେ ସାରସ୍ୱତ ସଂସ୍କାରର କାରଣ ହୋଇଛି । ସାରସ୍ୱତ ପାଇଁ ତାଙ୍କ ସକଳ ପ୍ରକାର ଆୟୋଜନ ଆଉ ତାଙ୍କ ସାରସ୍ୱତ ସଦିଚ୍ଛା ଦୃଷ୍ଟାନ୍ତସ୍ଥାନୀୟ ଥିଲା । ତାଙ୍କ ଗ୍ରାହକତା ବାରି ହୋଇପଡୁଥିଲା ।

କ୍ଷେତ୍ରବାସୀ ଥିଲେ ପ୍ରଜ୍ଞା ଓ ସୌନ୍ଦର୍ଯ୍ୟର ପ୍ରେମିକ, ଶ୍ରଦ୍ଧାଶୀଳ ଓ ବନ୍ଧୁ ବତ୍ସଳ । ତାଙ୍କ ସମୁନ୍ନତ ସାରସ୍ୱତ ସଂପ୍ରୀତିର ଏ ଏକ ଏକ ଅଂଶ ଥିଲା; ଅତି ଆପେକ୍ଷିକ ଭାବେ ।

ସେ ଥିଲେ ଉଭୟ କବି ଓ ପଣ୍ଡିତ । ଯେମିତି ସୃଜନଶୀଳ ସେମିତି ଶାସ୍ତ୍ରୀୟ ତାଙ୍କର ସାରସ୍ୱତ ଚେତନା । ସେ ଥିଲେ କାବ୍ୟାମୋଦୀ ଜଣେ ଉଚ୍ଚ ଗ୍ରାହକତାସଂପନ୍ନ ପାଠକ । ତାହା ସ୍ପଷ୍ଟତଃ ବାରି ହୋଇପଡୁଥିଲା ତାଙ୍କ ବ୍ୟକ୍ତିତ୍ୱରୁ ।

ପ୍ରାଣର ଗ୍ରାହକତା ଥିଲେ ପ୍ରାଣ ବଢ଼େ, ଚେତନା ବଢ଼େ । କ୍ଷେତ୍ରବାସୀଙ୍କର ଏଥିପ୍ରତି ନିଃସର୍ତ୍ତ ଉନ୍ମୁଖତା ଥିଲା । ସେ ଥିଲେ ପରିଶ୍ରମୀ ଓ ଗବେଷକ । ତାଙ୍କର ଗବେଷଣାତ୍ମକ କୌଣସି ଲେଖା ପ୍ରାୟ କେବଳ ତଥ୍ୟନିଷ୍ଠ ନଥିଲା କିମ୍ବା ସନ ବାର ତାରିଖସର୍ବସ୍ୱ ନଥିଲା । ତାଙ୍କର ପ୍ରାଣ ଓ ପ୍ରବଣତା ସେମିତି ଥିଲା ବୋଲି ତାଙ୍କର ମତ ଓ ମନ୍ତବ୍ୟ ମୁଖ୍ୟତଃ କାବ୍ୟ ପ୍ରସଙ୍ଗକୁ ହିଁ ମୂଳ କରିଛି । ସେ କୌଣସି ପରିସ୍ଥିତିରେ ମୂଳ କାବ୍ୟ ପ୍ରସଙ୍ଗଠାରୁ ଦୂରେଇ ଯାଇନାହାନ୍ତି । ତାଙ୍କର ସମାଲୋଚନା ତେଣୁ ଗୋଟେ ପାରିବେଶିକ ସମାଲୋଚନା (Environmental Criticism) ନଥିଲା । ସୃଷ୍ଟି ବା

ପ୍ରେରଣାର ଉତ୍ସ ଖୋଜିବାକୁ ଯାଇ ସେ ତାଙ୍କ ଚର୍ଚ୍ଚାରେ କେଉଁଠି ଅସମାନୁପାତିକ ହୋଇ ନାହାନ୍ତି । ଏହି ଅନୁପାତବିହୀନତା ଦୋଷରେ ଆମେ ଅନେକ ଆକ୍ରାନ୍ତ । କୋଣାର୍କର ଶିଳାଖଣ୍ଡ ସବୁ କେଉଁ ଖଣିରୁ କିପରି ଆସିଲା ତାହା ନିରୂପଣ କରିବାରେ ଆମେ ଏତେ ମାତି ଯାଉଁ ଯେ କୋଣାର୍କର କଳାରୁ ମିଳୁଥିବା ଗୋଟେ ଶୁଦ୍ଧ ନାନ୍ଦନିକ ବ୍ୟାଖ୍ୟାଠାରୁ ଆମେ ବହୁ ଦୂରରେ ପହଞ୍ଚି ଯାଉଁ । ଆମ ଅନେକଙ୍କର ଏ ଅପଖ୍ୟାତି ଅଛି । କ୍ଷେତ୍ରବାସୀ ତାଙ୍କ ସାହିତ୍ୟ ସମାଲୋଚନାକୁ ଅଧିକ ସୃଜନଶୀଳ କରିପାରିଛନ୍ତି । ଗୋଟେ ନିରୁତା ଶୈଳୀଗତ ଚମତ୍କାରିତା ତାଙ୍କ ଲେଖାମାନଙ୍କରୁ ବାରି ହୋଇପଡ଼ିଥାଏ । ବାରିହୋଇ ପଡ଼ିଥାଏ ତାଙ୍କ ଲେଖାର ଶକ୍ତି ଓ ସୌନ୍ଦର୍ଯ୍ୟ । ତାଙ୍କ ଲେଖା ଅତି ପରିଚ୍ଛନ୍ନ ଶୈଳୀର । ସେଥିରେ ଗତି (Force) ଅଛି । ଅଛି ଭାବ ପରିଚ୍ଛନ୍ନତା (Clarity) ।

କାବ୍ୟ ବିଶ୍ୱାସ ଯାହା ପ୍ରାଣରେ ଯେତେ ଅନ୍ତରଙ୍ଗ ଓ ଦୃଢ଼ ହେବ ତା'ର ପ୍ରକାଶମାନତା ସେହିପରି ବଳଶାଳୀ ହେବ । ତାହା ସମଧର୍ମୀମାନଙ୍କୁ ଭାରି ଛୁଇଁବ । ମୁଁ କ୍ଷେତ୍ରବାସୀଙ୍କ ଲେଖାସବୁ ଯେତେବେଳେ ଯେଉଁଠି ପଢୁଥିଲି ଅଶେଷ ଆନନ୍ଦ ଅନୁଭବ କରୁଥିଲି । କାରଣ ସାର୍ବଜନୀନ ଓ ସାର୍ବକାଳୀନ ବିଚାରସବୁକୁ ସେ ଆପଣାର କାବ୍ୟ ବିଶ୍ୱାସ କରିପାରିଛନ୍ତି; ଯାହାର ବିପରୀତ ନିର୍ଣ୍ଣୟସବୁ ଅତ୍ୟନ୍ତ ଦୁର୍ବଳ ଓ ବରଂ ଖଣ୍ଡିତ । ମୁଁ ତ କହିବି କ୍ଷେତ୍ରବାସୀଙ୍କ ମାନସିକତା ସେମିତି ଥିଲା; ଯାହା ଏକ ଅନୁରାଗମୟ ଗ୍ରହଣଶୀଳତା ଦ୍ୱାରା ପରିପୁଷ୍ଟ ହୋଇଥିଲା । ତାଙ୍କ ସାହିତ୍ୟ ସମାଲୋଚନାକୁ ଆମେ ଅଧିକରୁ ଅଧିକ ସାହିତ୍ୟିକ ପ୍ରଶଂସାଉକ୍ତି (Literary Appreciation) ବୋଲି କହିପାରିବା ।

ସାହିତ୍ୟ ତାଙ୍କୁ ପୁଲକିତ କରେ । ସାହିତ୍ୟ ତାଙ୍କ ମନ ଓ ଚେତନାକୁ ବିଭୋର କରିଦିଏ । ଏମିତି ଗୋଟେ ବିଭୋର ପଣିଆର ମଣିଷ ସେ ଥିଲେ । ତାଙ୍କ ଜୀବନରେ କଳାପକ୍ଷଟି ଭାରି ଉଜ୍ଜ୍ୱଳ ଥିଲା । ତାଙ୍କ ଜୀବନର ଅଧିକାଂଶ ସ୍ୱପ୍ନ ଥିଲା ସାରସ୍ୱତ ଅଭିବୃଦ୍ଧି । ସେ ବିଶ୍ୱାସ କରୁଥିଲେ ଯେ, ସାହିତ୍ୟ ହିଁ ତାଙ୍କ ଜୀବନକୁ ଶ୍ରୀମନ୍ତ କରିବ । ଗୋଟେ ସଫଳ ଜୀବନ ବଞ୍ଚିବା ପାଇଁ ସେ ସାହିତ୍ୟ ସେବାକୁ ବ୍ରତ କରିଥିଲେ । ସେ ଜୀବନର ବେଶ୍ କିଛିକାଳ ସ୍ୱେହି ଭାବରେ ବଞ୍ଚିଥିଲେ; ଗୋଟେ ତଲ୍ଲୀନ ଅଙ୍ଗୀକାରବଦ୍ଧତା ଭିତରେ ।

ସେ ତ ନିଜେ ସାହିତ୍ୟ ଲେଖୁଥିଲେ ଆଉ ପଢୁଥିଲେ । ତାହା ବାହାରେ ସେ ବିଭାଗବିହୀନ ଭାବେ ସାହିତ୍ୟ ସଙ୍ଗଠନରେ ନିଜକୁ ନିୟୋଜିତ କରିଥିଲେ । ଏହାଥିଲା ତାଙ୍କ ଜୀବନର ଏକାନ୍ତ ଉଲ୍ଲେଖଯୋଗ୍ୟ କାର୍ଯ୍ୟକ୍ରମ । ଓଡ଼ିଆ ଗବେଷଣା ପରିଷଦ ତାଙ୍କର ଗଠନ ଥିଲା ଆମ ପ୍ରଦେଶର ସାହିତ୍ୟ ଇତିହାସର ଏକ ଗୁରୁତ୍ୱପୂର୍ଣ୍ଣ ସମ୍ବାଦ ।

ସେ ଅକାଳରେ ମୃତ୍ୟୁ କବଳିତ ହୋଇଗଲେ ସତ, ହେଲେ ତାଙ୍କ ସାରସ୍ୱତ ଜୀବନ ଥିଲା ଏକ ବର୍ଣ୍ଣାଢ୍ୟ ଆରମ୍ଭ; ଯାହା ଅନେକଙ୍କୁ ଅନୁପ୍ରେରିତ କରିଛି । ଅନେକ ତାଙ୍କୁ ପ୍ରେରଣା ଓ ଉତ୍ସାହ ଦାନର ଉତ୍ସ ବୋଲି ମନେକରିଛନ୍ତି ।

କ୍ଷେତ୍ରବାସୀ ଆଦୌ ପ୍ରଶଂସା କୃପଣ ନଥିଲେ । ପ୍ରତିଶ୍ରୁତିପୂର୍ଣ୍ଣ ତରୁଣମାନଙ୍କୁ ସେ ଶତଜିହ୍ୱ ହୋଇ ପ୍ରଶଂସା କରୁଥିଲେ । ସମସ୍ତଙ୍କୁ ବିଶେଷତଃ ସତୀର୍ଥମାନଙ୍କୁ ସେ ପ୍ରଶଂସକ ଓ ସଶ୍ରଦ୍ଧ ଦୃଷ୍ଟିରେ ଦେଖୁଥିଲେ । ଜ୍ୟେଷ୍ଠ ହେବାର ବୁନିଆଦି ତାଙ୍କର ଥିଲା । ସତ ଉଦ୍ୟମ ପ୍ରତି ତାଙ୍କ ଆତ୍ମାର ଅକୁଣ୍ଠ ସମର୍ଥନ ଥିଲା ।

ଅଧ୍ୟୟନ ଅଧ୍ୟାପନାରେ ସେ ଅତ୍ୟନ୍ତ ସକ୍ରିୟ ଥିଲେ । ତାଙ୍କ ବ୍ୟକ୍ତିତ୍ୱର ଏହା ଥିଲା ଗୋଟେ ବଡ଼ ଗୁଣ । ବିସ୍ତୀର୍ଣ୍ଣ ପରିଧିରୁ ଯଥାସମ୍ଭବ ବିଶ୍ୱଦୃଷ୍ଟି ଦେଇ ସାହିତ୍ୟ ପଢ଼ିବା ଥିଲା ତାଙ୍କର ଲକ୍ଷ୍ୟ । ଆମ ପ୍ରାଦେଶିକ ଓଡ଼ିଆ ସାହିତ୍ୟ ବିଶେଷତଃ ଓଡ଼ିଆ କବିତା ଉପରେ ଯେଉଁ ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ପଡ଼ିଛି ତା'କୁ ଚିହ୍ନଟ କରିବା କ୍ଷେତ୍ରରେ ତାଙ୍କ ଉଦ୍ୟମ ଅତୁଳନୀୟ । ସାଧମତେ ସେ ଏ ବିଷୟଟିକୁ ନ୍ୟାୟ ଦେଇପାରିଛନ୍ତି ।

ଓଡ଼ିଶାର ବର୍ଷିୟାନ ସାହିତ୍ୟିକ ଡକ୍ଟର କୃଷ୍ଣ ଚରଣ ବେହେରାଙ୍କ ସହିତ ସ୍ୱର୍ଗତ ଡକ୍ଟର କ୍ଷେତ୍ରବାସୀ ନାୟକଙ୍କ ସନିର୍ବନ୍ଧ ପ୍ରତିବଦ୍ଧତା ଆମ ସାହିତ୍ୟର ପରିଚର୍ଯ୍ୟା ପରମ୍ପରାରେ ଏକ ମାଇଲ ସ୍ତମ୍ଭ; ଯେଉଁ ସଂଯୋଗ ବିଷୟରେ ଅନେକ ପରିଚିତ । ଗୋଟେ ଫଳପ୍ରଦ ସାହିତ୍ୟ ସଂଗଠନ ହୁଏତ ଯୌଥ ବା ସମଷ୍ଟିଗତ ଉଦ୍ୟମର ଅପେକ୍ଷା ରଖେ । ସ୍ୱର୍ଗତ ନାୟକ କ୍ଷୁଦ୍ର ବୃହତ୍ ବହୁ ଅନୁଷ୍ଠାନ ସହିତ ସଂଶ୍ଳିଷ୍ଟ ଥିଲେ । ସେ ଜଣେ ଅତ୍ୟନ୍ତ ବନ୍ଧୁପ୍ରେମୀ, ଛାତ୍ରବତ୍ସଳ ଅଧ୍ୟାପକ ରୂପେ ଆଜି ଅନେକଙ୍କ ହୃଦୟରେ ସ୍ମରଣୀୟ ହୋଇ ରହିଛନ୍ତି ।

ଉତ୍କର୍ଷ ଥିଲା ତାଙ୍କର ଧ୍ୟେୟ । ସେହି ସିଦ୍ଧିର ଅଧିକାରୀ ହେବା ପାଇଁ ତାଙ୍କର ଉନ୍ମୁଖତା ଥିଲା । ତାଙ୍କର ଅନେକ ସାରସ୍ୱତ ସ୍ୱପ୍ନ ଥିଲା । ଥିଲା ଅନେକ ଯୋଜନା । ଗୋଟେ ନିମ୍ନ ମଧ୍ୟବିତ୍ତ ପରିବାରର କୌଳିନ୍ୟ ଓ ଏକାନ୍ତ ଅଭାବଗ୍ରସ୍ତ ଅର୍ଥନୀତି ଭିତରେ ସେ ଜୀବନ ଆରମ୍ଭ କରିଥିଲେ ହେଁ ସେ ଥିଲେ ସ୍ୱଭାବତଃ ଉଚ୍ଚାଭିଳାଷୀ । ସେ ନିଜେ ଉଚ୍ଚତର ସାହିତ୍ୟ ରଚନାରେ ବ୍ରତୀ ଥିଲେ, ଉଚ୍ଚାଙ୍ଗ ସାହିତ୍ୟ ପ୍ରତି ବି ତାଙ୍କର ଗ୍ରାହକତା ଥିଲା । ସେହି ପରିପ୍ରେକ୍ଷୀରେ ତାଙ୍କ ସାହିତ୍ୟିକ ଦୃଷ୍ଟିଭଙ୍ଗୀ ଉଚ୍ଚମାନର ଥିଲା । ବିଶ୍ୱ ସାହିତ୍ୟ ପ୍ରତି ତାଙ୍କର କିଛି ଉନ୍ମୁଖତା ଥିଲା । ଯେ କୌଣସି ଜଣେ ସାହିତ୍ୟ ଛାତ୍ରଙ୍କ ନିକଟରେ ଏତକ ଗୁଣ ରହିବା ନିହାତି ଆବଶ୍ୟକ ।

ସେ ତାଙ୍କ ଚର୍ଚ୍ଚାନିବନ୍ଧ 'ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ'ର ଉପକ୍ରମଣିକାରେ ଲେଖିଛନ୍ତି, 'ମଣିଷର ସତର୍କ ଓ ଅନୁସନ୍ଧିତ୍ସୁ ମନ ସାଧାରଣତଃ ଆପଣା

ଦେଶର ବେଢ଼ା ଡେଇଁ ଭିନ୍ନ ଦେଶର ମନ ସହିତ ସଂପର୍କ ସ୍ଥାପନ କରିବା ପାଇଁ ଆଗ୍ରହୀ ହୋଇଥାଏ । ମନୋରାଜ୍ୟ ବା ଭାବ ଜଗତରେ ଭିନ୍ନ ଭିନ୍ନ ଜାତିର ପରସ୍ପର ସହିତ ସଂପର୍କ ସ୍ଥାପନ ତଥା ଆଦାନ-ପ୍ରଦାନ ସାଂସ୍କୃତିକ ସମୃଦ୍ଧିର ପରିଚାୟକ ।

ପ୍ରତ୍ୟେକ ଦେଶର ସାରସ୍ୱତ ଇତିହାସରେ ଏହି ପ୍ରକ୍ରିୟାର ପରିଣାମରୁ ପରିବର୍ତ୍ତନ ଘଟିଥିବା ଲକ୍ଷ୍ୟ କରାଯାଏ । ଏପରି ପରିବର୍ତ୍ତନ ସାହିତ୍ୟ ପକ୍ଷରେ ପ୍ରାୟ ସବୁ ସମୟରେ ଲାଭଜନକ ହୋଇଥାଏ । ଆମର ସାରସ୍ୱତ ଇତିହାସରେ ଅନୁରୂପ ଘଟଣା ଘଟିଛି । ବହୁକାଳ ହେଲା ଆମେ ପାଶ୍ଚାତ୍ୟ ସହିତ ଇଂରାଜୀ ଭାଷା ଓ ଶିକ୍ଷା ମାଧ୍ୟମରେ ସମ୍ବନ୍ଧାନ୍ୱିତ ହୋଇଛୁ । ଏହା ଫଳରେ ଆମ ସାରସ୍ୱତ ଦିଗନ୍ତ କିପରି ନବ ନବ ରୂପ ରାଗରେ ମଣ୍ଡିତ ହୋଇଛି ତାହା ବୁଝିବା ଆବଶ୍ୟକ ।

ତାଙ୍କର 'ସାହିତ୍ୟର ସାମାନ୍ୟକଥନ' ଶୀର୍ଷକ ସାହିତ୍ୟ ସମାଲୋଚନାମୂଳକ ଗ୍ରନ୍ଥଟିରେ ତାଙ୍କ ବିଶ୍ୱ ସାହିତ୍ୟବୋଧ ନାନା ଭାବରେ ପ୍ରତୀକିତ ହୋଇଛି ।

ଏହି ବିଶ୍ୱ ସାହିତ୍ୟ ପ୍ରତି ଉନ୍ମୁଖତା ତଥା ବିଶ୍ୱଦୃଷ୍ଟି (World View) ହିଁ ଜଣେ ସ୍ରଷ୍ଟା ପ୍ରାଣର ବଡ଼ ଐଶ୍ୱର୍ଯ୍ୟ । ସ୍ୱର୍ଗତ ନାୟକ ଥିଲେ, କ୍ରମଶଃ ଏ ବ୍ରହ୍ମାଣ୍ଡର ସାହିତ୍ୟକୁ ଆପଣେଇ ନେବାର ଜଣେ ଅନୁରାଗୀ ମଣିଷ । ସେ ମୁହୂର୍ତ୍ତକର କିଛି ଗୋଟେ ଭାବଲାଭ ପାଇଁ ବହି ବାଛୁଥିଲେ । ଚିରକାଳର ବହିଗୁଡ଼ିକ ପ୍ରତି ତାଙ୍କର ଅଭିରୁଚି ଥିଲା । ତାଙ୍କ ସମାଲୋଚନାରେ ତା'ର ପ୍ରତିଫଳନ ଅଛି । ସେ ଯେଉଁସବୁ ନିର୍ଣ୍ଣୟ ନେଇଛନ୍ତି ତାହା କେଉଁଠି ଆଞ୍ଚଳିକ ବିଶ୍ୱାସ ବା ବିଚାର ଦ୍ୱାରା ସଂକୁଚିତ ହୋଇଯାଇନି ବରଂ ସେ ଚିରକାଳର ଚେତନାକୁ ଆପଣାର ବିଶ୍ୱାସ, ଆପଣାର ସାହିତ୍ୟାଦର୍ଶ କରିପାରିଛନ୍ତି ।

ତାଙ୍କ ନିକଟରେ ଲକ୍ଷ୍ୟ କରିହୁଏ ତାଙ୍କ ସାହିତ୍ୟ ପ୍ରୀତିର ପ୍ରଚଣ୍ଡ ଆବେଗକୁ ଯାହାକୁ ଯୁକ୍ତି ଦେଇ ହୁଏତ ବୁଝେଇ ହେବନି । ଉଚ୍ଚତର ସୌନ୍ଦର୍ଯ୍ୟାନୁଭୂତି ଆଦୌ ଯୁକ୍ତି ନିର୍ଭର ବିଷୟ ନୁହେଁ । ତାହା ଜଣକୁ ସେହି ଭାବରେ ସ୍ୱପ୍ନ ଲୋକକୁ ଉତ୍ତୋଳିତ କରାଇନିଏ । ଡକ୍ଟର ନାୟକଙ୍କ ସହିତ କଥାବାର୍ତ୍ତା କଲାବେଳେ ସାହିତ୍ୟକୁ ନେଇ ତାଙ୍କର ବେଶ୍ ଭାବପ୍ରବଣତାକୁ ଲକ୍ଷ୍ୟ କରିହୁଏ । ଏହି ଗୁଣ ପାଇଁ ସେ ଆଜି ସ୍ମରଣୀୟ । ସାହିତ୍ୟକୁ ନେଇ ବିଭୋର ହେବାର ବୁନିଆଦି ଅନେକଙ୍କ ନିକଟରେ ନଥାଏ ପ୍ରାୟ ।

କ୍ଷେତ୍ରବାସୀ ସୁଧୀ ରସିକ ଥିଲେ । ତାଙ୍କର ଏଇ ଗୁଣଟି ମୋତେ ଭାରି ପ୍ରଭାବିତ କରୁଥିଲା । ଜଣେ ଗୁଣଗ୍ରାହୀ ଯେମିତି ଗୁଣର ଗ୍ରାହକତା କରେ କ୍ଷେତ୍ରବାସୀ ସେମିତି ସାହିତ୍ୟ ଜଗତର ବଛାବଛା ଅତି ମୂଲ୍ୟବାନ କଥାକୁ ଧରି ରଖୁଥିଲେ । ତାଙ୍କ ଲେଖା ଆଉ ତାଙ୍କ ଅଧ୍ୟାପନା ଏହାଦ୍ୱାରା ବରଂ ପରିପୁଷ୍ଟ ହୋଇଥିଲା । କନିଷ୍ଠମାନେ ତାଙ୍କର

ଅତି ସ୍ନେହାସ୍ପଦ ଥିଲେ ଆଉ ତାଙ୍କ ସହିତ ଆଳାପ ଆଲୋଚନା କରିବାକୁ ସୁଖ ମଣୁଥିଲେ ।

ତାଙ୍କ ମନ ଓ ଚେତନା ଭିତରେ ଯେଉଁ ଅନ୍ତଃସ୍ରୋତଟି ବରାବର ରହିଥିଲା, ତାହା ହେଉଛି ଜୀବନକୁ ଆନନ୍ଦ ମୁଖର କରିବା ପାଇଁ ଗୋଟେ ଉଲ୍ଲସିତ ପ୍ରବଣତା; ଆତ୍ମ ବିକାଶ ସହିତ ଯାହା ସହଗାମୀ । ସେଇଥିରୁ ତାଙ୍କୁ ବେଶୀ ବୁଝହୁଏ ।

ସେ ଥିଲେ ଉଲ୍ଲେଖଯୋଗ୍ୟ ଭାବେ ପୁସ୍ତକପ୍ରେମୀ । ଭଲ ଭଲ ବହିସବୁ ଆଣି ଆପଣାର ସଂପତ୍ତି କରିବାରେ ତାଙ୍କର ବହୁତ ସଉକ ଥିଲା । ବହିକୁ ସେ ସର୍ବୋତ୍ତମ ସଂପତ୍ତି କରିଯିବା କାରଣରୁ ସେ ମନ ଓ ହୃଦୟରେ ବଢ଼ିଥିଲେ । ଗୋଟେ ଉଚ୍ଚତର ବୌଦ୍ଧିକ ଜୀବନ ବଞ୍ଚିବା ପାଇଁ ସେ ଅନୁପ୍ରେରିତ ହୋଇଥିଲେ । ପାଦେ ପାଦେ ଆଗକୁ ଯିବା ପାଇଁ ତାଙ୍କର ଉଦ୍ୟମ ଅବ୍ୟାହତ ଥିଲା । ସେ ଜାତିରେ ବ୍ରାହ୍ମଣ ନଥିଲେ ସତ ହେଲେ ପ୍ରାଣରେ ଦ୍ୱିଜତ୍ୱ ଲାଭ କରିଥିଲେ । ଜ୍ଞାନ ଲାଭ କରିବା ପାଇଁ ତାଙ୍କର ବ୍ୟାକୁଳତା ଥିଲା ତାଙ୍କ ଜୀବନର ବଡ଼ ସଂସ୍କାର ।

ଜୀବନରେ ଖାଲି ଜିଇଁ ଯିବା ଯଥେଷ୍ଟ ନୁହେଁ । ଆମର ଆକାଂକ୍ଷା ହିଁ ଆମର ପରିଚୟ, ଆମର ବୈଶିଷ୍ଟ୍ୟ । ପାର୍ଥିବ ଜୀବନ ବାହାର ଯେଉଁ ସୂକ୍ଷ୍ମତର ଜୀବନଟିଏ ଅଛି, ତା'କୁ ଜିଇଁବାର ଅଭିଳାଷ ତାଙ୍କର ଥିଲା । ଦରିଦ୍ର ପରିବାରରୁ ସେ ଆସିଥିଲେ ସତ ହେଲେ ବିଦ୍ୟାଧନରେ ସେ ଧନୀ ହୋଇପାରିଥିଲେ ।

କ୍ଷେତ୍ରବାସୀଙ୍କ ସାରସ୍ୱତ ସଂପ୍ରୀତି ଆଜି ଅଭୁଲା ସ୍ମୃତିର ବିଷୟ ହୋଇ ରହିଛି । କାଳ ଯଦି ସହିଥାନ୍ତା ସେ ଆମ ସାହିତ୍ୟର ପ୍ରଚାର ପ୍ରସାର କ୍ଷେତ୍ରରେ ହୁଏତ ଆଜି ଅଗ୍ରଣୀ ଭୂମିକା ନେଇପାରିଥାନ୍ତେ ।

ତାଙ୍କର ସେହି ସାରସ୍ୱତ ସଦିଚ୍ଛା ଆଜି ଆମ ଭିତରେ ପରିବ୍ୟାପ୍ତ ହୋଇପାରିଲେ ତାହା ହିଁ ତାଙ୍କ ପ୍ରତି ସମୁଚ୍ଚ ଶ୍ରଦ୍ଧା ଓ ସମ୍ମାନର ବିଷୟ ହୋଇପାରିବ ।

ଚନ୍ଦ୍ରଲୋକ, ୩୮ ଏଚ୍ ଆଇଜି- କେ ୬,
କଳିଙ୍ଗ ବିହାର, ଭୁବନେଶ୍ୱର-୧୯



# ଡକ୍ଟର କ୍ଷେତ୍ରବାସୀ ନାୟକଙ୍କ ସମାଲୋଚନାର ଧରା ଓ ଧାରା

ଡକ୍ଟର ବାସୁଦେବ ଦାସ

ପ୍ରାଚୀନ ଗ୍ରୀକ୍ ଶବ୍ଦ କ୍ରିଟିଟକ୍ସ (KRITITOKS) ରୁ କ୍ରିଟିସିଜିମ ଶବ୍ଦ ବ୍ୟୁତ୍ପନ୍ନ । ଏହାର ଅର୍ଥ 'able to discern and judge' ଅର୍ଥାତ୍ ଧ୍ୟାନ ସହକାରେ ସୃଷ୍ଟି ବା ସାରସ୍ୱତକୃତିର ମହତ୍ତ୍ୱ ଦେଖିବା ଓ ବିଚାର କରିବା । ଇଂରାଜୀ ସାହିତ୍ୟରେ ଖ୍ରୀ. ୧୬୭୭ ରେ ପ୍ରଥମେ ଡ୍ରାଇଡେନ୍ (Dryden) ତାଙ୍କର 'The state of Innocence,' ପୁସ୍ତକରେ ଏହି କ୍ରିଟିସିଜିମ୍ (Criticism) ଶବ୍ଦଟି ଉଲ୍ଲେଖ କରନ୍ତି । ୧୭୧୧ ଖ୍ରୀଷ୍ଟାବ୍ଦର କ୍ରିଟିସିଜିମ୍ ଶବ୍ଦଟି ପୋପ୍‌ଙ୍କ 'Essay on Criticism' ପୁସ୍ତକରେ ବ୍ୟବହୃତ ହେବା ଫଳରେ ବିଶ୍ୱ ସାହିତ୍ୟରେ ଏହି ଶବ୍ଦର ବହୁଳ ବ୍ୟବହାର ପରିଲକ୍ଷିତ ହେଲା । 'ସମାଲୋଚନା' ଅର୍ଥରେ ସାହିତ୍ୟ ଉକ୍ତ ଶବ୍ଦକୁ ଗୋଟିଏ ବଳିଷ୍ଠ ବିଭାବ ଭାବରେ ଆପଣେଇ ନେଲା । ଭାରତ ତଥା ଓଡ଼ିଆ ସାହିତ୍ୟରେ ସାରସ୍ୱତ ସୃଷ୍ଟିର ଗୁଣାଗୁଣ ବିଚାର ମୂଳକୁ ଆଲୋଚନା ବୋଲି କୁହାଗଲା ।

ଓଡ଼ିଆ ସମାଲୋଚନାର ତୃତୀୟ ପର୍ବରେ ଅର୍ଥାତ୍ ୧୯୭୦ ପରବର୍ତ୍ତୀ କାଳରେ ଆତ୍ମପ୍ରକାଶ କରିଥିବା ସମାଲୋଚକଗଣ - ଚିନ୍ତାମଣି ବେହେରା, ଦାଶରଥି ଦାସ, ନିତ୍ୟାନନ୍ଦ ଶତପଥୀ ଓ କ୍ଷେତ୍ରବାସୀ ନାୟକ ପ୍ରମୁଖ ସମାଲୋଚନାକୁ ଏକ ସର୍ଜନଶୀଳ କଳା ବା Creative Criticism ରୂପେ ଗ୍ରହଣ କରି ଓଡ଼ିଆ ସମାଲୋଚନା ସାହିତ୍ୟକୁ ନୂତନ ଦିଗ୍‌ଦର୍ଶନ ପ୍ରଦାନ କରିଛନ୍ତି । ଏମାନଙ୍କର ଆଲୋଚନାରେ ରହିଛି ଉତ୍ସାହ ଓ ଉଷ୍ମତା । ଯେତେଦୂର ସମ୍ଭବ ପ୍ରାଚ୍ୟ-ପାଶ୍ଚାତ୍ୟ ସାହିତ୍ୟର ସମନ୍ୱୟ ସଂପର୍କ ସ୍ଥାପନ କରିବାରେ ଅନ୍ୟମାନଙ୍କର ଭୂମିକାଠାରୁ ଅଳ୍ପାୟୁ ଡକ୍ଟର କ୍ଷେତ୍ରବାସୀ ନାୟକଙ୍କର ଉଦ୍ୟମ ଓ ସଫଳତା କିଛି କମ୍ ନୁହେଁ । ସେ କେଉଁ ଶ୍ରେଣୀର କେଉଁ ପଦ୍ଧତିର ସମାଲୋଚନା ଗ୍ରହଣ କରିଥିଲେ ତାହା ବିଚାର୍ଯ୍ୟ । ଜଣେ କ୍ରିଟିକ୍ ବିପୁଳ ଅଧ୍ୟୟନ କରି ମୌଳିକ କୃତିର ଭାବ ଓ ରସ ଗ୍ରହଣ କରି ସମାଲୋଚନା କ୍ଷେତ୍ରକୁ ଓହ୍ଲାଇ ଆସେ । ଡକ୍ଟର କ୍ଷେତ୍ରବାସୀ ନାୟକ ଜଣେ ଅଦ୍‌ଭୁତ ପ୍ରତ୍ୟୁତ୍ପନ୍ନମତିର ସ୍ରଷ୍ଟା । ତାଙ୍କର ବହୁ ସୃଷ୍ଟି ଓ ସ୍ରଷ୍ଟାଙ୍କୁ ଭଲ ପାଇବା ଲାଂପଟ୍ୟ ଏହି ଦୃଷ୍ଟିରୁ ଶ୍ଳାଘ୍ୟ । ଫର୍ମ ଓ କଣ୍ଟେଣ୍ଟ ଉପରେ ତାଙ୍କର କଳାତ୍ମକ ବିଚାର ତାଙ୍କୁ ସ୍ୱତନ୍ତ୍ର ଆସନରେ ଅଧିଷ୍ଠିତ କରିଥାଏ । ମାତ୍ର ବାର ପନ୍ଦର ବର୍ଷ ସମୟ

ସୀମାରେ ସାଧନା ନିବନ୍ଧ ଥିଲେ ହେଁ ତାଙ୍କର ଆଲୋଚନାଗୁଡ଼ିକ ଓଡ଼ିଆ ସମାଲୋଚନା ସାହିତ୍ୟରେ ଦୃଷ୍ଟାନ୍ତ ସ୍ୱରୂପ ଗ୍ରହଣୀୟ ଓ ମାର୍ଗଦର୍ଶନରେ ନବ୍ୟ ସମ୍ଭାବନାର ପଥିକୃତ୍ ।

ଡକ୍ଟର କ୍ଷେତ୍ରବାସୀ ନାୟକଙ୍କ ସୃଷ୍ଟି ଭିତରେ ବିପୁଳ ସମ୍ଭାବନା ଲକ୍ଷ୍ୟ କରାଯାଇଥାଏ । ମୌଳିକ ରଚନା ପାଟବ ଛାତ୍ରାବସ୍ଥାରୁ ତାଙ୍କୁ ଶହେରେ ଗୋଟିଏ ପ୍ରମାଣିତ କରିଥିଲା । ସାହିତ୍ୟ, ସଂସ୍କୃତିକୁ ନେଇ ସଂଗଠନ କରିବା କ୍ଷେତ୍ରବାସୀଙ୍କର ସୁଅଭ୍ୟାସ ଭାବେ ପରିଗଣିତ । 'ବିଏ' ପାଠ ପଢ଼ିବା ସମୟରେ 'ପଲ୍ଲୀଭାରତୀ' ଓ ସାହିତ୍ୟ ସମାଜର ପତ୍ରିକା 'ଅର୍ଘ୍ୟ'ରେ ପ୍ରାୟତଃ ଲେଖାଲେଖି କରୁଥିଲେ । 'ଭଦ୍ରକର ଏଇ ପ୍ରତିଶ୍ରୁତିପୂର୍ଣ୍ଣ ଛାତ୍ର ଜୀବନ ପର୍ବରେ ବିଶିଷ୍ଟ କବି ଓ ସମାଲୋଚକ ଅଧ୍ୟାପକ କୃଷ୍ଣଚରଣ ବେହେରାଙ୍କ ସହ ପରିଚୟ ହୋଇଥିଲା କ୍ଷେତ୍ରବାସୀଙ୍କର । ଏହା ତାଙ୍କ ଜୀବନର ମହତ୍ତ୍ୱପୂର୍ଣ୍ଣ ଅଧ୍ୟାୟ । ତା'ପରଠାରୁ ଡକ୍ଟର ବେହେରା ବନିଗଲେ ତାଙ୍କର ଗୁରୁ, ଦିଗ୍‌ଦର୍ଶକ, ବନ୍ଧୁ ଓ ବଡ଼ ଭାଇ । କ୍ଷେତ୍ରବାସୀଙ୍କର ରଚନାଗୁଡ଼ିକୁ ଅଧ୍ୟାପକ ବେହେରା ସଂଶୋଧନ, ବିଶୋଧନ ବା ପରାମର୍ଶ ଛଳରେ ପ୍ରୋତ୍ସାହନ ଦେବାରେ ଅନନ୍ୟ ଭୂମିକା ଗ୍ରହଣ କରିଥିଲେ । ଗୁରୁ ଅନେକ ମିଳନ୍ତି ମାତ୍ର ଉତ୍ତମ ଶିଷ୍ୟଙ୍କ ସଂଖ୍ୟା ବିରଳ । ସୁତରାଂ, ଡକ୍ଟର ବେହେରା ଜଣେ ସୁଛାତ୍ର ପାଇବା ଫଳରେ ନିଜେ ଆହ୍ଲାଦିତ ହେବାସହ ପରଶମଣିତୂଲ୍ୟ କ୍ଷେତ୍ରବାସୀଙ୍କର ଔଜ୍ଜ୍ୱଲ୍ୟ ମଧ୍ୟ ପ୍ରକଟିତ ହେବାକୁ ଲାଗିଲା । ଭଦ୍ରକ କଲେଜରୁ ସ୍ନାତକ ସମାପ୍ତି ପରେ ସେ ଓଡ଼ିଶାର ଆଦି ବିଦ୍ୟାପୀଠ ରେଭେନ୍ସା କଲେଜରେ ଓଡ଼ିଆ ସ୍ନାତକୋତ୍ତର ସୋପାନ ଅଧ୍ୟୟନ କଲେ । ଏଠାରେ ତାଙ୍କ ଜୀବନ ବୃନ୍ତରେ ପ୍ରତିଭାର ଯେଉଁ କଳିକାଟି ଦରବିକଶିତ ଅବସ୍ଥାରେ ଥିଲା, ତାହା ପ୍ରସ୍ଫୁଟିତ ଓ ସୁରଭିତ ହେବାକୁ ଲାଗିଲା । ଇତ୍ୟବସରରେ କ୍ଷେତ୍ରବାସୀଙ୍କ ସମ୍ପାଦନାରେ ଭଦ୍ରକରୁ ୧୯୬୩ ମସିହାରେ ପ୍ରକାଶ ପାଇଥିଲା 'ଶତରୂପା' ସାହିତ୍ୟ ପତ୍ରିକା । ପରବର୍ତ୍ତୀ କାଳରେ ତାଙ୍କ ରଚିତ ମିନିଗଳ୍ପ, କବିତା ଓ ଗଳ୍ପ ପ୍ରଭୃତି ମୌଳିକ କୃତିଗୁଡ଼ିକ ଓଡ଼ିଶାର ସାହିତ୍ୟିକଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ତିରିଶଟି କବିତା ସଂବଳିତ ସଂକଳିତ 'ଉଚ୍ଚାରଣ' ଏବଂ ଷୋହଳଟି ଗଳ୍ପକୁ ନେଇ 'ଫୁଲଉରକବର' ପ୍ରକାଶ ପାଇବା ପରେ କଥାକାର ଓ କବି ଭାବରେ ଚର୍ଚ୍ଚିତ ହେଲେ କ୍ଷେତ୍ରବାସୀ । ଏଣୁ କ୍ଷେତ୍ରବାସୀ ନାୟକଙ୍କୁ କେବଳ ସମାଲୋଚକୀୟ ଶୁଷ୍କ ନୀରସ ଭୂମିରେ ଦେଖୁଥିବା ବିଚାରକ ତାଙ୍କୁ ଉଚିତ ସାରସ୍ୱତ ଶ୍ରଦ୍ଧା ଦେଇପାରିନଥିବା ମନେ ହେଉଛି ।

ସାହିତ୍ୟର ଅନ୍ୟ ଏକ କାର୍ଯ୍ୟ (function) ସଂପ୍ରସାରଣଶୀଳତା । ବିନା ସଂଗଠନରେ ସାହିତ୍ୟ ବେଗବତୀ ହୋଇପାରେ ନାହିଁ । ତେଣୁ ଯୁବଲେଖକ ସମ୍ମେଳନ

କରି ବଲାଙ୍ଗୀରରେ ଚହଲ ସୃଷ୍ଟି କରିବା କ୍ଷେତ୍ରବାସୀଙ୍କର ଏକ ଐତିହାସିକ ବିଜୟ । ସେହିପରି ଅନ୍ୱେଷା ଓ ପରବର୍ତ୍ତୀ ସଂସ୍କାରିତ 'ଓଡ଼ିଆ ଗବେଷଣା ପରିଷଦ' ପରି ସାରସ୍ୱତ ସଂଗଠନର ଜନକ ହେଉଛନ୍ତି ଡକ୍ଟର କ୍ଷେତ୍ରବାସୀ ନାୟକ ।

ଏହି ସାରସ୍ୱତ ତାପସ ୧୯୮୬ ମସିହା ଜାନୁଆରୀ ମାସରେ ପ୍ରିୟ ପୁଣ୍ୟମାଟି ଏବଂ ପ୍ରିୟତମା ପତ୍ନୀ ଲାବଣ୍ୟ ଦେବୀଙ୍କୁ ସମତ୍ୱାନ ତ୍ୟାଗକରି ଏକ ନିର୍ମମ ଅଥଚ ନିରୁଦ୍ଦିଷ୍ଟ ଯାତ୍ରାରେ ବାହାରି ଚାଲିଗଲେ । ଦେଇଗଲେ କିନ୍ତୁ ଓଡ଼ିଆ ସାହିତ୍ୟକୁ କେତେ ଅମୂଲ୍ୟ ସାରସ୍ୱତ ରତ୍ନ । ତାଙ୍କ ସମାଲୋଚନା ସାହିତ୍ୟର ସମ୍ଭାବନା ନେଇ ଡକ୍ଟର ଅସିତ କବି ଯଥାର୍ଥରେ ଲେଖିଛନ୍ତି - ଡକ୍ଟର କ୍ଷେତ୍ରବାସୀ ନାୟକ ଓଡ଼ିଆ ସମାଲୋଚନା ସାହିତ୍ୟରେ ବିପୁଳ ସମ୍ଭାବନାର ପ୍ରତୀକ ରୂପେ ଆବିର୍ଭୂତ ହୋଇଥିଲେ । ତାଙ୍କ ଲେଖନୀରୁ ଯେତେବେଳେ ଅମୃତ ଝରିବା ଆରମ୍ଭ ହୋଇଥିଲା, ଠିକ୍ ସେତିକିବେଳେ ତାଙ୍କ ସମ୍ଭାବନାମୟ ଜୀବନର ଆଚମ୍ବିତ ଅବସାନ ଓଡ଼ିଆ ସମାଲୋଚନା ସାହିତ୍ୟର ଦୁର୍ଭାଗ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ । ନୂଆକିଛି କହିବା ଓ ନୂତନ ରୀତିରେ କହିବା ପାଇଁ ତାଙ୍କର ସଦୁଦ୍ୟମ ନିଶ୍ଚିତଭାବେ ସ୍ମରଣୀୟ ।" (ଓଡ଼ିଆ ସାହିତ୍ୟ ସମାଲୋଚନାର ଇତିହାସ ପୃ-୪୩୯)

ଡକ୍ଟର କ୍ଷେତ୍ରବାସୀ ନାୟକଙ୍କର ମୌଳିକ କୃତି ବ୍ୟତୀତ ଲୋକଲୋଚନକୁ ଏଯାବତ୍ ୧୦ ଖଣ୍ଡ ସମାଲୋଚନାମୂଳକ ପୁସ୍ତକ ଆସିଛି । ତାଙ୍କ ସମାଲୋଚନାକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ -

(୧) ସର୍ଜନାତ୍ମକ ସାହିତ୍ୟତତ୍ତ୍ୱର ଆଲୋଚନା ଯଥା 'ସାହିତ୍ୟର ସାମାନ୍ୟ କଥନ' (୧୯୭୦), 'ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ (୧୯୦୩-୧୯୨୦)', ୧୯୭୭; ଆଲୋଚନାପତ୍ର ୧୯୭୯ ।

(୨) ଜୀବନ ଚରିତଧର୍ମୀ ସମାଲୋଚନା - 'ସାହିତ୍ୟ ଚର୍ଚ୍ଚା' ୮୧, 'କବି ଓ କାମିନୀ ଏବଂ ଅନ୍ୟାନ୍ୟ ପ୍ରବନ୍ଧାବଳୀ' ୧୯୮୨, ନୂତନ ନିରୀକ୍ଷା ଗ୍ରନ୍ଥମାଳା - 'କବି ଅର୍ଜୁନ ଦାସ' ୧୯୮୩, 'କବି ଚରିତ ରାଧାନାଥ' - ୧୯୭୫ ।

ମାତ୍ର ୨୦ ବର୍ଷ ଅଧ୍ୟାପନାଜନିତ ସ୍ୱାଧ୍ୟାୟରୁ ଭାରତୀୟ କାବ୍ୟତତ୍ତ୍ୱ, କାବ୍ୟପୁରୁଷକଥା ଓ ଅଳଙ୍କାରତତ୍ତ୍ୱ ପ୍ରଭୃତି ସମାଲୋଚନାମୂଳକ ଗ୍ରନ୍ଥମାନ ପ୍ରକାଶିତ । ତାଙ୍କ ସ୍ୱପ୍ନକୁ ରାତି ନଥିଲା । ସମାଲୋଚନାକୁ କେତେକ ପଣ୍ଡିତ ମୌଳିକ ସୃଷ୍ଟିର ମର୍ଯ୍ୟାଦା ଦେବାକୁ କୁଣ୍ଠିତ । ମାତ୍ର ମୌଳିକ ଦୃଷ୍ଟିରୁ ଅବଦମିତ ଉତ୍ସ ନଥିଲେ ଜଣେ ଅନ୍ୟ ସୃଷ୍ଟିର ନାନ୍ଦନିକ ଗୁଣ, ଅର୍ଥୀକରଣ, ରସବୋଧ ଓ ପ୍ରତିଭାର ଉତ୍କର୍ଷ ଜାଣିବାକୁ

ସମର୍ଥ ହୁଏ ନାହିଁ । ଏଣୁ ପ୍ରତ୍ୟେକ କ୍ରିଟିକ୍ଙ୍କ ଭିତରେ କବିସତ୍ତା ଥାଏ । ଆଗ କବି ହେଲେ ପରେ ସମାଲୋଚକ ହୁଅନ୍ତି । ଆମ ସମୟରେ ଚିନ୍ତାମଣି ବେହେରା, ଡଃ କୃଷ୍ଣଚରଣ ବେହେରା, ଦାଶରଥି ଦାସ, ନିତ୍ୟାନନ୍ଦ ଶତପଥୀଙ୍କ ଭଳି କ୍ଷେତ୍ରବାସୀ ଥିଲେ ପ୍ରଥମେ କବି, ପରେ ସମାଲୋଚକ । ଡକ୍ଟର ନଟବର ସାମନ୍ତରାୟ ଓ ଚିନ୍ତାମଣି ବେହେରାଙ୍କର ପ୍ରଭାବ କ୍ଷେତ୍ରବାସୀ ନାୟକଙ୍କ ସମାଲୋଚନାରେ ବିଶେଷଭାବେ ପ୍ରତିଫଳିତ । ଥେମାଟିକ୍ ବା ବସ୍ତୁଗତ ସତ୍ୟଠାରୁ ସେମାନେ ଐତିହାସିକ ପଟ୍ଟଭୂମିକୁ ଅଧିକ ଅନ୍ୱେଷଣ କରିଥାନ୍ତି । ଅନ୍ୟ ଏକ ବିଭାବ ପଶ୍ଚାତ୍ୟ ସାହିତ୍ୟ ସହିତ ଓଡ଼ିଆ ସାହିତ୍ୟତତ୍ତ୍ୱର ସମୀକରଣ ଓ ସମାଧାନ କ୍ଷେତ୍ରବାସୀବାବୁଙ୍କ ଆଲୋଚନାକୁ ପୁଷ୍କଳ କରିଅଛି ।

ସାହିତ୍ୟତତ୍ତ୍ୱ ସଂପର୍କରେ ୧୯୭୦ ବେଳକୁ ଜଣେ ଦିଜଣ ଲେଖକଙ୍କର ପୁସ୍ତକ ମାତ୍ର ଦୃଷ୍ଟିକୁ ଆସିଥିଲା । ଏହି ସମୟରେ ପି.ଜି. ଛାତ୍ରମାନେ ସାହିତ୍ୟତତ୍ତ୍ୱ ନେଇ ସଂକଟର ସମ୍ମୁଖୀନ ହେଉଥିଲେ । ଓଡ଼ିଆ ସାହିତ୍ୟର ଏହି ଅଭାବକୁ ଉପଲବ୍ଧି କରି କ୍ଷେତ୍ରବାସୀ ନାୟକ ଏକ ନକ୍ସା ପ୍ରସ୍ତୁତ କରନ୍ତି । 'ସାହିତ୍ୟର ଥିଓରି' ଏକ ବୃହତ୍ ପରିକଳ୍ପନା ଯାହାର କେତେକ ଅଂଶ ବା କାବ୍ୟ ଉଦ୍ଧାର କରିବା ସମୀଚୀନ ମନେ କରେ । 'ପ୍ରକାଶ ପାଇଁ ହୃଦୟ ଜଗତ୍‌ର ବ୍ୟାକୁଳତା ମଧ୍ୟ ଅଛି । ମନ ହୃଦୟର ଚିତ୍ ଶକ୍ତିକୁ ବ୍ୟକ୍ତ କରିବାକୁ ଚାହେଁ । ବିଖ୍ୟାତ ସମାଲୋଚକ ହଡ୍‌ସନ ଯାହାକୁ 'ଜୀବନର ଅଭିବ୍ୟକ୍ତ' କହିଛନ୍ତି । ଜୀବନର 'ନିସର୍ଗସତ୍ତା ହୃଦୟକନ୍ଦରରେ ନିର୍ଲିପ୍ତ ଭାବରେ ସାଇତା । ଦେହର ସଂପର୍କ ପରିଦୃଶ୍ୟମାନ ଜଗତ ସହିତ । ଏହି ଜଗତ, ଅନ୍ତର୍ଜଗତକୁ ନିର୍ବେଦ, ନିଷ୍ପନ୍ଦ କରିପାରେନା । କ୍ଷେତ୍ରବାସୀଙ୍କ ଭାଷାରେ ପଲକେ ପଲକେ ପୁଲକିଉଠେ । ଅତଏବ ପ୍ରକାଶ, ସାହିତ୍ୟର ପ୍ରଥମ ସତ୍ୟ, ଅନ୍ତର ଅବବୋଧକୁ ରୂପାୟଣ କରିବା ହିଁ ପ୍ରକାଶ ବା ଅଭିବ୍ୟକ୍ତି ।

ସାହିତ୍ୟର ସାମାନ୍ୟ କଥନ ସଂପର୍କରେ କ୍ଷେତ୍ରବାସୀଙ୍କ ମତ; ବିଶ୍ୱଗତ ଭାବ ହିଁ ସାହିତ୍ୟର ପରିଚୟ' ଆତ୍ମଗତ ଭାବୋଲ୍ଲାସକୁ ସାହିତ୍ୟ କହିବାର କୌଣସି ସାର୍ଥକତା ନାହିଁ ଏବଂ ସାହିତ୍ୟ ସୃଷ୍ଟି ନିଜର ଆନନ୍ଦ ପାଇଁ ଉଦ୍ଦିଷ୍ଟ ନୁହେଁ । ପ୍ରାଚୀନ ବୈଦିକ ମନ୍ତ୍ରରେ ମଧ୍ୟ ବିଶ୍ୱପ୍ରାଣତା ପ୍ରକାଶ ପାଇଛି । ଏଣୁ ସାର୍ବଜନୀନ ପ୍ରେମ ଓ ହିତକୁ ନେଇ ଯେଉଁ ସାହିତ୍ୟ ସୃଷ୍ଟି ହୁଏ, ତାହା ଯଥାର୍ଥ ଏବଂ କାଳଜୟୀ । ଭାବସହ ଭାବର ହୃଦୟ ସହ ହୃଦୟର, ଆଜି ସହ କାଲିର, ଦୂର ସହ ନିକଟର, ପ୍ରାପ୍ତି ସହ ଦାବିର, ବ୍ୟକ୍ତି ସହ ବିଶ୍ୱର ନିବିଡ଼ ବନ୍ଧନର ସାହିତ୍ୟ ହିଁ କାଳଜୟୀ ସାହିତ୍ୟ ।

ସାହିତ୍ୟର ସାମଗ୍ରୀ ବା ପ୍ରକୃତବସ୍ତୁ ବିଷୟରେ ସେପରି ଚର୍ଚ୍ଚା ପୂର୍ବରୁ ଓଡ଼ିଆ

ପୁସ୍ତକରେ ଅଭାବ ଥିଲା । କ୍ଷେତ୍ରବାସୀ ବାବୁ ନିଜର ଦୃଷ୍ଟିଭଙ୍ଗୀ ଓ ଗଭୀର ଅନ୍ୱେଷା ବଳରେ ଆନନ୍ଦବର୍ଦ୍ଧନଙ୍କ ପରି ଓଡ଼ିଆ ସାହିତ୍ୟରେ ତତ୍ତ୍ୱନିଷ୍ଠ ସଂଜ୍ଞା ଓ ସାମଗ୍ରୀ ସଜାଡ଼ି ଦେଇଛନ୍ତି । ସାହିତ୍ୟର ସାମଗ୍ରୀ ହେଲା ଭାବ । ତାଙ୍କ ମତରେ ସାହିତ୍ୟ ଜ୍ଞାନର କଥା ନୁହେଁ ଭାବର । ଏହି କ୍ରମରେ ତାଙ୍କର ବକ୍ତବ୍ୟ ହେଉଛି - ସହୃଦୟର ହୃଦୟ ହୁଏ କବିର ସ୍ୱୀକୃତି କ୍ଷେତ୍ର । କବିର କବିତା ଓ ତାହାର ଭାବ ପାଇଁ ସହୃଦୟତା ଲୋଡ଼ା । ତେଣୁ 'ରସିକ ଗ୍ରାହକ' ର ଆବଶ୍ୟକତାକୁ ପୂର୍ବଜମାନେ ଲିପିବଦ୍ଧ କରିଛନ୍ତି । ଏହାକୁ ଭିତ୍ତିକରି ସଂଯୋଗ ଓ ସଂପର୍କ ସ୍ଥାପିତ ହୁଏ । 'ଦିଲ୍ ଦେ କରି ଦିଲ୍ ଦେଖୋ' ର ଭାବାଦର୍ଶ ପ୍ରତିଷ୍ଠା ହୁଏ । 'ଜୀବନ ବିନ୍ୟାସ ହିଁ ଏକମାତ୍ର ସତ୍ୟ' କୁ ସାହିତ୍ୟର ଉପାଦାନ ଭାବେ ଗ୍ରହଣ କରାଯାଏ । କାରଣ ସାହିତ୍ୟ କେବେ ବିଚ୍ଛିନ୍ନତାର କଥା କହେ ନାହିଁ । ରବୀନ୍ଦ୍ରନାଥଙ୍କ ଭାଷାରେ 'ଦୂରକେ କରିଲ ନିକଟ ବନ୍ଧୁ ପରକେ କରିଲ ଭାଇ' ଦୃଷ୍ଟାନ୍ତ ଏହି ସତ୍ୟର ନିକଟବର୍ତ୍ତୀ । ତାହାରି ମଧ୍ୟରେ ଝରି ଯାଉଥିବା ମାନବିକ ଆବେଦନର ସୁରଭିତ କୁସୁମସମ - ରୂପ, ରସ, ଗନ୍ଧ, ସ୍ପର୍ଶ ଓ ଶବ୍ଦ ଜଗତର ବିଭିନ୍ନ ଉପାଦାନ; ଯାହାକି ଇଟା, ଗୋଡ଼ି ଭିତରେ ସିମେଣ୍ଟ ଭଳି ଯୋଡ଼ି ଦେଇପାରିବ ମଣିଷର ସ୍ୱକୀୟ ପୃଥିବୀକୁ ।

ସାହିତ୍ୟର ଉଦ୍ଦେଶ୍ୟ ପ୍ରତ୍ୟେକ ସାହିତ୍ୟକାର ଜାଣିବାର ଅଛି । ଡକ୍ଟର କ୍ଷେତ୍ରବାସୀ ନାୟକ ସାହିତ୍ୟର ଉଦ୍ଦେଶ୍ୟ ଜ୍ଞାପନ କରିବାକୁ ଯାଇ ବ୍ୟାପକ ଆଲୋଚନା ଦେଇଛନ୍ତି ଉକ୍ତ ପୁସ୍ତକରେ । ସେଗୁଡ଼ିକ ନିମ୍ନଲେଖ ଧାରଣାରେ ପ୍ରକାଶ କରାଯାଇପାରେ ।

(କ) ସବୁ ସମୟରେ ସାହିତ୍ୟର ଗତିଶୀଳତା ଅର୍ଥପୂର୍ଣ୍ଣ ହେଉ

(ଖ) ସାହିତ୍ୟର ଲକ୍ଷ୍ୟ ସୂକ୍ଷ୍ମତମ କଳା ସୃଷ୍ଟି

(ଗ) ତାହା ଆନନ୍ଦବୋଧ ଓ ସୌନ୍ଦର୍ଯ୍ୟର ପରିପ୍ରକାଶ

(ଘ) ସାହିତ୍ୟ ହିଁ ସାହିତ୍ୟର କଥା କହିବ

(ଙ) ମଣିଷପଣିଆର ଉଦ୍ରେକ କରିବା ସାହିତ୍ୟର ଅନ୍ୟତମ ଲକ୍ଷ୍ୟ

(ଚ) ସାହିତ୍ୟ ହେଉଛି କଳ୍ପନାର ରସ ରୂପ ସୃଷ୍ଟି

(ଛ) ଏହା ବାର୍ତ୍ତାଦେବ ମାତ୍ର ଉପଦେଶ ଦେବ ନାହିଁ । କାରଣ ନୀତି ଓ ଉପଦେଶମୂଳକ କବିତାକୁ ସେଲି, ଦାନ୍ତେ ଓ ଡ୍ରାଇଡେନ୍ ପ୍ରମୁଖ କବି ଘୃଣ୍ୟ ମନେ କରିଛନ୍ତି । ଗ୍ରନ୍ଥ ନୀତିସିଦ୍ଧ କି ନୀତିହୀନ - ଏହା ବିଚାର୍ଯ୍ୟ ନୁହେଁ । ପୁସ୍ତକ ସୁପ୍ରଣିତ କି ନୁହେଁ ତାହା ବଡ଼କଥା ନୁହେଁ, ପ୍ରଣୟନ ଓ ସୃଷ୍ଟି ହିଁ ସାରବସ୍ତୁ । ଏହା ସର୍ବୋପରି

ଉନ୍ନତତର ସମାଜ ପ୍ରତିଷ୍ଠା ସଂଗ୍ରାମରେ ସହାୟକ ହେବା ଉଚିତ । ଜୋମତେ (୧୭୮୯-୧୮୫୬) ଙ୍କର ଆପ୍ତ ବାକ୍ୟ ସହ କ୍ଷେତ୍ରବାସୀ କେବଳ ଏକମତ ହୋଇନାହାନ୍ତି, ବରଂ ଦୃଢ଼ଭାବେ ଘୋଷଣା କରନ୍ତି । ସମାଜର ଏକ ନିମ୍ନସ୍ତରରୁ କ୍ଷେତ୍ରବାସୀଙ୍କର ଅଭ୍ୟୁତ୍ଥାନ । ସେ ପଙ୍କଜ; ପଙ୍କରୁ ତାଙ୍କର ଆବିର୍ଭାବ । ଏଣୁ ସମାଜ ବ୍ୟବସ୍ଥା ପ୍ରତି ସେ ବେଶ୍ ସଚେତନ । ତାଙ୍କ ଦୃଷ୍ଟିରେ ସାହିତ୍ୟ ବାଙ୍ମୟ କଳା ନୁହେଁ, ଶିଳ୍ପ ଏବଂ ଶାଣିତ ପାଶୁପତ ଅସ୍ତ୍ର । ପ୍ରସଙ୍ଗତଃ ସେ ଷ୍ଟାଲିନ୍ ପ୍ରମୁଖ ରାଷ୍ଟ୍ରନାୟକଗଣଙ୍କ ଉକ୍ତିକୁ ଉଦ୍ଧାର କରିଛନ୍ତି । ଆତ୍ମାର କାରିଗର-ବିଶ୍ୱପ୍ରୀତିର ବିକାଶସାଧନ ସାହିତ୍ୟର ମର୍ମ ଓ ଧର୍ମ ।

ସାହିତ୍ୟ ଭାଷାର ପାଖୁଡ଼ାରେ ବିକଶିତ ହୁଏ । ଏଣୁ ସାହିତ୍ୟର ଭାଷା ନେଇ ବହୁ ବିଜ୍ଞବ୍ୟକ୍ତି ତାଙ୍କର ମତ ଉପସ୍ଥାପନ କରିଆସିଛନ୍ତି । ସେମାନଙ୍କର ଅଭିମତକୁ ଗୌରବ ଦେବା ସହ ନିଜର ମତ ପୋଷଣ କରନ୍ତି କ୍ଷେତ୍ରବାସୀ- କଥିତ ଭାଷା ସାହିତ୍ୟର ଗୌରବ କିନ୍ତୁ କଥିତ ଭାଷା ସୀମିତ ଭାବଜ୍ଞାପକ । ପ୍ରାନ୍ତୀୟ ଓ ଆଞ୍ଚଳିକ ଭାଷା ଉପଭାଷା । ମାନକ (standard) ଭାଷା ଏଗୁଡ଼ିକର ସାହାଯ୍ୟ ନେଇପାରେ, ମାତ୍ର ଏହା ମୂଳ ପୁଞ୍ଜି ହୋଇ ନ ପାରେ । ଓଡ଼ିଆ ଭାଷା ବିଭବ ପ୍ରତୁଳ । ତାହାହିଁ ସାହିତ୍ୟ ସୃଷ୍ଟିର ସାର୍ବିକ ଉପଯୋଗ ପାଇଁ ଯଥେଷ୍ଟ ।

ସଂସ୍କୃତି ଓ ସାହିତ୍ୟ ଅଧ୍ୟୟନରେ ଭାରତୀୟ ତଥା ଉତ୍କଳୀୟ ସଂସ୍କୃତି ଆଧାରିତ ସାହିତ୍ୟ ଆମର ନିଜସ୍ୱ । ବିଶିଷ୍ଟ ସମାଜ ବିଜ୍ଞାନୀ ମାକ୍ଆଇଭରଙ୍କ ଭାଷାରେ What we are is culture । ଏହା ଆମର ସାମଗ୍ରିକ ପରିଚୟ । ନିଜ ପରିଚୟ ଭୁଲି ଯେଉଁ ସୃଷ୍ଟି ମୁଣ୍ଡ ଟେକେ, ତାହା ମରୁଭୂମିର କାକ୍ଟସ । ଭାରତୀୟ ଆଦର୍ଶବାଦୀ ସଂସ୍କୃତି କେବଳ ଆଧ୍ୟାତ୍ମିକ ଚିନ୍ତନକୁ ସ୍ୱୀକାର କରେ । ଆଦର୍ଶବାଦୀ ବିଚାର ଭିତରେ ବାସ୍ତବତାର ନିରୀକ୍ଷଣ ସର୍ବାଦୌ କର୍ତ୍ତବ୍ୟ । ଏହି ପରିପ୍ରେକ୍ଷୀରେ କ୍ଷେତ୍ରବାସୀ କହନ୍ତି - 'ସଂସ୍କୃତି ଭିତ୍ତିକ ଚିନ୍ତାଧାରାଗୁଡ଼ିକ ବାସ୍ତବତା ଅଭିମୁଖୀ । ତୁଚ୍ଛରୁ ମହତକୁ ଅଲଗା କରିବା ଏବଂ ଅଲଗା କରି ଦେଖିବା ସ୍ରଷ୍ଟାର ଦାୟିତ୍ୱ । କୁକୁର ଓ ମହାଦେବ ଭିତରେ କୁକୁର ତୁଚ୍ଛ, ତାହାର ସ୍ଥାନ ସ୍ୱତନ୍ତ୍ର କିନ୍ତୁ କେତେକ ଭାବପ୍ରବଣ ବ୍ୟକ୍ତି କହନ୍ତି କୁକୁର ଭିତରେ ସ୍ପନ୍ଦନ ଅଛି, ଆତ୍ମା ବି ଅଛି,ଏଣୁ ସେ ପରିତ୍ୟଜ୍ୟ ନୁହେଁ । କୁକୁର ଜୀବ ପ୍ରତି ଶ୍ରଦ୍ଧାଶୀଳ ହେବା ଏବଂ ବୁଲାକୁତାକୁ ଦେଇପିଣ୍ଡିକୁ ନେବା ମୂର୍ଖତା ।

ପ୍ରାଚୀନ ମୂଲ୍ୟବୋଧ ମାଧ୍ୟମରେ ଆଧୁନିକତାର ଉପଲବ୍ଧି ଏକାନ୍ତ ଜରୁରୀ । ଆଧୁନିକତାର ଦୋହାଇ ଦେଇ ପ୍ରାଚୀନତ୍ୱର ଉଚ୍ଛେଦ କରାଯାଇପାରେ ନାହିଁ । ପ୍ରାଚୀନ ସ୍ୱୀକୃତିରେ ବସ୍ତୁନିଷ୍ଠ ଗମନଶୀଳତାକୁ ଆମନ୍ତ୍ରଣ କରିବା ଡକ୍ଟର କ୍ଷେତ୍ରବାସୀ ନାୟକଙ୍କର

ପରାମର୍ଶ । ସେ ମାନସ ସ୍ତରରେ ଓଡ଼ିଆ ସଂସ୍କୃତି ତଥା ଜଗନ୍ନାଥ ପ୍ରୀତିରେ ନିଜକୁ ଉତ୍ସର୍ଗ କରିଦେଇଥିଲେ । ମନମଧରେ ମୂଳତଃ ସଂସ୍କୃତିକୁ ଭିତ୍ତିକରି ସାହିତ୍ୟ ସୃଷ୍ଟି ଦିଗରେ ମନୋନିବେଶ କରିଥିଲେ । ତାଙ୍କର ସୃଷ୍ଟିସମୂହରେ ସଂସ୍କୃତିର ଏକ ଅନ୍ତଃସ୍ୱରର ପ୍ରତିଧ୍ୱନି ଶୁଣାଯାଏ ।

## ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ (୧୮୦୩ - ୧୯୨୦)

୧୮୦୩ ମସିହାର ଶେଷଭାଗ ଅର୍ଥାତ୍ ଅକ୍ଟୋବର ଓ ଡିସେମ୍ବର ମଧ୍ୟରେ ଇଷ୍ଟଇଣ୍ଡିଆ କମ୍ପାନୀ କଟକ, ପୁରୀ ଓ ବାଲେଶ୍ୱର ଅଧିକାର କରିବା ଫଳରେ ମରହଟ୍ଟା ଶାସନର ବିଲୋପ ଘଟେ । ସୌଭାଗ୍ୟର କଥା ଓଡ଼ିଶା ସବା ପଛରେ ଇଂରେଜ ଶାସନାଧୀନ ହେଲା । ବ୍ୟବସାୟିକ ପ୍ରତିଷ୍ଠାରୁ ଆରମ୍ଭ ହେଲା ସାମ୍ରାଜ୍ୟ ସ୍ଥାପନର ଅନିର୍ବାଣ ଲାଳସା । ନିଜ ହାତକୁ ଶୁଳ୍କ ନେବାର ବନ୍ଦୋବସ୍ତ ପରେ ସେମାନେ ଶିକ୍ଷାର ପକ୍ଷ ବିସ୍ତାରରେ ପ୍ରୟାସୀ ହେଲା । ୧୮୩୫ ରେ ଇଂରାଜୀ ଭାଷା ଶିଖାଇ ଶିକ୍ଷିତମାନଙ୍କୁ କରାଗତ କରିବା ଥିଲା ପ୍ରାଥମିକ ଲକ୍ଷ୍ୟ । ବାଣିଜ୍ୟ, ବ୍ୟବସାୟ ସହିତ ଶାସନ କ୍ଷେତ୍ରରେ ମଧ୍ୟ ଏହି ଅଭିଜାତ ଶିକ୍ଷିତବର୍ଗ ନିୟୋଜିତ ହୋଇପାରିବେ । ନାନା ବିଚାରବିମର୍ଶ ଫଳରେ ଆମ ଦେଶର ଲୋକେ ଇଂରାଜୀ ଶିକ୍ଷାଲାଭ କଲେ । ଊନବିଂଶ ଶତକର ଦ୍ୱିତୀୟାର୍ଦ୍ଧ ଓଡ଼ିଆ ଜାତି ପାଇଁ ସନ୍ଧିସନ୍ଧି କ୍ଷଣ ଥିଲେ ହେଁ, ଏହି ସମୟ ଯେ ନବ ଜାଗରଣର ସୁପ୍ରଭାବ ଥିଲା, ଏଥିରେ ସଂଦେହ ନାହିଁ ।

ପାଶ୍ଚାତ୍ୟ ସଂସର୍ଗର ଭିତ୍ତି ଅଧ୍ୟାୟରେ କ୍ଷେତ୍ରବାସୀ ନାୟକ ଏହି ପ୍ରସଙ୍ଗର ବିଶ୍ଳେଷଣ ବାଢ଼ିଛନ୍ତି । ଶିକ୍ଷାଲାଭ କରି ଚାକିରୀ ପାଇବାର ପ୍ରଲୋଭନ ଓଡ଼ିଶାର ଯୁବକମାନଙ୍କୁ ଦାସତ୍ୱରେ ବରଣ କରିନେଲେ ମଧ୍ୟ ମାନସିକ ସ୍ତରରେ ସେମାନେ ଉତ୍କଳୀୟ ଭାବକୁ ବଳି ଦେଇନଥିଲେ । ମାତୃଭୂମି ଓ ମାତୃଭାଷାର ଆହ୍ୱାନ ସତେ ଯେପରି ବାରମ୍ବାର ତାଙ୍କୁ ବ୍ୟଥିତ କରୁଥିଲା ।

ଦ୍ୱିତୀୟ ଅଧ୍ୟାୟରେ ରେନାସାଁର ନବଅଭ୍ୟୁଦୟର ସତଥ୍ୟ ଆଲୋଚନା କରାଯାଇଛି । କ୍ଷେତ୍ରବାସୀଙ୍କର ସ୍ୱତନ୍ତ୍ର ଆଲୋଚନା ଉକ୍ତ ଅଧ୍ୟାୟକୁ ନୂତନ ଦୃଷ୍ଟିକୋଣ ଦେବାରେ ସମର୍ଥ ହୋଇଅଛି । ତାଙ୍କର ଦୃଷ୍ଟିକୋଣ ହେଲା; ଓଡ଼ିଆ ସାହିତ୍ୟରେ ୟୁରୋପୀୟ ରେନେସାଁ କର୍ମଧାରାର ଅନୁରୂପ ପଦକ୍ଷେପ ଓଡ଼ିଆ କବିତା ଅନୁରୂପ ଅଭିବ୍ୟକ୍ତି କୁ ଦେଇଛି । ପ୍ରଭାବ ସ୍ୱାଭାବିକ ରୀତିରେ ପ୍ରତିଫଳିତ ହେଲା । "ପଶ୍ଚିମ ଦିଗନ୍ତରେ ସମୃଦ୍ଧ ଜ୍ଞାନ ପ୍ରବାହରେ ଦେଶୀୟ ଅଭିରୁଚିକୁ ପରିପୁଷ୍ଟ କରି ସେଥିରେ ଆପଣାକୁ ଏକ କରି ଦେବା ପାଇଁ ଆଗ୍ରହ ଆମ ଦେଶରେ ଏତିକି ବେଳେ ପ୍ରକାଶ ପାଇଥିଲା ।" ପଞ୍ଚଦଶ

ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଇଂରେଜୀ ମାନସ ଯେପରି ମଧ୍ୟଯୁଗୀୟ ଭାବ ବନ୍ଧନରୁ ମୁକ୍ତି ଲୋଡ଼ିଥିଲା, କିମ୍ବା ଆପଣା ରାଜ୍ୟରେ ପରିବର୍ତ୍ତନ ଆଣି ଅପର ଜାତିର ଉନ୍ନତାଙ୍କ ଅବଦାନରେ ନିଜକୁ ସମୁନ୍ନତ କରିବା ପାଇଁ ଯେପରି କର୍ମତତ୍‌ପରତା ପ୍ରକାଶ ପାଇଥିଲା, ସେହିପରି ଆଗ୍ରହ ଓ କର୍ମାବେଗ ଉନବିଂଶ ଶତକରେ ଓଡ଼ିଆ ମାନସରେ ଦେଖାଦେଇଥିଲା ବୋଲି ଡଃ ନାୟକ ଯୁକ୍ତି ଉପସ୍ଥାପନ କରିଛନ୍ତି । ଅର୍ଥାତ୍ ଏକ ଜାତି ତାହାର ଆତ୍ମ ପରିଚୟ ପାଇଁ ଇତିହାସର କୋଣାନୁକୋଣ ଅନୁସନ୍ଧାନ କରେ । ରେନେସାଁର ଆତ୍ମିକ ଆହ୍ୱାନ ଥିଲା; ଭାଷା ସାହିତ୍ୟର ଉନ୍ନତି ସଂପାଦନ ଲାଗି ଅକୁଣ୍ଠ ବ୍ୟଗ୍ରତା । ଡକ୍ଟର ନାୟକ ବିଶିଷ୍ଟ ଚିନ୍ତାନାୟକ ଚେକି ( Cheke)ଙ୍କ କହନ୍ତି ; "ଆମ ଭାଷା ଶୁଦ୍ଧ, ଅବିମିଶ୍ର ଓ ନିରୋଳା ହୋଇ ଲିଖିତ ହେବା ମୋର ମତ । ଅନ୍ୟ ଭାଷାରୁ ଉଧାର ଆଣିବାକୁ ଯଦି ସତର୍କ ସୃଷ୍ଟି ଦିଆନଯାଏ, ତା' ହେଲେ ପରିଶୋଧନ ନ କରି ବରମ୍ବାର ଉଧାର ଆଣିବାର ଲାଳସା ନିଜ ଭାଷା ପ୍ରତି ବିପରି ହେବ ।"

ଅନ୍ୟ ଭାଷାର ଅନ୍ଧ ଆମଦାନୀ ବିରୋଧରେ ଇଂରେଜୀ ପ୍ରଜ୍ଞା ସାଧକଙ୍କ ଭଳି ଗତ ଶତାବ୍ଦୀରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଆନ୍ଦୋଳନ ହୋଇଥିଲା । ଏହି ମର୍ମରେ ଉତ୍କଳ ଦୀପିକାର ସଂପାଦକ ଗୌରୀଶଙ୍କର ବି ଲେଖିଥିଲେ - "ଗ୍ରନ୍ଥକର୍ତ୍ତାମାନେ ବଙ୍ଗଳା ଭାଷାରେ ଶିକ୍ଷିତ ହୋଇ ବଙ୍ଗଳା ଭାଷା ଅନୁବାଦ କରିବା ସମୟରେ ଅନେକ ବଙ୍ଗଳା ଶବ୍ଦ ଓ ଭାବ ପ୍ରକାଶକୁ ଉତ୍କଳୀୟ ମନେ କରନ୍ତି । ସୁତରାଂ; ତଦ୍ଦ୍ୱାରା ଉତ୍କଳ ଭାଷାର ଅନେକ କ୍ଷତି ହୋଇଅଛି ।" ରେନାସାଁର ପ୍ରକୃତ ଅର୍ଥ - "ସ୍ଥିତିଶୀଳ ଓ ସଂସ୍କାରଶୀଳ ମଣିଷଙ୍କର ଏକ ସଂଘର୍ଷ । ସାହିତ୍ୟ ଓ ସଂସ୍କୃତି ଏହି ସଂଘର୍ଷରେ ପ୍ରଭାବିତ ହୋଇଆସିଅଛି । ଏଠାରେ କବିବର ରାଧାନାଥଙ୍କର ବସନ୍ତ ବର୍ଣ୍ଣନାକୁ ବିଶ୍ଳେଷଣ କରାଯାଇପାରେ -

ଅତି ନିଦାରୁଣ କାଳ ଶୀତଋତୁ
ଧରା ଛାଡ଼ି ଛାଡ଼ି ନାହିଁ
ପଲ୍ଲବ ପାଟଳ ମଧୁ ଋତୁରାଟ
ଧରା ମାଡ଼ି ମାଡ଼ି ନାହିଁ ।

ଏଠାରେ ସ୍ଥିତିଶୀଳ ସ୍ଥିତି ଓ ସଂସ୍କାରଶୀଳ ଗୋଷ୍ଠୀର ଏକ ଦ୍ୱନ୍ଦ୍ୱାତ୍ମକ ଚିତ୍ର ପ୍ରତିଫଳିତ ହୋଇଛି । ବାହ୍ୟର ପ୍ରକୃତି ଭିତରେ ଅନ୍ତଃ ଚେତନାର ସ୍ୱର ରେନାସାଁ । ରାଧାନାଥ କାବ୍ୟ ମହାଯଜ୍ଞର ଆଦି ଅଗ୍ନିହୋତ୍ରୀ ଏବଂ ତାଙ୍କର ସମଗ୍ର କାବ୍ୟ ପରିସର ମଧ୍ୟରେ ନବ ଜାଗରଣର ବାର୍ତ୍ତା ପ୍ରତିଫଳିତ । କିନ୍ତୁ ସ୍ଥିତିଶୀଳମାନେ ଏହାର ଘୋର

ପ୍ରତିବାଦ କରିଥିବାରୁ ଭଞ୍ଜ ଓ ରାଧାନାଥ ପନ୍ଥୀଙ୍କ ମଧ୍ୟରେ ଆଦର୍ଶଗତ ଦ୍ୱନ୍ଦ୍ୱର ସୂତ୍ରପାତ ଘଟିଥିଲା । 'ଇନ୍ଦ୍ରଧନୁ' ଓ 'ବିଜୁଳି'ର ବିତର୍କରେ ଭଞ୍ଜ ଓ ରାଧାନାଥଙ୍କର ଇଦ୍ଦେଇ ହୋଇଥିଲେ ବି ରାଧାନାଥଙ୍କର ନବଚେତନାର ଗତିପଥ ଅବରୁଦ୍ଧ ହୋଇ ପାରି ନ ଥିଲା । କ୍ଷେତ୍ରବାସୀଙ୍କ 'କାବ୍ୟଶିଖରୀ ଅଧିକାର କରିଥିବା ପ୍ରାଚୀନମାନଙ୍କୁ ସେଇ ସ୍ଥାନ ତ୍ୟାଗ କରିବା ପାଇଁ ଅନୁରୋଧ ଜଣାଇଛନ୍ତି ।

ଡକ୍ଟର କ୍ଷେତ୍ରବାସୀ ନାୟକ ନବଜାଗରଣ ପ୍ରସଙ୍ଗଟି ତାଙ୍କର 'ଆଲୋଚନା ପତ୍ର' ରେ ମଧ୍ୟ ଉଲ୍ଲେଖ କରିଛନ୍ତି । ନନ୍ଦକିଶୋର ନବଚେତନାର ଏକନିଷ୍ଠ ତାପସ ଭାବେ ରାଧାନାଥଙ୍କୁ ସମର୍ଥନ ହେବା ସହିତ ଲେଖିଛନ୍ତି -

ପାହିଛି ବିଷାଦ ରଜନୀ ଉଠଉଠ ଉତ୍କଳ
ହୃଦୟେ ଧରିଣ ନବୀନ ଆଶା ନବୀନ ବଳ
ପାଶ୍ଚାତ୍ୟ ବିଜ୍ଞାନ ଅମୃତ ପିଇ କୋଟି ନନ୍ଦନ
ତୋ ଦଶା ଫେଡ଼ିବେ ଏଣିକି ଲଭି ନବଜୀବନ (ଭାରତୀ ଉଦ୍‌ବୋଧନ)

ରାଧାନାଥ ଯୁଗରେ ପରମବୈଶିଷ୍ଟ୍ୟ ଜାତୀୟତାର ଶଙ୍ଖବାଦନ ଏବଂ ପାଶ୍ଚାତ୍ୟ ଭାବକୁ ଓଡ଼ିଆ ସାହିତ୍ୟରେ ନବ୍ୟରୂପଦାନ । କାରଣ ତାହା ଏକ ଆଧୁନିକ କାବ୍ୟ ସର୍ଜନାରେ ସଜ୍ଜିତ ହେବ ।"

ରାଧାନାଥଙ୍କ ସହିତ ଫକୀରମୋହନ, ମଧୁସୂଦନ ଓ ନନ୍ଦକିଶୋର ଆଦି ପାଶ୍ଚାତ୍ୟ ପ୍ରଭାବର ଦ୍ୱାରଦେଶ ଉନ୍ମୁକ୍ତ କରିଥିବା ସପକ୍ଷରେ ଅବଧାରିତ ସତ୍ୟକୁ ଡକ୍ଟର ନାୟକ ଯଥାର୍ଥ ଭାବରେ ଉତ୍ଥାପନ କରିଛନ୍ତି । ପରବର୍ତ୍ତୀ ପରିଚ୍ଛେଦଗୁଡ଼ିକରେ ଉଦାହରଣ ଓ ପ୍ରତିଫଳନର ବିପୁଳାୟତନ କ୍ଷେତ୍ର ଦର୍ଶାଇଛନ୍ତି । ତାହାର ଚର୍ବିତ ଚର୍ବଣ ଚର୍ଚ୍ଚା ଅନାବଶ୍ୟକ ।

ଏହି ପୁସ୍ତକରେ ସନ୍ନିବିଷ୍ଟ ତଥ୍ୟ ଓ ସତ୍ୟର ବ୍ୟାଖ୍ୟା ଯୁକ୍ତିସଙ୍ଗତ । ଯାହା ଅନ୍ୟ ପୂର୍ବ ଆଲୋଚକମାନଙ୍କ ନଜରର ଉହ୍ୟାଳରେ ରହିଯାଇଥିଲା; ସେଗୁଡ଼ିକ କ୍ଷେତ୍ରବାସୀଙ୍କ କ୍ଷେତରେ ସୁନାର ଫସଲ ହୋଇ ଦେଖାଦେଇଛି । ଭାଷା - ସାହିତ୍ୟର ଚର୍ଚ୍ଚା ଲାଗି ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ହୋଇଥିବା ଅଧିବେଶନ ଓ ସେମିନାରମାନଙ୍କରେ ଉପସ୍ଥାପିତ ପ୍ରବନ୍ଧ ଓ ଅଭିଭାଷଣଗୁଡ଼ିକୁ କ୍ଷେତ୍ରବାସୀ ନାୟକ ଯତ୍ନରେ ସାଇତି ରଖି 'ଆଲୋଚନା ପତ୍ର' ସଂକଳନରେ ନାମକ ବାଢ଼ିଛନ୍ତି । ଅନେକ ବ୍ୟକ୍ତିଙ୍କର ଏହି ସଚେତନତାର ଅଭାବ ଦେଖାଯାଇଥାଏ । ଭାଷଣଗୁଡ଼ିକ ଶବ୍ଦର ଲହରରେ ଭାସିଯାଇଥାଏ । କିନ୍ତୁ ଡକ୍ଟର ନାୟକ ଉତ୍ତର ଦାୟାଦମାନଙ୍କ ପାଇଁ ସାରସ୍ୱତ ସଂପଦ ଭାବି ଏହାକୁ ସାଇତି ରଖିଥିଲେ । ଏହି

ସଂକଳନର 'ମୁଖଶାଳା' ରେ ଉଲ୍ଲେଖ ଅଛି - ସାହିତ୍ୟ ଚର୍ଚ୍ଚାର ଫଳାଫଳ ତତ୍‌କ୍ଷଣାତ୍ ଧରାପଡ଼େ ନାହିଁ, ଭଲ ମନ୍ଦର ଧାରଣା ଆସିପାରେ । କିନ୍ତୁ ଏଗୁଡ଼ିକର ମୂଲ୍ୟାୟନ ପରବର୍ତ୍ତୀ ସମୟରେ ସୁନ୍ଦର ଧାରଣା ସୃଷ୍ଟି କରିପାରେ ।

ଉକ୍ତ ସଂକଳନରେ ପନ୍ଦର ଗୋଟି ମନନଶୀଳ ପ୍ରବନ୍ଧ ସ୍ଥାନିତ । ଏହାର ବିଷୟବସ୍ତୁକୁ ଦୁଇ ଭାଗ କରାଯାଇପାରେ । ପ୍ରଥମ ପର୍ଯ୍ୟାୟରେ ସାହିତ୍ୟାଲୋଚନା ଓ ଅନ୍ୟଟି ସ୍ରଷ୍ଟା ମଣିଷର ଜୀବନ ଓ ଜିଜ୍ଞାସାର ପରିଧି । ଆଧୁନିକତାର ଦର୍ଶନ, ସାହିତ୍ୟର ଭାଷ୍ୟ, ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟ ଇତିହାସକୁ ୯ଜଣଙ୍କର ଅବଦାନ, ଜାତୀୟ ସଂହତିର ଭାଷ୍ୟ ସାଂପ୍ରତିକ ଜୀବନ ଓ ସାହିତ୍ୟ, କବିତା ପାଇଁ ସପ୍ତମ ଦଶକର ଘୋଷଣା, କବିତା ଚର୍ଚ୍ଚାର କଳା, ଭାଷାନ୍ତରର ଭାଷ୍ୟ, ଆଧୁନିକ ଓଡ଼ିଆ କବିତାରେ ବ୍ୟକ୍ତି- ବିଶ୍ୱ ଓ ବହିର୍ବିଶ୍ୱର ଅଭିବ୍ୟକ୍ତି ଏବଂ ଓଡ଼ିଆ ସାହିତ୍ୟ ଓ ସଂଗଠନ । ଆଲୋଚ୍ୟ ପ୍ରବନ୍ଧାବଳୀ କ୍ଷେତ୍ରବାସୀଙ୍କର ମାନସ-ପ୍ରସୂତ -ଚିନ୍ତା ଚେତନାର ଉତ୍ତରଣ । ଏହିପରି ଭାବନିଷ୍ଠ ଆଲୋଚନା ୭୮-୭୯ ମସିହା ପୂର୍ବରୁ କେହି ଲେଖିଥିଲା ଭଳି ମନେ ହୁଏ ନାହିଁ । ଏହା ସମୟୋଚିତ ଚିନ୍ତାଧାରାର ଅଭୂତପୂର୍ବ ପରିପ୍ରକାଶ ।

ଦ୍ୱିତୀୟରେ କବି ବାଞ୍ଛାନିଧି, କବି ସୂର୍ଯ୍ୟଙ୍କ ଭକ୍ତିକବିତା, ଭଞ୍ଜ କାବ୍ୟ - କବିତାରେ ମାନବ ରୂପ, ଗଙ୍ଗାଧର; କବି ଓ ମଣିଷ କବି ଉପେନ୍ଦ୍ର ପ୍ରସାଦ (ତ୍ରିପାଠୀ) ଙ୍କର ସାହିତ୍ୟିକ ଅବଦାନ, କାବ୍ୟର ଗାଠନିକ କଳା, ଏବଂ କବି ଜୀବନର ଅପୂର୍ବ ପ୍ରଜ୍ଞାର ଉଲ୍ଲେଖ ଏହି ନିବନ୍ଧାବଳୀରେ ନିହିତ ଥିଲେ ହେଁ କ୍ଷେତ୍ରବାସୀଙ୍କର ଆଲୋଚନାର ଶୈଳୀ ଓ ଦୃଷ୍ଟିକୋଣ ତାଙ୍କ ପ୍ରତିଭାର ପ୍ରତିଭୂ ଅଟେ । ପାରସ୍ପରିକ ଢାଞ୍ଚାରେ ନୂତନ ବ୍ୟାଖ୍ୟା ଓ ଦୃଷ୍ଟିକୋଣ ଏହି କବି ମନିଷୀମାନଙ୍କର ଐଶ୍ୱର୍ଯ୍ୟ ପ୍ରକଟ କରିବାରେ ସଫଳ ହୋଇଅଛି । ଓଡ଼ିଆ ସାହିତ୍ୟରେ ଏ ବାବଦରେ ପାଠ୍ୟ, ପାଠଚକ୍ର ତଥା ପୁସ୍ତକମାନଙ୍କରେ ଅଙ୍କବଦ୍ଧତ ଧାରଣା ପାଠକମାନଙ୍କୁ ସ୍ପର୍ଶ କରିପାରିଛି ।

ପ୍ରଥମ ପର୍ଯ୍ୟାୟଭୁକ୍ତ ଆଲୋଚନାରେ ରହିଛି ପାଠକୀୟ ଉତ୍‌କଣ୍ଠା ଓ ବିତର୍କର ବହୁତ ବାର୍ତ୍ତା । ଆଧୁନିକତା ସଂପର୍କରେ କ୍ଷେତ୍ରବାସୀଙ୍କର ମନ୍ତବ୍ୟ ଅତୀବ ଉଚ୍ଚ ଚିନ୍ତନୀୟ ସ୍ତର । ଗଭୀର ଅନ୍ତର୍ଦୃଷ୍ଟିରେ ସେ ଦେଖିଛନ୍ତି ଦୁଇଟି ବିଚାରକୁ । ସାଂପ୍ରତିକତା ଓ ଆଧୁନିକତା ଗୋଟିଏ ଶିବିରରେ ଆଶ୍ରିତ ବିଭିନ୍ନ ଦେଶର ବାସିନ୍ଦା, ସେ ସଂପର୍କରେ ଆମର ଅନେକ ଜିଜ୍ଞାସା ଥାଇପାରେ - 'ସଭ୍ୟତା ହେଉଛି ମଣିଷର ଭୌତିକ ଆବରଣର ରୂପମାତ୍ର । ସଂସ୍କୃତି ହେଉଛି ମାନବ ଇତିହାସର ଏକ ଆତ୍ମିକ ସଂପଦ । ଟି.ଏସ୍. ଇଲିୟଟ କହନ୍ତି - ସଂସ୍କୃତି ହେଉଛି ଏକ ଅକ୍ଷୟ ଚେତନା, ଯାହା ଯୁଗ ଯୁଗ ଧରିଜାତିର ସ୍ଥିତିକୁ ଧରି

ରଖେ ।" ସାହିତ୍ୟ ଭିତରେ ସାଂସ୍କୃତିକ ଚେତନାର ଉତ୍ତାଳ ତରଙ୍ଗ ଖେଳୁଥାଏ । ଆଧୁନିକତା ବୋଲି ଯାହାକୁ କୁହାଯାଇଛି, ତାହା କେତେଜଣ ଚିନ୍ତାଶୀଳ ଲେଖକ ବା ମନିଷୀଙ୍କର ଆଦର୍ଶର ପ୍ରଖ୍ୟାପନ । ସାହିତ୍ୟ କିପରି ଆଧୁନିକତାକୁ ପରମ୍ପରା ଭିତରୁ ପୃଥକ୍ କରିପାରିଛି, ତାହାର ଦୃଷ୍ଟାନ୍ତ କ୍ଷେତ୍ରବାସୀ ନାୟକ ଫରାସୀ ବିପ୍ଳବ ପରର ସୃଷ୍ଟିରୁ ଉଦ୍ଧାର କରିଛନ୍ତି । ଫରାସୀ ବିପ୍ଳବ ପଛରେ ନାଟ୍ୟକାର ବିଓ ମାରିସିସ୍‌ଙ୍କର ନାଟକ 'ଦି ମ୍ୟାରେଜ୍ ଅଫ ଫିଗାରୋ' (୧୭୭୮-୮୪), 'ଦି ବାର୍‌ବର ଅଫ ସେଭିଲ' (୧୭୭୫) ରୟାଲ ପ୍ୟାଲେସ୍‌ରେ ପ୍ରଦର୍ଶିତ ହେବାମାତ୍ରେ, ନାଟକର ସାଜସଜ୍ଜା ଓ ସଂଳାପରୁ ବିପ୍ଳବ ଆରମ୍ଭ ହୋଇଯାଇଥିଲା । ଫିଗାରୋର ସଂଳାପ - "Because you are great lord, you think you are a great genius - Nobility, fortune, rank, place all that makes you so proud xxx otherwise, a rather ordinary man." । ଆଧୁନିକତା ଏକ ଆଶୁ ପରିବର୍ତ୍ତନ, ଏକ ବିପ୍ଳବର ଝଂଜ୍ଞା ଓ ମାନସିକତାର ତୀବ୍ର ଆଲୋଡ଼ନ । ଏହାର ପ୍ରଭାବ ସମାଜର ଗତିପଥକୁ ପରିବର୍ତ୍ତନ କରି ଆସିଛି ଜୀବନର ଚଳଣିରେ ଓ ସମାଜର ସୁଠତା ବ୍ୟବସ୍ଥାରେ । କ୍ଷେତ୍ରବାସୀ ନାୟକଙ୍କ ଦୃଷ୍ଟିରେ ପରିବର୍ତ୍ତନ ପାଇଁ ବିପ୍ଳବର ଆବଶ୍ୟକତା ରହିଛି । ଫରାସୀ ବିପ୍ଳବ ଓ ମାର୍କସଙ୍କ ସାମ୍ୟବାଦୀତତ୍ତ୍ୱ ଆଧୁନିକତାର ମୂଳପୁଞ୍ଜି ।

ଏହି ପରିପ୍ରେକ୍ଷୀରେ ସମାଜବାଦୀ ବାସ୍ତବତାର ଜନକ ଗର୍କୀଙ୍କ 'ମଦର' ଉପନ୍ୟାସର ଚିତ୍ରାଙ୍କନ କରିଛନ୍ତି । ବିପ୍ଳବ କେବଳ ଅସ୍ତ୍ରଶସ୍ତ୍ର ଧାରୀଙ୍କ ସଙ୍ଗୀନ ମୂନରେ ହୁଏ ନାହିଁ, ହୁଏ ଚେତନାର ଉନ୍ମେଷ ଫଳରେ । କାରଖାନାରେ ବିରତି ଘଣ୍ଟି ବାଜିଲେ ଶ୍ରମିକ ଖାଇବାକୁ ଯାଆନ୍ତି । ଠିକ୍ ଏତିକିବେଳେ ପାଭେଲ୍‌ର ମା' ପାଭେଲ ପାଇଁ ଝୁଡ଼ିରେ ଖାଦ୍ୟ ଧରି ଆସିଥାଏ । ପୁଅକୁ ଖାଇବାକୁ ଦେଇସାରି ଝୁଡ଼ିରୁ ବିପ୍ଳବର ପ୍ରଚାର ପତ୍ର ବାଣ୍ଟିଦିଏ । କ୍ରମଶଃ ଏଇକଥା ପଦାକୁ ଗଲା, କାନକୁ ଶହେକାନ ହେଲା, ପାଭେଲର ମା'କୁ ଅତ୍ୟାଚାର ବରଣ କରିବାକୁ ପଡ଼ିଛି, ଜାରଙ୍କ ବନ୍ଧନ ଓ କଷଣରୁ ମୁକ୍ତି ପାଇ ନାହିଁ, ତାହାରି ରକ୍ତରେ ମାଟି ରଞ୍ଜିତ ହୋଇଛି କିନ୍ତୁ ବିପ୍ଳବ ତେଜିଉଠିଛି । ପାଭେଲ ମା'କୁ ହରାଇ ଭାବ ପ୍ରବଣ ନ ହୋଇ - ଦେଶ ମୁକ୍ତି ଲାଗି ଶକ୍ତି ସଞ୍ଚୟ କରିଛି । ଏହିଭଳି ଜୁଆର ଆସେ, ପରିବର୍ତ୍ତିତ ସମାଜ ସାଂସ୍କୃତିକ ଚିହ୍ନରେ ଉଦ୍‌ବୁଦ୍ଧ ହୁଏ । କ୍ଷେତ୍ରବାସୀ ଚିନ୍ତାମୂଳକ ଆଲୋଚନାରେ ସମସ୍ୟା ଓ ସମାଧାନର ପରାମର୍ଶ ଦେଇ 'ଆଲୋଚନା ପତ୍ର' କୁ ଏକ ମୌଳିକ ସ୍ଥିତିରେ ପହଞ୍ଚାଇଅଛନ୍ତି ।

ବିଶ୍ୱସାହିତ୍ୟରେ ଭାରତୀୟ କାବ୍ୟତତ୍ତ୍ୱ ସଂପୂର୍ଣ୍ଣ ମୌଳିକ ଏବଂ ପ୍ରାଚୀନ ।

ତତ୍ତ୍ୱର କ୍ଷେତ୍ରବାସୀ ନାୟକଙ୍କର ଅନ୍ୱେଷା ଓ ଗଭୀର ଜ୍ଞାନର ପରିଚାୟକ 'ଭାରତୀୟ କାବ୍ୟତତ୍ତ୍ୱ' । କ୍ଷେତ୍ରବାସୀ ଶ୍ରୀ ଜଗନ୍ନାଥଙ୍କର ଚରଣାର ବିନ୍ଦରେ ଏହି ସୃଷ୍ଟିକୁ ଉତ୍ସର୍ଗ କରିବା ସହିତ ଆତ୍ମନିବେଦନ କରିଛନ୍ତି -

"ପ୍ରେରଣାର ଉତ୍ସ ପ୍ରଭୁ !
ଭାବମୟ ଦୃଷ୍ଟିର ପ୍ରତୀକ
ତୁମେଇ ପ୍ରେରକ ଶକ୍ତି,
ମୂର୍ତ୍ତିମାନ ପ୍ରକାଶ ଆଲୋକ
ତୁମ ଇଚ୍ଛା, ଫଳେ କ୍ଷଣେ
ଲିଭିଯାଏ, ଗୋଟି ଗୋଟି ଆଶଙ୍କାର ଦାଗ ।"
x x x
କୃପାରେ ଦେଇଛ ଯାହା
ଅକିଞ୍ଚନ ଚିତ୍ତେ ଜାଗୁ
ଅମଳିନ ଅମୃତ ଅଭୟ ।"

ମୁଖଶାଳାରୁ ମଖଶାଳାର ଧାରଣା କରିହୁଏ । କ୍ଷେତ୍ରବାସୀଙ୍କର ନାମର ଯଥାର୍ଥତା ଶ୍ରୀ କ୍ଷେତ୍ରବାସୀ ଜଗନ୍ନାଥ ପ୍ରାଣତାରୁ ଜଣାପଡ଼େ । ଅଖଣ୍ଡ ବିଶ୍ୱାସ ତାଙ୍କର ଜଗନ୍ନାଥଙ୍କ ଠିଁ । ଅନ୍ୟାନ୍ୟ ସୃଷ୍ଟିରେ ଏକା ବିଭୁ ପ୍ରୀତି ପ୍ରତିଫଳିତ । ଭାରତୀୟ କାବ୍ୟତତ୍ତ୍ୱ ଉପରେ ଆଲୋକପାତ କ୍ୱଚିତ ଲେଖକ କରିଛନ୍ତି । ଭାରତୀୟ ସାହିତ୍ୟ ମନ୍ଥନ କରିବା ବିଶେଷକରି ସଂସ୍କୃତାଧ୍ୟୟନ କରି ରସ ଗ୍ରହଣ କରିବା ଆୟାସସାଧ୍ୟ ।

ଭାରତୀୟ କାବ୍ୟତତ୍ତ୍ୱର ପ୍ରଚଳିତ ମତଗୁଡ଼ିକୁ ପାରମ୍ପରିକ ବିଶ୍ଳେଷଣ ସୂତ୍ରାନୁସାରେ ନାନା ପ୍ରକାର ବିଚାର କରାଯାଇଅଛି । ଭାରତୀୟ ସାହିତ୍ୟରେ "ଲଳିତ ବିସ୍ତର" ଗ୍ରନ୍ଥରେ କାବ୍ୟ-କରଣ ହେଉଛି କାବ୍ୟ ଶାସ୍ତ୍ରର ସ୍ୱଗୋତ୍ରୀୟ । 'କାବ୍ୟ ହେଉଛି - କବି ଚିତ୍ତର ରସୋମୟ ଅଭିବ୍ୟକ୍ତି ।' କବିର ଅକ୍ଷର ପ୍ରତିମା ଏଇ କାବ୍ୟକୁ ଅନେକେ ମାନବ ଜୀବନ ଓ ବିଚିତ୍ର ସୃଷ୍ଟି ସୁଷମାର ବିଶଦ ସମୀକ୍ଷା ରୂପେ ଅଭିହିତ କରିଥାନ୍ତି । ଦଶମ ଶତକର କବି ରାଜଶେଖର, ତାଙ୍କର କାବ୍ୟ ମୀମାଂସା ଗ୍ରନ୍ଥରେଏକ କାଳ୍ପନିକ କାହାଣୀ ଛଳରେ କହିଥିଲେ - ସରସ୍ୱତୀଙ୍କର ପୁତ୍ର ହେଉଛନ୍ତି, କାବ୍ୟ ପୁରୁଷ ଏବଂ ତାଙ୍କର ଧର୍ମ ପତ୍ନୀ ସାହିତ୍ୟ ବିଦ୍ୟାବଧୂ - ଏମାନଙ୍କର ସହାବସ୍ଥାନରେ ସାରସ୍ୱତ ପରିବାର ଏବଂ କାବ୍ୟ ସାରସ୍ୱତ ପରିବାରର ଅଙ୍ଗ ।  କାବ୍ୟର ଭାବ ଓ କଳା ଦୁଇଟି ପ୍ରଧାନ ଦିଗ । ମନନଶୀଳ କବି ସମାଧିସ୍ଥ ହେଲେ କାବ୍ୟ ଅବତରିତ ହୁଏ । ଅଧ୍ୟବସାୟ ଦ୍ୱାରା ଜ୍ଞାନୋଦ୍ରେକ ଘଟେ ।

ପ୍ରତିଭା ସହିତ ବ୍ୟୁତ୍ପତ୍ତି ଏକୀଭୂତ ହେଲେ ପ୍ରତିଭାର ଉନ୍ମେଷ ଘଟେ ବା ମୁକୁଳିତ ହୁଏ । ପ୍ରତିଭା ସଂପର୍କରେ ଡକ୍ଟର କ୍ଷେତ୍ରବାସୀ ନାୟକଙ୍କର ଦୃଷ୍ଟିକୋଣ ଭିନ୍ନ । କାରୟିତ୍ରୀ ପ୍ରତିଭା ଓ ଭାବୟିତ୍ରୀ ପ୍ରତିଭା ମଧ୍ୟରୁ କାରୟିତ୍ରୀ ପ୍ରତିଭାକୁ ସହଜା ବା ପୂର୍ବଜନ୍ମାର୍ଜିତ, ଆହାର୍ଯ୍ୟା ଅର୍ଥାତ୍ ଇହ ଜନ୍ମାର୍ଜିତ ଏବଂ ଔପଦେଶିକୀ ବା ଶାସ୍ତ୍ରଜ୍ଞାନସମ୍ଭୂତ କାବ୍ୟକଳା ରୂପେ ବର୍ଣ୍ଣିତ । କବିତା ସୃଷ୍ଟି ହେବାର ଲଳିତ ଲଗ୍ନରେ 'ଆତ୍ମସୃଷ୍ଟ ସ୍ୱୟଂବୃତ' ଏକ ଜଗତ୍‌କୁ ପ୍ରସ୍ଥାନ କରେ । କବି ଆତ୍ମସ୍ଥ ହୁଏ, ଆପଣା ରୂପ ଓ ସତ୍ତାକୁ ଖୋଜିପାଏ ।

କାବ୍ୟ ପ୍ରୟୋଜନ ଓ ନୀତିବାଦୀ ବିଚାର ଅଧ୍ୟାୟରେ ଡକ୍ଟର ନାୟକ ପ୍ରାଚ୍ୟ ଓ ପାଶ୍ଚାତ୍ୟ ପଣ୍ଡିତମାନଙ୍କର ମତୋଦ୍ଧାର ସହ ନିଜର ବିଶ୍ଳେଷଣାତ୍ମକ ଦୃଷ୍ଟିଭଙ୍ଗୀ ରଖିଛନ୍ତି । ନାଟ୍ୟଶାସ୍ତ୍ର ପ୍ରଣେତା ଭରତ ମୁନି ଓ ଭାମହଙ୍କ ମତରେ କୀର୍ତ୍ତି ବା ଯଶଃ ପ୍ରାର୍ଥୀ ହେବା ହିଁ ଫଳଶ୍ରୁତି । କୀର୍ତ୍ତି ବିସ୍ତାର ସହ ଧନାର୍ଜନ, ବିପତ୍ତିରୁ ରକ୍ଷା, ଅସାଧାରଣ ଆନନ୍ଦ ଭୋଗ ଏବଂ ମନୋବାଞ୍ଛିତ ଫଳପ୍ରାପ୍ତି ହେଉଛି କାବ୍ୟର ବିଶିଷ୍ଟ ପ୍ରୟୋଜନ । ନୈତିକ ମୂଲ୍ୟବୋଧର ଅନୁଗାମୀ - ସତ୍ୟ-ଶିବ-ସୁନ୍ଦର ଚେତନାର ଉଦ୍‌ବୋଧକ ହେଉଛି କାବ୍ୟ । ନୈତିକତାର ଉନ୍ନତି ସାଧନ, ବୁଦ୍ଧି ଓ ମାନସିକତାର ବିକାଶ କାବ୍ୟର ଉଦ୍ଦେଶ୍ୟ ମଧ୍ୟ । ଲୌକିକ ସୁଖ ଓ କାବ୍ୟିକ ଆନନ୍ଦ ଉପରେ ଆଲୋକପାତ କରି କ୍ଷେତ୍ରବାସୀ ବାବୁ ନୂତନ ଦିଗ୍‌ଦର୍ଶନ ଦିଅନ୍ତି । "ଆନନ୍ଦର ଜନକ ପ୍ରାଣ, ପ୍ରାଣକୁ ନ ବୁଝିଲେ ଶରୀର ଇନ୍ଦ୍ରଜାଲ ଭିତରେ ବନ୍ଧା ହୋଇ ଗଲେ ଆନନ୍ଦ ଆମକୁ ଧରା ଦିଏ ନାହିଁ (ପୃ-୪୨) ବସ୍ତୁବାଦୀ ଓ ଆଧ୍ୟାତ୍ମିକବାଦୀଙ୍କ ମଧ୍ୟରେ ଆନନ୍ଦର ଅର୍ଥ ପରସ୍ପର ବିପରୀତ ମୁଖୀ । ଇନ୍ଦ୍ରିୟବାସନା ପୂର୍ଣ୍ଣକରେ ଜଡ଼ବାଦୀ ବିଚାର । ଏହା ସୁଖ ମାତ୍ର ଆନନ୍ଦ ନୁହେଁ । ହୃଦୟ, ବୁଦ୍ଧି ଓ କଳ୍ପନାକୁ ଆନନ୍ଦ ପରିପ୍ଲାବିତ କରେ, ତାହା ଚେତନାର ସ୍ୱର୍ଣ୍ଣ ।

କ୍ଷେତ୍ରବାସୀ ବାବୁଙ୍କର ଭାରତୀୟ କାବ୍ୟ ପରମ୍ପରାରେ ସୌନ୍ଦର୍ଯ୍ୟ ଚେତନା ସମ୍ୟକ ବିଶ୍ଳେଷିତ । ସୌନ୍ଦର୍ଯ୍ୟର ଆଦିବ୍ୟାଖ୍ୟାକାର ଭାବରେ ମାଘକବି ଶ୍ରୀ ହର୍ଷଙ୍କୁ ଗୌରବ ଦିଆଯାଏ । ପ୍ରସଙ୍ଗତଃ, ଡକ୍ଟର କ୍ଷେତ୍ରବାସୀ ନାୟକ ୟୁରୋପୀୟ ଲେଖକମାନଙ୍କର ଏସ୍ଥେଟିକ୍‌ସ ଭାବକୁ ଓଡ଼ିଆ କାବ୍ୟକଳାର ନନ୍ଦନତତ୍ତ୍ୱ ରୂପେ ଗ୍ରହଣ କରିଛନ୍ତି । ଖ୍ରୀ ୧୭୩୫ ରେ ଜର୍ମାନ ଦାର୍ଶନିକ ବୋମଗାର୍ଟେନ ଏସ୍ଥେଟିକ୍ ଶବ୍ଦଟି ବ୍ୟବହାର କରିଥିଲେ ଏବଂ ୧୭୫୦ ମସିହାରେ 'ଏସ୍ଥେଟିକସ୍' ନାମକ ଗ୍ରନ୍ଥ ପ୍ରଣୟନ କରିଥିଲେ । ତାଙ୍କ ପରେ ଇମାନୁଏଲ୍ କାଣ୍ଟ (୧୭୨୪ -୧୮୦୪) ଟ୍ରାନ୍‌ସଡେଣ୍ଟାଲ ଏସ୍ଥେଟିକ୍ (Transdental aesthetic) ର କଥା ଉଠାଇଥିଲେ; ଯାହାର ଅର୍ଥ ନିର୍ବିକଳ୍ପ ସୌନ୍ଦର୍ଯ୍ୟୋପଲବ୍ଧି । ଅର୍ଥାତ୍ ଯେତେବେଳେ ବିଷୟୀସଙ୍ଗେ ବିଷୟର ସାନ୍ନିଧ ଘଟେ ଏବଂ ବିଷୟୀଠାରେ ବିଷୟର ପ୍ରତୀତି ଉଜ୍ଜ୍ୱଳ ହୋଇ ଦିଶେ; ସେତେବେଳେ ନାନ୍ଦନିକତା

ଉପଲବ୍ଧ ହୁଏ । (ପୃ.୪୮) କ୍ଷେତ୍ରବାସୀଙ୍କର ଏହି ବ୍ୟାଖ୍ୟାକୁ ଆଉଟିକେ ଆଗେଇ ଦେଲେ 'ଶିଲାର'ଙ୍କୁ ସ୍ମରଣ କରିବାକୁ ହୁଏ । ବିଷୟ ଅଭିମୁଖୀ ଓ ବାସ୍ତୁ ଧାରଣ ପ୍ରୟାସମୁଖୀବୃତ୍ତିର ସ୍ଥିତି ଅଭିନ୍ନ । ଏଇ ଦୁଇଟି ପ୍ରବୃତ୍ତି ମଧ୍ୟରେ ଐକ୍ୟ ସ୍ଥାପିତ ହେଲେ ସୃଷ୍ଟିର ଫୁଲ ଫୁଟେ ।

ଡାକ୍ତର ନାୟକ ଉଭୟ ପ୍ରାଚୀନ ଓ ଆଧୁନିକ ସାହିତ୍ୟର ଅନୁଶୀଳନରେ ଜଣେ ସିଦ୍ଧହସ୍ତ ଶିଳ୍ପୀ । ତାଙ୍କର ଆଗମନ ଥିଲା ଅତି ଆଶ୍ୱାସନାପୂର୍ଣ୍ଣ ଏବଂ ତାଙ୍କର ପ୍ରତ୍ୟାଗମନ ହେଲା ମର୍ମବିଦାରକ ଓ ଦୁଃଖଦ କାହାଣୀ ଏ ସାହିତ୍ୟ ଜଗତରେ ।

**ସୃଷ୍ଟି ସମଗ୍ର :**

| | | |
|---|---|---|
| ୧. | ସାହିତ୍ୟର ସାମାନ୍ୟକଥନ | ୧୯୭୦ |
| ୨. | ସାହିତ୍ୟଚର୍ଚ୍ଚା | ୧୯୮୧ |
| ୩. | ଆଧୁନିକ ଓଡ଼ିଆକାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ (୧୮୦୩-୧୯୨୦) | ୧୯୭୭ |
| ୪. | କବି ଓ କାମିନୀ ଏବଂ ଅନ୍ୟାନ୍ୟ ପ୍ରବନ୍ଧାବଳୀ | ୧୯୮୨ |
| ୫. | ଆଲୋଚନାପତ୍ର | ୧୯୭୯ |
| ୬. | ଭାରତୀୟ କାବ୍ୟତତ୍ତ୍ୱ | ୧୯୮୧ |
| ୭. | ନୂତନ ନିରୀକ୍ଷା ଗ୍ରନ୍ଥମାଳା,କବି ଅର୍ଜୁନ ଦାସ | ୧୯୮୩ |
| ୮. | କବି ଚରିତ ରାଧାନାଥ | ୧୯୭୫ |
| ୯. | କାବ୍ୟ ପୁରୁଷର କଥା | ୨୦୦୩ |
| ୧୦. | ଅଳଙ୍କାର ଓ ଅଳଙ୍କାରତତ୍ତ୍ୱ | ୧୯୬୮ |
| ୧୧. | ସାହିତ୍ୟିକ ବୀକ୍ଷା ଓ ନିରୀକ୍ଷା | ୧୯୭୦ |
| ୧୨. | ନାରୀକବି ଅନ୍ନପୂର୍ଣ୍ଣା | ୧୯୭୯ |
| ୧୩. | କବି ନୀଳକଣ୍ଠ | ୧୯୭୧ |
| ୧୪. | ଫୁଲର କବର (ମୌଳିକ ରଚନା) | ୧୯୬୭ |
| ୧୫. | ଉଚ୍ଚାରଣ (ମୌଳିକ ରଚନା) | ୧୯୬୯ |
| ୧୬. | ପ୍ରବନ୍ଧ ଓ ପ୍ରାବନ୍ଧିକ (ସଂକଳନ) | ୧୯୬୮ |
| ୧୭. | ନାରୀକବି ଅନ୍ନପୂର୍ଣ୍ଣା ରଚନାଶ୍ରୀ | ୧୯୭୯ |
| ୧୮. | ଫକୀରମୋହନ କଥାସାହିତ୍ୟ | ୧୯୭୭ |



# କ୍ଷେତ୍ରବାସୀଙ୍କ ଗବେଷଣା ନିବନ୍ଧ : ଏକ ସମୀକ୍ଷା

ଶ୍ରୀ ରାଈ ଚରଣ ଦାସ

"ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ (୧୮୦୩ - ୧୯୨୦)" ପୁସ୍ତକଟି ଭଲ କରି ପଢ଼ିଲି । ଏଥିରେ ଚିନ୍ତାର ଖୋରାକ ଯୋଗାଇବା ପାଇଁ ବହୁ ଉପାଦାନ ରହିଛି । ସନ୍ଦର୍ଭଟିରେ ଯେଉଁ ସିଦ୍ଧାନ୍ତ ପ୍ରତିପାଦନ କରାଯାଇଛି, ସେ ସମ୍ବନ୍ଧରେ ଭାବିବାର ପ୍ରଚୁର ଅବକାଶ ମଧ ରହିଛି ଏବଂ ଏହି ଚିନ୍ତାର ଖୋରାକ ମଧରେ ଓଡ଼ିଆ ସାହିତ୍ୟକୁ ଏକ ନୂଆ ଦୃଷ୍ଟିରେ ଦେଖିବା ପାଇଁ ମଧ ସମ୍ଭାବନା ଓ ସୁଯୋଗ ରହିଛି ।

"ପାଶ୍ଚାତ୍ୟ ପ୍ରଭବ" ହେଉଛି "ପାଶ୍ଚାତ୍ୟ ଚେତନା" ର ପ୍ରଭାବ । ଯଥାର୍ଥତଃ ଏହା ଇଂରାଜୀ ପ୍ରଭାବ । ଏଇ ପ୍ରଭାବର ସଂକ୍ରମଣ ଓ ଅନୁପ୍ରବେଶ ଘଟିଛି ଇଂରାଜୀ ଶିକ୍ଷା ଓ ମୁଦ୍ରଣ ଶିଳ୍ପର ପ୍ରବର୍ତ୍ତନ, ପତ୍ରପତ୍ରିକାର ଅଭ୍ୟୁତ୍ଥାନ, ଏବଂ ନୂତନ ନୂତନ ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନର ଆବିର୍ଭାବ ଯୋଗୁ । ଫଳରେ ଘଟିଛି ଆମର ଚିତ୍ତ-ବୃତ୍ତିର ସଂସ୍କାର, ଆତ୍ମିକ ଓ ଆଙ୍ଗିକର ରୂପାନ୍ତର । ଆସିଛି ନବ ଯୁଗର ନୂତନ ବାର୍ତ୍ତା । ନୂତନ ପ୍ରାଣ ପ୍ରବାହ । ସାହିତ୍ୟରେ ନବୀନ ଚକ୍ରବାଳ (ପୃ ୧୪) ଏଇ ନୂତନ ପ୍ରବାହ ଆଉ ବିଦ୍ୟା ବୁଦ୍ଧି ବଳରେ ଆମ ଦେଶବାସୀ ଅବନୀ ମଣ୍ଡଳରେ ସମୁନ୍ନତ ଦିଶିବେ...ଏ ବିଶ୍ୱାସ ଆସିଛି (ପୃ ୧୩) ଆସିଛି ଆହରଣ ଜରିଆରେ ସାହିତ୍ୟକୁ ଧନୀ କରିବାର ବାସନା । ମାନବର ଚିନ୍ତା ଆଉ ପ୍ରଜ୍ଞା ଯେଉଁ ସତ୍ୟ ଆଲୋକ/ ଆଦର୍ଶ ଆବିଷ୍କାର କରିଛି, ସେ ସବୁକୁ ଆମ ସାହିତ୍ୟର ସଂପଦୀଭୂତ କରିବାର ଉଦ୍ୟମ (ପୃ ୪୯) । ବିଦେଶୀ ସାହିତ୍ୟରୁ ରତ୍ନରାଜି ଆହରଣ କରି ତାକୁ ଆପଣା ଛାଞ୍ଚରେ ମଣ୍ଡାଣସଜ କରି ବସାଇବାର ବିନ୍ଧାଣି ପଣିଆର ଅଭ୍ୟୁଦୟ (ପୃ-୫୨) । ସାମାଜିକ ଓ ବିଜ୍ଞାନ ଶାସ୍ତ୍ର ଅନ୍ତର୍ଗତ ବିଷୟଗୁଡ଼ିକର ଆଲୋଚନା କରିବାର ପ୍ରବଣତା (ପୃ-୫୫) ।

ଫଳରେ ଦେଖୁଁ ଘଟ ପରିବର୍ତ୍ତନ । "ଚେତନାର ନବଜାତ ଶିଶୁ" । ପାଶ୍ଚାତ୍ୟ ସମାଜର ଚାରିଶହ ବର୍ଷର ସାଧନା, ଉଦ୍‌ଭାବନା, ଆବିଷ୍କାର ସକଳର ସାରାଂଶ ଅର୍ଦ୍ଧଶତାବ୍ଦୀ ମଧରେ ଆହରଣ କରିବାର ଉଦ୍ୟମ (ପୃ-୬୭) । ପ୍ରାଚୀନ ପରମ୍ପରାର ଅବକ୍ଷୟ । ଆଧୁନିକ ଯୁଗର ଅଭ୍ୟୁଦୟ (ପୃ-୬୮) । ସଂସ୍କୃତ ଓ ଦେଶୀୟ ଭାଷାର ମିଶ୍ରିତ ପ୍ରୟୋଗ (ପୃ-୬୯) । ଭାଷା ସଂସ୍କାର (ପୃ-୭୦) । ଚିନ୍ତାର ସଂସ୍କାର । ବାସ୍ତବମୁଖୀ ଆବେଗ । ମାନବିକ ଚିନ୍ତନ । ଜାତୀୟ ଭାଷା ସଂସ୍କୃତି ଅଭିବୃଦ୍ଧିରେ ଆତ୍ମ ନିଯୋଗ କରିବା ପାଇଁ

ଏକ-ନିଷ୍ଠତା (ପୃ୬୭) । ନବୀନ ଓ ପ୍ରାଚୀନ ମଧ୍ୟରେ କବିକଳି (ପୃ.୭୨), ଇନ୍ଦ୍ରଧନୁ ଓ ବିଜୁଳି ମଧ୍ୟରେ ସଂଘର୍ଷ । ଅବା ଊର୍ଣ୍ଣନାଭ ଓ ମଧୁମକ୍ଷିକା ମଧ୍ୟରେ ପାର୍ଥକ୍ୟ ପ୍ରଦର୍ଶନ (ପୃ-୭୩) । ନବ ଶତାବ୍ଦୀର ନିମନ୍ତ୍ରଣ (ପୃ-୭୬) । ନୂତନ କାବ୍ୟବୋଧ । ନୂତନ ବ୍ୟକ୍ତିତ୍ୱବୋଧ (ପୃ-୭୭) । ବ୍ୟକ୍ତିତ୍ୱର ମର୍ମାଭିବ୍ୟକ୍ତି (ପୃ-୭୮) । ସ୍ୱଦେଶିକ ଐକ୍ୟର ମହତ୍ତ୍ୱ (ପୃ-୨୩୨) । ନିଜର ଅଭିଜ୍ଞତାକୁ ସ୍ୱତନ୍ତ୍ର ରୀତିରେ ଆତ୍ମପ୍ରକାଶ କରିବାର ପ୍ରବଣତା (ପୃ-୨୧୩) ।

ଏଇଠି ଦିଓଟି ପ୍ରଶ୍ନ ଉଠୁଛି । ପ୍ରଥମଟି ହେଲା - ଆମେ ପ୍ରଭାବିତ ହେଲୁ କାହିଁକି ? ଆମର ଆତ୍ମିକ ଓ ଅଙ୍ଗିକରେ କ'ଣ ଏପରି ଦୁର୍ବଳତା ଥିଲା, ଯାହା ନୂତନ ଆତ୍ମିକ ଓ ଆଙ୍ଗିକ ଆଡ଼କୁ ଆମକୁ ଆକର୍ଷଣ କଲା ? ? ଆମର ପରମ୍ପରିକ ସଂସ୍କୃତିରେ କ'ଣ ଏପରି ଦୁର୍ବଳତା ଥିଲା, ଯାହାଦ୍ୱାରା ଆମର ସାଂସ୍କୃତିକ ପ୍ରତିବନ୍ଧକ ଶକ୍ତି ଭାଙ୍ଗିଗଲା ଏବଂ ଯଦ୍ୱାରା ଆମେ ଆମଦାନି ହୋଇ ଆସିଥିବା ଭାବଧାରା ଦ୍ୱାରା ସଂକ୍ରମିତ ହୋଇପଡ଼ିଲୁ ? ? ଦ୍ୱିତୀୟ ପ୍ରଶ୍ନଟି ହେଲା - ପାଶ୍ଚାତ୍ୟ ଭାବଧାରର କେଉଁ ଉପାଦାନଗୁଡ଼ିକ ଆମକୁ ପ୍ରଭାବିତ କଲା ଓ ସେହି ଉପାଦାନଗୁଡ଼ିକର ସ୍ୱରୂପ କ'ଣ ? ଏବଂ ସେହି ଉପାଦାନ ସକଳ ଆମ ପାଖରେ ଥିବା ଭାବ ଭଣ୍ଡାରଠୁଁ କେଉଁ ଗୁଣରେ ତଫାତ୍ ଓ କେଉଁ ଗୁଣରେ ଅଧିକ ବା ଉନ୍ନତ ? ?

ପୁସ୍ତକଟିରୁ ପ୍ରଥମ ପ୍ରଶ୍ନର ଉତ୍ତର ଆମେ ପରୋକ୍ଷ ଭାବରେ ପାଇବାକୁ ଚେଷ୍ଟା କରିପାରୁ । ଆମେ ପ୍ରଭାବିତ ହେଲୁ - କାରଣ ଆମର ପାରମ୍ପରିକ ସଂସ୍କୃତି ଆମକୁ ବାନ୍ଧି ରଖିପାରିଲା ନାହିଁ । ଆମ ସାହିତ୍ୟ ସଂସ୍କୃତିର ଚକ୍ରବାଳ ସୀମିତ ହୋଇପଡ଼ିଥିଲା । ଆଗକୁ ପାଦ ବଢ଼ାଇବାକୁ ଜୁ ନ ଥିଲା । ଆମ ସମାଜରେ ବିଜ୍ଞାନ ଓ ସମାଜଶାସ୍ତ୍ରର ଚର୍ଚ୍ଚା ନ ଥିଲା ବା ପ୍ରାୟ ବନ୍ଦ ହୋଇ ଯାଇଥିଲା । ଆମର ଚିନ୍ତା ଆଉ ପ୍ରଜ୍ଞା ଆମକୁ ଯେଉଁ ସତ୍ୟ, ଆଲୋକ ବା ଆଦର୍ଶ ଦେଇଥିଲା, ତାହା ପର୍ଯ୍ୟାପ୍ତ ନ ଥିଲା । ସୁଦୂରପ୍ରସାରୀ ନ ଥିଲା । ଯଦ୍ୱାରା ନୂତନ ସତ୍ୟ, ନୂତନ ଆଲୋକ,ନୂତନ ଆଦର୍ଶ ଆଡ଼କୁ ଆମେ ଆକୃଷ୍ଟ ହୋଇ ପଡ଼ିଲୁଁ । ଆମର କାବ୍ୟବୋଧ ଆଉ ବ୍ୟକ୍ତିତ୍ୱବୋଧରେ କିଛି ତ୍ରୁଟି ରହିଯାଇଥିଲା । ହୁଏତ କିଛି ଭୟଙ୍କର ପ୍ରମାଦ ରହି ଯାଇଥିଲା । ସୀମିତତାର ଅପର୍ଯ୍ୟାପ୍ତତାର ସେଇ ପରିଧିଟି ଜାଣି ପାରିଲେ, ଆମେ ନୂତନ ପରିଧିକୁ ହୁଏତ ଅଧିକ ପସନ୍ଦ କରି ପାରିବୁ ।

ଆମର ସାହିତ୍ୟ ଚର୍ଚ୍ଚାରେ, ଆମର ସାହିତ୍ୟର ଇତିହାସ ଚର୍ଚ୍ଚାରେ, ଏଇ ପରିଧିଟି ବିଷୟ କେହି କହି ନାହାନ୍ତି । କହୁ ନାହାନ୍ତି । ଏଇ କଥାଟି କହିଲେ, ସାହିତ୍ୟ ଚର୍ଚ୍ଚାରେ, ସାହିତ୍ୟ ଇତିହାସ ଚର୍ଚ୍ଚାରେ ଗୋଟିଏ ନୂତନ ପରିଧି ଉନ୍ମୋଚନ ହୋଇଯାଆନ୍ତା ।

ସିଧା ସଳଖ ନ ପାଇଲେ, ବି ମୋଟାମୋଟି ଭାବରେ ପୁସ୍ତକରୁ ଦ୍ୱିତୀୟ ପ୍ରଶ୍ନର ଉତ୍ତର ଜାଣି ହେବ । ଆମେ ଦେଖିଲୁ, ସପ୍ତଦଶ, ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀର ପାଶ୍ଚାତ୍ୟ କବିଙ୍କର କାବ୍ୟକବିତା ଦ୍ୱାରା ଆମ ଆଧୁନିକ ସାହିତ୍ୟର ପାହାନ୍ତି ପହରର ଅଗ୍ରଗାମୀ କବିମାନେ ପ୍ରଭୂତ ଭାବେ ପ୍ରଭାବିତ ହୋଇଥିଲେ । ତା' ସାଙ୍ଗକୁ ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀର ଅଭ୍ୟୁଦୟ ଯୁଗର ଭାବଧାରା ମଧ୍ୟ ଆମ ସମାଜକୁ ଆମଦାନି ହୋଇ ଆସିଥିଲା । ମୋଟାମୋଟି ଭାବରେ ପ୍ରାୟ ଚାରିଶହ ବର୍ଷର ପାଶ୍ଚାତ୍ୟ ଭାବଧାରା ପ୍ରଚାଶରୁ ଶହେ ବର୍ଷ ଭିତରେ ଆମ ସମାଜକୁ ଆମଦାନି ହୋଇ ଆସିଲା ଏବଂ ସେହି ସବୁ ଭାବଧାରା ଏକ ନୂତନ ପ୍ରଭାବ ଓ ନୂତନ ପ୍ରାଣପ୍ରବାହ ସୃଷ୍ଟି କଲା । ପାଶ୍ଚାତ୍ୟ ସମାଜର ଯେଉଁ ଭାବଧାରାଗୁଡ଼ିକ ରପ୍ତାନି ହୋଇ ଆସିଥିଲା ସେଗୁଡ଼ିକର ଏକ ସମୀକ୍ଷା ଆବଶ୍ୟକ । ସେଗୁଡ଼ିକ ପାଶ୍ଚାତ୍ୟ ସମାଜର ବହୁ କ୍ରିୟା-ପ୍ରତିକ୍ରିୟାର ପରିଣତି । କାଳ ଅନୁଯାୟୀ ସେହି ଭାବଗୁଡ଼ିକୁ ନିମ୍ନ ଲିଖିତ ପ୍ରକାରେ ବିଭାଗୀକରଣ କରାଯାଇ ପାରେ ।

**ସପ୍ତଦଶ ଶତାବ୍ଦୀ** - (କ) ନବ ଜାଗରଣ ଓ ଅଭ୍ୟୁଦୟ ଭାବ ଧାରାର ପ୍ରଭାବ ... ୧୫୦୦ - ୧୬୫୦

(ଖ) ବୈଜ୍ଞାନିକ ବିପ୍ଳବ ... ୧୫୯୦ - ୧୬୬୦

(ଗ) ପରିବର୍ତ୍ତନର କାଳ ... ୧୬୫୦ - ୧୬୭୪

(ଓ୍ୱାଲର, କାଉଲେ, ଲକ୍, ହବ୍ସ୍, ଜନ୍ ଡେନିସ୍, ଡ୍ରାଇଡ଼େନ୍ ଇତ୍ୟାଦି)

(ଘ) ପୁନଃ ପ୍ରତିଷ୍ଠା ..... ୧୬୬୦

(ଙ) ନୂତନ ଭାବଧାରର ପ୍ରବର୍ତ୍ତନ - ୧୬୯୩ - ୧୬୯୪

(୧୬୯୩ ରେ ଜନ ଡେନିସ୍ଙ୍କ The impartial critic ଓ ୧୯୬୪ ରେ ବ୍ଏଲଭଙ୍କ Critical Reflactions ପ୍ରକାଶିତ)

(ଚ) ଯୁକ୍ତିର ଯୁଗ ବା ନବ୍ୟ-କ୍ଲାସିକ ଯୁଗ (Ago of Reason) ୧୬୬୦ - ୧୭୦୦

**ଅଷ୍ଟାଦଶ ଶତାବ୍ଦୀ** -

(କ) ଅଗଷ୍ଟାନ୍ ଯୁଗ .... ୧୭୦୦ - ୧୭୪୦

(ରାଣୀ ଆନେ ଓ ପ୍ରଥମ ଜର୍ଜଙ୍କ କାଳ)

(ଖ) ନବ ସଂସ୍କାର ଯୁଗ ... ୧୭୦୦ - ୧୭୬୦)

(Age of Enlightenment)

(ଗ) ଜନ୍‌ସନଙ୍କ ଯୁଗ .... ୧୭୪୦ - ୧୭୭୫

(ଘ) ପ୍ରାକ୍ - ରୋମାଣ୍ଟିକ ବା ଅବବୋଧରଯୁଗ ... ୧୭୪୦ - ୧୭୮୦

(ଙ) ଶିଳ୍ପ ବିପ୍ଳବ .... ୧୭୬୦- ୧୮୦୦

(ଚ) ବୈପ୍ଳବିକ କାଳ ... ୧୭୭୫ - ୧୮୦୦

<u>ଅଷ୍ଟାଦଶ ଶତାବ୍ଦୀ</u>

**ଊନବିଂଶ ଶତାବ୍ଦୀ**

(କ) ପ୍ରତିଭାର ଯୁଗ ବା ରୋମାଣ୍ଟିକ ଯୁଗ .... ୧୭୭୦ - ୧୮୩୦

ଉପରୋକ୍ତ ପ୍ରତ୍ୟେକ ଯୁଗ / କାଳର ବିଭାଗ ସ୍ୱତନ୍ତ୍ର । ସେଇ ବିଭାଗଗୁଡ଼ିକର ପରିଚୟ ପାଇଲେ, ଏବଂ ସେଇ ବିଭାଗଗୁଡ଼ିକର ଉତ୍ତରଣ ଘଟି ତାହା କିପରି ପରବର୍ତ୍ତୀ ବିଭାବରେ ପରିଣତ ହୋଇଛି - ସେହି ପ୍ରକ୍ରିୟାର ପିରଚୟ ପାଇଲେ, ଆମେ ପାଶ୍ଚାତ୍ୟ ଭାବ-ପ୍ରବାହର ପରିଚୟ ପାଇଯିବୁ ।

ଅଭ୍ୟୁଦୟ ଭାବଧାରର ପ୍ରଭାବରୁ ଇଟାଲୀୟ ଓ ବ୍ଲାଙ୍କ ଭର୍ସ (Blank Verse) ଇଂରାଜୀ ସାହିତ୍ୟରେ ଷୋଡ଼ଶ-ସପ୍ତଦଶ ଶତାବ୍ଦୀ ବେଳକୁ ପଶି ଯାଇଥିଲା । ସେଇ ଉଲ୍ଲାସର କ୍ରମରେ ଦେଖୁ Metaphysical poets,Religious poets, ଆଉ Cavalier poets । ୧୬୬୪ ରେ ରୟାଲ୍ ସୋସାଇଟିର ଆନୁକୂଲ୍ୟରେ ଏଭ୍‌ଲିନ୍, ଓ୍ୟାଲର୍ ଓ ଡ୍ରାଇଡ୍ରେନ୍‌କୁ ନେଇ "Committee for improving the English tounge" ଗଠିତ ହୋଇଥିଲା । ପରବର୍ତ୍ତୀ କାଳରେ, ସପ୍ତଦଶ ଶତାବ୍ଦୀରେ ଦେଖୁ କାବ୍ୟର ନୂତନ ରୂପ (New verse froms, heroic couplet etc) । ଅନୁବାଦ ସାହିତ୍ୟର ନୂତନ ତତ୍ତ୍ୱ । *New theory of free translation* । *Familiar style* ର ଧାରଣା । Workmanship ର ଧାରଣା, ତା' ସାଙ୍ଗକୁ ନବ୍ୟ-କ୍ଲାସିକ୍ ଯୁଗର ଫର୍ମୁଲା ଯେତେକ । ନାଟକରେ Unities, deccrum । କଳାରେ Elegance, proportion । କାବ୍ୟରେ ଶ୍ରେଣୀ ବିଭାଗ । ଜୀବନୀ ଓ ସମାଲୋଚନାର ଏକ ମିଶ୍ର ପ୍ରୟୋଗଧାରାର ପ୍ରବର୍ତ୍ତନ । Law with Liberty ଇତ୍ୟାଦି ଇତ୍ୟାଦି ।

ସେହିପରି ଅଷ୍ଟାଦଶ ଶତାବ୍ଦୀରେ ଦେଖୁ ବହୁତ ନୂତନ ଭାବ ଆଉ ବିଭାବ । "ରୁଚି" ର ବିବର୍ତ୍ତନ ଓ ବ୍ୟାପ୍ତି । "ଦର୍ଶନ" ର ଗଣ୍ଡି ମଧ୍ୟରୁ ବିଚ୍ଛିନ୍ନ ହୋଇ ଏକ ସ୍ୱତନ୍ତ୍ର ବିଷୟବସ୍ତୁ ଭାବରେ "ନନ୍ଦନତତ୍ତ୍ୱ" ର ଆତ୍ମ ପ୍ରକାଶ । ନବ୍ୟକ୍ଲାସିକ୍ କାଳର ଗୁଳା ଆଉ ନିୟମ ବନ୍ଧନର ହ୍ରାସ ଏବଂ ଲଘୁ ପ୍ରୟୋଗ । ସମାଲୋଚନା ଧାରଣାର ବ୍ୟାକ୍ତି ଓ

Historical Criticism ଧାରଣାର ପ୍ରବର୍ତ୍ତନ । "ରୁଚି" ର ଧାରଣା ସାଙ୍ଗକୁ "କଳ୍ପନା" ଓ "ପ୍ରତିଭା" ଧାରଣାର ଆବିର୍ଭାବ । ପ୍ରକୃତି ପ୍ରତ୍ୟାବର୍ତ୍ତନ । ଉଦ୍ୟାନ ଅନୁରାଗ । ଦୃଶ୍ୟ ଅନୁରାଗ । "ଉପନ୍ୟାସ" ରୂପ (Form) ର ଆବିର୍ଭାବ । "ସୌନ୍ଦର୍ଯ୍ୟତତ୍ତ୍ୱ" ର ସ୍ୱତନ୍ତ୍ର ଆଲୋଚନା । "ରୋମାଣ୍ଟିକ ଅବବୋଧ"ର ଆତ୍ମ ପ୍ରକାଶ । ବିଚାରର ବ୍ୟକ୍ତି-କୈନ୍ଦ୍ରିକତା ଓ ଆପେକ୍ଷିକତା । ପୁରାତନ ଇତିହାସ ଆଲୋଚନା ଓ "ସାହିତ୍ୟର ଇତିହାସ" ର ଧାରଣା । ମଣିଷର ମାନସିକ ଚକ୍ରବାଳ, ଭୌଗୋଳିକ ଓ ଐତିହାସିକ ଉଭୟ ଦିଗରେ ପ୍ରସାରଣ, ଅଭିଜାତ ଓ ସହରଭିତ୍ତିକ ସଂସ୍କୃତିର ପରିବର୍ତ୍ତନ । ଇତ୍ୟାଦି, ଇତ୍ୟାଦି ।

ଏହି ବିଭାବଗୁଡ଼ିର ଏକ 'ଅନୁକ୍ରମ' ଅଛି । ଏକ 'ବିକାଶ ଧାରା' ଅଛି । ପ୍ରକୃତି -ବିକୃତି ବା କାର୍ଯ୍ୟ-କାରଣ ଅଛି । ପୂର୍ବାପର ସମ୍ବନ୍ଧ ଅଛି । ଐତିହାସିକତା ଅଛି । ପୃଷ୍ଠଭୂମି ଓ ପ୍ରାସଙ୍ଗିକତା ରହିଛି । ଉନ୍ମେଷ ଓ ଉତରଣ ଅଛି । କିନ୍ତୁ ଏ କଥା ଆଗରୁ କହିଦେଇ ହେବ, ଯେ ହେତୁ ଏଇ ସବୁ ବିଭାବ ଆମ ସମାଜ ଓ ସଂସ୍କୃତିରେ ବାସନ୍ତୀ କରଣ ବା କଲମୀ କରା ଯାଇଛି, ସେହି ହେତୁ ଆମ ସାହିତ୍ୟରେ ସେଇ ବିଭାଗଗୁଡ଼ିକର କ୍ରମ ବିକାଶ ଧାରା ପୂର୍ବାପର ସମ୍ବନ୍ଧି ଓ ପୃଷ୍ଠଭୂମି ଖୋଜିଲେ, ଏହାର ଏକ କ୍ରମାନୁସାରୀ ବିବରଣୀ ହୁଏତ ମିଳିବ ନାହିଁ । ଏଗୁଡ଼ିକ ଅଧ୍ୟାରୋପ । ଅଧ୍ୟାସ । ଏବଂ ଯେହେତୁ ଏ ଗୁଡ଼ିକ ଆଧାରୋପ, ସେହି ହେତୁ ଆମ ସମାଜ ସାହିତ୍ୟରେ ଏହି ଭାବ ଧାରାଗୁଡ଼ିକର ଅନୁବର୍ତ୍ତନ / ଆବିର୍ଭାବ / ବିକାଶ ଅନୁଧ୍ୟାନ କଲେ, ବହୁ ସମୟରେ ପରସ୍ପର ବିରୋଧାଭାଷ ଦେଖିବାକୁ ମିଳିପାରେ । ତା ସାଙ୍ଗକୁ ଏ କଥା ମଧ୍ୟ ଆଗରୁ କହିଦେଇ ହେବ ଯେ ଯେଉଁ ବିଭାବର ଏକ ସ୍ୱାଭାବିକ ବିକାଶ ଓ ପରିଣତି ଅନୁଭବ କରିହୁଏ, ସେହି ବିଭାବ ସହ ଆମ ସମାଜ ଓ ସଂସ୍କୃତିର ପରିବେଶ ସହ ଏକ ପ୍ରାକୃତିକ ସାମଞ୍ଜସ୍ୟ ରହିଛି ।

ବର୍ଟାଣ୍ଡ ରସେଲ୍ ନିଜର History of Western Philosophy ପୁସ୍ତକ (ପୃ. ୫୮୧) ରେ କହିଛନ୍ତି :- In the advanced countries, practice inspires theory; in the others, theory inspires practice. This difference is one of the reasons why transplanted ideas are seldom so sucessful as they were in their native soil."

ରସେଲ୍‌ଙ୍କ ଉପରୋକ୍ତ ମତକୁ ଏକ ସତ୍ୟପାଠ ଭାବରେ ଗ୍ରହଣ କରାଯାଇପାରେ ।

ସେହି କାରଣରୁ ଆମ ସାହିତ୍ୟରେ ହୁଏତ ଏକ ନିର୍ଦ୍ଦିଷ୍ଟ କବି ମାନସରେ ଏକାଧିକ ଭାବଧାରା (ଯଥା - କ୍ଲାସିକ୍, ନବ୍ୟକ୍ଲାସିକ୍; ରୋମାଣ୍ଟି ଇତ୍ୟାଦି) ର ସମାହାର /

ପ୍ରକାଶ ଦେଖିବାକୁ ମିଳି ପାରେ । ଅଥଚ ତହିଁ ମଧ୍ୟସ୍ଥ ବିରୋଧାଭାଷ ବା କାବ୍ୟିକ ଦ୍ୱନ୍ଦ୍ୱର ଆଭାସ ନ ମିଳିପାରେ । ଏବଂ ସେହି କାରଣରୁ କବି ମାନସରେ ଏହି ଭାବଧାରାଗୁଡ଼ିକରେ ଅନୁବର୍ତ୍ତନରେ ସମୟ ସମୟରେ ବିପରୀତ କ୍ରମ ମଧ୍ୟ ପ୍ରକାଶ ପାଇ ପାରେ । ସେହି କାରଣରୁ ସମୟ ସମୟରେ ବିଭିନ୍ନ ଭାବଧାରାର ଏକ ଅସଂତୁଳନ ଅବସ୍ଥା, ଏକ ଅସମନ୍ୱିତ ଅବସ୍ଥା ମଧ୍ୟ ଦେଖିବାକୁ ମଳିପାରେ ।

ଅଧ୍ୟାରୋପର ବିସ୍ତୃତ ତିନି ଦିଗରେ । କାବ୍ୟ ଚେତନା । କାବ୍ୟ ବସ୍ତୁ । କାବ୍ୟଶୈଳୀ । କାବ୍ୟ ଚେତନାରେ ନିମ୍ନ ଲିଖିତ ବିଭାବ ଅନୁସରଣ କରାଯାଇପାରେ ।

୧. ମାନବ ଚେତନା -

(କ) ମଣିଷ କେବଳ ପ୍ରଣୟପିପାସୁ ନାୟକ ବା ବିଭ୍ରୁପ୍ରାର୍ଥୀ ଭକ୍ତ ନୁହେଁ । (ପୃ. ୨୩୮) ।

(ଖ) ତା' ମଧ୍ୟରେ ଆତ୍ମରକ୍ଷା ପ୍ରବୃତ୍ତି ଛଡ଼ା ଅଛି ଆତ୍ମ-ପ୍ରକାଶ ଆଉ ଆତ୍ମ-ପ୍ରସାରଣର ପ୍ରବୃତ୍ତି । (ପୃ. ୨୩୮) ।

(ଗ) ସେହି ହେତୁ ସେ ପ୍ରଜ୍ଞା ଆଉ ସାଂସ୍କୃତିକ ଆନ୍ଦୋଳନର ବାର୍ତ୍ତାବହ । (ପୃ.୨୩୮) ।

(ଘ) ନାରୀ ଅବଳା / ଅବଗୁଣ୍ଠିତା / ପତିତା ନୁହେଁ । ସେ ଜାୟା, ଜନନୀ, ମୁକ୍ତି ଦାୟିନୀ । (ପୃ. ୨୪୧, ୨୪୨) ।

(ଙ) ମଣିଷ ଅମୃତ- ଦୀପ୍ତ ସନ୍ତାନ । ତା'ର ମରଣ ନାହିଁ । (ପୃ. ୨୪୧)

୨. ପ୍ରେମ ଚେତନା -

(କ) ନିଷ୍କପଟ ପ୍ରେମ (ପୃ. ୨୧୯)

(ଖ) ପ୍ରଣୟ ଅନୁଭୂତି (ପୃ ୨୧୬)

(ଗ) ପ୍ରଣୟ ସ୍ମୃତି / ମାୟା (ପୃ. ୨୧୭)

(ଘ) ପ୍ରଣୟ ସାଧନା (ପୃ ୨୧୬)

(ଙ) ଦେହ ଅପେକ୍ଷା ମନ, ମିଳନ ଅପେକ୍ଷା ବିରହ (ପୃ. ୨୧୪, ୨୧୭)

(ଚ) ପ୍ରବୃତ୍ତି ପ୍ରବାହର ପ୍ରଖରତା (ପୃ୨୧୪) ।

(ଛ) ପ୍ରଣୟ / ପ୍ରେମର ତାତ୍ତ୍ୱିକ ଅନ୍ୱେଷଣ (ପୃ. ୨୧୮)

(ଚ) ପ୍ରୀତି ଶକ୍ତି - ଏହା ଅକ୍ଷୟ, ଅମର (ପୃ.୨୧୫, ୨୧୬)

(ଛ) ଅନୁଭୂତି / ଅଭିଜ୍ଞତାକୁ ନିଜର ସ୍ୱତନ୍ତ୍ର ରୀତିରେ ପ୍ରକାଶ (ପୃ. ୨୧୪) ।

୩. ପ୍ରକୃତି ଚେତନା -

(କ) ପ୍ରକୃତି ସଂପର୍କରେ ସ୍ୱତନ୍ତ୍ର ଅଭିରୁଚି (ପୃ. ୨୨୦)

(ଖ) ପ୍ରକୃତିର ସ୍ୱତନ୍ତ୍ର ଆସନ (ପୃ. ୨୨୦)

(ଗ) ପ୍ରକୃତିର ପ୍ରାଣସତ୍ତା / ପ୍ରାଣ ଶକ୍ତି (ପୃ.୨୨୧) ।

(ଘ) ପ୍ରକୃତିରେ ଆନନ୍ଦ / ବିସ୍ମୟ / ରହସ୍ୟ / ଐକ୍ୟତାନର ସନ୍ଧାନ (ପୃ. ୨୨୩-୪)

(ଚ) ପ୍ରକୃତିର ଭାବରୂପ / ବିଷାଦ / ଉଦାସୀନତା (ପୃ. ୨୨୫, ୨୩୦)

(ଛ) ଭୌଗୋଳିକ ପ୍ରକୃତି / ଆଞ୍ଚଳିକ ମାହାତ୍ମ୍ୟ (ପୃ. ୨୨୬) ।

(ଜ) ପଲ୍ଲୀପ୍ରାଣତା (ପୃ. ୨୩୧)

୪. ଦେଶାତ୍ମ ବୋଧ

(କ) ସ୍ୱଦେଶିକ ଐକ୍ୟର ମହତ୍ତ୍ୱ, ଦେଶପ୍ରେମ, ଜାତୀୟତା ବୋଧ (ପୃ. ୨୩୨) ।

(ଖ) ପରାଧୀନତାର ଅପମାନ / ଗ୍ଲାନିବୋଧ (ପୃ.୨୩୫) ।

(ଗ) ସ୍ୱାଧୀନ ଚିତ୍ତବୃତ୍ତିର ବିକାଶ / ଆତ୍ମ ଶକ୍ତିରେ ବିଶ୍ୱାସ ସଂଚାର ( ପୃ. ୨୩୫) ।

(ଘ) ମାତୃଭୂମି / ମାତୃଭାଷାର ଉଦ୍‌ବୋଧନ (ପୃ. ୨୩୬)

(ଙ) ଦେଶ ଗୌରବ / ଜାତୀୟ ଇତିହାସର ଉଦ୍‌ବୋଧନ / ଦେଶାତ୍ମବୋଧ ଭାବନାର ସଂପ୍ରସାରଣ (ପୃ.୨୩୭)

ସେହିପରି କାବ୍ୟ-ଶୈଳୀର ଅନୁବର୍ତ୍ତନରେ ନିମ୍ନଲିଖିତ ବିଭାବ ଅନୁସରଣ କରାଯାଇ ପାରେ -

(କ) ରୀତିବଦ୍ଧ କାବ୍ୟ - ଚତୁଷ୍ପଦୀ କବିତା (ଶୁଦ୍ଧ ସେକ୍‌ସ୍‌ପିରୀୟ ରୀତି, ଇଂରାଜୀ ରୀତି ଓ ମିଶ୍ରିତ ରୀତି) (ପୃ. ୨୪୯, ୨୬୧) ।

(ଖ) ସଂବୋଧ ଗୀତି - (କୋଇଲି / ଚଉତିଶା / ସଂଦେଶ ଗୀତିକା ଇତ୍ୟାଦି କାବ୍ୟ ପରମ୍ପରାର ଦାୟାଦ ନୁହେଁ) ଏଥିରେ ଦେଖୁ ଗଭୀର ଆତ୍ମଗତ ଅନୁଭୂତିର ନୂତନ ପର୍ଯ୍ୟାୟ / ପ୍ରକାଶ, ଭାବସ୍ଫୀତ ଆତ୍ମାର ଉନ୍ମୁକ୍ତ ଆତ୍ମପ୍ରକାଶ, ଅନ୍ତର୍ଦୃଷ୍ଟିର

ସ୍ୱଚ୍ଛତା, ପ୍ରକୃତିବୋଧର ନିର୍ମଳତା, ଭଗବତ ଉପଲବ୍ଧିର ନିବିଡ଼ତା, ଚିନ୍ତାର ବ୍ୟାପକତା ଆଉ ଆତ୍ମିକ ଭାବର ଉଲ୍ଲାସ (ପୃ. ୨୬୨, ୨୬୯) ।

(ଗ) ଶୋକ ଶ୍ଳୋକ - ଏଥିରେ ଦେଖୁ ଶୋକାନୁଭୂତି ସହ ମନନଶୀଳତା, ଜୀବନ/ ମୃତ୍ୟୁର ତତ୍ତ୍ୱକୈନ୍ଦ୍ରିକ ଭାବାବେଗ,ବ୍ୟକ୍ତି ସହ ନୈବ୍ୟକ୍ତିକ ସତ୍ତାର ସମନ୍ୱୟ, ମାର୍ମିକ ଅଭିବ୍ୟକ୍ତି । କ୍ରମ ବିବର୍ତ୍ତନ ହୋଇ ଏହା କ୍ରମେ ଓଡ଼ିଆ କାବ୍ୟ ଶୈଳୀର ନିଜସ୍ୱ ଧାରାରେ ପରିଣତ ହୋଇଛି (ପୃ ୨୨୫, ୨୬୯) ।

(ଘ) ଗାଥା କବିତା - କିମ୍ବଦନ୍ତୀ, ପ୍ରବାଦ, ଲୋକକଥା - ଭିତ୍ତିକ (ପୃ. ୨୭୬) ।

(ଙ) ମହାକାବ୍ୟ - (ପୃ. ୨୮୦)

(ଚ) ଛନ୍ଦ - ଏ ପର୍ଯ୍ୟାୟରେ ଦେଖୁ ଅମିତ୍ରାକ୍ଷର ଛନ୍ଦ - ଯାହାର ସଂସ୍କୃତର ମେଳହୀନ କବିତା ସହ ସମ୍ପର୍କ ନାହିଁ । ଦେଖୁ ଛନ୍ଦର ସ୍ୱଚ୍ଛନ୍ଦତା, ସ୍ପନ୍ଦକଳା, ପଙ୍‌କ୍ତି ପର୍ବର ଲାଳିତ୍ୟ, ଭାବାନୁସାରୀ ଭାଷାର ବିନ୍ୟାସ, ଭାବାନୁସାରୀ ଛନ୍ଦଗତି ଇତ୍ୟାଦି (ପୃ. ୨୯୦,୨୯୩) ।

କାବ୍ୟ ବସ୍ତୁର ବିଭାଗ ଅନୁଶୀଳନ ଏକ ବ୍ୟାପକ ଭୂମି ଉପରେ ପର୍ଯ୍ୟବସିତ। କଥାବସ୍ତୁ, ଚରିତ୍ର । ଚରିତ୍ରର ବ୍ୟକ୍ତିତ୍ୱ ଓ ପରିଣତି, ପରିବେଶ, ସେଗୁଡ଼ିକର ପ୍ରାଣଶୀଳତା - ଏ ସବୁଥିରେ ଆମଦାନି ହୋଇଥିବା ଭାବ ବସ୍ତୁ ଦେଖିବାକୁ ମିଳେ । ଏହି ଭାବ ବସ୍ତୁ ଉପରେ ସ୍ଥାନୀୟ ଇତିହାସ, ଆଖ୍ୟାୟିକା, କିମ୍ବଦନ୍ତୀ, ପ୍ରବାଦ, ପରମ୍ପରା ଇତ୍ୟାଦି ମିଶିଯାଇ ଏକ ପ୍ରକାରର ଗ୍ରହଣୀୟ ପରିବେଶ ସୃଷ୍ଟି କରାଯାଇଛି ।

ନିମ୍ନରେ ଏହା ଏକ ଅନୁଶୀଳନର ଉଦ୍ୟମ କରାଯାଇଛି । ( ଏହି ଅନୁଶୀଳନ ଅସମାପ୍ତ ଓ ଅସଂପୂର୍ଣ୍ଣ)

| | ପ୍ରକାଶ କାଳ | ପୁସ୍ତକ / କବିତା କାବ୍ୟ | ଲେଖକ | ପ୍ରଥମ ପ୍ରକାଶ (ପତ୍ର/ ପତ୍ରିକା) | ଭାବ ପକାଇଥିବା ପାଶ୍ଚାତ୍ୟ କବି | ସୂଚନା |
|---|---|---|---|---|---|---|
| (୧) | (୨) | (୩) | (୪) | (୫) | (୬) | (୭) |
| ୧ | ୧୮୬୮ | ଭ୍ରମ ଭଞ୍ଜନ | ଜଗମୋହନ | - | ଥୋମାସ୍ ପାର୍‌ନେଲ | ପୃ୭୮,୯୨ |
| | | ଦର୍ଶନଚନ୍ଦ୍ର | ଗୌରିଚରଣ ମହାନ୍ତି | | | |
| ୨. | ୧୮୬୯ | ଓଡ଼ିଆ ପଦ୍ୟପାଠ | ଶ୍ୟାମ ପ୍ରସନ୍ନ ମୁଖୋପାଧ୍ୟାୟ | | | |

| | | | | | | |
|---|---|---|---|---|---|---|
| ୩. | ୧୮୭୩ | ନିର୍ଜନ ଦୀପରେ ନିର୍ବାସିତର ବିଳାପ, ଶ୍ମଶାନ ନିଶିଥ ଚିନ୍ତା | ମଧୁସୂଦନ | ଉତ୍କଳ ଦର୍ପଣ | କାଉପର, ସାର୍ଲେ ଗ୍ରେ, ଫ୍ରାଙ୍କୋଇଜ ବ୍ରୁଘେ, ସେକ୍ସ୍‌ପିଅର କଲେରିଜ, ସେଲି | ପୃ. ୨୧-୨୪ |
| ୪. | ୧୮୭୪ | ହିତପାଠ | ଗୋବିନ୍ଦଚନ୍ଦ୍ର ମହାପାତ୍ର | - | | |
| ୫. | ୧୮୭୬ | କବିତାବଳୀ | ରାଧାନାଥ ମଧୁସୂଦନ | - | ଡିରୋଜିଓ ଥୋମାସମୁର ସେଲି, ୱାର୍ଡ୍‌ସ୍‌ୱାର୍ଥ, ଗ୍ରେ, ଟେନିସନ୍, କାଉପର, ସାର୍ଲେ | ପୃ.୮୧-୮୫ |
| ୬. | ୧୮୭୮ | ପ୍ରେମତରଙ୍ଗାଥା | ରାମଶଙ୍କର | ଉତ୍କଳ ମଧୁପ | ଟେନିସନ, ଗୋଲ୍ଡ଼ ସ୍ମିଥ୍, ସେକ୍ସ୍‌ପିଅର | ପୃ ୨୮-୩୫ ୯୩ |
| ୭. | ୧୮୮୫ | କେଦାରଗୌରୀ | ରାଧାନାଥ | - | ଓଭିଡ୍, ଚସର୍, ସେକ୍ସପିଅର | ପୃ୯୪-୧୦୨ |
| ୮. | ୧୮୮୬ | ଚନ୍ଦ୍ରଭାଗା | ରାଧାନାଥ | - | ଓଭିଡ୍ | ପୃ ୧୦୩-୧୧୦ |
| ୯. | ୧୮୮୭ | ନନ୍ଦିକେଶ୍ବରୀ | ରାଧାନାଥ | - | ଓଭିଡ୍, ବାଇରନ୍ | ପୃ୧୧୧-୧୧୬ |
| ୧୦. | ୧୮୮୮ | ଉଷା | ରାଧାନାଥ | - | ଓଭିଡ୍, ଉଇଲିଅମ୍ ମରିସ୍ | ୧୧୬-୧୨୩ |
| | | ନବୋଦ୍ୟମ | ଚନ୍ଦ୍ରମୋହନ ମହାରଣା | - | - | - |
| ୧୧. | ୧୮୯୦ | ପାର୍ବତୀ | ରାଧାନାଥ | ସମ୍ବଲପୁର ହିତୈଷିଣୀ ପତ୍ରିକା | ଏଣ୍ଟିଓକିରେ ସେପାଲଟି, ମାଦଳାପାଞ୍ଜି ହୋମର, ଏସ୍କାଇଲସ ସେକ୍ସପିଅର, ସେଲି | ପୃ୧୨୬-୧୨୪ ୧୩୪ |
| ୧୨. | ୧୮୯୧ | ଚିଲିକା | ରାଧାନାଥ | ଉତ୍କଳପ୍ରଦୀପ | ସ୍କଟ, ବାଇରନ୍, ସେଲି | ପୃ୧୩୫-୧୪୨ |
| ୧୩. | ୧୮୯୨ | ମହାଯାତ୍ରା | ରାଧାନାଥ | | ହୋମର, ଭର୍ଜିଲ୍ ଦାନ୍ତେ, ମିଲଟନ୍, ଟେନିସନ୍, ସ୍ପେନ୍‌ସର ବାଇରନ୍, ଲର୍ଡ଼ ମାକଲେ | ପୃ୧୪୩-୧୬୬ |
| | | ଲକ୍ଷ୍ମୀ | ରାମକୃଷ୍ଣ ସାହୁ | ଉତ୍କଳପ୍ରଦୀପ | | |

| | | | | | | |
|---|---|---|---|---|---|---|
| ୧୪. | ୧୮୯୨-୯୪ | ନିଦାଘ ନିଶିଥସ୍ୱପ୍ନ | | | | |
| | | ନେପୋଲିଅନ ବୋନାପାର୍ଟ | ଫକୀରମୋହନ | ଉତ୍କଳପ୍ରଦୀପ | | |
| | | ଜହ୍ନମାମୁଁ | | | | |
| ୧୫. | ୧୮୯୩ | ଅଂଶୁପା | ଦାମୋଦର ମିଶ୍ର | | | |
| ୧୬. | ୧୮୯୪ | ଦରବାର | ରାଧାନାଥ | ସମ୍ବଲପୁର ହିତୈଷିଣୀ | ପୋପ୍, ଡ୍ରାଇଡେନ୍ପୃ ୧୬୮-୯ ବାଇରନ୍ | |
| | | ଭାରତୀରୋଦନ | ଗଙ୍ଗାଧର ମେହେର | | | |
| | | ଉପହାର | ଫକୀରମୋହନ | | | |
| ୧୭. | ୧୮୯୪-୯୫ | ଯଯାତି କେଶରୀ | ରାଧାନାଥ | ସମ୍ବଲପୁର ହିତୈଷିଣୀ | ସେକ୍ସପିଅର ପୃ୧୬୫-୬ | |
| ୧୮. | ୧୮୯୫ | କବିତାମଞ୍ଜରୀ | ଗୋପାଳବଲ୍ଲଭ | | ସନେଟ ଓ ଅମିତ୍ରାକ୍ଷରଛନ୍ଦ | |
| | | ପୁଷ୍ପମାଳା | ଫକୀରମୋହନ | | ବାଇରନ୍ | |
| ୧୯. | ୧୮୯୮ | ଗ୍ରାମ ଚାଟଶାଳୀ | | ସମ୍ବଲପୁର ହିତୈଷିଣୀ | ଗୋଲ୍ଡସ୍ମିଥ୍ପୃ.୩୭-୧୮୮ | |
| | | ଗ୍ରାମ ଶ୍ମଶାନ | | | | |
| | | ରାଜପୁତବାଳିକା | ନନ୍ଦକିଶୋର | | | |
| | | କୃଷ୍ଣକୁମାରୀ | | | ସ୍କଟ୍ | ୩୭ |
| | | ଉପବନ ଭାବନା | | ଉତ୍କଳସାହିତ୍ୟ | ଆଣ୍ଡ୍ରୁ ମାରଭେଲ | ୪୭ |
| | | ପଲ୍ଲୀଚିତ୍ର | | | ଗୋଲଡ୍ସ୍ମିଥ | ୧୮୮ |
| | | କାକବାର୍ତ୍ତା | | | ଟେନିସନ୍ | ୧୮୯ |
| ୨୦. | ୧୯୦୦ | ଓଡ଼ିଆ ଲଳନା | ନନ୍ଦକିଶୋର | ଉତ୍କଳସାହିତ୍ୟ | ଆଲ୍ଫ୍ରେଡ୍ଅଷ୍ଟିନ୍ | ୪୬ |
| ୨୧. | ୧୯୦୧ | କୃଷ୍ଣକୁମାର | ନନ୍ଦକିଶୋର | | ମାକଲେ | ୧୯୧ |
| | | ବସନ୍ତକୋକିଳ | ନନ୍ଦକିଶୋର | | ସେଲି, ଟେନିସନ୍୧୮୯-୧୯୦ କାଉପର, ରବର୍ଟ ସାଉଦି, ସେକ୍ସପିଅର କିଟ୍ସ୍, ରବର୍ଟ ବର୍ଣ୍ଣସ ୱ୍ୟାଡ୍ସୱାର୍ଥ | |
| ୨୨. | ୧୯୦୨ | ଚାରୁଚିତ୍ର | ନନ୍ଦକିଶୋର | | ମଣ୍ଟଗୋମାରୀ, ଟେନିସନ୍ ସ୍କଟ, ଏଫହିମାନ୍ସ | ୧୯୦ |

| | | | | | |
|---|---|---|---|---|---|
| ୨୩. ୧୯୦୬-୮ | ଶର୍ମିଷ୍ଠା | ନନ୍ଦକିଶୋର | ଉତ୍କଳସାହିତ୍ୟ | ସେକସ୍‌ପିଅର | ୪୬ |
| ୨୪. ୧୯୦୮ | ମେଘାସନ | ଚିନ୍ତାମଣି | | | |
| | ଅବସର ବାସରେ | ଫକୀରମୋହନ | | - | - |
| ୨୫. ୧୯୦୯ | ଆଦର୍ଶତାରା | ନୀଳକଣ୍ଠ | | - | - |
| ୨୬. ୧୯୧୦ | ନରାଜ | ମୃତ୍ୟୁଞ୍ଜୟରଥ | | - | - |
| | ଶେଷ ବନ୍ଦୀ ଭାରତୀ | ଅଜୟଚନ୍ଦ୍ର | | ସ୍କଟ୍ | ୨୦୬ |
| | କର୍ମୀ / ପାଗଳ | ଲକ୍ଷ୍ମୀକାନ୍ତ | | ଲଙ୍ଗଫେଲୋ, ସେକ୍‌ସପିଅର | ୨୦୮ |
| | ବୈତରଣୀ | ଭାଗୀରଥୀ ମହାପାତ୍ର | | | |
| ୨୭. ୧୯୧୧ | ପ୍ରକୃତି | ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ | | - | - |
| | ବିଧୁ ଓ ବାସନ୍ତୀ | ନୀଳକଣ୍ଠ | - | ଗୋଲ୍‌ଡସ୍ମିଥ୍ | ୧୯୩ |
| | ବର୍ଷର ଶେଷ ଗୋଲାପ | ନୀଳକଣ୍ଠ | - | ଥାମାସ୍‌ମୁର | ୧୯୩ |
| ୨୮. ୧୯୧୨ | ବୈଦିକ ପ୍ରକୃତି | ସଚ୍ଚିଦାନନ୍ଦ ତ୍ରିଭୁବନଦେବ | - | ବାଳଗଙ୍ଗାଧର ତିଳକ | ୧୮୬ |
| | ଯୌନ ନିର୍ବାଚନ | ଏଜନ | | | ୧୮୬ |
| | ପୂଜାଫୁଲ | ଫକୀରମୋହନ | | | |
| | ଧୂଳି | ଫକୀରମୋହନ | | | |
| ୨୯. ୧୯୧୪ | ଉତ୍କଳ ବିଜୟ | ତାରିଣୀ ଚରଣ | - | ଲର୍ଡ଼ ଲିଟନ୍ | ୨୦୮ |
| ୩୦. ୧୯୧୬ | ଅଶ୍ରୁ | ନୀଳକଣ୍ଠ | | ଟେନିସନ୍ | ୧୯୩ |
| ୩୧. ୧୯୧୭ | ଶ୍ୱେତଦ୍ୱୀପ ବୀଣା | ଅଜୟଚନ୍ଦ୍ର | ଉତ୍କଳସାହିତ୍ୟ | ସ୍କଟ୍, କାଉପର, ଲଙ୍ଗ୍‌ଫେଲୋ, ଆଡ଼ିସନ୍, ହେମାନସ୍, ହୋମର ପାରନେଲ, ଥୋମାସ୍ ମୁର, ବାଇରନ୍, ସାଉଦି, ଓ୍ୱାଡ଼ସ୍‌ୱାର୍ଥ, ସେଲି, ଲଭଲେସ୍ ପ୍ରଭୃତି | ୪୭, ୨୦୭ |

| | | | | | | |
|---|---|---|---|---|---|---|
| ୩୨. | ୧୯୧୮ | ମହେନ୍ଦ୍ର | ଚିନ୍ତାମଣି | - | - | - |
| ୩୩. | ୧୯୧୮-୯ | ପ୍ରଣୟିନୀ | ନୀଳକଣ୍ଠ | - | ଟେନିସନ୍ | ୧୯୩ |
| ୩୪. | ୧୯୧୯ | କୋଣାର୍କେ | ନୀଳକଣ୍ଠ | | ଓ୍ୱାର୍ଡ୍‌ସୱାର୍ଥ, ସ୍କଟ, କୋଲେରିଜ୍ | ୧୯୭-୧୯୯ |
| ୩୫. | ୧୯୨୦ | ଖାରବେଳ | ନୀଳକଣ୍ଠ | - | - | - |
| | | ବିଜନପଲ୍ଲୀ | ଚନ୍ଦ୍ରମଣିଦାସ | - | ଗୋଲଡ୍‌ସ୍ମିଥ୍ | ୨୦୮ |
| ୩୬. | ୧୯୨୬ | ପଦ୍ମପାଖୁଡ଼ା | ପଦ୍ମଚରଣ | - | ରୋଜେଟି, ଓ୍ୱାର୍ଡ୍‌ସ୍‌ଓ୍ୱାର୍ଥ, ବର୍ଣ୍ଣସ୍ | ୨୦୪ |
| ୩୭. | ୧୯୩୧ | ଗୋଲାପଗୁଚ୍ଛ | ପଦ୍ମଚରଣ | - | ଏଜନ | ୨୦୪ |
| ୩୮. | ୧୯୩୨ | ଚୟନିକା | ଗୋଦାବରୀଶ | ଟେନିସନ୍, | ହେମାନ୍ସ୍, | ୨୦୧-୨୦୩ |
| | | ଆଲେଖିକା | ଗୋଦାବରୀଶ | | କାଉପର, କାମ୍ପବେଲ୍, ସାଉଦର, ଓ୍ୱାର୍ଡ୍‌ସୱାର୍ଥ, ଗୋଲ୍ଡ଼ ସ୍ମିଥ୍, ସ୍କଟ, ଡୋବେଲ, ହଣ୍ଟ, ବାଇରନ୍, ଲିଙ୍ଗ୍‌ଫେଲୋ, ମାକଲେ, ପର୍ସି | |
| ୩୯. | ୧୯୪୦ | ସୂର୍ଯ୍ୟମୁଖୀ | ପଦ୍ମଚରଣ | - | ରୋଜେଟି, ଓ୍ୱାର୍ଡ୍‌ଓ୍ୱାର୍ଥ, ବର୍ଣ୍ଣସ୍ | ୨୦୪ |
| | ଇତ୍ୟାଦି | ଇତ୍ୟାଦି | ଇତ୍ୟାଦି | | | |

ଏହାଛଡ଼ା ମଧୁସୂଦନଙ୍କ "ନଦୀପ୍ରତି, ଅକାଶପ୍ରତି, ଆତ୍ମସମର୍ପଣ, ଉଦ୍‌ବୋଧନ, ପରଲୋକ ବାସିନୀ ପ୍ରତି, ହୃଦୟ ସଙ୍ଗୀତ, ଯୌବନର ସ୍ୱପ୍ନ, ନବ ବସନ୍ତ ଭାବନା, ନବଜାତ ଶିଶୁ ଦର୍ଶନରେ," ଟେନିସନ୍, ସେଲି, କାଉପର୍, ମିଲ୍‌ଟନ୍, ଦାନ୍ତେ, କିଟ୍‌ସ୍, କୋଲେରିଜ ଓ ଓ୍ୱାଡ଼ସ୍‌ଓ୍ୱାର୍ଥଙ୍କ" ପ୍ରଭାବ; ମଣିଚରଣ ମହାପାତ୍ରଙ୍କ "ଜୀବନ ସଙ୍ଗୀତ, କୃଷକ ପଲ୍ଲୀ ମଧ୍ୟସ୍ଥ ସମାଧି କ୍ଷେତ୍ର, ସୁରଲକ୍ଷ୍ମୀ" ରେ ଲଙ୍ଗ୍‌ଫେଲୋ, ଗ୍ରେ, କାମ୍ପବେଲ୍ ଓ ମିଲଟନ୍‌ଙ୍କ ପ୍ରଭାବ; ଗୋପାଳବଲ୍ଲଭଙ୍କ "କୋଣାର୍କ ଉଷା ଓ ଅନାମ ସୁମନ" ରେ କାମ୍ପବେଲ୍ ଓ ମିଲଟନ୍‌ଙ୍କ ପ୍ରଭାବ; ଗୋପାଳବଲ୍ଲଭଙ୍କ "କୋଣାର୍କ ଉଷା ଓ ଅନାମ ସୁମନ" ରେ କାମ୍ପବେଲ ଓ ମିଲ୍‌ଟନଙ୍କ ପ୍ରଭାବ; ବଡ଼ କୁମାର ବଳଭଦ୍ର ଦେବଙ୍କ "ଭ୍ରାନ୍ତି ହିଲ୍ଲୋଳ" ରେ ସେକ୍‌ସପିଅରଙ୍କ ପ୍ରଭାବ ଓ ଗୋପବନ୍ଧୁଙ୍କ "ବିଶ୍ୱର ମିଳନଚିତ୍ର" ରେ ସେଲିଙ୍କ ପ୍ରଭାବ ପରିଲକ୍ଷିତ ହୁଏ ।

ଉପରୋକ୍ତ ବିବରଣୀ ଓ ଅନୁଶୀଳନୀ ପରିପ୍ରେକ୍ଷୀରେ ଶଂସିତ କାଳରେ "ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟ" ର ଏକ ବିଶ୍ଳେଷଣ କରିବା ପାଇଁ ଉଦ୍ୟମ କରାଯାଇ ପାରେ । ସେ ସଂପର୍କରେ ନିମ୍ନରେ ଦିଆଯାଇଥିବା କେତୋଟି ବିଷୟ ଉଲ୍ଲେଖ ଯୋଗ୍ୟ ।

(କ) ଆମ ସମାଜ ଓ ସାହିତ୍ୟକୁ ଆମଦାନି ହୋଇ ଆସିଥିବା ଭାବପ୍ରବାହ ମଧ୍ୟରେ (୧) ନବ ଜାଗରଣ ଓ ଅଭ୍ୟୁଦୟ (Renaissance) ର ଭାବଧାରା, (୨) ନବ୍ୟ-କ୍ଲାସିକ ଭାବଧାରା, (୩) ନବ ସଂସ୍କାର ଯୁଗର ଭାବଧାରା, (୪) ଅବବୋଦ ଯୁଗ ବା ପ୍ରାକ୍-ରୋମାଣ୍ଟିକ ଭାବଧାରା ଓ (୫) ରୋମାଣ୍ଟିକ ଭାବଧାରା ଦେଖିବାକୁ ମିଳିବ । ସେହିପରି ତା ମଧ୍ୟରେ "ବୈଜ୍ଞାନିକ ବିପ୍ଳବ" ଜନିତ ଭାବଧାରା ଦେଖିବାକୁ ମିଳିବ ନାହିଁ । ସଚ୍ଚିଦାନନ୍ଦ, ତ୍ରିଭୁବନ ଦେବଙ୍କ ମାଧ୍ୟମରେ ସମ୍ବଲପୁର ହିତୈଷିଣୀର ପ୍ରେରଣା ଫଳରେ ପ୍ରକୃତି (୧୯୧୧), ବୈଦିକ ପ୍ରକୃତ (୧୯୧୨), ଯୌନ ନିର୍ବାଚନ (୧୯୧୨), ପ୍ରଭୃତି ଜରିଆରେ ବିଜ୍ଞାନର ଯେଉଁ କେତେକ ଉପାଦାନ ଓ ଯେଉଁ ଭାବପ୍ରବାହ ଆମ ସମାଜ, ସାହିତ୍ୟକୁ ପ୍ରତିସରିତ ହୋଇଥିଲା, ତାହା କ୍ଷଣସ୍ଥାୟୀ ହେବା ଏ ପ୍ରକାରର ନିଶ୍ଚିତ ଥିଲା । ଏହା ପୂର୍ବରୁ ଫକୀରମୋହନଙ୍କ ଜରିଆରେ ବିଦ୍ୟାସାଗରଙ୍କ 'ଜୀବନ ଚରିତ'ର ଅନୁବାଦ ପ୍ରକାଶ ପାଇଥିଲା । ଯହିଁରେ କୁପରନିକସ୍, ଗାଲିଲିଓ ଓ ନିଉଟନ୍ ପ୍ରଭୃତି ଆଠଜଣ ଇଉରୋପୀୟ ବୈଜ୍ଞାନିକଙ୍କ କାହାଣୀ ରହିଥିଲା । କିନ୍ତୁ ଏଇ ଚେତନା ବା ଅବବୋଧ ମଧ୍ୟ କ୍ଷଣସ୍ଥାୟୀ ହେବା ନିଶ୍ଚିତ ଥିଲା । କାରଣ ଏହା ବୈଜ୍ଞାନିକ ବିପ୍ଳବ ନୁହେଁ । ତା' ପଛରେ ବୈଜ୍ଞାନିକ ଦ୍ୟୋତନା ଅବା ମନୋବୃତ୍ତି ନ ଥିଲା । ବୈଜ୍ଞାନିକ ଅବଲୋକନ ନ ଥିଲା ।

(ଖ) ୧୮୬୮ ମସିହାରେ ଓଡ଼ିଆ ଭାଷାର ସ୍ୱତନ୍ତ୍ରତାକୁ ଅସ୍ୱୀକାର କରାଯାଇ ଥିଲା । ସେହି ୧୮୬୮ ମସିହାରେ ଜଗମୋହନଙ୍କ "ଭ୍ରମଭଞ୍ଜନ" ଓ ଶୌରିଚରଣଙ୍କ "ଦର୍ପଣଚନ୍ଦ୍ର" ପ୍ରକାଶିତ । ଜଗମୋହନ ତାଙ୍କର ବାବାଜି ନାଟକରେ ଓଡ଼ିଆ ପାତ୍ରଙ୍କୁ, ବଙ୍ଗାଳି ପାତ୍ରଙ୍କ ସହିତ ବଙ୍ଗଳାରେ ଏବଂ ଇଂରାଜୀ ପାତ୍ରଙ୍କ ସହିତ ଇଂରାଜୀରେ କଥୋପକଥନ କରାଇଥିଲେ । ସୁତରାଂ ୧୮୬୮ ମସିହା ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ବର୍ଷ । ଏହାର ପୃଷ୍ଠଭୂମିରେ ଅଛି ଏକ ନୂତନ ପରମ୍ପରାର ପରିଣତି । କଟକରେ 'ଚାରଟି ସ୍କୁଲ' ସ୍ଥାପନ (୧୮୨୩) । ପୁରୀ ଇଂରାଜୀ ସ୍କୁଲ ପ୍ରତିଷ୍ଠା (୧୮୩୫) । ସମ୍ବଲପୁରରେ ମିସନାରୀ କେନ୍ଦ୍ର ସ୍ଥାପନ (୧୮୩୬) କଟକର ମିସନ୍ ପ୍ରେସ୍ (୧୮୩୭) ଓ ଇଂରାଜୀ ସ୍କୁଲ (୧୮୪୧), ପୁରୀ ଓ ବାଲେଶ୍ୱର ଜିଲ୍ଲାସ୍କୁଲ ପ୍ରତିଷ୍ଠା (୧୮୫୩), ପାରସ୍ପରିକ ଉନ୍ନତି ସଭା (୧୮୫୯), ଉତ୍କଳ ଶୁଭଙ୍କରୀ ପ୍ରକାଶ (୧୮୬୩), କଟକ ପ୍ରିଣ୍ଟିଂ ପ୍ରେସ ପ୍ରତିଷ୍ଠା, ଉତ୍କଳ ଦୀପିକା ପ୍ରକାଶ, ଉତ୍କଳ ଭାଷା

ବିଧାୟିନୀ ସଭା, ଉତ୍କଳ ଭାଷା ଉଦ୍ଦୀପନୀ ସଭା (୧୮୬୬) ଓ ଉତ୍କଳ ଦୀପିକା, ଉତ୍କଳ ପ୍ରିଣ୍ଟିଂ କୋ, ବୋଧଦାୟିନୀ, ସମ୍ବାଦ ବାହିକା ପ୍ରତିଷ୍ଠା / ପ୍ରକାଶ ଇତ୍ୟାଦି ଇତ୍ୟାଦି । ଏହା ନୂତନ ଶିକ୍ଷାର ପରିଣତି ଓ ଆତ୍ମସଂରକ୍ଷଣ ପ୍ରବୃତ୍ତି ।

(ଗ) ଅଭ୍ୟୁଦୟ ଯୁଗର ସବୁ ଖୋଜିଲେ ଆମ ସମାଜ / ସାହିତ୍ୟରେ ପାଇ ପାରିବା ନାହିଁ । ଏ ଯୁଗରେ ଆମେ ମଣିଷ ପାଖକୁ ଆସିଲୁ । କିନ୍ତୁ ସ୍ୱର୍ଗରୁ ମର୍ତ୍ତ୍ୟକୁ ଓହ୍ଲାଇ ପାରିଲୁ ନାହିଁ । ପାଇ ପାରିଲୁ ନାହିଁ । ଧର୍ମ ବନ୍ଧନ ଶିଥିଳ ହୋଇଗଲା ସତ । କିନ୍ତୁ ତା'ର ବନ୍ଧନରୁ ମୁକ୍ତି ପାଇଲୁ ନାହିଁ । ଏ ଦିଗରେ ଆମର ପର୍ଯ୍ୟାପ୍ତ ସଚେତନତା ନଥିଲା । ଅପର ପକ୍ଷରେ ଧର୍ମ-ମୋହ ବଳବତ୍ତର ରହିଲା । ଅନ୍ଧବିଶ୍ୱାସ ହୁଏତ କିଛି ଘୁଞ୍ଚିଯାଇ ସରଳ ବିଶ୍ୱାସ ଆସିଲା । କିନ୍ତୁ "ଯୁକ୍ତି" ଆସି ପାରିଲା ନାହିଁ । "ଆକସ୍ମିକତା" ବା ଦଇବ ହୁଏତ କିଛି ପରିମାଣରେ ଅପସରି ଗଲା । କିନ୍ତୁ "ନିୟମ" ବା "କାର୍ଯ୍ୟ-କାରଣ" ର ଭାବ-ବୃତ୍ତି ଆସିପାରିଲା ନାହିଁ । ଋଷିଙ୍କ ସୂକ୍ତ ରହିଲା । ଦାର୍ଶନିକଙ୍କ ଆପ୍ତ ବଚନ ରହିଲା । କିନ୍ତୁ ଦାର୍ଶନିକ ଆତ୍ମ-ପ୍ରକାଶ କରି ପାରିଲେ ନାହିଁ" ବୈଜ୍ଞାନିକ ରୂପରେ । ପୁଣି ଅଭ୍ୟୁଦୟ ଯୁଗର ଅନ୍ୟତମ ବିଭାବ "ଅତୀତ ପ୍ରତି ସିଂହାବଲୋକନ" ବି ପର୍ଯ୍ୟାପ୍ତ ପରିମାଣରେ ରହିଲା ନାହିଁ । ଆମ ସାହିତ୍ୟରେ 'ଅଭ୍ୟୁଦୟ' ର ପ୍ରଭାବ ସମୀକ୍ଷା କଲାବେଳେ ଇଉରୋପୀୟ ରେନେସାଁର ଉପରୋକ୍ତ ବିଭାବ ଓ ଆମ ସମାଜରେ ତା'ର ଉପରୋକ୍ତ ଘଟାନ୍ତର ପ୍ରତି ଦୃଷ୍ଟି ରଖିବାକୁ ପଡ଼ିବ ।

(ଘ) ନବ୍ୟ-କ୍ଲାସିକ୍ ଯୁଗର ପ୍ରଭାବ ସମ୍ବନ୍ଧରେ ବି ସେଇ କଥା କୁହାଯାଇ ପାରେ । ଅନ୍ୟ ପରିଭାଷାରେ ନବ୍ୟ-କ୍ଲାସିକ୍ ଯୁଗକୁ "ଯୁକ୍ତିର ଯୁଗ" ବୋଲି କୁହାଯାଇଥାଏ । ଆମ ସମାଜରେ "ଯୁକ୍ତିର ଯୁଗ" ସଚେତନ ଭାବେ ଆସି ନାହିଁ କହିବାକୁ ହେବ । କିନ୍ତୁ ସ୍ୱାଭାବିକ ଭାବରେ, ବିଚାର ସମ୍ମତ ଭାବରେ ଘଟଣାବଳୀକୁ ଦେଖିବାର ଭାବଧାରା ଆମଦାନି ହୋଇଛି । "ପ୍ରଜ୍ଞା"ର ସାମର୍ଥ୍ୟ ସମ୍ବନ୍ଧରେ ସଚେତନତା ଆସିଛି । "ମନ" ର କ୍ଷମତା ସମ୍ବନ୍ଧରେ ସଚେତନତା ଆସିଛି । କିନ୍ତୁ "ପ୍ରଜ୍ଞା" ଓ "ମନ" ଉପରେ ସର୍ବଦା ରହିଛି "ଭୂମା" । ବ୍ରହ୍ମ । ତୁରୀୟ ଚେତନା । ଭାରତୀୟ କାବ୍ୟତତ୍ତ୍ୱରେ ରୂପକ, ଉପରୂପକ, ରସ, ନାୟକ-ନାୟିକା ବିଭାଗ ଉପମା ଅଳଙ୍କାର ପ୍ରଭୃତିର ଚର୍ଚ୍ଚା ମଧ୍ୟରେ ଯେଉଁ ନିୟମ ଓ ରୀତି-ବନ୍ଧନ ସୃଷ୍ଟି ହୋଇଥିଲା, ସେଇ ଫର୍ମୁଲା ଓ ଗୁଳା ବିରୁଦ୍ଧରେ ସଚେତନ ଭାବେ ଅଶ୍ୱସ୍ତି / ଅସନ୍ତୋଷ ପ୍ରକାଶ ପାଇ ନାହିଁ । ତାହା ନୂତନ ଅଧାରୋପ ଫଳରେ କ୍ରମେ ଅସ୍ୱଷ୍ଟରୁ ଅସ୍ପଷ୍ଟତର ହୋଇଯାଇଛି । ପୁରାତନ ନନ୍ଦନ ତତ୍ତ୍ୱର ବିକଳ୍ପ ସଚେତନ ଭାବେ ସୃଷ୍ଟି ହୋଇନାହିଁ । ସୁତରାଂ କୁହାଯାଇ ପାରେ ସେ ଆମ ସାହିତ୍ୟରେ ନବ-ସଂସ୍କାର ଯୁଗ (Age of Enlightenment) ଆସିଛି

ଅଲକ୍ଷ୍ୟରେ । ସନ୍ତର୍ପଣରେ । ଠିକ୍ ଭାବେ କହିବାକୁ ଗଲେ, ଅଧ୍ୟାରୋପ ଫଳରେ ନବସଂସ୍କାର ଯୁଗ, ଅବବୋଧର ଯୁଗ ଓ ପରିବର୍ତ୍ତନର ଯୁଗ ପ୍ରାୟ ଏକ ସମୟରେ ଆତ୍ମପ୍ରକାଶ କରିଛି । ଗୋଟିଏ ଅନ୍ୟଟିର ପରିଣତି ଭାବରେ ନୁହେଁ । ସୁତରାଂ ଏହାର ପ୍ରାୟ ସହାବସ୍ଥାନ ଦେଖିବାକୁ ମିଳିବ ଆମ ସାହିତ୍ୟରେ ଏବଂ ଏହି ବିଭାବ ଗୁଡ଼ିକର ଏକ ସାମଗ୍ରିକ ପରିଣତି (Resultant) ଦେଖିବାକୁ ମିଳିବ । ଫସଲ ଦେଖିବାକୁ ମିଳିବ । ବୁଆ ନୁହେଁ, ରୁଆ ଫସଲ ।

(ଙ) ଏସଂକ୍ରାନ୍ତରେ ମନେ ରଖିବାକୁ ହେବ ଯେ ଆମ ସମାଜରେ "ଶିଳ୍ପବିପ୍ଳବ" ଶଂସିତ କାଳ ମଧ୍ୟରେ ଆସି ନଥିଲା । ଅଥଚ ତା'ର କେତେକ ବିଭାବ ଆମ ସାହିତ୍ୟକୁ ଆମଦାନି ହୋଇ ଆସିଥିଲା । ତେଣୁ ଏହି ବିଭାବଗୁଡ଼ିକର ଆତ୍ମପ୍ରକାଶକୁ ଏକ କୃତ୍ରିମ ବିକାଶ ବୋଲି କହିବାକୁ ପଡ଼ିବ ।

ସେହିପରି ଆମ ସାହିତ୍ୟରେ "ରୋମାଣ୍ଟିକ-ଚେତନା" ର ଅଭ୍ୟୁଦୟ "ଯୁକ୍ତି-ବିରୋଧୀ" ପ୍ରବଣତାର ପରିଣତ ନୁହେଁ । ମାନସିକ-ମାଧ୍ୟାକର୍ଷଣ ତତ୍ତ୍ୱର ବିରୋଧ ବିକାଶ ନୁହେଁ । ପ୍ରଚଳିତ ନନ୍ଦନ ତତ୍ତ୍ୱର ବିରୋଧୀ ନୂତନ ରୁଚିର ପ୍ରବର୍ତ୍ତନ ନୁହେଁ । "କଳ୍ପନା" ଓ "ପ୍ରତିଭା" ସମ୍ବନ୍ଧରେ ସଚେତନ ଭାବେ କ୍ରମେ ବିବର୍ତ୍ତିତ ଏକ ନୂତନ ଚେତନା ନୁହେଁ । "ପ୍ରକୃତି ପ୍ରତ୍ୟାବର୍ତ୍ତନ" ହୁଏତ ଅଛି । କିନ୍ତୁ ଏହା ଆଦିମ ସମ୍ବେଦନାର ନିରୋଳା ରୂପ ଖୋଜିବା ପ୍ରବଣତା ନୁହେଁ । ହୃଦୟର ଝଙ୍କାର ହୁଏତ ଦେଖିଲୁ । କିନ୍ତୁ ଏହା ଯୁକ୍ତି ଆଉ ବିଚାର ବିରୋଧରେ ଯୁଦ୍ଧ ଘୋଷଣା ନୁହେଁ । ଏକ ସ୍ୱତଃ-ସ୍ଫୂର୍ତ୍ତ ସ୍ୱଚ୍ଛନ୍ଦ ପ୍ରବାହ ନୁହେଁ । କିଛି ପରିମାଣରେ ରହସ୍ୟମୟତା ହୁଏତ ଅଛି । କିନ୍ତୁ ଆମର ସ୍ୱକୀୟ ସଂସ୍କୃତିର ପ୍ରାରବଧ ଏହା ଉପରେ ଭାରି ବୋଝ ହୋଇ ରହିଛି । ଜାତୀୟତା-ବୋଧ ଅଛି ଏବଂ ଏହା ଆସିଛି ଆମରି ଜାତୀୟ ଆବଶ୍ୟକତାରୁ ।

(ଚ) ଇଂରାଜୀ ଶିକ୍ଷା ଓ ପାଶ୍ଚାତ୍ୟ ପ୍ରଭାବ କଥା କହିଲା ବେଳେ, ଶିକ୍ଷା ଜରିଆରେ ଯେଉଁ ପ୍ରଭାବ ଆସିଛି, ତା'ର ଏକ ସ୍ୱତନ୍ତ୍ର ଆଲୋଚନାର ଆବଶ୍ୟକତା ଥିଲା । ତେଣୁ ଶଂସିତ କାଳର ପାଠ୍ୟକ୍ରମ (ସ୍କୁଲ ଓ କଲେଜ ସ୍ତରରେ) ଓ ପାଠ୍ୟ ପୁସ୍ତକରେ ସ୍ଥାନ ପାଇଥିବା ବିଷୟବସ୍ତୁ ଏବଂ ତତ୍‌ସଂପୃକ୍ତ ପାଶ୍ଚାତ୍ୟ କବିମାନଙ୍କର ଏକ ସ୍ୱତନ୍ତ୍ର ଆଲୋଚନାର ଆବଶ୍ୟକତା ଅନୁଭୂତ ହୁଏ ।

(ଛ) ପାଶ୍ଚାତ୍ୟ ପ୍ରଭାବ ଅନୁଶୀଳନ କରି ଦେଖୁଛୁ "ଫକୀରମୋହନ" ଏହି ପ୍ରଭାବରୁ ପ୍ରାୟ ମୁକ୍ତ । ସେହିପରି ଗଙ୍ଗାଧର ମେହେର ଏହି ପ୍ରଭାବ-ମୁକ୍ତ ବୋଲି କହିବାକୁ ପଡ଼ିବ । ଗୋବିନ୍ଦ ରଥ, ବାସୁଦେବ ସୁଢ଼ଳ ଦେବ ଦେଶୀୟ ଫସଲର କବି । ଫକୀରମୋହନ ଓ ଗଙ୍ଗାଧରଙ୍କ କୃତି ଓ ପ୍ରତିଷ୍ଠା ମୂଲ୍ୟାୟନ କଲାବେଳେ ତାଙ୍କ ସମ୍ବନ୍ଧରେ

ଏହି କଥାକୁ ବିଶେଷ ଭାବରେ ମନେ ରଖିବାକୁ ପଡ଼ିବ ଏବଂ କେବଳ ଏହି ଦୃଷ୍ଟିରୁ ହିଁ ତାଙ୍କୁ ଓଡ଼ିଆ ସାହିତ୍ୟ "ମୌଳିକ ପ୍ରତିଭା" ବୋଲି ଆଖ୍ୟା ଦିଆଯାଇପାରେ । ସୁତରାଂ ଏହି ଦୁଇ ସାହିତ୍ୟରଥୀଙ୍କ ସାହିତ୍ୟର ସ୍ୱତନ୍ତ୍ର ମୂଲ୍ୟାୟନ ଆବଶ୍ୟକ ମନେହୁଏ । ଏହା ସହିତ ମନେରଖିବାକୁ ହେବ ଯେ ଭୀମ ଭୋଇ ଓ ଗୋପାଳକୃଷ୍ଣ, ଫକୀରମୋହନଙ୍କ ସମସାମୟିକ ଏବଂ ଏ ଦୁଇଜଣ ଦୁଇଟି ସ୍ୱତନ୍ତ୍ର ଚେତନାର ବାହାକ । ଫକୀରମୋହନଙ୍କ ମୂଲ୍ୟାୟନ କଲା ବେଳେ ତାଙ୍କର ସମସାମୟିକ ସାହିତ୍ୟ ରଥୀ ଓ ତାଙ୍କର ସ୍ୱତନ୍ତ୍ର ପରିବେଶ ପ୍ରତି ଦୃଷ୍ଟି ରଖିବାକୁ ପଡ଼ିବ ।

(ଢ) ପାଶ୍ଚାତ୍ୟ ପ୍ରଭାବ ସମ୍ବନ୍ଧରେ ମୋଟାମୋଟି ଭାବରେ କୁହାଯାଇ ପାରେ ଯେ ୧୯୨୦ ମସିହା ପରେ ଏହି ପ୍ରଭାବ ମନକୁ ମନ ମଉଳି ଯାଇଛି ଏବଂ ଇଚ୍ଛାକୃତ ଭାବେ, ସାହିତ୍ୟକୁ ସମୃଦ୍ଧ କରିବାର ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ, ନୂତନ ଆହରଣ ଲକ୍ଷ୍ୟରେ ଆଉ ପାଶ୍ଚାତ୍ୟ କାବ୍ୟକାରମାନଙ୍କ କୃତିକୁ ନିଜର ଭାବେ ନିଆଯାଇ ନାହିଁ । ଆମ ସାହିତ୍ୟ କ୍ଷେତ୍ରରେ ଏହା ଏକ ବିଶେଷ କଥା ବୋଲି ଧରି ନେବାକୁ ହେବ । ସୁତରାଂ ମୋଟାମୋଟି ଭାବରେ ୧୮୭୦ ରୁ ୧୯୨୦ ପର୍ଯ୍ୟନ୍ତ କାଳରୁ ଆମ ସାହିତ୍ୟରେ ଏକ "ପ୍ରସ୍ତୁତିକାଳ" ବୋଲି ଧରି ନେବାକୁ ପଡ଼ିବ । ଏହାପରେ ହିଁ ଆମ ସାହିତ୍ୟ ନିଜ ଗୋଡ଼ରେ ଠିଆ ହୋଇଛି । ଆଶା ବାଡ଼ି ଆଉ ଦରକାର କରିନାହିଁ । ରତ୍ନରାଜି ଖୋଜିବା, ଆହରଣ କରିବା ଆଉ ଦରକାର ହୋଇନାହିଁ । ଏବଂ ଏହି କ୍ରମରେ ଆମ ସାହିତ୍ୟ "ମଧୁ ମକ୍ଷିକା" ରୁ "ଊର୍ଣ୍ଣନାଭ"ରେ ପରିଣତ ହୋଇଯାଇଛି ।

(ଝ) ରାଧାନାଥ, ମଧୁସୂଦନ, ନନ୍ଦକିଶୋର, ଅଜୟଚନ୍ଦ୍ର, ଗୋଦାବରୀଶ, କୁନ୍ତଳାକୁମାରୀ ଓ କେତେକାଂଶରେ ରାମଶଙ୍କର ପ୍ରଭୃତିଙ୍କ କେତେକ କୃତି ଲକ୍ଷ୍ୟ କଲେ, ଦେଖାଯାଏ ଯେ ଏମାନେ ଗୋଟିଏ ଗୋଟିଏ କଳାକୃତି ସୃଷ୍ଟି କରିବା ବେଳେ ଏକାଧିକ ପାଶ୍ଚାତ୍ୟ କବିଙ୍କ ଦ୍ୱାରା ପ୍ରଭାବିତ ହୋଇଛନ୍ତି ଓ ଏକାଧିକ ଉତ୍ସରୁ ତାଙ୍କର କାବ୍ୟବସ୍ତୁ, କାବ୍ୟଚେତନା, କାବ୍ୟଶୈଳୀ ଆହାରଣ କରିଛନ୍ତି । ପୁଣି ଯେଉଁ ପାଶ୍ଚାତ୍ୟ କବିମାନଙ୍କ ଦ୍ୱାରା ପ୍ରଭାବିତ ହୋଇଛନ୍ତି ସେମାନଙ୍କ ଆଡ଼େ ଆଖି ପକାଇଲେ ଜଣାଯାଏ ଯେ ସେମାନେ ପାଶ୍ଚାତ୍ୟ ସମାଜରେ କାଳ ଓ ଯୁଗ ଦୃଷ୍ଟିରୁ ବିଭିନ୍ନ ଚେତନା ଓ ଅବବୋଧର ବାହକ । ଏହି ଦୃଷ୍ଟିରୁ ରାଧାନାଥ, ମଧୁସୂଦନ, ନନ୍ଦକିଶୋର, ଗୋଦାବରୀଶ, କୁନ୍ତଳାକୁମାରୀଙ୍କୁ କୌଣସି ଏକ ନିର୍ଦ୍ଦିଷ୍ଟ (ପାଶ୍ଚାତ୍ୟ) ଚେତନାର ବିଶୁଦ୍ଧ ପ୍ରତିନିଧି ଭାବରେ ଗ୍ରହଣ କରାଯାଇ ପାରିବ ନାହିଁ । ଏବଂ ଏକଥା କହିଲେ ବୋଧହୁଏ ଭୁଲ ହେବ ନାହିଁ ଯେ ଏମାନଙ୍କ ଲେଖାରେ ସ୍ଥାନେ ସ୍ଥାନେ ବିଭିନ୍ନ ଚେତନା ମଧ୍ୟସ୍ଥ ବିରୋଧାଭାଷ, ଦ୍ୱନ୍ଦ୍ୱ ଓ ସଂଶୟ ଦେଖିବାକୁ ମିଳିବ ଓ ସେହି ହେତୁ ଏମାନଙ୍କ ଲେଖାରେ କୌଣସି ଏକ ନିର୍ଦ୍ଦିଷ୍ଟ ଚେତନାର

ବିଶୁଦ୍ଧ ପ୍ରକାଶ ଦେଖିବାକୁ ମିଳିବ ନାହିଁ । ସେହିପରି ସେମାନଙ୍କ ଲେଖାରେ କୌଣସି ଏକ ନିର୍ଦ୍ଦିଷ୍ଟ ଚେତନାର ତୀବ୍ର ପ୍ରକାଶ ବା ପୂର୍ଣ୍ଣ ପ୍ରକାଶ ମଧ୍ୟ ଦେଖିବାକୁ ମିଳିବ ନାହିଁ ।

(ଓ) ଆମକୁ ମନେ ରଖିବାକୁ ହେବ ଯେ ଶଂସିତ କାଳ ମଧ୍ୟରେ ଆମେ " ପୋଥି" କାଳରୁ ଛପା ବା ବହିର ଯୁଗରେ ପଦାର୍ପଣ କଲୁ । "ତାଳପତ୍ର" ଛାଡ଼ି 'କାଗଜ' ବ୍ୟବହାର ଶିକ୍ଷାକଲୁ । ଚାଟଶାଳୀରେ ତାଳପତ୍ର ପରିବର୍ତ୍ତେ କାଗଜ ବ୍ୟବହାର କରିବାର ଭୟ ଓ ପ୍ରତିବାଦରେ ସ୍କୁଲ ବନ୍ଦ ହୋଇ ଯିବାର ନଜର ମଧ୍ୟ ଦେଖିବାକୁ ମିଳେ ଆମ ସମାଜରେ । ସଂସ୍କୃତିର ଇତିହାସରେ "ପୋଥି" ବଦଳରେ "ଛପା" ର ପ୍ରବର୍ତ୍ତନ - ଏକ ଯୁଗାନ୍ତକାରୀ ପରିବର୍ତ୍ତନ - ଏକ ବିପ୍ଳବ । ଏହା ସମାଜରେ, ସଂସ୍କୃତିରେ ସାହିତ୍ୟରେ ପ୍ରଥମ କରି ସୃଷ୍ଟିକଲା ଏବଂ ନୂତନ ପରମ୍ପରା; ଯାହାର ଜୈବିକ ଭିତ୍ତି ନାହିଁ । ସୁତରାଂ ଏହା ନୂତନ ଅବବୋଧ ସୃଷ୍ଟି କରିବାକୁ ବାଧ୍ୟ । ଇଉରୋପରେ ଏହି ଅବସ୍ଥା ଉପୁଜିଥିଲା ପଞ୍ଚଦଶ ଶତାବ୍ଦୀରେ । ଅଭ୍ୟୁଦୟ କାଳରେ । ସୁତରାଂ ତୁଳନାତ୍ମକ ଭାବେ ପଞ୍ଚଦଶ ଶତାବ୍ଦୀର ଇଉରୋପୀୟ ସମାଜର ବିଭାବ ପ୍ରତି ଅଧିକ ନଜର ଦେଲେ, ଆମେ ଆମର ସାଂସ୍କୃତିକ ବିପ୍ଳବର ଆରମ୍ଭ କାଳର ତାତ୍ପର୍ଯ୍ୟ ଆହୁରି ଭଲ ଭାବରେ ହୃଦୟଙ୍ଗମ ଓ ଅବଧାରଣା କରି ପାରିବୁଁ ।

(ଟ) "ଆହରଣ" ରେ ସବୁବେଳେ ଏକ ଅନ୍ତର୍ନିହିତ ବିପଦ ଓ ଅନିଶ୍ଚିତତା ରହିଥାଏ । ଏହା ମଣିଷର ମନର ପ୍ରକ୍ରିୟା ଓ ତା'ର କାର୍ଯ୍ୟକାରିତା ସହ ଜଡ଼ିତ । ହୁଏତ ଲକ୍, ବରକ୍‌ଲେ ଓ ହିଉମ ପ୍ରଭୃତି ଅନୁଭବବାଦୀମାନଙ୍କ ଧାରଣା ପରି ଏହା "ଉଇ" ପରି କାର୍ଯ୍ୟ କରିପାରେ । ଯାହାର କାମ ହେଲା ସ୍ତୂପୀକରଣ ଓ ସଜାକରଣ । ପୁଣି ହୁଏତ ଏହା ଡେକାର୍ଟେ, ସ୍ପିନୋଜା, ଲାଇବ୍‌ନିଜ ପ୍ରଭୃତି ତର୍କ ବୁଦ୍ଧି ବାଦୀମାନଙ୍କ ଧାରଣା ପରି "ବୁଢ଼ିଆଣୀ" ପରି କାମ କରିପାରେ । - ଏକ ପ୍ରକାରର ଅନ୍ତର୍ଜଗତରୁ ନିଃସରଣ । ପୁଣି ହୁଏତ ଏହା 'କାଣ୍ଟ'ଙ୍କ ସମୀକ୍ଷାବାଦର ଧାରଣା ପରି "ମହୁମାଛି" ପରାଏ କାମ କରି ପାରେ । - ଯାହା କେବଳ ଆହରଣଶୀଳ ପ୍ରକ୍ରିୟା ନୁହେଁ କି ସ୍ୱୟଂକ୍ରିୟମାଣ ପ୍ରକ୍ରିୟା ନୁହେଁ - ଏକ ପ୍ରକାରର ସଂଶ୍ଳେଷଣ । ଏହାକୁ Imitation ଓ Original ମଧ୍ୟସ୍ଥ ପାର୍ଥକ୍ୟ ସାହାଯ୍ୟରେ ବୁଝାଇ ଦିଆଯାଇ ପାରେ । ଏଥିରେ ପଲ୍ଲବଗ୍ରାହୀତାର ବିପଦ ସବୁବେଳେ ବିଦ୍ୟମାନ ଥାଏ । ସାମଗ୍ରିକତା ହରାଇବାର ସମ୍ଭାବନା ସବୁବେଳେ ବିଦ୍ୟମାନ ଥାଏ । କେତେବେଳେ ରୂପ (Form) ଆହରଣ ହୁଏ । କେତେବେଳେ ଧର୍ମ (Function) ଆହରଣ ହୁଏ । କେତେବେଳେ ଗଠନ (Structure) ଆହରଣ କରାଯାଇ ଥାଏ । ପୁଣି ବେଳେବେଳେ ମିଶ୍ର ଆହରଣ ବି ହୋଇଥାଏ । ସୁତରାଂ ଏଥିରେ ସବୁବେଳେ ଏକଦେଶଦର୍ଶିତା ରହିବାର ସମ୍ଭାବନା ଅଧିକ । ଚିତ୍ତରଞ୍ଜନ ଦାସ ସେହି

କଥାକୁ ଆଲୋଚନା କରି କହିଛନ୍ତି ଯେ - ରାଧାନାଥ ପ୍ଲଟ୍ ଖୋଜିବା ପାଇଁ ପାଶ୍ଚାତ୍ୟ ସାହିତ୍ୟ ଭିତରକୁ ପଶି ଯାଇଥିଲେ । ସୁରେନ୍ଦ୍ର ମହାନ୍ତି ସେଇ କଥାକୁ ଅନ୍ୟ ପ୍ରକାରେ କହିଛନ୍ତି - ରାଧାନାଥଙ୍କ ସାହିତ୍ୟ ବର୍ଣ୍ଣନାଧର୍ମୀ ଓ ଫଟୋଗ୍ରାଫିକ୍ । ସୁତରାଂ ଏଥିରେ ସମାଜସମୀକ୍ଷା, ଅନ୍ତର୍ଦୃଷ୍ଟି, "ସମୟ" ର ହିସାବ, ମଣିଷର ହିସାବ ହଜିଯିବା ସ୍ୱାଭାବିକ । ଅଖିଳଚନ୍ଦ୍ର ପାଲିତଙ୍କ ପାଖକୁ ଚିଠିରେ ରାଧାନାଥ ଲେଖିଥିଲେ - "ମୋର ରଚନା ସହିତ ଜୀବନର କୌଣସି ସମ୍ପର୍କ ନାହିଁ । ମୁଁ କେବଳ ବହିଃସଂସାରର ପ୍ରାକୃତିକ ସୌନ୍ଦର୍ଯ୍ୟ ଘେନି ବ୍ୟାପୃତ ଥିଲି" । ଏହି ସ୍ୱୀକାରୋକ୍ତି ସମସ୍ତ ପ୍ରକାରର "ଆହରଣ" ପାଇଁ ମୋଟାମୋଟି ଭାବେ ପ୍ରଯୋଜ୍ୟ । ପୁଣି ଅନୁବାଦ ସମ୍ବନ୍ଧରେ କହିବାକୁ ଗଲାବେଳେ କେତୋଟି କଥା ପ୍ରତି ସ୍ୱତନ୍ତ୍ର ଦୃଷ୍ଟି ଦେବାକୁ ପଡ଼ିବ । ଅନୁବାଦ କେବଳ ଶବ୍ଦ / ବାକ୍ୟ ଗୁଡ଼ିକର ଅନୁବାଦ ହୋଇପାରେ । କିନ୍ତୁ ଏତଦ୍ୱାରା ଅନୂଦିତ କୃତିର ଚମତ୍କାରିତା ଓ ବିଶେଷତ୍ୱ ପରିବହିତ ନ ହୋଇପାରେ । ଏଇଥି ପାଇଁ ପରେ ଆସିଥିଲା The theory of free translation । ଯହିଁରେ ମୂଳ ଲେଖାର ପ୍ରତିଭା ପ୍ରତିଫଳିତ ହୁଏ । କାଳକୃତିରେ ମୂଳ ଲେଖାର ଅସଲ ଭାବ ବା Sense ଠିକ୍ଣା ଭାବେ ପ୍ରତିଫଳିତ ହୁଏ । ପାଶ୍ଚାତ୍ୟ ସାହିତ୍ୟ ଆଡ଼କୁ ଆଖି ପକାଇଲେ ସପ୍ତଦଶ ଶତାବ୍ଦୀରେ ଏଇ କଥା ଉତ୍ଥାପିତ ହୋଇ ଥିବାର ଲକ୍ଷ୍ୟ କରାଯାଏ । ଥୋମାସ୍ ସ୍ପ୍ରାଟ୍ (୧୬୩୫-୧୭୧୩) ତାଙ୍କର ୧୬୬୮ ମସିହାରେ ପ୍ରକାଶିତ Life and writings of Cowley ପୁସ୍ତକରେ ଏଇକଥା ଆଲୋଚନା କରିଥିଲେ । ଆମେ ଭାବିବାକୁ ଚାହୁଁଥିଲୁ । ଅଥଚ କ'ଣ ଭାବିବୁ, ଠିକ୍ ଜାଣି ପାରୁ ନଥିଲୁ । ଲେଖିବାକୁ ଚାହିଁଥିଲୁ । କିନ୍ତୁ କ'ଣ ଲେଖିବୁ, ଠିକ୍ ଜାଣିପାରୁ ନଥିଲୁ । ତେଣୁ ଆହରଣ । ଅନୁବାଦ । ହୁଏତ ପଲ୍ଲବଗ୍ରାହୀତା ହୋଇପାରେ । ଏକଦେଶଦର୍ଶିତା ହୋଇପାରେ । ମୂଳ ବସ୍ତୁର ତେଜ ହୁଏତ ତଦ୍ୱାରା ମଉଳି ଯାଇପାରେ । ଆହରଣର ଏଇ ପରିସୀମା ଏବଂ ଅନୁବାଦର ଏଇ ପରୀସିମା ନଜରରେ ରହି ଆମକୁ ପାଶ୍ଚାତ୍ୟ ପ୍ରଭାବର ସମୀକ୍ଷା କରିବାକୁ ପଡ଼ିବ ।

(୦) ସତ୍ୟବାଦୀ ସାହିତ୍ୟରେ ଜାତୀୟତାବାଦର ଉନ୍ନତ ବିକାଶ । ଏହା ଓଡ଼ିଆଙ୍କର ଅହଙ୍କାର ବା ପୂର୍ବ ପୁରୁଷଙ୍କର ଗୌରବ ଗାଇବାଠାରୁ ଉପରକୁ । ଏହା ଓଡ଼ିଶାର ମଣିଷ ଓ ସେଇ ମଣିଷମାନଙ୍କର ଭାଗ୍ୟ ସମ୍ବନ୍ଧରେ ସ୍ୱପ୍ନ । ପ୍ରାଦେଶିକତା ମଧ୍ୟରେ ଭାରତୀୟ ସୂକ୍ଷ୍ମପ୍ରାଣତାକୁ ଆବିଷ୍କାର କରିବାର ଉଦ୍ୟମ । ଏକ ମାନବବାଦୀ ସମ୍ବେଦନଶୀଳତା ସହ ଏକ ଭାବୋଚ୍ଛଳ ଜାତୀୟବାଦିତା । ସବୁଜ ସାହିତ୍ୟରେ ମାନବ ସମ୍ବେଦନତା ଅଧିକ ହୋଇଗଲା । ବ୍ୟକ୍ତିବାଦୀ ଦୃଷ୍ଟି ଅଧିକ ହୋଇଗଲା । ସାହିତ୍ୟ ଜୀବନ ସହ ଅଧିକ

ଯୋଡ଼ି ହୋଇଗଲା । ମାନବିକତା, ବ୍ୟକ୍ତି ସଚେତକତତା, ସମାଜ ସଚେତନତା, ପ୍ରଳୟ ପ୍ରେରଣା ଆଉ ସୃଜନ ସ୍ୱପ୍ନ- ଏଇଆଡ଼କୁ ନେଇ ସବୁଜ ସାହିତ୍ୟ ।

ଆଗରୁ ଦେଖିଛୁ, ଶଂସିତ କାଳରେ ବିଭିନ୍ନ ଭାବଧାରାର ପ୍ରବାହ ଆମ ସାହିତ୍ୟ / ସମାଜକୁ ଆମଦାନି ହୋଇ ଆସିଥିଲା । ଯଥା - ଅଭ୍ୟୁଦୟ ଭାବଧାରା, ନବ ସଂସ୍କାର ଭାବଧାରା, ରୋମାଣ୍ଟିକ୍ ଭାବଧାରା ଇତ୍ୟାଦି, ଇତ୍ୟାଦି । ଆଗରୁ ଦେଖିଛୁ - ଏଇ ଭାବଧାରାର ଭିନ୍ନ ଭିନ୍ନ ବିଭାବ ରହିଛି । ଓଡ଼ିଆ ସାହିତ୍ୟର ପରବର୍ତ୍ତୀ ବିକାଶ, ଏହାର ଉନ୍ମେଷ କାଳରେ, ଆମଦାନି ହୋଇ ଆସିଥିବା ବିଭିନ୍ନ ବିଭାବ ମଧ୍ୟରୁ କେତେକ ନିର୍ଦ୍ଦିଷ୍ଟ ବିଭାବର ଉତ୍ତରଣ ବା ଉକ୍ତ ବିଭାବ ବିରୁଦ୍ଧରେ ପ୍ରତିବାଦ ଭାବରେ ମଧ୍ୟ ଗ୍ରହଣ କରାଯାଇପାରେ । ଉଦାହରଣ ସ୍ୱରୂପ ଅଭ୍ୟୁଦୟ ଯୁଗର ମାନବିକତା ଏବଂ ରୋମାଣ୍ଟିକ ଚେତନାର ଜାତୀୟତାବାଦ ଓ ବ୍ୟକ୍ତିବାଦୀ ଦୃଷ୍ଟିଭଙ୍ଗୀ- ଏହାକୁ ନେଇ ସବୁଜ ସାହିତ୍ୟର ଭିତ୍ତି କଳ୍ପନା କରାଯାଇ ପାରେ । ସେହିପରି ମାନବିକତା ଓ ଜାତୀୟତାବାଦ - ଏହାକୁ ନେଇ ସତ୍ୟବାଦୀ ସାହିତ୍ୟରେ ଭିତ୍ତି କଳ୍ପନା କରାଯାଇ ପାରେ । ଏହିପରି ଭାବରେ ବହୁ ପ୍ରକାରର ସମବାୟ / ମିଶ୍ରଣର କଳ୍ପନା କରାଯାଇ ପାରେ ଓ ତଦ୍ୱାରା ଆମ ସାହିତ୍ୟର ପରବର୍ତ୍ତୀ ବିକାଶର ଚର୍ଚ୍ଚା କରାଯାଇ ପାରେ ।

ଏ ଦୃଷ୍ଟିରୁ ଓଡ଼ିଆ ସାହିତ୍ୟର ଇତିହାସ ଚର୍ଚ୍ଚା କଲାବେଳେ; ବିଭିନ୍ନ କାଳ/ ଯୁଗର ବିଭାବ ବିଷୟ ଚର୍ଚ୍ଚା କଲାବେଳେ ଏକ ନୂତନ ଦୃଷ୍ଟିଭଙ୍ଗୀର ଆବଶ୍ୟକତା ରହିଛି ବୋଲି ମନେ ହୁଏ । ସେହି ସଂକ୍ରାନ୍ତରେ ଦେଶୀୟ/ସ୍ଥାନୀୟ ପରିବେଶର ସଂସ୍ପର୍ଶରେ ଆସି ବିଭିନ୍ନ ଚେତନ-ପ୍ରବାହର ମୂଳ ସ୍ୱରୂପରେ କିଛି ମୌଳିକ / ଗୁଣାତ୍ମକ ପରିବର୍ତ୍ତନ ହୋଇଛି କି ନାହିଁ, ତାହାର ମଧ୍ୟ ଅନୁଧ୍ୟାନ ଆବଶ୍ୟକ ।

(ଡ) ଜାତୀୟତାବାଦ ଭାବର ଆମଦାନି ଓ ଆମ ଦେଶର ପାରିପାର୍ଶ୍ୱିକ ଅବସ୍ଥା ଭିତରେ ପରିପୁଷ୍ଟ ହୋଇ ତା'ର ଉତ୍ତରଣ ଦେଖିଲୁ । ଏହା "କାବ୍ୟ-ଚେତନା" ର ଅନ୍ୟତମ ବିଭାବ । "କାବ୍ୟ-ଚେତନା" ମଧ୍ୟରେ "ପ୍ରକୃତିରେ ପ୍ରାଣ ସଞ୍ଚାର ଅଛି । ଅଥଚ ଯେମିତି ପ୍ରକୃତିକୁ ବାହାରୁ ଦେଖି, ପ୍ରକୃତିର ବାହାରେ ରହି ପ୍ରକୃତି-ଚେତନାର ଅଭିବ୍ୟକ୍ତ ଘଟିଛି । ପ୍ରକୃତି ଭିତରେ ପ୍ରାଣ ପ୍ରାଚୁର୍ଯ୍ୟ ଅଛି, ଅଥଚ କବି ମଧ୍ୟରେ ଯେମିତି ଯଥେଷ୍ଟ ପ୍ରାଣ ସଞ୍ଚାରଣ ହୋଇନାହିଁ । - ଯେମିତି ରାଧାନାଥଙ୍କ ଜୀବନ ସହିତ ପ୍ରକୃତିର ସଂପର୍କ ନଥିଲା ବୋଲି ତାଙ୍କର ସ୍ୱୀକାରୋକ୍ତି । ପ୍ରକୃତିର ସ୍ୱାତନ୍ତ୍ୟ ଅଛି । କିନ୍ତୁ ଏହା ଆଦିମ ସମ୍ବେଦନାର ନିରୋଳା ରୂପ ଖୋଜିବାର ପ୍ରବଣତା ନୁହେଁ । ହୃଦୟର ଧ୍ୱନିର ନିରୋଳା ରୂପ, ହୃଦୟର ସମ୍ବେଦନାର ଅସଲ ପ୍ରତିମା ଖୋଜିବାର ପ୍ରବଣତା ନୁହେଁ । ଆଦିମ ସମାଜର ସହଜ, ସରଳ, ସ୍ୱାଭାବିକ, ସ୍ୱଚ୍ଛନ୍ଦ ନିଛକ ପ୍ରବଣତା ଆଉ ସମ୍ବେଦନା

ଆବିଷ୍କାର କରିବାର ପ୍ରବଣତା ନୁହେଁ । ପ୍ରକୃତିକୁ ପ୍ରକୃତି ଭାବରେ ଦେଖିଲୁ । କିନ୍ତୁ ମଣିଷ ଭିତରର ସରଳତା, ନିଚ୍ଛକ ପ୍ରବଣତା, ସମ୍ବେଦନା ଭିତ୍ତିକ କ୍ରିୟାଶୀଳତା ଓ ସ୍ଫୁରଣ ଦେଖିଲୁ ନାହିଁ ।

"ରୁଚି" ର ଅଭ୍ୟୁତ୍ଥାନ ହୁଏତ ଦେଖିଲୁ । କିନ୍ତୁ ସାମାଜିକ ବାସ୍ତବତା ସମ୍ବନ୍ଧରେ ସଚେତନତା ପର୍ଯ୍ୟାପ୍ତ ପରିମାଣରେ ଦେଖିଲୁ ନାହିଁ । ନୂତନ ନନ୍ଦନ ତତ୍ତ୍ୱର ଅଭ୍ୟୁଦୟ ଦେଖିଲୁ ନାହିଁ । ବିଷାଦତା ଦେଖିଲୁ । କାରୁଣ୍ୟ ଦେଖିଲୁ । କିନ୍ତୁ ଏଥିରେ ସାମାଜିକ ବାସ୍ତବତା ସମ୍ବନ୍ଧରେ ସଚେତନତା ନଥିବାରୁ ଅପରାଧବୋଧ ଦେଖିଲୁ ନାହିଁ । ବିଷାଦିତା, ବ୍ୟକ୍ତିଗତ ବ୍ୟର୍ଥତାରେ ପ୍ରାୟ ସୀମାବଦ୍ଧ ହୋଇ ରହିଗଲା । ସମାଜର ପରିଧିକୁ ଛୁଇଁ ପାରିଲା ନାହିଁ । ମଣିଷର ପରିଧିକୁ ଛୁଇଁ ପାରିଲା ନାହିଁ । ମଣିଷ ଓ ସମାଜର ପରିଧି ନ ଥିବାରୁ ମଣିଷର ଆଦିମ ଅବସ୍ଥାର, ଆଦି ମାନବର ସରଳ ମଣିଷର ସରଳ ପ୍ରାକୃତିକ ଜୀବନ ଯାତ୍ରା, ସ୍ୱତଃସ୍ଫୂର୍ତ୍ତ କବିତା, ଗାଥା, ସମ୍ବେଦନା, ବିଷାଦତା, ପୁରାବୃତ୍ତ ଓ ପ୍ରତୀକ ସମ୍ବନ୍ଧରେ ସଚେତନତା ବି ରହିଲା ନାହିଁ ।

(ଢ) ପ୍ରେମ-ଚେତନା ସମ୍ବନ୍ଧରେ ଆଲୋଚନା କରିବାକୁ ଗଲେ ପ୍ରଥମେ ନଜରରେ ପଡ଼େ, ଆମ ସାହିତ୍ୟକୁ ସବା ଆଗେ ଅବଲମ୍ବନ / ଅନୁବାଦ / ପ୍ରଭାବ ଆକାରରେ ଯେଉଁ ଉପାଦାନଗୁଡ଼ିକ ଆମଦାନି ହୋଇ ଆସିଥିଲା, ସେଇ Wild medieval romance, ଏ ପରିସୀମାରୁ ପ୍ରେମ-ଚେତନାର ପରିଧି ବଢ଼ି ଗଲା । ଏହା ଦେହର ପରିଧିକୁ ଡେଇଁଗଲା । ମନ ପର୍ଯ୍ୟନ୍ତ ମାଡ଼ିଗଲା । "ଦେଶ" ଓ "ଦଶ" ପର୍ଯ୍ୟନ୍ତ ବି ବିସ୍ତୃତ ହୋଇଗଲା । ପ୍ରଜନନ ଓ ବଂଶରକ୍ଷାର ଉପରକୁ ଉଠିଗଲା । ସବୁବେଳେ ଯଦିଓ ପରିଣତିମୁଖୀ ନୁହେଁ, ତେବେ ଏହା ପ୍ରକାଶୋନ୍ମୁଖୀ ହୋଇଗଲା । କେବଳ ଜୈବିକ ଆବଶ୍ୟକତା ହୋଇ ରହିଲା ନାହିଁ । ଏକ ମାନସିକ ଆତ୍ମିକ ଆବଶ୍ୟକତାରେ ପରିଣତ ହୋଇଗଲା । ଏହାର "ଅଭାବ' ଆଉ ବିକାରରେ ପରିଣତ ହେଲା ନାହିଁ । ସ୍ୱପ୍ନରେ ପରିଣତ ହୋଇଗଲା । ବିଷମ- ଆଚରଣରେ ପରିଣତ ହେଲା ନାହିଁ । "ତତ୍ତ୍ୱ" ରେ ରୂପାନ୍ତରିତ ହୋଇଗଲା । କିନ୍ତୁ ଏ ପ୍ରକ୍ରିୟାରେ ଗୋଟିଏ ଭଟକା ରହିଗଲା । ଏଇ ପ୍ରେମ, ଏଇ ସ୍ୱପ୍ନ, ଏଇ ତତ୍ତ୍ୱ ଯେମିତି କୌଣସି ସାଧାରଣ ମଣିଷର ହୋଇପାରିଲା ନାହିଁ । ସାଧାରଣ ଅନୁଭୂତି ପର୍ଯ୍ୟାୟର ଅନ୍ତର୍ଭୁକ୍ତ ହୋଇ ପାରିଲା ନାହିଁ । ଯେମିତି କୌଣସି ପାଠ୍ୟକ୍ରମ ବା "କରିକୁଲମ୍" ଭୁକ୍ତ ପ୍ରେମ । ପ୍ରେମ ଆସିଲା । ଦେହ ଛାଡ଼ି ଛାଡ଼ି ଭିତରକୁ ପଶିଗଲା । ମନ ପର୍ଯ୍ୟନ୍ତ ହୃଦୟ ପର୍ଯ୍ୟନ୍ତ । କିନ୍ତୁ ମନ ଆଉ ହୃଦୟକୁ ପୂରାପୂରି ଛୁଇଁ ପାରିଲା ନାହିଁ ଯେମିତି ।

(ଣ) ମାନବ ଚେତନାରେ ମୁଖ୍ୟତଃ ଅଭ୍ୟୁଦୟ ଯୁଗର ଚେତନା ପରିସ୍ଫୁଟ । ମଣିଷର ଆତ୍ମ ପ୍ରକାଶର ପ୍ରବଣତା ମୁଖ୍ୟତଃ ଏକ ରୋମାଣ୍ଟିକ୍ ପ୍ରବଣତା । ଶଂସିତ କାଳରେ ଏହି ପ୍ରବଣତା ପର୍ଯ୍ୟାପ୍ତ ଭାବରେ ପରିସ୍ଫୁଟ ବା ପ୍ରଜ୍ଜ୍ୱଳିତ ନୁହେଁ । "ନାରୀ" ସମ୍ବନ୍ଧରେ ଭାବ ଗୁଡ଼ିକ ଅପରିପକ୍ୱ ଓ ତାତ୍ତ୍ୱିକ । ସମସାମୟିକ ସମାଜରେ ଏହାର ଦୃଷ୍ଟାନ୍ତ ଓ ସତ୍ୟତା ଦେଖିବାକୁ ମିଳେ ନାହିଁ ।

(ତ) କାବ୍ୟ-ଶୈଳୀର ଅନୁବର୍ତ୍ତନରେ ଦେଖୁ ଚତୁଷ୍ପଦୀ କବିତା, ସଂବୋଧ ଗୀତି, ଶୋକ-ଶ୍ଳୋକ, ଗାଥା କବିତା, ମହାକାବ୍ୟ ଓ ଅମିତ୍ରାକ୍ଷର ଛନ୍ଦ । ଆଗରୁ କୋଇଲି, ଚଉତିଶା, ସଂଦେଶ ଗୀତିକା ପ୍ରଭୃତି "ସଂବୋଧ ଗୀତି" ଆମ ପୁରାତନ ସାହିତ୍ୟରେ ଥିଲା । କିନ୍ତୁ ବର୍ତ୍ତମାନର "ସଂବୋଧ ଗୀତି" ଏହି କୋଇଲି / ଚଉତିଶା / ସଂଦେଶ ଗୀତିକାର ଦାୟଦ ନୁହଁ ବୋଲି କୁହାଯାଇଛି । ସେହିପରି "ଅମିତ୍ରାକ୍ଷର ଛନ୍ଦ" ସହ ସଂସ୍କୃତିର ମେଳ-ହୀନ କବିତାର ସଂପର୍କ ନାହିଁ ବୋଲି କୁହାଯାଇଛି । ପ୍ରତ୍ୟେକ "ପ୍ରକାଶଭଙ୍ଗୀ" ର ଏକ ଅନ୍ତରୀଣ ବାଧ୍ୟତା ଅଛି । କାବ୍ୟକାର ଯାହା କହିବାକୁ ଚାହେଁ, ତା'ର ଭାବ, ଆବେଗ, ସମ୍ବେଦନା ଏ ସବୁ ଯଥାର୍ଥ ଭାବେ ପ୍ରକାଶ ପାଇପାରେ କେବଳ ଉପଯୁକ୍ତ ଭାଷା,ପ୍ରକାଶଭଙ୍ଗୀ ଓ ଶୈଳୀର ମାଧ୍ୟମରେ । କୋଇଲି / ଚଉତିଶା / ସନ୍ଦେଶ ଗୀତିକା / ମେଳହୀନ କବିତାର ସ୍ୱରୂପ କଅଣ ଓ ସେଗୁଡ଼ିକ କାହିଁକି ନୂତନ ପ୍ରକାଶଭଙ୍ଗୀ / ଶୈଳୀ ସହ ସଂପର୍କିତ ନୁହେଁ, ସେ ବିଷୟରେ ସ୍ୱତନ୍ତ୍ର ମନୋନିବେଶ ଆବଶ୍ୟକ । ସେଗୁଡ଼ିକର ମଧ ଏକ ଅନ୍ତରୀଣ ବାଧ୍ୟତା ଓ ପ୍ରକାଶ ଭଙ୍ଗୀର ସ୍ୱତନ୍ତ୍ରତା ଥିଲା ଏକ ପକ୍ଷରେ "ଶୈଳୀ"କୁ ମନର ପ୍ରତିଚ୍ଛବି ଭାବରେ ଗ୍ରହଣ କରିବାକୁ ତତ୍ତ୍ୱ (Style is the image of mind, Style is the man himself) ଓ ଅପର ପକ୍ଷରେ ଆତ୍ମ ପ୍ରକାଶର ସ୍ୱତଃସ୍ଫୂର୍ତ୍ତତା ଓ ତା'ର ବାଧ୍ୟତା - ଏହି ଦୁଇ ତତ୍ତ୍ୱ ମଧ୍ୟସ୍ଥ ପାର୍ଥକ୍ୟ ନିରୂପଣ କରିବାର ଆବଶ୍ୟକତା ରହିଛି ବୋଲି ମନେ ହୁଏ ।

(ଥ) ମହାକାବ୍ୟ ଓ ଖଣ୍ଡକାବ୍ୟ ସମ୍ବନ୍ଧରେ ଆଉ ଅଧିକ ଆଲୋଚନାର ଆବଶ୍ୟକତା ଥିଲା । "ବୈଜ୍ଞାନିକ ବିପ୍ଳବ" ପରେ କାବ୍ୟ ଓ ବାସ୍ତବତା ମଧ୍ୟସ୍ଥ ପାର୍ଥକ୍ୟ ଦୂର କରିବା ପାଇଁ ବିଶେଷ ଭାବେ ଚେଷ୍ଟା କରାଯାଇଥିଲା । ୧୬୫୧ ରେ ପ୍ରକାଶିତ ଡାଭେନାଣ୍ଟଙ୍କ Gondibert ଏ ଦିଗରେ ଏକ ଦିଗ୍ ନିର୍ଦ୍ଦେଶକ / ପଥପ୍ରଦର୍ଶକ ଗ୍ରନ୍ଥ । ଏ ପୁସ୍ତକରେ ତାଙ୍କର ଏକ ମୁଖବନ୍ଧ, ଏହିମୁଖବନ୍ଧର ଉତ୍ତର ସ୍ୱରୂପ ଦାର୍ଶନିକ ହବସ୍‌ଙ୍କ ଏକ ଲେଖା, ଓ କବି ଓ୍ୟାଲର ଆଉ କାଉଲେଙ୍କ ଦୁଇଟି କବିତା ସ୍ଥାନ ପାଇଥିଲା । ଏଥିରେ ଡାଭେନାଣ୍ଟ Tasse କୁ ତୀବ୍ର ସମାଲୋଚନା କରିଥିଲେ । ଏହି ମହାକାବ୍ୟରେ ସେ ଈଶ୍ୱର, ଦୈତ୍ୟ ଓ ପରୀମାନଙ୍କର କଳ୍ପନା ରାଜ୍ୟ ପ୍ରଭୃତିକୁ ପରିହାର କରିଥିଲେ । ଏବଂ

କାବ୍ୟକାରଙ୍କୁ ଏକ ଶିଳ୍ପୀ ସହ ତୁଳନା କରିଥିଲେ । ତାଙ୍କ କହିବା ଅନୁସାରେ "କାବ୍ୟକାର ଏକ ଶିଳ୍ପୀ । ମଣିଷର ଜୀବନକୁ ଅନୁକରଣ କରିବା ପାଇଁ ଯେତିକି ଆବଶ୍ୟକ, ଗୋଟିଏ କବିତାର ଗଠନ ଠିକ୍ ସେତିକି ହେବା ଆବଶ୍ୟକ ।" ଡାଭେନାଣ୍ଟଙ୍କଠାରୁ ହିଁ "ଆଧୁନିକ ମହାକାବ୍ୟ" (Modern Epic) ର ଧାରଣା ଆସିଥିଲା ।

ପ୍ରଫେସର ଟୟନ୍‌ବି ତାଙ୍କର "ଇତିହାସରେ ଅଧ୍ୟୟନ" ପୁସ୍ତକରେ ଠାଏ କହିଛନ୍ତି ଯେ, ଏକ ଯାଯାବର ଜାତି "ମହାକାବ୍ୟ" ସୃଷ୍ଟି କରେ । ଏକ ସ୍ଥିର-ଜାତି, ନାଟକ ସୃଷ୍ଟି କରେ । ମହାକାବ୍ୟ ବା ଏପିକ୍, ସମାଜର ଏକ ନିର୍ଦ୍ଦିଷ୍ଟ ଅବସ୍ଥାର ସୃଷ୍ଟି । ଏକ ନିର୍ଦ୍ଦିଷ୍ଟ ବିଭାବର ଆତ୍ମପ୍ରକାଶ ଓ ଚିତ୍ରଣ । ରୋମାଣ୍ଟିକ୍ ଅବବୋଧର ନିର୍ଦ୍ଦିଷ୍ଟ ବିଭାବ ରହିଛି । ଏ ଦୃଷ୍ଟିରୁ ପୁସ୍ତକରେ Romantic Epic ସମ୍ବନ୍ଧରେ ଆଲୋଚନାର ପୁନର୍ବିଚାର ଆବଶ୍ୟକ ମନେ ହୁଏ ।

(ଦ) ପୁସ୍ତକରେ "ରୋମାଣ୍ଟିକ ଅବବୋଧ" ର ବିଭିନ୍ନ ଉପାଦାନ ସମ୍ବନ୍ଧରେ ଅପେକ୍ଷାକୃତ ଏକ ସ୍ୱଚ୍ଛ ଚିତ୍ର ଦେଖିବାକୁ ମିଳେ । ଆବଶ୍ୟକ ରୋମାଣ୍ଟିକ ଅବବୋଧର ତାତ୍ତ୍ୱିକ ପୃଷ୍ଠଭୂମି ଓ ତା'ର ପ୍ରକୃତି ସମ୍ବନ୍ଧରେ ଆଲୋଚନା ନାହିଁ । କିନ୍ତୁ ଓଡ଼ିଆ ସାହିତ୍ୟରେ ଅନ୍ୟତ୍ର ରୋମାଣ୍ଟିକ୍ ଅବବୋଧ ସମ୍ବନ୍ଧରେ ଏପରି ସ୍ୱଚ୍ଛ ବିଚାର ଓ ଅଭିବ୍ୟକ୍ତି ଦେଖିବାକୁ ମିଳେ ନାହିଁ ।

(ଧ) ଓଡ଼ିଆ ସାହିତ୍ୟରେ ଉଭା ଯେତେ, ପୋତା ସେତେ ବୋଲି କହିବାକୁ ହେବ । ଅର୍ଥାତ୍ ଏହାର ଛାପା ସାହିତ୍ୟ ଯେତେ, ପୋଥି ସାହିତ୍ୟ ବି ସେତେ । ପୁସ୍ତକରେ ଊନବିଂଶ ଶତାବ୍ଦୀର ଓଡ଼ିଆ କାବ୍ୟ ସାହିତ୍ୟ ଉପରେ ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ବିଷୟ ଆଲୋଚନା କରାଯାଇଛି । ସେହି ଊନବିଂଶ ଶତାବ୍ଦୀରେ ବହୁ ପୋଥି-କାବ୍ୟ ରଚନା କରାଯାଇଛି । ବିଶେଷତଃ ରାମ-ସାହିତ୍ୟ ଓ କୃଷ୍ଣ-ସାହିତ୍ୟର ଶେଷ ସ୍ଫୁରଣ ଭାବରେ ଊନବିଂଶ ଶତାବ୍ଦୀରେ ବହୁ ପୋଥି-କାବ୍ୟ ରଚନା କରାଯାଇଥିଲା । ଯାହାକି ଏବେ ଲୋକ ଲୋଚନକୁ ଆସୁଛି ଏବଂ ଯହିଁରୁ ଅନେକ ରାଜ୍ୟ ସଂଗ୍ରହାଳୟରେ ଗଚ୍ଛିତ ଅଛି । ସେହି କାବ୍ୟକାରମାନେ ଯେଉଁ ପରିସ୍ଥିତିରେ ଏବଂ ଯେଉଁ ପରିପ୍ରେକ୍ଷୀରେ ପାଶ୍ଚାତ୍ୟର ପ୍ରଭାବରେ ଆସିଲେ ନାହିଁ ବା ପାଶ୍ଚାତ୍ୟ ସାହିତ୍ୟ ଦ୍ୱାରା ପ୍ରଭାବିତ ହୋଇପାରିଲେ ନାହିଁ, ସେ ସମ୍ବନ୍ଧରେ ସମ୍ୟକ ସୂଚନା ଦିଆଯାଇଥିଲେ ପାଶ୍ଚାତ୍ୟ ପ୍ରଭାବର ପ୍ରାସଙ୍ଗିକତା ଆହୁରି ଅଧିକ ଗ୍ରାହ୍ୟ ହୋଇପାରିଥାନ୍ତା ।

ପୋଥି ସାହିତ୍ୟର ବିଚାର କ୍ରମରେ ଆଉ ଗୋଟିଏ କଥା ବିଚାରକୁ ନେବାକୁ ହେବ । ପୋଥି ସାହିତ୍ୟର ମୂଳକଥା ଏହା ମୁଖ୍ୟତଃ "ଗେୟ" । ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଆମ ସାହିତ୍ୟ ପ୍ରଧାନତଃ "ଗେୟ" ଥିଲା । ଊନବିଂଶ ଶତାବ୍ଦୀରେ ଏହା 'ଗେୟ"

ରୁ 'ପାଠ୍ୟ' ଆଡ଼କୁ ବିବର୍ତ୍ତିତ ହେଲା । ଛନ୍ଦୋବନ୍ଧରୁ ମୁକ୍ତବନ୍ଧ । ଅମିତ୍ରାକ୍ଷର । ଯହିଁରେ ଭାବାନୁସାରୀ ଯତିପାତ ମୂଳକଥା, ଅଥଚ ପଙ୍‌କ୍ତି ଦୈର୍ଘ୍ୟର ବନ୍ଧନ ରହିଥାଏ । ଏହା କେତେକ ପରିମାଣରେ ଭାବ ପ୍ରକାଶର ସ୍ୱାଧୀନତା ଆଣିବାରେ ସକ୍ଷମ ହୋଇଥିଲା । ଏହି ସୀମାର ନିୟନ୍ତ୍ରଣରୁ ମୁକ୍ତି ଲାଭ କଲେ, କବିତା 'ମୁକ୍ତକ' ହୁଏ । ଅମେଳ ମୁକ୍ତକ, ଅର୍ଥାତ୍ ଚରଣରେ ମାତ୍ରାଗତ ଅସାମ୍ୟ ଏହି ଅମେଳ ମୁକ୍ତକ, ଆଧୁନିକ ଗଦ୍ୟଛନ୍ଦର ମୂଳ ବୋଲି କୁହାଯାଇଥାଏ । ଯହିଁରେ ଉପଧା ବା ଅକ୍ଷର ସଂଖ୍ୟାର କୌଣସି ସାମ୍ୟ ନ ଥାଏ । ଏହି କ୍ରମରେ ଗଦ୍ୟ କବିତା ଓ ଗଦ୍ୟର ବିବର୍ତ୍ତନ ଧାରାର ମଧ୍ୟ ଅନୁସରଣ ଆବଶ୍ୟକ । ଊନବିଂଶ ଶତାବ୍ଦୀରେ ଏହି ବିବର୍ତ୍ତନର ଧାରା ସଂଗଠିତ ହୋଇଛି, ନିର୍ଦ୍ଦିଷ୍ଟ ରୂପ ନେଇଛି । ଏହି ଧାରାର କ୍ରମବିକାଶ ଓ ପାଶ୍ଚାତ୍ୟ ପ୍ରଭାବ ଦ୍ୱାରା ଏହା କିପରି ଭାବରେ ନିୟନ୍ତ୍ରିତ ବା ପରିବର୍ତ୍ତିତ ହୋଇଛି, ସେ ସମ୍ବନ୍ଧରେ ସମ୍ୟକ ଆଲୋଚନାର ଆବଶ୍ୟକତା ଥିଲା ।

(ନ) ଯଦି ଆମେ ରହସ୍ୟବାଦର ଅନୁବର୍ତ୍ତନ ବିଚାରକୁ ନେଉଁ, ତେବେ ସେ ସଂକ୍ରାନ୍ତରେ ସ୍ୱତନ୍ତ୍ର ଦୃଷ୍ଟି ଦେବାକୁ ପଡ଼ିବ । ଆତ୍ମା ଓ ପରମାତ୍ମାର ମିଳନ ଆଉ ମୁକ୍ତି - ଏଇ ଦୁଇଟି କଥା ଉପରେ ରହସ୍ୟବାଦ ପର୍ଯ୍ୟବସିତ । ମଣିଷ ନିଜ ଭିତରେ ଅସୀମ ସତ୍ତାକୁ ବହନ କରେ । ଅୟମାତ୍ମା ବ୍ରହ୍ମ । ଅହଂ ବ୍ରହ୍ମାସ୍ମି । ତତ୍ତ୍ୱମସି । ଏହା ଭାରତୀୟ ରହସ୍ୟବାଦ । କିନ୍ତୁ ପାଶ୍ଚାତ୍ୟ ରହସ୍ୟବାଦରେ ମଣିଷ ଅସୀମ ସତ୍ତା ନିକଟରେ ଆତ୍ମ ସମର୍ପଣ କରେ ଏବଂ ସେହି ଅସୀମରେ ଲୀନ ହୋଇଯାଏ । କେବଳ ସାମୀପ୍ୟ ମୁକ୍ତି ନୁହେଁ ସାରୂପ୍ୟ ଲାଭ ହିଁ ଭାରତୀୟ ରହସ୍ୟବାଦର ବିଶେଷତ୍ୱ । ବ୍ରହ୍ମବିଦ୍ ବ୍ରହ୍ମୈବ ଭବତି । ବିଷୟାନନ୍ଦ ବ୍ରହ୍ମାନନ୍ଦରେ ପରିଣତ ହୋଇଥାଏ । Hellenic Period (Gnostic systems) ରେ ପ୍ରଚଳିତ ରହସ୍ୟବାଦର ମୂଳକଥା ହେଲା - ଜଗତରେ ଯେଉଁ 'ସବୁ ଆତ୍ମା' ବୈଷୟିକ ବନ୍ଧନରେ ଜଡ଼ିତ, ସେହି 'ସବୁ ଆତ୍ମା' ର ମୁକ୍ତି ଏବଂ ଏ ବିଶ୍ୱରେ ଆତ୍ମାର 'ବସ୍ତୁ' ସହ ସଂଯୋଗ ଓ ଯୁଗ ଶେଷରେ ସମୂହ ଆତ୍ମା ବା ବିଶ୍ୱ-ଆତ୍ମାର ପ୍ରତ୍ୟାବର୍ତ୍ତନ - ଏହି ମହାନାଟକର ଦୃଶ୍ୟ ଉନ୍ମୋଚନ । ପୁଣି ଆତ୍ମା ଓ ବସ୍ତୁର ସମ୍ପର୍କ ସମ୍ବନ୍ଧରେ - ଏହି ଦର୍ଶନରେ କୁହାଯାଇଛି ଯେ ଆତ୍ମା ଏକ ଅଦୃଶ୍ୟ ଶକ୍ତି / ପ୍ରେରଣା / ପ୍ରଚୋଦନା / ପ୍ରବର୍ତ୍ତନା ଯୋଗୁଁ 'ବସ୍ତୁ' ପ୍ରତି ଆକର୍ଷିତ ହୋଇଥାଏ । ଅପର ପକ୍ଷରେ ସାଂଖ୍ୟ ଦର୍ଶନରେ କୁହାଯାଇଛି ଯେ ଆତ୍ମା 'ସାକ୍ଷୀ' ମାତ୍ର ଓ ବସ୍ତୁ ସହ ସମ୍ପର୍କିତ ହେବା ଏହାର 'ନିୟତି' । ଏହି ନିୟତିର ପରିଣତ ଅବସ୍ଥା ହେଲା ଏକ ବସ୍ତୁ-ନିରପେକ୍ଷ ଅନୁଭୂତି ଆହରଣ । ଅର୍ଥାତ୍ ଏହା ଯେ 'ବସ୍ତୁ-ନିରପେକ୍ଷ' ଏହି ଅନୁଭୂତି ଆହରଣ କରିବା ପାଇଁ ଏହା ବସ୍ତୁ ସହ ସମ୍ପର୍କିତ ହୋଇଥାଏ । ପରନ୍ତୁ, ହେଗେଲଙ୍କ ଦର୍ଶନରେ

ନିଜ ସମ୍ବନ୍ଧରେ ପୂର୍ଣ୍ଣ ସଚେତନ ହେବା ପାଇଁ ଆତ୍ମା ବସ୍ତୁ ସହ ସମ୍ପର୍କିତ ହୋଇଥାଏ ବୋଲି କୁହାଯାଇଛି । ପୁଣି ଭାରତୀୟ ଦର୍ଶନ ଅନୁସାରେ ଏ ଜଗତରେ ସବୁ ଘଟଣା ପରମେଶ୍ୱରଙ୍କ ଲୀଳା । ଏହି ଲୀଳାକୁ କୌଣସି ଯୁକ୍ତିସଙ୍ଗତ ପ୍ରଣାଳୀ ଦ୍ୱାରା ବୁଝାଇ ହେବ ନାହିଁ । କିନ୍ତୁ ଫିଚେଙ୍କ ଦର୍ଶନରେ 'ପ୍ରେମ'କୁ ପରମେଶ୍ୱରଙ୍କ ଅନ୍ତର୍ନିହିତ ସତ୍ତା ଭାବରେ ଗ୍ରହଣ କରାଯାଇ ଲୀଳା ବା ମାୟାକୁ ତାଙ୍କ 'ପ୍ରେମ'ର ପ୍ରକାଶ ଭାବେ କଳ୍ପନା କରାଯାଇଛି । ଏହା ପରମେଶ୍ୱରଙ୍କ Infinite will to action ଅସୀମ କ୍ରିୟା ପାଇଁ ଇଚ୍ଛାର ପରିମାଣ । ଏଠି 'ଗୀତା' ପରି 'କର୍ତ୍ତବ୍ୟ ପାଇଁ କ୍ରିୟା' ନାହିଁ ବା କର୍ମର ପରିଣତିକୁ ଉପେକ୍ଷା କରାଯାଇ ନାହିଁ । ନିଜର କର୍ମକୁ ଏକ ଯୁକ୍ତିସଙ୍ଗତ ଧାରା ଭାବେ ଗ୍ରହଣ କରି ବ୍ୟଷ୍ଟି ସତ୍ତା ଓ ସମଷ୍ଟି ସତ୍ତା ବା ବ୍ୟକ୍ତିର ଅହଂ ଓ ସମଷ୍ଟି-ଅହଂ ମଧ୍ୟରେ ଏକ ସମନ୍ୱୟ ଆଣିବା ହିଁ ଏହାର ପରିଣତି । ଏବଂ ସେଇ ସୂତ୍ରରେ ନିଜ କ୍ରିୟାର ତାତ୍ପର୍ଯ୍ୟ ଖୋଜିବା ହିଁ ଏହାର ସାଧନା । 'କାଣ୍ଟ' ଙ୍କ ଦର୍ଶନରେ 'ନୀତି' (Ethics) ହିଁ ମାନସିକ ଓ ଅଧ୍ୟାତ୍ମିକ ଜଗତର ମୌଳିକ ସତ୍ୟ ।

ଏଇ ପରିପ୍ରେକ୍ଷାରେ ଓ ଭାରତୀୟ ଦର୍ଶନରେ ରହସ୍ୟବାଦର ସ୍ୱାତନ୍ତ୍ର୍ୟ ପରିପ୍ରେକ୍ଷାରେ ଆମ ସାହିତ୍ୟରେ ଦେଖା ଦେଇଥିବା ରହସ୍ୟବାଦର ବିଚାର କରିବାକୁ ପଡ଼ିବ । ଏ ଦୃଷ୍ଟିରୁ ମଧୁସୂଦନଙ୍କ ରହସ୍ୟମୟତା ଓ ପରବର୍ତ୍ତୀ କାଳରେ ବୈକୁଣ୍ଠନାଥଙ୍କର ରହସ୍ୟ ଚେତନାର ବିଚାର ଆଲୋଚନା ଏ ପର୍ଯ୍ୟନ୍ତ ହୋଇନାହିଁ କହିଲେ ହୁଏତ ଠିକ୍ ହେବ । ଅବଶ୍ୟ ଏ ସଂକ୍ରାନ୍ତରେ ରବୀନ୍ଦ୍ରନାଥଙ୍କ ରହସ୍ୟ-ଚେତନା ଓ ତାର ପ୍ରଭାବ ମଧ୍ୟ ବିଚାରର ପରିସର ମଧ୍ୟକୁ ଆସିଯିବ ।

ସୁତରାଂ ଦେଖିଲୁଁ - "ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ" ପୁସ୍ତକରେ ବହୁ ଉପାଦାନ ରହିଛି ଏବଂ ଚିନ୍ତାର ଖୋରାକ ଓ ଉପକରଣ ଯୋଗାଇବା ପାଇଁ ବହୁ ସାମଗ୍ରୀ ରହିଛି । ଏହାର ଦୁଇଟି ଉପଯୋଗିତା ରହିଛି । ଏହି "କାଳ' କୁ ଏକ Water shed ବା Dividing Line ବା Command Area ବୋଲି ଧରିନେଲେ, ଅତୀତ ଇତିହାସ ପ୍ରତି ଏକ ଭିନ୍ନ ଅବଲୋକନର ଆବଶ୍ୟକତା ସ୍ପଷ୍ଟ ହୋଇଯାଏ । କାରଣ ପାଶ୍ଚାତ୍ୟ ପ୍ରଭାବ ଯୋଗୁଁ ଯେଉଁ ପ୍ରକାରର ପ୍ରତିକ୍ରିୟା ସୃଷ୍ଟି ହୋଇଛି, ତାହାର ପୃଷ୍ଠଭୂମିରେ ଅଛି ଆମର ଅତୀତ ଇତିହାସ ଓ ପୁରାତନ ଇତିହାସର ପରମ୍ପରା । ଉଦାହରଣ ସ୍ୱରୂପ ଆମର ଧର୍ମ ପରାମ୍ପରା। ଆମର ଦର୍ଶନର ପରମ୍ପରା । ଭାରତୀୟ କାବ୍ୟତତ୍ତ୍ୱର ପରମ୍ପରା । ନାୟକ-ନାୟିକା ପରମ୍ପରା । ଛନ୍ଦ ପରମ୍ପରା । ରସ ପରମ୍ପରା । ଇତ୍ୟାଦି, ଇତ୍ୟାଦି । ପାଶ୍ଚାତ୍ୟ ପ୍ରଭାବରେ ଦେଖୁ ଏହି ପରମ୍ପରାର ଏକ ନୀରବ ପରିବର୍ତ୍ତନ ସାଧିତ ହୋଇଛି । ଏକ ପ୍ରକାରର metamorphosis । ପାଶ୍ଚାତ୍ୟ ପ୍ରଭାବରେ,

ଶଂସିତ କାଳ ମଧ୍ୟରେ ଏହି କ୍ରିୟା-ପ୍ରିକ୍ରିୟାର ଅଧିକ ଅନୁଧ୍ୟାନ ଆବଶ୍ୟକ । ସେହିପରି ଆଗକୁ ସାହିତ୍ୟ କି ପ୍ରକାର ମୋଡ଼ ନେଲା, ତାହା ମଧ୍ୟ ଅନେକାଂଶରେ ନିର୍ଭର କରିଛି ଏହି ପାଶ୍ଚାତ୍ୟ ପ୍ରଭାବ ସହ କ୍ରିୟା-ପ୍ରତିକ୍ରିୟା ଉପରେ । ପର୍ତ୍ତୁଗୀଜ ପ୍ରଭାବ ଅଛି, କିନ୍ତୁ ତାହା ସାହିତ୍ୟର ଆଖିଦୃଶିଆ ହୋଇନାହିଁ । ମୋଗଲ ପ୍ରଭାବ ଅଛି, କିନ୍ତୁ ତାହା ସାହିତ୍ୟରେ ଆଖିଦୃଶିଆ ହୋଇନାହିଁ । ଆଗରୁ ସଂସ୍କୃତର ପ୍ରଭାବ କଥା ବିଶେଷ ଭାବେ ବିଚାର କରାଯାଉଥିଲା । ଏ କାଳରେ ସାହିତ୍ୟରେ ଅନ୍ୟ ପ୍ରଭାବ କଥା ଆସିଲା ଓ ଏହାର ଦିଗ, ମୋଡ଼, ଆଭିମୁଖ୍ୟ, ଦର୍ଶନ ସବୁ ଯେମିତି ନୂଆ ହୋଇଗଲା । ଏ ଦୃଷ୍ଟିରୁ ଓଡ଼ିଆ ସାହିତ୍ୟର ଇତିହାସ ଚର୍ଚ୍ଚାରେ ଏକ ନୂତନ ଆଭିମୁଖ୍ୟର ଆବଶ୍ୟକତା ରହିଛି । "ଆଧୁନିକ ଓଡ଼ିଆ କାବ୍ୟ-ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ" ପୁସ୍ତକ ତାର ପ୍ରଥମ ମାଇଲ ଖୁଣ୍ଟ,ନିଶାଣ ସ୍ତମ୍ଭ ।

(ପୁନ୍ଶାଗ୍ର- କ୍ଷେତ୍ରବାସୀ ମୋର କନିଷ୍ଠ ଭ୍ରାତା ସଦୃଶ ଥିଲା । ୯-୧୧-୮୪ ତାରିଖରେ ସେ "ଆଧୁନିକ ଓଡ଼ିଆ କାବ୍ୟ- ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ" ପୁସ୍ତକ ମତେ ଉପହାର ଦେଇଥିଲା । ତା'ର କିଛିଦିନ ପରେ ମୁଁ ତାକୁ ଉପରୋକ୍ତ ସମୀକ୍ଷାଟି ଲେଖି ପଠାଇଥିଲି । ବିଧିର ବିଡ଼ମ୍ବନା - ସେଇ ଲେଖା ଆଜି ତାର ସ୍ମୃତି-ତର୍ପଣ ପାଇଁ ବ୍ୟବହୃତ ହେଲା ।)



# ମନୋଗ୍ରାଫ୍ ସ୍ରଷ୍ଟା କ୍ଷେତ୍ରବାସୀ

ପ୍ରଫେସର ବିଜୟ କୁମାର ଶତପଥୀ

୧୯୬୦ ମସିହା ପରେ ସାହିତ୍ୟ ସମାଲୋଚନାରେ ହାତଦେଇ ୧୯୭୦ ମସିହା ବେଳକୁ ଯଶସ୍ୱୀ ହୋଇଥିବା ଡଃ କ୍ଷେତ୍ରବାସୀ ନାୟକଙ୍କ ଅକାଳ ଦେହାନ୍ତ ଆମର ପାଠକ ଓ ବୁଦ୍ଧିଜୀବୀମାନଙ୍କ ପାଇଁ ଥିଲା ଏକ ଶୋଚନୀୟ ସମ୍ବାଦ । 'ଆଧୁନିକ ଓଡ଼ିଆ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ' ହେଉଛି ତାଙ୍କର ଗବେଷଣା ନିବଂଧ ଯାହା ତାଙ୍କର ପ୍ରଜ୍ଞା ଓ ଅନ୍ୱେଷଣର ସ୍ମାରକୀ ହୋଇ ଆତ୍ମପ୍ରକାଶ କରିଛି । ଏତଦ୍‌ବ୍ୟତୀତ, 'ସାହିତ୍ୟର ସାମାନ୍ୟକଥନ', 'କବି ଅର୍ଜ୍ଜୁନ ଦାସ', 'ସାହିତ୍ୟିକ ବୀକ୍ଷା ଓ ନିରୀକ୍ଷା', 'କବି ନୀଳକଣ୍ଠ', 'କବି ଚରିତ ରାଧାନାଥ', 'ନାରୀ କବି ଅନ୍ନପୂର୍ଣ୍ଣା : କବି ଚରିତ ଓ କାବ୍ୟଚର୍ଚ୍ଚା' ପ୍ରଭୃତି ସମୀକ୍ଷା ଗ୍ରନ୍ଥଗୁଡ଼ିକ ତାଙ୍କର ଗଭୀର ଅନୁଶୀଳନ ଓ ମନୀଷାର ପରିଚାୟକ । 'କବି ନୀଳକଣ୍ଠ', 'କବି ଚରିତ ରାଧାନାଥ', କବି ଅର୍ଜ୍ଜୁନ ଦାସ, 'ନାରୀ କବି ଅନ୍ନପୂର୍ଣ୍ଣା' କବି ରଚିତ ଓ କାବ୍ୟଚର୍ଚ୍ଚା' - ଏହି ଚାରିଗୋଟି ଗ୍ରନ୍ଥ ଓଡ଼ିଆ ସାହିତ୍ୟର ପ୍ରମୁଖ ଚାରିଜଣ କବିଙ୍କର ଜୀବନ ଚରିତକୁ ଅବଲମ୍ବନ କରି ରଚିତ ହେବା ସହିତ ସେମାନଙ୍କର କାବ୍ୟାଦର୍ଶ ସଂପର୍କରେ, ପୁଣି ଜୀବନ ଦୃଷ୍ଟି ସଂପର୍କରେ ଯଥାର୍ଥ ଆଲୋକପାତ କରିଛି । ସେହି ଚାରିଗୋଟି ମନୋଗ୍ରାଫ୍ ସଂପର୍କରେ ଆଲୋକପାତ କରିବା ଏହି ପ୍ରବନ୍ଧର ଉଦ୍ଦେଶ୍ୟ ।

ପ୍ରଚଳିତ ସାହିତ୍ୟ ସମାଲୋଚନା ଧାରା ମଧ୍ୟରେ 'ମନୋଗ୍ରାଫ୍'ର ବାଗ ଓ ରାଗ ନିଆରା । ଏହା ଜୀବନଭିତ୍ତିକ ହୋଇଥିବାରୁ ଅଧିକ ମନନଶୀଳ । ଭାଷା ଲଳିତ, ଭାବ ମସ୍ତିଷ୍କଠାରୁ ହୃଦୟକୁ ବେଶୀ ଆପଣାଇଥାଏ । ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ବଲାଙ୍ଗୀରର ରାଜେନ୍ଦ୍ର କଲେଜ, ବ୍ରହ୍ମପୁରର ଖଲିକୋଟ କଲେଜ ଓ ପରେ କଟକର ରେଭେନ୍ସା କଲେଜରେ ଅଧ୍ୟାପନା ବୃତ୍ତିରେ ନିୟୋଜିତ ଥିଲାବେଳେ ସେ ସାହିତ୍ୟ ସେବା କ୍ଷେତ୍ରରେ କେତେକ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ନିର୍ବାହ କରିଛନ୍ତି । ବୃତ୍ତିଗତ ଜୀବନ କେବେହେଲେ ତାଙ୍କ ନିକଟରେ ବଡ଼ ହୋଇନାହିଁ । ସେ ସାହିତ୍ୟକୁ ଖୁବ୍ ନିବିଡ଼ ଭାବରେ ଭଲପାଇବସିଛନ୍ତି, ତା ପ୍ରେମରେ ପଡ଼ିଛନ୍ତି ଓ ଏହି ପ୍ରେମ ବଂଧନ ଅତୁଟ ରହିଛି ତାଙ୍କ ଦେହାବସାନ ପର୍ଯ୍ୟନ୍ତ । ଡଃ ନାୟକ କବିତା ଲେଖିଛନ୍ତି, ଗଳ୍ପ ରଚନା କରିଛନ୍ତି, ସଂପାଦନା କରିଛନ୍ତି ପୁଣି ତା ସହ ସମାଲୋଚନା ଆମ ସାହିତ୍ୟର ବିଭିନ୍ନ କବିଙ୍କୁ ନେଇ ଓ ଯୁଗୀୟ ପ୍ରବୃତ୍ତିଗୁଡ଼ିକୁ ନେଇ ମଧ୍ୟ ସେ ଲେଖିଛନ୍ତି । କିନ୍ତୁ ସେ ଓଡ଼ିଆ ସାହିତ୍ୟରେ ଜଣେ କୁଶଳୀ ସମାଲୋଚକ ଭାବରେ ହିଁ ବଂଚିରହିବେ । ପୂର୍ବରୁ

ଯେଉଁ ବିଭିନ୍ନ କଲେଜରେ ତାଙ୍କର ଅଧ୍ୟାପନା ସଂପର୍କରେ କୁହାଯାଇଛି ସେସବୁ ସ୍ଥାନରେ ଡଃ ନାୟକ ବିଭିନ୍ନ ସାହିତ୍ୟାନୁଷ୍ଠାନ, ଆସର ଓ ସଂସଦମାନ ଗଠନ କରି ସାହିତ୍ୟ ସେବା ଓ ସାହିତ୍ୟ ସମାଲୋଚନାକୁ ଏକ ବୃହତ୍ତର ସାମାଜିକ ପଟ୍ଟଭୂମିରୁ ବିଚାରିଛନ୍ତି । ଏହାଦ୍ୱାରା ତାଙ୍କ ଦୃଷ୍ଟିରେ ସମୀକ୍ଷା କର୍ମଟି ଏକ ବ୍ୟାପକ ଜୀବନବୋଧ ଦେଇ ଉଦ୍‌ଭାସିତ ହେବା ସଙ୍ଗେ ସଙ୍ଗେ ପାଠକ ପ୍ରାଣକୁ ଆଲୋକିତ କରିବା ଦିଗରେ ସମର୍ଥ ହୋଇଛି ।

ଡଃ ନାୟକଙ୍କର 'କବି ନୀଳକଣ୍ଠ' ଗ୍ରନ୍ଥର ପ୍ରକାଶନ କାଳ ହେଉଛି ୧୯୭୨ । ବ୍ରହ୍ମପୁରଠାରେ ଅବସ୍ଥାନ କାଳରେ ଡକ୍ଟର ନାୟକ ଏହା ରଚନା କରିଛନ୍ତି । ଏହି ଗ୍ରନ୍ଥ ରଚନାର ପୃଷ୍ଠଭୂମିରେ ଅଛି ବ୍ରହ୍ମପୁରଠାରେ ଗଠିତ ସମୀକ୍ଷା ସଂସଦ । ସେତେବେଳେ ଡଃ କ୍ଷେତ୍ରବାସୀ ନାୟକଙ୍କ ସହିତ ଡଃ ସୁଦର୍ଶନ ଆଚାର୍ଯ୍ୟ, ଡଃ ଅପର୍ଣ୍ଣା ପ୍ରଧାନ, ଲାବଣ୍ୟ ନାୟକ, ଡଃ ବ୍ରହ୍ମାନନ୍ଦ ସିଂହ, ଶ୍ରୀ ଭାସ୍କର ଚନ୍ଦ୍ର ପାତ୍ର ପ୍ରଭୃତି ଏହି ସମୀକ୍ଷା ସଂସଦର ସଭ୍ୟ ଥିଲେ । ଗ୍ରନ୍ଥ ଆରମ୍ଭରେ ଲେଖକ ସ୍ୱୀକାର କରିଛନ୍ତି ଯେ – " ମୋର ଏହି ଗ୍ରନ୍ଥ ସୁପରିକଳ୍ପିତ ଏକ ବୃହତ୍ତର ଯୋଜନାର ପ୍ରଥମ ମନୋଗ୍ରାଫ୍ । ସମୀକ୍ଷା ସଂସଦ ଏହି ପରିକଳ୍ପଟିର ପ୍ରସ୍ତୁତି ଉତ୍ସ । ସତ୍ୟବାଦୀ କବିକୁଳଙ୍କ ମଧ୍ୟରୁ ଜଣେ ଦୁଇଜଣଙ୍କର କବିକୃତି ସଂପର୍କରେ ଅତୀତରେ ଆଲୋଚନା ହୋଇଛି । କିନ୍ତୁ ସେହି କାବ୍ୟ ସ୍କୁଲର ଅନ୍ୟତମ କବି-କର୍ମ-ସାଧକ ପଣ୍ଡିତ ନୀଳକଣ୍ଠଙ୍କୁ ଘେନି ଏକକ କାବ୍ୟ ଚର୍ଚ୍ଚାର ଅଭାବ ଥିଲା । ଏବେ ତାହା ଦୂର ହେଲା ଏବଂ ଏହାଦ୍ୱାରା ସତ୍ୟବାଦୀ କାବ୍ୟ ସ୍କୁଲର ପୂର୍ଣ୍ଣାଙ୍ଗ ଅଧ୍ୟୟନ ପାଇଁ ଅନୁସନ୍ଧିତ୍ସୁମାନେ ପ୍ରାଥମିକ ଅସୁବିଧାର ସମ୍ମୁଖୀନ ହେବେ ନାହିଁ ।"[୧]

ସଂପ୍ରତି ହୁଏତ ନୀଳକଣ୍ଠଙ୍କ ସଂପର୍କରେ ରଚିତ ଗ୍ରନ୍ଥ ଓ ମନୋଗ୍ରାଫ୍ ଆଦି ସୁଲଭ ହେଲାଣି । କିନ୍ତୁ ୧୯୭୦-୭୨ ବେଳକୁ ଏହି ସାରସ୍ୱତ ସାଧକଙ୍କ ସଂପର୍କରେ ଆଲୋଚନା ଗ୍ରନ୍ଥର ଅଭାବ ଅନୁଭବ କରି ଡଃ ନାୟକ ଯେଉଁ ଉପାଦେୟ ଅନୁଶୀଳନ ଉକ୍ତ ଗ୍ରନ୍ଥରେ କରିଛନ୍ତି ତାହା ଲକ୍ଷ୍ୟ କରିବାର କଥା । 'କବି ନୀଳକଣ୍ଠ', 'କବି-ଜୀବନର ଅଭ୍ୟୁଦୟ : ପ୍ରଥମ କବିତା', 'କାବ୍ୟ ପରିକ୍ରମା', 'ରାମଚଣ୍ଡୀରେ ମୁଁ ପଚାରି ବୁଝେ, କୋଣାର୍କ ଦଶା', 'କାବ୍ୟଚେତନା ଅନ୍ୱେଷଣ : ପ୍ରଣୟ ଚେତନା', 'ସୌନ୍ଦର୍ଯ୍ୟ ଦୃଷ୍ଟି : ରୂପବିଳାସ', 'ଇତିହାସ- ଉପାସନା ସ୍ୱଦେଶାନୁରାଗ', 'କ୍ଲାସିକ ଓ ରୋମାଣ୍ଟିକ କବି ଦୃଷ୍ଟି', 'କାବ୍ୟ-କବିତାରେ ପାଶ୍ଚାତ୍ୟ ପ୍ରଭାବ', 'କାବ୍ୟଭାଷା – ଅଭିବ୍ୟକ୍ତିର ଧାରା', 'ଉତ୍ତରକାଳକୁ କବି ନୀଳକଣ୍ଠଙ୍କ ପ୍ରେରଣା', 'କବିଙ୍କର ଅନ୍ତିମ ବକ୍ତବ୍ୟ' ପ୍ରଭୃତି କ୍ଷୁଦ୍ର କ୍ଷୁଦ୍ର ପରିଚ୍ଛେଦରେ ଏହି ମନୋଗ୍ରାଫ୍‌ଟି ବିଭକ୍ତ । ଆଲୋଚକ ଡଃ ନାୟକଙ୍କ ଆଲୋଚନା ଗ୍ରନ୍ଥଗୁଡ଼ିକ ପାଠକଲେ ମନେହୁଏ ଯେ ସେ ମୁଖ୍ୟତଃ ସୌନ୍ଦର୍ଯ୍ୟ ତାତ୍ତ୍ୱିକ ସମାଲୋଚନାର

ଧାରାକୁ ବାଛିନେଇଛନ୍ତି । କେଉଁଠି କେମିତି ପ୍ରସଙ୍ଗକ୍ରମେ ସାହିତ୍ୟ ସୃଷ୍ଟିର ପୃଷ୍ଠଭୂମି, କବିଙ୍କର ସମକାଳୀନ ପରିବେଶ ଓ ତୁଳନାକ୍ରମରେ କୌଣସି କବିଙ୍କର ବିଶେଷତ୍ୱ ପ୍ରତିପାଦନ କଲାବେଳେ ହୁଏତ ସେ ଐତିହାସିକ ଓ ତୁଳନାତ୍ମକ ସମୀକ୍ଷା ପଦ୍ଧତିର ଦ୍ୱାରସ୍ଥ ହୋଇଛନ୍ତି । କିନ୍ତୁ ଓଡ଼ିଆ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ସୌନ୍ଦର୍ଯ୍ୟତାତ୍ତ୍ୱିକ ସମୀକ୍ଷା ପଦ୍ଧତିରେ ସେ ଜଣେ ଅନୁଭବୀ ସମୀକ୍ଷକ ଭାବରେ ନିଜର ଆସନ  ସୁଦୃଢ଼ କରିଯାଇଛନ୍ତି । 'କବି ନୀଳକଣ୍ଠ' ଗ୍ରନ୍ଥରେ କବି ଚରିତ ଓ କାବ୍ୟ ଜିଜ୍ଞାସାର ଯଥାର୍ଥ ସମନ୍ୱୟ ସାଧିତ ହୋଇଛି ସମାଲୋଚକଙ୍କ ସୌନ୍ଦର୍ଯ୍ୟନିଷ୍ଠ ଦୃଷ୍ଟିକୋଣକୁ ଆଧାର କରି । ଗ୍ରନ୍ଥର ପ୍ରଥମ ପରିଚ୍ଛେଦଟିକୁ ସେ ଆରମ୍ଭ କରିଛନ୍ତି ଏହିପରି - "ନୀଳକଣ୍ଠ ଜଣେ ସଂସ୍କୃତିପ୍ରାଣ କବି । ପ୍ରଜ୍ଞା ଓ ପ୍ରତିଭାର ଏକ ମୂର୍ତ୍ତିମାନ ପ୍ରତୀକ । ଅନୁଭୂତିର ଏକ ନିର୍ଝର ଓ ବିଦ୍‌ବତ୍ତାର ଏକ ସମୁଦ୍ର । କଳ୍ପନା ଅପେକ୍ଷା ପ୍ରଜ୍ଞା, ସ୍ୱପ୍ନ ଅପେକ୍ଷା ସହଜ ବାସ୍ତବତାର ମୂଲ୍ୟ ତାଙ୍କଠାରେ ବେଶୀ । ଜୀବନର ଆୟତ ଭୂମିରେ ମୃଣ୍ମୟ ଅନୁଭୂତିର ଲିପିକାର ହେବା ଅପେକ୍ଷା ଜାତିର ଆତ୍ମିକ ବିଭବକୁ ଟିକିନିଖି ସଂଗ୍ରହ କରି ତାକୁ ଅନାଗତର ପାଥେୟ ବୋଲି ବିବେଚନା କରିବାରେ ନୀଳକଣ୍ଠଙ୍କ କବି ମନ ବିଶେଷ ତତ୍ପର ଥିଲା ।

ତାଙ୍କ ପାଇଁ ଜୀବନ କିଛି  ଚପଳଛନ୍ଦ ନୁହେଁ; ଉଲଙ୍ଗ ଝରଣାର  ଉଚ୍ଛୃଙ୍ଖଳ ଉଚ୍ଚାରଣ ନୁହେଁ ବରଂ ପ୍ରବୀଣତାର ଆଧିପତ୍ୟରେ ତାହା ସତେ ଯେପରି ଜ୍ଞାନଗରିଷ୍ଠ । କବିର ଆଖି ନେଇ ସେ ଜୀବନର ଦ୍ରଷ୍ଟା ହୋଇପାରିନାହାନ୍ତି । ଗୁରୁର ମନ ନେଇ ସେ ଜୀବନର ନିର୍ମାତା ରୂପେ କିମ୍ବା ଜାତିର ଆଚାର୍ଯ୍ୟ ପରି ଏ ମାଟିର ନିହିତ ସ୍ୱରକୁ ପ୍ରାଣେ ପ୍ରାଣେ ଫୁଟାଇବାରେ ତାଙ୍କର କବି ମନ ସତତ ଉଦ୍ୟମ କରିଛି । ଦାର୍ଶନିକତାର ଗହନ ଥଳରେ ସେ ଆଶ୍ରୟ ନେଇଛନ୍ତି । ସେଠି ପାଇଛନ୍ତି ଶାଳୀନତାର କିଛି ରତ୍ନ ପାଖୁଡ଼ା ଏବଂ ସୁରୁଚିର କିଛି କନକ ଶସ୍ୟ ।

"କବି ଜୀବନର ଅଭ୍ୟୁଦୟ : ପ୍ରଥମ କବିତା" - ଅଧ୍ୟାୟରେ ଡଃ ନାୟକ ନୀଳକଣ୍ଠଙ୍କ 'ଆଦର୍ଶ ତାରା' (୧୯୦୯ ଜାନୁଆରୀରେ ରଚିତ) କବିତାଟିକୁ ପ୍ରଥମ କବିତା ଭାବରେ ଗ୍ରହଣ କରିଛନ୍ତି । ଗ୍ରନ୍ଥାବଳୀରେ ସନ୍ନିବେଶିତ ହୋଇନଥିବା ଅନୂଦିତ ଅନ୍ୟାନ୍ୟ କବିତା ଯଥା 'ବିଧୁ ଓ ବାସନ୍ତୀ' (ମୁକୁର ଅକ୍ଟୋବର ୧୯୧୧), 'ଗୋଲାପ' (ଉତ୍କଳ ସାହିତ୍ୟ, ଅକ୍ଟୋବର ୧୯୧୧), 'ଅଶ୍ରୁ (ମୁକୁର- ଜାନୁଆରୀ ୧୯୧୬) ସଂପର୍କରେ ସୂଚନା ଏଥିରେ ମଧ୍ୟ ସେ ଦେଇଛନ୍ତି । ପ୍ରଥମ କବିତା 'ଆଦର୍ଶ ତାରା' ସଂପର୍କରେ  ନୀତିଦୀର୍ଘ ଆଲୋଚନା ଏହି ଅଧ୍ୟାୟଟିର ସଂପଦ । ଆଲୋଚକ ଏହାକୁ ମିଷ୍ଟିକ ପ୍ରଣୟର ନିର୍ମଳ ଅନୁଭବ ବୋଲି ଅଭିହିତ କରିଛନ୍ତି । ଏଠାରେ ପ୍ରେମ ଦେହବାଦୀ

ଭାବନା ପୀଡ଼ିତ ନୁହେଁ । ପ୍ରଣୟ ପ୍ରତିମା ଏଠାରେ ଅଶରୀରୀ । ପ୍ରଣୟାନୁଭବ ମଧ୍ୟ ଇନ୍ଦ୍ରିୟୋତ୍ତର । ଏହି ଆଦ୍ୟ କବିତାଟିରେ ପ୍ରତିଫଳିତ ମାନସିକତା ପରବର୍ତ୍ତୀ କାଳରେ ନୀଳକଣ୍ଠଙ୍କ କାବ୍ୟଚେତନାରେ କିପରି ବିସ୍ତାରିତ ହୋଇଛି ତାହା ପ୍ରତିପାଦନ କରିଛନ୍ତି ଡଃ ନାୟକ । ଏହା ତାଙ୍କ ସମୀକ୍ଷା ଦୃଷ୍ଟିର ସୂକ୍ଷ୍ମ ଅନୁଶୀଳନ ବୋଲି ବୁଝିବାକୁ ହେବ ।

ଗ୍ରନ୍ଥାବଳୀ ସନ୍ନିବେଶିତ 'ଭକ୍ତିଗାଥା' ଓ 'ଉପାସନା' ସଂପର୍କରେ ସମାଲୋଚକଙ୍କର ମନ୍ତବ୍ୟ ତାତ୍ପର୍ଯ୍ୟପୂର୍ଣ୍ଣ । 'ଭକ୍ତିଗାଥା' ରେ ନୀଳକଣ୍ଠ ଚାରିପ୍ରକାର ଭକ୍ତଙ୍କ ଅତିଗ (transcendental) ଉଲ୍ଲାସକୁ ରୂପ ଦେଇଛନ୍ତି ବୋଲି ସେ କହନ୍ତି । ସେ ଚାରିପ୍ରକାରର ଭକ୍ତ ହେଲେ ଆର୍ତ୍ତ, ଜିଜ୍ଞାସୁ, ଅର୍ଥାର୍ଥୀ ଓ ଜ୍ଞାନୀ ଏବଂ ତାହା ଆର୍ତ୍ତବାଣୀ, ପ୍ରଶ୍ନବାଣୀ, ଭକ୍ତବାଣୀ, ଆତ୍ମବାଣୀ ଓ ବିଶ୍ୱବାଣୀ ଏହି କ୍ରମରେ ପ୍ରକାଶ ପାଇଛି । ସେହିପରି ଉପାସନାରେ ରହିଛି ମିଷ୍ଟିକ ପରାନିଷ୍ଠାତା (high seriousness)ର ଗମ୍ଭୀର ସ୍ୱର । ନୀଳକଣ୍ଠ କାବ୍ୟ ପରିକ୍ରମା ଅଧ୍ୟାୟରେ ଡଃ ନାୟକ 'ପ୍ରଣୟିନୀ' 'ଦାସ ନାଏକ', 'କୋଣାର୍କେ' ଓ 'ଖାରବେଳ' କାବ୍ୟର ସମୀକ୍ଷା କରିଛନ୍ତି । 'ପ୍ରଣୟିନୀ' ଓ 'ଦାସ ନାଏକ' ଟେନିସନଙ୍କ 'ପ୍ରିନସେସ୍' ଓ 'ଏନିକ୍ ଆର୍ଡ଼େନ'ର ଅନୁବାଦ ହେଲେ ମଧ୍ୟ ସ୍ଥଳବିଶେଷରେ ଲୌକିକ ଆବଶ୍ୟକତାର ଅନୁରୋଧ ନୀଳକଣ୍ଠ ଏଡ଼ାଇ ପାରିନାହାନ୍ତି ବୋଲି ସମାଲୋଚକ ଡଃ ନାୟକ ମନ୍ତବ୍ୟ ଦିଅନ୍ତି । ଏହାଫଳରେ ଉକ୍ତ କାବ୍ୟଦ୍ୱୟର ଚରିତ୍ରମାନଙ୍କର ନାମକରଣରେ ପରିବର୍ତ୍ତନ ସଂଘଟିତ ହେବା ସଙ୍ଗେ ସଙ୍ଗେ ସେଇ ଦୁଇଟି କାବ୍ୟ ସମୁଜ୍ଜ୍ୱଳ ହୋଇଉଠିଛି ସ୍ଥାନୀୟ ରଙ୍ଗର (local colour) ପୁଟ ନେଇ । ନୀଳକଣ୍ଠ ମୌଳିକ କାବ୍ୟଦ୍ୱୟ 'କୋଣାର୍କେ' ଓ 'ଖାଲବେଳ' ର ବୈଶିଷ୍ଟ୍ୟ ପ୍ରଦର୍ଶନରେ ସମୀକ୍ଷକ ମନନଶୀଳ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଛନ୍ତି । 'ରାମଚଣ୍ଡୀରେ ରାତି' ପର୍ଯ୍ୟାୟଟି ସଂପର୍କରେ ତାଙ୍କର ମନ୍ତବ୍ୟ ହେଲା - "କବିର ହୃଦୟ ଏକ ସ୍ୱତନ୍ତ୍ର ଗୋଲକ ହେଲେ ବି ଅନ୍ୟର ଅନୁଭବକୁ ଯଥାର୍ଥ ସମୟରେ ଆପଣାର ବୋଲି ମାନିନେବା ନୀଳକଣ୍ଠଙ୍କର ଏକ କଳା କୌତୁକ । ସେଇ ଅନୁଭବ ଓ ପ୍ରସାରିତ କଳ୍ପନା ଯୋଗୁ ପ୍ରବାସର ଛାତ୍ର ଓ ସ୍ୱବାସର ପିତାମାତା ପରିଜନଙ୍କ ଭିତରେ ଥିବା ଦୂରତ୍ୱର ବ୍ୟବଧାନକୁ ଘୁଞ୍ଚେଇ ଦେଇଛନ୍ତି । କବି, ଏକତ୍ର ଏକଇ ସ୍ଥାନରେ ଉଭୟଙ୍କର ଚିନ୍ତାବସ୍ଥା ଅନୁଭବ କରିପାରିଛନ୍ତି ।"

ଜନନୀର ଗୁରୁବେଦନା କିମ୍ବା ଭଗିନୀର ବିଷାଦ ସ୍ମରଣକରି ଏପରି ଏକ ପରିସ୍ଥିତିରେ ଚମକି ଉଠିବା ଯେପରି ସତ୍ୟ, ସେହିପରି ପବନର ଝଙ୍କାରରେ ପଲକେ ପଲକେ ଶିଶୁର ଅନାଗତ ପଦଧ୍ୱନି ଶୁଣିବାର କୌତୂହଳ ପ୍ରକାଶ କରୁଥିବା ପିତା-ମାତାଙ୍କର

ମନୋଭାବ ମଧ୍ଯ ଏହି ସମୟ ପାଇଁ ସତ୍ୟ / ସତ୍ୟର ଏଇ ଦୁଇ ପାର୍ଶ୍ଵ ଏବଂ ତାର ଭୂମିକା ଉପରେ କବିର ଅନୁଭବ ଓ କଳ୍ପନା ଦୃଷ୍ଟି ଏଠି ପରିପୂର୍ଣ୍ଣ ରୂପେ ପ୍ରକାଶ ପାଇଛି ।" 'କୋଣାର୍କେ' କାବ୍ୟର ମାୟାଦେବୀ ଅଂଶଟିର ବିଶ୍ଳେଷଣ କରି ଏଥିରେ ନିହିତ ରୋମାଣ୍ଟିକ ପ୍ରବଣତା, କିମ୍ବଦନ୍ତୀ ଓ ଇତିହାସର ମଧୁର ସମନ୍ଵୟ ପୁଣି ଜାତୀୟତାବାଦର ଆଲେଖ୍ୟକୁ ଦର୍ଶାଇ ଦେଇଛନ୍ତି ସମାଲୋଚକ । ଏ ଦୃଷ୍ଟିରୁ 'ରାମଚଣ୍ଡୀରେ ମୁଁ ପଚାରି ବୁଝେ କୋଣାର୍କ ଦଶା' ଅଧ୍ୟାୟଟି ଗୁରୁତ୍ୱପୂର୍ଣ୍ଣ । ଶୌର୍ଯ୍ୟ ଓ ପ୍ରେମର ଗୌରବ କୀର୍ତ୍ତିତ ହୋଇଥିବା 'ଖାରବେଳ' କାବ୍ୟର ମହତ୍ତ୍ୱ ପ୍ରତିପାଦନରେ କବିଙ୍କ ସୌନ୍ଦର୍ଯ୍ୟ ଦୃଷ୍ଟି ମଧ୍ଯ ଲକ୍ଷ୍ୟ କରିହେବ । ଗ୍ରନ୍ଥଟିରେ ସ୍ଥାନିତ ଅନ୍ୟାନ୍ୟ ଅଧ୍ୟାୟଗୁଡ଼ିକରେ ପ୍ରକାଶ ପାଇଛି ସମୀକ୍ଷକଙ୍କର ବିଦ୍‌ବତ୍ତା, ଅନ୍ତର୍ଦୃଷ୍ଟି ଓ ନୀଳକଣ୍ଠଙ୍କ କାବ୍ୟକୁ ପାଶ୍ଚାତ୍ୟ ସାହିତ୍ୟର କେତେକ କାବ୍ୟ ସହ ତୁଳନା କରିବାର ନୈପୁଣ୍ୟ । ଗୋଟିଏ ସ୍ଥାନରେ କବି ନୀଳକଣ୍ଠଙ୍କ କାବ୍ୟ ଭାବନାର ଉତ୍କର୍ଷ ପ୍ରତିପାଦନ କରି ସେ କହିଛନ୍ତି - "କବି କିଛି ସୁକୁମାର ଶବ୍ଦ ପ୍ରତିମା ବ୍ୟବହାରରେ ଅଭିବ୍ୟକ୍ତିକୁ ମର୍ମଘେନା କରିପାରିଛନ୍ତି । କେବଳ ସାଦୃଶ୍ୟକଥନ ଦେଇ ଭାବ-ରୂପ ବା ଚିତ୍ର-ସଂସ୍ଥାନ ଶୈଳୀ ଉପରେ ସେ ଏକାନ୍ତ ନିର୍ଭରଶୀଳ ହୋଇନାହାନ୍ତି । ପାଶ୍ଚାତ୍ୟ କ୍ଲାସିକାଲ ଇମେଜ; କୌଣସି ଆବେଗ ବା ବସ୍ତୁର ସମାନ୍ତର ସାଦୃଶ୍ୟଭିତ୍ତିକ ଅଳଂକରଣ ହୋଇ ପରିଣତିରେ ଏକ ଭାବ-ସତ୍ତା ଫୁଟେଇଲା ପରି କିମ୍ବା ପ୍ରାଚ୍ୟ-କ୍ଲାସିକାଲ ଇମେଜ, ଉପମାନ ଉପମେୟ ମଧ୍ୟରେ ଥିବା ସୂକ୍ଷ୍ମ ସମାନ୍ତରତାକୁ ରକ୍ଷା କରି ପରିଣତିରେ ଶ୍ରୁତି ବା ଦୃଶ୍ୟସଙ୍ଗତି ଆଣିବାକୁ ଚେଷ୍ଟା କଲାଭଳି କବି ନୀଳକଣ୍ଠ, ସେଇ ପ୍ରାଚୀନ କ୍ଲାସିକାଲ ପଦ୍ଧତିର ବିଶ୍ୱସ୍ତ ଅନୁସରଣ କରି ସର୍ବଦା ଆପଣା କାବ୍ୟପ୍ରକାଶରେ ସେପରି ଚିତ୍ର କଳ୍ପନା କରିନାହାନ୍ତି । ଉପମା, ରୂପକ, ସୃଷ୍ଟି ସତ୍ତ୍ୱେ ମଧ୍ଯ ସେ କେତେକ ଚିତ୍ରକଳ୍ପର ବ୍ୟବହାର ଦେଖାଇ ପ୍ରକାଶଧାରାରେ ଅଭିନବତା ଆଣିଛନ୍ତି ।"

ସମୀକ୍ଷକଙ୍କ ଉଚ୍ଚାରଣ ବେଶ୍ ସ୍ପଷ୍ଟ ଓ ଶାଣିତ, ଯେତେବେଳେ 'ଉତ୍ତରକାଳକୁ କବି ନୀଳକଣ୍ଠଙ୍କ ପ୍ରେରଣା' ସଂପର୍କରେ ସେ ମନ୍ତବ୍ୟ ପ୍ରଦାନ କରନ୍ତି । ତାଙ୍କ ମତରେ - "କବିତା ପାଇଁ ସେ ଉତ୍ତରକାଳର ସ୍ରଷ୍ଟା ହୋଇପାରିନାହାନ୍ତି । ସଂସ୍କୃତିର ଉପାସନା ଭିତରେ ଆପଣାକୁ ହଜେଇ ଦେଇଛନ୍ତି । ଜାତୀୟତା, ଶୁଚିବୋଧ ଓ ସଂଯମ ହୋଇଛି ତାଙ୍କର ସାରସ୍ୱତ ଆଦର୍ଶ।" କବିଙ୍କର ଅନ୍ତିମ ବକ୍ତବ୍ୟକୁ ତାଙ୍କର କାବ୍ୟମଧ୍ୟରୁ ସଂଧାନ କରିଛନ୍ତି ସମାଲୋଚକ ଡଃ ନାୟକ । 'କୋଣାର୍କେ' କାବ୍ୟରୁ ଏ ସଂପର୍କରେ ସେ ଯେଉଁ ପଂକ୍ତିଟି ଉଦାହରଣ ସ୍ୱରୂପ ଦେଇଛନ୍ତି ତାହା ହେଲା -

"ଜୀଇଁ ଥାଉ କେବେ ଛାଡ଼ିବ ନାହିଁ ତୁମ୍ଭେ ଯବନ
ଶ୍ୟାମଳ ଉତ୍କଳେ କରିବ ନାହିଁ ବ୍ୟସନ -ବନ
ପୟସ୍ୱିନୀ ଗାଭୀ କାନ୍ଦିବେ ନାହିଁ ହିନ୍ଦୁ - ଭବନେ
କୁଳବାଳା କେବେ ତେଜିବେ ନାହିଁ ସତୀତ୍ୱ ଧନେ
ନୀଳାଚଳୁ ରକ୍ତ ଚିରାଳ ଯିବ ନାହିଁ ସାଗରେ;
ଉତ୍କ ଯଜ୍ଞବେଦୀ ଉତ୍କଳ ନହାରିବ ସମରେ;
ଗଜପତି ଶିର ଲଙ୍ଘିବ ନାହିଁ ଭାରତ-ଖଣ୍ଡେ
ସାମନ୍ତ ରାଜନେ ଭୋଗିବେ ନାହିଁ ଯବନ ଦଣ୍ଡେ ।"

(କୋଣାର୍କେ - ୨୩/୬୯୩)

ନୀଳକଣ୍ଠଙ୍କ କାବ୍ୟ ପୃଷ୍ଠାରେ ଉତ୍କୀର୍ଣ୍ଣ ତାଙ୍କର ଏହି ଅନ୍ତିମ ବକ୍ତବ୍ୟ ସଂପର୍କରେ ମନ୍ତବ୍ୟ ପ୍ରଦାନକରି ସମାଲୋଚକ କହନ୍ତି - "ଜୀବନର ଶେଷ ପ୍ରହର ପର୍ଯ୍ୟନ୍ତ ପ୍ରତ୍ୟେକ ଉତ୍କଳୀୟ, ଜାତିର ଜାଗ୍ରତ ପ୍ରହରୀ ପରି ସତର୍କ ଥାଇ ଦେଖୁ ଯେ, ଉତ୍କଳ ଶ୍ୟାମଳିମା ଖଣ୍ଡିତ ନ ହେଉ, ପୟସ୍ୱିନୀ ଗାଭୀ ହିନ୍ଦୁ ଭବନରେ ଆତ୍ମବଳି ନ ଘେନୁ । କୁଳବାଳାର ସତୀତ୍ୱ ଧନ ଅପହୃତ ନ ହେଉ, ଉତ୍କଳର ଯଜ୍ଞବେଦୀ ଅପରାଜିତ ହୋଇ ରହୁ କିମ୍ୱା ଗଜପତି ଶିର ଅଜେୟ ଥାଇ ଏ ଜାତିର ସାର୍ବଭୌମତ୍ୱ ପ୍ରସାର କରୁଥାଉ- ଏହାହିଁ ହେଉଛି କବିଙ୍କର ଅନ୍ତିମ ବକ୍ତବ୍ୟ ।"

ପୁସ୍ତକ ଭଣ୍ଡାର ପ୍ରକାଶିତ 'କବି ରଚିତ : ରାଧାନାଥ' ର ପ୍ରକାଶକାଳ ୧୯୭୫ ମସିହା । ଏଥିରେ ଯେଉଁ ଛ' ଗୋଟି ଅଧ୍ୟାୟ ସନ୍ନିବେଶିତ ହୋଇଛି ସେଗୁଡ଼ିକ ହେଲା - 'ଜନ୍ମ ଶୈଶବଜୀବନ; 'କବି ପ୍ରତିଭା ଉନ୍ମେଷ ଓ ଉତ୍ତରଣ', 'କବିକଳି', 'ଶିକ୍ଷକ ଓ ପ୍ରଶାସକ' ରାଧାନାଥ, 'ଅଶ୍ରୁତର୍ପଣ ଓ ପ୍ରତିଭା ଅର୍ଚ୍ଚନା', 'ରାଧାନାଥଙ୍କ କାବ୍ୟ ଦର୍ଶନ' ପ୍ରଭୃତି । ଏହି ଗ୍ରନ୍ଥ ରଚନା ପୂର୍ବରୁ ଯେଉଁ ଆଠଗୋଟି ଗ୍ରନ୍ଥ ରାଧାନାଥଙ୍କ ସଂପର୍କରେ ରଚିତ ହୋଇଥିଲା ତା'ର ବିବରଣୀ ଗ୍ରନ୍ଥର ଭୂମିକାରେ ସମାଲୋଚକ ଦେଇଛନ୍ତି । ସେଗୁଡ଼ିକ ହେଲା 'ରାଧାନାଥ ଜୀବନୀ', 'ରାଧାନାଥ ପରିଚିତି', 'ଯୁଗପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ', 'ଡଗର ପତ୍ରିକାର ରାଧାନାଥ ବିଶେଷାଙ୍କ,' 'କବିଲିପି', 'ରାଧାନାଥଙ୍କ - ଅନନ୍ୟ ପ୍ରତିଭା', 'ରାଧାନାଥ ସାହିତ୍ୟ ସମୀକ୍ଷା' ଓ 'ଯୁଗଜ୍ୟୋତି ରାଧାନାଥ' ପ୍ରଭୃତି ।

ଏହି ସମାଲୋଚନା ଗ୍ରନ୍ଥଟିର ବିଶେଷତ୍ୱ ହେଉଛି ରାଧାନାଥଙ୍କ ବ୍ୟକ୍ତିଗତ ଜୀବନର ଘଟଣାବଳୀ କିପରି ତାଙ୍କର ସାରସ୍ୱତ ସାଧନାକୁ ବଳୟିତ କରି ରଖିଛି ତା'ର

ସୂକ୍ଷ୍ମାତିସୂକ୍ଷ୍ମ ଅନୁଶୀଳନ କରିବା ଓ କବି ବ୍ୟକ୍ତିତ୍ୱର ଉପଯୁକ୍ତ ମୂଲ୍ୟାୟନ କରି ପ୍ରକାଶ କରିବା । କବିର ଜୀବନ ଚରିତ୍ର ପ୍ରତିଫଳିତ ହୁଏ ତାର କାବ୍ୟକୃତିରେ – ଏହି ସତ୍ୟରେ ବିଶ୍ୱାସ କରିଛନ୍ତି ସମୀକ୍ଷକ ଡଃ କ୍ଷେତ୍ରବାସୀ ନାୟକ । ସେଥିପାଇଁ ସେ ଉକ୍ତ ସମୀକ୍ଷା ଗ୍ରନ୍ଥର ପ୍ରାରମ୍ଭରେ କହିଛନ୍ତି – "କବିଙ୍କର ସାରସ୍ୱତ ସଂଚୟରୁ କବି ପୁରୁଷର ଆତ୍ମାକୁ ଚିହ୍ନିହୁଏ କିମ୍ବା କବିଙ୍କର ଜୀବନ ଚରିତ ଅନୁଧ୍ୟାନରୁ ତାହାର କାବ୍ୟ କୀର୍ତ୍ତିର ମୂଲ୍ୟବୋଧ କଳନା କରିହୁଏ । ରାଧାନାଥ କବି; ଜୀବନ ଓ ଜନମ ମାଟିର କବି । ଜୀବନ ଓ ଜନମ ମାଟି ପ୍ରତି କବି ପୁରୁଷର ମୁହାଁସ କେତେ, କିଏ କହିବ ସେ କଥା । କହିଲେ କହିବ ଜୀବନ-ଗାଥା କିମ୍ବା ଅକ୍ଷର କାବ୍ୟ, କବିଙ୍କର କବିତା ।"

ରାଧାନାଥଙ୍କ ଜୀବନଗାଥା ଓ ପରବର୍ତ୍ତୀ ପର୍ଯ୍ୟାୟଗୁଡ଼ିକରେ ତାଙ୍କ ପ୍ରତିଭାର ଉନ୍ମେଷ, ଉତ୍ତରଣ ଓ ତାଙ୍କର ମାନସିକ ସଂଘର୍ଷର ଚିତ୍ରପଟ ଆଦିକୁ ସମାଲୋଚକ ଯେପରି ଭାବରେ ଏହି ଗ୍ରନ୍ଥଟିରେ ବିଶ୍ଳେଷଣ କରିଛନ୍ତି ସେଥିରୁ ସ୍ପଷ୍ଟଭାବେ ବୁଝାପଡୁଛି ଯେ, କବିଙ୍କ ସମକାଳର ସାମାଜିକ, ସାଂସ୍କୃତିକ ଓ ଐତିହାସିକ ପଟ୍ଟଭୂମି କିପରି ଯୁଗପ୍ରବର୍ତ୍ତକ ରାଧାନାଥଙ୍କ କବି ବ୍ୟକ୍ତିତ୍ୱର ନିର୍ମାଣରେ ସହାୟକ ହୋଇଛି ତାର ଯଥାର୍ଥ ଆକଳନ ପ୍ରସ୍ତୁତ କରିବା ତାଙ୍କର ଉଦ୍ଦେଶ୍ୟ ।

ଏହି ଦୃଷ୍ଟିରୁ ୧୮୬୮ ମସିହାକୁ ରାଧାନାଥଙ୍କ ପ୍ରତିଭାର ଉନ୍ମେଷକାଳ ରୂପେ ଦର୍ଶାଇ ୧୯୦୮ ମସିହା ପର୍ଯ୍ୟନ୍ତ ଦୀର୍ଘ ଚାଳିଶି ବର୍ଷକାଳ ମଧ୍ୟରେ ଏହି ପ୍ରତିଭାର ଉତ୍ତରଣ, ଜୟଯାତ୍ରା, ପ୍ରତିକ୍ରିୟା ଓ ଅବରୋଧ ଇତ୍ୟାଦିକୁ ସେ ଚିହ୍ନିତ କରିବା ପାଇଁ ଉଦ୍ୟମ କରିଛନ୍ତି । ସମୀକ୍ଷକ କବି ଓ ତାଙ୍କ ସମକାଳର ଭୂମିକା ରଚନା ପାଇଁ ଐତିହାସିକ ସମୀକ୍ଷା ପଦ୍ଧତି ଅବଲମ୍ବନ କରିଛନ୍ତି ସତ, କିନ୍ତୁ ରାଧାନାଥ କାବ୍ୟକାଳର ଉତ୍କର୍ଷ ପ୍ରତିପାଦନ ନିମିତ୍ତ ସୌନ୍ଦର୍ଯ୍ୟତାତ୍ତ୍ୱିକ ସମୀକ୍ଷା ପଦ୍ଧତିକୁ ହିଁ ଅବଲମ୍ବନ କରିଛନ୍ତି । କଳାପାଇଁ କଳାର ପୂଜାରୀ ରାଧାନାଥଙ୍କ ସଂପର୍କରେ ସେ ତେଣୁ କହିଛନ୍ତି – "କବି କଳାକୁ ହିଁ ଅଗ୍ରାଧିକାର ଦେଇଛନ୍ତି – ତହିଁରେ ଜୀବନର ପ୍ରୟୋଗ ଦେଖିଛନ୍ତି । କାରଣ ତାଙ୍କର ରୁଚିବୋଧ ହିଁ ଚିହ୍ନେଇ ଦେଇଥାଏ ଯେ ରାଧାନାଥ ପ୍ରଥମତଃ ଜଣେ କବି, ଜୀବନ ଶିଳ୍ପୀ ବା ସମାଜଦ୍ରଷ୍ଟା ହେବା ହେଉଛି ପରିପୂରକ ଘଟଣା । ସେ କଳାର କମନୀୟତା ଭିତରେ ଜୀବନର ବାସ୍ତବତା ଫୁଟାଇଛନ୍ତି; ସୋପାନ ପରେ ସୋପାନ ଆରୋହଣ କଲା ପରି ଗୋଟିଏ କାବ୍ୟରୁ ଆଉ ଗୋଟିଏ କାବ୍ୟକୁ ଗତି କରିଛନ୍ତି । 'କେଦାର ଗୌରୀ', 'ଚନ୍ଦ୍ରଭାଗା' ଓ 'ନନ୍ଦିକେଶ୍ୱରୀ' ରଚନାରୁ 'ଉଷା' ରଚନା କ୍ଷେତ୍ରକୁ ଓହ୍ଲାଇଲା ବେଳକୁ ପ୍ରତ୍ୟେକ କାବ୍ୟ ବସ୍ତୁରେ ଜୀବନର ଭିନ୍ନ ଭିନ୍ନ ଭାବପ୍ରସ୍ତ ପ୍ରତିଫଳିତ ହୋଇଛି ।" 'କବିକଳି', 'ଅଶ୍ରୁ

ତର୍ପଣ ଓ ପ୍ରତିଭା ଅର୍ଚ୍ଚନା', 'ରାଧାନାଥଙ୍କ କାବ୍ୟ ଦର୍ଶନ' - ଏହି ତିନିଗୋଟି ଅଧ୍ୟାୟରେ ସମୀକ୍ଷକଙ୍କ ନୂତନ ଦୃଷ୍ଟିକୋଣର ସଂଧାନ ମିଳେ । ରାଧାନାଥଙ୍କ ଦେହାନ୍ତ ପରେ ଓଡ଼ିଶାର ବିଶିଷ୍ଟ କବି ଓ ଲେଖକଗଣ ରାଧାନାଥଙ୍କ ପ୍ରତିଭାର ଯେଉଁ ଯଶଗାନ କରିଥିଲେ ତା'ର ଚିତ୍ର ସମୀକ୍ଷକ ଦେଇଛନ୍ତି 'ଅଶ୍ରୁତର୍ପଣ ଓ ପ୍ରତିଭା ଅର୍ଚ୍ଚନା' ଅଧ୍ୟାୟରେ । ନିଜର ଅନ୍ତର୍ଦୃଷ୍ଟି ବଳରେ ଡଃ ନାୟକ ରାଧାନାଥଙ୍କୁ ଯେପରି ଚିହ୍ନିଥିଲେ ତା'ର ନିର୍ଯ୍ୟାସ ଦେଖିବାକୁ ମିଳେ ଗ୍ରନ୍ଥୋକ୍ତ ନିମ୍ନଲିଖିତ କେତେଗୋଟି ବାକ୍ୟରେ ।

"ରାଧାନାଥଙ୍କ କାବ୍ୟ ଦର୍ଶନରେ ଭୌତିକ ବା ଆଧିଭୌତିକ ଓ ଆଧାତ୍ମିକ ଚିନ୍ତନର ବିଚାରଧାରା ସମନ୍ୱିତ ହୋଇଯାଇଛି । ଉତ୍କୃଷ୍ଟ ସାହିତ୍ୟ ଏଇ ଦୁଇଟିର ପରିଚର୍ଯ୍ୟା କରିଥାଏ । ପ୍ରଥମଟିରେ (ଭୌତିକ ବା ଆଧିଭୌତିକ) ପ୍ରତିଭାର ଆଧିକ୍ୟ ଏବଂ ଦ୍ୱିତୀୟଟିରେ ପ୍ରଜ୍ଞାର ଆଧିକ୍ୟ ଅନୁଭୂତ ହୁଏ । ଏହାଦ୍ୱାରା ସାହିତ୍ୟ ବ୍ୟକ୍ତିକୁ ତୁଷ୍ଟ କରେ, ସମାଜକୁ ସନ୍ତୋଷ ଦିଏ ଏବଂ ଆତ୍ମିକ ଚିନ୍ତାକୁ ତୃପ୍ତି ଯୋଗାଏ । ପ୍ରତିଭା ଓ ପ୍ରଜ୍ଞାର ମିଳନ ଘଟିଲେ ସାହିତ୍ୟିକ ବା କବିର କାବ୍ୟ, ଚିରନ୍ତନତାର ଗୌରବ ପାଏ । ରାଧାନାଥ ସେହି ପର୍ଯ୍ୟାୟର କବି, ତାଙ୍କର ସୃଷ୍ଟି ଅଭିନବ ଓ ଚିରନ୍ତନ । 'ଦୃଷ୍ଟପୂର୍ବ ହୋଇ ଅପୂର୍ବ ପ୍ରତୀତି, ସୁନ୍ଦର ପଣର ଚିରନ୍ତନ ରୀତି' - ଏହା କେବଳ ରାଧାନାଥଙ୍କ ସୌନ୍ଦର୍ଯ୍ୟ ଜିଜ୍ଞାସାର ପରିଚାୟକ ନୁହେଁ, ତାଙ୍କର କାବ୍ୟ କୃତିର ମାନ ନିର୍ଦ୍ଧାରକ ମଧ୍ୟ । କାଳକାଳକୁ ତାଙ୍କ ସୃଷ୍ଟି ହୋଇଛି ପ୍ରେରଣା ଓ ପ୍ରତ୍ୟୟର ଭଣ୍ଡାର ।"

ଷୋଡ଼ଶ ଶତାବ୍ଦୀର କବି ଅର୍ଜ୍ଜୁନ ଦାସଙ୍କ ସଂପର୍କରେ ଡଃ ନାୟକ ରଚିତ ଏକ ମନୋଗ୍ରାଫ୍ ପ୍ରକାଶ ପାଇଥିଲା ୧୯୮୩ ମସିହାରେ । ଏଥିରେ ସେ ଅର୍ଜୁନ ଦାସଙ୍କ ପୌରାଣିକ କାବ୍ୟ 'ରାମବିଭା' ଓ ଆଖ୍ୟାୟିକା କାବ୍ୟ 'କଳ୍ପଲତା' ର ଆଲୋଚନା କରିବା ସହିତ ମଧ୍ୟଯୁଗୀୟ କାବ୍ୟ ପରଂପରାରେ ତାଙ୍କ କବିତ୍ୱର ବୈଶିଷ୍ଟ୍ୟ ନିରୂପଣ କରିଛନ୍ତି । ତେବେ କବି ଚରିତ ସଂପର୍କରେ ପୂର୍ବ ଆଲୋଚିତ ଦୁଇଟି ସମୀକ୍ଷା ଗ୍ରନ୍ଥରେ ଯେଉଁ ବିବରଣୀ ଦେଖିବାକୁ ମିଳେ, ଏଥିରେ ତାହା ନାହିଁ, କାରଣ ହେଲା ଅର୍ଜୁନ ଦାସଙ୍କ ସଂପର୍କରେ ଉପଲବ୍ଧ ଉପାଦାନଗୁଡ଼ିକ ଅଭାବ । ମଧ୍ୟଯୁଗୀୟ ଏହି କବି ଓ ତାଙ୍କ ସାହିତ୍ୟାଦର୍ଶର ମୂଲ୍ୟାଙ୍କନ କଲାବେଳେ ସମାଲୋଚକ ମଧ୍ୟ ସେହି ସୌନ୍ଦର୍ଯ୍ୟତାତ୍ତ୍ୱିକ ସମାଲୋଚନା ପଦ୍ଧତିର ଦ୍ୱାରସ୍ଥ ହୋଇଛନ୍ତି । ତାଙ୍କ ସଂପର୍କରେ ଡଃ ନାୟକ କହିଛନ୍ତି - "କାରଣ ଜୀବନର ସୌନ୍ଦର୍ଯ୍ୟ ନିର୍ଭର କରେ ପ୍ରତ୍ୟେକ ଅଂଗ ସଂଗେ ପ୍ରତ୍ୟେକ ଅଂଗର ଘନୀଭୂତ ଓ ସୁନିବିଡ଼ ଐକ୍ୟ ଉପରେ । ସେହିପରି କାବ୍ୟର ଅକ୍ଷୟ ଗୁଣ ଓ କଳାତ୍ମକ ଐଶ୍ୱର୍ଯ୍ୟ ନିର୍ଭରକରେ ସତ୍ୟାଯୁକ୍ତ ସୌନ୍ଦର୍ଯ୍ୟର ସମୁନ୍ନତ, ସୁଗମ୍ଭୀର ବିନ୍ୟାସ-ନୈପୁଣ୍ୟରେ ।

ଏହି ଗୁଣରୁ କ୍ଲାସିକ ରଚନାରେ ପ୍ରାୟ ସର୍ବତ୍ର ସତ୍ୟାତ୍ମକ କାବ୍ୟର ରସାତ୍ମକ ଅଭିବ୍ୟକ୍ତି ହିଁ ପ୍ରାଧାନ୍ୟ ଲାଭ କରିଥାଏ । ଏଥିପାଇଁ ଏହା ମୌଳିକ ଓ ଚିରାୟତ ହେବାର ମର୍ଯ୍ୟାଦା ପାଏ । କିନ୍ତୁ ଏଇ ବିଧାନ ମତେ ବିଚାରିଲେ; ଅର୍ଜୁନ ଦାସଙ୍କ କବି ମନ କ୍ଲାସିକ ଦୃଷ୍ଟିର ପୋଷକତା କରିନାହିଁ, ରୋମାନ୍ସଧର୍ମୀ ମନନ ହେଉଛି ତାଙ୍କ କାବ୍ୟ ତତ୍ତ୍ୱର ମୂଳକଥା - ରସବାଦୀ ଅଭିପ୍ରାୟ ଏହାର ପ୍ରେରକ ଲକ୍ଷଣ ।"

୧୯୮୩ ମସିହାରେ ପୁସ୍ତକ ଭଣ୍ଡାର ପ୍ରକାଶିତ 'ନାରୀ କବି ଅନ୍ନପୂର୍ଣ୍ଣା : କବି ଚରିତ କାବ୍ୟ ଚର୍ଚ୍ଚା' ଗ୍ରନ୍ଥଟିକୁ ସମାଲୋଚକ ଡଃ ନାୟକଙ୍କର ଏକ ମହତ୍ତ୍ୱପୂର୍ଣ୍ଣ ରଚନା ବୋଲି ସ୍ୱୀକାର କରିବାକୁ ହେବ । ତାଙ୍କର କବି ଚରିତ ଓ କାବ୍ୟାନୁଶୀଳନ ସଂପର୍କୀୟ ସୃଷ୍ଟିଗୁଡ଼ିକ ମଧ୍ୟରେ ଏହା ଦୁଇଟି କାରଣ ପାଇଁ ସ୍ୱତନ୍ତ୍ର ଆସନ ଦାବୀ କରେ । ପ୍ରଥମଟି ହେଲା ଓଡ଼ିଶାର ନାରୀକବି ସମାଜରେ ଏକଦା ଅନାଲୋଚିତ କବି ଅନ୍ନପୂର୍ଣ୍ଣାଙ୍କର ବୈଶିଷ୍ଟ୍ୟ ପ୍ରତିପାଦନ କରିବା ଓ ଅନ୍ୟଟି ତାଙ୍କର ସାମଗ୍ରିକ କୃତି ମଧ୍ୟରୁ ତାଙ୍କ ଜୀବନ ଦୃଷ୍ଟିକୁ ଠାବ କରିବା । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ, ନାରୀକବି ଅନ୍ନପୂର୍ଣ୍ଣାଙ୍କ ରଚନା ସମଗ୍ରକୁ ସଂକଳିତ କରି ପ୍ରକାଶ କରିବା ଫଳରେ ଓଡ଼ିଶାର ଅଗଣିତ ପାଠକ କୁନ୍ତଳା କୁମାରୀଙ୍କ ପୂର୍ବବର୍ତ୍ତୀ ଜଣେ ବିଶିଷ୍ଟ ନାରୀ ପ୍ରତିଭାଙ୍କ ସଂପର୍କରେ ଅବଗତ ହୋଇପାରିଲେ । ଗ୍ରନ୍ଥର ମୁଖଶାଳାରେ ସମାଲୋଚକ କହନ୍ତି - "କୁନ୍ତଳା କୁମାରୀଙ୍କ ପୂର୍ବବର୍ତ୍ତୀ ହେଲେବି ନାରୀକବି ଅନ୍ନପୂର୍ଣ୍ଣା ଅନାଲୋଚିତ ହୋଇ ରହିଯାଇଥିଲେ । ଏହାର କାରଣ ନୁହେଁ ଯେ, ତାଙ୍କର କବି ଶକ୍ତି ସେତେ ଉଚ୍ଚମାନର ନଥିଲା । ବରଂ ଏହାହିଁ ଯୁକ୍ତିଯୁକ୍ତ ଯେ, କବିଙ୍କର ରଚନାବଳୀ ପତ୍ର ପତ୍ରିକାରେ ବିକ୍ଷିପ୍ତ ହୋଇ ରହିଥିବାରୁ କେହି ଆଲୋଚକ ଆୟାସଲଭ୍ୟ ତାଙ୍କ କୃତିକୁ ସଂଗ୍ରହ କରି ଆଲୋଚନା ପାଇଁ ସୁବିଧା ପାଇନଥିଲେ । ଏଣୁ ଏ ଯାବତ୍ କବି ଅନ୍ନପୂର୍ଣ୍ଣା ଇତିହାସରେ ବିସ୍ମୃତ ହୋଇ ରହିଗଲେ ।

ସ୍ୱଳ୍ପଜ୍ଞାତ ଓଡ଼ିଆ କବିମାନଙ୍କର କୃତି ଅନ୍ୱେଷଣ ଓ ମୂଲ୍ୟାୟନ ପାଇଁ ଯୋଜନାଟିଏ ହାତକୁ ନେବାପରେ ମୁଁ ବିଧିବଦ୍ଧ ଭାବେ ଏଥିରେ ମନୋନିବେଶ କରିଥିଲି । କବି ଅନ୍ନପୂର୍ଣ୍ଣାଙ୍କ ରଚନା ସମଗ୍ର ଏତିକିବେଳେ ସଂଗ୍ରହ କଲି, ଗ୍ରନ୍ଥାବଳୀ ଆକାରରେ ତାହା ମଧ୍ୟ ସଂପାଦନା କଲି । କବିକୃତିର ମୂଲ୍ୟାୟନ ଲାଗି ଏ ସୂତ୍ରରୁ ମୁଁ ପ୍ରବୃତ୍ତ ହୋଇଥିଲି, ତାହା ଏବେ ପୁସ୍ତକ ଆକାରରେ ପ୍ରକାଶ ପାଉଛି ।"

'ନାରୀକବିଙ୍କ ଜୀବନାଲେଖ୍ୟ' ପରିଚ୍ଛେଦରେ ଅନ୍ନପୂର୍ଣ୍ଣାଙ୍କ କୁଳ ପରିଚୟ, ଶୈଶବ, ପାରିବାରିକ ଜୀବନ, ଶିକ୍ଷା, ବିବାହ, ପ୍ରବାସ ଯାତ୍ରା ଆଦି ପ୍ରସଙ୍ଗ ସମାଲୋଚକଙ୍କ ଆଲୋଚନାର ପରିସର ମଧ୍ୟକୁ ଆସିଛି । ଏସବୁରେ ଡଃ ନାୟକ ପ୍ରତିକୂଳ ପରିସ୍ଥିତି ସହ

ଯୁକ୍ତି ଆପଣାର କାବ୍ୟଚିନ୍ତାକୁ ଲାଳନ-ପାଳନ କରି ଆସିଥିବା ଜଣେ ଲେଖିକାଙ୍କର ମନସ୍ତତ୍ତ୍ୱକୁ ଯଥାର୍ଥ ଭାବରେ ଉପଲବ୍ଧ କରିପାରିଛନ୍ତି । ଗୋଟିଏ ଦିଗରେ ସୂକ୍ଷ୍ମ ଜୀବନାନୁଭବ, ଅନ୍ୟ ଦିଗରେ ପରିବ୍ୟାପ୍ତ ସମାଜ ଉଦ୍ଦେଶ୍ୟରେ ସେହି ଅନୁଭବଗୁଡ଼ିକର ସୌନ୍ଦର୍ଯ୍ୟସିକ୍ତ ରୂପାୟନ ଅନ୍ନପୂର୍ଣ୍ଣାଙ୍କ କାବ୍ୟ ଜଗତକୁ ଯେପରି ଆବୋରି ରହିଛି ତାହାହିଁ ହେଉଛି ଏହି ଗ୍ରନ୍ଥଟିରେ ଡଃ ନାୟକଙ୍କ ବକ୍ତବ୍ୟ । କବି ବ୍ୟକ୍ତିତ୍ୱର ମୂଲ୍ୟାଙ୍କନ ପ୍ରସ୍ତୁତ କଲାବେଳେ ଗ୍ରନ୍ଥର ପ୍ରଥମ ପରିଚ୍ଛେଦ 'ନାରୀକବି ଜୀବନାଲେଖ୍ୟ' ରେ ସେ କହନ୍ତି - "ନାରୀକବିଙ୍କ -ସାରସ୍ୱତ ସଂସର୍ଗ ଜଗତର ପରିଣାମ ଯେ ତାଙ୍କ ମନକୁ କିଛି ପ୍ରଭାବିତ କରି ନାହିଁ - ଏକଥା କିପରି କହିବା ? ସମାଜ ଜୀବନରୁ ସଂଗୃହୀତ ଅନୁଭୂତି ହେଉଛି ତାଙ୍କ କବିତାର ଅକ୍ଷର; ବ୍ୟକ୍ତିଗତ ଜୀବନର ହାବଭାବରେ ଏହା ପୁଣି ରସସିକ୍ତ । ଫକୀରମୋହନଙ୍କର କାବ୍ୟ ସଂଚୟ ଯେପରି ବ୍ୟକ୍ତିଗତ ଆବେଗ ଅନୁଭବର ଏକ ସ୍ୱତଃସ୍ଫୂର୍ତ୍ତ ଅଭିବ୍ୟକ୍ତି ସେହିପରି ନାରୀକବି ଅନ୍ନପୂର୍ଣ୍ଣାଙ୍କର କବିତା । ଏହାର ଉତ୍ସ ନିଜସ୍ୱ ପୃଥିବୀ ହୋଇଥିଲେ ମଧ୍ୟ କବିତାଚୟରେ କବିଦ୍ୱୟ ସମାଜର ଚଳନ୍ତି ଚିନ୍ତାଧାରା ଓ ଶାଶ୍ୱତ ମୂଲ୍ୟବୋଧକୁ ପ୍ରତିଫଳିତ କରିବାରେ କୌଣସି ଅବହେଳା ପ୍ରଦର୍ଶନ କରିନାହାନ୍ତି ।" ନାରୀ କବିଙ୍କ କବିତାର ସ୍ଫୂର୍ତ୍ତି ନିମିତ୍ତ ସେ ଦେବୀ ପ୍ରେରଣା ଲାଭ କରିଥିବା ଓ ତାଙ୍କର ସାରସ୍ୱତ ସହଯୋଗ ଲାଭ ଆଦି ସଂପର୍କରେ ଅନେକ ନୂତନ ତଥ୍ୟ ଗ୍ରନ୍ଥଟିରେ ସନ୍ନିବେଶିତ । କବିଙ୍କ ଦର୍ଶନ / ମୌଳିକ ମନନ ଅଧ୍ୟାୟରେ ଆଲୋଚକ କବିଙ୍କର ମନୋଭୂମି, ନାରୀ କବିଙ୍କ ସମାଜ ଚେତନା, ପ୍ରେମଚେତନା, ଈଶ୍ୱର ଭାବନା ଓ କବିଙ୍କର ମୌଳିକ ଦର୍ଶନ ପ୍ରଭୃତିକୁ ଆଲୋଚନା ପରିସର ମଧ୍ୟକୁ ଆଣିଛନ୍ତି ।

ଅନ୍ନପୂର୍ଣ୍ଣାଙ୍କର ପ୍ରତିଭା ସଂପର୍କରେ ଓଡ଼ିଶାର ଯେଉଁ ବିଶିଷ୍ଟ ସାରସ୍ୱତ ସାଧକଗଣ ଅନୁକୂଳ ମନ୍ତବ୍ୟ ପ୍ରଦାନ କରିଥିଲେ ତାହା ସ୍ଥାନ ପାଇଛି ପ୍ରତିଭା ପ୍ରଶସ୍ତି / ବ୍ୟକ୍ତିତ୍ୱ ବନ୍ଦନା ଅଧ୍ୟାୟରେ । ଶେଷ ଅଧ୍ୟାୟ ଅର୍ଥାତ୍ 'ଓଡ଼ିଶାର ନାରୀକବି ଓ କବି ଅନ୍ନପୂର୍ଣ୍ଣା' ଅଧ୍ୟାୟରେ ସମୀକ୍ଷକ ଡଃ ନାୟକ ଅନ୍ୟ ନାରୀ କବିମାନଙ୍କ ସହିତ ଅନ୍ନପୂର୍ଣ୍ଣାଙ୍କର ତୁଳନା କରି ତାଙ୍କର ବୈଶିଷ୍ଟ୍ୟ ନିରୂପଣ କରିଛନ୍ତି । କବି ଗ୍ରନ୍ଥର ଏହି ଅଧ୍ୟାୟରେ ସ୍ୱୀକାର କରିଛନ୍ତି ଯେ - "ପୃଷ୍ଠପୋଷକତାର କୌଣସି ସୁଯୋଗ ନଥାଇ ନିଜ କଲମର ଶକ୍ତି ବଳରେ ବହୁ ପତ୍ରପତ୍ରିକାରେ ଆତ୍ମପ୍ରକାଶ କରିଥିବା ଜଣେ ନାରୀ କବି ୯୮ କାଳର ସାରସ୍ୱତ ଗତି ଧାରାରେ ମୌଳିକ ଚିନ୍ତନର ଯେଉଁ ଆଲେଖ୍ୟ ଅଙ୍କନ କରିପାରିଥିଲେ ତାହା ବିସ୍ମୃତ ହେବ କିପରି ? ସେ ଯେ ଅକ୍ଷର କୀର୍ତ୍ତି । ନାନାଦି ପ୍ରତିକୂଳ ଅଘଟଣ

ସବ୍ଭେ କାଳର ପରିଧିରେ କବି ଅନ୍ନପୂର୍ଣ୍ଣା ସାରସ୍ୱତ ଆକର୍ଷଣର ଯେଉଁ ସମ୍ଭାବନା ସୃଷ୍ଟି କରିପାରିଥିଲେ ତାର ଅପଚୟ ନାହିଁ । କାଳର ଇତିହାସରେ ଏହା ଚିର ଅମ୍ଲାନ ।"

ପରିଶେଷରେ ଏତିକି କୁହାଯାଇପାରେ ଯେ, ଡଃ କ୍ଷେତ୍ରବାସୀ ନାୟକଙ୍କର କବି ଚରିତ ଓ କାବ୍ୟ ଚର୍ଚ୍ଚା ଆଧାରିତ ଯେଉଁ ଚାରିଗୋଟି ଗ୍ରନ୍ଥକୁ ଏହି ପ୍ରବନ୍ଧରେ ଆଲୋଚନା କରାଗଲା ତାହା ହେଉଛି ତାଙ୍କ ସମୀକ୍ଷାଦୃଷ୍ଟିର ସମୀକ୍ଷା । ଉତମାନର ସାହିତ୍ୟ ସମୀକ୍ଷା ଅପେକ୍ଷା ରଖେ କୌଣସି ସୃଷ୍ଟି କର୍ମ ସହ ଏକାତ୍ମ ସେବାରେ, ସ୍ରଷ୍ଟା ସହ ଏକୀଭୂତ ହୋଇ ତା ସ୍ୱର ସହ, ଉଚାରଣ ସହ ଆପଣାର ସ୍ୱର ମିଳେଇବାରେ । ମୋର ବିଶ୍ୱାସ, ପରପୁର ପ୍ରବେଶ ବିଦ୍ୟାଟି ଡଃ ନାୟକ ଆୟର କରିଥିଲେ । ସେଥିପାଇଁ ସେ ଆମର ସ୍ମରଣୀୟ । ତାଙ୍କ ମନୋଗ୍ରାଫ୍‌ଗୁଡ଼ିକ ସଂପର୍କରେ ରଚିତ ଉକ୍ତ ସମାଲୋଚନାକୁ ସେ ଦୃଷ୍ଟିରୁ କ୍ଷେତ୍ରବାସୀଙ୍କ ସମୀକ୍ଷା କାନନର ଏକ ପ୍ରଦକ୍ଷିଣ ବୋଲି ଧରିନିଆଯାଉ ।



# ସାହିତ୍ୟବିଦ୍ୟା ଓ କ୍ଷେତ୍ରବାସୀ

**ଡଃ ପ୍ରକାଶ କୁମାର ପରିଡ଼ା**

ପ୍ରାଧ୍ୟାପକ କ୍ଷେତ୍ରବାସୀ; ଡକ୍ଟର ଶ୍ରୀଯୁକ୍ତ କ୍ଷେତ୍ରବାସୀ ନାୟକ (୧୯୩୯-୧୯୮୬) ଏମ୍.ଏ. ପିଏଚ୍.ଡି ଐତିହ୍ୟସଂପନ୍ନ ରେଭେନ୍ସା ମହାବିଦ୍ୟାଳୟ ଓଡ଼ିଆ ଭାଷା-ସାହିତ୍ୟ ବିଭାଗରେ ଅବସ୍ଥାପିତ ଥିଲେ ଓ ସ୍ୱୟଂ ଓଡ଼ିଆ ଗବେଷଣା ପରିଷଦ ୧୯୮୦ ପ୍ରତିଷ୍ଠା କରିଥିଲେ । ଏଥିରେ ତାଙ୍କ ଗୁରୁ ଓ ମାର୍ଗ ଦର୍ଶକ ଡକ୍ଟର ଶ୍ରୀଯୁକ୍ତ କୃଷ୍ଣଚରଣ ବେହେରା ମହୋଦୟ ଅଧ୍ୟକ୍ଷଭାବେ ବରିତ ଓ ଅବସ୍ଥାପିତ । ସମଗ୍ର ଓଡ଼ିଶା ଓ ରାଜ୍ୟ ବାହାର କେତେକ ସ୍ଥାନର ବିଦ୍ୱାନ, ବିଦ୍ୟାର୍ଥୀ ଓ ବିଦ୍ୟାଗ୍ରହୀ ଏହାର ସଭ୍ୟ-ସହଯୋଗୀ ଭାବେ ଗୃହୀତ । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ପ୍ରାଧ୍ୟାପକ କ୍ଷେତ୍ରବାସୀ ଅଧ୍ୟାପନା, ଅଧ୍ୟୟନ ଓ ଅନୁସନ୍ଧାନ ଏବଂ ପ୍ରତିଭାନ୍ୱେଷଣ କ୍ଷେତ୍ରରେ ଆପଣାର ଭୂମିକା ପ୍ରତି ଯେତିକି ନିଷ୍ଠାପର, ପ୍ରତିଭା ପୂଜା, ଯୋଗ୍ୟର ପ୍ରତିଷ୍ଠା ଓ ଅନାଲୋକିତକୁ ଆଲୋକସ୍ନାତ କରାଇବା କ୍ଷେତ୍ରରେ ସେତିକି ତତ୍ପର ଓ ବ୍ରତୀ ।

ପ୍ରାଧ୍ୟାପକ କ୍ଷେତ୍ରବାସୀ ପାଠ୍ୟଦାନ, ଗବେଷଣା ଉଭୟରେ ସମାନ ଆଗ୍ରହୀ । ଜଣେ ଗୁରୁଭାବେ ଯେତିକି ପୂଜାର୍ହ ଜଣେ ଅନୁସନ୍ଧିତ୍ସୁ ଛାତ୍ରଭାବେ ତାଙ୍କ ଗୁରୁଙ୍କର ସେତିକି ଆଶିଷପ୍ରାପ୍ତ । ସମଧର୍ମୀ ବନ୍ଧୁଭାବେ, ସାରସ୍ୱତ ସାରଥୀ ଭାବେ, ସତାର୍ଥ ଅନ୍ୱେଷୁ ଭାବେ ତାଙ୍କ ବ୍ୟକ୍ତିତ୍ୱର ବିଭିନ୍ନ ଆୟାସ ବିଭିନ୍ନ ବ୍ୟକ୍ତିଙ୍କ ପାଖରେ ପ୍ରତିଷ୍ଠିତ ।

ଜଣେ ବାଗ୍ମୀ, ସଂଗଠକ, ସଂକଳକ, ସଂପାଦକ, ସମ୍ମେଳନ ଅୟୋଜକ ଭାବେ ଯୁବକ ଅବସ୍ଥାରୁ ସେ ସଫଳ । ସାହିତ୍ୟ ଆନ୍ଦୋଳନ, ପ୍ରକାଶନ ଗୋଷ୍ଠୀଗଠନ, ପତ୍ରିକା ପ୍ରକାଶରେ ନବୀନତା ସୃଷ୍ଟି ପ୍ରଭୃତି ବିଭିନ୍ନ କ୍ଷେତ୍ରରେ ସେ ସର୍ବଦା ଅଗ୍ରଗାମୀ । ନ୍ୟାୟର ପକ୍ଷସମର୍ଥନରେ ସେ ଦୃଢ଼ବ୍ରତୀ । ସରଳ ଜୀବନ ଓ ଉଚ୍ଚ ଚିନ୍ତନ ସହିତ ନିରନ୍ତର ଜଗନ୍ନାଥ ଭାବାଶ୍ରିତ ଜଣେ ଅନନ୍ୟ ବ୍ୟକ୍ତିତ୍ୱ ଭାବେ କ୍ଷେତ୍ରବାସୀବାବୁ ଅନୁକରଣୀୟ ଆଦର୍ଶ ।

ତାଙ୍କର ସର୍ଜନର କ୍ଷେତ୍ର ବିସ୍ତାରିତ । ସାହିତ୍ୟର ବିଭିନ୍ନ ବିଭାଗରେ ତାଙ୍କର ସର୍ଜନ ପ୍ରତିଭା ସ୍ୱାକ୍ଷରିତ । ଗଳ୍ପଗ୍ରନ୍ଥ 'ଫୁଲର କବର', କବିତା ଗ୍ରନ୍ଥ 'ବିଫଳତା ସପକ୍ଷରେ' ଓ 'ଉଚ୍ଚାରଣ'; ସଂକଳନ ' ପ୍ରବନ୍ଧ ଓ ପ୍ରାବନ୍ଧିକ' ଏବଂ ' ପ୍ରବନ୍ଧ ବିଚିତ୍ରା'; ସଂପାଦନା ଗ୍ରନ୍ଥ ' ସାଂପ୍ରତିକ ଓଡ଼ିଆ ସାହିତ୍ୟ ସଂପର୍କରେ', 'ରାଧାନାଥ ଗ୍ରନ୍ଥାବଳୀ', 'ଶ୍ରୀଜଗନ୍ନାଥ ପଦ୍ୟାବଳୀ ୧ମ ରୁ ୪ର୍ଥ ଖଣ୍ଡ', 'ଫକୀରମୋହନ କଥାସାହିତ୍ୟ', 'ନାରୀକବି ଅନ୍ନପୂର୍ଣ୍ଣା ରଚନା ଶ୍ରୀ; ସଂପାଦିତ ପତ୍ରିକା 'ପୋଷ୍ଟର କବିତା', 'ଶତରୂପା', 'ରଶ୍ମି', 'ଏଷଣା';

ସମୀକ୍ଷାଗ୍ରନ୍ଥ 'ଅଳଙ୍କାର ଓ ଅଳଙ୍କାରତତ୍ତ୍ୱ', 'ଭାରତୀୟ କାବ୍ୟତତ୍ତ୍ୱ', 'ସାହିତ୍ୟଚର୍ଚ୍ଚା', 'କବି ଓ କାମିନୀ', 'କବି ଅର୍ଜ୍ଜୁନ ଦାସ', 'କବିତାର କଥା' ଏବଂ ଗବେଷଣା ସନ୍ଦର୍ଭ 'ଆଧୁନିକ ଓଡ଼ିଆ କାବ୍ୟସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ' ପ୍ରଭୃତି ପ୍ରାୟ ଚବିଶଟି ଗ୍ରନ୍ଥ ଓ ଚାରିଟି ପତ୍ରିକା କ୍ଷେତ୍ରବାସୀଙ୍କ ସର୍ଜ୍ଜନ, ସଂପାଦନ ଓ ସମୀକ୍ଷଣ ପ୍ରତିଭାର ପ୍ରମାଣ ବହନ କରେ । ତାଙ୍କ ସଂପାଦିତ ସାମଗ୍ରୀ ଓ ସମୀକ୍ଷାଗ୍ରନ୍ଥ ପାଠକମାନଙ୍କ ଜିଜ୍ଞାସା- ପ୍ରତ୍ୟାଶା ପୂରଣରେ ସର୍ବଦା ସଫଳ । ବିଦ୍ୟାର୍ଥୀ ଓ ଅଧ୍ୟାପକମାନଙ୍କ ନିକଟରେ ତାଙ୍କ ସମୀକ୍ଷାଗ୍ରନ୍ଥ ଆଦୃତ । ସମୀକ୍ଷାରେ ମୌଳିକ ଦୃଷ୍ଟି ଏବଂ ପ୍ରକାଶରେ ସ୍ୱୀୟ ଆବେଗତାପିତ ଭାଷାଭଙ୍ଗୀ କ୍ଷେତ୍ରବାସୀଙ୍କ ସମୀକ୍ଷାକୁ ସ୍ୱତନ୍ତ୍ରଭାବେ ଚିହ୍ନାଇଥାଏ । ସେ ସାଧାରଣତଃ ଶିରୋନାମା ଅଥବା ପ୍ରସଙ୍ଗ ପ୍ରତି ଆପଣାର ଜିଜ୍ଞାସା-ପ୍ରଶ୍ନ ଓ ସଂଶୟ ଆରୋପ କରି ତାହାର ସମାଧାନ କରୁ କରୁ ପ୍ରସଙ୍ଗର ବିଭିନ୍ନ ପ୍ରସ୍ଥ ଉନ୍ମୋଚନ କରି ଶେଷରେ ଅବଧାରିତ ସିଦ୍ଧାନ୍ତରେ ପହଞ୍ଚନ୍ତି । ଏଣୁ ତାଙ୍କ ସମୀକ୍ଷା ପାଠକକୁ ସହଯାତ୍ରୀର ସଖ୍ୟ ଦିଏ ଓ ଆବିଷ୍କାରକର ଆନନ୍ଦ ମଧ୍ୟ ।

ସେହି ପ୍ରତିଭାଶାଳୀ ବିଦ୍ୱାନଙ୍କ ପବିତ୍ର ସ୍ମୃତି ଓ ପୁଣ୍ୟ ପ୍ରେରଣା ସଜୀବ କରିରଖିବା ଲକ୍ଷ୍ୟରେ 'ଓଡ଼ିଆ ଗବେଷଣା ପରିଷଦ' ପକ୍ଷରୁ କ୍ଷେତ୍ରବାସୀ ସାହିତ୍ୟ ବିଦ୍ୟା ପୁରସ୍କାର ପ୍ରଦାନ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ସାହିତ୍ୟ ବିଦ୍ୟା ପଦଟି ଏହି ପୁରସ୍କାର ଶିରୋନାମାର ଅଂଶବିଶେଷ ଭାବେ ବ୍ୟବହାର ହେଲାବେଳେ ତାହାର ଅର୍ଥ ପରିସର କେତେ ବ୍ୟାପକ ତାହା ବୁଝିବା ଅପେକ୍ଷା ପ୍ରାଧ୍ୟାପକ କ୍ଷେତ୍ରବାସୀ ଯେ କେବଳ କବି-କଥାକାର-ସମୀକ୍ଷକ-ସଂପାଦକ ନଥିଲେ ପ୍ରକୃତରେ ଅନ୍ୟତମ ସାହିତ୍ୟ ବିଦ୍ୟାବିତ୍ ଥିଲେ ତାହା ହିଁ ଆଲୋଚକର ଅବବୋଧକୁ ବେଶି ସ୍ପର୍ଶ କରେ । ସେ ମଧ୍ୟ ସାହିତ୍ୟ ବିଦ୍ୟା ବିଷୟକ ତିନୋଟି ଗ୍ରନ୍ଥ ୧-ଅଳଙ୍କାର ଓ ଅଳଙ୍କାରତତ୍ତ୍ୱ (୧୯୬୮), ୨- ସାହିତ୍ୟର ସାମାନ୍ୟ କଥନ (୧୯୭୦), ୩- ଭାରତୀୟ କାବ୍ୟତତ୍ତ୍ୱ (୧୯୮୧) ପ୍ରଣୟନ କରିଛନ୍ତି । 'ସାହିତ୍ୟର ଅବୟବ' ଓ 'ସାହିତ୍ୟର ବିଶେଷ କଥନ' ନାମରେ ଆଉ କେତୋଟି ଗ୍ରନ୍ଥ ତାଙ୍କର ପରିକଳ୍ପନା ଓ ପାଣ୍ଡୁଲିପି ଅବସ୍ଥାରେ ଥିବା କଥା ପ୍ରକାଶିତ ଗ୍ରନ୍ଥଗୁଡ଼ିକର ମୁଖବନ୍ଧରୁ ସୂଚନା ମିଳିଥାଏ ।

ଏହି ପ୍ରବନ୍ଧରେ ପ୍ରାଧ୍ୟାପକ କ୍ଷେତ୍ରବାସୀଙ୍କୁ ଜଣେ ସାହିତ୍ୟ ବିଦ୍ୟାବିତ ଭାବେ ଦେଖିବା ପାଇଁ ତାଙ୍କରି ଗ୍ରନ୍ଥଗୁଡ଼ିକର ଆଲୋଚନା ମାଧ୍ୟମରେ ଉଦ୍ୟମ କରାଯାଇଛି ।

ଆଲୋଚନାଧୀନ ଗ୍ରନ୍ଥଶ୍ରେଣୀର ସର୍ବପ୍ରଥମ ଗ୍ରନ୍ଥ ଯାହା ସମୀକ୍ଷକ କ୍ଷେତ୍ରବାସୀଙ୍କ ୩୦ ବର୍ଷ ବୟସ ପୂର୍ବର ରଚନା ତାହା 'ଅଳଙ୍କାର ଓ ଅଳଙ୍କାରତତ୍ତ୍ୱ' ନାମରେ ଶ୍ରୀମତୀ

ଲାବଣ୍ୟ ନାୟକଙ୍କ ସମଭାଗୀତ୍ୱରେ ୧୯୬୮ ମସିହାରେ ପ୍ରକାଶିତ । ସମୀକ୍ଷକ ଏହି ପ୍ରୟାସକୁ ଛାତ୍ରଛାତ୍ରୀଙ୍କ ଅନୁରୋଧ ଏବଂ ଅଧ୍ୟାପକ ବନ୍ଧୁମାନଙ୍କ ଅନୁପ୍ରେରଣା ସଞ୍ଜାତ ବୋଲି ସ୍ୱୀକାର କରିଛନ୍ତି । ପୁସ୍ତକର ପରିଚୟ ଦେବାକୁ ଯାଇ ସେ ଲେଖିଛନ୍ତି - "ପୁସ୍ତକଟିରେ ବିଭିନ୍ନ ଅଳଙ୍କାର ଓ ଅଳଙ୍କାରତତ୍ତ୍ୱଗୁଡ଼ିକ ଓଡ଼ିଆ କାବ୍ୟରୁ ପ୍ରଦତ୍ତ ସୁପରିଚିତ ଉଦ୍ଧୃତି ମାଧ୍ୟମରେ ବିଶ୍ଳିଷ୍ଟ ହୋଇଛି । ଅଳଙ୍କାର ସଂଜ୍ଞାର ସଂସ୍କୃତ ଭାବକୁ ଓଡ଼ିଆରେ ପ୍ରକାଶ କରାଯାଇଛି । ବିଶ୍ଳେଷଣ ଓ ସଂଶ୍ଳେଷଣ ପ୍ରକ୍ରିୟାରେ ସେସବୁର ଭାବ ସଂପ୍ରସାରିତ ହୋଇଛି । ଯେତେଦୂର ସମ୍ଭବ ଜଟିଳତା ଭାଂଗିବା ପାଇଁ ଚେଷ୍ଟା କରାଯାଇଛି ।" ବସ୍ତୁତଃ ପୁସ୍ତକଟି ଏହି ଉଦ୍‌ଘୋଷଣର ସାକ୍ଷ୍ୟ ବହନ କରେ ।

କାବ୍ୟତତ୍ତ୍ୱ, ଅଳଂକାର ପରିଚୟ, ରସବାଦ, ଧ୍ୱନିବାଦ, ରୀତିବାଦ, ଗୁଣ : ଏକ ଆଲୋଚନା ଏବଂ ଭାରତୀୟ ଅଳଙ୍କାର ତତ୍ତ୍ୱର କ୍ରମପରିଣତି ଏଥିରେ ବିଚାର କରାଯାଇଛି । ତେବେ ଶେଷ ପ୍ରସଙ୍ଗଟି ଭାରତୀୟ ସାହିତ୍ୟଶାସ୍ତ୍ରର ଐତିହ୍ୟ ଓ ବିଶେଷତ୍ୱ ଦର୍ଶାଉଥିବା ଦୃଷ୍ଟିରୁ ଅଭିନନ୍ଦନୀୟ ।

ପ୍ରାଧ୍ୟାପକ କ୍ଷେତ୍ରବାସୀ ୧୯୭୦ ମସିହା ବେଳକୁ ସାହିତ୍ୟର ଥିଓରୀଭିତ୍ତିକ ଏକ ଓଡ଼ିଆ ଗ୍ରନ୍ଥର ଅଭାବ ପୂରଣ କରିବା ପାଇଁ ସ୍ୱକଳ୍ପିତ ବୃହତ ପରିଯୋଜନାର ଚେଷ୍ଟାକୃତ ସଂକ୍ଷିପ୍ତରୂପ ପ୍ରକାଶ କରନ୍ତି - 'ସାହିତ୍ୟର ସାମାନ୍ୟ କଥନ ।' ସେଯାବତ କେବଳ ନୁହେଁ, ଏଯାବତ ସେହି ଧରଣର ଗ୍ରନ୍ଥଭାବେ ଏହାହିଁ ଅବିକଳ୍ପ । ଏଥିରେ ୧୪ ଟି ପ୍ରବନ୍ଧ ସ୍ଥାନିତ । ତନ୍ମଧ୍ୟରୁ ଦୁଇଟି ରଚନାକୁ ବାଦଦେଲେ ସବୁଗୁଡ଼ିକ ସାହିତ୍ୟର ଉପାଦାନ-ଉଦ୍ଦେଶ୍ୟ ଓ ଅବୟବ ବିଷୟକ । ଇତରିତ୍ୟ ଦୁଇଟି ପ୍ରବନ୍ଧ 'ବିଶ୍ୱସାହିତ୍ୟ' ଏବଂ 'ସଂସ୍କୃତି ଓ ସାହିତ୍ୟ' ସୂଚୀପତ୍ରରେ ବ୍ୟତିକ୍ରମ ମନେହେଲେ ମଧ୍ୟ ବ୍ୟାପକ ଦୃଷ୍ଟିଭଙ୍ଗୀ ଦ୍ୟୋତକ ।

ପ୍ରଥମ ରଚନାର ଶିରୋନାମା ହିଁ ଗ୍ରନ୍ଥ ନାମ ମଣ୍ଡନ କରିଛି - ସାହିତ୍ୟର 'ସାମାନ୍ୟକଥନ' । ଏହା ଏକ ଚମତ୍କାର ସଂକ୍ଷିପ୍ତ ମନ୍ମୟ ପ୍ରବନ୍ଧ । ଏହି ପ୍ରବନ୍ଧରେ ସାହିତ୍ୟର ପରିଚୟ, ସାହିତ୍ୟ ସୃଷ୍ଟିର ପ୍ରବଣତା, ସାହିତ୍ୟର ପ୍ରାଥମିକ ଲକ୍ଷ୍ୟ, ସାହିତ୍ୟିକର ଉଦ୍ଦେଶ୍ୟ, ସାହିତ୍ୟର ଭୂମିକା, ସାହିତ୍ୟରେ କଳ୍ପନାର ଭୂମିକା, ମନୋବୈଜ୍ଞାନିକଙ୍କ ଦୃଷ୍ଟିରେ ସାହିତ୍ୟର ରୂପ, ସାହିତ୍ୟର ପ୍ରଭାବ ଇତ୍ୟାଦି ସଂପର୍କରେ ଧାରାବାହିକ ଚର୍ଚ୍ଚାର ନିଷ୍କର୍ଷରେ 'ଜୀବନକୁ ସାହିତ୍ୟର ଆଧାର' ଭାବେ ପ୍ରତିପାଦନ କରାଯାଇଛି । ଅଧିକନ୍ତୁ, 'ଅଖଣ୍ଡ ଓ ଅମର ସୌନ୍ଦର୍ଯ୍ୟ ସଞ୍ଜାତ ଆନନ୍ଦ' ଦେଉଥିବା ଚେତନାର ପ୍ରାଣଦାତାଭାବେ ସାହିତ୍ୟକୁ ଚିହ୍ନଟ କରାଏ - ଏହି ପ୍ରବନ୍ଧ । ମାତ୍ର ଲକ୍ଷ୍ୟ କରିବା କଥା ଯେ, ପ୍ରବନ୍ଧଟିରେ ବର୍ଣ୍ଣିତ ଓ କଦାଚିତ ଅନୁଚ୍ଛେଦଟିଏ ପ୍ରାପ୍ତ ପ୍ରସଙ୍ଗଗୁଡ଼ିକ ପ୍ରତ୍ୟେକ ଏକ ଏକ ପୂର୍ଣ୍ଣାଙ୍ଗ ପ୍ରବନ୍ଧର

ଅପେକ୍ଷା ରଖେ ଏପରିକି ପୂର୍ଣ୍ଣାଙ୍ଗ ଗ୍ରନ୍ଥର । ତେବେ ପ୍ରାବନ୍ଧିକ ଡଃ ନାୟକ ସଂକ୍ଷିପ୍ତ ପରିସରରେ ସେଗୁଡ଼ିକର ନିଷ୍କର୍ଷମାତ୍ର ଗୁମ୍ଫନ କରି ସମ୍ପୃକ୍ତ ବିଷୟରେ ସ୍ୱୀୟ ଅଧ୍ୟୟନ, ଅନୁଶୀଳନ ଓ ଅବବୋଧର ପ୍ରମାଣ ରଖିଛନ୍ତି ।

ସାମାନ୍ୟ କଥନର ବିସ୍ତାର ପରିଚର୍ଚ୍ଚା ଯେମିତି କୌଣସି ଉପପାଦ୍ୟରେ କରାଯାଇଥାଏ ଏକ ପ୍ରତିପାଦ୍ୟରେ ପହଞ୍ଚିବା ପାଇଁ ସେମିତି ଗ୍ରନ୍ଥଗର୍ଭିତ ଅନ୍ୟ ପ୍ରବନ୍ଧଗୁଡ଼ିକର ସମାବେଶ । ସେଗୁଡ଼ିକ ହେଲା ସାହିତ୍ୟର ସାମଗ୍ରୀ, ସାହିତ୍ୟ ଉଦ୍ଦେଶ୍ୟ, କାବ୍ୟତତ୍ତ୍ୱ, ଭାବ ପାଇଁ ଭାଷା, ପ୍ରତିବିମ୍ବ, ସାହିତ୍ୟରେ ବିନୋଦ, ସାହିତ୍ୟରେ ବାସ୍ତବତା ପ୍ରସଙ୍ଗ, କଳା ଏକ ବିଚାର, ପ୍ରଜ୍ଞା ପ୍ରତିଭା ପଗଲ୍ଭତା, ଚରିତ୍ରଚର୍ଚ୍ଚା ଏବଂ ତୂଳି ଓ ଶିଳ୍ପୀ ପ୍ରଭୃତି ।

'ସାହିତ୍ୟର ସାମଗ୍ରୀ' ପ୍ରବନ୍ଧରେ 'ଭାବ'କୁ ସାହିତ୍ୟର ପ୍ରାଥମିକ ସାମଗ୍ରୀଭାବେ ଚିହ୍ନଟ କରାଯାଇଛି । ଦ୍ୱିତୀୟରେ ବସ୍ତୁରୂପର ବିଶେଷତାକୁ, ତୃତୀୟରେ ବାସ୍ତବ ସତ୍ୟ ସ୍ଥାନରେ କାବ୍ୟିକ ସତ୍ୟକୁ, ଚତୁର୍ଥରେ ସୁଚୟନିତ ଭାଷାକୁ, ପଞ୍ଚମରେ ଚରିତ୍ର ଘଟଣା ପ୍ରଭୃତିକୁ ସାହିତ୍ୟ ସାମଗ୍ରୀ ଭାବେ ଏକ ଏକ ଅନୁଚ୍ଛେଦରେ ଚର୍ଚ୍ଚାକରି ପ୍ରାବନ୍ଧିକ ନିଷ୍କର୍ଷ ସ୍ୱରୂପ କହନ୍ତି - " ସଂପୂର୍ଣ୍ଣ ରୂପେ ସାହିତ୍ୟ ହିଁ ମାନବ ଜୀବନର କଥା, ସୁଖଦୁଃଖ ଭରା ଜୀବନର ଆତ୍ମଗୀତି ହେଉ ବା ପରିଜନର ଜୀବନବୃତ୍ତି ହେଉ କିମ୍ବା ପ୍ରକୃତି ବର୍ଣ୍ଣନାର ବିଭାବ ବିଳାସ ଅଥବା ମାନବ ଚରିତ୍ର ଗଠନର ପିପାସା ହେଉ, ଯାହା ହେଉନା କାହିଁକି ସାହିତ୍ୟର ସାମଗ୍ରୀ ଚୟନ କ୍ଷେତ୍ରରେ ଜୀବନ ବିନ୍ୟାସ ହିଁ ଏକମାତ୍ର ସତ୍ୟ ।" ଏହି ମନ୍ତବ୍ୟଟି ଭାବବ୍ୟଞ୍ଜକ । ସାହିତ୍ୟର ସାମଗ୍ରୀ ପ୍ରବନ୍ଧର ନିମ୍ନ ମନ୍ତବ୍ୟଟି ସାମାନ୍ୟ ଅସଙ୍ଗତ ମନେ ହେଲେ ବି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କେବଳ ସାହିତ୍ୟ ଗଢ଼ିବା ହିଁ ମୁଖ୍ୟ କଥା, ବିଷୟବସ୍ତୁ ଯେତେ ନୁହେଁ ପ୍ରକାଶ ଭଂଗୀମା ହିଁ ସାହିତ୍ୟର ନିୟାମକ ।" "ସାହିତ୍ୟ ହେଉଛି ଚାରୁତମ କଳା" ମନ୍ତବ୍ୟଟି ମଧ୍ୟ ଆଲୋଚନାର ଆପେକ୍ଷା ରଖେ । ତେବେ ... "ପ୍ରକୃତି ଓ ଈଶ୍ୱର ସାହିତ୍ୟର ସାମଗ୍ରୀ । ମାନବତା ଓ ମାନବ ଜୀବନର ବିଭିନ୍ନପକ୍ଷ ସାହିତ୍ୟର ବିଷୟ ।" - ମନ୍ତବ୍ୟଟି ମୌଳିକ ନ ହେଲେ ମଧ୍ୟ ମୌଳିକଭାବେ କାବ୍ୟବଦ୍ଧ । ପ୍ରାଚୀନ ସାହିତ୍ୟ ଶାସ୍ତ୍ରରେ "ଲୋକ ଓ ଶାସ୍ତ୍ର' କୁ ଏବଂ ପାଶ୍ଚାତ୍ୟ ସାହିତ୍ୟ ଶାସ୍ତ୍ରରେ 'ମଣିଷ ଓ ପ୍ରକୃତିକୁ' ସାହିତ୍ୟର ସାମଗ୍ରୀ ଭାବେ ସ୍ଥୁଳତଃ ଗ୍ରହଣ କରାଯାଇଥିବା ସର୍ବବିଦିତ । କ୍ଷେତ୍ରବାସୀଙ୍କ ପ୍ରଦତ୍ତ ମନ୍ତବ୍ୟ ଏଇ ତଥ୍ୟାଶ୍ରିତ ହୋଇଥାଇପାରେ ।

ପରବର୍ତ୍ତୀ ପ୍ରବନ୍ଧ – 'ସାହିତ୍ୟର ଉଦ୍ଦେଶ୍ୟ' । ଏଥିରେ ଆନନ୍ଦବୋଧ ଓ ସୌନ୍ଦର୍ଯ୍ୟ ପ୍ରକାଶକୁ ସାହିତ୍ୟର ଉଦ୍ଦେଶ୍ୟଭାବେ ପ୍ରଥମତଃ ଗ୍ରହଣ କରାଯାଇଛି । ଏହାରି ଭିତ୍ତିରେ ସାହିତ୍ୟର ଚର୍ଚ୍ଚା କ୍ଷେତ୍ରରେ କଳା କୈବଲ୍ୟବାଦ, ଜୀବନ ପାଇଁ କଳା, କଳାର ସମାଜ

ପ୍ରତି ବଦ୍ଧତା, ଆତ୍ମପ୍ରକାଶ ପ୍ରବୃତ୍ତି ଓ ସମାଜ ଶିକ୍ଷଣ ପ୍ରଭୃତି ଅନେକ ମତବାଦର ପ୍ରତିଷ୍ଠା ଘଟିଛି । ସେ ସମ୍ପର୍କରେ ପ୍ରବନ୍ଧରେ ବିସ୍ତାରିତ ଭାବେ ଚର୍ଚ୍ଚା କରାଯାଇଛି । ଆରିଷ୍ଟୋଟଲ, ୱାଡ଼୍‌ସୱାର୍ଥ, ସେଲି, ବଦଲେୟାର, ଗୋତିଏର, କ୍ରୋଚେ, ପ୍ରୁବାର୍ଟ, ଓସ୍କାର ୱାଇଲ୍ଡ, କୋମ୍‌ତେ, କଲରିଜ ପ୍ରମୁଖ ଦାର୍ଶନିକ- କବି ଓ ତାତ୍ତ୍ୱିକମାନଙ୍କ ମତାମତ ସଂଶ୍ଳେଷଣ କରି ପ୍ରବନ୍ଧଟି ବସ୍ତୁତଃ ସାହିତ୍ୟର ଉଦ୍ଦେଶ୍ୟ ବିଷୟକ ଆବହମାନ ତର୍କଗୁଡ଼ିକର ଏକ ଧାରା ବିବରଣୀ ପ୍ରଦାନ କରିଛି । ପରିଶେଷରେ ପ୍ରାବନ୍ଧିକ ସାହିତ୍ୟର ପ୍ରକାଶରେ ଉଦ୍ଦେଶ୍ୟର ଲଗାମ ବା ଅର୍ଗଳ ନ ଦେବା ଉଚିତ ବୋଲି ଆପଣା ମନୋମତ ମନ୍ତବ୍ୟଟିଏ ପ୍ରଦାନ କରିଛନ୍ତି । ତାହା ଉଦ୍ଧରଣଯୋଗ୍ୟ "ସାହିତ୍ୟ ପ୍ରାଣର ଉଚ୍ଚାରଣ - ଲକ୍ଷ୍ୟ ବିଶ୍ୱପ୍ରକାଶ । ସାହିତ୍ୟିକ ଜନକ; ସାହିତ୍ୟ ତା'ର ମାନସ ସନ୍ତାନ, ଯାହାକି ଅନ୍ତରତମ ଦାନ ବିଶ୍ୱଭଣ୍ଡାରକୁ । ସେଇ ଦାନକୁ ରୁଚି ଅନୁଯାୟୀ ଗ୍ରହଣ କରିବା ଦାୟିତ୍ୱ ଆମର ।" ଆଲୋଚିତ ପ୍ରବନ୍ଧରେ ଗୋଟିଏ ଉଦ୍ଧୃତିଯୋଗ୍ୟ ମନ୍ତବ୍ୟ ଅଛି ଯାହା ଖୁବ୍ ପ୍ରତ୍ୟାଶିତ ଥିଲା - "ବୁଦ୍ଧି ଓ ହୃଦୟ ଦିଓଟି ସାହିତ୍ୟର ସାମଗ୍ରୀ" ।

'କାବ୍ୟତତ୍ତ୍ୱ' ପ୍ରବନ୍ଧଟି 'ଅଳଙ୍କାର ଓ ଅଳଙ୍କାରତତ୍ତ୍ୱ' ଗ୍ରନ୍ଥ ସନ୍ନିବିଷ୍ଟ 'କାବ୍ୟତତ୍ତ୍ୱ' ରଚନାର ଏକ ରୂପାନ୍ତର । ଏହି ବିଚାରର ଏକ ବିସ୍ତାରିତ ରୂପ ଅନ୍ୟ ପୁସ୍ତକରେ ମଧ୍ୟ ସୁଲଭ । ମାତ୍ର ଏହି ଗ୍ରନ୍ଥ ସନ୍ନିବିଷ୍ଟ ପ୍ରବନ୍ଧରେ 'କବି'ଙ୍କ ସଂପର୍କରେ ଗୋଟିଏ ଅନୁଚ୍ଛେଦ ଅଛି ଯାହା ପରବର୍ତ୍ତୀ ଗ୍ରନ୍ଥଟିରେ ଅନୁପସ୍ଥିତ ।

'ଭାବପାଇଁ ଭାଷା' ପ୍ରବନ୍ଧରେ ପ୍ରାବନ୍ଧିକ ଏକ ସିଦ୍ଧାନ୍ତ ଦେଇଛନ୍ତି - 'ଶିଳ୍ପୀ ଯେପରି ଭାବରେ ରୂପକାର, ସେହିପରି ଭାଷାର ବିଧାତା ତାର ପ୍ରୟୋଗ କୁଶଳତା ହେତୁ ଭାଷା ମର୍ଯ୍ୟାଦା ଲାଭକରେ ।'

"ପ୍ରତିବିମ୍ବ' ଶିରୋନାମାଧୀନ ହୋଇ ଏକ ଚମତ୍କାର ପ୍ରବନ୍ଧ ଗ୍ରନ୍ଥିତ । 'ସାହିତ୍ୟରେ କବି - ବ୍ୟକ୍ତିତ୍ୱ'ର ଅଭିବ୍ୟକ୍ତି' ପ୍ରସଙ୍ଗଟି ପ୍ରକୃତରେ ଆଲୋଚନାର ଅପେକ୍ଷା ରଖେ । ପ୍ରାବନ୍ଧିକ କ୍ଷେତ୍ରବାସୀ ଏହାକୁ ଯଥେଷ୍ଟ ସତର୍କ ଓ ନିଷ୍ଠାପର ହୋଇ ରଚନା କରିଛନ୍ତି । ସାହିତ୍ୟକୁ ସ୍ରଷ୍ଟାନିରପେକ୍ଷ ଓ ସ୍ରଷ୍ଟାପେକ୍ଷ ଭାବେ ତର୍କଣା କରୁଥିବା ଦୁଇ ଗୋଷ୍ଠୀର ଉଦ୍ୟମ ଓ ଉଭୟଗୋଷ୍ଠୀର ସମର୍ଥକମାନଙ୍କ ଲମ୍ଫାଧାଡ଼ି ଦେଖିବାକୁ ମିଳେ । ଉଭୟ ପକ୍ଷର ଯୁକ୍ତି ବଳିଷ୍ଠ । ଡକ୍ଟର ନାୟକ ଉଭୟ ପକ୍ଷର ଯୁକ୍ତିଗୁଡ଼ିକୁ ଅନୁଶୀଳନ କରିବା ଅବସରରେ ନିଜପକ୍ଷକୁ ଯେଉଁ ଦୃଷ୍ଟାନ୍ତଗୁଡ଼ିକ ସଂଯୋଜନ କରିଛନ୍ତି ଓ ତଦ୍ୱାରା ପ୍ରସଙ୍ଗ ପ୍ରତି ଆପଣାର ଅପକ୍ଷପାତତା ପ୍ରମାଣ କରିଛନ୍ତି ତାହା ଏହି ରଚନାର ବିଶେଷତ୍ୱ । ଶେଷତଃ ଡଃ ନାୟକ ସୃଷ୍ଟିରେ ସ୍ରଷ୍ଟାର ଉପସ୍ଥିତି ସ୍ୱୀକାର କରିଛନ୍ତି । ତାଙ୍କ ସିଦ୍ଧାନ୍ତ ହେଉଛି

କବି-ବ୍ୟକ୍ତିଟି କାବ୍ୟରେ ନଥାଏ, କାବ୍ୟରେ ତା'ର ଜୀବନୀ ହୁଏତ ନ ଥାଏ ମାତ୍ର ତା'ର ପରିମାର୍ଜିତ- ପରିବର୍ତ୍ତିତ-ଦ୍ରବିତ (Saturated) ଓ ସଂହତ ବ୍ୟକ୍ତିତ୍ୱ ଅବଶ୍ୟ ଥାଏ । କାରଣ "କବିର ଦୃଷ୍ଟିଭଙ୍ଗୀ ଓ ଆତ୍ମାର ମର୍ମ୍ମବୋଧ ସାହିତ୍ୟ ଓ କବିତାର ପ୍ରାଣ-କନ୍ଦ୍ରରେ ପ୍ରତିବିମ୍ବିତ ।"

"ସାହିତ୍ୟରେ ବିନୋଦ" ପ୍ରସଙ୍ଗରେ 'ହାସ୍ୟରସ' ର ବିପୁଳ ଚର୍ଚ୍ଚା (ରସ ଦୃଷ୍ଟିରୁ ନୁହେଁ) କରାଯାଇଛି । ଏଥିରେ ବିନୋଦନକରଣକୁ ଏକ ଶୈଳୀ ରୂପେ ପ୍ରାବନ୍ଧିକ ସିଦ୍ଧ କରିଛନ୍ତି । "ତୃପ୍ତି ଓ ପ୍ରସନ୍ନତାର ଅନୁଭବ ସଞ୍ଚାର କରିବା ବିନୋଦ ସାହିତ୍ୟର ଲକ୍ଷ୍ୟ । ସାହିତ୍ୟର ଅନ୍ୟାନ୍ୟ ଶୈଳୀତୁଲ୍ୟ ବିନୋଦ ମାନବକୁ ଆବଶ୍ୟକୀୟ ମାନସିକ ଐଶ୍ୱର୍ଯ୍ୟ ପ୍ରଦାନ କରିଥାଏ ।" ତେବେ ବିନୋଦନର ଉଦ୍ଦେଶ୍ୟ ଯେ 'ରୁଗ୍ଣ ସମାଜର ଚିକିତ୍ସା' ଓ 'ବିନୋଦ ସାହିତ୍ୟକାର ଯେ ଜଣେ ଚିକିତ୍ସକ' ଏହି ବକ୍ତବ୍ୟ ପ୍ରବନ୍ଧର ମୂଲ୍ୟବୃଦ୍ଧି ଘଟାଏ ।

'ସାହିତ୍ୟରେ ବାସ୍ତବତା ପ୍ରସଙ୍ଗ' ପ୍ରବନ୍ଧଟି ପ୍ରକୃତରେ ବାସ୍ତବତା କହିଲେ ବସ୍ତୁଗତ - ବ୍ୟକ୍ତିଗତ ଓ ଅନୁଭୂତିଗତ ଅର୍ଥାତ୍ ଇନ୍ଦ୍ରିୟଗ୍ରାହ୍ୟ ବାସ୍ତବତା ବିଷୟକ ସାହିତ୍ୟ ସହିତ ବାସ୍ତବବାଦୀ ଦର୍ଶନ ଓ ବାସ୍ତବବାଦଭିତ୍ତିକ ସାହିତ୍ୟର ଆଲୋଚନାକୁ ମଧ୍ୟ ପରିସରଭୁକ୍ତ କରିଛି । ଫଳରେ ରଚନାଟି ଥିଓରୀର ଚର୍ଚ୍ଚାରେ ସୀମିତ ନ ରହି ତାହାର ପ୍ରୟୋଗପକ୍ଷ ମଧ୍ୟ ଦର୍ଶାଇଛି । ଏଣୁ ତାହା ପ୍ରସଙ୍ଗ ଉପରେ ଯଥେଷ୍ଟ ଆଲୋକପାତ କରିପାରିଛି ।

"ଉପଲବ୍ଧର ଆନନ୍ଦ ବିତରଣ କଳାର ଲକ୍ଷ୍ୟ ଏବଂ ସେଇଥିପାଇଁ କଳାକାର ଚିରଦିନ ଚେଷ୍ଟିତ" ନିଷ୍କର୍ଷରେ ପହଞ୍ଚିଥିବା ପ୍ରବନ୍ଧ 'କଳା-ଏକ ବିଚାର' ।

"ପ୍ରଜ୍ଞା ପ୍ରତିଭା ଓ ପ୍ରଗଲ୍ଭତା' ପ୍ରବନ୍ଧରେ ଉଲ୍ଲେଖ ହୋଇଛି - 'ଅପୂର୍ବ ବସ୍ତୁ ନିର୍ମାଣକ୍ଷମ ପ୍ରଜ୍ଞାର ନାମ ପ୍ରତିଭା' ଏବଂ 'ନବନବୋନ୍ମେଷଶାଳିନୀ ପ୍ରତିଭା ହେଉଛି ପ୍ରଜ୍ଞା" - "ପ୍ରତିଭା ନୂତନର ସ୍ରଷ୍ଟା; ପ୍ରଜ୍ଞା ସୃଷ୍ଟ ବା ନିଷ୍ପନ୍ନ ବସ୍ତୁର ନିରୀକ୍ଷକ"- "ହୃଦୟ ପ୍ରତିଭାର ଆୟତନ କ୍ଷେତ୍ର; ବୁଦ୍ଧି ପ୍ରଜ୍ଞାର ସ୍ୱକ୍ଷେତ୍ର । ପ୍ରାଜ୍ଞ ଓ ପ୍ରାତିଭ ହୋଇ ମଧ୍ୟ ସମସ୍ତେ କବି ହୁଅନ୍ତି ନାହିଁ; ଯେତେବେଳେ ପ୍ରାତିଭପ୍ରାଜ୍ଞ ପ୍ରଗଲ୍ଭ ହୋଇଥାଏ ସେତେବେଳେ ତାହାର ବାଣୀ କାବ୍ୟ ପାଇଟେ ଓ ସେ କବି ସମ୍ବୋଧନଯୋଗ୍ୟ ହୋଇଥାଏ ।"

'ଚରିତ୍ର ଚର୍ଚ୍ଚା' ଏକ ସୁବୀକ୍ଷିତ ରଚନା । ଏଥିରେ ପ୍ରାବନ୍ଧିକ ଉଚ୍ଚକଳାର ଲକ୍ଷଣ ରୂପେ ରୂପସତ୍ତା ଅପେକ୍ଷା ବ୍ୟକ୍ତିସତ୍ତା ପ୍ରକାଶ କ୍ଷମତାକୁ ବୁଝିଛନ୍ତି ଓ ତାହା ଘଟିବାରେ

ଚରିତ୍ରାୟନର ଭୂମିକା ଗୁରୁତ୍ୱପୂର୍ଣ୍ଣ ବୋଲି ସାବ୍ୟସ୍ତ କରିଛନ୍ତି । ଚରିତ୍ରର ଭେଦ ଏବଂ ଲକ୍ଷଣ ରଚନାଟିରେ ସଂକ୍ଷେପରେ ପ୍ରଦତ୍ତ । ମାତ୍ର ସେଗୁଡ଼ିକ ଉଦ୍ଧାରଣଯୋଗ୍ୟ ମନ୍ତବ୍ୟ ସଦୃଶ ହୋଇପାରିଥିବା ଆନନ୍ଦର ବିଷୟ । ରଚନାଟିରେ ଚରିତ୍ର ଚିତ୍ରଣ ରୀତି ସମ୍ପର୍କରେ ମଧ୍ୟ ଉପଦେଶ ଅଛି ।

'ତୂଳି ଓ ଶିକୁଳୀ' ପ୍ରବନ୍ଧରେ ଶିଳ୍ପୀର ସ୍ୱାଧୀନତା ପ୍ରସଙ୍ଗ ବିଚାର ହୋଇଛି । ସାମାଜିକ ଓ ଶାସକୀୟ ପୁଣି ନୈତିକ ଅଙ୍କୁଶ ଅନେକତ୍ର ଶିଳ୍ପୀର ସ୍ୱାଧୀନତାକୁ ଲାଞ୍ଛିତ କରେ; ତାହାର ପ୍ରତିଭା ଓ ସ୍ରଷ୍ଟାପଣର ସ୍ୱଚ୍ଛନ୍ଦତାକୁ ପରାହତ କରେ । ଆଇନ ଆଖିରେ କବି ଦଣ୍ଡନୀୟ ବିବେଚିତ ହୁଏ ଓ ଦଣ୍ଡ ଭୋଗେ ମଧ୍ୟ । ପ୍ରାଚୀନକାଳରୁ କବିର ମୁକ୍ତମାନସ ବିପକ୍ଷରେ ସମାଜର ବିଚାର ଶିକୁଳୀ କେତେକେତେ ରୂପରେ ପ୍ରକଟ ହୋଇଛି । ତଥାପି କବି ମୁକ୍ତିର ସାମସଂଗୀତ ଗାଇଛି, ଶିକୁଳୀ ବିରୋଧରେ ତୂଳିର ଶକ୍ତି ପ୍ରତିଷ୍ଠା କରିଛି । ପ୍ରବନ୍ଧଟି ଖୁବ୍ ପ୍ରାସଙ୍ଗିକ ଭାବେ ଏହି ସିଦ୍ଧାନ୍ତରେ ପହଞ୍ଚିଛି । ବିଶ୍ୱସାହିତ୍ୟରେ ତାହାର ଭୂରିଭୂରି ଉଦାହରଣ ଥିବା ସୂଚାଇ ପ୍ରାବନ୍ଧିକ କେତୋଟି ଉଦାହରଣ ମଧ୍ୟ ଉପସ୍ଥାପନ କରିଛନ୍ତି ।

ସାମଗ୍ରିକଭାବେ ଦେଖିଲେ 'ସାହିତ୍ୟର ସାମାନ୍ୟ କଥନ' ଗ୍ରନ୍ଥ ପ୍ରକାର ଦୃଷ୍ଟିରୁ ଓଡ଼ିଆ ସାହିତ୍ୟରେ ଏକ ବିଶେଷ ସ୍ଥାନ ଦାବିକରେ । ଗ୍ରନ୍ଥକାରଙ୍କ ଆବେଗତାପିତ ଭାଷା, ବକ୍ତୃତାଦାନ ସୁଲଭ ଭଙ୍ଗୀ, ପ୍ରସଙ୍ଗରେ ସର୍ବଦିଗସ୍ପର୍ଶ ବାସନାଜନିତ ଆଗ୍ରହ ଓ ସର୍ବୋପରି ପାଣ୍ଡିତ୍ୟ ନୁହେଁ ଲାଳିତ୍ୟ ପ୍ରକାଶ, ପ୍ରଶିକ୍ଷଣ ନୁହେଁ ମାର୍ଗ ପ୍ରଦର୍ଶନ ଲକ୍ଷ୍ୟ ରଖି କ୍ଷେତ୍ରବାସୀ ଆପଣା ପ୍ରଜ୍ଞା ଓ ପ୍ରଗଲ୍‌ଭତାର ସମନ୍ୱୟ ସାଧନ କରିଛନ୍ତି ଉକ୍ତ ଗ୍ରନ୍ଥରେ । ସାହିତ୍ୟର ବିଭିନ୍ନ ଉପାଦାନ ବିଷୟରେ 'କଳାଶକ୍ତି' କିମ୍ବା 'ସାହିତ୍ୟ ଓ ..' ଗ୍ରନ୍ଥ ଦୁଇଟି ଭଳି ସାହିତ୍ୟର ସାମାନ୍ୟ କଥନ ମଧ୍ୟ ମୌଳିକ ପ୍ରୟାସ । ସମୀକ୍ଷାକୁ ସାଧାରଣ ଭୋଜ୍ୟ କରିବାରେ ଏହି ଗ୍ରନ୍ଥ ଜରିଆରେ କ୍ଷେତ୍ରବାସୀଙ୍କ ପ୍ରୟାସ ସଫଳ ହୋଇଛି ।

**୧୯୮୧ ମସିହାରେ ପ୍ରକାଶ ପାଏ କ୍ଷେତ୍ରବାସୀଙ୍କ 'ଭାରତୀୟ ବାକ୍ୟତତ୍ତ୍ୱ' ଗ୍ରନ୍ଥ ।**

ସାହିତ୍ୟଶାସ୍ତ୍ରୀ ଅଭିନବ ଗୁପ୍ତ ମହାଶୟଙ୍କ କହିବାମତେ – ସୌନ୍ଦର୍ଯ୍ୟ ହିଁ କାବ୍ୟ ତଥା କଳାର ଆତ୍ମସ୍ୱରୂପ । ଅନ୍ୟାନ୍ୟ ସାହିତ୍ୟଶାସ୍ତ୍ରୀଗଣ ମଧ୍ୟ କାବ୍ୟରେ ସୌନ୍ଦର୍ଯ୍ୟର ଭୂମିକାକୁ ଗୁରୁତ୍ୱ ଦେଇ 'ଚମତ୍କାର', 'ବୈଚିତ୍ର୍ୟ', 'ଶୋଭାକର', ଏପରିକି 'ସୌନ୍ଦର୍ଯ୍ୟ' ପ୍ରଭୃତି ଶବ୍ଦରେ ତାହାର ପରିଭାଷା କରିଛନ୍ତି । ଏହାସତ୍ତ୍ୱେ ଆମ ସାହିତ୍ୟ ଶାସ୍ତ୍ର ସୌନ୍ଦର୍ଯ୍ୟଶାସ୍ତ୍ର ବୋଲାଇନାହିଁ । ତାହା ହୋଇଥିଲେ ପାଶ୍ଚାତ୍ୟ ଏସ୍ଥେଟିକସ୍‌ର ପର୍ଯ୍ୟାୟବାଚୀ ହୋଇପଡ଼ିବାର ଆଶଙ୍କା ଥିଲା । କାରଣ ଆମେ ଜାଣୁ ସୌନ୍ଦର୍ଯ୍ୟଶାସ୍ତ୍ରର ପରିସରରେ

କେବଳ ସାହିତ୍ୟ ନୁହେଁ କଳାର ସମସ୍ତ ପ୍ରକାଶ ଯଥା ଭାସ୍କର୍ଯ୍ୟ, ସ୍ଥାପତ୍ୟ, ଚିତ୍ର, ନୃତ୍ୟ, ସଙ୍ଗୀତାଦି ଆସିପାରେ ।

ତେବେ ଦଶମ ଶତାବ୍ଦୀରେ ପଣ୍ଡିତ ରାଜଶେଖର ନିର୍ବାଚନ ଓ ପ୍ରୟୋଗ କରିଥିବା 'ସାହିତ୍ୟ ବିଦ୍ୟା' ପଦଟି ଖୁବ୍ ଚିତ୍ତାକର୍ଷକ । ଭାମହ, ଆନନ୍ଦବର୍ଦ୍ଧନ ଓ କୁନ୍ତକଙ୍କ ସମେତ ବିଶ୍ୱନାଥ କବିରାଜଙ୍କ ପର୍ଯ୍ୟନ୍ତ 'ସାହିତ୍ୟ' ଶବ୍ଦର ପ୍ରୟୋଗ କାବ୍ୟର ବିକଳ୍ପଭାବେ ଅଥବା ସାହିତ୍ୟର ବିକଳ୍ପରେ ବ୍ୟବହାର ହୋଇଆସୁଥିବା କାବ୍ୟ ଶବ୍ଦର ବିତାଡ଼ନ ପୂର୍ବକ ସାହିତ୍ୟ ଶବ୍ଦର ପ୍ରୟୋଗ କରି ସେ ସିଦ୍ଧକାମ ହୋଇଥିଲେ । ରୂଯ୍ୟକ* ଓ ବିଶ୍ୱନାଥ ସ୍ୱ ମୀମାଂସା ଗ୍ରନ୍ଥର ନାମ 'ସାହିତ୍ୟ ମୀମାଂସା' ଓ 'ସାହିତ୍ୟ ଦର୍ପଣ' ରଖି ସାହିତ୍ୟ ଶବ୍ଦଟିକୁ ସମୁଚିତ ପ୍ରତିଷ୍ଠା ଦେଇଛନ୍ତି । ଏହାଫଳରେ, 'କାବ୍ୟ' ଶବ୍ଦଟି ସାହିତ୍ୟର ପଦ୍ୟ ବିଭାଗର ଏକ ଅଂଗ ଏବଂ ପଦ୍ୟାଙ୍ଗିକ ଭାବେ ପରବର୍ତ୍ତୀ କାଳରେ ସହଜ ଗୃହୀତ ।

'ଅଳଙ୍କାର ଶାସ୍ତ୍ର' ଯଦିଓ ଆମ ସାହିତ୍ୟ ବିଚାର କର୍ମର ନାମ ଭାବେ ପ୍ରାଚୀନ ଓ ବହୁବିଦ୍ୱାନ ସମର୍ଥିତ ତଥାପି 'ଅଳଙ୍କାର' ନାମକ ଏକ ବିଚାରକକ୍ଷଟି ଓ ବିଚାରପକ୍ଷ ଥିବାରୁ ଏହି ନାମଟି ସମଗ୍ରତଃ ସାହିତ୍ୟ ବିଚାରକୁ ପ୍ରତିନିଧିତ୍ୱ କରିପାରେ ନାହିଁ । କେତେକ ମଧ୍ୟ 'କାବ୍ୟତତ୍ତ୍ୱ' ପଦରେ ଏହି ଉଦ୍ଦେଶ୍ୟ ସାଧନ କରିବାକୁ ଚେଷ୍ଟିତ । ଯେହେତୁ କାବ୍ୟ ଶବ୍ଦ ସାହିତ୍ୟ ଶବ୍ଦର ପରିପୂରକ ଭାବେ ସମର୍ଥିତ ତେଣୁ ଏହା ଗ୍ରହଣୀୟ ।

ଡଃ ନାୟକ ସେହି ଉଦ୍ଦେଶ୍ୟ ପ୍ରେରିତ ହୋଇ ଭାରତୀୟ ସାହିତ୍ୟ ଶାସ୍ତ୍ରର ପାଞ୍ଚଗୋଟି ଶାଖା ସଂପର୍କରେ ଧାରଣା ଦେବାକୁ ଉଦ୍ୟମ କରିଥିବା ତାଙ୍କ ଗ୍ରନ୍ଥର ନାମ ରଖିଛନ୍ତି 'ଭାରତୀୟ କାବ୍ୟତତ୍ତ୍ୱ' । କାବ୍ୟତତ୍ତ୍ୱ ମଧ୍ୟ ଭାରତୀୟ ବିଶେଷତଃ ସଂସ୍କୃତ ସାହିତ୍ୟ ବିଚାରକର୍ମର ନାମବାଚି ପଦ ଭାବେ ଗୃହୀତ । ମାତ୍ର ଡଃ ନାୟକ ପଦଟିକୁ ସେତିକି ପ୍ରସାର ନ ଦେଇ ତାହାକୁ Poetics ର ଅନୁବାଦ ରୂପେ ଘେନିଛନ୍ତି । ସେ Indian Poetics କହିବା ଲକ୍ଷ୍ୟରେ ଭାରତୀୟ କାବ୍ୟତତ୍ତ୍ୱ ବୋଲି ଉଲ୍ଲେଖ କରିଥିବା ଅନୁମିତ ।

ଏହି ଗ୍ରନ୍ଥ ଶିରୋନାମା ଅଧୀନରେ ଅଛି 'କାବ୍ୟ ଓ କାବ୍ୟତତ୍ତ୍ୱ' ଶୀର୍ଷକ । ଡଃ ନାୟକ ଏହି ଅଂଶରେ କାବ୍ୟର ସ୍ୱରୂପ ବିଚାର କରିବା ସହିତ କାବ୍ୟ ସଂରଚନାରେ

---

* ବଶ୍ୱନାଥ କବିରାଜଙ୍କ ପୂର୍ବବର୍ତ୍ତୀ ସମୟର ଧ୍ୱନିବାଦୀ ଗୋଷ୍ଠୀର ଏହି ଆଳଙ୍କାରିକ 'କାବ୍ୟ ପ୍ରକାଶ ସଙ୍କେତ', ଅଳଙ୍କାର ମଞ୍ଜରୀ, ସାହିତ୍ୟ ସୀମାଂସା ଓ ଅଳଙ୍କାରାନୁସାରିଣୀ', ପ୍ରଭୃତି ଅଳଙ୍କାର ଗ୍ରନ୍ଥର ରଚୟିତା-ସମ୍ପାଦକ ।

ପ୍ରତିଭା ଓ କଳ୍ପନାର ଭୂମିକା ସମେତ କାବ୍ୟବିଚାରରେ ପ୍ରାଚ୍ୟ ପାଶ୍ଚାତ୍ୟ ଦୃଷ୍ଟିକୋଣର ଭେଦାଭେଦ ମଧ୍ୟ ଅବଲୋକନ କରିଛନ୍ତି । ତାହା କରିବାକୁ ଯାଇ ସେ ନିଜ ବକ୍ତବ୍ୟକୁ ପୁଷ୍ଟ କରାଇଛନ୍ତି ପାଶ୍ଚାତ୍ୟ ଚିନ୍ତାନାୟକ, ଆଧୁନିକ ପ୍ରାଚ୍ୟ-ପାଶ୍ଚାତ୍ୟ କବିମନିଷୀ ଏବଂ ଓଡ଼ିଆ କବିଙ୍କ ମତାମତ ରଚନା ଉଦ୍ଧାରଣ କରି । ପୁଣି କାବ୍ୟର ପ୍ରୟୋଜନ ବା ଫଳଶ୍ରୁତି ସଂପର୍କରେ ଭରତ, ଭାମହ, ଦଣ୍ଡୀ, ମମ୍ମଟ ବିଶ୍ୱନାଥଙ୍କ ସହିତ ଆରିଷ୍ଟୋଫେସନ୍, ପ୍ଲାଟୋ, ଆରିଷ୍ଟୋଟଲ୍, ବୋମଗାର୍ଟେନ, କାଣ୍ଟ୍, ହେଗେଲ, ଗେଟେ. ଶିଲାର, ସ୍ଲେଗେଲ, ଶେଲିଙ୍ଗ୍, ଏଡ୍‌ଗାର ଆଲାନ ପୋ, ଶ୍ରୀ ଅରବିନ୍ଦ, ରବୀନ୍ଦ୍ରନାଥ, ଆନନ୍ଦ କୁମାର ସ୍ୱାମୀ, ଚିତ୍ତରଞ୍ଜନ ଦାସ, ନିତ୍ୟାନନ୍ଦ ମହାପାତ୍ର, ଅନ୍ନଦା ଶଙ୍କର, କୃଷ୍ଣଚରଣ ବେହେରା, ମନୋଜ ଦାସ, ବାମା ଚରଣ ମିତ୍ର ପ୍ରମୁଖଙ୍କୁ ଉଦ୍ଧରଣ ଅଥବା ଉପଲକ୍ଷ୍ୟ କରି ସ୍ୱୀୟ ବିବେଚନକୁ ଉପସ୍ଥାପନ କରିଛନ୍ତି । କ୍ଷେତ୍ରବାସୀଙ୍କ ଏହି କୃତି 'କାବ୍ୟତତ୍ତ୍ୱ' ର ଓଡ଼ିଆକରଣ ନୁହେଁ, ସାହିତ୍ୟ ଓ ସାହିତ୍ୟତତ୍ତ୍ୱ ବିଷୟକ ସ୍ୱଲିଖିତ ଏକ ଚର୍ଚ୍ଚାନିବନ୍ଧ ।

ଆଲୋଚିତ ଦୀର୍ଘ ରଚନାରେ ସାହିତ୍ୟର ପରିଭାଷା, ପରିଚୟ, ରୂପରେଖ, ସୃଷ୍ଟିର ଲଗ୍ନ, ସ୍ରଷ୍ଟାର ଯୋଗ୍ୟତା, କାମ୍ୟ ପରିବେଶ, ଅନୁକୂଳପ୍ରବଣତା, ଗ୍ରହଣୀୟ ବିଷୟ, ଉପଯୋଗିତା, ଜୀବନ ସହ ସଂପର୍କ, ସତ୍ୟ ସହିତ ସମ୍ବନ୍ଧ, ଆବଶ୍ୟକତା ପ୍ରତି ବିଭିନ୍ନ ଦୃଷ୍ଟିକୋଣ, ବିଚାରନିର୍ଣ୍ଣରେ ପ୍ରାଚୀନ ସାହିତ୍ୟଶାସ୍ତ୍ରୀମାନଙ୍କର ପ୍ରତିପାଦ୍ୟ ପ୍ରଭୃତି ବିଭିନ୍ନ ପ୍ରସଙ୍ଗ ଧାରାବାହିକଭାବେ ବିଶ୍ଲେଷଣ କରି ଡଃ ନାୟକ ନିଜ ଅଧ୍ୟୟନ ଓ ଅବଗାହନର ଦୃଷ୍ଟାନ୍ତ ରଖିଛନ୍ତି । କେତେକ ସ୍ଥଳରେ ଉଦ୍ଧୃତ ମତାମତଗୁଡ଼ିକ କେବଳ ମଣ୍ଡିତ ପାଇଁ ବ୍ୟବହାର କରିବାରେ ସନ୍ତୁଷ୍ଟ ନ ରହି କତିପୟ ମତକୁ ଦୃଢ଼ତାର ସହ ଖଣ୍ଡନ କରିଛନ୍ତି । ସେଥିରୁ ତାଙ୍କ ନିଜସ୍ୱ ଅବବୋଧ ଓ ଦୃଷ୍ଟିଭଙ୍ଗୀ ପ୍ରତି ବିଶ୍ୱସ୍ତତା ପ୍ରମାଣିତ ।

ସାଧାରଣତଃ କବିଙ୍କୁ ଜଣେ ପ୍ରଖ୍ୟାପକ ବା ବର୍ଣ୍ଣନାକାରୀ କିମ୍ୱା ଉଦ୍‌ଘୋଷକ ମନେ କରାଯାଏ । ପ୍ରାଚୀନକାଳରୁ କବିଙ୍କ ପ୍ରତି ଏ ପ୍ରକାର ଦୃଷ୍ଟିକୋଣ ପ୍ରକାଶିତ । ରାଜଶେଖର କବିଙ୍କୁ ବର୍ଣ୍ଣନାକାରୀ ସ୍ୱୀକାର କରନ୍ତି । ଭଟ୍ଟଗୋପାଳ* କବିଙ୍କୁ ରସ ଓ ଭାବର ମୋକ୍ଷଣକାରୀ ଅଭିହିତ କରନ୍ତି । ଅଧିକାଂଶ ସାହିତ୍ୟଶାସ୍ତ୍ରୀଙ୍କ ଦୃଷ୍ଟିରେ 'ବସ୍ତୁ-ବ୍ୟକ୍ତି-ଘଟଣାକୁ ମୋଟ ଉପରେ ରୂପକୁ ଲୋକୋତ୍ତର ଭାବେ ଅର୍ଥାତ୍ ଅତିଶୟ ଭାବେ ବର୍ଣ୍ଣନା କରୁଥିବା ବ୍ୟକ୍ତିତ୍ୱଭାବେ କବି ଗୃହୀତ । କବି କ୍ରାନ୍ତଦର୍ଶୀ । ଅନାଗତ ଭବିଷ୍ୟତ,

---

* 'ସାହିତ୍ୟ ଚୂଡ଼ାମଣି' ଟୀକାଗ୍ରନ୍ଥର ପ୍ରଣେତା (ପ୍ରାକ୍ ପଞ୍ଚଦଶ ଶତାବ୍ଦୀ) ଏହାଙ୍କ ପୂରାନାମ ଲୌହିତ୍ୟ ଭଟ୍ଟଗୋପାଳ ସୂରୀ ଥିବା ଜଣାଯାଏ - ସମ୍ପାଦକ ।

ଅତିବାହିତ ଅତୀତ, ଘଟିତବ୍ୟ ଓ ଘଟିତ ସମସ୍ତ କାଳ-ପାତ୍ର-ସ୍ଥାନ କବି ଦର୍ଶନ କରିପାରେ । ଦର୍ଶନ କ'ଣ ? ଦର୍ଶନ ହେଉଛି ବସ୍ତୁର ବୈଚିତ୍ର୍ୟ ଓ ଅନ୍ତବର୍ତ୍ତୀ ଧର୍ମର ତତ୍ତ୍ୱକୁ ଅବଧାରଣା କରିବା । କବି ବସ୍ତୁର ସାଧାରଣ ଓ ବାହ୍ୟିକ ପରିଚୟ ଉନ୍ମୋଚନ କରି ତାହାର ଅନ୍ତରସ୍ଥ ବିଶେଷ ପରିଚୟକୁ ଉଦ୍‌ଘାଟନ କରିପାରନ୍ତି ଏପରିକି ଆରୋପଣ କରିପାରନ୍ତି । ଏଣୁ କବି ଜଣେ ଦାର୍ଶନିକ, ଦ୍ରଷ୍ଟାତ୍ୱ କବିର ପରିଚୟ । ସବୁ ଦ୍ରଷ୍ଟା କବି ନୁହନ୍ତି । ଯେତେବେଳେ ଦ୍ରଷ୍ଟା ସ୍ୱାନୁଭୂତ ଦର୍ଶନକୁ ଶବ୍ଦର କମନୀୟ ଶରୀର ପ୍ରଦାନ କରି ପ୍ରକଟ କରନ୍ତି ସେତେବେଳେ ସେ ହୁଅନ୍ତି କବି । ଏଣୁ ଭାବବସ୍ତୁର ଦର୍ଶନ ମାତ୍ର ନୁହେଁ, ତାହାର ଶାବ୍ଦିକ ପ୍ରକାଶ କ୍ଷମତା ମଧ୍ୟ କବି ପରିଚୟ ପାଇବା ପାଇଁ ଆବଶ୍ୟକ ହୁଏ । ଅର୍ଥାତ୍ କବିକର୍ମର ଦୁଇ ଆଧାର ଶିଳା ହେଉଛି ଦର୍ଶନ ଓ ବର୍ଣ୍ଣନ । ମନ୍ତ୍ରଦ୍ରଷ୍ଟାମାନଙ୍କୁ ଋଷି କୁହାଯାଏ । ବସ୍ତୁତତ୍ତ୍ୱ ଦ୍ରଷ୍ଟାଭାବେ କବି ମଧ୍ୟ ଋଷି ପଦବାଚ୍ୟ ବୋଲି କହନ୍ତି ଭଟ୍ଟଣୈତ୍ର* । ତଥାପି ସାଧାରଣରେ କବିର ପରିଚିତି ସଂଜ୍ଞା ହେଉଛି - ଯେ ଦର୍ଶନ ଓ ବର୍ଣ୍ଣନର ମଞ୍ଜୁଳ ସମନ୍ୱୟ ସାଧନ କରାଇପାରନ୍ତି । କବି ପୁଣି ସ୍ରଷ୍ଟା । ଦ୍ୱିତୀୟ ପ୍ରଜାପତି । ପ୍ରଜାପତି ବ୍ରହ୍ମା ସୃଷ୍ଟିକ୍ରିୟାରେ ସ୍ୱାଧୀନ ନୁହନ୍ତି, ସେ ପ୍ରାଣୀର କର୍ମ ବିଚାର କରି ତାହାକୁ ସୃଷ୍ଟି କରିଥାନ୍ତି ମାତ୍ର କବି ତାଙ୍କ ସୃଷ୍ଟିରେ ସ୍ୱାଧୀନ ଓ ନିରପେକ୍ଷ । ନିଜ ରୁଚି ଓ ମନୋବୃତ୍ତି ଅନୁକୂଳ ଯେ କୌଣସି ସୃଷ୍ଟି ସେ ତୁରନ୍ତ କରିପାରନ୍ତି । କବିଙ୍କ କୃତିତ୍ୱ ସଂପର୍କରେ ଧ୍ୱନ୍ୟାଲୋକରେ କୁହାଯାଇଛି - ବସ୍ତୁ ଯେତେ ନିରସ ହେଉନା କାହିଁକି ରସତାତ୍ପର୍ଯ୍ୟ ବିଶିଷ୍ଟ କବିଙ୍କ ସ୍ପର୍ଶ ମାତ୍ରକେ ତାହା ସରସ, ଆହ୍ଲାଦକର ଓ ଆକର୍ଷକ ପାଲଟିଯାଏ । ସବୁଠୁ ମହତ୍ତ୍ୱପୂର୍ଣ୍ଣ କଥା ହେଉଛି - ଶିବଲୀଳାର୍ଣ୍ଣବ ଗ୍ରନ୍ଥରେ ଈଶ୍ୱରଙ୍କ ସ୍ତୁତି ଉଦ୍ଦେଶ୍ୟରେ ରଚିତ ଏକ ପଙ୍‌କ୍ତିରେ ତାଙ୍କୁ କବି ସମ୍ବୋଧନ କରାଯାଇଛି ।

ଆଲୋଚ୍ୟ ପ୍ରବନ୍ଧରେ କ୍ଷେତ୍ରବାସୀ ଆଲୋଚନା ପ୍ରସଙ୍ଗରେ କେତେକ ଖଣ୍ଡିତ ମତାମତ ରଖିଯାଇଛନ୍ତି ଯାହା ଏକ ଏକ ଉଦ୍ଧୃତିଯୋଗ୍ୟ ସିଦ୍ଧାନ୍ତ । ଆବେଗପ୍ରବଣ ଭାବେ ପ୍ରାବନ୍ଧିକ ସେଭଳି ମନ୍ତବ୍ୟସବୁ ଅତ୍ରତତ୍ର ବିଚ୍ଛୁରଣ କରି ଦେଇଛନ୍ତି । କେତୋଟି ଉଦାହରଣ ନିଆଯାଇପାରେ । 'କାବ୍ୟ ହେଉଛି କବି ଚିତ୍ତର ରସମୟ ଅଭିବ୍ୟକ୍ତି', 'ମାନସ ଜୀବନ ଓ ବିଶ୍ୱପ୍ରକୃତି ସହ କବିର ନିବିଡ଼ ସମ୍ବନ୍ଧରୁ ଉପଲବ୍ଧ ଅନୁଭବର ନିର୍ମଳ ପ୍ରକାଶ ହେଉଛି କାବ୍ୟ' - 'କାବ୍ୟ ଉତ୍ପତ୍ତିର ପ୍ରଧାନ କାରଣ ହେଉଛି ସମାଧି ବା ଏକାଗ୍ରତା' ପ୍ରଧାନ

---

* ରସଗୋଷ୍ଠୀଭୁକ୍ତ ଜନୈକ ଆଳଙ୍କାରିକ । ସେ ଭରତଙ୍କ 'ନାଟ୍ୟଶାସ୍ତ୍ର'ର ନାଟ୍ୟ ଓ ନୃତ୍ତ ଉପରେ ଟୀକା ଲେଖିଛନ୍ତି - ସମ୍ପାଦକ ।

ପ୍ରତିଭା ଓ ବ୍ୟୁତ୍ପତ୍ତି ଦ୍ୱାରା କବିତ୍ୱ ଶକ୍ତିର ଉନ୍ମେଷ ଘଟିଥାଏ', 'କବିତ୍ୱ ଶକ୍ତିର ଅନ୍ୟତମ ମୌଳିକ ସହଚର ହେଉଛି ପ୍ରେରଣା', 'କେବଳ ପ୍ରେରଣାର ନିର୍ଝର କାବ୍ୟ-କବିତାର ଫସଲକୁ ପରିପକ୍ୱ ଅବସ୍ଥା ଦେଇନଥାଏ', କବି ପ୍ରେରଣାଠାରେ ନିର୍ଭରଶୀଳ ସତ କିନ୍ତୁ ସେ ପ୍ରେରଣାକୁ ଜ୍ଞାନ ଓ ବୁଦ୍ଧି ଦ୍ୱାରା ପରିମାର୍ଜିତ କଲେ ହିଁ ତାହା ରସୋତ୍ତୀର୍ଣ୍ଣ ଶିଳ୍ପର ସ୍ଥାନ ଲାଭ କରେ', 'ପ୍ରେରଣା କବିତ୍ୱର ଏକ ସ୍ୱୟଂ ସଂପୂର୍ଣ୍ଣ କିମ୍ବା ସ୍ୱତନ୍ତ୍ର ଶକ୍ତି ନୁହେଁ । କଳ୍ପନା ଯେପରି କବିର ସ୍ୱକୀୟ ଶକ୍ତି, 'ପ୍ରେରଣାକୁ ସେଇ ନିକିତିରେ ବିଚାର କରିହେବ ନାହିଁ', 'ଦ୍ୱନ୍ଦ୍ୱ ଓ ବୈଚିତ୍ର୍ୟ ଭିତରେ ଶୃଙ୍ଖଳା ଓ ସାମାଜିକ ବିଧାନ ହେଉଛି କବିସତ୍ତାର ବୈଶିଷ୍ଟ୍ୟ', 'କାବ୍ୟପ୍ରକାଶରେ ଜୀବନ ନିର୍ଭରତା ବା ଜୀବନ ପ୍ରତି ଆନୁଗତ୍ୟ ଶେଷ ନାହିଁ । ଜୀବନ ହିଁ ତ କାବ୍ୟର ପ୍ରଧାନ ଉପଜୀବ୍ୟ' - ଏମିତି ଅନେକ ।

ପ୍ରବନ୍ଧର ବିପୁଳ ପରିସର ମଧ୍ୟରେ 'କାବ୍ୟସତ୍ୟ ଓ ଜୀବନସତ୍ୟ' ଏବଂ 'ଲୌକିକ ଦୁଃଖ ଓ କାବ୍ୟିକ ଆନନ୍ଦ' ପ୍ରସଙ୍ଗ ଦୁଇଟି ଯଥାଯଥ ବିଶ୍ଳେଷିତ । କାବ୍ୟସତ୍ୟ ଓ ଜୀବନ ସତ୍ୟ ପ୍ରସଙ୍ଗରେ ସେ ନିଜସ୍ୱ ମନ୍ତବ୍ୟଟିଏ ଗଠନ କରିବାକୁ ଚେଷ୍ଟା କରିଛନ୍ତି - "ବାସ୍ତବ ଜୀବନ ସତ୍ୟକୁ ଏଠି କଳା ବା କାବ୍ୟଶକ୍ତି ବଳରେ ପୁନର୍ଗଠିତ କରି ମୂର୍ତ୍ତିମାନ କରାଯାଏ । ସତ୍ୟର ସକଳ ବାସ୍ତବ ସମ୍ଭାବନାକୁ ଘେନି ତାହା ହୁଏ ଜୀବନ ସତ୍ୟର ପ୍ରତିରୂପ ବା କାବ୍ୟସତ୍ୟ ।"

କାବ୍ୟ ପ୍ରୟୋଜନ ପ୍ରସଙ୍ଗରେ ମଧ୍ୟ ବିଚାରକ କ୍ଷେତ୍ରବାସୀ ନୀତିବା । ବିଚାର, ଆନନ୍ଦବାଦୀ ବିଚାର, ସୌନ୍ଦର୍ଯ୍ୟବାଦୀ ବିଚାର ଦୃଷ୍ଟିକୋଣରୁ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରିଛନ୍ତି । ତାହା ତାଙ୍କର ଅଧ୍ୟୟନ ପରିସରର ବ୍ୟାପକତା ଦର୍ଶାଏ ।

ଏକ ସ୍ୱତନ୍ତ୍ର ଉପଶିରୋନାମାଧୀନ ହୋଇ ଏହି ଦୀର୍ଘ ପ୍ରବନ୍ଧଟିର ନିଷ୍କର୍ଷ ବା ଉପସଂହାର ପୂର୍ବ ପ୍ରସଙ୍ଗ ସହିତ ଯୁକ୍ତ ହୋଇ ରହି ଅପୂର୍ଣ୍ଣତାର ଭ୍ରମ ସୃଷ୍ଟି କରୁଥିଲେ ମଧ୍ୟ ଏହି ଦୀର୍ଘ ପ୍ରବନ୍ଧରେ ଡଃ ନାୟକ ଯାହା କରିଛନ୍ତି ତାହା ପ୍ରଚଳିତ ସାହିତ୍ୟତତ୍ତ୍ୱର ଓଡ଼ିଆ ରୂପ ନୁହେଁ, ସ୍ୱଲିଖିତ ସାହିତ୍ୟତତ୍ତ୍ୱ ବିଷୟକ ଏକ ଚର୍ଚ୍ଚା ନିବନ୍ଧ । ଶିରୋନାମାକୁ ବିରୋଧ କରୁଥିବା ସତ୍ତ୍ୱେ ଏହା କ୍ଷେତ୍ରବାସୀଙ୍କ ଏକ ସାର୍ଥକ ସାହିତ୍ୟ ବିଦ୍ୟାକର୍ମ ।

ରସ ପ୍ରସଙ୍ଗ ଅଧ୍ୟାୟରେ କାବ୍ୟ ଓ ରସର ସଂପର୍କ, ରସର ପରିଚୟ, ରସ ଅଭିବ୍ୟକ୍ତି, ରସାଭିବ୍ୟକ୍ତିର ବିଶ୍ଳେଷଣ, ବିଭବ- ଅନୁଭାବ- ବ୍ୟଭିଚାରୀ ଭାବର ବ୍ୟାଖ୍ୟା, ରସସ୍ୱରୂପର ବ୍ୟାପକତା, ରସଭେଦର ଏକ ସାରଣୀ, ଶୃଙ୍ଗାରାଦି ନବରସର ସୋଦାହରଣ ବ୍ୟାଖ୍ୟା ଓ ଉପସଂହାର କ୍ରମରେ ଆଲୋଚନା କରାଯାଇଛି । ଏହି ରଚନାରେ ପ୍ରାବନ୍ଧିକଙ୍କ ସରଳ ଉପସ୍ଥାପନ ଓ ଶ୍ରେଣୀକକ୍ଷରେ ଅଧ୍ୟାପନସୁଲଭ ଅବତାରଣା ଲକ୍ଷ୍ୟ କରିହୁଏ ।

ରସବାଦର ପ୍ରବକ୍ତା, ପ୍ରକାର୍ତ୍ତକ ଓ ପ୍ରତିଷ୍ଠାଦାତା ସମସ୍ତଙ୍କୁ ନ୍ୟାୟୋଚିତ ମର୍ଯ୍ୟାଦା ଦେବାରେ ଏହି ରଚନା ଏକ ସ୍ୱତନ୍ତ୍ର ଉଦ୍ୟମ ।

ସେହିଭଳି ରୀତି ପ୍ରସଙ୍ଗରେ ରୀତିର ଉପୋଦ୍‌ଘାତ କ୍ରମରେ ଡଃ ନାୟକଙ୍କ ବ୍ୟାଖ୍ୟାନ ମୌଳିକ । ସେ ଲେଖିଛନ୍ତି - "ବିଶ୍ୱର ପ୍ରତ୍ୟେକ ବସ୍ତୁ ପରସ୍ପରଠାରୁ ପୃଥକ । ଗୋଟିଏ ସୃଷ୍ଟି କିନ୍ତୁ କୋଟିଏ ଦୃଷ୍ଟି । ହୁଏତ ବିଶ୍ୱର ସମଗ୍ର ମାନବ ସମାଜ ଏକ ହୋଇପାରେ ମାତ୍ର ବ୍ୟକ୍ତି ହିସାବରେ ପ୍ରତ୍ୟେକଙ୍କର ସ୍ୱାତନ୍ତ୍ର୍ୟ ସୁରକ୍ଷିତ । ଏହି ସ୍ୱତନ୍ତ୍ର ବିଶେଷଣ ହେତୁ ଜଣେ ଅନ୍ୟର ସତ୍ତା ମଧ୍ୟରେ ଲୁଚି ରହିପାରେନା । ସୁତରାଂ ସଂସାରର ପ୍ରତ୍ୟେକ ବ୍ୟକ୍ତି ଏକ ପ୍ରକାରର କାର୍ଯ୍ୟ କରନ୍ତି ନାହିଁ କିମ୍ବା ଏକ ପ୍ରକାର କଥା କହନ୍ତି ନାହିଁ । ଏଇ ଭିନ୍ନତା ହେତୁ ସେମାନେ ସହଜରେ ଚିହ୍ନି ହୁଅନ୍ତି । ଉଦାହରଣ ସ୍ୱରୂପ ଆମେ ଯେତେବେଳେ କୌଣସି କଥାରେ କିମ୍ବା ଭାଷାରେ ଗାଉଁଲି ଶବ୍ଦବହୁଳ ସରଳତାର ଇଙ୍ଗିତ ପାଉ ତାକୁ କହୁ ଫକୀରମୋହନୀୟ କିମ୍ବା ଯେତେବେଳେ ସଂସ୍କୃତ ସଚେତନ ଆଳଙ୍କାରିକ ପଦବିନ୍ୟାସର ପରିଚୟ ପାଉ ସେଠି କହୁଁ ଭଞ୍ଜୀୟ । ପୁଣି ଯେତେବେଳେ ସରଳ ମଧୁର ଭାଷାର ସୂଚନା ପାଉଁ ତାକୁ କହୁ ରାଧାନାଥୀ । ତେଣୁ କବି ଭିନ୍ନ; ତାର କବିତା ଭିନ୍ନ, ମଣିଷ ଭିନ୍ନ, ମଣିଷର ଭାଷା ବି ଭିନ୍ନ । ସୁତରାଂ ଜଣକର କଥନଭଙ୍ଗୀ ଅନ୍ୟର କଥନଭଙ୍ଗୀଠାରୁ ସଂପୂର୍ଣ୍ଣ ପୃଥକ । ସାଧାରଣରେ ଏଇ କଥନ ଭଙ୍ଗୀର ସାହିତ୍ୟିକ ନାମ ହିଁ ରୀତି ।" ପ୍ରବନ୍ଧରେ ରୀତିର ସଂଜ୍ଞା, ସ୍ୱରୂପ ଓ ରୀତିବାଦି ଆଳଙ୍କାରିକମାନଙ୍କ ମତାମତର ବିସ୍ତୃତ ଚର୍ଚ୍ଚା କରାଯାଇଛି । ରୀତିର ପ୍ରକାରଭେଦ କ୍ରମରେ ବୈଦର୍ଭୀ, ଗୌଡ଼ୀ, ପାଞ୍ଚାଳୀ ଓ ଲାଟିୟା ପ୍ରଭୃତିର ବିଶେଷ ବୋଧତା ସେ ଓଡ଼ିଆ କାବ୍ୟ କବିତାର ଉଦାହରଣ ଜରିଆରେ ସୃଷ୍ଟି କରିଛନ୍ତି । ଏହା ସଂକ୍ଷେପରେ ରୀତିବାଦର ଉତ୍ତମ ଚର୍ଚ୍ଚା ।

'ଗୁଣ ପ୍ରସଙ୍ଗ'ରେ ନିଷ୍କର୍ଷ ସ୍ୱରୂପ ପ୍ରାବନ୍ଧିକ ମୌଳିକ ମତ ଦେଇନାହାନ୍ତି ତଥାପି ତାଙ୍କ ସ୍ୱର ମୌଳିକ - 'ଗୁଣର ବଳିଷ୍ଠତାରେ ମାନବର ଚାରିତ୍ରିକ ଉତ୍କର୍ଷ ପ୍ରତିପାଦିତ ହେଲାଭଳି କାବ୍ୟ ଗୁଣର ସ୍ୱାଭାବିକତାରେ କାବ୍ୟ ବୈଶିଷ୍ଟ୍ୟ ମଣ୍ଡିତ ହୁଏ ।' 'ଧ୍ୱନି ପ୍ରସଙ୍ଗ'ର ଉପସଂହାରରେ ପ୍ରାବନ୍ଧିକ ଲେଖିଛନ୍ତି - "ଏତିକି ସ୍ପଷ୍ଟ ପ୍ରତୀୟମାନ ହେଲା ଯେ; ଅଭିବ୍ୟକ୍ତିରୁ ବ୍ୟଞ୍ଜନାତ୍ମକ ଶବ୍ଦ-ବିମ୍ବ, ଶବ୍ଦ-ବିମ୍ବରୁ ବିବିଧ ଭାବଛତ୍ରର ଉନ୍ମୋଚନ ଏବଂ ସଂପ୍ରସାରିତ ଭାବଛତ୍ରରୁ ସହୃଦୟ ଶ୍ଳାଘ୍ୟ ଚିତ୍ତାବସ୍ଥା ଜାତ ହୋଇଥାଏ । ଏଇ ଅବସ୍ଥା ହିଁ କାବ୍ୟଭୋଗର ପରମ ଅବସ୍ଥା ।" ବକ୍ରୋକ୍ତି ଓ ଔଚିତ୍ୟ ପ୍ରସଙ୍ଗ ମଧ୍ୟ କ୍ଷେତ୍ରବାସୀଙ୍କ ସ୍ୱୀୟ ଉପସ୍ଥାପନ ଶୈଳୀରେ ସଂକ୍ଷେପରେ ଅଧିକ ଭାବପ୍ରସାରୀ । ଡଃ ନାୟକ ଔଚିତ୍ୟରେ କାବ୍ୟାତ୍ମା ହେବାର ଯୋଗ୍ୟତା ଇଙ୍ଗିତ କରିଛନ୍ତି - "ଔଚିତ୍ୟ ରସକୁ

ପୁଷ୍ଟ କରିଛି, ଧ୍ୱନି ସଂଗତି ରକ୍ଷା କରୁଛି ତେଣୁ ଏହା କାବ୍ୟର ଜୀବନ ନହେବ ନାହିଁକି ?" ମନ୍ତବ୍ୟଟି ନିର୍ଦ୍ଧାରଣମୂଳକ ନୁହେଁ ।

ମୋଟ ଉପରେ ସାହିତ୍ୟ ବିଚାରର ବିଭିନ୍ନ ସଂପ୍ରଦାୟର ଦର୍ଶନ କ୍ଷେତ୍ରବାସୀଙ୍କ ଦ୍ୱାରା ମୌଳିକଭାବେ ବିଶ୍ଳେଷିତ ଏବଂ ଉଦାହରଣଗୁଡ଼ିକ ଓଡ଼ିଆ ସାହିତ୍ୟରୁ ଚୟନିତ ହୋଇଥିବା ଦୃଷ୍ଟିରୁ ତାହା ତାଙ୍କର ପ୍ରାଞ୍ଜଳ ଅବବୋଧର ପ୍ରମାଣ ମଧ୍ୟ । 'ଭାରତୀୟ କାବ୍ୟତତ୍ତ୍ୱ' ଗ୍ରନ୍ଥ ଭାରତରେ ଉଦ୍ଭୂତ ସାହିତ୍ୟତତ୍ତ୍ୱ ଗୁଡ଼ିକର ସଂକ୍ଷେପାଲୋଚନା ସତ୍ତ୍ୱେ ସାରଵତ୍ତାମଣ୍ଡିତ ।

କାଳଭେଦରେ କେବଳ ମୀମାଂସାର ଯେ ପରିବର୍ତ୍ତନ ହୁଏ ତାହା ନୁହେଁ, ପ୍ରଶ୍ନ ବି ବଦଳିଯାଏ । ପ୍ରଶ୍ନ ବା ଜିଜ୍ଞାସାର ପରିବର୍ତ୍ତନ ହେଲେ ମୀମାଂସା ସାମୟିକ ଭାବେ ଗୁରୁତ୍ୱ ହରାଏ ମାତ୍ର ନିରର୍ଥ ପାଲଟିଯାଏ ନାହିଁ । ସେହି ଦୃଷ୍ଟିରୁ ଭାରତୀୟ କାବ୍ୟତତ୍ତ୍ୱ ପ୍ରତି କ୍ଷେତ୍ରବାସୀ କୌଣସି ନୂତନ ପ୍ରଶ୍ନ ବା ଜିଜ୍ଞାସାର ନିକଷ ପ୍ରୟୋଗ କରିନାହାନ୍ତି । ଏଣୁ ତାଙ୍କ ଗ୍ରନ୍ଥରୁ କାବ୍ୟତତ୍ତ୍ୱର ନୂତନ ସିଦ୍ଧାନ୍ତ ବା ପ୍ରତିଷ୍ଠିତ ତତ୍ତ୍ୱର ନିର୍ବାସନ ଉଦ୍ୟମ ଆଶା କରାଯାଏ ନାହିଁ । ସେ ଭାରତୀୟ କାବ୍ୟ ମୀମାଂସା ସୂତ୍ରର ୫ଟି ପ୍ରମୁଖ ସୂତ୍ରର ସଂସ୍କୃତ ସର୍ବସ୍ୱତାଫେଡ଼ି ଓଡ଼ିଆ ତତ୍ତ୍ୱଜିଜ୍ଞାସୁ ଓ ସାହିତ୍ୟ ବିଦ୍ୟାଗ୍ରହୀ ତଥା ସାହିତ୍ୟ ଗ୍ରହୀମାନଙ୍କ ନିମିତ୍ତ ଓଡ଼ିଆ କାବ୍ୟ କବିତା ଉଦାହରଣ ସମୃଦ୍ଧ ଏହି ଓଡ଼ିଆ ଗ୍ରନ୍ଥଟି ପ୍ରସ୍ତୁତ କରିଛନ୍ତି । ସ୍ୱୟଂ ନୂତନ ବିଚାର ଦେଇ ନାହାନ୍ତି, ମାତ୍ର ବିଚାରଗୁଡ଼ିକ ପ୍ରତି ମୌଳିକ ବ୍ୟାଖ୍ୟାନ ଆରୋପ କରିପାରିଛନ୍ତି । ଏହା ଅନୁବାଦ ନୁହେଁ, ଅନୁସର୍ଜନ ହୋଇପାରେ । ଟୀକାଗ୍ରନ୍ଥ ନୁହେଁ, ବିଚାର ବୀକ୍ଷିତ ବିଦ୍ୟାଗ୍ରନ୍ଥ । କ୍ଷେତ୍ରବାସୀ ଭାରତୀୟ କାବ୍ୟତତ୍ତ୍ୱର ଜଟିଳ ପରମ୍ପରାଶ୍ରୟୀ, ପରସ୍ପର ବିରୋଧୀ ମତାମତ ସକଳଙ୍କୁ ଆପଣାର ବିଚାରରେ ଜାରିତ କରି ସଂପୃକ୍ତ ବିଷୟଗୁଡ଼ିକ ପ୍ରତି ସ୍ୱୀୟ ଅବବୋଧର ସଂକ୍ଷିପ୍ତ ପ୍ରକାଶନ କରିଛନ୍ତି । ଏଣୁ ସେ ସାହସ ମଧ୍ୟ କରିଛନ୍ତି କାବ୍ୟମୀମାଂସାଗୁଡ଼ିକ ମଧ୍ୟରୁ କେଉଁଟି ନିର୍ଭରଯୋଗ୍ୟ, କେଉଁଟି ସାରବାନ, କେଉଁଟି ଯୁକ୍ତିଯୁକ୍ତ ଏଭଳି ମନ୍ତବ୍ୟ ପ୍ରଦାନ କରିବାକୁ । ତାଙ୍କ ଅଧ୍ୟୟନ ପ୍ରଚୁର, ଅନୁଶୀଳନ ବ୍ୟାପକ; ମାତ୍ର ସେଗୁଡ଼ିକୁ ସଂକ୍ଷିପ୍ତ ପରିସରରେ କହିବାକୁ ଯାଇ ସେ ଯେଉଁ ନିର୍ବାଚନ ପ୍ରତ୍ୟାଖ୍ୟାନ-ପରିଗ୍ରହଣର ଦ୍ୱନ୍ଦ୍ୱ ଭୋଗି ସୁଦ୍ଧା ପ୍ରସ୍ତୁତ ଗ୍ରନ୍ଥଟିକୁ ସର୍ବଜନଭୋଜ୍ୟ କରିବାକୁ ପ୍ରୟାସ ବରଣ କରିଛନ୍ତି ତାହା ଆଲୋଚିତ ଗ୍ରନ୍ଥକୁ ବିଶେଷତ୍ୱମଣ୍ଡିତ କରାଏ ।

ସାହିତ୍ୟତତ୍ତ୍ୱ ସଂପର୍କରେ ମୌଳିକ ଚିନ୍ତକ, ମୌଳିକ ସଂଜ୍ଞା ପ୍ରଦାୟକ, ପୂର୍ବ ବିଚାରର ମୀମାଂସକ, ଅନୁସାରି, ସମର୍ଥକ, ସଂଶୋଧକ, ଟୀକାକାର, ଟୀକାଗ୍ରନ୍ଥର

ଟୀକାକାର, ବିଚାରର ସଂଶ୍ଲେଷକ, ନୂତନ ବିଚାର ପ୍ରଦାୟକ ଓ ବିଚାରଗ୍ରନ୍ଥଗୁଡ଼ିକର ମୌଳିକ ବିଚାର କରୁଥିବା ସମସ୍ତ ବର୍ଗର ପ୍ରତିଭାଙ୍କୁ ଆଳଙ୍କାରିକ, କାବ୍ୟତତ୍ତ୍ୱବେତ୍ତା, ସାହିତ୍ୟଶାସ୍ତ୍ର, ମୀମାଂସକ ଓ ସାହିତ୍ୟ ବିଦ୍ୟାବିତ୍ ଭାବରେ ସମ୍ମାନିତ କରାଯାଏ । ଆଲୋଚିତ ଗ୍ରନ୍ଥ ତିନୋଟିରେ କ୍ଷେତ୍ରବାସୀ ଆପଣାର ଧୀ ଓ ଏଷଣାର ଯେଉଁଳି ପ୍ରୟୋଗ କରିଛନ୍ତି, ବିଚାର ଓ ବିଶ୍ଳେଷଣର ମୌଳିକତା ପ୍ରକଟ କରିଛନ୍ତି ବୋଧଗମ୍ୟ କରାଇବା ପାଇଁ ଯେଉଁଳି ମଞ୍ଜୁଳ ଭାଷାରୀତି ଗ୍ରହଣ କରିଛନ୍ତି ସର୍ବୋପରି ପ୍ରସଙ୍ଗର ମର୍ମ୍ମଯାଏ ପାଠକର ମାର୍ଗଦର୍ଶକ ସହଯାତ୍ରୀ ଭଳି ବିଦ୍ୟମାନ ଅଛନ୍ତି, ତାଙ୍କୁ ଜଣେ ଆଧୁନିକ 'ସାହିତ୍ୟ ବିଦ୍ୟାବିତ୍' ବୋଲି ସମ୍ବୋଧନ କଲେ ଅତିଶୟୋକ୍ତି ହେବ ନାହିଁ ।



# ସାହିତ୍ୟ-ବିଦ୍ୟା : ଯାନ୍ତ୍ରିକ କ୍ଷେତ୍ରବାସୀ

ଶ୍ରୀ ଶୈଳେନ୍ଦ୍ର ମହାପାତ୍ର

ପାଶ୍ଚାତ୍ୟ ସମାଲୋଚକଗଣ ଭାରତୀୟଙ୍କ ବିଷୟରେ ଗୋଟିଏ କଥା କହିଥାନ୍ତି ଯେ ଭାରତୀୟମାନେ ଯାହାକୁ ପ୍ରଶଂସା କରିଥାନ୍ତି, ସେମାନଙ୍କୁ ଉଚ୍ଛ୍ୱସିତ ପ୍ରଶଂସା କରିଥାନ୍ତି ସୁନ୍ଦର ସୁନ୍ଦର ବିଶ୍ଳେଷଣ ପ୍ରୟୋଗ କରି ଏବଂ ଯାହାକୁ ନିନ୍ଦା କରି ବସନ୍ତି, ତାଙ୍କୁ ଉଚ୍ଛ୍ୱସିତ ନିନ୍ଦା କରିଥାନ୍ତି ସେହିପରି ବିଶ୍ଳେଷଣ ଯୋଡ଼ି । ସୁତରାଂ, ମୋର ଭୟ ମୁଁ ଯେତେବେଳେ କ୍ଷେତ୍ରବାସୀଙ୍କର ସାହିତ୍ୟକୃତି ଆଲୋଚନା କରିବାକୁ ଯାଉଛି, ପାଶ୍ଚାତ୍ୟ ସମାଲୋଚକଙ୍କର ଆମ ଜାତିର ସେଇ ତଥାକଥିତ ତ୍ରୁଟି-ଗହ୍ୱରରେ ନିକ୍ଷେପିତ ହେଉନିତ ? ଆଉ ଏକ ଭୟ- କ୍ଷେତ୍ରବାସୀ ମୋର ଅତି ପରିଚିତ, ସମସାମୟିକ, ନିକଟତର । ପରିଚିତି ଓ ସମସାମୟିକତା ନିରପେକ୍ଷତା ଓ ବସ୍ତୁ-ନିଷ୍ଠତା ରଖି ପାରେନା ବୋଲି କେତେକ ସମାଲୋଚକ ମତ ଦେଇଥାନ୍ତି । ଏ ଦୁଇ ମତକୁ ଆଖିରେ ରଖି, ଯଦି ସତ୍ୟକୁ ସତ ବୋଲି କୁହାଯାଏ, ତେବେ ସେଥିରେ ବାଧା କେଉଁଠି ଅଛି ?

ପ୍ରସିଦ୍ଧ ଇଂରାଜୀ ରୋମାଣ୍ଟିକ୍ କବି କିଟ୍‌ସଙ୍କ ଜୀବନୀ ଓ କାବ୍ୟକୃତି ଚର୍ଚ୍ଚା କରିବାକୁ ଯାଇ ତାଙ୍କର ଏକ ଖ୍ୟାତନାମା ସମାଲୋଚକ କହିଛନ୍ତି ଯେ କିଟ୍‌ସ ଯଦି ଅଧିକ ଦିନ ବଞ୍ଚିଥାନ୍ତେ, (କିଟ୍‌ସ ମାତ୍ର ଛବିଶ ବର୍ଷ ବଞ୍ଚିଥିଲେ), ତେବେ ସେ ସେକ୍‌ସପିୟରଙ୍କୁ ଅତିକ୍ରମ କରିଯାଇଥାନ୍ତେ । ଯଦିଓ ସେ ସେକ୍‌ସପିୟରଙ୍କୁ ଟପିଯାଇ ନାହାନ୍ତି, ତେବେ ଅନ୍ତତଃ ତାଙ୍କୁ ସେଇ ଅମର ନାଟ୍ୟକାରଙ୍କ ସହିତ ତୁଳନା କରାଯାଇପାରେ ଓ କୁହାଯାଇ ପାରେ ସେ ସେକ୍‌ସପିୟରଙ୍କ ସହ ସମକକ୍ଷ ।

ଏ ମତ ହୋଇଯାଇଛି ସାହିତ୍ୟ ଇତିହାସରେ ଏକ ବହୁବିତର୍କିତ ବିଷୟ ।

ଯଦି ସେଇ ଯୁକ୍ତି ଅବଲମ୍ୱନ କରି କୁହାଯାଏ ଯେ, କ୍ଷେତ୍ରବାସୀ ଯଦି ଅଧିକ ଦିନ ବଞ୍ଚିଥାନ୍ତେ (କ୍ଷେତ୍ରବାସୀ ନାୟକ ମାତ୍ର ବଞ୍ଚିଥିଲେ ୪୬ ବର୍ଷ) ତେବେ, ତାଙ୍କ ପୂର୍ବସୁରୀ ଗବେଷକ ଓ ସମାଲୋଚକଙ୍କୁ ଅତିକ୍ରମ କରିଯାଇଥାନ୍ତେ । ହୁଏତ କେହି ଏହାକୁ ଗ୍ରହଣ କରି ନପାରନ୍ତି; କିନ୍ତୁ ଏତିକି କୁହାଯାଇପାରେ ଯେ ଭଗ୍ନ ବୃକ୍ଷଟି ଆହୁରି ବହୁ ସମ୍ଭାବନାରେ ପୂର୍ଣ୍ଣ ଥିଲା ଏବଂ ପତିତ ବୃକ୍ଷଟି ଯେତିକି ଛାଡ଼ିଯାଇଛି, ସେତିକି ପ୍ରତିଷ୍ଠା କରିଯାଇଛି ତାଙ୍କୁ ଜଣେ ସଫଳ ସାଧକ, ଗବେଷକ, ସମାଲୋଚକ ଓ ପ୍ରାବନ୍ଧିକ ଭାବେ ।

କ୍ଷେତ୍ରବାସୀ ନାୟକ ଥିଲେ ଜଣେ ସାଧକ, ଜଣେ କଳାକାର । ତାଙ୍କ ସର୍ଜ୍ଜନାର ଉତ୍ସ ଥିଲା ତାଙ୍କର ପ୍ରଚଣ୍ଡ ଜିଜ୍ଞାସାର ଉତ୍ପୀଡ଼ନ । ଆଉ ଥିଲା ତାଙ୍କ ପ୍ରଣୟ । ଜାୟା ଶ୍ରୀ

ଯୁଗଳ କିଶୋର ପଟ୍ଟନାୟକ, ଶ୍ରୀ ରତ୍ନାକର ବାରିକଙ୍କ ପରି ଶତ ଶତ ଶ୍ରଦ୍ଧାଳୁ ବନ୍ଧୁ ଓ ଛାତ୍ର ଓ ଡଃ କୃଷ୍ଣଚରଣ ବେହେରାଙ୍କ ପରି ଦିଗ୍‌ଦର୍ଶୀ ସାହିତ୍ୟିକ, ଅଧ୍ୟାପକବୃନ୍ଦ । ବହୁ ବିଭାରେ ବିଭୂଷିତ ଏ ପ୍ରତିଭାର ଗୋଟିଏ ବିଭା-ଗବେଷଣା-ସମାଲୋଚନା ସାହିତ୍ୟ ।

ସାହିତ୍ୟ-ସମାଲୋଚନାର ପାରମ୍ପରିକ ଶୈଳୀ ଯଥାସମ୍ଭବ ପରିହାର କରି ଆଧୁନିକ ଅନ୍ତର୍ଦୃଷ୍ଟି ବିନିଯୋଗରେ ସାହିତ୍ୟ, କବିତା ସମାଲୋଚନା ସମୀକ୍ଷା କରିବାରେ ସେ ଥିଲେ ସତତ ଚେଷ୍ଟିତ । ପ୍ରାଚୀନ କବି ଅର୍ଜୁନ ଦାସଙ୍କୁ ନୂତନ ନିରୀକ୍ଷା କରିବାରେ ପ୍ରଚେଷ୍ଟା ତାଙ୍କର ରଚିତ 'କବି ଅର୍ଜୁନ ଦାସ' । ଆଖ୍ୟାୟିକା କାବ୍ୟ ସୃଷ୍ଟିର ଆଦ୍ୟ ପ୍ରବର୍ତ୍ତକ ଅର୍ଜୁନ ଦାସଙ୍କୁ ସେ ନୂତନ ଭାବେ ଅଧ୍ୟୟନ କରିବାକୁ ଚେଷ୍ଟା କରିଛନ୍ତି । କବିର ଅନ୍ତର୍ବିଶ୍ୱାସ, ଉଚ୍ଚାରଣର ନାନ୍ଦନିକ ଧର୍ମ, କାବ୍ୟସହ କବି ଆତ୍ମାର ସମ୍ପର୍କ, ଆହରଣ ଓ ଅଭିବ୍ୟକ୍ତି କ୍ଷେତ୍ରରେ ସମକାଳୀନ କାବ୍ୟ-ଶିଳ୍ପ ଓ ସଂସର୍ଗର କଷଟିରେ କବି-କୃତିର ଅନନ୍ୟତା ଅନୁସନ୍ଧାନ ଇତ୍ୟାଦି ଆଲୋଚନାର ପରିସରରେ ମୁଖ୍ୟସ୍ଥାନ ଗ୍ରହଣ କରିଛି ।

ଉତ୍କୃଷ୍ଟ ସମୀକ୍ଷଣ - ଚେତନା ସୃଷ୍ଟି ଦିଗରେ କ୍ଷେତ୍ରବାସୀ ଚେଷ୍ଟାରତ ଥିଲେ । ବ୍ରହ୍ମପୁରର ସମୀକ୍ଷା ସଂସଦ ଆନୁକୂଲ୍ୟରେ ଉଣେଇଶ ଶହ ସତୁରି ଦଶକରେ ଗଠିତ ହୋଇଥିବା Critic Work-shop ର କାର୍ଯ୍ୟସୂଚୀ ଅନୁଯାୟୀ ସେ ରଚନା କରିଥିଲେ କେତୋଟି ମନୋଗ୍ରାମ । କବି ନୀଳକଣ୍ଠ ଏପରି ଏକ ଗ୍ରନ୍ଥ । ପ୍ରଜ୍ଞା ଓ ପ୍ରତିଭାର ଏକ ମୂର୍ତ୍ତିମାନ ପ୍ରତୀକ ସତ୍ୟବାଦୀ କବି-ଚିନ୍ତକ ଦେଶପ୍ରେମୀ କୁଳଙ୍କ ମଧ୍ୟରୁ ଜଣେ ରଥି କବି ନୀଳକଣ୍ଠଙ୍କୁ ସେ ପରିଚିତ କରାଇଥିଲେ ପାଠକ ଓ ଗବେଷକଙ୍କ ପାଖରେ ଏକ ନୂତନ ଦୃଷ୍ଟିକୋଣରୁ । ଏକ ବୃହତ୍ତର ତଥା ପୂର୍ଣ୍ଣାଙ୍ଗ ଅଧ୍ୟୟନ ପାଇଁ ପାଠକମାନେ ଯେପରି ପ୍ରାଥମିକ ଅସୁବିଧାର ସମ୍ମୁଖୀନ ନ ହୁଅନ୍ତି, ସେଥିପାଇଁ ନିଜ ଦୃଷ୍ଟିକୋଣରୁ ସେ ଏ ମନୋଗ୍ରାମ ସୃଷ୍ଟି କରିଥିଲେ ।

ସେଇ ଏକା ଦୃଷ୍ଟିକୋଣରୁ ଜାତ ତାଙ୍କର ଆଉ ଏକ ମନୋଗ୍ରାମ - ନାରୀକବି ଅନ୍ନପୂର୍ଣ୍ଣା । ନାରୀକବି ଅନ୍ନପୂର୍ଣ୍ଣାଙ୍କ ପରି ବହୁ ପ୍ରତିଭା ରହିଯାଇଛନ୍ତି ଅନାଲୋଚିତ, ଅଜ୍ଞାତ । ଅବହେଳିତ ଅନାଲୋଚିତ କବିପ୍ରତିଭା ପୁଣି ଆସିଥାନ୍ତି ଲୋକଲୋଚନକୁ ଯେତେବେଳେ ଜଣେ ଅନୁସନ୍ଧିତ୍ସୁ ସମାଲୋଚକ ଆବିଷ୍କାର କରନ୍ତି ତାଙ୍କ ସାହିତ୍ୟ କୃତିର ମୁକ୍ତାସବୁକୁ । ଯେପରି ଇଂରାଜୀ ସାହିତ୍ୟରେ ଇଲିଅଟ୍ ପୂନର୍ବାସନ୍ଦ କରାଇଲେ ସପ୍ତଦଶ ଶତାବ୍ଦୀ ମେଟାଫିଜିକାଲ୍ କବିକୂଳଙ୍କୁ ତିନିଶହ ବର୍ଷ ପରେ । କ୍ଷେତ୍ରବାସୀ ସେଇପରି ଏକ ଅନାଲୋଚିତ କବିକୂଳଙ୍କୁ ପାଠକମାନଙ୍କ ସମ୍ମୁଖକୁ ଆଣିବାକୁ ସମର୍ଥ ହୋଇଛନ୍ତି ଏକ ମନୋଗ୍ରାଫ୍‌ଟିରେ । କବିଙ୍କ ଜୀବନୀ ଅଧ୍ୟୟନ ସହ, ତାଙ୍କ କବିତ୍ୱ ସ୍ଫୂର୍ତ୍ତିର ଉତ୍ସ,

ସାରସ୍ୱତ ସହଯୋଗ ତଥା ମୌଳିକ ଦର୍ଶନ ଓ ମନନ ଇତ୍ୟାଦି ଏଥିରେ ଆଲୋଚନା କରିଛନ୍ତି । ଅନ୍ନପୂର୍ଣ୍ଣାଙ୍କୁ ଅଧ୍ୟୟନ କରିଛନ୍ତି ତୁଳନାତ୍ମକ ବିଶ୍ଳେଷଣ ରୀତିର ସାହାଯ୍ୟ ନେଇ ।

ସାହିତ୍ୟର ବିଭିନ୍ନ ବିଭାଗର ଚର୍ଚ୍ଚା ସେ କରିଯାଇଛନ୍ତି ଏକ ସାହିତ୍ୟ ସମାଲୋଚକର ତୀକ୍ଷ୍ଣ ଅନୁସନ୍ଧିତ୍ସୁଭାବ ନେଇ । "କେବଳ ସମାଲୋଚନା ପାଇଁ ସମାଲୋଚନା କରିବା" ତାଙ୍କର ଉଦ୍ଦେଶ୍ୟ ନଥିଲା । ତାଙ୍କର ସାମଗ୍ରିକ ସମାଲୋଚନା ସାହିତ୍ୟ ଅଧ୍ୟୟନ କଲେ ଗୋଟିଏ କଥା ଦୃଷ୍ଟିରେ ପଡ଼େ । ତାହା ହେଲା ଏକ ପ୍ରଚଣ୍ଡ ଅନୁଶୀଳନାତ୍ମକ ମନୋବୃତ୍ତିର ଐକାନ୍ତିକତା । ସମାଲୋଚନା ସାହିତ୍ୟକୁ ବ୍ୟକ୍ତିକୈନ୍ଦ୍ରିକ ସ୍ୱରରୁ ପୃଥକ ରଖି କିପରି ବିଷୟନିଷ୍ଠତା (Objectivity) ରକ୍ଷା କରାଯାଇପାରିବ, ସେଥିପାଇଁ ସେ ଚେଷ୍ଟା କରିଛନ୍ତି । "ବ୍ରତଚାରୀର ଆଖି ନିୟତ ଖୋଜୁଥାଏ ଅକ୍ଷର ମୂର୍ତ୍ତିଟିଏ, ତାହା ମିଳିଗଲେ ଭାବର ଦିଗ୍‌ବଳୟ କାହିଁ କୁଆଡ଼େ ଲମିଯାଏ । ଅକ୍ଷର ମୂର୍ତ୍ତିକୁ ସାଥୀକରି ଭାବର ସମୁଦ୍ରରେ ଅବଗାହନ କରେ ସାହିତ୍ୟବ୍ରତୀ ଯାଜ୍ଞିକ ।" "ଓଡ଼ିଆ କାବ୍ୟଧାରା ଓ ପାଶ୍ଚାତ୍ୟ କାବ୍ୟତତ୍ତ୍ୱ", "ମାଟିର ସାହିତ୍ୟ ଓ ଜାତିର ଦର୍ଶନ" ପ୍ରଭୃତି ତାଙ୍କର ସାତଗୋଟି ଉଚ୍ଚକୋଟୀର ପ୍ରବନ୍ଧ ସମ୍ଭାର ପୁସ୍ତକ ସାହିତ୍ୟ ଚର୍ଚ୍ଚା ନୂତନ ଦିଗ୍‌ଦର୍ଶନ ଦେଇଥାଏ ।

ଓଡ଼ିଆ ସାହିତ୍ୟ ଗବେଷଣାର ଯେଉଁ ପରମ୍ପରା ପ୍ରାଚୀ ସମିତି ପ୍ରତିଷ୍ଠା କରିଥିଲେ, ତାକୁ ପ୍ରଖରଭାବେ ଆମ ସମୟରେ କ୍ଷୀପ୍ରତର କରାଇବାରେ, ଡଃ କୃଷ୍ଣଚରଣ ବେହେରାଙ୍କ ପ୍ରଚେଷ୍ଟିତ ଏଷଣାର ଦାନ ସ୍ୱୀକାର୍ଯ୍ୟ । ଗବେଷକ କ୍ଷେତ୍ରବାସୀ ସାହିତ୍ୟ ଗବେଷଣାର ନୂତନ ମୋଡ଼ ଦେବାରେ ଯେଉଁ ଚେଷ୍ଟା କରିଥିଲେ,. ତା'ର ପ୍ରେରଣା ପାଇଥିଲେ ଡଃ କୃଷ୍ଣଚରଣ ବେହେରାଙ୍କଠାରୁ । ସାହିତ୍ୟକୁ ସମାଜତତ୍ତ୍ୱ, ନୃତତ୍ତ୍ୱ, ମନସ୍ତତ୍ତ୍ୱ, ଦର୍ଶନଶାସ୍ତ୍ର ଇତ୍ୟାଦି ଜ୍ଞାନବିଜ୍ଞାନର ବିବିଧ ପ୍ରକାଶ ସହିତ ସମନ୍ୱିତ କରି ସାହିତ୍ୟିକର ମନ ଓ ସାହିତ୍ୟର ସ୍ଥିତିକୁ ବିଶ୍ଳେଷଣ କରି ଗବେଷଣା ବୃତ୍ତିରେ ନୂତନ ଦୃଷ୍ଟିକୋଣ ସୃଷ୍ଟିକରିପାରିଥିଲେ । ସାହିତ୍ୟର ମୂଲ୍ୟବୋଧ, ତତ୍ତ୍ୱଦୃଷ୍ଟିରୁ ଏହାର ବିଚାର ଏବଂ ସାହିତ୍ୟ ବସ୍ତୁରୁ ଜୀବନର ମୂଲ୍ୟବୋଧ, ଅନ୍ୱେଷଣ - ଉଭୟକୁ ଚିହ୍ନାଇବାର ଉଦ୍ୟମ ତାଙ୍କର ପୁସ୍ତକ ସାହିତ୍ୟ ଚର୍ଚ୍ଚାରେ ପରିଲକ୍ଷିତ ।

ଚଉଦଟି ପ୍ରବନ୍ଧର ସନ୍ନିବେଶରେ ଏକ ସମାଲୋଚନା ଗ୍ରନ୍ଥ 'କବି ଓ କାମିନୀ' । ଗ୍ରନ୍ଥଟିର ଶିରୋନାମା ପ୍ରବନ୍ଧଗୁଡ଼ିକର ବିଷୟ ସମ୍ପର୍କରେ କିଛିଟା ସୂଚନା ଦେଇଥାଏ । କବି ମଧୁସୂଦନ, ବ୍ରଜନାଥ, ଗଙ୍ଗାଧର ପ୍ରଭୃତିଙ୍କ ସାରସ୍ୱତ ଜୀବନ ଏବଂ ପ୍ରଣୟ ଜୀବନ ଉପରେ ଆଧାରିତ କେତୋଟି ପ୍ରବନ୍ଧ ଏଥିରେ ସ୍ଥାନ ପାଇଛି । ପ୍ରଣୟ ଯେ କାବ୍ୟସୃଷ୍ଟିର ଉତ୍ସ, ବହୁ କବିଙ୍କ କୃତି ପର୍ଯ୍ୟାଲୋଚନା କଲେ ଏହା ଦୃଷ୍ଟିକୁ ଆସେ । ସଂକଳନର

ପ୍ରଥମ ପ୍ରବନ୍ଧ "କବି ଓ କାମିନୀ" ରେ ବିସ୍ତୃତଭାବେ ଏ ଦିଗଟି ଆଲୋଚିତ ହୋଇଛି ବିଶ୍ୱସାହିତ୍ୟର ଉଦାହରଣମାଳାର ପୃଷ୍ଠଭୂମିରେ ।

ସେହିପରି 'ଆଲୋଚନା ପତ୍ର' ଗ୍ରନ୍ଥଟି ପନ୍ଦରଟି ପ୍ରବନ୍ଧର ସଂକଳନ । କବିତା, ବିଭିନ୍ନ କବିଙ୍କ କୃତି, ଭାଷା ପ୍ରକୃତି ଉପରେ ଲିଖିତ ଏ ପ୍ରବନ୍ଧସବୁ ସ୍ୱାକ୍ଷର ବହନ କରିଛନ୍ତି ସମାଲୋଚକଙ୍କର ସେଇ ସନ୍ଧାନୀ ମନୋବୃତ୍ତିର । ଆମ ସାହିତ୍ୟର ଏଇ ଅବହେଳିତ ବିଭାଗ- ସମାଲୋଚନା ସାହିତ୍ୟ - କିପରି ଭାବେ ଋଦ୍ଧିମନ୍ତ କରାଯାଇପାରେ, ସେଇ ଚେଷ୍ଟାର ଏହା ଆଉ ଏକ ନିଦର୍ଶନ ।

"ସାହିତ୍ୟିକ, ବୀକ୍ଷା ଓ ନିରୀକ୍ଷା" ଏଗାରଟି ପ୍ରବନ୍ଧର ସନ୍ନିବେଶ । ସାହିତ୍ୟର ବିଭିନ୍ନ ବିଭାଗ ଓ କେତେଜଣ କବିଙ୍କ କୃତି ଉପରେ ଏ ସମାଲୋଚନା ପ୍ରବନ୍ଧସବୁ ଆଧାରିତ ।

ତାଙ୍କର ଗବେଷଣା- ପ୍ରବନ୍ଧ "ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ" ଯେତେ ପି.ଏଚ୍.ଡ଼ି. ଡିଗ୍ରୀ ପାଇଁ ଉଦ୍ଦିଷ୍ଟ ନୁହେଁ, ବରଂ ସେତେ "ମଣିଷର ସତର୍କ ଓ ଅନୁସନ୍ଧିତ୍ସୁ ମନ ସାଧାରଣତଃ ଆପଣା ଦେଶର ବେଢ଼ାବେଇଁ ଭିନ୍ନ ଦେଶର ମନ ସହିତ ସଂପର୍କ ସ୍ଥାପନ କରିବା ପାଇଁ ଆଗ୍ରହ ସୃଷ୍ଟି । ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ ଅଧ୍ୟୟନ କଲାବେଳେ କ୍ଷେତ୍ରବାସୀ ସେଇ ତୁଳନାତ୍ମକ ତଥା ବିଶ୍ଳେଷଣଧର୍ମୀ ସମୀକ୍ଷା ରୀତିକୁ ଗ୍ରହଣ କରିଛନ୍ତି, ସମାଲୋଚନା ଅଧ୍ୟୟନର ଶୈଳୀ ଭାବେ ।

'ଭାରତୀୟ କାବ୍ୟତତ୍ତ୍ୱ' ତାଙ୍କର ଅନ୍ୟ ଏକ ତୁଳନାତ୍ମକ ଅଧ୍ୟୟନ । କାବ୍ୟ ସମ୍ପର୍କରେ ବିଭିନ୍ନ ମତ, ଭାରତୀୟ କାବ୍ୟତତ୍ତ୍ୱର ବିଭିନ୍ନ ସ୍କୁଲ, ରସ, ଧ୍ୱନି, ବକ୍ରୋକ୍ତି ଆଦି ବିଭିନ୍ନ ପ୍ରସଙ୍ଗ ଅନ୍ତରାଳରେ ସେ ମନୀଷାର ମୌଳିକତା ଅଧ୍ୟୟନ କରିଛନ୍ତି ଏ ପୁସ୍ତକଟିରେ ।

ରାଧାନାଥଙ୍କ ଜୀବନୀ ଓ ପ୍ରତିଭାର ମୂଲ୍ୟାୟନ ଗ୍ରନ୍ଥ-'କବି ରଚିତ : ରାଧାନାଥ ।' କ୍ଷେତ୍ରବାସୀଙ୍କ ଅନୁଶୀଳନ ରାଧାନାଥଙ୍କ ବ୍ୟକ୍ତିତ୍ୱକୁ ଟିକିନିଖି ଚର୍ଚ୍ଚା ପର୍ଯ୍ୟାୟକୁ ନେଇ ଆସିଛି । "କବିଙ୍କର ବ୍ୟକ୍ତିଗତ ଜୀବନର ବିରାଗ- ଅନୁରାଗ ଯେଉଁ ପରିମାଣରେ କବି ପୁରୁଷକୁ ପ୍ରଭାବିତ କରିଛି କିମ୍ବା କବି ଶକ୍ତିର ଉନ୍ମେଷ- ଉତ୍ତରଣରେ ଏହା ଯେପରି ସହାୟକ ହୋଇଛି, ତାହାର ମୂଲ୍ୟାୟନ ଏଥିରେ କରାଯାଇଛି ।"

ଓଡ଼ିଆ ସମାଲୋଚନା ସାହିତ୍ୟ ଓ ଗବେଷଣାକୁ ଭିନ୍ନ ମୋଡ଼ ଦେଇ, ତାକୁ ଗତିଶୀଳ କରାଇବାରେ କ୍ଷେତ୍ରବାସୀ ନାୟକଙ୍କର ଅବଦାନକୁ ଅସ୍ୱୀକାର କରାଯାଇପାରିବ ନାହିଁ ।



# କ୍ଷେତ୍ରବାସୀଙ୍କ ସୃଷ୍ଟି ଓ ସମୀକ୍ଷା ଜଗତରେ ଛାଇ ଆଲୁଅ

ଶ୍ରୀ ଚନ୍ଦ୍ରକୁମାର ମହାନ୍ତି

**ଷା**ଠିଏ ଦର୍ଶକରେ ଛାତ୍ର ଥିବାବେଳେ କମ୍ୟୁନିଷ୍ଟ ପାର୍ଟି ପରିଚାଳିତ ଷ୍ଟୁଡେଣ୍ଟ ଫେଡ଼େରସନର ବିରୋଧୀ ଛାତ୍ର ୟୁନିୟନର ଆମେସବୁ ଥିଲୁ ସକ୍ରିୟ ସଭ୍ୟ। ଆମର ମୁଖପତ୍ର 'ରଶ୍ମି' ର ସଂପାଦନାରେ ଆମେ ଥିଲୁ ସଂପୃକ୍ତ । ଏହି ଛାତ୍ର ୟୁନିୟନ ଜରିଆରେ ଛାତ୍ରାବସ୍ଥାରୁ ମୋର କ୍ଷେତ୍ରବାସୀଙ୍କ ସଂଗେ ସଂପୃକ୍ତି ଓ ବନ୍ଧୁତା । କମ୍ୟୁନିଜିମ୍ ବିରୋଧରେ ଆମର ସବଳ ଯୁକ୍ତିରେ ତାଙ୍କର ଥିଲା ପ୍ରଗାଢ଼ ବିଶ୍ୱାସ ଓ ଏହି ପ୍ରତ୍ୟୟକୁ ପୁଞ୍ଜିକରି ତାଙ୍କର ସୃଷ୍ଟିକୁ ସେ କରିଛନ୍ତି ସରସ, ସୁନ୍ଦର ଓ ସବଳ; କେବେ ବାଟ ହୁଡ଼ିନାହାନ୍ତି । "ଫୁଲର କବର" ରେ କିମ୍ବା "ଉଚ୍ଚାରଣ" ରେ ଏହି ସ୍ୱର ଆମେ ପାଉଁ । ଏ ସବୁଥିରେ ବ୍ୟକ୍ତିତ୍ୱଠାରୁ ବ୍ୟକ୍ତିର ମୁକ୍ତି ବିଷୟରେ ବରଂ ଅଧିକ କୁହାଯାଇଛି । କବିର ଅଭିଜ୍ଞତା ସବୁବେଳେ ନୂଆ ଏବଂ ଯେ ପର୍ଯ୍ୟନ୍ତ ସେ ତାକୁ ତା'ର ଅନୁଭବରେ ଆଣିପାରିନି କିମ୍ବା ଆଣି ନାହିଁ ସେପର୍ଯ୍ୟନ୍ତ ତାହା ତାକୁ ଅଜଣା ଥାଏ । ପ୍ରକୃତି ଓ ସୌନ୍ଦର୍ଯ୍ୟ କେବେ ଶୁଖି ଯାଆନ୍ତିନି । ସବୁବେଳେ କବିର ଅନୁଭବକୁ ଆନ୍ଦୋଳିତ ଚକିତ ଓ ବିମୁଗ୍ଧ କରିଥାଆନ୍ତି । ଜୀବନର ବିରାଟତା, ଜଟିଳତା, ସାମଗ୍ରିକତା, ପ୍ରକୃତି ଓ ସୌନ୍ଦର୍ଯ୍ୟକୁ ନେଇ କବିର ବ୍ୟାପକ ଅନୁଭବର ପୃଥିବୀ ତା ଆଗରେ ମେଲିଯାଏ । ସେଥିରେ ସେ କେତେବେଳେ ନିଜକୁ ହଜେଇ ଦିଏ ତ କେତେବେଳେ ସୀମାସରହଦ ଡେଇଁ ତା ସମୟର ଆଗକୁ ମାଡ଼ିଯାଏ । କ୍ଷେତ୍ରବାସୀ ବାବୁଙ୍କ କବିତା ଓ ଗଳ୍ପରେ ଏଇ ପୃଥିବୀର ଚିତ୍ରିତ ଚଉହଦୀ ଦେଖୁଁ। ୧୯୬୭, ୧୯୬୯ ମସିହାରେ ଏହି ଦୁଇଟି ପୁସ୍ତକ ପ୍ରକାଶ ପାଇଲାବେଳେ ପ୍ରଗତିବାଦୀ ସାହିତ୍ୟର ଜୋର ହାୱା ଓଡ଼ିଆ ସାହିତ୍ୟରେ ବହୁଥାଏ । କାଳିନ୍ଦୀ ଚରଣ ପାଣିଗ୍ରାହୀ, ସଚ୍ଚିରାଉତରାୟ, ଅନନ୍ତ ପଟ୍ଟନାୟକ, ମନମୋହନ ମିଶ୍ର, ବ୍ରଜନାଥ ରଥ ପ୍ରମୁଖ ବହୁ ବାମବାଦୀ ଚିନ୍ତାଧାରାର ଓଡ଼ିଆ ଲେଖକମାନଙ୍କ ଅଖଣ୍ଡ ପ୍ରଭାବ ବିସ୍ତାରିତ ହୋଇଥିଲେ ବି ସେ ସବୁରେ କ୍ଷେତ୍ରବାସୀ ବାବୁ ଟିକେହେଲେ ପ୍ରଭାବିତ ନ ହୋଇ ଗଭୀର ଆତ୍ମବିଶ୍ୱାସରେ ନିଜର ଅନୁଭବକୁ କଳାତ୍ମକ ଭଙ୍ଗୀରେ ସରସ ସୁନ୍ଦର କରି ସାହିତ୍ୟ ସୃଷ୍ଟି କଲେ ଏବଂ ଏହି ଦୁଇଟି ପୁସ୍ତକରେ ସେ ଛାଡ଼ିଯାଇଥିବା ଅନେକ କଥା ଭିତରୁ ଏହି କଥାଟି ମୋତେ ଅଧିକ ଆକର୍ଷଣ କରେ । କିନ୍ତୁ ଦୁଃଖର କଥା ସୃଷ୍ଟି କରୁଥିବା ଗଳ୍ପ ଓ କବିତା ରାଜ୍ୟରୁ ସେ ନିଜକୁ ଦୂରେଇ ନେଇ ଜୀବନର ଶେଷଯାଏଁ ଜଣେ ସଫଳ ସାହିତ୍ୟ-ସମାଲୋଚକ, ସଂକଳକ ଓ ସଂଗଠକ ଭାବରେ ନିଜକୁ ତିଆରି କରିବା ସହିତ

ସୃଷ୍ଟି କଲେ "ଅଳଙ୍କାର ଓ ଅଳଙ୍କାର ତତ୍ତ୍ୱ" (ଆଲୋଚନା ଗ୍ରନ୍ଥ), "ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ", ସାହିତ୍ୟର ସାମାନ୍ୟ କଥନ (ପ୍ରବନ୍ଧ)" "ସାହିତ୍ୟିକ ବୀକ୍ଷା ଓ ନିରୀକ୍ଷା' (ସମୀକ୍ଷାଗ୍ରନ୍ଥ) 'କବି ନୀଳକଣ୍ଠ' (ମନୋଗ୍ରାଫ), 'କବିଚରିତ : ରାଧାନାଥ' (ମନୋଗ୍ରାଫ), 'ସାଂପ୍ରତିକ ଓଡ଼ିଆ ସାହିତ୍ୟ ସଂପର୍କରେ' (ସଂକଳିତ ଆଲୋଚନା ଗ୍ରନ୍ଥ), 'ଫକୀରମୋହନ କଥା ସାହିତ୍ୟ' (ସଂକଳିତ) । ବିସ୍ମୃତ, ଅନାଲୋଚିତ ଓ ଅନୁଦ୍‌ଘାଟିତ ଦିଗ ପ୍ରତି ଦୃଷ୍ଟି ନେଇ ଏ ଦିଗରେ ଏକ ସକାରାତ୍ମକ ଭୂମିକା ତୁଲେଇବା ସକାଶେ ସେ ତାଙ୍କର ଗୁରୁ ପ୍ରଫେସର ଡକ୍ଟର କୃଷ୍ଣଚରଣ ବେହେରାଙ୍କ ସକ୍ରିୟ ସହଯୋଗରେ ଗଢ଼ିଲେ "ଓଡ଼ିଆ ଗବେଷଣା ପରିଷଦ" ୧୯୮୦ ମସିହାରେ ଏବଂ ଏହି ଅନୁଷ୍ଠାନ ପକ୍ଷରୁ ପ୍ରକାଶ ପାଇଲା ଗବେଷଣା ସାହିତ୍ୟ ପତ୍ରିକା 'ଏଷଣା' ।

ଏହି ପରିପ୍ରେକ୍ଷୀରେ କ୍ଷେତ୍ରବାସୀ ବାବୁ ସର୍ଜନଶୀଳ ସାହିତ୍ୟ ଛାଡ଼ି କାହିଁକି ସାହିତ୍ୟ ସମାଲୋଚନାରେ ଅଧିକ ମନ ବଳେଇଲେ ସେ ଦିଗଟି ପ୍ରତି ଧ୍ୟାନ ଦେବା ଆବଶ୍ୟକ ମନେକରେ । ସେତେବେଳକୁ 'ଓଡ଼ିଶା ସାହିତ୍ୟ ଏକାଡ଼େମୀ', 'ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀ' (୧୯୫୭), ବାଲେଶ୍ୱରର 'ଫକୀରମୋହନ ସାହିତ୍ୟ ପରିଷଦ' (୧୯୪୮), ରାଉରକେଲା କଲଚର ଏକାଡେମୀ (୧୯୬୧), ରାଜ୍ୟପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା (୧୯୭୦), ଉତ୍କଳ ସାହିତ୍ୟ ସମାଜ ପ୍ରଭୃତି ବହୁ ସାହିତ୍ୟ-ସଂସ୍କୃତି ଅନୁଷ୍ଠାନ ସାହିତ୍ୟର ଆଲୋଚନା କରିବା ସହିତ ବହୁ ଉପାଦେୟ ପୁସ୍ତକ, ସ୍ମରଣିକା ଓ ସମାଲୋଚନା ପୁସ୍ତକମାନ ରଚନା କରୁଥାନ୍ତି । ସ୍ୱାଧୀନତା ପୂର୍ବରୁ ରାଧାନାଥ ରାୟ, ମଧୁସୂଦନ ରାଓ, ବିଶ୍ୱନାଥ କର, ମୃତ୍ୟୁଞ୍ଜୟ ରଥ, ଗୋପୀନାଥ ନନ୍ଦ ଶର୍ମା, ମୋହିନୀମୋହନ ସେନାପତି, ନୀଳକଣ୍ଠ ଦାସ, ଆର୍ତ୍ତବଲ୍ଲଭ ମହାନ୍ତି, କାଳିନ୍ଦୀ ଚରଣ ପାଣିଗ୍ରାହୀ ଓ ମାୟାଧର ମାନସିଂହ ପ୍ରମୁଖ ସାହିତ୍ୟିକମାନେ ପ୍ରବନ୍ଧ ଓ ସମାଲୋଚନା ସାହିତ୍ୟରେ କିଛି କାମ କରିସାରିଥିଲେ । ମାତ୍ର ମାୟାଧର ମାନସିଂହ ପରବର୍ତ୍ତୀ ସମୟରେ ମତଦେଲେ ଯେ, ଓଡ଼ିଆ ସାହିତ୍ୟରେ ସବୁଠାରୁ ଦୁର୍ବଳତମ ବିଭାଗ ବୋଧହୁଏ ସାହିତ୍ୟ ସମାଲୋଚନା ଏବଂ ସୁରେନ୍ଦ୍ର ମହାନ୍ତି ମତ ଦେଲେ ଯେ ସାହିତ୍ୟ ସମାଲୋଚନାରେ ଅନ୍ତର୍ଦୃଷ୍ଟି ଓ ମୌଳିକ ଚିନ୍ତା ଅଧିକ ଦେଖିବାକୁ ମିଳୁନି । ସ୍ୱାଧୀନତା ପରବର୍ତ୍ତୀ କାଳରେ ଲେଖାଯାଇଥିବା ସମାଲୋଚନା ସାହିତ୍ୟରେ ଏହି କଥାଟି ଅନେକ ପରିମାଣରେ ସତ ମନେ ହୁଏ । ଷାଠିଏ ଦଶକଯାଏ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ମୋଟାମୋଟିଭାବେ ଚିତ୍ରଟି ଥିଲା ଏହିପରି ।

ବିଂଶ ଶତାବ୍ଦୀରେ ସମାଲୋଚନା ସାହିତ୍ୟ ସଂପର୍କରେ ପାଶ୍ଚାତ୍ୟ ଦେଶରେ ଯୁକ୍ତି ଉଠିଲା ଯେ ସମାଲୋଚନା ସାହିତ୍ୟ ଅଧିକ ପରୀକ୍ଷାମୂଳକ (Empirical) ହୋଇଯାଉଛି । ସମାଲୋଚନା ସାହିତ୍ୟ ବଡ଼ବଡ଼ ସାହିତ୍ୟ କୃତିକୁ ସଂକ୍ଷେପରେ ଓ ସହଜରେ ବୁଝିପାରିବା ପାଇଁ ଉଦ୍ଦିଷ୍ଟ ହେବା ଦରକାର ବୋଲି ମତ ପ୍ରକାଶ ପାଇଲା। ଲେଖକର ସମାଜ ଓ ଜୀବନୀକୁ ଆଧାର କରି ଏହି ସମାଲୋଚନା ଆଧାରିତ ହେବା ଆବଶ୍ୟକ କି ନା ପ୍ରଶ୍ନ କରାଗଲା । ସମାଜ ବିବର୍ତ୍ତନକୁ ଆଧାର କରି ସମାଲୋଚନାର ଦୃଷ୍ଟି ଓ ଦିଗନ୍ତକୁ ବିସ୍ତାର କରାଗଲା । ଏହି ବିସ୍ତୃତ ଭୂମିରେ ପୁଣି ବିଚାର କରାଗଲା ଯେ, ଖୁସି ମନେଇବା ପାଇଁ ସାରା ସମାଜଟା ପ୍ରଚଳିତ ଦୃଷ୍ଟିଭଙ୍ଗୀ ବଦଳେଇ ନୂଆ ଦୃଷ୍ଟି ଭଙ୍ଗୀକୁ ଆଦରି ନେଉଛନ୍ତି; ସମାଲୋଚକ ତାକୁ ଅନୁସରଣ କରିବା ଦରକାର; ବିରୋଧ ନୁହେଁ । ଏହିଭଳି ନାନା ମତମତାନ୍ତର ଭିତରେ ସମାଲୋଚନା ସାହିତ୍ୟ ବାହାର ଦେଶରେ ବଢ଼ିଉଠୁଥିଲାବେଳେ ଓଡ଼ିଶାରେ ତାର ଅନୁରୂପ ଛାଇ ଅଳ୍ପେ ବହୁତେ ଦେଖିବାକୁ ମିଳିଲା । ସାହିତ୍ୟ ସଠିକ୍ ଇତିହାସର କଥା କୁହେ । ଏହା ପୂର୍ବରୁ ଇତିହାସ ଲେଖିବାର ଆବଶ୍ୟକତା ମାନବ ସଭ୍ୟତାର କେନ୍ଦ୍ର ବିନ୍ଦୁରେ ଛିଡ଼ାହୋଇପାରିନଥିଲା; କିମ୍ବା ଏହାକୁ ମଧ୍ୟ ସେମିତି ଗୁରୁତ୍ୱ ବି ଦିଆଯାଉନଥିଲା । ଇତିହାସ ମଧ୍ୟ ଜୀବନର ପୂର୍ଣ୍ଣତାର ପରିଭାଷକ ବୋଲି ଅଷ୍ଟାଦଶ ଶତାବ୍ଦୀର ଶେଷାର୍ଦ୍ଧଯାଏ ଦାବି କରି ନାହିଁ । ଆଜି ଇତିହାସ ହେଉଛି ପରିପୂର୍ଣ୍ଣ ଜୀବନର ପରିଭାଷା । ସାହିତ୍ୟ ସମାଲୋଚକମାନେ ମଣିଷର ଅତୀତ କ୍ରିୟାକଳାପର ନଥିପତ୍ରର ପୁନର୍ନିର୍ମାଣ (Reconstruction) । କରନ୍ତି ନିଜର ସମାଲୋଚନା ସାହିତ୍ୟରେ । ଏହି ପୁନର୍ନିର୍ମିତ ଇତିହାସରୁ ପୂର୍ବଜମାନଙ୍କର ଗୌରବ ଗାଥା ଶୁଣି ଉଦ୍‌ବୁଦ୍ଧ ଓ ଉତ୍ସାହିତ ହେବାଦ୍ୱାରା ସୃଷ୍ଟି ହୁଏ ନବଜାଗରଣ ପର୍ବ (Renaissance) । ଓଡ଼ିଆ ସାହିତ୍ୟର ସମାଲୋଚନା କ୍ଷେତ୍ରରେ ଡକ୍ଟର ନଟବର ସାମନ୍ତରାୟ ଏହି ପୁନର୍ନିର୍ମାଣର କାର୍ଯ୍ୟ ସୁଚାରୁ ରୂପେ ତୁଲେଇ ଏକ ସଫଳ ଆଧୁନିକ ଐତିହାସିକର ଭୂମିକା ନିର୍ବାହକରି ଯାଇଛନ୍ତି । ସ୍ୱାଧୀନତାପରେ ଷାଠିଏ ଦଶକ ଯାଏଁ ଓଡ଼ିଆ ସମାଲୋଚନା କ୍ଷେତ୍ରରେ ଏହି ଐତିହାସିକ ମନସ୍କତା ଜାରିରହିବା ସହିତ ଅନ୍ତର୍ଦୃଷ୍ଟି, ମୌଳିକ ଚିନ୍ତା, ଲେଖକ ମାନସ, ଜୀବନାଦୃଷ୍ଟି, ରସବୋଧ ଓ ଐତିହାସିକ ବିଚାରବୋଧ ଆମ ସମାଲୋଚନା ସାହିତ୍ୟକୁ ମଧ୍ୟ ଆସି ସାରିଥାଏ । ବର୍ତ୍ତମାନର ମଣିଷ ଯେଉଁ ପରିବେଶ ଓ ପରିସ୍ଥିତି ଭିତରେ ବଞ୍ଚିଛି ସେଥିରେ ସେ କେତେବେଳେ ନୈତିକ ମୂଲ୍ୟବୋଧ ନେଇ ବାଉଳା ହୋଇଯାଉଛି ତ କେତେବେଳେ ବ୍ୟାପକ ସାମାଜିକ ଦୃଷ୍ଟିକୋଣ କଥା ଭାବି କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡୁଛି । ନିଃସଂଗତା ବଢ଼ି ବଢ଼ି ଚାଲିଥିଲାବେଳେ ନୈତିକ ମୂଲ୍ୟବୋଧ ଉପରେ ଆଘାତ ପଡୁଛି ।

ଷାଠିଏ ଦଶକରେ ସମାଲୋଚନା ସାହିତ୍ୟ ପ୍ରତି ଅନୁରାଗୀ ବନ୍ଧୁ କ୍ଷେତ୍ରବାସୀ ନାୟକଙ୍କ ସାମ୍ନାରେ ଥିଲା ଏହି ଚିତ୍ରିତ ଚଉହଦୀ । ସାହିତ୍ୟ ମାଧ୍ୟମରେ ଜୀବନକୁ ବୁଝେଇବା ଥିଲା ତାଙ୍କର ଅଙ୍ଗୀକାରବଦ୍ଧତା । ନିଜର ସାହିତ୍ୟ ସମାଲୋଚନାରେ ପ୍ରାଚୀନ ଓ ନୂତନ ସାହିତ୍ୟର ଭାବଭଙ୍ଗୀ ବୁଝେଇବାରେ ଥିଲା ତାଙ୍କର ଅନମନୀୟ ଆଗ୍ରହ । ପ୍ରତ୍ୟୟର ସହିତ ଆତ୍ମପରିଚିତି ତିଆରି କରିବାରେ ସେ ବାଛିନେଇଥିଲେ ଶ୍ରମ ଓ ସାଧନାର ଏକ ବାଟ । ଗଭୀର ଆତ୍ମବିଶ୍ୱାସ ସହ ସେ ସମାଲୋଚନା ସାହିତ୍ୟରେ ପାଦଦେଇଥିଲେ ବୋଲି ମୁଁ ଅନୁଭବ କରେ । ସେ ଆମ ସାହିତ୍ୟରେ ବିଦେଶୀ ସାହିତ୍ୟର ପ୍ରଭାବ, ତାର ଅନୁକରଣ, ଅନୁସରଣ, ଅନୁସୃଜନ ଓ ଆତ୍ମୀକରଣ କିଭଳି କରାଯାଇଚି ତାର ବିଶ୍ଳେଷଣ କରି ମୂଲ୍ୟାୟନ କରିବାର ସୁଯୋଗ ଦେଇଛନ୍ତି । ସମାଲୋଚନା ସାହିତ୍ୟ କେବଳ ବୁଦ୍ଧିଜୀବୀ ପାଠକମାନଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । ଏହା ସବୁବର୍ଗର ପାଠକମାନଙ୍କ ପାଇଁ । ଏକଥା କ୍ଷେତ୍ରବାସୀଙ୍କ ଲେଖାରୁ  ବାରିହୋଇଯାଏ । ସେ ଜୀବନର ସାମଗ୍ରିକତା ଓ ଜଟିଳତାକୁ ତାଙ୍କର ସମାଲୋଚନା ଗ୍ରନ୍ଥରେ ଚିହ୍ନେଇବାକୁ ଚେଷ୍ଟା କରିଛନ୍ତି ।

ଉଦାରତା ସମାଲୋଚନାର ମୂଳମନ୍ତ୍ର । ଏବର ଜଣେ ସମାଲୋଚକଙ୍କ ଭାଷାରେ – "Misguided and malicious critics discourage another who see ahead of time" । ମାନସିକ ଭାବରେ କ୍ଷେତ୍ରବାସୀ ଥିଲେ ଏହାର ବିରୋଧୀ । ରାଧାନାଥ ଓ ଅନ୍ୟ କବିମାନେ କିଭଳି ତାଙ୍କ ସମୟର ଆଗକୁ ଦେଖି ପାରିଥିଲେ ତାହା ସେ ସୂଚେଇଲାବେଳେ ଅତି ଉଦାର ଓ ନିଷ୍ପକ୍ଷ ଭାବରେ ବରଂ ତାଙ୍କର ସମାଲୋଚନାକୁ ପରିପୁଷ୍ଟ କରିଛନ୍ତି । ଅପରିଣତ ବୟସରେ ଏଭଳି ଜଣେ ସାରସ୍ୱତ ସାଧକଙ୍କର ବିୟୋଗ ନିଶ୍ଚୟ ଅତ୍ୟନ୍ତ ମର୍ମନ୍ତୁଦ ଏବଂ ଓଡ଼ିଆ ଭାଷା ସାହିତ୍ୟର ଅପୂରଣୀୟ କ୍ଷତି । ତାଙ୍କର ନଇପରି ଲମ୍ବିଥିବା ସାରସ୍ୱତ ଇଚ୍ଛାକୁ ତାଙ୍କର ଉତ୍ତର ସାଧକମାନେ ଆଗକୁ ଇଘେଇନେବେ ବୋଲି ମୋର ଦୃଢ଼ ଆଶା ।

ବର୍ତ୍ତମାନ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ବ୍ୟବହୃତ ଭାଷା ସାଧାରଣ ପାଠକକୁ ଟାଣି ରଖିପାରୁନି । ବୁଝିବା ପାଇଁ ଆଗ୍ରହ ଜନ୍ମେଇ ପାରୁନି ଏବଂ ଚେଷ୍ଟା କଲେ ମଧ୍ୟ ଅନେକ କଥା ବୁଝାପଡୁନି । ଭାଷାକୁ ସରଳ ଗାଉଁଲି କରି ଭାବକୁ ଅତିସରଳ, ସ୍ୱଚ୍ଛ ଓ ସ୍ପଷ୍ଟ ଭାବରେ ବୁଝାଇବା ଦରକାର । ଏହାର ଅଭାବ ଆମ ସମାଲୋଚନା ସାହିତ୍ୟରେ ଅଧିକ ବୋଲି ଦେଖିବାକୁ ମିଳେ ।

କେତେଗୁଡ଼ିଏ ବିଷୟରେ ବା ପୁସ୍ତକ ସଂପର୍କରେ ଯାହା ଆଲୋଚନା କରାଯାଉଛି ତାକୁ ପୁଣି ସମାଲୋଚନାରେ ବାରମ୍ବାର ଉଚ୍ଚାରଣ କରାଯାଉଛି; ତହିଁରେ

କିଛି ନୂତନତା ନାହିଁ । ପୁଣି କେତେକ ପୁସ୍ତକ ସଂପର୍କରେ କହିବାକୁ ଯାଇ ତା'ର ଚରିତ୍ର ଓ ବିଷୟବସ୍ତୁ ଉପରେ ବହୁତ କୁହାଯାଇସାରିଥିଲାବେଳେ ତା'ର ପୁନରାବୃତ୍ତି କରାଯାଉଛି । ନୂଆ ଦୃଷ୍ଟିରୁ ବିଚାର ନ କରି ପୁରୁଣା ମଦକୁ ନୂଆ ବୋତଲରେ ଢଳାଯାଉଛି ମାତ୍ର । ପୁସ୍ତକର ଗୋଟିଏ ଚରିତ୍ର ବା ଗୋଟିଏ ଦିଗ ଉପରେ କହି ପାଠକ ପାଖରେ ସମ୍ପୂର୍ଣ୍ଣ ଧାରଣା ଦିଆଯାଉ ନାହିଁ । ବର୍ତ୍ତମାନ ସମାଲୋଚନା ସାହିତ୍ୟ କ୍ଷେତ୍ରରେ ଏହି ସାମଗ୍ରିକତାକୁ ବେଶୀ ଗୁରୁତ୍ୱ ଦିଆଯାଇ ପାଠକୀୟ ମନ ସୃଷ୍ଟି କରିବାର ପ୍ରୟାସ ଜାରିରହିଛି ।

ସାହିତ୍ୟ ସମାଲୋଚନା କ୍ଷେତ୍ରରେ ବର୍ତ୍ତମାନ ନାନା ମତ ଭିତରୁ କେତେକ ପ୍ରଭାବଶାଳୀ ମତ, ଦିଗ ପ୍ରତି ଦୃଷ୍ଟି ଦେଲେ ବାରିହୁଏ ବା କ୍ଷେତ୍ରବାସୀବାବୁ ଥିଲେ ଏ ସବୁଦୃଷ୍ଟିରୁ ଜଣେ ସଚେତନ ସାହିତ୍ୟ ସମାଲୋଚକ ଓ ଦୁର୍ବଳ ଓଡ଼ିଆ ସମାଲୋଚନା ସାହିତ୍ୟକୁ ଅଧିକ ପରିପୁଷ୍ଟ ଓ ପ୍ରସାରିତ କରିବାର ସବଳ ସାଧକ । ଏହି ଉଦ୍ୟମକୁ ଆହୁରି ଅଧିକ କ୍ରିୟାଶୀଳ ଓ ସଫଳ କରିବା ପାଇଁ ସାହିତ୍ୟ ଅନୁଷ୍ଠାନର ଆବଶ୍ୟକତାକୁ ଅନୁଭବ କରି ସେ ଗଢ଼ିଥିଲେ ଓଡ଼ିଆ ଗବେଷଣା ପରିଷଦ। ଏହି ଅନୁଷ୍ଠାନ ଜରିଆରେ ଅନ୍ୟଙ୍କୁ ପ୍ରଚୋଦିତ କରିବା ଓ କ୍ଷେତ୍ର ଯୋଗାଇଦେବା ଥିଲା ତାଙ୍କର ବ୍ୟାପକ ଦୃଷ୍ଟିଭଙ୍ଗୀ । ଏହି ଅନୁଷ୍ଠାନର ଅବଦାନ ଆଜି ନିଶ୍ଚୟ ଉଲ୍ଲେଖନୀୟ କହିବାକୁ ପଡୁଥିଲାବେଳେ କ୍ଷେତ୍ରବାସୀ ବାବୁଙ୍କ ହୃଦୟର ବିଶାଳତା ଓ ଦୃଷ୍ଟିର ବ୍ୟାପକତା ମାପିହୁଏ ।

ସୀମିତ କଳେବର ଭିତରେ ତାଙ୍କ ସାହିତ୍ୟ କୃତି ଓ କୀର୍ତ୍ତିକୁ ସଠିକ୍ ବିସ୍ତୃତ ମୂଲ୍ୟାୟନ କରିବାର ସୁଯୋଗ ନାହିଁ । ଏଠାରେ କେବଳ ତାଙ୍କ ମନନଶୀଳତାର ମିଠା ମହକର କିଛି କଥା କହି ସୃଷ୍ଟିଶୀଳତାର ଛାଇ ଆଲୁଅର ଛବିଟିଏ ଆଙ୍କିବାକୁ ଚେଷ୍ଟା କରାଯାଇଛି । ଏହି ଛବିକୁ ବାରମ୍ବାର ଦେଖି ଓ ଏହା ସହିତ ସଂପୃକ୍ତି ରକ୍ଷାକରି ବିଶ୍ଳେଷଣ କରିବାର ବାଟଟିଏ ଦେଖେଇ ଦିଆଯାଇଛି ମାତ୍ର ।



# ସାହିତ୍ୟ ବିଦ୍ୟା : କ୍ଷେତ୍ରବାସୀ

ଡଃ ଯଶୋବନ୍ତ ନାରାୟଣ ଧର

**ଡଃ** କ୍ଷେତ୍ରବାସୀ ନାୟକଙ୍କ କୃତି ଓ ଜୀବନର ଏକ ଆକଳନ ପ୍ରସ୍ତୁତ କରିବା କେବଳ ଯେ ତିରୋହିତ ମହାନ ଆତ୍ମାପ୍ରତି ଅଯାଚିତ ଏକ ଶ୍ରଦ୍ଧାଞ୍ଜଳି ନୁହେଁ, ସେଥିପ୍ରତି ମୁଁ ଯଥେଷ୍ଟ ସଚେତନ ! ମୁଁ ତାଙ୍କୁ ଯଥେଷ୍ଟ ଆଗରୁ ଦେଖିଥିଲେ ହେଁ ଏକ ସାରସ୍ୱତ ଆକର୍ଷଣ ତାଙ୍କଠାରେ ଅନୁଭବ କରିଥିଲି ପ୍ରାୟ ୧୯୮୦ ମସିହା ବେଳକୁ । ମୁଁ ବାଣୀବିହାରର ଛାତ୍ର, ସେ ରେଭେନ୍‌ସାର ଅଧ୍ୟାପକ । ମୋର କେତେଜଣ ରେଭେନ୍‌ସାରେ ପଢୁଥିବା ବନ୍ଧୁଙ୍କ ଯୋଗୁ ସେ ମୋତେ ଭଲଭାବରେ ଜାଣିଥାନ୍ତି ଓ ଦେଖା ହେଲେ ଅତ୍ୟନ୍ତ ଶ୍ରଦ୍ଧାରେ କଥାବାର୍ତ୍ତା କରନ୍ତି । ମୁହଁରେ ମୋଟା ଫ୍ରେମ୍‌ର କଳା ଚଷମା - ବେଶ୍ ସଫା ଧଳା ରଙ୍ଗର କୁର୍ତ୍ତା ଓ ଧୋତି- ଚାଦରଟିଏ ଭାଙ୍ଗ ହୋଇ ବେଳେବେଳେ କାନ୍ଧରେ ପଡ଼ିଥାଏ – ପାନ ଚୋବାଉଥାନ୍ତି – ଏପରି ଏକ ବ୍ୟକ୍ତିତ୍ୱ ଯେ ଲାଗେ ଖୁବ୍ ସରଳ ଓ ଆପଣାର । ସଂଭ୍ରାନ୍ତ ଜଣେ ସୁପୁରୁଷ ସାହିତ୍ୟ ବିଦ୍ୟାର ଜଗତ ଭିତରେ – ଉଭୟ ପତି ଓ ପତ୍ନୀ ଥିଲେ ଛାତ୍ରମାନଙ୍କର ପ୍ରିୟ ଓ ଆପଣାର !! ନାଆଁ କ୍ଷେତ୍ରବାସୀ – ଅର୍ଥାତ୍ ଯିଏ ଶ୍ରୀକ୍ଷେତ୍ରରେ ହିଁ ବାସ କରେ । କଟକ, ଡଃ କୃଷ୍ଣଚରଣ ବେହେରା ଓ ନାନା ସାହିତ୍ୟ ସଂଗଠନର ଜଞ୍ଜାଳ ଭିତରେ ସେ ଥିଲେ ଯଥାର୍ଥରେ କ୍ଷେତ୍ରବାସୀ- ଘରେ ଗଢ଼ିଉଠିଥିଲା ଶ୍ରୀ କ୍ଷେତ୍ରର ଆସର - ପ୍ରତିଷ୍ଠା ପାଇଥିଲେ ଶ୍ରୀ ଜଗନ୍ନାଥ ଆଉ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସତେ ଯେମିତି ତାଙ୍କର ଆଶା ଓ ବିଶ୍ୱାସ ଥିଲା ଯେ ଶ୍ରୀ ଜଗନ୍ନାଥ ହିଁ ସର୍ବନିୟନ୍ତା ଏବଂ ଏ ବିପଦରୁ ଯଦି କିଏ ତାରିପାରେ ବା ମାରିପାରେ ତେବେ ସେହି ଶ୍ରୀ ଜଗନ୍ନାଥ !

"ବିଫଳତା ସପକ୍ଷରେ" ଜୀବନର ଆଦ୍ୟ ଉନ୍ମେଷର ସାରସ୍ୱତ ସଂକଳନ - ପଦ୍ୟ ! ବଲାଙ୍ଗୀର ରାଜେନ୍ଦ୍ର କଲେଜ - ଭଦ୍ରକରୁ ବଲାଙ୍ଗୀର ! ପ୍ରତିଭାର ପ୍ରତିଷ୍ଠା ବିକାଶ ଆଉ ପ୍ରସ୍ଫୁଟନ ସେଇଠି - ବଲାଙ୍ଗୀରରେ ୧୯୬୬ ଖ୍ରୀ: ରୁ ୧୯୭୧ ଖ୍ରୀ : ଆତ୍ମପ୍ରକାଶର ପର୍ବ । ତାଙ୍କର ଜନ୍ମ ୧୯୩୯ ମସିହା ଅକ୍ଟୋବର ୪ ତାରିଖରେ ଭଦ୍ରଖର ବଙ୍କ ସାହିରେ - ସେ ଦିନ ତିଥି ଥିଲା ଆଶ୍ୱିନ କୃଷ୍ଣ ଷଷ୍ଠୀ - ୧୯୩୯ ଖ୍ରୀ: ରୁ ୧୯୬୬ ଖ୍ରୀ : ଏଇ ସତେଇଶ ବର୍ଷ କିନ୍ତୁ ଥିଲା ସାରସ୍ୱତ - ସାଂସ୍କୃତିକ ଓ ସାଂଗଠନିକ ଜୀବନର ଅଙ୍କୁରୋଦ୍‌ଗମ କାଳ ଦୁଇ ବୀଜପତ୍ର ଭଦ୍ରଖର ସହଜ ପାଣିପାଗରେ ବେଶ୍ ଚାରାଗଛଟିଏ ହୋଇ କଅଁଳିଥିଲା ଆଉ ସେଇ ପ୍ରତ୍ୟୟ ଓ ବିଶ୍ୱାସରେ ସେ ସାରା ଜୀବନ ଥିଲେ ବିମୋହିତ, ଆଶ୍ୱସ୍ତ ଓ ବିଫଳତା ସତ୍ତ୍ୱେ ସଫଳତାରେ ବିଶ୍ୱାସୀ । କ୍ଷେତ୍ରବାସୀ ଥିଲେ ଛାତ୍ର ସଂଘର ମୁଖପତ୍ର 'ରଶ୍ମି'ର ସଂପାଦକ । ପ୍ରାୟ ୧୯୫୬ ମସିହା ବେଳକୁ ସେ ନିଜ

ଚାରିପଟେ ସୃଷ୍ଟି କରିଥିଲେ ଏକ ସାରସ୍ୱତ- ସାଙ୍ଗଠନିକ ବଳୟ - ଡଃ କୃଷ୍ଣ ଚରଣ ବେହେରା - ରାଜନୀତିଜ୍ଞ ଯୁଗଳ କିଶୋର ପଟ୍ଟନାୟକ ପ୍ରଭୃତିଙ୍କ ସହ କାମ କରିବାର ଅଭିଜ୍ଞତା ଓ ଅନୁଭୂତି ସେ ସାରାଜୀବନର କର୍ମଜଞ୍ଜାଳ ଭିତରେ କାମରେ ଲଗାଇଥିଲେ ।

ଭଦ୍ରକ କଲେଜ ସେତେବେଳର ଓଡ଼ିଶାରେ ସବୁଠାରୁ ବଡ଼ ବେସରକାରୀ କଲେଜ । ସେହି କଲେଜରେ ପାଦଦିଅନ୍ତି କ୍ଷେତ୍ରବାସୀ - ସେତିକିବେଳେ ତରୁଣ ଅଧ୍ୟାପକ ଡଃ କୃଷ୍ଣ ଚରଣ ଛାତ୍ର ସଂସଦର ଉପଦେଷ୍ଟା । ଉଭୟ ଉଭୟଙ୍କ ସହିତ ଆଜୀବନ ଏକ ଅନ୍ତରଙ୍ଗ ସଂପର୍କରେ ବାନ୍ଧିହୋଇ ରହିଥିଲେ । ଗୁରୁ-ଶିଷ୍ୟର ସଂପର୍କ ସିଦ୍ଧ ହୋଇଥିଲା ସୌଖ୍ୟରେ । ସ୍ନାତକ କ୍ଷେତ୍ରବାସୀ ନିଜର ଦୁର୍ବଳ ଆର୍ଥିକ ସ୍ଥିତି ସତ୍ତ୍ୱେ ରେଭେନ୍‌ସା କଲେଜର ଓଡ଼ିଆ ସ୍ନାତକୋତ୍ତର ଶ୍ରେଣୀରେ ନାମ ଲେଖାନ୍ତି । ଏଇଠି ଆରମ୍ଭ ହୁଏ ସାହିତ୍ୟିକ କ୍ଷେତ୍ରବାସୀଙ୍କର ସାହିତ୍ୟ ବିଦ୍ୟା ବେଉଷଣ । ବନ୍ଧୁ ଶୈଳେନ୍ ମହାପାତ୍ରଙ୍କ ସହଯୋଗରେ ଆରମ୍ଭ ହୁଏ ପତ୍ରିକା 'ଶତରୂପା' । ଏହି ପତ୍ରିକାର ସଂପାଦନା, ଲେଖାଚୟନ ଓ ବିକ୍ରୟରେ ସେ ଯେଉଁ ସାହସିକତା ପ୍ରଦର୍ଶନ କରିଥିଲେ ତାହା ଥିଲା ତାଙ୍କର ପରବର୍ତ୍ତୀ ଜୀବନର ମୂଳଭିତ୍ତି । ସେ ଲେଖୁଥିଲେ କବିତା, ଏଇଠୁ ଲେଖିଲେ କେତୋଟି ଗଳ୍ପ । ପୁଣି ଅଧ୍ୟାପକ ଜୀବନ ଆରମ୍ଭ ହେଲା ସମ୍ବଲପୁରର ଗଙ୍ଗାଧର ମେହେର କଲେଜରୁ । ବିବାହ ହେଲା ସହପାଠିନୀ ଲାବଣ୍ୟ ଦେବୀଙ୍କ ସହିତ । ଉଭୟଙ୍କର ଅଧ୍ୟାପକ- ସାହିତ୍ୟିକ ଜୀବନରେ ସମନ୍ୱିତ ମଧୁର ସାହାନାଇ କେତେବେଳେ କେଉଁ ରାଗରେ ବାଜିଛି ତାହାର ଇୟତ୍ତା ନାହିଁ । କିନ୍ତୁ ସେହି ରାଗିଣୀ କେବେ ବି ହୋଇନାହିଁ ବେସୁରା ।

ଯୋଡ଼ିଏ ସଙ୍କଳନ ଏହି ପ୍ରାଥମିକ ସାହିତ୍ୟିକ ଜୀବନକୁ ଏକ ପ୍ରତିଷ୍ଠା ଆଣି ଦେଇଥିଲା । ତାହା ହେଲା 'ଗଙ୍ଗାଧର ଶତବାର୍ଷିକୀ ଗ୍ରନ୍ଥ' ଓ 'ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ' । ପରେ ପରେ ଉଭୟ କ୍ଷେତ୍ରବାସୀ ଓ ଲାବଣ୍ୟଙ୍କର ଯୁଗ୍ମ ପ୍ରଚେଷ୍ଟାରେ ପ୍ରକାଶିତ ହୋଇଥିଲା 'ପ୍ରବନ୍ଧ ଓ ପ୍ରାବନ୍ଧିକ' ଗ୍ରନ୍ଥ - ଯାହା ପାଠ୍ୟପୁସ୍ତକ ରୂପେ ମଧ୍ୟ ସ୍ୱୀକୃତ ହୋଇଥିଲା ।

ପାରିବାରିକ ଜୀବନ - ବିବାହ ଓ ତତ୍‌ପରବର୍ତ୍ତୀ ଜଞ୍ଜାଳକୁ ଇତି ମଧ୍ୟରେ ଅତିକ୍ରମି ଯାଇଥିଲେ କ୍ଷେତ୍ରବାସୀ । ୧୯୬୬ ଖ୍ରୀ: ରୁ ଯେଉଁ ଉଜ୍ଜ୍ୱଳ ଅଧ୍ୟାୟଟି ଆରମ୍ଭ ହେବାର ଥିଲା - ତାହା ପୂର୍ବରୁ ଉଲ୍ଲିଖିତ ବଲାଙ୍ଗିର ରହଣିର ପାଞ୍ଚ ବର୍ଷ ବୋଲି କୁହାଯାଇଛି । ପାଠ୍ୟପୁସ୍ତକ ଉପଯୋଗୀ ଗ୍ରନ୍ଥ ପ୍ରସ୍ତୁତ କରିବାର ଯେଉଁ ସଫଳତାର ସ୍ୱାଦ ଦୁହେଁ ଚାଖିସାରିଥିଲେ ତାହର ପରବର୍ତ୍ତୀ ଅଧ୍ୟାୟରେ ଆମେ 'ଅଳଙ୍କାର ଓ ଅଳଙ୍କାର ତତ୍ତ୍ୱ' ଗ୍ରନ୍ଥଟିକୁ ରଖିପାରିବା । ଏହି ସମୟର ଏକ ସମବେତ ପ୍ରଚେଷ୍ଟା 'ବିଫଳତା ସପକ୍ଷରେ' କବିତା ସଙ୍କଳନ ଓ ପୋଷ୍ଟର କବିତା ଲେଖା । ୧୯୭୦ ମସିହା ବେଳକୁ

ପ୍ରକାଶିତ ହେଲା ଏକ ନିଜର ଗଳ୍ପ ସଂକଳନ 'ଫୁଲର କବର' ଓ କବିତା ସଂକଳନ 'ଉଚ୍ଚାରଣ' ସହିତ ସେ ୧୦ ଜଣ କବିଙ୍କ ସହିତ ମିଶି ପ୍ରକାଶ କରିଥିଲେ 'ମୁକ୍ତ ଦଶକ' କବିତା ସଙ୍କଳନ । ଯେଉଁ ସାରସ୍ୱତ ସଂଗଠନ ଓ ସାହିତ୍ୟିକ ସଂପାଦନା କାର୍ଯ୍ୟଟି ପ୍ରତି ସେ ଆଜୀବନ ଅନୁରକ୍ତ ଥିଲେ ଏବଂ ଯାହା ଓଡ଼ିଆ ଗବେଷଣା ପରିଷଦ ଓ 'ଏଷଣା' ପତ୍ରିକା ପ୍ରକାଶନରେ ଏକ ଚୂଡ଼ାନ୍ତ ରୂପ ନେଇଥିଲା ତାହାର ଏକ ପ୍ରାଥମିକ ଚିତ୍ର ଆମେ ଏହି ବଲାଙ୍ଗୀର ରହଣିକାଳ ରେ 'ଅନ୍ୱେଷା ସଂସଦ' ଗଠନରୁ ପାଇଥାଉ । ଏହି ଅନୁଷ୍ଠାନ ଥିଲା - ସର୍ଜନାତ୍ମକ ସମାଲୋଚନା ପ୍ରତି ଉତ୍ସର୍ଗୀକୃତ ।

ବଲାଙ୍ଗୀରରୁ ଖଲ୍ଲିକୋଟ ଆସନ୍ତି କ୍ଷେତ୍ରବାସୀ ୧୯୭୧ ମସିହା ବେଳକୁ ଆଉ ସେଇଠି ଆରମ୍ଭ ହୁଏ ସମୀକ୍ଷା ସଂସଦ । ଏଇ ସମୀକ୍ଷା ସଂସଦର ସଂକଳ୍ପରେ ସାହିତ୍ୟିକ କର୍ମର ସୃଜନଶୀଳତା କବି କ୍ଷେତ୍ରବାସୀଙ୍କର ଆନୁଷ୍ଠାନିକ ଉତ୍ତରଣ ଘଟେ । ସାହିତ୍ୟିକ ସମୀକ୍ଷା କ୍ଷେତ୍ରକୁ ସେ ଲେଖନ୍ତି ପ୍ରଥମ ସମାଲୋଚନା ଗ୍ରନ୍ଥ - 'କବି ନୀଳକଣ୍ଠ' । ପୁଣି ସମୀକ୍ଷା ସଂସଦର ନିଷ୍କ୍ରିୟତା ପରେ ନିଜର ଅନ୍ୟାନ୍ୟ ସାହିତ୍ୟିକ ସମାଲୋଚନା- " କବି ଚରିତ ରାଧାନାଥ" (୧୯୭୫), ନାରୀ କବି ଅନ୍ନପୂର୍ଣ୍ଣା :କବି ରଚିତ ଓ କାବ୍ୟ ଚର୍ଚ୍ଚା (୧୯୭୯) ଏବଂ ତାଙ୍କର 'ରଚନାଶ୍ରୀ' ଗ୍ରନ୍ଥ । କବି ଓ କାମିନୀ (୧୯୮୨) ଗ୍ରନ୍ଥ ମଧ୍ୟ ପ୍ରକାଶିତ ହୋଇଥିଲା ଏବଂ ତାଙ୍କ ପରିକଳ୍ପନାରେ ସ୍ଥାନ ପାଇଥିଲା ଏକ "ସାରସ୍ୱତ ଗ୍ରନ୍ଥମାଳା" ସିରିଜ୍ । ଏହି ପର୍ଯ୍ୟାୟରେ ୧୯୮୪ ରେ ପ୍ରକାଶ ପାଇଥିଲା "କବି ଅର୍ଜୁନ ଦାସ" ଗ୍ରନ୍ଥ ।

ଶ୍ରୀ ଜଗନ୍ନାଥ ପଦ୍ୟାବଳୀ ସଂଗ୍ରହ ଓ ସଙ୍କଳନ ଏହି ପର୍ଯ୍ୟାୟର ଏକ ଉତ୍ସାହଜନକ କର୍ମ ଥିଲା କ୍ଷେତ୍ରବାସୀଙ୍କର । କ୍ଷେତ୍ରବାସୀ ଏତିକି ବେଳକୁ ଶ୍ରୀକ୍ଷେତ୍ରକୁ ନିଜର କର୍ମକ୍ଷେତ୍ରରେ ସାଉଁଟିବାର ଆଗ୍ରହରେ ହଜିଯାଇଥାନ୍ତି । ଏହି ଗ୍ରନ୍ଥମାଳା ପ୍ରକାଶନରେ ଅପୂର୍ବ ଆନନ୍ଦ ଲାଭ କରୁଥିଲେ ।

୧୯୭୮ ଖ୍ରୀ : ରେ କଟକ ଆସନ୍ତି ଓ ପରେ ପରେ ଜନ୍ମନିଏ 'ଓଡ଼ିଆ ଗବେଷଣା ପରିଷଦ' ଓ 'ଏଷଣା' ପତ୍ରିକା । ଇତିମଧ୍ୟରେ ତାଙ୍କର ସୃଜନଶୀଳ, ସଂଗଠକ ମନ ଗବେଷଣା ଓ ସମୀକ୍ଷା କାର୍ଯ୍ୟପ୍ରତି ଅତ୍ୟନ୍ତ ଆଗ୍ରାହାନ୍ୱିତ ହୋଇପଡ଼ିଥାଏ । ସେ ନିଜେ ମଧ୍ୟ ୧୯୭୬ ଖ୍ରୀ: ରେ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ପାଇଥାନ୍ତି ଡକ୍ଟରେଟ୍ "ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ" ସନ୍ଦର୍ଭ ପାଇଁ ।

ମୁଖ୍ୟତଃ, ପାଶ୍ଚାତ୍ୟ ପ୍ରଭାବ ଓ ପ୍ରାଚ୍ୟମାନସ ଏହି ଦୁଇଟିର ସମନ୍ୱୟାତ୍ମକ ଭିତ୍ତି ଉପରେ ସେ ସ୍ଥାପିତ କରିଥିଲେ "ଓଡ଼ିଆ ଗବେଷଣା ପରିଷଦ' କୁ - ଯାହା ଓଡ଼ିଶାରେ ରହିଯାଇଛି କିଛିଟା ଅନାଲୋଚିତ ବା ଉପେକ୍ଷିତ । ବିଶ୍ୱ ସମୀକ୍ଷା ଜଗତର ସମାନ୍ତରରେ ଓଡ଼ିଶାରେ ସେହି ସବୁ ବିଦ୍ୟାର ଆଦର ଓ ଆଲୋଚନା ବଢ଼ାଇବାକୁ ପଡ଼ିବ । ଏହି

ଦୃଷ୍ଟିରୁ ସେ ସମୀକ୍ଷା ଓ ଗବେଷଣାରେ ଯେଉଁ ଅଭିନବ ଦିଗନ୍ତଟିକୁ ଛୁଇଁବାକୁ ଚାହୁଁଥିଲେ କଟକ ରହଣି କାଳରେ ଡଃ କୃଷ୍ଣ ଚରଣ ବେହେରା, ଚିତ୍ତରଂଜନ ଦାସଙ୍କ ପରି ଅନ୍ୟାନ୍ୟ ବହୁ ବିଷୟବିତ୍ ବିଦ୍ୱାନମାନଙ୍କ ସାହଚର୍ଯ୍ୟରେ ତାହା ଫଳବତୀ ହୋଇଥିଲା ।

ଡଃ କ୍ଷେତ୍ରବାସୀ ନାୟକ - ଜନ୍ମ ଅକ୍ଟୋବର ୪, ୧୯୩୮ ମସିହା ଓ ମୃତ୍ୟୁ ୨୫ ଜାନୁଆରୀ ୧୯୮୬ ମସିହା । ମୋଟ୍ ୪୬ ବର୍ଷ ୪ ମାସ ୨୧ ଦିନର ଜୀବନ । ଏଇ ସଂକ୍ଷିପ୍ତ ଜୀବନ କାଳ ମଧ୍ୟରେ ବିପୁଳ ଶ୍ରଦ୍ଧା ଓ ଅନୁରାଗରେ ସେ ଜୀବନକୁ ଅନୁଭବ କରିଥିଲେ । ସାଥୀ, ସଙ୍ଗାତ, ଶିଷ୍ୟ, ସତୀର୍ଥ ସମସ୍ତଙ୍କ ପ୍ରତି ତାଙ୍କର ଥିଲା ଆପଣାର ଭାବ । ସୃଜନଶୀଳ ସାହିତ୍ୟ ଆଉ ସମୀକ୍ଷାତ୍ମକ ଗବେଷଣା ଉଭୟ ପ୍ରତି ସେ ଥିଲେ ଅନୁରକ୍ତ - ଠିକ୍ ସେମିତି ସେ ସଂକଳନ ଓ ସଂପାଦନା ପାଇଁ ଥିଲେ ଅତ୍ୟନ୍ତ ଆଗ୍ରହାନ୍ୱିତ ଜଣେ ସମର୍ପିତ ବ୍ୟକ୍ତି ! ଏହାରି ଭିତରେ ତାଙ୍କର ବ୍ୟକ୍ତିତ୍ୱକୁ ଯାହା ମହିମାନ୍ୱିତ କରିଥିଲା ତାହା ଥିଲା ତାଙ୍କର କର୍ମନିଷ୍ଠା ଓ ସମସ୍ତଙ୍କୁ ଭଲପାଇବାର ସଂକଳ୍ପ ।

ନୂଆ କିଛି କରିବାର ଇଚ୍ଛା କେବଳ ନୁହେଁ, ସାହିତ୍ୟର ଯଥାର୍ଥ ଅର୍ଥରେ ବିଶ୍ୱପ୍ରବାହକୁ ସ୍ୱଆତ୍ମାରେ ଏକୀଭୂତ କରିବାର ପ୍ରଚେଷ୍ଟା ଥିଲା କ୍ଷେତ୍ରବାସୀ ନାୟକଙ୍କର ସ୍ୱଧର୍ମ । ଶ୍ରୀ ଜଗନ୍ନାଥଙ୍କର ବିଶ୍ୱବୋଧ ପରି ତାଙ୍କର ନିଜର ମନୋସ୍ଥିତି ଥିଲା ସୁପ୍ରତିଷ୍ଠିତ ନିଜସ୍ୱ ଭାବନାରେ ସମୃଦ୍ଧ ପୁଣି ବିଶ୍ୱ ଚେତନାରେ ଉଦ୍‌ବୁଦ୍ଧ । ବୃକ୍ଷପରି ସେ ଥିଲେ ଦୃଢ଼ମୂଳ - ଆଉ ଶାଖା ପ୍ରଶାଖା ପତ୍ରଫୁଲରେ ହରାଭରା ଆକାଶକୁ ଛୁଇଁବାର ପ୍ରଚେଷ୍ଟାରେ ବ୍ରତୀ ।

ଡଃ କ୍ଷେତ୍ରବାସୀ ନାୟକ ଲେଖିଛନ୍ତି - "ଆମେ ଜାଣୁ, ସବୁ ପ୍ରକାର ଭୌତିକ ଐଶ୍ୱର୍ଯ୍ୟକୁ କାଳ କବଳିତ କରିଛି । କେତେ ସମୃଦ୍ଧ ସଭ୍ୟତାର ବିଲୟ ଘଟିଛି । ନାନାଦି ସ୍ଥାପତ୍ୟ, କୀର୍ତ୍ତି, ଶିଳ୍ପ ଓ କଳାର ନିପୁଣ ନିର୍ମାଣ ଧୂଳିସାତ୍ ହୋଇଯାଇଛି । ତାହାର ଭଗ୍ନାବଶେଷକୁ ହୁଏତ ଆମେ ଆବିଷ୍କାର କରିଛୁଁ ମହେଞ୍ଜୋଦାରୋ, ହରପ୍ପା ଆବିଷ୍କାର ଭଳି ସେଥିରୁ ଆମେ ପ୍ରାଚୀନ କୃଷ୍ଟିର ନମୁନା ସଂଗ୍ରହ କରିଛୁଁ । ଏଗୁଡ଼ିକ ଯେକୌଣସି ରାଷ୍ଟ୍ର ଓ ସମାଜର ଭୌତିକ ସତ୍ତା । ନାନାଦି ନିର୍ମାଣ ଯୋଜନା, କଳା-ସ୍ଥାପତ୍ୟର ନିଦର୍ଶନ ଏହାର ଅଂଶ ବିଶେଷ । ଏମାନେ କ୍ଷୟିଷ୍ଣୁ କିନ୍ତୁ ସାହିତ୍ୟ ଏକ ବ୍ୟତିକ୍ରମ । ସାହିତ୍ୟର ଅନ୍ୟନାମ ଅକ୍ଷର କୀର୍ତ୍ତି, ଆଲୋକରେ ଆତ୍ମପ୍ରକାଶ କରିଥିବା କୌଣସି ଉଚ୍ଚାରଣ କାଳ କବଳିତ ହୁଏ ନାହିଁ । ଅକ୍ଷରକୁ ଲିଭାଇ ଦେବା କିମ୍ବା ତାକୁ ଜୀବନରୁ ମାରି ଦେବାର ପଣ କରି କେହି କେବେ ବିଜୟୀ ହୋଇନାହିଁ ।"

ଡଃ କ୍ଷେତ୍ରବାସୀ ନାୟକଙ୍କ ସାହିତ୍ୟ କର୍ମ ଏହି ଉଚ୍ଚାରଣର ପ୍ରମାଣ ଭାବରେ ଆଜି ବର୍ତ୍ତମାନ !



# ପ୍ରାବନ୍ଧିକ କ୍ଷେତ୍ରବାସୀ ନାୟକ

ଡଃ ପ୍ରହ୍ଲାଦ ଚରଣ ମହାନ୍ତି

ଓଡ଼ିଆ ସାହିତ୍ୟରେ ସାହିତ୍ୟ ସମାଲୋଚକ ଓ ପ୍ରାବନ୍ଧିକଙ୍କର ଆବଶ୍ୟକତା ଯେତେବେଳେ ବେଶୀ ଭାବେ ଅନୁଭବ କରାଯାଉଥିଲା, ସେତେବେଳେ ଅଧ୍ୟାପକ ଡଃ କ୍ଷେତ୍ରବାସୀ ନାୟକ ସାହିତ୍ୟ-ସମାଲୋଚନା କ୍ଷେତ୍ରରେ ବଳିଷ୍ଠ ଲେଖନୀ ଚଳାଇ ଏହି ବିଭାଗକୁ ସମୃଦ୍ଧ କରିବା ପାଇଁ ଉଦ୍ୟମ କରିଥିଲେ । ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ନିଜର ସାରସ୍ୱତ- ପାରଦର୍ଶିତା ପ୍ରଦର୍ଶନ କରିଥିଲେ ମଧ୍ୟ ସାହିତ୍ୟାଲୋଚନା ଓ ପ୍ରବନ୍ଧ ପ୍ରତି ତାଙ୍କର ଗଭୀର ଅନୁରାଗ ଥିଲା । ଆଧୁନିକ ଓଡ଼ିଆ ସାହିତ୍ୟରେ ଫକୀରମୋହନ, ରାଧାନାଥ, ମଧୁସୂଦନ ତିନିଜଣ ମହାରଥୀ ଯଥାକ୍ରମେ ଗଳ୍ପ- ଉପନ୍ୟାସ, କାବ୍ୟ-ଖଣ୍ଡକାବ୍ୟ ଓ କ୍ଷୁଦ୍ରକାବ୍ୟ ରଚନା କରି ସମଗ୍ର ଭାରତୀୟ ସାହିତ୍ୟରେ ଓଡ଼ିଆ ସାହିତ୍ୟକୁ ଏକ ଉନ୍ନତ ସ୍ଥାନରେ ଅବସ୍ଥାପିତ କରିଥିଲେ ମଧ୍ୟ ଏମାନେ ମୌଳିକ ପ୍ରବନ୍ଧ ଓ ସାହିତ୍ୟାଲୋଚନାରେ ଲେଖନୀ ଚଳାଇ ଓଡ଼ିଆ ସାହିତ୍ୟରେ ନବଦିଗନ୍ତ ଉନ୍ମୋଚନ କରିଥିଲେ । ମାତ୍ର ବିଂଶ ଶତାବ୍ଦୀର ପ୍ରାୟ ମଧ୍ୟ ଭାଗରୁ ବିଶ୍ଳେଷଣାତ୍ମକ ଓ ଇତିହାସଭିତ୍ତିକ ସାହିତ୍ୟାଲୋଚନାର ସୂତ୍ରପାତ ଘଟିଥିବା ଲକ୍ଷ୍ୟ କରାଯାଏ । ବିଶ୍ୱନାଥ କର, ପଣ୍ଡିତ ନୀଳକଣ୍ଠ ଦାସ, ମୃତ୍ୟୁଞ୍ଜୟ ରଥ ପ୍ରଭୃତି ଆଲୋଚକଗଣ ଏ ଧାରାର ଜଣେ ଜଣେ ପଥିକୃତ ପ୍ରତିଭା ।

ଓଡ଼ିଆ ସାହିତ୍ୟ-ସମାଲୋଚନାକୁ ବୈଜ୍ଞାନିକ ଉପାୟରେ, ତଥା ଐତିହାସିକ ଭିତ୍ତିରେ ତଥ୍ୟପୂର୍ଣ୍ଣ ଶୈଳୀରେ ରୂପ ଦେବାରେ ଯେଉଁ କେତେକ ସାହିତ୍ୟ-ସମାଲୋଚକ ଯଶସ୍ୱୀ ହୋଇଛନ୍ତି, ସେମାନଙ୍କ ମଧ୍ୟରେ ଅଗ୍ରଣୀ ଥିଲେ ସ୍ୱର୍ଗତ ଅଧ୍ୟାପକ ଡଃ ନଟବର ସାମନ୍ତରାୟ । ସେ କେବଳ ତୁଳନାତ୍ମକ ଭାବେ ଲେଖକମାନଙ୍କ ରଚନାବଳୀକୁ ତର୍ଜମା କରିନାହାନ୍ତି । ସେ ଗାଣିତିକ ଉପାୟରେ ସୃଷ୍ଟି ସମ୍ଭାରର କାଳ ବିଭାଜନ କରି ଓଡ଼ିଆ ସାହିତ୍ୟ ସମାଲୋଚନାକୁ ନୂତନ ଆଲୋକରେ ଉଦ୍‌ଭାସିତ କରିଯାଇଛନ୍ତି ।

ପରବର୍ତ୍ତୀ ସାହିତ୍ୟ ସମାଲୋଚକମାନେ ମୁଖ୍ୟତଃ ଡଃ ସାମନ୍ତରାୟଙ୍କ ସାହିତ୍ୟାଲୋଚନା ପଦ୍ଧତିର ଜଣେ ଜଣେ ନିଷ୍ଠାପର ଅନୁଗାମୀ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଡଃ ନାୟକ ଯେଉଁ କେତୋଟି ସାହିତ୍ୟ ସମାଲୋଚନା ସମ୍ବନ୍ଧୀୟ ପ୍ରବନ୍ଧ ଲେଖିଛନ୍ତି ଅଥବା ସଂକଳନ ପ୍ରକାଶନ କରିଛନ୍ତି ସେଥିରେ ତାଙ୍କର ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ଐତିହାସିକ ବିଚାରଧାରା ସ୍ପଷ୍ଟ ଭାବେ ପ୍ରତିପାଦିତ । ସେ ଉତ୍ତମ ରୂପେ ଜାଣିଥିଲେ ଜଣେ ସାରସ୍ୱତ ସ୍ରଷ୍ଟାର ସୃଷ୍ଟି ସମ୍ଭାରର କେବଳ ବିଷୟ ବିଶ୍ଳେଷଣ କରିଦେଲେ ପାଠକ

ନିକଟରେ ଯଥାର୍ଥ ରୂପେ ଉପସ୍ଥାପନ କରିହୁଏ ନାହିଁ । କାଳର ପରିପ୍ରେକ୍ଷୀରେ ଏବଂ ସମସାମୟିକ ସମୟ-ଖଣ୍ଡରେ ସ୍ରଷ୍ଟାର ରଚନାବଳୀକୁ ତୁଳନାତ୍ମକ ଭାବେ ବିଚାର ନ କଲେ ସ୍ରଷ୍ଟାର ସୃଷ୍ଟି-ମାନସକୁ ଉନ୍ମୋଚନ କରିବା ସମ୍ଭବ ନୁହେଁ । ଡଃ ନାୟକଙ୍କର ପ୍ରାୟ ସମସ୍ତ ସାହିତ୍ୟାଲୋଚନା ସମ୍ବନ୍ଧୀୟ ପ୍ରବନ୍ଧ ଏହି ଆଦର୍ଶ ଉପରେ ପ୍ରତିଷ୍ଠିତ ।

ଡଃ ନାୟକ ରଚନା କରିଥିବା ସମସ୍ତ ପ୍ରବନ୍ଧକୁ ନିମ୍ନଲିଖିତ ବିଭାଗରେ ବିଭକ୍ତ କରାଯାଇପାରେ । ୧- ସାହିତ୍ୟାଲୋଚନାଧର୍ମୀ ପ୍ରବନ୍ଧ, ୨- କାବ୍ୟତତ୍ତ୍ୱଧର୍ମୀ ପ୍ରବନ୍ଧ, ୩- ସାରସ୍ୱତ ସ୍ରଷ୍ଟାଙ୍କ ଜୀବନୀଧର୍ମୀ ପ୍ରବନ୍ଧ, ୪- ଗବେଷଣା ଓ ସଂପାଦନାର ପଦ୍ଧତି ସମ୍ବନ୍ଧୀୟ ପ୍ରବନ୍ଧ, ୫- ସଂକଳିତ ସଂପାଦିତ ଗ୍ରନ୍ଥର ମୁଖବନ୍ଧ- ନିହିତ ପ୍ରବନ୍ଧ । ଏହି ପ୍ରବନ୍ଧଗୁଡ଼ିକ ମଧ୍ୟରୁ କେତେକ ସ୍ୱତନ୍ତ୍ର ପୁସ୍ତକ ଆକାରରେ ତାଙ୍କ ଜୀବଦ୍ଦଶାରେ ପ୍ରକାଶ କରାଯାଇଛି । ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇଥିବା ଓ ସଂକଳନ ଆକାରରେ ମୁଦ୍ରିତ ହୋଇ ନ ଥିବା ଆଉ କେତେକ ପ୍ରବନ୍ଧକୁ ତାଙ୍କ ତିରୋଧାନ ପରେ ଓଡ଼ିଆ ଗବେଷଣା ପରିଷଦ ସଂକଳନ କରି ପ୍ରକାଶନ କରି ତାଙ୍କର ଅମର ଆତ୍ମା ପ୍ରତି ସମ୍ମାନ ଜଣାଇବା ସଙ୍ଗେ ସଙ୍ଗେ ଗୋଟିଏ ମହାନ୍ ଜାତୀୟ କର୍ତ୍ତବ୍ୟ ସଂପାଦନ କରିଛନ୍ତି । ସାହିତ୍ୟାଲୋଚନାଧର୍ମୀ ପ୍ରବନ୍ଧଗୁଡ଼ିକୁ ଅନୁଧ୍ୟାନ କଲେ ଜଣାପଡ଼େ ଯେ, ପ୍ରାବନ୍ଧିକ କ୍ଷେତ୍ରବାସୀଙ୍କ ବିଚାର ବିଶ୍ଳେଷଣରେ ଏକ ସ୍ୱତନ୍ତ୍ରତା ବିଦ୍ୟମାନ । ସ୍ରଷ୍ଟାଙ୍କ ସୃଷ୍ଟି ସମୀକ୍ଷା କଲାବେଳେ ତାଙ୍କ ଅନ୍ତର୍ଭେଦୀ ଦୃଷ୍ଟି ସ୍ରଷ୍ଟାଙ୍କ ଭାବନାର ଅଥଳ ସାଗରକୁ ମନ୍ଥନ କରିବାରେ ସମର୍ଥ ହୋଇଛି ବୋଲି ହୃଦ୍‌ବୋଧ ହୁଏ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ସ୍ରଷ୍ଟାଙ୍କ ପ୍ରାସଙ୍ଗିକ ବର୍ଣ୍ଣନା ଓ ବକ୍ତବ୍ୟର ତୁଳନାତ୍ମକ ମୂଲ୍ୟାୟନ କେତେକ ସ୍ଥଳରେ କରିଥିଲେ ମଧ୍ୟ ସାହିତ୍ୟାଲୋଚନାର ଗତାନୁଗତିକତାରେ ସେ ଭାସିଯାଇନାହାନ୍ତି । ଏହିଠାରେ ତାଙ୍କ ଆଲୋଚନାର ସ୍ୱତନ୍ତ୍ରତା ଲକ୍ଷ୍ୟଣୀୟ । ତାଙ୍କର "ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟର ଧାରା", "ଆଧୁନିକ ଓଡ଼ିଆ କାବ୍ୟ କବିତାରେ ପାଶ୍ଚାତ୍ୟ ପ୍ରଭାବ", "ଓଡ଼ିଆ ଦୂତ କାବ୍ୟ", ଆଧୁନିକ କବି ଓ ତାର ନୂତନ ପୃଥିବୀ", "ଗଙ୍ଗାଧର କାବ୍ୟ କବିତାରେ ବିରହ-ବେଦନା", "ଗୀତି କବିତାର କଥା", "ଗାଥା କବିତା ଓ ଗୀତି କବିତା", "ଗୀତିକବିତାର ବିକାଶ ଧାରା", "ଦୃଶ୍ୟକାବ୍ୟ ଓ ବ୍ୟଙ୍ଗଦୃଷ୍ଟି", "ଫକୀରମୋହନ ସାରସ୍ୱତ ଦୃଷ୍ଟି", "ଲେଖକର ସ୍ୱର୍ଗ ଓ ମର୍ତ୍ତ୍ୟ", "ସାହିତ୍ୟ ଓ ଆମ ସାହିତ୍ୟ", "ଆଧୁନିକତା ଓ ଓଡ଼ିଆ ସାହିତ୍ୟ", "କବିତାର କଥା" (ଦଶପୃଷ୍ଠାର କ୍ଷୁଦ୍ର ପୁସ୍ତିକା ଯାହା ଡଃ କ୍ଷେତ୍ରବାସୀ ନାୟକ ଓ ତାଙ୍କ ପତ୍ନୀ ଅଧ୍ୟାପିକା ଶ୍ରୀମତୀ ଲାବଣ୍ୟ ନାୟକଙ୍କ ଦ୍ୱାରା ଲିଖିତ) ପ୍ରଭୃତି ସାହିତ୍ୟାଲୋଚନାରେ ପ୍ରାବନ୍ଧିକ କ୍ଷେତ୍ରବାସୀ ନିଜସ୍ୱ ଦୃଷ୍ଟିକୋଣରୁ ବିଷୟଗୁଡ଼ିକୁ ବିଚାର କରିଛନ୍ତି । ଅବଶ୍ୟ ତାଙ୍କ ଆଲୋଚନାକୁ ବୌଦ୍ଧିକ ଓ ତୁଳନାତ୍ମକ କରିବାକୁ ଯାଇ

ସଂସ୍କୃତ, ଓଡ଼ିଆ, ବଙ୍ଗଳା, ଇଂରାଜୀ ସାହିତ୍ୟରୁ ପ୍ରାସଙ୍ଗିକ ଉଦ୍ଧୃତି ସନ୍ନିବେଶ କରି ତାଙ୍କର ବହୁଶାସ୍ତ୍ରଦର୍ଶିତାର ପ୍ରମାଣ ଥୋଇଛନ୍ତି ।

ବିଭିନ୍ନ ସଂକଳନରେ ସ୍ଥାନିତ ହୋଇଥିବା କେତେକ ପ୍ରବନ୍ଧରେ ଡଃ ନାୟକ କାବ୍ୟତତ୍ତ୍ୱ ସମ୍ବନ୍ଧରେ ଉଚ୍ଚକୋଟୀର ଆଲୋଚନା ଉପସ୍ଥାପନ କରିଛନ୍ତି । "କାବ୍ୟ ପୁରୁଷର କଥା" ପ୍ରବନ୍ଧ ସଂକଳନରେ ସନ୍ନିବେଶ ହୋଇଥିବା "କାବ୍ୟ ପୁରୁଷର କଥା", ପ୍ରାଚୀନ କବିଙ୍କ କାବ୍ୟତତ୍ତ୍ୱ", "କାବ୍ୟ ପ୍ରୟୋଜନ ଓ ନନ୍ଦନ ତତ୍ତ୍ୱର କଥା", "ଆଧୁନିକତା ଓ ଆଧୁନିକ କବିତାତତ୍ତ୍ୱ" ପ୍ରଭୃତି ପ୍ରବନ୍ଧରେ ଡଃ ନାୟକଙ୍କର ମୌଳିକ ଦୃଷ୍ଟିକୋଣ ଲକ୍ଷ୍ୟ କରିବା କଥା । "କାବ୍ୟ ପ୍ରୟୋଜନ ଓ ନନ୍ଦନତତ୍ତ୍ୱର କଥା" ପ୍ରବନ୍ଧରେ ସୌନ୍ଦର୍ଯ୍ୟତତ୍ତ୍ୱକୁ ପ୍ରାଞ୍ଜଳ ଭାବେ ବୁଝାଇବାକୁ ଯାଇ ସେ କହିଛନ୍ତି, "ଇନ୍ଦ୍ରିୟଲବ୍ଧ ରୂପର ଚର୍ଚ୍ଚା ତଥା ସୌନ୍ଦର୍ଯ୍ୟର ସ୍ୱରୂପ ନିରୂପଣ, କଳା-ତତ୍ତ୍ୱର ଅବଧାରଣା ଇତ୍ୟାଦି ହେଉଛି ଏହି ଶାସ୍ତ୍ରର ଆଲୋଚ୍ୟ ବିଷୟ । କାବ୍ୟ ସୃଷ୍ଟିରେ କଳ୍ପନାର ଭୂମିକା କ'ଣ; କାବ୍ୟ, ଜ୍ଞାନାତ୍ମିକା ବ୍ୟାପାରର ସୃଷ୍ଟି କି ଭାବାବେଗର ସୃଷ୍ଟି- ପ୍ରଭୃତି ପ୍ରଶ୍ନର ମୀମାଂସା ଏହି ଶାସ୍ତ୍ରର ଆଧାରରେ କରାଯାଇଥାଏ । ଇତିହାସ ଓ ବିଜ୍ଞାନ ସହିତ କାବ୍ୟର ସମ୍ପର୍କ କିପରି- ଏହା ମଧ ଏସ୍ଥେଟିକ୍ ମାନଦଣ୍ଡରେ ଆଲୋଚକମାନେ ପ୍ରଥମେ ପ୍ରଥମେ ବିଚାର କରୁଥିଲେ । ମୋଟ ଉପରେ ଶିଳ୍ପୀ,ଲେଖକ ଓ ଦାର୍ଶନିକମାନେ ଯେଉଁ ବିଦ୍ୟାର ଆଶ୍ରୟରେ ଶିଳ୍ପ-କଳାର ସନାତନ ଗୁଣ ଏବଂ ମୂଲ୍ୟ-ସମ୍ପର୍କ ଇତ୍ୟାଦି ଦିଗ ବିବେଚନା କରୁଥିଲେ, ଇମାନୁଏଲ୍ କାଣ୍ଟ (୧୭୨୪-୧୮୦୪) । ସେହି ସୌନ୍ଦର୍ଯ୍ୟତତ୍ତ୍ୱ ବିଚାର ଅବସରରେ Transcendental aesthetics ର କଥା ଉଠାଇଥିଲେ । x x ସାଧାରଣ ବାସନା କାମନାର ଜଗତଠାରୁ ପୃଥକ ଏବଂ କୌଣସି ସଂସ୍କାର ବନ୍ଧନରୁ ମୁକ୍ତ ଏପରି ଏକ ଇଲାକାରେ ସୌନ୍ଦର୍ଯ୍ୟର ସୃଷ୍ଟି ଓ ସଂଚାର ସମ୍ଭବ ହୋଇଥାଏ ।

ଡଃ କ୍ଷେତ୍ରବାସୀ ନାୟକଙ୍କ ପ୍ରବନ୍ଧ ରଚନାର ଏକ ବଳିଷ୍ଠ ଦିଗ ହେଉଛି କେତେକ ସାରସ୍ୱତ ସ୍ରଷ୍ଟାଙ୍କ ଜୀବନୀ ଓ କୃତି ସମ୍ବନ୍ଧରେ ତଥ୍ୟମୂଳକ ଓ ତାତ୍ତ୍ୱିକ ଆଲୋଚନା ଲିପିବଦ୍ଧ କରି ପାଠକଙ୍କର ଦୃଷ୍ଟି ଆକର୍ଷଣ କରିବା । ଏ କ୍ଷେତ୍ରରେ ତାଙ୍କର କାଳଜୟୀ କୃତି ହେଉଛି ତାଙ୍କ ଦ୍ୱାରା ସଂପାଦିତ ଓ ବ୍ରହ୍ମପୁର ପୁସ୍ତକ ଭଣ୍ଡାର ଦ୍ୱାରା ପ୍ରକାଶିତ ରାଧାନାଥ ଗ୍ରନ୍ଥାବଳୀର ଆଦ୍ୟରେ ସନ୍ନିବେଶିତ "କବି ଚରିତ ରାଧାନାଥ (୧୮୪୮-୧୯୦୮) । ଏହି ପ୍ରବନ୍ଧକୁ ଛ' ଭାଗରେ ବିଭକ୍ତ କରି ପ୍ରଥମ ବିଭାଗରେ "ଜନ୍ମ : ଶୈଶବ କାଳ" ଦ୍ୱିତୀୟ ଭାଗରେ "କବି ପ୍ରତିଭା ଉନ୍ମେଷ ଓ ଉତ୍ତରଣ", ତୃତୀୟ ଭାଗରେ "କବିକଳି" ଚତୁର୍ଥ ଭାଗରେ "ଶିକ୍ଷକ ଓ ପ୍ରଶାସକ ରାଧାନାଥ", ପଞ୍ଚମ ଭାଗରେ "ଅଶ୍ରୁତର୍ପଣ ଓ ପ୍ରତିଭା ଅର୍ଚ୍ଚନା",

ଷଷ୍ଠରେ "ରାଧାନାଥଙ୍କ କାବ୍ୟ ଦର୍ଶନ" ଉପରେ ବିଶଦ୍ ଆଲୋଚନା କରି ଗ୍ରନ୍ଥ-ପ୍ରବେଶକୁ ସରଳ-ସୁଗମ ଓ ଆକର୍ଷଣୀୟ କରିପାରିଛନ୍ତି । ଏହି "କବି ଚରିତ ରାଧାନାଥ" ପ୍ରବନ୍ଧଟି ଡଃ ନାୟକଙ୍କର ଉଚ୍ଚ ମେଧା-ଶକ୍ତି ଓ ଅନ୍ୱେଷା ଶକ୍ତି, ଗଭୀର ବିଷୟଜ୍ଞାନ, ତୁଳନାତ୍ମକ ବିଚାରବୋଧ ଓ ଅସୀମ ଅଧ୍ୟବସାୟର ପ୍ରମାଣ ବହନ କରେ । ରାଧାନାଥଙ୍କ ଉପରେ ପ୍ରକାଶିତ ଉଚ୍ଚକୋଟୀର ଗବେଷଣା ସନ୍ଦର୍ଭ ଅପେକ୍ଷା ଏହା କୌଣସି ଗୁଣରେ ନ୍ୟୂନ ନୁହେଁ । ଏହି ମୁଖବନ୍ଧକୁ ରାଧାନାଥ ଗ୍ରନ୍ଥାବଳୀ ରୂପକ ଦୁର୍ମୂଲ୍ୟ-ସଂପଦ-ଭରା ସୁରମ୍ୟ ଦୁର୍ଗର ସୂକ୍ଷ୍ମ କାରୁକାର୍ଯ୍ୟ-ପୂର୍ଣ୍ଣ ସୁଦୃଶ୍ୟ ମୁଖଶାଳା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କବିବର ରାଧାନାଥ ରାୟ ଓ ତାଙ୍କ ସମସାମୟିକ ସମାଜ, ସାହିତ୍ୟ ଓ ସ୍ରଷ୍ଟାଙ୍କ ବିଷୟରେ ସେ ବହୁ ଜ୍ଞାତବ୍ୟ-ତଥ୍ୟ ପରିବେଷଣ କରି ଗବେଷକମାନଙ୍କ ପାଇଁ ପଥ ଉନ୍ମୁକ୍ତ କରିଯାଇଛନ୍ତି ।

ଡଃ ନାୟକଙ୍କ ରଚିତ "କବି ଓ କାମିନୀ" ପୁସ୍ତକରେ ଯେଉଁ କେତେଜଣ କବିଙ୍କ ଜୀବନୀ ଓ ସେମାନଙ୍କ ସାରସ୍ୱତ କୃତିତ୍ୱ ସମ୍ବନ୍ଧରେ ସୂଚନା ଦିଆଯାଇଛି, ସେମାନେ ଓଡ଼ିଆ ସାହିତ୍ୟର ଜଣେ ଜଣେ କ୍ରାନ୍ତିକାରୀ ସାରସ୍ୱତ ମହାପୁରୁଷ । କବି ମଧୁସୂଦନ ରାଓ, କବି ବ୍ରଜନାଥ ବଡ଼ଜେନା, କବି ଫକୀରମୋହନ ସେନାପତି, କବିସୂର୍ଯ୍ୟ ବଳଦେବ ରଥ, କବି ଗଙ୍ଗାଧର ମେହେରଙ୍କ ସମ୍ବନ୍ଧରେ ତାଙ୍କର ଆଲୋଚନାଗୁଡ଼ିକ ଉପାଦେୟ ଓ ତଥ୍ୟପୂର୍ଣ୍ଣ ହୋଇଛି । "କବି ମଧୁସୂଦନ" ପ୍ରବନ୍ଧରେ ଗୋଟିଏ ସ୍ଥାନରେ ସେ ଉଲ୍ଲେଖ କରିଛନ୍ତି "ତେଣୁ ରାଧାନାଥ ହୁଅନ୍ତି, ମଧୁସୂଦନଙ୍କର ସାହିତ୍ୟ-ଗୁରୁ, ପରବର୍ତ୍ତୀ ପ୍ରସ୍ଥରେ ହୁଅନ୍ତି ପରମାତ୍ମୀୟ, ଯୌବନ ସଖା, ଜୀବନର ପରମହିତୈଷୀ, ପବିତ୍ର ସାହିତ୍ୟ ସେବାବ୍ରତର ପଥପ୍ରଦର୍ଶକ । ଏଇ ଯୁଗ୍ମ ମିଳନ ଇଂରେଜ ସାହିତ୍ୟରେ Coleridge ଓ Wordsworthଙ୍କ ମଧୁର ମିଳନ ସଦୃଶ-ସ୍ଥିତିର ଭୂମିକା ହୁଏତ ଏକ ସାଧନାର ମାର୍ଗ ଭିନ୍ନ। ପରସ୍ପରର ମତବାଦ ବ୍ୟକ୍ତିଗତ ଚେତନାର ପରିପୂରକ । ଜୀବନାଦର୍ଶ ସ୍ୱତନ୍ତ୍ର, କାବ୍ୟାଦର୍ଶ ସମଧର୍ମୀ ନୁହେଁ । ରାଧାନାଥ ଅନୁଭୂତିପ୍ରବଣ ଓ କଳାପ୍ରାଣ । ଜଗତରେ ଯାହା ସ୍ୱାଭାବିକ ଓ ବାସ୍ତବ, ରାଧାନାଥ ତା'ର କାବ୍ୟକାର । କବି ମଧୁସୂଦନ ରୀତି ଓ ନୀତିର କବି x x ଆଦର୍ଶର ଅବବୋଧରେ ଜୀବନକୁ ଗଢ଼ି ତୋଳିବାର ଚେଷ୍ଟା କରିଛନ୍ତି କବି ମଧୁସୂଦନ । ମଧୁସୂଦନଙ୍କ କବି ବ୍ୟକ୍ତିତ୍ୱ ଅପେକ୍ଷା ଶିକ୍ଷକ ବ୍ୟକ୍ତିତ୍ୱ ଅଧିକ ଉଜ୍ଜ୍ୱଳ । ତାଙ୍କର ଭକ୍ତି ନୀତି ଓ ଆଧ୍ୟାତ୍ମିକତାର ଓ ବଳିଷ୍ଠ ପରିଧି ଭିତରେ ଅଣନିଶ୍ୱାସୀ ହୋଇପଡ଼ିଛି ।"

ଡଃ ନାୟକଙ୍କର ଗୋଟିଏ ଉଲ୍ଲେଖଯୋଗ୍ୟ ଅବଦାନ ହେଉଛି ମଧ୍ୟଯୁଗର ଜଣେ ଅସାଧାରଣ କବି ଓ କଥାକାର ବ୍ରଜନାଥ ବଡ଼ଜେନାଙ୍କ ସମ୍ପର୍କରେ ଏକ ପ୍ରାମାଣିକ

ପ୍ରବନ୍ଧ ଲେଖି ଉକ୍ତ ପୁସ୍ତକରେ ସ୍ଥାନିତ କରିବା । ଓଡ଼ିଆ ରୀତିଯୁଗର ଅନ୍ୟତମ ସ୍ରଷ୍ଟା କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟାଦର୍ଶର ଜଣେ ସମକକ୍ଷ କବି ଏବଂ ସମର ତରଙ୍ଗ, ଗୁଣ୍ଡିଚା ବିଜେ, ଚତୁର ବିନୋଦ ରଚନା କରି ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥିଲେ ସୁଦ୍ଧା ଓଡ଼ିଆ ସାହିତ୍ୟର ବ୍ରଜନାଥ ବଡ଼ଜେନା ଯଥାର୍ଥ ସ୍ଥାନ ପାଇପାରିନାହାନ୍ତି । ପ୍ରତିଭାର ମୂଲ୍ୟାୟନ ଓ ସେଥିପ୍ରତି ସମ୍ମାନ ପ୍ରଦର୍ଶନ ହିଁ ପ୍ରତିଭା -ପରିସ୍ଫୁଟନ ମାର୍ଗକୁ ପ୍ରଶସ୍ତ ଓ ପୁଷ୍ପିତ କରେ । କେତେଜଣ ଏକଦେଶଦର୍ଶୀ ସାହିତ୍ୟାଲୋଚକଙ୍କ ବୀତସ୍ପୃହ ମନୋଭାବ ଓ କିଛି ଈର୍ଷାଳୁ ସାରସ୍ୱତ ସ୍ରଷ୍ଟାଙ୍କ ହୀନ ଚକ୍ରାନ୍ତ ଯୋଗୁ ସତ୍ୟର ଉନ୍ମୋଚନ ଘଟୁନାହିଁ ଓ ପତିଭାର ଯଥେଷ୍ଟ ପ୍ରଚାରରେ ଅନ୍ତରାୟ ସୃଷ୍ଟି ହେଉଛି । ବ୍ରଜନାଥ ବଡ଼ଜେନାଙ୍କ ସାହିତ୍ୟର ପ୍ରଚାର ବିମୁଖତା କିପରି ସମାଜ, ଶିକ୍ଷା, ଛାତ୍ରଙ୍କର କ୍ଷତି ସାଧନ କରିପାରେ, ସେ ସମ୍ପର୍କରେ ଏହି ଲେଖକର ଏକ ଅଭିଜ୍ଞତା ଏଠାରେ ଉଲ୍ଲେଖ କଲେ କିଛି ଅପ୍ରାସଙ୍ଗିକ ହେବ ନାହିଁ । ନୂଆକରି ସ୍ଥାପିତ ହୋଇଥିବା ଢେଙ୍କାନାଳ କଲେଜରେ ୧୯୫୯ ମସିହାରେ ଓଡ଼ିଆ ଅଧ୍ୟାପକ ରୂପେ ଯୋଗ ଦେବା ପରେ ବିଭିନ୍ନ ପାଠ୍ୟବର୍ଷରେ ପିଲାମାନଙ୍କୁ ଏହି ଲେଖକ ପ୍ରଶ୍ନ ପଚାରେ "ବ୍ରଜନାଥ ବଡ଼ଜେନା କିଏ ?" ଓଡ଼ିଶାର ଗୋଟିଏ ପୁରାତନ ହାଇସ୍କୁଲ ରୂପେ ପରିଚିତ ସ୍ଥାନୀୟ ବି.ବି. ହାଇସ୍କୁଲ (ବ୍ରଜନାଥ ବଡ଼ଜେନା ହାଇସ୍କୁଲ) ରୁ ପାସ୍ କରି ଆସିଥିବା ବହୁ ମେଧାବୀ ଛାତ୍ରଛାତ୍ରୀ ଏ ପ୍ରଶ୍ନର ଉତ୍ତର ଦେଇ ପାରନ୍ତି ନାହିଁ ।

ଏପରିକି ଢେଙ୍କାନାଳ ସହରରେ କବି-ଜନ୍ମଭୂମି କାବେରା ଗ୍ରାମରେ କବିଙ୍କ ଜୟନ୍ତୀ ଉତ୍ସବ ପାଳନ କରାଯାଉ ନ ଥିଲା। ଏହି ଲେଖକ କବିଙ୍କ ଷଷ୍ଠ ବଂଶଧର ବୃନ୍ଦେଶ୍ୱର ପଟ୍ଟନାୟକଙ୍କୁ ଡକାଇ ତାଙ୍କ ସହିତ କବିଙ୍କ ସମ୍ପର୍କରେ ଆଲୋଚନା କଲା । ସ୍ୱଗୃହରେ କବି ବ୍ରଜନାଥ ବଡ଼ଜେନା ସ୍ୱହସ୍ତରେ ହନୁମାନ ମୂର୍ତ୍ତି ସ୍ଥାପନ କରିଥିବା ଗୃହ-କିମ୍ବଦନ୍ତୀ ଅଛି । ଏହାକୁ ଅବଲମ୍ବନ କରି ହନୁମାନ-ଜୟନ୍ତୀ କବିଙ୍କ ଜନ୍ମତିଥି ହୋଇଥିବ ବୋଲି ବିଶ୍ୱାସ କରି ବୃନ୍ଦେଶ୍ୱର ବାବୁ ଓ ଗ୍ରାମବାସୀଙ୍କ ସାହାଯ୍ୟରେ ମହାବିଷୁବ ସଂକ୍ରାନ୍ତିରେ କବିଙ୍କ ଜୟନ୍ତୀ ପାଳନ ଆରମ୍ଭ ହେଲା । ଏହି ଲେଖକ ୧୯୬୨ ରୁ ୧୯୬୭ ରେ ଢେଙ୍କାନାଳ ଛାଡ଼ିବା ପର୍ଯ୍ୟନ୍ତ ପ୍ରତିବର୍ଷ ମହାବିଷୁବ ସଂକ୍ରାନ୍ତି ଦିନ ସ୍ଥାନୀୟ ସଡ଼କ ପରିବହନ ସଂସ୍ଥାର ସର୍ବୋଚ୍ଚ ଅଧିକାରୀ ତଥା ଏହି ଲେଖକର ଅନ୍ତରଙ୍ଗ ବନ୍ଧୁଙ୍କ ପ୍ରଦତ୍ତ ଗୋଟିଏ ବସ୍‌ରେ ଛାତ୍ର, ଅଧ୍ୟାପକ, ଶିକ୍ଷକ, ଓକିଲ, ସାହିତ୍ୟିକ, ସାମ୍ବାଦିକଙ୍କୁ ନେଇ କବିଙ୍କ ଜନ୍ମପୀଠ କାବେରା ଗ୍ରାମକୁ ଯାଇ ମହା ସମାରୋହରେ ଜୟନ୍ତୀ ଉତ୍ସବ ପାଳନ କରୁଥିଲା ଓ କବିଙ୍କ କାବ୍ୟ, ଜୀବନୀ, ଗାନ୍ଧର୍ବିକ-କଳା ପ୍ରଭୃତି ବିଷୟରେ ଆଲୋଚନା ଓ କବିଙ୍କ ସଙ୍ଗୀତ ଗାୟନର ଆୟୋଜନ କରୁଥିଲା । ସେହି ପ୍ରତିଭାଧର

କବିଙ୍କୁ ଆଲୋଚନା ପରିସରକୁ ଆଣି ପ୍ରାବନ୍ଧିକ ନାୟକ ମହାନ ସାରସ୍ୱତ କର୍ତ୍ତବ୍ୟ ସଂପାଦନ କରିଛନ୍ତି ।

'କବି ଓ କାମିନୀ' ପୁସ୍ତକରେ ପ୍ରାବନ୍ଧିକ ଡଃ ନାୟକ ବହୁମୁଖୀ ପ୍ରତିଭା-ସମ୍ପନ୍ନ କବି ବ୍ରଜନାଥ ବଡ଼ଜେନାଙ୍କ କାବ୍ୟ-ପ୍ରତିଭା ଓ ଗଦ୍ୟ-ପ୍ରତିଭା ବିଷୟରେ ବହୁ ଉପାଦେୟ ତଥ୍ୟ ପ୍ରଦାନ କରିଛନ୍ତି । ଏହି ପ୍ରବନ୍ଧର ଗୋଟିଏ ସ୍ଥାନରେ ସେ ଯଥାର୍ଥରେ କହିଛନ୍ତି "ବାସ୍ତବିକ କବି ସଂସ୍କୃତ, ପ୍ରାକୃତ, ବଙ୍ଗଳା, ତେଲୁଗୁ, ହିନ୍ଦୀ ଇତ୍ୟାଦି ଭାଷା ପ୍ରବୀଣ । ପୁଣି ଚଉତିଶା, ଚଉପଦୀ, ପୋଇ, ଛାନ୍ଦ ପ୍ରବନ୍ଧ ଆଦି ସାହିତ୍ୟିକ ବିଭାଗରେ ତାଙ୍କର ସୃଷ୍ଟି ପ୍ରସାରିତ । ତେଣୁ ବ୍ରଜନାଥଙ୍କ କବି-ପ୍ରତିଭା ଏକମୁଖୀ ନୁହେଁ, ବହୁମୁଖୀ । କବି ବଡ଼ଜେନାଙ୍କ ବ୍ୟତୀତ କବି ମଧୁସୂଦନ, କବି ଫକୀରମୋହନ, ଲଳିତ କବି ବଳଦେବ, କବି ଗଙ୍ଗାଧର ଇତ୍ୟାଦିଙ୍କ ଜୀବନୀ ଓ ସେମାନଙ୍କର କାବ୍ୟିକ କୃତି ଉପରେ ମୂଲ୍ୟବାନ୍ ପ୍ରବନ୍ଧ ରଚନା କରି ସେ ଏହି ସଂକଳନରେ ସନ୍ନିବେଶ କରିଛନ୍ତି । ଆଶାବାଦର କବି ମଧୁସୂଦନଙ୍କ ଆନନ୍ଦବାଦର ସ୍ୱରୂପ ନିର୍ଣ୍ଣୟ କରିବାକୁ ଯାଇ କହିଛନ୍ତି, "ଦେହରୁ ଦେହାତୀତକୁ, ରୂପରୁ ରୂପାତୀତ, ବିଷୟରୁ ବିଷୟାତୀତକୁ ଗତି ହିଁ ମଧୁସୂଦନଙ୍କ ଆନନ୍ଦବାଦର ଲକ୍ଷ୍ୟ ।" କବି ଫକୀର ମୋହନଙ୍କ ସମ୍ବନ୍ଧରେ କ୍ଷୁଦ୍ର ପ୍ରବନ୍ଧରେ ବିଶଦ ଆଲୋଚନା କରିବାକୁ ସୁଯୋଗ ପାଇ ନଥିଲେ ମଧ୍ୟ " ଅବସର ବାସରେ" ପୁସ୍ତକ ମଧ୍ୟରେ ତାଙ୍କ ଆଲୋଚନାକୁ ସୀମିତ ରଖିଛନ୍ତି । ଫକୀରମୋହନଙ୍କ କାବ୍ୟ ପ୍ରେରଣାର ରହସ୍ୟ ଉଦ୍‌ଘାଟନ କରି ଫକୀରମୋହନଙ୍କ ଆତ୍ମ ଚରିତରୁ ଯଥାର୍ଥ ଉଦ୍ଧୃତି ଦେଇ ଲେଖିଛନ୍ତି " ତାଙ୍କ ମୃତ୍ୟୁ (ସ୍ତ୍ରୀ କୃଷ୍ଣା କୁମାରୀଙ୍କ) ପରେ ମୋ ମନର ବ୍ୟାକୁଳତା ନିରବତା ନିମନ୍ତେ ମୁଁ କବିତା ଲେଖେ । ମୋର ଅଧିକାଂଶ କବିତା ଦାରୁଣ ପୀଡ଼ା, ବିପଦ ଓ ମନର ଅସ୍ଥିରତା ସମୟ ଲେଖା ।" କବି ପ୍ରଶଂସା ଅପେକ୍ଷା କାବ୍ୟାନନ୍ଦ ଯେ ତାଙ୍କ କବି- ଜୀବନର ଶ୍ରେୟ, ଫକୀରମୋହନ ଏହା ଭାବି ଲେଖିଥିଲେ "ଗୀତ ଗାଇବାର ଯାର ହୋଇଛି ଅଭ୍ୟାସ / ଗାଇବ ସେ, କରୁ ପଛେ ଲୋକ ଉପହାସ ।"

ଡଃ ନାୟକ ପ୍ରବନ୍ଧର କ୍ଷୁଦ୍ର ପରିସର ମଧ୍ୟରେ ଫକୀରମୋହନଙ୍କ କାବ୍ୟିକ ଜୀବନର ରହସ୍ୟ ଓ ସଫଳତାକୁ ଆବିଷ୍କାର କରିବାରେ କେବଳ ସମର୍ଥ ହୋଇନାହାନ୍ତି, ବିଷୟ ନିର୍ବାଚନରେ ନିଜର ସ୍ୱତନ୍ତ୍ରତା ପ୍ରଦର୍ଶନ କରିଛନ୍ତି ।

କବିସୂର୍ଯ୍ୟ ବଳଦେବ ରଥଙ୍କ କାବ୍ୟକୃତି ସମ୍ପର୍କରେ ଆଲୋଚନା କଲାବେଳେ ସେ ଦର୍ଶାଇଛନ୍ତି ଯେ ଓଡ଼ିଆ ଚମ୍ପୂକାବ୍ୟର ଅଦ୍ୱିତୀୟ ସ୍ରଷ୍ଟା ଭାବେ ଓଡ଼ିଆ ଭାଷାକୁ ଲାଳିତ୍ୟ ପ୍ରଦାନ କରିବାରେ କବିସୂର୍ଯ୍ୟଙ୍କ ଅବଦାନ ଅବିସ୍ମରଣୀୟ ।

ତାଙ୍କ ଦୃଷ୍ଟିରେ ଗଙ୍ଗାଧର ହେଉଛନ୍ତି ଭାରତୀୟ ସଂସ୍କୃତିର ଜଣେ ନିଷ୍ଠାପର ପ୍ରଖ୍ୟାପକ ଓ ଉତ୍କଳୀୟ ପ୍ରକୃତିର ଜଣେ ସମର୍ପିତ ପୂଜକ । ସାହିତ୍ୟାଲୋଚକମାନେ ଗଙ୍ଗାଧରଙ୍କ କାବ୍ୟକୃତିର ଯେଉଁ ବିଷୟ ପ୍ରତି ବିଶେଷ ଧ୍ୟାନ ଦେଇନାହାନ୍ତି ପ୍ରାବନ୍ଧିକ ନାୟକ ସେହି ବିଷୟ ଉପରେ ସ୍ୱତନ୍ତ୍ର ପ୍ରବନ୍ଧ ରଚନା କରି ଆଲୋକପାତ କରିଛନ୍ତି । ଗଙ୍ଗାଧରଙ୍କ କାବ୍ୟକବିତାରେ "ବିରହ ଚେତନା" ତାଙ୍କର ଏପରି ଗୋଟିଏ ପ୍ରବନ୍ଧ । ଏହି ପ୍ରବନ୍ଧର ଗୋଟିଏ ସ୍ଥାନରେ ଗଙ୍ଗାଧରଙ୍କ ବିରହ ବର୍ଣ୍ଣନା ସମ୍ପର୍କରେ ଯଥାର୍ଥରେ କହିଛନ୍ତି, "କବିଙ୍କର ଚାରିଗୋଟି ପୂର୍ଣ୍ଣାଙ୍ଗ କାବ୍ୟ ପ୍ରେମର ଭିତ୍ତିଭୂମି ଉପରେ ପରିକଳ୍ପିତ ଏବଂ ବିରହର ଅଶ୍ରୁ ଉଚ୍ଛ୍ୱାସରେ ଅଭିଷିକ୍ତ । କିନ୍ତୁ ବିରହ ହେତୁ ପ୍ରେମ ବିପର୍ଯ୍ୟସ୍ତ ହୋଇନାହିଁ ।" ଅନ୍ୟ ସ୍ଥଳରେ ସେ ମଧ୍ୟ କବି ଗଙ୍ଗାଧରଙ୍କ ବିରହ ବର୍ଣ୍ଣନାକୁ ବ୍ୟବଚ୍ଛେଦ କରି ଯାହା ମତ ଦେଇଛନ୍ତି, ତାହା ପ୍ରଣିଧାନଯୋଗ୍ୟ । ସେ ଲେଖିଛନ୍ତି, "ଗଙ୍ଗାଧରଙ୍କ କାବ୍ୟ କବିତାରେ ପ୍ରେମ ଯେପରି ବଟଦ୍ରୁମର ସହିଷ୍ଣୁତା ଘେନି ପ୍ରକାଶର ଆଲୋକତୀର୍ଥ ଆଡ଼କୁ ଆଗେଇ ଯାଇଛି, ବିରହ ସେହିପରି କଳଙ୍କର ମେଘ ବଲ୍ଲରୀରେ ଆତ୍ମଅବଲୁପ୍ତିର ରେଖାଙ୍କନ ନ କରି ହୃଦୟକୁ ଘେନିବା ଓ ଘେନାଇବାରେ ଯତ୍ନଶୀଳ ହୋଇଛି ।" ଏହିପରି ବହୁ ମୌଳିକ ସାହିତ୍ୟାଲୋଚନାରେ ଡଃ ନାୟକ ତାଙ୍କର ଗଭୀର ମନନଶୀଳତା ଓ ସୂକ୍ଷ୍ମ ଚିନ୍ତାଧାରାର ପରିଚୟ ଦେଇଯାଇଛନ୍ତି ।

ଓଡ଼ିଆ ଆଖ୍ୟାୟିକା-କାବ୍ୟର ଆଦ୍ୟପ୍ରବର୍ତ୍ତକ ତଥା ଷୋଡ଼ଶ ଶତାବ୍ଦୀର କବି ଅର୍ଜ୍ଜୁନ ଦାସଙ୍କର "ରାମବିଭା" ଓ "କଳ୍ପଲତା" ସମ୍ପର୍କରେ ପ୍ରାବନ୍ଧିକ ନାୟକ "କବି ଅର୍ଜ୍ଜୁନ ଦାସ" ଶୀର୍ଷକ ଏକ କ୍ଷୁଦ୍ର ଆଲୋଚନା ପୁସ୍ତକ ରଚନା କରି ଓଡ଼ିଆ ସାହିତ୍ୟ ଓ ଓଡ଼ିଆ ଭାଷାକୁ ଏହି କବିଙ୍କ ମହାନ୍ ଅବଦାନ ବିଷୟ ଅବତାରଣା କରିଛନ୍ତି । ବିଭିନ୍ନ ଦୃଷ୍ଟିକୋଣରୁ ଆଲୋଚନା କରି "କବି ଅର୍ଜ୍ଜୁନ ଦାସ"ଙ୍କ ମହତ୍ତ୍ୱ ପ୍ରଖ୍ୟାପନ କରିଛନ୍ତି । କବି ନୀଳକଣ୍ଠ ଦାସ ଓ ନାରୀକବି ଅନ୍ନପୂର୍ଣ୍ଣାଙ୍କ ସମ୍ବନ୍ଧରେ ସ୍ୱତନ୍ତ୍ର ଭାବେ, ଯେଉଁ ଦୁଇଟି ମନୋଗ୍ରାଫ୍ ପ୍ରସ୍ତୁତ କରିଛନ୍ତି ତାହା ତାଙ୍କ କାବ୍ୟ ଜିଜ୍ଞାସାର ପରିଚୟ ପ୍ରଦାନ କରେ ।

'କାବ୍ୟ ପୁରୁଷର କଥା' ପ୍ରବନ୍ଧ ସଂକଳନରେ ସ୍ଥାନିତ ଶେଷ ଦୁଇଟି ପ୍ରବନ୍ଧ - "ସମ୍ପାଦନା ପ୍ରସଙ୍ଗ" ଓ "ଗବେଷଣାର ସରହଦ ଓ ବିଷୟ ପରିକଳ୍ପନା" ସମ୍ପାଦନା ଓ ଗବେଷଣା କାର୍ଯ୍ୟରେ ନିୟୋଜିତ ହେଉଥିବା ଗବେଷକମାନଙ୍କୁ ମାର୍ଗ ପ୍ରଦର୍ଶନ କରିବାରେ ସହାୟକ ହୋଇଛି । ବୈଚିତ୍ର୍ୟ ମଧ୍ୟରେ ଐକ୍ୟ ସ୍ଥାପନ କରି ବିଷୟବସ୍ତୁକୁ କିପରି ଉପଯୁକ୍ତ ଓ ସର୍ବଜନପ୍ରିୟ ସଂକଳନ ପ୍ରକାଶ କରାଯାଇପାରିବ ସେ ସମ୍ପର୍କରେ ଡଃ ନାୟକ ସୁଚିନ୍ତିତ

ପରାମର୍ଶ ଦେଇଛନ୍ତି । ସେହିପରି ବିଭିନ୍ନ ଗବେଷଣା କାର୍ଯ୍ୟକୁ କିପରି ସୁସଂହତ ଓ ଉପାଦେୟ କରିବାକୁ ହେବ ସେ ସମ୍ପର୍କରେ ସେ ବହୁ ଉପାଦେୟ ପରାମର୍ଶ ଦେଇଛନ୍ତି ସମ୍ପୃକ୍ତ ପ୍ରବନ୍ଧରେ । ତାଙ୍କ ଭାଷାରେ ପଥପ୍ରଦର୍ଶକ ଦିଗ୍‌ଦର୍ଶକ (ଗାଇଡ୍) ଓ ଗବେଷକଙ୍କ ଗୁରୁଶିଷ୍ୟ ସମ୍ପର୍କ ଓ ସୁସମନ୍ୱିତ ଉଦ୍ୟମ ହିଁ ଗବେଷଣା କାର୍ଯ୍ୟକୁ ଫଳପ୍ରସୂ କରିଥାଏ । ଆଜି କେତେକ ଗବେଷକଙ୍କର ଦିଶାବିହୀନ ସନ୍ଦର୍ଭ ରଚନା ଦର୍ଶନ କଲେ ଡଃ ନାୟକଙ୍କ ଏ ଆଲୋଚନାର ଉପାଦେୟତା ଉପଲବ୍ଧ କରିହେବ ।

୧୯୭୩ ମସିହାରେ ପ୍ରକାଶିତ ତଥା ତାଙ୍କ ଦ୍ୱାରା ସଂପାଦିତ ପ୍ରବନ୍ଧ ସଂକଳନ " ସାମ୍ପ୍ରତିକ ଓଡ଼ିଆ ସାହିତ୍ୟ ସମ୍ପର୍କରେ" ପୁସ୍ତକଟି ଓଡ଼ିଆ ଗବେଷଣାତ୍ମକ ପ୍ରବନ୍ଧ ସାହିତ୍ୟକୁ ଏକ ଅମୂଲ୍ୟ ଅବଦାନ । ସେତେବେଳେ ସେ ପ୍ରାବନ୍ଧିକମାନଙ୍କୁ ଅନୁରୋଧ କରି ନିଜର ସୁନିର୍ବାଚିତ ବିଷୟବସ୍ତୁ ଉପରେ ପ୍ରବନ୍ଧ ପ୍ରସ୍ତୁତ କରାଉଥିଲେ । ଆମେ ସେତେବେଳେ ବ୍ରହ୍ମପୁର ଖଲ୍ଲିକୋଟ ମହାବିଦ୍ୟାଳୟରେ ଓଡ଼ିଆ ଅଧାପକ ରୂପେ କାର୍ଯ୍ୟରତ ଥିଲୁ । ସେ ମୋତେ ଅନୁରୋଧ କରିଥିଲେ 'ଓଡ଼ିଆ ରମ୍ୟରଚନା' ସମ୍ପର୍କରେ ପ୍ରବନ୍ଧ ପ୍ରସ୍ତୁତ କରିବା ପାଇଁ । ଏ ବିଷୟଟି ସେତେବେଳେ ଥିଲା ସମ୍ପୂର୍ଣ୍ଣ ନୂଆ । ଓଡ଼ିଆ ଆଲୋଚନା ପରିସରକୁ ଏ ବିଷୟ ପ୍ରାୟ ଆସି ନଥିଲା । ଏଣୁ ତଥ୍ୟ ସଂଗ୍ରହ କରିବା ଦୁରୂହ ଥିଲା । ସେ କେତେକ ସୂଚନା ଦେଇଥିଲେ । କଲେଜ ପାଠାଗାରରୁ ମଧ୍ୟ ବହୁ ଉପାଦେୟ ତଥ୍ୟ ସଂଗ୍ରହ କରି ପ୍ରବନ୍ଧ ପ୍ରସ୍ତୁତ କରି ତାଙ୍କୁ ଦେଇଥିଲି । ପୂର୍ବୋକ୍ତ ପୁସ୍ତକରେ ସେ ମୋର ଏହି ପ୍ରବନ୍ଧଟିକୁ ସନ୍ନିବେଶିତ କରିଥିଲେ । ଏ ସଙ୍କଳନଟି ତାଙ୍କର ଏକ କାଳଜୟୀ ପଦକ୍ଷେପ ।

ତାଙ୍କର ଆଧାତ୍ମିକ ଚେତନା ହିଁ ତାଙ୍କ ସାରସ୍ୱତ ସାଧନାର ପ୍ରଧାନ ଉତ୍ସ । କାୟମନୋବାକ୍ୟରେ ସେ ଶ୍ରୀ ଜଗନ୍ନାଥଙ୍କଠାରେ ନିଜକୁ ସମର୍ପଣ କରିଥିଲେ । ରଥଯାତ୍ରା ସମୟରେ ବ୍ରହ୍ମପୁର ସହରସ୍ଥ ତାଙ୍କ ବାସଭବନରେ ମହାସମାରୋହରେ ଶ୍ରୀ ଜଗନ୍ନାଥଙ୍କର ପୂଜାର୍ଚ୍ଚନା କରି ସେ କଲେଜର ତାଙ୍କ ସହକର୍ମୀ ଓ ସହରର କେତେକ ଭଦ୍ରବ୍ୟକ୍ତିଙ୍କୁ ଆମନ୍ତ୍ରଣପୂର୍ବକ ପ୍ରସାଦ ସେବନରେ ସମସ୍ତଙ୍କୁ ଆପ୍ୟାୟିତ କରୁଥିଲେ । ମୁଁ ଏକାଧିକ ବାର ସେଥିରେ ଯୋଗ ଦେବାର ମନେ ଅଛି । ସେ ମୋତେ ବଡ଼ଭାଇ ବୋଲି ସମ୍ବୋଧନ କରୁଥିଲେ ଓ ସମ୍ମାନ ଦେଉଥିଲେ । ଖଲ୍ଲିକୋଟ କଲେଜରେ ମୁଁ ତାଙ୍କୁ ଲକ୍ଷ୍ୟ କରିଛି, ତାଙ୍କର ଜ୍ଞାନ ପିପାସା ଓ ସାରସ୍ୱତ ସାଧନାର ତଥା ପୁସ୍ତକ ରଚନା ପାଇଁ ବ୍ୟଗ୍ରତା ଏତେ ତୀବ୍ର ଥିଲା ଯେ, ଷ୍ଟାଫ୍ କମନ୍ ରୁମ୍‌ରେ ଅବକାଶ ସମୟର ଅପଚୟ ନ କରି କଲେଜ ଲାଇବ୍ରେରୀକୁ ଯାଇ ସେ ପଢ଼ାପଢ଼ି କରନ୍ତି ଓ ନୋଟ୍ କରନ୍ତି ।

ଡଃ କ୍ଷେତ୍ରବାସୀ ନାୟକ ଗଳ୍ପ ଓ କବିତାରେ ଲେଖନୀ ଚାଳନା କରି ନିଜର ଗଳ୍ପ ଓ କବିତାଗୁଡ଼ିକୁ ଯଥାକ୍ରମେ ଫୁଲର କବର (୧୯୬୭) ଓ ଉଚ୍ଚାରଣ (୧୯୬୯) ପୁସ୍ତକରେ ସ୍ଥାନିତ କରିଥିଲେ ମଧ୍ୟ ସେ ମୁଖ୍ୟତଃ ଜଣେ ଉଚ୍ଚକୋଟୀର ସାହିତ୍ୟ ସମାଲୋଚକ, ପ୍ରାବନ୍ଧିକ ଓ ଗବେଷକ । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଗବେଷଣା ପରିଷଦ ଓଡ଼ିଆ ସାହିତ୍ୟର ଗବେଷଣା ଦିଗ୍‌ବଳୟକୁ ଉଜ୍ଜ୍ୱଳ ଆଲୋକରେ ଉଦ୍‌ଭାସିତ କରୁଅଛି । ତାଙ୍କ ତିରୋଧାନରେ ଓଡ଼ିଆ ସାହିତ୍ୟାଲୋଚନା ବିଭାଗଟି ଯେ ଦୁର୍ବଳ ହୋଇଯାଇଛି ଏଥିରେ ସନ୍ଦେହ ନାହିଁ ।



# ପ୍ରାବନ୍ଧିକ କ୍ଷେତ୍ରବାସୀ

ଡ. ବିଜୟାନନ୍ଦ ସିଂହ

**ସ**ହଜ, ସାଧାରଣ ଜୀବନ ବଞ୍ଚି ଅସାଧାରଣ କାର୍ଯ୍ୟ କରିବାର ନିଷ୍ଠା ମଣିଷକୁ ଚିରଞ୍ଜୀବୀ କରିରଖେ । ଜୀବନ ନିଜ ପାଇଁ ନୁହେଁ ଜୀବନ ଅନ୍ୟ ପାଇଁ । ଏହି ସତ୍ୟରେ ଉପନୀତ ହୋଇ ଜୀବନ ତମାମ ସମାଜର, ସାହିତ୍ୟର ବିକାଶ ପାଇଁ ଆନ୍ତରିକତାର ସହ କାର୍ଯ୍ୟ କରିବା ସହଜ କଥା ନୁହେଁ । ସାହିତ୍ୟ ପୁଣି ସାମୂହିକ କଲ୍ୟାଣର ମାଧ୍ୟମ ହେବ । ସାମଗ୍ରିକ ଉନ୍ନତିର ସୋପାନ ହେବ- ଏହି ପରିକଳ୍ପନା ଜଣେ ସମର୍ପିତ ମଣିଷର । ଓଡ଼ିଆ ସାହିତ୍ୟ ଜଗତରେ ଏହିପରି ଜୀବନ ନିର୍ବାହ କରିଥିବା ସାହିତ୍ୟ ସାଧକ କ୍ଷେତ୍ରବାସୀ ନାୟକ । କ୍ଷେତ୍ରବାସୀ ନାୟକଙ୍କ ପ୍ରତିଭା ଆକଳନ କରାଯିବା ପାଇଁ ବହୁ ଶ୍ରମ ଓ ଅଧ୍ୟବସାୟର ଆବଶ୍ୟକତା ରହିଛି । କାରଣ କ୍ଷେତ୍ରବାସୀ ସାଧାରଣ ମଣିଷ ପରି ଜୀବନ ବିତାଉଥିଲେ ମଧ୍ୟ ବହୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସମାପନ କରିଯାଇଛନ୍ତି । ସେ ବାସ୍ତବିକ ଏକ ଉଦାହରଣ । ସାହିତ୍ୟ କ୍ଷେତ୍ରରେ କ୍ଷେତ୍ରବାସୀ ବିଭିନ୍ନ କାର୍ଯ୍ୟ ସଂପାଦନ କରିଥିଲେ ମଧ୍ୟ ସାହିତ୍ୟ ସମାଲୋଚନା, ପ୍ରବନ୍ଧ ରଚନା କ୍ଷେତ୍ରରେ ନିଜର ସ୍ୱକୀୟ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଯାଇଛନ୍ତି । ମୂଳତଃ, ସେ ଜଣେ ପ୍ରାବନ୍ଧିକ ତଥା ସାହିତ୍ୟ ସମାଲୋଚକ । ତାଙ୍କ ଜୀବନ କାଳ ସୀମିତ (୧୯୩୯-୧୯୮୬) । ଏହି ସଂକ୍ଷିପ୍ତ ସମୟ ଭିତରେ ଓଡ଼ିଆ ସାହିତ୍ୟର ସମୃଦ୍ଧି ପାଇଁ ସେ ତତ୍ପର ହୋଇଉଠିଛନ୍ତି । ଯଦିଓ ଓଡ଼ିଆ ବିଭାଗର ଛାତ୍ର ପରେ ଅଧ୍ୟାପକ, କିନ୍ତୁ ଏହି ପରିଚୟରେ ନୁହେଁ ବରଂ ଜଣେ ନିରଳସ ସାହିତ୍ୟ ସାଧକ ଭାବରେ ସେ ସୁଖ୍ୟାତ ।

କ୍ଷେତ୍ରବାସୀ ନାୟକଙ୍କ ପ୍ରବନ୍ଧ ଓ ସାହିତ୍ୟ ସମାଲୋଚନା ପଢ଼ିଲେ ମନେହୁଏ - କୌଣସି ଛଳନା ନାହିଁ ବରଂ ନିଜକୁ ଉନ୍ମୁକ୍ତ କରାଇବାର ପ୍ରୟାସ ମାତ୍ର । "ସାହିତ୍ୟର ସାମାନ୍ୟ କଥନ", "କବି ନୀଳକଣ୍ଠ", "କବି ଚରିତ ରାଧାନାଥ", "ଆଲୋଚନା ପତ୍ର", "ସାହିତ୍ୟ ଚର୍ଚ୍ଚା", "କବି ଓ କାମିନୀ" ପ୍ରଭୃତି କ୍ଷେତ୍ରବାସୀଙ୍କ କୃତିତ୍ୱର ସୂଚନା ମାତ୍ର । କ୍ଷେତ୍ରବାସୀଙ୍କ ସାହିତ୍ୟ ଚର୍ଚ୍ଚାର ଭିନ୍ନ ଦିଗନ୍ତ ଉନ୍ମୋଚିତ ହୋଇଛି ଏହି ଗ୍ରନ୍ଥଗୁଡ଼ିକରେ । ସାହିତ୍ୟ ଲେଖିବା ଏକ ସହଜ ନୁହେଁ ବରଂ ଲୋକ ଆବଶ୍ୟକତା ବୋଲି ସେ ବୋଧହୁଏ ବିଚାର କରିଛନ୍ତି ।

'ସାହିତ୍ୟର ସାମାନ୍ୟ କଥନ' ସାହିତ୍ୟ ଥିଓରୀ ଉପରେ ଗୋଟିଏ ସ୍ୱୟଂ ସଂପୂର୍ଣ୍ଣ ଆଲୋଚନା । ଯେତେବେଳେ ପ୍ରାୟତଃ ଏପରି ପୁସ୍ତକ ରଚନା ଆମ ସାହିତ୍ୟରେ ସମ୍ଭବ

ହେଉନଥିଲା, ସେତେବେଳେ କ୍ଷେତ୍ରବାସୀ ଏପରି ଉଦ୍ୟମର ଶୁଭାରମ୍ଭ କଲେ । ତାଙ୍କ ନିଜ ଭାଷାରେ "ସାହିତ୍ୟ ତତ୍ତ୍ୱର ବିଭିନ୍ନ ବିଷୟ ଅବଧାରଣ କରିବା ଲାଗି ଉତ୍ସୁକ ଓଡ଼ିଆ ପାଠକ ପାଠାଗାର ଓ ବହି ଦୋକାନରୁ ବହି ଖୋଜି ନିରାଶ ହେବା ମୁଁ ବାରମ୍ବାର ଲକ୍ଷ୍ୟ କରିଛି । ଏପରିକି କଲେଜ ପାଠ୍ୟକ୍ରମରେ 'ସାହିତ୍ୟ ଥିଓରୀ' ଉପରେ ଆବଶ୍ୟକ ଓଡ଼ିଆ ବହି ନ ପାଇ ବଙ୍ଗଳା ଓ ଇଂରାଜୀ ବହି ରଖାଯାଇଥିବା ଅଧ୍ୟାପକ ଜୀବନରେ ମୁଁ ନିଜେ ଅଙ୍ଗେ ନିଭେଇଛି । ଏପରି ଏକ ଅଭାବ ଆମ ଭାଷା ସାହିତ୍ୟ ପକ୍ଷରେ ଅତି ଶୋଚନୀୟ । ସେଇ ଦୁଃଖ ଓ ଅଭାବରୁ ମୁକ୍ତ ହେବା ପାଇଁ ମୋର ଏ ସାଧୁ ଉଦ୍ୟୋଗ ।"[୧] ସାହିତ୍ୟର ସାମାନ୍ୟ କଥନ ନାମକରଣରୁ ହିଁ ଗ୍ରନ୍ଥର ପରିଚୟ ମିଳିଯାଉଛି । ସାହିତ୍ୟର ପୁଣି ସାମାନ୍ୟ କଥନ କ'ଣ ? ସାହିତ୍ୟ ବ୍ୟାପକ ହୋଇ ସୀମା ସରହଦ ଛୁଇଁବା କ'ଣ ସହଜ କଥା ? ତଥାପି ସାହିତ୍ୟ ହିଁ ପ୍ରାଣର ବାର୍ତ୍ତା, ଗଭୀର ମନର ନିଛକ ଅଭିବ୍ୟକ୍ତି । କ୍ଷେତ୍ରବାସୀ ତାଙ୍କ ବିଚାରରୁ ଏ କ୍ଷେତ୍ରରେ ସ୍ପଷ୍ଟ କରିଛନ୍ତି- "ଜୀବନ ସାହିତ୍ୟ ଆଧାର, ଜୀବ ଓ ଜଗତ ପରମାତ୍ମାର ସୃଷ୍ଟି । ତେଣୁ ତାହା ଅନନ୍ତ ଓ ଅବୋଧ । ସାହିତ୍ୟ ମନୁଷ୍ୟର ସୃଷ୍ଟି । ତେଣୁ ତାହା ସୁବୋଧ୍ୟ ଓ ସୁଗମ୍ୟ । ତଥାପି ସାହିତ୍ୟିକ ଦ୍ୱିତୀୟ ସ୍ରଷ୍ଟା ଏବଂ ପ୍ରଜାପତି । ଜୀବନର ଉଦ୍ଦେଶ୍ୟ ଆନନ୍ଦ ଅନୁସନ୍ଧାନ, ସାହିତ୍ୟର ଉଦ୍ଦେଶ୍ୟ ଆନନ୍ଦ ଉତ୍ପାଦନ ।"[୨]

କ୍ଷେତ୍ରବାସୀଙ୍କ ବିଚାର କେମିତି ଟିକେ ଭିନ୍ନ ବୋଲି ମନେ ହୁଏ । ସବୁ କଥାକୁ ସେ ଅଲଗା ବାଗରେ ଦେଖନ୍ତି । ତାହା କେତେବେଳେ ଦାର୍ଶନିକ ଚିନ୍ତାରେ ପରିପୂର୍ଣ୍ଣ ତ କେତେବେଳେ ତାହା ସାଧାରଣ ପ୍ରତୀୟମାନ ହେଉଥିଲେ ମଧ୍ୟ ଅସାଧାରଣ । ବ୍ୟକ୍ତିସତ୍ତା ଓ ଲେଖକ ସତ୍ତା ଏକ ବା ଅଭିନ୍ନ । ବ୍ୟକ୍ତିଟି ହିଁ ଲେଖକ । ବ୍ୟକ୍ତି ନଥିଲେ ଲେଖକ ନାହିଁ । କିନ୍ତୁ କ୍ଷେତ୍ରବାସୀ ତାଙ୍କ ସୂକ୍ଷ୍ମ ବିଚାରକୁ ଆମ୍ଭମାନଙ୍କ ନିକଟରେ ବ୍ୟକ୍ତ କରିଛନ୍ତି - "କବି ସାଧାରଣ ବ୍ୟକ୍ତିଙ୍କ ଅପେକ୍ଷା ଗୋଟିଏ ଭିନ୍ନ ଆତ୍ମା, ଦ୍ୱୈତ ସତ୍ତାର ସେ ଅଧିକାରୀ । ବ୍ୟକ୍ତି ସତ୍ତା ଓ କବି ସତ୍ତା ଉଭୟରେ ସାମ୍ୟ ଅପେକ୍ଷା ବୈଷମ୍ୟ ବେଶୀ ।"[୩] କ୍ଷେତ୍ରବାସୀ ସାଧାରଣ ପ୍ରବନ୍ଧ ରଚନା କରି ନାହାନ୍ତି ବରଂ ସେ ଲେଖିଛନ୍ତି ଜୀବନ ଭିତ୍ତିକ ରଚନା । ସାହିତ୍ୟ ଜୀବନର କାହାଣୀ ସ୍ୱାଭାବିକ ଭାବେ ପ୍ରକାଶ ପାଉଥିବାରୁ ଏବଂ ବ୍ୟକ୍ତିର ଜୀବନ୍ତ ସ୍ୱରୂପ ମୂର୍ତ୍ତିମାନ ହୋଇପାରୁଥିବାରୁ ସାହିତ୍ୟ ଆମର ଅତି ନିକଟର ଓ ଆପଣାର ।[୪] ସଂପ୍ରତି ଆମ ସଂସ୍କୃତି ଓ ସାହିତ୍ୟ ସର୍ବୋପରି ଆତ୍ମ ଚେତନାକୁ ବିଶ୍ୱମୁଖୀ କରିବାର ପ୍ରୟାସୀ । ସାଧାରଣତଃ ଏକ ବହିଃମୁଖୀ ଭାବନାର ରୂପାନ୍ତରୀକରଣ ବିଶ୍ୱଭାବନା କହିଲେ ଅତ୍ୟୁକ୍ତି ହେବ ନାହିଁ । ନିଜ ଭୂମିରୁ ଅନ୍ୟ ଭୂମିକୁ ଗତି କରିବାର ବିଧିବଦ୍ଧ ଯୋଜନାର ଅନ୍ୟ ନାମ - ବିଶ୍ୱମୁଖୀ କହିଲେ ଅପ୍ରାସଙ୍ଗିକ ହେବନାହିଁ । ତେଣୁ ବ୍ୟକ୍ତିରୁ ସାହିତ୍ୟକୁ

ଏହାର କାରଣ ଦର୍ଶାଇବାକୁ କ୍ଷେତ୍ରବାସୀ ନିଜ ମନୋଭାବକୁ ପ୍ରକାଶ କରିଛନ୍ତି । ମଣିଷର ଆତ୍ମା ଖୋଜୁଛି ବ୍ୟାପକ ଭାବ ବିନିମୟ କ୍ଷେତ୍ର ଓ ବିଚିତ୍ର ସଂସ୍କୃତିର ମିଳନ ମଣ୍ଡପ, ଯେଉଁଠି ଜାତିଗତ, ଭାଷାଗତ ତଥା ଦେଶଗତ ବିଭେଦ ଭୁଲି ଆନ୍ତର୍ଜାତିକ ମହାଭାବମୟୀ ସଂଗୀତ ଗାନର ସୁଯୋଗ ଲାଭ ସହଜ ମନେହେବ ।[୫] ସାହିତ୍ୟର ସାମଗ୍ରୀ, ସାହିତ୍ୟର ଉଦ୍ଦେଶ୍ୟ, କାବ୍ୟଚିଉ, ଭାବ ପାଇଁ ଭାଷା, ସାହିତ୍ୟରେ ବିନୋଦ, ସାହିତ୍ୟରେ ବାସ୍ତବତା ପ୍ରସଙ୍ଗ, କଳା ଏକ ବିଚାର, ପ୍ରଜ୍ଞା ପ୍ରତିଭା ଓ ପ୍ରଗଲ୍‌ଭତା, ଚରିତ୍ର ଚର୍ଚ୍ଚା, ତୂଳି ଓ ଶିକୁଳୀ, ସଂସ୍କୃତି ଓ ସାହିତ୍ୟ ପ୍ରଭୃତି ପ୍ରବନ୍ଧରେ କ୍ଷେତ୍ରବାସୀ ଆପଣାର ଦୃଷ୍ଟିଭଙ୍ଗୀକୁ ବିସ୍ତାରିତ କରିଛନ୍ତି ।

ଓଡ଼ିଆ ସାହିତ୍ୟ ପାଶ୍ଚାତ୍ୟ ପ୍ରଭାବରୁ ମୁକ୍ତ ନୁହେଁ । ପାଶ୍ଚାତ୍ୟ ପ୍ରଭାବରେ ଓଡ଼ିଆ ସାରସ୍ୱତ ଦିଗନ୍ତ ନବ ନବ ରୂପରେ ପ୍ରକଟିତ ହୋଇଛି । ନବ ଅଭ୍ୟୁଦୟର ପ୍ରାକ୍ କାଳରେ ପାଶ୍ଚାତ୍ୟ ଚେତନା ଓଡ଼ିଆ ସାହିତ୍ୟକୁ ଏକ ନୂତନ ପଥ ନିର୍ଦ୍ଦେଶ କରିଛି । ପାଶ୍ଚାତ୍ୟ ଚିନ୍ତାଧାରା ଇଂରେଜ ଶିକ୍ଷା ଓ ସାହିତ୍ୟ ଅଧ୍ୟୟନ ଫଳରେ ଆମ ସାହିତ୍ୟରେ ପ୍ରବେଶ କରିଥିଲା । ଊନବିଂଶ ଶତାବ୍ଦୀ ଶେଷ ବେଳକୁ ଓ ବିଂଶ ଶତାବ୍ଦୀର ପ୍ରଥମ ଦୁଇ ଦଶନ୍ଧିରେ ଆମ କବିମାନଙ୍କ ଅଧ୍ୟୟନ ଜଗତ ଓ ସେମାନଙ୍କର ସୃଷ୍ଟି ଜଗତକୁ ପାଶ୍ଚାତ୍ୟ ଚିନ୍ତାଧାରା କେମିତି ପ୍ରଭାବିତ କରିଥିଲା, ତାହାକୁ ଭିତ୍ତିକରି ଗବେଷକ କ୍ଷେତ୍ରବାସୀ ରଚନା କରନ୍ତି - "ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ତ୍ୟ ପ୍ରଭାବ' (୧୮୦୩-୧୯୨୦) ଗବେଷଣା ସନ୍ଦର୍ଭ । ଏହି ନିବନ୍ଧଟି ୧୯୭୬ ମସିହାରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ପି.ଏଚ୍.ଡ଼ି. ଡିଗ୍ରୀ ପାଇଁ ଯୋଗ୍ୟ ବିବେଚିତ ହୋଇଥିଲା । ଏହି ସନ୍ଦର୍ଭଟି ପାଞ୍ଚୋଟି ପରିଚ୍ଛେଦରେ ବିଭକ୍ତ । ପ୍ରଥମ ପରିଚ୍ଛେଦରେ ଓଡ଼ିଶାରେ ପାଶ୍ଚାତ୍ତ୍ୟ ସଂସର୍ଗର ଭିତ୍ତି, ଦ୍ୱିତୀୟ ପରିଚ୍ଛେଦରେ ରେନାସାଁ ନବଅଭ୍ୟୁଦୟ, ତୃତୀୟ ପରିଚ୍ଛେଦରେ କାବ୍ୟ ବସ୍ତୁରେ ପାଶ୍ଚାତ୍ୟ ପ୍ରଭାବ, ଚତୁର୍ଥ ପରିଚ୍ଛେଦରେ କାବ୍ୟ ଚେତନାରେ ପାଶ୍ଚାତ୍ୟ ପ୍ରଭାବ, ପଞ୍ଚମ ପରିଚ୍ଛେଦରେ କାବ୍ୟ ଶୈଳୀରେ ପାଶ୍ଚାତ୍ୟ ପ୍ରଭାବ ପ୍ରଭୃତି ବିଷୟ ସ୍ଥାନିତ ହୋଇଛି । ଆମ କାବ୍ୟ ସାହିତ୍ୟର ଉତ୍ତରଣ ପାଇଁ ପାଶ୍ଚାତ୍ୟ ପ୍ରଭାବର ଫଳଶ୍ରୁତି ସୁନ୍ଦର ରୀତିରେ ଅଙ୍କିତ । ସମଗ୍ର ସନ୍ଦର୍ଭଟି ତୁଳନାତ୍ମକ କଥା ବିଶ୍ଳେଷଣଧର୍ମୀ ସମୀକ୍ଷା ।

'ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ତ୍ୟ ପ୍ରଭାବ ଏକ ସୁଚିନ୍ତିତ, ସୁଲିଖିତ ଗବେଷଣାତ୍ମକ ଗ୍ରନ୍ଥ । ଗବେଷକ କ୍ଷେତ୍ରବାସୀ ନାୟକ ଆପଣାର ବହୁ ଶାସ୍ତ୍ରପଠନ ଓ ତଥ୍ୟ ସଂଗ୍ରହ କରିବାର ଦକ୍ଷତାର ପ୍ରମାଣ ଦେଇଛନ୍ତି । ଓଡ଼ିଆ ସାହିତ୍ୟରେ ଅନେକ ଗବେଷଣା କରାଯାଇଛି ଓ କେତେକ ନିବନ୍ଧ ପୁସ୍ତକ ଭାବରେ ମୁଦ୍ରିତ ହୋଇଛି । କିନ୍ତୁ

କ୍ଷେତ୍ରବାସୀ ନାୟକଙ୍କ ଗବେଷଣା ଏ କ୍ଷେତ୍ରରେ ଏକ ବ୍ୟତିକ୍ରମ । ବହୁ ଶ୍ରମ ଓ ଆନ୍ତରିକତାର ଫଳଶ୍ରୁତି ତାଙ୍କର ଏହି ସନ୍ଦର୍ଭ । ପ୍ରତିଟି ପରିଚ୍ଛେଦରେ କ୍ଷେତ୍ରବାସୀଙ୍କ ମୌଳିକ ପ୍ରତିଭାର ସ୍ୱାକ୍ଷର ସୁସ୍ପଷ୍ଟ । "ପାରିବାରିକ ଜୀବନରେ ନାରୀ ରୂପ, ଚିରନ୍ତନ ମୂଲ୍ୟବୋଧ ସହିତ ବିଂଶ ଶତାବ୍ଦୀର ସଂସାରରେ ଆପଣାର ସ୍ୱାଧୀକାରକୁ ଜାହିର କରିଛି । ପାଶ୍ଚାତ୍ୟ ଶିକ୍ଷାରୁ ଏକ ମଧ୍ୟବିତ୍ତ ଶିକ୍ଷିତ ଶ୍ରେଣୀର କ୍ରମ ଅଭ୍ୟୁଦୟ ଫଳରେ ପଲ୍ଲୀ ଜୀବନଟ ଏକଦ୍ କ୍ଷୟପ୍ରାପ୍ତ ହୋଇଛି । ଗ୍ରାମ୍ୟ ଅର୍ଥନୀତି ସହର ଅଭିମୁଖୀ ହୋଇଛି । ଊନବିଂଶ ଶତାବ୍ଦୀଠାରୁ ବିଂଶ ଶତାବ୍ଦୀରେ ଏହା ଦ୍ରୁତତର । ତେଣୁ କୃଷି ଜୀବନରୁ ଚାକିରି ଉପଲକ୍ଷେ ପ୍ରବାସ ଜୀବନ ପ୍ରତି ଓ ଅମଲାତାନ୍ତ୍ରିକ ଜୀବନ ଲାଗି ଆଗ୍ରହ ଆସିଛି । ତାହାର ପ୍ରତିଫଳନ ମଧ୍ୟ ଫକୀରମୋହନ ବା ନନ୍ଦକିଶୋର ପ୍ରତ୍ୟେକଙ୍କର କବିତାରେ ଜଣା ଅଧିକେ ଲକ୍ଷଣୀୟ ।"[୬]

ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରୁ ପାଶ୍ଚାତ୍ୟ ପ୍ରଭାବର ପ୍ରତିଫଳନ ଦେଖାଦେଇଛି । ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ଉନ୍ମେଷ ପାଶ୍ଚାତ୍ୟ ପ୍ରଭାବରୁ ବୋଲି ଗବେଷକ ନାୟକ ଆଲୋଚନାରେ କହିଛନ୍ତି । " ପ୍ରାଚ୍ୟ ସଂସ୍କୃତ ସାହିତ୍ୟର ଅନୁବାଦ, ଅବଲମ୍ବନ ଇତ୍ୟାଦିରୁ ପ୍ରାଚୀନ, ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ବିକଶିତ ହେଲାଭଳି ପାଶ୍ଚାତ୍ୟ ଇଂରାଜୀ କାବ୍ୟ କବିତାରେ ଅନୁବାଦ  ଅନୁସରଣରୁ ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ନବୋଉନ୍ମେଷ ସାଧିତ ହୋଇଅଛି ।[୭] ଜଗନମୋହନ ଲାଲଙ୍କ ଭ୍ରମଭଂଜନ, ରାମ ଶଙ୍କର ରାୟଙ୍କ ପ୍ରେମତରଙ୍ଗ ଗାଥା, ରାଧାନାଥ ରାୟଙ୍କ କେଦାର ଗୌରୀ, ଚନ୍ଦ୍ରଭାଗା, ନନ୍ଦିକେଶ୍ୱରୀ, ପାର୍ବତୀ, ଚିଲିକା, ମହାଯାତ୍ରା, ଯଯାତି କେଶରୀ, ଦରବାର ପ୍ରଭୃତି କାବ୍ୟଗ୍ରନ୍ଥ ଭକ୍ତକବି ମଧୁସୂଦନ, ବ୍ୟାସକବି ଫକୀର ମୋହନ, ଗୋବିନ୍ଦ ରଥ, ସୁବଳଦେବ, ମଣି ଚରଣ ମହାପାତ୍ର, ଗୋପାଳବଲ୍ଲଭ, ଚନ୍ଦ୍ରମୋହନ ମହାରଣା, ସାଧୁଚରଣ ରାୟ, ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ, ନନ୍ଦକିଶୋର ବଳ, ବଦ୍ଧ କୁମାର ବଳଭଦ୍ର ଦେବ, ଉତ୍କଳମଣି ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, କୁନ୍ତଳା କୁମାରୀ ସାବତ, ପଦ୍ମଚରଣ ପଟ୍ଟନାୟକ, ଅଜୟ ଚନ୍ଦ୍ରଦାସ, କାନ୍ତକବି ଲକ୍ଷ୍ମୀକାନ୍ତ, ତାରିଣୀ ଚରଣ ରଥ ପ୍ରଭୃତିଙ୍କ ଅନେକ କବିତାରେ ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ଅତି ସ୍ପଷ୍ଟ ହୋଇଛି । ବରେଣ୍ୟ କବିମାନେ ପାଶ୍ଚାତ୍ୟ ଚେତନା ଦର୍ଶନ, ଦୃଷ୍ଟିଭଙ୍ଗୀ ବା ବିଷୟବସ୍ତୁ ଦ୍ୱାରା କେବଳ ନୁହେଁ କାବ୍ୟଶୈଳୀ ଦ୍ୱାରା ମଧ୍ୟ ପ୍ରଭାବିତ ହୋଇଛନ୍ତି । ସନେଟ୍, ଓଡ୍, ସଂବୋଧ ଗୀତି, ଏଲିଜି, ଏପିକ-ମହାକାବ୍ୟ ସହିତ ଛନ୍ଦଗତ ରଚନାରେ ମଧ୍ୟ ପାଶ୍ଚାତ୍ୟର ଦାନ ସ୍ୱୀକୃତ ।

ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟ (୧୮୦୩-୧୯୨୦) ପାଶ୍ଚାତ୍ୟ ସାହିତ୍ୟର ପ୍ରେରଣା ଦ୍ୱାରା ବହୁ ଭାବରେ ପରିପୁଷ୍ଟ ହୋଇଛି । ଓଡ଼ିଆ କବିମାନେ ପାଶ୍ଚାତ୍ୟ ସାହିତ୍ୟର ଆହରଣ ଓ ତାହାର ସଫଳ ଉପଯୋଗ ଆମ ସାହିତ୍ୟରେ କରାଇଛନ୍ତି । ଆମ ସାହିତ୍ୟ ଭୂମିରେ ସେଥିପାଇଁ ଅନେକ ପରିବର୍ତ୍ତନ କରାଇଛନ୍ତି । ଏପରିକି କେତେକ ଓଡ଼ିଆ ପତ୍ରପତ୍ରିକା ତତ୍‌କାଳୀନ ସମୟରେ ଏହି ପରିବର୍ତ୍ତନକୁ ସ୍ୱାଗତ କରିଥିଲେ । 'ଉତ୍କଳପ୍ରଭା' ପତ୍ରିକା ସେତେବେଳେ ସେଥିପାଇଁ ଲେଖିଥିଲେ - "ଦେଶୀୟ କୃତବିଦ୍ୟ ସଂପ୍ରଦାୟ ଯଦି ସ୍ୱଦେଶହିତୈଷୀ ପରବଶ ହୋଇ ସ୍ୱଦେଶୀୟ ପ୍ରଚଳିତ ଭାଷାରେ ଆତ୍ମଲବ୍ଧ ଜ୍ଞାନ ରାଶିର ସଞ୍ଚୟ କରନ୍ତି ତେବେ ତଦ୍ୱାରା ଜାତିର ସାଧାରଣ ପ୍ରକୃତି ଉନ୍ନତି ସାଧନ ହେବ ସନ୍ଦେହ ନାହିଁ ।"[୮] ଠିକ୍ ଏହିପରି ଢଙ୍ଗରେ ତତ୍‌କାଳୀନ ସଂଭ୍ରାନ୍ତ ସାହିତ୍ୟ ପତ୍ରିକା 'ଉତ୍କଳ ସାହିତ୍ୟ'ରେ ମତପ୍ରକାଶ ପାଇଥିଲା - "ପାଶ୍ଚାତ୍ୟ ଶିକ୍ଷା ପ୍ରଭାବରେ ଏ ଦେଶର ସକଳ ବିଭାଗରେ ଯେପରି ପରିବର୍ତ୍ତନ ଉପସ୍ଥିତ ହୋଇଅଛି, ସାହିତ୍ୟ ସମ୍ବନ୍ଧରେ ମଧ୍ୟ ସେହିପରି ଘଟିଅଛି । ଏ ପରିବର୍ତ୍ତନ ଏକାନ୍ତ ବାଞ୍ଛନୀୟ । ମନୁଷ୍ୟ ଏକ ଭାବ, ଏକ ଅବସ୍ଥାରେ ଚିରଦିନ ରହି ନ ପାରେ । ଜୀବନ୍ତ ସମାଜ ପକ୍ଷରେ ଏହା ଅସହନୀୟ ।"[୯]

କ୍ଷେତ୍ରବାସୀଙ୍କ ସାହିତ୍ୟ ବିଦ୍ୟା ଥିଲା ଗଭୀର ପାଣ୍ଡିତ୍ୟପୂର୍ଣ୍ଣ ଓ ଭବିଷ୍ୟତ ଥିଲା ସୁଦୂରପ୍ରସାରୀ । ତାଙ୍କ ଗବେଷଣାଗତ ଅଧ୍ୟବସାୟର ଯଥାର୍ଥ ରୂପାୟନ 'ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ' ଗ୍ରନ୍ଥ ।

କବି ଓ ସାହିତ୍ୟିକମାନଙ୍କ ସାରସ୍ୱତ ଜୀବନ ଏବଂ ପ୍ରଣୟୀ ଜୀବନ ଉପରେ ଆଧାରିତ ପ୍ରବନ୍ଧ ସଂକଳନ 'କବି ଓ କାମିନୀ' । ପ୍ରଣୟ ତାପସ ସାରସ୍ୱତ ସ୍ରଷ୍ଟାମାନଙ୍କର ଜୀବନ କାହାଣୀ ଓ କାବ୍ୟ ଜିଜ୍ଞାସାକୁ ଭିନ୍ନ ଏକ ନବୀନ ଢଙ୍ଗରେ ଏହି ପ୍ରବନ୍ଧ ଗୁଡ଼ିକରେ ପ୍ରାବନ୍ଧିକ କ୍ଷେତ୍ରବାସୀ ନାୟକ ଆଲୋଚନା କରିଛନ୍ତି । ଗ୍ରନ୍ଥଟି ନାମକରଣରୁ ଏକ ରୋମାଣ୍ଟିକ ବାସ୍ନା ବାରିହୋଇପଡ଼େ । କବି ଓ କାମିନୀ ବି ସଂପର୍କ ସେମାନଙ୍କର ! ଆଧୁନିକ ଓଡ଼ିଆ ସାହିତ୍ୟର ବହୁ ପ୍ରତିଷ୍ଠିତ କବିମାନଙ୍କ ପ୍ରେମ ଭାବର ଆକଳନ କରି କ୍ଷେତ୍ରବାସୀ ଓଡ଼ିଆ ସାହିତ୍ୟକୁ ପ୍ରଦାନ କରିଛନ୍ତି ଏହି କେତୋଟି ସୁଚିନ୍ତିତ ପ୍ରବନ୍ଧ । କ୍ଷେତ୍ରବାସୀଙ୍କ ପ୍ରବନ୍ଧ ପଢ଼ିଲେ ମନେହୁଏ ଏକ ରସପୂର୍ଣ୍ଣ ହୃଦୟର ଅଧିକାରୀ ଥିଲେ ସେ- ତାଙ୍କ ଭାଷାରେ " ସୁନ୍ଦର ଏଇ ସଂସାରରେ ମୃତ୍ୟୁ ଠାରୁ ଅସୁନ୍ଦର ରମଣୀଠାରୁ ସୁନ୍ଦର କୌଣସି ବସ୍ତୁଥିବା ବିଶ୍ୱାସ କରିହୁଏନା । ରମଣୀର ଅଭିଜ୍ଞତା ହିଁ ସବୁଠାରୁ ରମଣୀୟ । ଟଲଷ୍ଟୟଙ୍କର ଏଇ ଉକ୍ତି ଯେପରି ସତ୍ୟ, ସେହିପରି ବିଶ୍ୱସ୍ତ ମଧ୍ୟ । କାରଣ ପ୍ରଣୟରୁ ହିଁ ଜୀବନର ଆରମ୍ଭ ଓ ପ୍ରଣୟରେ ଜୀବନର ପ୍ରଶାନ୍ତି । ଦାନ୍ତେଙ୍କ ଦୃଷ୍ଟିରେ ସଂସାର ସାଗର

ଅତିକ୍ରମ ପାଇଁ ପ୍ରଣୟ ମାନବ ଯାତ୍ରାର ଏକମାତ୍ର ଦୀପ ସ୍ତମ୍ଭ ବା ଧ୍ରୁବତାରା । ଏଇ ପ୍ରଣୟ, ଜୀବନ ଓ ତା'ର ଗତିର ନିୟାମକ, ମରଣ ପଥର ମଧ୍ୟ ଅମୃତ ସୋପାନ । କେବଳ ମନୁଷ୍ୟ ଜଗତ ନୁହେଁ, ସମଗ୍ର ଗ୍ରହ ଜଗତ ତାହାରି ଇଙ୍ଗିତରେ ଗତିବାନ ଓ ଚଞ୍ଚଳ । ଯିଏ ଯାହା ଓ ଯେପରି ହେଉ ନା କାହିଁକି, କେହି ପ୍ରେମ ପ୍ରଭାବରୁ ମୁକ୍ତ ନୁହନ୍ତି । ଦାର୍ଶନିକ, କବି, ସାହିତ୍ୟିକ କିମ୍ବା ଐତିହାସିକ ପ୍ରତ୍ୟେକ ଜୀବନର ପ୍ରେମମୟ ସତ୍ତାର ଅନୁଭବୀ" ।[୧୦]

ଉକ୍ତ ପରିଚ୍ଛେଦରୁ କ୍ଷେତ୍ରବାସୀଙ୍କ ପ୍ରବନ୍ଧ ରଚନାରେ ସ୍ୱତନ୍ତ୍ର ଭାବଚେତନା ଅନୁଭବ କରିହୁଏ । ପ୍ରବନ୍ଧ ଯେ କେତେ ପାଠକମାନଙ୍କୁ ଆମୋଦିତ କରିପାରେ ତାହାର ସଂକେତ ଏଠାରୁ ମିଳେ । ଆଧୁନିକ କବି ଓ ତା'ର ନୂତନ ପୃଥିବୀ, କବି ମଧୁସୂଦନ, କବି ବ୍ରଜନାଥ, କବି ଫକୀରମୋହନ, ଲଳିତ କବି ବଳଦେବ, କବି ଗଙ୍ଗାଧର, ଗଙ୍ଗାଧରଙ୍କ କାବ୍ୟ-କବିତାରେ ବିରହ-ଚେତନା, ଗୀତି କବିତାର କଥା, ଗାଥା କବିତା ଓ ଗୀତି କବିତା, ଗୀତି କବିତାର ବିକାଶଧାରା, ସାରସ୍ୱତ ସାଧକ ଶ୍ରଦ୍ଧାକର, ସଂସଦ ଓ ସାହିତ୍ୟ, ଦୃଶ୍ୟକାବ୍ୟ ଓ ବ୍ୟଙ୍ଗ ଦୃଷ୍ଟି ପ୍ରଭୃତି ପ୍ରବନ୍ଧର ସୁନ୍ଦର ସମାହାର 'କବି ଓ କାମିନୀ' ସଂକଳନ । ସ୍ୱଭାବ କବି ଗଙ୍ଗାଧରଙ୍କ କାବ୍ୟ କବିତା ପ୍ରଭୃତି ବିଭୁ ବନ୍ଦନାରେ ରସୋତୀର୍ଣ୍ଣ ହୋଇଥିଲାବେଳେ ପ୍ରାବନ୍ଧିକ କ୍ଷେତ୍ରବାସୀ ଗଙ୍ଗାଧରଙ୍କ କାବ୍ୟ କବିତାରେ ବିରହ ବର୍ଣ୍ଣନା କରି ଲେଖିଛନ୍ତି – "ଗଙ୍ଗାଧରଙ୍କ କବି ହୃଦୟ ବିରହର ବହୁ ଭାବକୁ ରୂପ ଦେଇଛି ପରିପକ୍ୱ ରସରାଗରେ । କବିଙ୍କର ଚାରିଗୋଟି ପୂର୍ଣ୍ଣାଙ୍ଗ କାବ୍ୟ ପ୍ରେମର ଭିତ୍ତିଭୂମି ଉପରେ ପରିକଳ୍ପିତ ଏବଂ ବିରହର ଅଶ୍ରୁ ଉଲ୍ଲାସରେ ଅଭିଷିକ୍ତ । କିନ୍ତୁ ବିରହ ହେତୁ ପ୍ରେମ ବିପର୍ଯ୍ୟସ୍ତ ହୋଇନାହିଁ । ବରଂ ପ୍ରେମିକ ପ୍ରେମିକାଙ୍କର ହୃଦୟବତ୍ତା ଓ ଐକାନ୍ତିକ ଅନୁରାଗ ଅଶ୍ରୁ ମାଙ୍ଗଲ୍ୟର ନିର୍ମାଣ କଣିକାରେ ଅମର ଅରୁଣାକ୍ତ ହୋଇଉଠିଛି ।"[୧୧]

'କବିତାର କଥା' ଏକ ଆଲୋଚନା ପୁସ୍ତିକା । କ୍ଷେତ୍ରବାସୀ ନାୟକ ଓ ଲାବଣ୍ୟ ନାୟକ ଏହି ଗ୍ରନ୍ଥର ଯୁଗଳ ସ୍ରଷ୍ଟା । ଏହି ବହିରେ ଅଛି ଦୁଇଟି ବିଷୟ ଯଥା କବିତା କାହିଁକି ଓ କବିତାର ଭାଷା । କବିତା କାହିଁକିର ଲେଖକ କ୍ଷେତ୍ରବାସୀ ନାୟକ । କବିତାର ଭାଷାର ଲେଖିକା ଲାବଣ୍ୟ ନାୟକ । ବିଶ୍ୱ ଭାରତୀ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ୧୯୮୪ ଫେବୃୟାରୀ ମାସରେ ଆୟୋଜିତ 'କାବ୍ୟଭାରତୀ' ସେମିନାରରେ ଏହି ପ୍ରବନ୍ଧ ଦୁଇଟି ପାଠ କରାଯାଇଥିଲା । କବିତା କାହିଁକି ବିଷୟ ପ୍ରବନ୍ଧରେ କ୍ଷେତ୍ରବାସୀ ଏକ ଅଭିଜାତ ପ୍ରସଙ୍ଗକୁ ନେଇ ତାତ୍ତ୍ୱିକ ଦୃଷ୍ଟିକୋଣରୁ ଆଲୋଚନା କରିଛନ୍ତି । କବିତା

ଚିରକାଳ-କବିତାର ଶେଷ ନାହିଁ । କବିତା ହିଁ କାଳଜୟୀ ସେଥିପାଇଁ ଆଲୋଚକ କ୍ଷେତ୍ରବାସୀ ଲେଖଛନ୍ତି - "ଯେତେକାଳ ଥିବ ମାନବ ହୃଦୟ / କବିତାରେ କେବେ ହେବ ନାହିଁ ଲୟ ।"[୧୨]

ସାହିତ୍ୟ ସମାଲୋଚକ କ୍ଷେତ୍ରବାସୀ ଉଣେଇଶ ଗୋଟି ବିଷୟଗତ ଆଲୋଚନାକୁ ସଂକ୍ଷିପ୍ତ ଅଥଚ ସାରଗର୍ଭକ କରି ଗଢ଼ି ତୋଳିଛନ୍ତି । ଏହି ମାର୍ମିକ ଆଲୋଚନାଟି କବିତା ପ୍ରେମୀ ପାଠକମାନଙ୍କୁ ଆନନ୍ଦିତ କରିଛି କେବଳ ତାହା ନୁହେଁ କବିତାର ସାମଗ୍ରିକ ଆଲୋଚନା ପାଇଁ ପଥ ଉନ୍ମୁକ୍ତ କରିଛି ।

'କାବ୍ୟ ପୁରୁଷର କଥା' ପୁସ୍ତକଟି ୨୦୦୩ ମସିହାରେ ଅର୍ଥାତ୍ ପ୍ରାବନ୍ଧିକଙ୍କ ଅବର୍ତ୍ତମାନରେ ପ୍ରକାଶ ପାଇଛି । ଏଥିରେ ସନ୍ନିବେଶିତ ପ୍ରବନ୍ଧଗୁଡ଼ିକ ଯଥା - କାବ୍ୟପୁରୁଷ କଥା, କବିତା କାହିଁକି ?, ପ୍ରାଚୀନ କବି ଓ କାବ୍ୟତତ୍ତ୍ୱ, ଜୀବନ ସତ୍ୟ ଓ କାବ୍ୟ ସତ୍ୟ, କାବ୍ୟ ପ୍ରୟୋଜନ, ନନ୍ଦନତତ୍ତ୍ୱର କଥା, କବି ଉକ୍ତି : ବକ୍ରୋକ୍ତି, କାବ୍ୟବିମ୍ବ ପ୍ରସଙ୍ଗ ଓ କବି ସାରଳା ଦାସ, ଆଧୁନିକତା ଓ ଆଧୁନିକ କବିତା ତତ୍ତ୍ୱ, ଫକୀରମୋହନଙ୍କ ସାରସ୍ୱତ ସୃଷ୍ଟି, ଲେଖକର ସ୍ୱର୍ଗ ଓ ମର୍ତ୍ତ୍ୟ, ପ୍ରେମ ଏକ ଚେତନା, ସାହିତ୍ୟ ଓ ଆମ ସାହିତ୍ୟ, ଆଧୁନିକତା ଓ ଓଡ଼ିଆ ସାହିତ୍ୟ, ସଂପାଦନା ପ୍ରସଙ୍ଗ, ଗବେଷଣାର ସରହଦ ଓ ବିଷୟ ପରିକଳ୍ପନା ପ୍ରଭୃତି ଆଧାରିତ ଏହି ପୁସ୍ତକଟି ଓଡ଼ିଆ ସାହିତ୍ୟକୁ ଏକ ଅନନ୍ୟ ଉପହାର । ଏହି ପ୍ରବନ୍ଧଗୁଡ଼ିକ ବହୁ ପୂର୍ବରୁ କ୍ଷେତ୍ରବାସୀ ରଚନା କରିଥିଲେ ଓ ଏହା ସମାବେଶ, ଝଙ୍କାର, ସପ୍ତର୍ଷି, ଗୋଧୂଳି, ସହକାର, ନବରବି, ମୂଲ୍ୟାୟନ, ଏଷଣା, ସୁଚରିତା ପ୍ରଭୃତି ପତ୍ରିକାରେ ଶୋଭାପାଇଥିଲା । କ୍ଷେତ୍ରବାସୀ ନାୟକ ମୌଳିକ ସମାଲୋଚନା ଓ ପ୍ରବନ୍ଧଗୁଡ଼ିକରେ ସ୍ୱକୀୟ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଛନ୍ତି । ଗତାନୁଗତିକ ଆଲୋଚନା ନୁହେଁ ବରଂ ଜୀବନାଶ୍ରୟୀ ଆଲୋଚନା ଆମ ସାହିତ୍ୟକୁ ପୁଷ୍ଟଳ କରିଛି । ପ୍ରବନ୍ଧଗୁଡ଼ିକ କାବ୍ୟତତ୍ତ୍ୱ ସଂପର୍କିତ । କବିତାର ଉଦ୍ଦେଶ୍ୟ କ'ଣ, କାବ୍ୟ ସ୍ରଷ୍ଟାଙ୍କ ଆଭିମୁଖ୍ୟ କ'ଣ, କାବ୍ୟର ଲକ୍ଷ୍ୟ ଆନନ୍ଦ ନା ସୌନ୍ଦର୍ଯ୍ୟାନୁଭୂତି ଭଳି ତଥ୍ୟଭିତ୍ତିକ ଆଲୋଚନା ସେ କରିଛନ୍ତି । ପ୍ରାବନ୍ଧିକଙ୍କ ମତରେ - କବିତା ଜନ୍ମ ଶିକ୍ଷା ପାଇଁ ନୁହେଁ, ବାସ୍ତବରେ କବିତା ହେଉଛି ସୌନ୍ଦର୍ଯ୍ୟବାଦୀ ଓ ଜୀବନବାଦୀ । କବିର ଭାଷା ସାଧାରଣ ଭାଷା ନୁହେଁ ତାହା ଭିନ୍ନ - " କବିର ଭାଷା ଅଲଗା, କବିର ଭାଷା ଭୂମିରେ ଶବ୍ଦ ହେଉଛି ଅନ୍ୟତମ ବିଶିଷ୍ଟ ଉପାଦାନ । କବି ଉଚ୍ଚାରଣରେ ଶବ୍ଦର ଅର୍ଥ ସଂବହନ କ୍ଷମତା ବଢ଼ିଯାଏ, ସାଧାରଣ ଶବ୍ଦ କବି ପ୍ରୟୋଗରେ ନୂତନ ଅଭିଧାଯୁକ୍ତ ହୋଇ ଆପଣାର ଧାରଣାଧର୍ମୀ ଓ ସଂବେଗଗର୍ଭୀ ଶକ୍ତି ବଳରେ କୌଣସି ବସ୍ତୁ ବା ଚିନ୍ତାକୁ ବ୍ୟଞ୍ଜିତ କରିଥାଏ । ବ୍ୟଞ୍ଜିତ ଶବ୍ଦ ହିଁ ହେଉଛି କୌଣସି ଚିତ୍ର ବା

ଚିନ୍ତାର ଜନନୀ ।[୧୩] ବ୍ୟକ୍ତ, ଅଭିବ୍ୟକ୍ତ ଓ ତିର୍ଯ୍ୟକ ସୃଷ୍ଟି ହିଁ ହେଉଛି କବିର ଦୃଷ୍ଟି । ବକ୍ରୋକ୍ତି ମାଧ୍ୟମରେ କବିର ସୃଷ୍ଟି ଫଳବତୀ ହୁଏ । ଆଧୁନିକତା ଓ ଓଡ଼ିଆ ସାହିତ୍ୟ ପ୍ରବନ୍ଧରେ ଡଃ ନାୟକ ଆଧୁନିକ ସାହିତ୍ୟ ସଂପର୍କରେ ଆଲୋକପାତ କରିଛନ୍ତି । ଆଧୁନିକତା ହେଉଛି ବିପ୍ଳବର ଏକ ଫଳଶ୍ରୁତି, ବିଦ୍ରୋହର ନୁହେଁ । ବିପ୍ଳବ ଓ ବିଦ୍ରୋହ ମଧ୍ୟରେ ଭେଦ ଅଛି, ସମାଜର ନିଗଡ଼ ନବଦଳାଇ ତା'ର କୌଣସି କୌଣସି ବିଶେଷ ଅବସ୍ଥାର ପରିବର୍ତ୍ତନ ପାଇଁ ଯଦି ଆନ୍ଦୋଳନ ଘଟେ ତାହା ହୁଏ ବିଦ୍ରୋହ ।[୧୪] ସଂପାଦନା ପ୍ରସଙ୍ଗରେ ଲେଖକ ସଂପାଦନକୁ ସାହିତ୍ୟର ଏକ ଗୁରୁତ୍ୱପୂର୍ଣ୍ଣ ବିଭାଗ ବୋଲି ବର୍ଣ୍ଣନା କରିଛନ୍ତି – " ନାନାପ୍ରକାର ସାହିତ୍ୟ କୃତିରୁ ମହତ୍ତ୍ୱପୂର୍ଣ୍ଣ ଓ ପ୍ରତିନିଧି ସ୍ଥାନୀୟ ରଚନାରାଜି ସଂଗ୍ରହ ଓ ସଂକଳନ କରି ସଂପାଦକ, ଦେଶର ବୃହତ୍ତର ପାଠକ ସମାଜ ଉଦ୍ଦେଶ୍ୟରେ ତାହା ପରିବେଷଣ କରିବା ଦ୍ୱାରା ସାହିତ୍ୟର ଅନନ୍ତ ସମଦ୍ରକୁ ବେଳାଭୂମିରୁ ମର୍ମଦେଇ ଅନୁଭବ କରିବାର ସୁଯୋଗ ଅନୁରାଗୀମାନଙ୍କୁ ସହଜଲଭ୍ୟ ହୋଇଥାଏ ।[୧୫] ଗବେଷଣାର ସରହଦ ଓ ବିଷୟ ପରିକଳ୍ପନାରେ ପ୍ରାବନ୍ଧିକ ସାହିତ୍ୟ ଗବେଷଣା ଗବେଷକମାନଙ୍କ ପାଇଁ ଏକ ପାଠ୍ୟ ଖସଡ଼ା କହିଲେ ଅତ୍ୟୁକ୍ତି ହେବ ନାହିଁ । ଗବେଷକମାନଙ୍କୁ ଏହି ପ୍ରବନ୍ଧଟି ଗବେଷଣା କରିବା ପାଇଁ ବିଭିନ୍ନ ପଥ ନିର୍ଦ୍ଦେଶ କରୁଛି । ଗବେଷଣାର ସବୁ ଦିଗ ପ୍ରତି ସଚେତନ କରାଇବା ଏହି ପ୍ରବନ୍ଧର ଲକ୍ଷ୍ୟ । ତାଙ୍କ ମତ ଥିଲା – "ସାହିତ୍ୟ ଗବେଷଣା, ଗଭୀର ଅନ୍ତର୍ନିରୀକ୍ଷା, ପ୍ରଶାନ୍ତ ଅବଗାହନ ଓ ପ୍ରଶସ୍ତ ବିଦ୍ୟାଧିଷଣାର ସାଧନ କର୍ମ ।"[୧୬] ଗବେଷଣା ପାଇଁ ଉପାଦାନ ସଂଗ୍ରହ, ଭାଷା, ଶୈଳୀ, ପାଦଟୀକା, ଅନୁଚ୍ଛେଦ, ପର୍ଯ୍ୟବେକ୍ଷକ, ଦକ୍ଷତା ଓ ତୁଳନାତ୍ମକ ଦୃଷ୍ଟିକୋଣ କିପରି ହେବା ଉଚିତ ସେ ସଂପର୍କରେ କ୍ଷେତ୍ରବାସୀ ନାୟକ ଆଲୋଚନାମାନ କରିଛନ୍ତି । ଓଡ଼ିଆ ପ୍ରବନ୍ଧ ସାହିତ୍ୟରେ ଏହି ସଂକଳନର ଅବଦାନ ଉଲ୍ଲେଖଯୋଗ୍ୟ ।

'ଭାରତୀୟ କାବ୍ୟ ତତ୍ତ୍ୱ' ଡଃ କ୍ଷେତ୍ରବାସୀ ନାୟକଙ୍କ ଉଚ୍ଚକୋଟୀର ସାହିତ୍ୟକୃତି । କାବ୍ୟ ହେଉଛି କବି ହୃଦୟର ରସମୟ ଅଭିବ୍ୟକ୍ତି । କାବ୍ୟ କବି ଚିତ୍ତର ଏକ ମାର୍ମିକ ପରିପ୍ରକାଶ ମାତ୍ର । ସେଥିପାଇଁ ଜନଚିତ୍ତକୁ ଏହା ସହଜରେ ସ୍ପର୍ଶ କରିଥାଏ । କାବ୍ୟ ସକଳ ଜ୍ଞାନୋପଲବ୍ଧି ଚିନ୍ତାର ଶୁଦ୍ଧ ରୂପାୟନ । ଡଃ ନାୟକଙ୍କ ମତରେ – "ମାନବଜୀବନ ଓ ବିଶ୍ୱ ପ୍ରକୃତି ସହ କବିର ନିବିଡ଼ ସମ୍ବନ୍ଧରୁ ଉପଲବ୍ଧ ଅନୁଭବର ନିର୍ମଳ ପ୍ରକାଶ ହେଉଛି କାବ୍ୟ । କବିର ଅକ୍ଷର ପ୍ରତିମା, ଏଇ କାବ୍ୟକୁ ଅନେକ ମାନବ ଜୀବନ ଓ ସୃଷ୍ଟି ସୁଷମାର ବିଶଦ ସମୀକ୍ଷା ରୂପେ ଅଭିହିତ କରିଥାନ୍ତି । କାରଣ ବିଚିତ୍ର ବିଶ୍ୱର ବିବିଧ ଅଭିନୟରୁ କବି ଯେଉଁ ଅନୁଭୂତିର ସାର ସଂଗ୍ରହ କରେ, ସୃଷ୍ଟିର ପ୍ରକ୍ରିୟାରୁ ସେ ଯେଉଁ ପ୍ରେରଣା ଲାଭ କରେ, ଜୀବନର ଅନୁଶୀଳନରୁ ଯେଉଁ ଅଭିଜ୍ଞାନର ଉଦ୍ଭବ

ହୁଏ, ତାହାକୁ ସେ ଏକ ବାଣୀ ରୂପ ପ୍ରଦାନ କରିଥାଏ । ଏହାହିଁ ସାଧାରଣରେ କାବ୍ୟ ବା ସାହିତ୍ୟ ଅଭିଧାରେ ଚିହ୍ନିତ ।[୧୨] ଏହି ରଚନାରେ କାବ୍ୟ ତତ୍ତ୍ୱର ପ୍ରାଚୀନ ଐତିହ୍ୟ, ପରଂପରା ଓ ନୂତନ ଅଙ୍ଗୀକାରକୁ ମୂଲ୍ୟାୟନ ସମୟରେ ବିଚାର ପରିସରଭୁକ୍ତ କରାଯାଇଛି । ଭାରତୀୟ କାବ୍ୟତତ୍ତ୍ୱ ସହିତ ପାଶ୍ଚାତ୍ୟ କାବ୍ୟ ତତ୍ତ୍ୱର ତୁଳନାତ୍ମକ ାଧ୍ୟୟନ ଏହି ଗ୍ରନ୍ଥର ବୈଶିଷ୍ଟ୍ୟ । ପାଶ୍ଚାତ୍ୟ ନନ୍ଦନତତ୍ତ୍ୱର ବିଚାରଧାରାକୁ ଭାରତୀୟ କାବ୍ୟତତ୍ତ୍ୱ କେଉଁଠି, କି ପ୍ରକାରରେ ଉପକୃତ କରିଛି ତାହାର ସୂଚନା ପ୍ରଦାନ କରାଯାଇଛି ଏହି ପୁସ୍ତକରେ ; ଭାରତୀୟ କାବ୍ୟତତ୍ତ୍ୱର ବିଭିନ୍ନ ସ୍କୁଲ (ସଂପ୍ରଦାୟ) ର ଆଲୋଚନା ସହ ରସ, ଧ୍ୱନି, ବକ୍ରୋକ୍ତି ପ୍ରଭୃତି ବିବିଧ ପ୍ରସଙ୍ଗରେ ମନୀଷାର ମୌଳିକତା ଓ ସମନ୍ୱୟବାଦିତାର ସ୍ୱରୂପ ପ୍ରତି ଗୁରୁତ୍ୱ ଦିଆଯାଇଛି । ଏକ ଗବେଷକ ଦୃଷ୍ଟିରେ ଭାରତୀୟ କାବ୍ୟତତ୍ତ୍ୱର ମହତ୍ତ୍ୱ ବର୍ଣ୍ଣନା ଏହି ଗ୍ରନ୍ଥର ଆଭିମୁଖ୍ୟ ।

'ଅଳଂକାର ଓ ଅଳଂକାର' ତତ୍ତ୍ୱ ଡଃ କ୍ଷେତ୍ରବାସୀ ନାୟକ ଓ ଡକ୍ଟର ଲାବଣ୍ୟ ନାୟକଙ୍କ ମିଳିତ ଉଦ୍ୟମର ଫଳଶ୍ରୁତି । ଅଂଳକାର ତତ୍ତ୍ୱ ଓ ଅଳଂକାର ସଂସ୍କୃତ କାବ୍ୟ ଶାସ୍ତ୍ରର ସନ୍ନିଧାନ ହୋଇଥିଲେ ବି ଓଡ଼ିଆ ସାହିତ୍ୟରେ ଏହାର ଆବଶ୍ୟକତା ସହଜରେ ବୁଝିହୁଏ । ତେଣୁ ଏହି ତତ୍ତ୍ୱକୁ ସରଳ କରି ଲେଖକଦ୍ୱୟ ପରିବେଷଣ କରିବା ପାଇଁ ଯଥାସାଧ ଉଦ୍ୟମ କରିଛନ୍ତି । ପାଠକ ଓ ରସର ଗ୍ରାହକମାନଙ୍କୁ ନିଶ୍ଚୟ ଏହା ଆମୋଦିତ କରିଛି ।

'ଆଲୋଚନା ପତ୍ର' ଡକ୍ଟର କ୍ଷେତ୍ରବାସୀ ନାୟକଙ୍କର ଏକ ଅନବଦ୍ୟ ସଂକଳନ । ଆମ ସାହିତ୍ୟକୁ ସମୃଦ୍ଧ କରିବା ପାଇଁ ଜୀବନ ତମାମ୍ କ୍ଷେତ୍ରବାସୀ ଚେଷ୍ଟିତ ଥିଲେ । ନୂଆ ନୂଆ ପୁଷ୍ପ ଓ ଫଳରେ ଉଦ୍ୟାନର ଶୋଭାବର୍ଦ୍ଧନ କଲାପରି ସାହିତ୍ୟର କାନନକୁ ଶୋଭାମୟ କରିବା ପାଇଁ ଆପ୍ରାଣ ପ୍ରୟାସ ସେ କରିଥିଲେ । ଆଲୋଚନା ପତ୍ର ଏହାର ସମୁଜ୍ଜ୍ୱଳ ଉଦାହରଣ । ସାହିତ୍ୟ ଚର୍ଚ୍ଚା ଲାଗି ବିଭିନ୍ନ ଅଧିବେଶନ ଓ ସେମିନାର ମାନଙ୍କରେ ତାଙ୍କ ଦ୍ୱାରା ଉପସ୍ଥାପିତ ପ୍ରବନ୍ଧ ଓ ଅଭିଭାଷଣଗୁଡ଼ିକର ମୁଦ୍ରିତ ରୂପ ଆଲୋଚନା ପତ୍ର। ଭାଷଣ ବା ବକ୍ତବ୍ୟ ଉଚ୍ଚାରଣରେ କେବଳ ରହିଯାଇ ନାହିଁ ବରଂ ସେହି ଶବ୍ଦସବୁ ସଂଯୋଜିତ ହୋଇ ମହାକାଳ ବକ୍ଷରେ ଦଲିଲ ହୋଇଯାଇଛି । ଏହିପରି କାର୍ଯ୍ୟକ୍ରମ ନିଶ୍ଚିତ ଭାବେ ନବୀନ ଓ କଷ୍ଟକର ବ୍ୟାପାର । ସାହିତ୍ୟ ପ୍ରତି ଥିବା ପ୍ରତିବଦ୍ଧତାର ନମୁନା ଦେଇଛନ୍ତି କ୍ଷେତ୍ରବାସୀ । ଏହି ସଂକଳନର ଭିତ୍ତିଭୂମି ସଂପର୍କରେ ତାଙ୍କ ମତ ଏଠାରେ ପ୍ରଣିଧାନଯୋଗ୍ୟ । " ସାହିତ୍ୟ ବିଷୟକ କୌଣସି ବକ୍ତବ୍ୟକୁ ହଜେଇ ଦେଇନାହିଁ, ଜାତିର ଦାୟାଦଙ୍କ ପାଇଁ ତାହା ସାଇତି ରଖିଛି । ତାଙ୍କ ଚେତନା ବୃଦ୍ଧି ଲାଗି ଏହା କିଛି

ଖୋରାକ ଯୋଗାଇବ କି ନା ତାହା ସେମାନଙ୍କୁ ଜଣା । କାରଣ ସାହିତ୍ୟ ଚର୍ଚ୍ଚାର ଫଳାଫଳ ତତ୍‌କ୍ଷଣାତ୍ ଧରାପଡ଼େ ନାହିଁ । ଭଲମନ୍ଦର ଧାରଣା ଆସେ ପରେ । ସଭା କକ୍ଷର କଳରୋଳ ବା କରତାଳିର ଧ୍ୱନି-ପ୍ରତିଧ୍ୱନି ଭିତରେ ସାହିତ୍ୟର ମୂଲ୍ୟ ଉପଲବ୍ଧି ହୁଏ ନାହିଁ । ହୁଏ ଏକାନ୍ତ ଅଭିନିବେଶ ଅବସରରେ । ଏଥିପାଇଁ ଲୋଡ଼ା ଲିଖିତ ଓ ମୁଦ୍ରିତ ଆଲୋଚନା - ନିବନ୍ଧ ବା ଅଭିଭାଷଣ ।"[୧୮] ଏଥିରେ ସଂଯୋଜିତ ଆଲୋଚନା 'ଆଧୁନିକତାର ଦର୍ଶନ ।' ଓଡ଼ିଆ ସାହିତ୍ୟ ପରିଷଦର ବାର୍ଷିକ ଉତ୍ସବରେ ୭.୨.୧୯୭୫ ରେ ଡଃ ନାୟକ ଉପସ୍ଥାପନ କରିଥିଲେ ଆଧୁନିକତା ସଂପର୍କରେ ତାଙ୍କର ବିଚାର ବିମର୍ଶ । ଏହା ବେଶ୍ ସମୟୋପଯୋଗୀ ଓ କ୍ଷେତ୍ରବାସୀଙ୍କ ଉନ୍ନତ ଚିନ୍ତାର ପରିଚାୟକ। "ବର୍ତ୍ତମାନର ବେଦୀ ଉପରେ ଯେଉଁ ସମୟ ପୁରୁଷଟି ଠିଆ ହୋଇଛି, ଆମେ ସାଧାରଣ ଆଖିରେ ତାକୁ ଆଧୁନିକ ବୋଲି ଚିହ୍ନିଛୁ ।"[୧୯] କବି ବାଞ୍ଛାନିଧି,ସାହିତ୍ୟର ଭାଷା, ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟର ଇତିହାସକୁ ଝଙ୍କାରର ଅବଦାନ, କବିସୂର୍ଯ୍ୟଙ୍କ ଭକ୍ତି କବିତା, ଭଞ୍ଜଙ୍କ କାବ୍ୟ କବିତାରେ ମାନବ ରୂପ, ଜାତୀୟ ସଂହତି ପାଇଁ ଭାଷା, ଗଙ୍ଗାଧର କବି ଓ ମଣିଷ, ସାଂପ୍ରତିକ ଜୀବନ ଓ ସାହିତ୍ୟ, କବିତା ପାଇଁ ସପ୍ତମ ଦଶକର ଘୋଷଣା, କବିତା ଚର୍ଚ୍ଚାର କଳା, ଭାଷାନ୍ତରର ଭାଷ୍ୟ, ଆଧୁନିକ ଓଡ଼ିଆ କବିତାରେ ବ୍ୟକ୍ତି ବିଶ୍ୱ ଓ ବହିର୍ବିଶ୍ୱର ଅଭିବ୍ୟକ୍ତି, କବି ଉପେନ୍ଦ୍ର ପ୍ରସାଦ ଓ ଓଡ଼ିଆ ସାହିତ୍ୟ ସଂଗଠନ ପ୍ରଭୃତି ସାହିତ୍ୟ ଚର୍ଚ୍ଚାର ଏକ ସଂଯୋଜନା କରାଯାଇଛି ଏହି ପୁସ୍ତକରେ । ଏଥିରୁ ବୁଝିହୁଏ ଯେ, କ୍ଷେତ୍ରବାସୀ ଭାଷଣ ଦେବାପାଇଁ ବା ଅତିଥି ହୋଇ କଥାକଥାରେ ସାହିତ୍ୟକୁ ପ୍ରକଟ କରିନାହାଁନ୍ତି ବରଂ ଅଧ୍ୟୟନ, ଅନୁଶୀଳନ ଓ ପରିଶ୍ରମ ଯେ ଏଥିପାଇଁ ଲୋଡ଼ା ତାହା ସେ କହିଦେଇଯାଇଛନ୍ତି । ସାହିତ୍ୟ ଓ ସଂସ୍କୃତି ପାଇଁ ସେ ଯେ ଜଣେ ସମର୍ପିତ ସାରସ୍ୱତ ପୁରୁଷ ଥିଲେ, ଏହା ତାହାର ଜ୍ୱଳନ୍ତ ନମୁନା ।

'ସାହିତ୍ୟ ଚର୍ଚ୍ଚା' ଗ୍ରନ୍ଥ ବି ଏହି ପର୍ଯ୍ୟାୟର । ଏଥିରେ ଓଡ଼ିଆ କାବ୍ୟଧାରା ଓ ପାଶ୍ଚାତ୍ୟ କାବ୍ୟତତ୍ତ୍ୱ, ମାଟିର ସାହିତ୍ୟ ଓ ଜାତିର ଦର୍ଶନ, ଆଧୁନିକ ଓଡ଼ିଆ ପଦ୍ୟ ସାହିତ୍ୟର ଧାରା, ଆଧୁନିକ ଓଡ଼ିଆ କାବ୍ୟ କବିତାରେ ପାଶ୍ଚାତ୍ୟ ପ୍ରଭାବ, ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଭୂମିକା, ଓଡ଼ିଆ ଦୂତ କାବ୍ୟ, ଓଡ଼ିଆ ସାହିତ୍ୟ ଗବେଷଣାର ନୂତନ ଆଭିମୁଖ୍ୟ ଶୀର୍ଷକ ବିଷୟ ଅନ୍ତର୍ଭୁକ୍ତ ହୋଇଛି । ଓଡ଼ିଶାର ବିଭିନ୍ନ ସ୍ଥାନରେ ଡଃ ନାୟକଙ୍କ ଦ୍ୱାରା ହୋଇଥିବା ସାହିତ୍ୟ ଚର୍ଚ୍ଚାର ଏକ ସଂକଳନ । ସେହିପରି ସଂପାଦକ ଭାବରେ ତାଙ୍କର କୃତିତ୍ୱର ଦୀପ୍ତିସ୍ତମ୍ଭ 'ସଂପାଦକ କ୍ଷେତ୍ରବାସୀ' । ଏହା ଗବେଷକ ସୁଧାର

ଚନ୍ଦ୍ର ବେହୁରାଙ୍କ ଦ୍ୱାରା ସଂପାଦିତ ହୋଇଛି । ସେଥିରେ ତାଙ୍କର ବହୁ ଉପାଦେୟ ରଚନା ସ୍ଥାନ ପାଇଛି ।

କବି ଅର୍ଜୁନ ଦାସ, କବି ଚରିତ ରାଧାନାଥ, କବି ନୀଳକଣ୍ଠ, ନାରୀକବି ଅନ୍ନପୂର୍ଣ୍ଣା ଏହି ଚାରୋଟି ଗ୍ରନ୍ଥ କ୍ଷେତ୍ରବାସୀ ପ୍ରତିଭାର ଅନ୍ୟ ଦିଗନ୍ତ । ଜୀବନଭିତ୍ତିକ ସାହିତ୍ୟାଲୋଚନାରେ ଜୀବନ ଯେପରି ତଥ୍ୟାଶ୍ରୟୀ ଆଲୋଚନା ସେପରି ସାରଗର୍ଭକ । ପାଠକମାନଙ୍କୁ ବିଭିନ୍ନ ସାହିତ୍ୟର ସମ୍ବାଦ ସେ ପ୍ରଦାନ କରି ଅମୃତର ଯାତ୍ରୀ ହୋଇଛନ୍ତି । ଏପରି ବହି ରଚନା କରିବାର ଆଭିମୁଖ୍ୟ ତାଙ୍କ ଆବେଗପ୍ରବଣ କଥାରେ ପରିପୂର୍ଣ୍ଣ ହୋଇଛି । "ଆପଣ ନିତି ଖୋଜୁଛନ୍ତି ଏ ଜାତିର ସାରସ୍ୱତ ସାରଥିଙ୍କର ପଦଚିହ୍ନ । ଏହି ମାଟିର ସାହିତ୍ୟ ମହକୁମା ଉପରେ କିଏ କେମିତି ଚାଲିଛି । ଆତୁର ହୋଇ ଆପଣମାନେ ତାର ହିସାବ ଚାହିଁଛନ୍ତି । ଏହି ଖୋଜିବା ପ୍ରତିଧ୍ୱନି ମୋ ଭଳି କେତେଜଙ୍କ କାନରେ ବାଜିଛି । ଏହା ଶୁଣି ସେମାନେ ନିଶ୍ଚୟ ଚଞ୍ଚଳ ହୋଇଉଠିଥିବେ ।"[୨୦]

ଡକ୍ଟର କ୍ଷେତ୍ରବାସୀ ନାୟକ ଜୀବନର ଶେଷ ପର୍ଯ୍ୟନ୍ତ ଯାହା ଉତ୍କୃଷ୍ଟ ସମ୍ଭବ ତାହା ବିଶ୍ୱସ୍ତ ଭାବରେ କରିଛନ୍ତି । ତାଙ୍କ ରଚିତ ପ୍ରବନ୍ଧଗୁଡ଼ିକ ଓଡ଼ିଆ ସାହିତ୍ୟର ଉପାଦେୟ ରଚନା । ଜୀବନ ଥିଲା ତାଙ୍କର ବ୍ୟାପକ । ତେଣୁ ଏକ ପୂର୍ଣ୍ଣ ମନ ନେଇ ସାହିତ୍ୟ ରଚନା ପାଇଁ ସେ ଆଗୁସାର ହୋଇଥିଲେ । ସେଥିପାଇଁ ତାଙ୍କ ପ୍ରବନ୍ଧଗୁଡ଼ିକ ଜୀବନ ଓ ସମୟ ଖଣ୍ଡର ବାର୍ତ୍ତାବହନ କରେ । କ୍ଷେତ୍ରବାସୀ ଥିଲେ ଅନିସନ୍ଧିତ୍ସୁ । ନୂଆ କଥା ଚିନ୍ତା କରିବା, ନୂଆ କାର୍ଯ୍ୟଟିଏ କରିବା, ନୂତନ ମନରେ ଓଡ଼ିଆ ସାହିତ୍ୟକୁ ଅଭିମଣ୍ଡିତ କରିବାର ସ୍ୱପ୍ନ ନେଇ ସେ ଜୀବନବ୍ୟାପୀ କାର୍ଯ୍ୟ କରିଥିଲେ । ଅଧ୍ୟୟନ, ଅଧ୍ୟାପନା, ସାହିତ୍ୟ ଓ ସଂସ୍କୃତିରେ ନିମଗ୍ନ କ୍ଷେତ୍ରବାସୀ ସମୟ ଓ ସାହିତ୍ୟର ଆବଶ୍ୟକତାକୁ ଉପଲବ୍ଧ କରି ଲେଖନୀ ଚାଳନା କରୁଥିଲେ । ସେଥିପାଇଁ କ୍ଷେତ୍ରବାସୀଙ୍କ ପ୍ରବନ୍ଧ ଓ ସମାଲୋଚନା ତଥାକଥିତ ସାରସ୍ୱତ ସୃଷ୍ଟି ନ ହୋଇ ଏକ ନୂତନ ଚେତନାର ସମ୍ଭାରରେ ପରିଣତ ହୋଇଛି । କ୍ଷେତ୍ରବାସୀ ପ୍ରବନ୍ଧଗୁଡ଼ିକରେ ସମୀକ୍ଷା ଓ ଆଲୋଚନାକୁ ପରିବ୍ୟାପ୍ତ କରିବା ସହିତ କହୁଥିବା କଥା ଉପରେ ଗୁରୁତ୍ୱ ଦେଉଥିଲେ । ପ୍ରାବନ୍ଧିକଙ୍କର ଶିଳ୍ପ ମାନସ ତାର ବ୍ୟକ୍ତିତ୍ୱର ସାମଗ୍ରିକ ସତ୍ତା ଦ୍ୱାରା ନିୟନ୍ତ୍ରିତ, ତେଣୁ ତା'ର ସୃଷ୍ଟି ସଂପଦ ମଧ୍ୟରେ ସ୍ୱବ୍ୟକ୍ତିତ୍ୱର ପରିସ୍ଫୁଟନ ଘଟିଥାଏ । କ୍ଷେତ୍ରବାସୀ ନାୟକଙ୍କ ବ୍ୟକ୍ତିତ୍ୱ ଉଚ୍ଚମାନର ସାରସ୍ୱତ ବ୍ୟକ୍ତିତ୍ୱ । ସେଥିପାଇଁ ତାଙ୍କ ପ୍ରବନ୍ଧଗୁଡ଼ିକରେ ସାରସ୍ୱତ ମୂଲ୍ୟାୟନ ବେଶ୍ ସମୁଜ୍ଜଳ ହୋଇପାରିଛି । ସାରସ୍ୱତ ସୃଷ୍ଟି ପାଇଁ ପ୍ରାଥମିକ ଆବଶ୍ୟକତା ହେଉଛି ଅଭିଜ୍ଞତା ଓ ଅନୁଭୂତି ସହ ଏକ ସୃଜନକ୍ଷମ ମନ । ଏହି ତ୍ରିଧାରା ଜଣେ ସ୍ରଷ୍ଟାକୁ ମହତ୍ତର ଆସନ ଦେଇପାରେ । କ୍ଷେତ୍ରବାସୀ

ନାୟକଙ୍କ ଅନେକ ପ୍ରବନ୍ଧ ଓ ଆଲୋଚନାରେ ଅନୁଭୂତିର ପ୍ରତିଫଳନ ଘଟିଛି ଏକ ସୃଜନଶୀଳ ପଥ ଦେଇ । କ୍ଷେତ୍ରବାସୀଙ୍କ ଜୀବନର ବିବିଧ କାର୍ଯ୍ୟାବଳୀକୁ ଲକ୍ଷ୍ୟ କଲେ ଯେ, କେହି ଗୋଟିଏ ସତ୍ୟରେ ଉପନୀତ ହେବ ଯେ, ମଣିଷ ସଂସାରକୁ କେବଳ ନିଜ ପାଇଁ ଆସିନଥାଏ । ସୂର୍ଯ୍ୟଙ୍କର ଧାରେ କିରଣ ପରି ସେ ଏକ ବିରାଟ ସତ୍ତା ଓ ବିରାଟ ବିଶ୍ୱର ଅଂଶ ବିଶେଷ ଏବଂ ଏ ଦୃଷ୍ଟିରୁ ସେହି ବୃହତ୍ତର ସତ୍ତା ବା ବୃହତ୍ତର କ୍ଷେତ୍ରଟି ପ୍ରତି ତାର କିଛି ଦାୟିତ୍ୱ ଅଛି । ବ୍ୟକ୍ତିଗତ ପ୍ରଚେଷ୍ଟାରେ ହେଉ ବା ସାମୂହିକ ଭାବରେ ହେଉ ପ୍ରତ୍ୟେକେ ନିଜ ଜୀବଦ୍ଦଶାରେ ଏଥିପ୍ରତି ଅଭିହିତ ରହି କର୍ତ୍ତବ୍ୟରତ ହେବା ପ୍ରୟୋଜନ ।''

ଜଣେ ବରେଣ୍ୟ ସ୍ରଷ୍ଟା ଭାବରେ କ୍ଷେତ୍ରବାସୀଙ୍କର ଥିଲା ଅଧିକରୁ ଅଧିକ ଉଚ୍ଚ ଆକାଂକ୍ଷା ଓ ଅଦମ୍ୟ ଅଭିଳାଷ । ଏହି ଉଚ୍ଚାକାଂକ୍ଷାରୁ ଓଡ଼ିଆ ସାହିତ୍ୟ ପ୍ରାପ୍ତ ହୋଇଅଛି କ୍ଷେତ୍ରବାସୀ ସାରସ୍ୱତ ରଚନାସମୂହ । ଅଧିକ ତାଙ୍କଠାରୁ ଆଶା କରାଯାଉଥିଲା, କିନ୍ତୁ କାଳ ଏଥିରେ ବାଧକ ହେଲା । ଏଥିପାଇଁ ତାଙ୍କ ସୁଯୋଗ୍ୟ ଶିକ୍ଷକ ଡକ୍ଟର କୃଷ୍ଣ ଚରଣ ବେହେରା କହିଥିବା ତାଙ୍କ ସଂପର୍କରେ କେତୋଟି କଥା ଏଠାରେ ପ୍ରଣିଧାନ ଯୋଗ୍ୟ - "ହଁ ତା'ର ସ୍ୱପ୍ନ ଥିଲା ଅନେକ । ଆମର ଅନେକ ଥର ଏ ବିଷୟରେ ଆଲୋଚନା ହୋଇଛି । ଧରାଯାଉ 'ଶୈଳୀ ବିଜ୍ଞାନ' (stylistics)। ପାଶ୍ଚାତ୍ୟ ତଥା ପ୍ରତିବେଶୀ ସାହିତ୍ୟ ଯଥା ବଙ୍ଗଳା, ହିନ୍ଦୀ ଆଦି ସାହିତ୍ୟରେ ଏ ଦିଗରେ ପ୍ରାୟ କିଛି ହୋଇନାହିଁ । ସେହିପରି ସାହିତ୍ୟ ସମୀକ୍ଷାରେ ଅନ୍ତର୍ବିଦ୍ୟାର ଭିତ୍ତି (Interdisciplinary approach in the study of literature) । ସେହିପରି ନନ୍ଦନ ତତ୍ତ୍ୱ (Aesthetics) । ତେଣୁ ଏସବୁ ଉପରେ ସ୍ୱତନ୍ତ୍ର ଆଲୋଚନା ଚକ୍ରମାନ ଆୟୋଜନ କରାଗଲା । ଏହାକୁ ଅନୁଧ୍ୟାନ କଲେ ଜଣାପଡ଼ିବ ଯେ, ଯେତେବେଳେ ଚିନ୍ତା କରିଛି ସବୁବେଳେ ଚାହିଁଛି କିଛି ଗୋଟାଏ ନୂଆ କାମ କରି ଓଡ଼ିଆ ସାହିତ୍ୟରେ ଅଧିକ କିଛି ଯୋଗ କରିବା ପାଇଁ ।''ଏହା ସତ୍ତ୍ୱେ କ୍ଷେତ୍ରବାସୀ ନାୟକ ବିଦଗ୍ଧ ପ୍ରାବନ୍ଧିକ ଓ ସାହିତ୍ୟ ସମାଲୋଚକ ଭାବେ ଓଡ଼ିଆ ସାହିତ୍ୟ ଇତିହାସରେ ସମ୍ମାନିତ ।

## ପ୍ରାନ୍ତ ଟୀକା

୧. ମାତ୍ର ପଦୁଟିଏ । ସାହିତ୍ୟର ସାମାନ୍ୟ କଥନ

୨. ତତ୍ରୈବ - ପୃ.୪

୩. ପ୍ରତିବିମ୍ବ - ସାହିତ୍ୟର ସାମାନ୍ୟ କଥନ - ପୃ.୪୫

୪. ଚରିତ୍ରଚର୍ଚ୍ଚା - ସାହିତ୍ୟର ସାମାନ୍ୟ କଥନ - ପୃ. ୧୧୧

୫. ବିଶ୍ୱସାହିତ୍ୟ -ସାହିତ୍ୟର ସାମାନ୍ୟ କଥନ - ପୃ.୧୨୫

୬. ଆଧୁନିକ ଓଡ଼ିଆକାବ୍ୟ ସାହିତ୍ୟର ପାଶ୍ଚାତ୍ୟ ପ୍ରଭାବ - ପୃ.୨୪୩

୭. ତତ୍ରୈବ - ପୃ. ୮୯

୮. ଉତ୍କଳପ୍ରଭା -୧୮୯୨ -୧ମ ବର୍ଷ -୧ମ ସଂଖ୍ୟା - ପୃ.୨-୩

୯. ଉତ୍କଳସାହିତ୍ୟ - ୧୮୯୭-୧ମ ବର୍ଷ - ୧ମ ସଂଖ୍ୟା - ପୃ.୨

୧୦. କବି ଓ କାମିନୀ - ପୃ. ୧

୧୧. ଗଙ୍ଗାଧରଙ୍କ କାବ୍ୟ କବିତାରେ ବିରହ ଚେତନା- କବି ଓ କାମିନୀ- ପୃ.୬୯

୧୨. କବିତାର କଥା-ପୃ.୧୮

୧୩. କାବ୍ୟବିମ୍ବ- ପ୍ରସଙ୍ଗ ଓ କବି ସାରଳାଦାସ - କାବ୍ୟ ପୁରୁଷର କଥା- ପୃ.୪୯

୧୪. ଆଧୁନିକତା ଓ ଓଡ଼ିଆ ସାହିତ୍ୟ - କାବ୍ୟ ପୁରୁଷର କଥା- ପୃ.୮୭

୧୫. ସଂପାଦନା ପ୍ରସଙ୍ଗ- ତତ୍ରୈବ -ପୃ.୯୬

୧୬. ଗବେଷଣାର ସରହଦ ଓ ବିଷୟ ପରିକଳ୍ପନା - କାବ୍ୟ ପୁରୁଷର କଥା-ପୃଷ୍ଠା - ୧୦୨

୧୭. ଭାରତୀୟ କାବ୍ୟତତ୍ତ୍ୱ - ପୃ.୧

୧୮. ଆଲୋଚନାପତ୍ର - ମୁଖଶାଳା

୧୯. ତତ୍ରୈବ -ପୃ.୧

୨୦. କବି ଚରିତ ରାଧାନାଥ - ଭୂମିକା

୨୧. କ୍ଷେତ୍ରବାସୀ ଇତିହାସ- ଅସିତ ମହାନ୍ତି ଓ ପ୍ରଦୀପ୍ତ ଶ୍ରୀଚନ୍ଦନ- ସମାବେଶ - ୨୯ବର୍ଷ - ମାର୍ଚ୍ଚ-ଅପ୍ରେଲ-୧୯୮୭- ପୃ.୧୪୫

୨୨. ତତ୍ରୈବ ପୃ.-୧୪୮




# କ୍ଷେତ୍ରବାସୀଙ୍କ ସାହିତ୍ୟିକ ଅଭିଭାଷଣ : ଏକ ମୂଲ୍ୟାୟନ

ଶ୍ରୀମତୀ ବିଜୟିନୀ ସିଂହଦେଓ

ବୃତ୍ତିରେ ରହି ବୃତ୍ତିର ସଂପୂର୍ଣ୍ଣ ସଦୁପଯୋଗ କରିବାର ମାନସିକତା ସମସ୍ତଙ୍କର ନ ଥାଏ କି ସମସ୍ତେ ସେ ପ୍ରକାର ସୁଯୋଗ ଲାଭ କରିପାରନ୍ତି ନାହିଁ । କିନ୍ତୁ ଇଚ୍ଛା ଥିଲେ ଉପାୟ ମିଳିବାର ସମ୍ଭାବନା ନିଶ୍ଚୟ ଥାଏ । ଡଃ କ୍ଷେତ୍ରବାସୀ ନାୟକଙ୍କ କ୍ଷେତ୍ରରେ ଆନ୍ତରିକ ମାନସିକତା ସହ ସୁଯୋଗ, ସମ୍ଭାବନା ସବୁ ସମ୍ଭବ ହୋଇଥିଲା । ତାଙ୍କର କର୍ତ୍ତବ୍ୟ ପରାୟଣତା, ଏକନିଷ୍ଠ ସାଧନା, ପ୍ରଚଣ୍ଡ ଇଚ୍ଛାଶକ୍ତି, ଗଭୀର ଅଭିନିବେଶ ତାଙ୍କୁ ପ୍ରତ୍ୟେକ କ୍ଷେତ୍ରରେ ସଫଳକାମୀ ହେବାରେ ସହାୟତା କରିଥିଲା ।

ବୃତ୍ତିରେ କ୍ଷେତ୍ରବାସୀ ଥିଲେ ଅଧ୍ୟାପକ । ପ୍ରାଚୀନ ଗୁରୁକୁଳ ଆଦର୍ଶ ପରି ଅଧ୍ୟୟନ ଅଧ୍ୟାପନା ଥିଲା ତାଙ୍କ ଜୀବନର ବ୍ରତ । ସାହିତ୍ୟର ବିଭିନ୍ନ ବିଭାଗ ଅନୁଧାନ କରି ଆତ୍ମସ୍ଥ କରିବାରେ ସେ ଥିଲେ ସିଦ୍ଧହସ୍ତ । କେବଳ ଅଧ୍ୟୟନ, ଅଧ୍ୟାପନା ଓ ଲେଖନୀ ଚାଳନାରେ ତାଙ୍କର ସାରସ୍ୱତ ପରିଧି ସୀମାବଦ୍ଧ ନ ଥିଲା, ତାଙ୍କର ଅନେକ ସାରଗର୍ଭକ ଅଭିଭାଷଣ ସାହିତ୍ୟର ଛାତ୍ର ତଥା ସାହିତ୍ୟାନୁରାଗୀମାନଙ୍କୁ ବିଶେଷ ଭାବରେ ପ୍ରଭାବିତ କରିପାରିଛି । ସେପରି ବିରାଟ ବହୁମୁଖୀ ପ୍ରତିଭାକୁ କାଳ ସିନା ସହିଲା ନାହିଁ, ସେହି ସ୍ୱଳ୍ପ ଜୀବନକାଳ ମଧ୍ୟରେ ସେ ତାଙ୍କର ସାରସ୍ୱତ ସାଧନାକୁ ସାର୍ଥକ କରିବାରେ ସମର୍ଥ ହୋଇପାରିଥିଲେ ।

ବିଭିନ୍ନ ଶିକ୍ଷାୟତନରେ, ସାଂସ୍କୃତିକ ସମାରୋହରେ, ସାହିତ୍ୟିକ ପାଠଚକ୍ରରେ, ବେତାର ମାଧ୍ୟମରେ ସେ ନାନାବିଧ ଅଭିଭାଷଣ ପ୍ରଦାନ କରିଛନ୍ତି । ତାହା ସାହିତ୍ୟରଥୀମାନଙ୍କର ଜୀବନୀ ଓ କୃତି ଆଲୋଚନାଠାରୁ ଆରମ୍ଭ କରି ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, କବିତା, ଆତ୍ମଚରିତ, କାବ୍ୟାଲୋଚନା ଇତ୍ୟାଦି ପର୍ଯ୍ୟନ୍ତ ପ୍ରସାରିତ । ତାଙ୍କ କର୍ମଜୀବନର ଅନେକ ସମୟ ବ୍ରହ୍ମପୁରରେ ବିତିଥିବାରୁ ଅଧିକାଂଶ ଅଭିଭାଷଣ ଦକ୍ଷିଣ ଓଡ଼ିଶାର ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନରେ ପ୍ରଦତ୍ତ ହୋଇଛି । କେବଳ ଦକ୍ଷିଣାଞ୍ଚଳ ନୁହେଁ, ଓଡ଼ିଶାର ଏକ ସୀମାନ୍ତରୁ ଅନ୍ୟ ସୀମାନ୍ତ ପର୍ଯ୍ୟନ୍ତ ତାଙ୍କର ଅଭିଭାଷଣର କ୍ଷେତ୍ର ବିସ୍ତୃତ ।

ଡଃ ନାୟକଙ୍କର ସର୍ବମୋଟ ଉପଲବ୍ଧ ହୋଇଥିବା ଅଭିଭାଷଣର ସଂଖ୍ୟା-ବାଇଶି ।

କେତେକ ପ୍ରସିଦ୍ଧ ସାହିତ୍ୟିକଙ୍କ ବ୍ୟକ୍ତିଗତ କୃତିକୁ ଭିତ୍ତିକରି ସେ ବିଭିନ୍ନ ସ୍ଥାନରେ ପାଞ୍ଚଗୋଟି ଭାଷଣ ପ୍ରଦାନ କରିଛନ୍ତି । ୧୯୭୯ ମସିହାରେ ପ୍ରକାଶିତ 'ଆଲୋଚନା ପତ୍ର' ପୁସ୍ତକରେ ଏହି ଭାଷଣସମୂହ ସ୍ଥାନିତ । ୧୫.୧.୧୯୭୫ ରେ କଟକ ଆକାଶବାଣୀ

କେନ୍ଦ୍ରରେ ଡଃ ନାୟକ କବି ବାଞ୍ଛାନିଧିଙ୍କ ସଂପର୍କରେ ଏକ ସନ୍ଦର୍ଭ ପାଠ କରିଥିଲେ । କବି ବାଞ୍ଛାନିଧି ଭଦ୍ରକ ସବ୍‌ଡିଭିଜନ୍‌ର ଭରମ୍‌ରେ ୧୮୯୭ ମସିହାରେ ଜନ୍ମଲାଭ କରିଥିଲେ । ନିପଟ ପଲ୍ଲୀନିବାସୀ ହେଲେ ମଧ୍ୟ ସେ ଏକ ବିରାଟ ସ୍ୱପ୍ନରେ ଆଶାୟୀ ଥିଲେ । ସେ ଭାରତର ସ୍ୱାଧୀନତା ପାଇଁ ନିଜକୁ ସଂପୂର୍ଣ୍ଣ ରୂପେ ଉତ୍ସର୍ଗ କରିଦେଇଥିଲେ । ୧୯୨୧ ରେ ଅସହଯୋଗ ଆନ୍ଦୋଳନ ଓ ୧୯୩୦ ରେ ଲବଣ ସତ୍ୟାଗ୍ରହରେ ଯୋଗ ଦେବା ପରେ ସେ ସଂପୂର୍ଣ୍ଣ ସ୍ୱଦେଶୀ ଭାବନାରେ ମଗ୍ନ ହୋଇଗଲେ । ତାଙ୍କ ଲେଖନୀରୁ ନିଃସୃତ ହେଲା ଜାତି, ଧର୍ମ, ନିର୍ବିଶେଷରେ ସାର୍ବଭୌମ ଆହ୍ୱାନ -

"ଜୟ ହିନ୍ଦୁ ମୁସଲମାନ, ଶିଖ ପାର୍ଶୀ ଜୈନ
ବୌଦ୍ଧ, ଇହୁଦୀ, ଖ୍ରୀଷ୍ଟିୟାନ
ନ କରି କାହାରି ଭୟ
ଗାଅ ଜନ୍ମଭୂମିର ଜୟ ।"

ସେ ପୂର୍ଣ୍ଣପ୍ରାଣରେ ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ଦେଶ ମୁକ୍ତିର ସଂଗ୍ରାମ ସହିତ ସାଧାରଣ ମଣିଷର ଦୁଃଖ ବେଦନାକୁ ସେ ମର୍ମେ ମର୍ମେ ଅନୁଭବ କରିଥିଲେ । ସ୍ୱାଧୀନତା ସଂଗ୍ରାମ ପାଇଁ ସେ ନିଜସ୍ୱ ସରଳ ଭାଷାରେ ଜନସାଧାରଣଙ୍କୁ ଉଦ୍ଦୀପ୍ତ କରିଦେଉଥିଲେ ।

ସେ ସଂଗ୍ରାମରେ ବିଶ୍ୱାସ କରୁଥିଲେ । ନ୍ୟାଯ୍ୟଦାବୀ ପାଇଁ ସେ ଅସୀମୂନରେ ଲଢ଼େଇ ଜାରି ରଖି ବା ସଙ୍ଗେ ସଙ୍ଗେ ଆତ୍ମୋତ୍ସର୍ଗ ପାଇଁ ଆହ୍ୱା କରି ଲେଖିଥିଲେ-

"କହ କେଉଁ ଜାତି ପାଇଛି ମୁକତି କରି ହୁରିହାରି ଗୁହାରୀ
କହ ପାଇଛି କେ ସୁଖ ଲିଭାଇଛି ଦୁଃଖ ମାଗି ମାଗି ପଥ ଭିକାରୀ ।"

ବାଞ୍ଛାନିଧି ଦୁଇଟି ଚେତନାରେ ଉଦ୍‌ବୁଦ୍ଧ ଥିଲେ, ଗୋଟିଏ ସ୍ୱାଧୀନତା ଚେତନା ଓ ଅନ୍ୟଟି ମାନବବୋଧ ।

ନିଜସ୍ୱ ଜୀବନ ଜଞ୍ଜାଳର ଦୁଃଖ, ଯାତନା ଅପେକ୍ଷା ପରାଧୀନ ଜାତିର ଯନ୍ତ୍ରଣା ତାଙ୍କୁ ଅଧିକ ପୀଡ଼ାଦାୟକ ହୋଇଥିଲା । ବେଦନା ପରାହତ ପ୍ରାଣରୁ ତାଙ୍କର ସ୍ୱାଭାବିକଭାବେ କବିତା ଝରିଥିଲା ।

ମାତ୍ର ଛୟାଳିଶି ବର୍ଷ ଆୟୁକାଳ ମଧ୍ୟରେ ଓଡ଼ିଆ ସାହିତ୍ୟକୁ ଅବଦାନ ତାଙ୍କୁ ଚିରସ୍ମରଣୀୟ କରି ରଖିବ । କ୍ଷେତ୍ରବାସୀଙ୍କ ଅଭିଭାଷଣ ପ୍ରବନ୍ଧରେ ବାଞ୍ଛାନିଧିଙ୍କ ଜାତୀୟତାବାଦୀ ସାହିତ୍ୟର ଗଭୀର ବିଶ୍ଳେଷଣ କରାଯାଇଛି ।

କଳିଙ୍ଗ ସାହିତ୍ୟ ସମାଜ, ବ୍ରହ୍ମପୁର ତରଫରୁ ଆୟୋଜିତ କବିସୂର୍ଯ୍ୟ ସେମିନାର୍‌ରେ ୨୨/୬/୧୯୭୪ ରେ ଡଃ କ୍ଷେତ୍ରବାସୀ ନାୟକ ତାଙ୍କର ଆଲୋଚନା ପତ୍ର ପାଠ କରିଥିଲେ । କବିସୂର୍ଯ୍ୟ (୧୭୮୯ -୧୮୪୫)ଙ୍କର ଭକ୍ତି କବିତା ଥିଲା ଆଲୋଚ୍ୟ ବିଷୟ । କବିସୂର୍ଯ୍ୟଙ୍କର ଚମ୍ପୂ ଓଡ଼ିଆ ସାହିତ୍ୟକୁ ଏକ ଅନବଦ୍ୟ ଅବଦାନ । କବିସୂର୍ଯ୍ୟ ବଳଦେବ ରଥ, ପିତା ଉଜ୍ଜ୍ୱଳ ରଥଙ୍କ ସଂସ୍କୃତ ଜ୍ଞାନ ଓ ଅଜା ତ୍ରିପୁରାରି ଓ ତାଙ୍କର ତାନ୍ତ୍ରିକ ସାଧନା ଦ୍ୱାରା ମୁଖ୍ୟତଃ ପ୍ରଭାବିତ ହୋଇଥିଲା । ସେତେବେଳକୁ ଓଡ଼ିଆ ସାହିତ୍ୟର ପୃଷ୍ଠଭୂମି କାବ୍ୟ ଓ ସଙ୍ଗୀତ ସମ୍ଭାରରେ ସମୃଦ୍ଧ ହୋଇସାରିଥିଲା । ସୁତରାଂ, ସାହିତ୍ୟ ଓ ସଂସ୍କୃତିର ଏକ ବଳିଷ୍ଠ ପରମ୍ପରାର ପୃଷ୍ଠଭୂମିରେ ବଳଦେବଙ୍କର ସାହିତ୍ୟ ଚର୍ଚ୍ଚା ଆରମ୍ଭ ହୋଇଥିଲା ।

ଜଳନ୍ତର ରାଜା ରାମଚନ୍ଦ୍ର ଛୋଟରାୟ ଥିଲେ ବଳଦେବଙ୍କର ପ୍ରଥମ ପ୍ରେରଣାଦାତା । ପରେ ଆଠଗଡ଼ ଆସିବା ପରେ ରାଜା ବାଲୁକେଶ୍ୱର ହରିଚନ୍ଦନଙ୍କ ବୈଷ୍ଣବ ଭାବଲୀଳାରେ ମଗ୍ନ ହୋଇଯାଇଥିଲେ । କବିସୂର୍ଯ୍ୟଙ୍କର ଭକ୍ତି କବିତା ସଂଖ୍ୟାତ୍ମକ ଭାବେ ନ୍ୟୂନ ହେଲେ ମଧ୍ୟ ତାହାର ଗୁଣାତ୍ମକମାନ ଅତ୍ୟନ୍ତ ଉଚ୍ଚକୋଟୀର । ତାଙ୍କ ଭକ୍ତିର ଗଭୀରତା, ପ୍ରାଣର ଉଲ୍ଲାସ, ହୃଦୟର ଆବେଗ କଳନା କରିହୁଏ ନାହିଁ ଓ ଡଃ ନାୟକ ବଳଦେବଙ୍କ କବିତାକୁ ଦୀନକୃଷ୍ଣ ଓ ଗୌର ଚରଣଙ୍କ କବିତା ସହିତ ତୁଳନା କରି ତା'ର ଉତ୍କର୍ଷ ପ୍ରତିପାଦନ କରିଛନ୍ତି । ବଳଦେବ ପୁରୀରେ ଅବସ୍ଥାନ କାଳରେ ପ୍ରତ୍ୟହ ତାଙ୍କର ପ୍ରିୟ ଦୁଇଟି ଜଣାଣ ଜଗନ୍ନାଥଙ୍କ ସମ୍ମୁଖରେ ଗାନ କରୁଥିଲେ ବୋଲି କଥିତ । ସେ ଦୃଢ଼ ସ୍ୱରରେ ଜଗନ୍ନାଥଙ୍କୁ ଭର୍ତ୍ସନା କରିବାର ସାହସ କରିଥିଲେ, "ତୁମ୍ଭଙ୍କୁ ଜଗନ୍ନାଥ ଆଜ ମୋ ମନୋରଥ ଭରତି କରି ଦେବି ଗାଳି ହେ ..." ଭକ୍ତ ହୃଦୟରେ ସେଭଳି ଗଭୀର ଆତ୍ମୀୟତା ନଥିଲେ ସେ ଭର୍ତ୍ସନା ଛଳରେ ଭକ୍ତି ନିବେଦନ କରିପାରନ୍ତା ନାହିଁ ।

ସେ ପୁଣି ଭଗବାନଙ୍କୁ କୈଫିୟତ୍ ମାଗିଛନ୍ତି -

"କେ କି କଲା ମୁଁ ନ କଲି, କେ କି ଦେଲା ଅବା ମୁଁ ଅବା ନ ଦେବା ଘେନି ଏତେ ସରି ହେଲି ହେ ମହାପ୍ରଭୁ...."

ମହାବାହୁ ଜଣାଣରେ ସେ ନିଜର ଅଭିଳାଷ ଉପସ୍ଥାପନା କରିଛନ୍ତି ଭିନ୍ନ ଏକ ଶୈଳୀରେ - "ବିରକତ କରି ଅତି / ବିଜ୍ଞାପନ ନ କରନ୍ତି / ବାଧା ବଳି ପଡ଼ିଲାଣି ମୋତେ ହେ ମହାବାହୁ ...."

କବିଙ୍କର ଭକ୍ତି କବିତା ବ୍ୟତୀତ ଚମ୍ପୂ ଓ ସଙ୍ଗୀତ କଳ୍ପଲତାରେ ପ୍ରକାଶ ପାଇଥିବା ଭକ୍ତିଭାବ ବିଷୟରେ ଡଃ ନାୟକ ଆଲୋକପାତ କରିଛନ୍ତି । ଭକ୍ତିର ନଅଟି ସୋପାନ ଓ

ଭକ୍ତିଭାବର ବିଭିନ୍ନ ଉନ୍ମେଷ ଓ ପ୍ରକାଶଭଙ୍ଗୀକୁ କବିସୂର୍ଯ୍ୟଙ୍କ କବିତାରେ ନିହିତ ଭକ୍ତିଭାବ ସହିତ ତୁଳନା କରିଛନ୍ତି । ସେ କବିସୂର୍ଯ୍ୟଙ୍କର ଭକ୍ତିମତ୍ତାଠାରୁ ତାଙ୍କର କବିସତ୍ତାକୁ ଅଧିକ ମାନ୍ୟତା ପ୍ରଦାନ କରିଛନ୍ତି । ତାଙ୍କ ଦୃଷ୍ଟିରେ "ଅତଏବ ଏଇ ପାରମ୍ପରିକ ବିଚାର ଅନୁଯାୟୀ ବୁଝିଲେ; କବିସୂର୍ଯ୍ୟ ବଳଦେବ ହେବେ ଜଣେ ଭକ୍ତ-କବି, କିନ୍ତୁ ସୂକ୍ଷ୍ମଦୃଷ୍ଟି ବଳରେ ନିରୀକ୍ଷଣ କଲେ ବୁଝାଯିବ ଯେ, ତାଙ୍କର ଭକ୍ତପଣିଆ ଅପେକ୍ଷା କବି - ପଣିଆ ହିଁ ବଡ଼ ।"

ଭଞ୍ଜଙ୍କ କାବ୍ୟ କବିତାରେ ମାନବର ରୂପ ସଂପର୍କିତ ଅଭିଭାଷଣଟି ଡଃ ନାୟକ ଗଞ୍ଜାମ କଳା ପରିଷଦ, ବ୍ରହ୍ମପୁର ସୌଜନ୍ୟରୁ ଆୟୋଜିତ ଭଞ୍ଜ ଜୟନ୍ତୀ ସମାରୋହରେ ୧୯.୫.୧୯୭୭ ରେ ପ୍ରଦାନ କରିଥିଲେ ।

ଅଭିଭାଷଣ ପ୍ରାରମ୍ଭରୁ ହିଁ ବକ୍ତା ଡଃ ନାୟକ ଭାବପ୍ରବଣତାର ଆଶ୍ରା ନ ନେଇ ନିରପେକ୍ଷ ଭାବେ ଭଞ୍ଜଙ୍କୁ ଆଲୋଚନା କରିଛନ୍ତି ବୋଲି ସ୍ୱୀକାର କରିଛନ୍ତି । ସାହିତ୍ୟ କାଳେ କାଳେ ସମାଜର ଚିତ୍ର ପ୍ରତିଫଳିତ କରେ । ଭଞ୍ଜଙ୍କ ସାହିତ୍ୟରେ ତତ୍‌କାଳୀନ ସମାଜର ରାଜ୍ୟ ଜୟ, ବେପାର, ବଣିଜ କିମ୍ବା ସାଧାରଣ ମଣିଷର ଜୀବନ ଶୈଳୀ ପ୍ରକାଶ ପାଇନାହିଁ । ମଣିଷର ବିଚିତ୍ର ଭାବନା ମଧ୍ୟରୁ କେବଳ ପ୍ରେମର ଆବେଗ ହିଁ ତାଙ୍କ ସାହିତ୍ୟର ମୁଖ୍ୟ ଆଭିମୁଖ୍ୟ ଭାବେ ବିବେଚିତ ହୋଇଛି । ସେଥିରେ ପୁଣି ହୃଦୟର ଆବେଗ ଅପେକ୍ଷା ଦୈହିକ ଆକର୍ଷଣ ପ୍ରଧାନ ଭୂମିକା ଗ୍ରହଣ କରିଛି ।

ଡଃ ନାୟକଙ୍କ ବିଚାରରେ ଭଞ୍ଜଙ୍କ ସୃଷ୍ଟିରେ ଭୋଗୀ ଓ ବିରାଗୀ (ବିରହୀ) - ଏଇପରି ଦୁଇ ମଣିଷର ରୂପ ପ୍ରକଟିତ । ସେମାନଙ୍କ ପାଇଁ ଭୋଗର ଭୂମି ହେଉଛି ଐଶ୍ୱର୍ଯ୍ୟ ଓ ଦେହ । ଏହାର ଅପ୍ରାପ୍ତିରେ ବିରାଗ ବା ବିରହ । ଏହି ବିରାଗ - ଜନିତ ବେଦନା ହେଉଛି ଭଞ୍ଜଙ୍କ କାବ୍ୟ - ପୁରୁଷର ଏକମାତ୍ର ବେଦନା ।"

ଉପେନ୍ଦ୍ର ଭଞ୍ଜ ଶାସ୍ତ୍ରଜ୍ଞ ଥିଲେ ହୁଏତ, କିନ୍ତୁ ସାଧାରଣ ମଣିଷର ହୃଦୟକୁ ପୂର୍ଣ୍ଣ ଆକଳନ କରିପାରି ନାହାନ୍ତି । ପାଣ୍ଡିତ୍ୟ ପ୍ରବଣତାରେ ମାନବରୂପ ପ୍ରକଟିତ ହୋଇ ପାରିନାହିଁ । ବକ୍ତାଙ୍କ ଭାଷାରେ, "ଭଞ୍ଜକବି ଆପଣାର କାବ୍ୟିକ ଅଭିବ୍ୟକ୍ତି ପାଇଁ ଶବ୍ଦ ସମୁଦ୍ର ଡେଇଁଗଲେ ସତ କିନ୍ତୁ, ଜୀବନ ସମୁଦ୍ର ଡେଇଁପାରିଲେ ନାହିଁ ।"

ବ୍ରହ୍ମପୁର ପ୍ରଶିକ୍ଷଣ ମହା-ବିଦ୍ୟାଳୟରେ ୧୩.୮.୧୯୭୩ ରେ କବି ଗଙ୍ଗାଧର ଜୟନ୍ତୀ ଅବସରରେ ଡଃ ନାୟକଙ୍କ ପ୍ରଦତ୍ତ ଅଭିଭାଷଣରେ ଗଙ୍ଗାଧରଙ୍କର କବିତ୍ୱ ସହିତ ତାଙ୍କର ମାନବତ୍ୱର ଏକ ସମନ୍ୱୟ ଚିତ୍ର ପ୍ରଦାନ କରିଛନ୍ତି । ବ୍ୟକ୍ତିଗତ ଜୀବନରେ ଦାରିଦ୍ର୍ୟର କଷଣ ତାଙ୍କ ସାଧନାରେ ପ୍ରତିବନ୍ଧକ ହୋଇନାହିଁ । ସାହିତ୍ୟ ସାଧନାରେ ଆତ୍ମଲୀନ ହେଲେ ମଧ୍ୟ ସେ ସାଧାରଣ ମଣିଷର ଅନୁଭୂତିକୁ ପାଶୋରି ଯାଇନାହାନ୍ତି । ତାଙ୍କ ସାରସ୍ୱତ

ତପସ୍ୟାର ନିର୍ଯ୍ୟାସ ତାଙ୍କ ଲେଖନୀରେ ରୂପାୟିତ ହୋଇଛି, ନିଜ ପାଇଁ ଲୋକେ ତପ କରିଥାନ୍ତି ଦୁଃଖପରେ ସହି ଦୁଃଖ / ପରସୁଖ ପାଇଁ ତପ ସାଧନାରେ ତ୍ୟକ୍ତ ହୋଇଥାଏ ସୁଖ । ତଳୁ ଉପରକୁ ଉଠିଥିବା ଲୋକେ ଜାଣିଥାଏ ତଳ କଥା / ଉଚାସନେ ଥାଇ ଯତ୍ନ କରୁଥାଏ ହରିବାକୁ ତଳ ବ୍ୟଥା ।

ଯେତେବେଳେ ସେ ଭକ୍ତିଭାବରେ ବିଭୋର ସେତେବେଳେ ସେ ସଂପୂର୍ଣ୍ଣ ରୂପେ ବିଭୁପାଦରେ ନିମଗ୍ନ, ସମର୍ପିତ । ବିଶ୍ୱନିୟନ୍ତାଙ୍କ ବିରାଟତ୍ୱ ନିକଟରେ ସେ ବିଲୀନ । ସାକାର, ନିରାକାର ଉର୍ଦ୍ଧ୍ୱରେ ତାଙ୍କ ଚେତନା । 'ବିଶ୍ୱଜୀବନ' ଭାବରେ ସେ ସ୍ରଷ୍ଟାଙ୍କୁ ଅନୁଭବ କରିଛନ୍ତି । ଅନୁଭବପ୍ରବଣତାରେ ଗଙ୍ଗାଧରଙ୍କ ବ୍ୟକ୍ତିତ୍ୱ ସ୍ୱଚ୍ଛ, ସହଜ, ସରଳ, ସେଥିରେ କୌଣସି ଦ୍ୱିଧା ନାହିଁ, ଭ୍ରମ ନାହିଁ । ଈଶ୍ୱର ପ୍ରେମ ହେଉ, ମାନବ ଚରିତ୍ରର ସୂକ୍ଷ୍ମ ଅନୁଭୂତି ସମୂହ ହେଉ, କୌଣସି ସ୍ଥଳରେ ସେ ବକ୍ରୋକ୍ତିର ମାଧ୍ୟମ ଗ୍ରହଣ କରି ନାହାନ୍ତି । ତାଙ୍କର ସମସ୍ତ ଚରିତ୍ର (ତପସ୍ୱିନୀ, ପ୍ରଣୟବଲ୍ଲରୀ, ଅଜ-ଇନ୍ଦୁମତୀ) ଭାରତୀୟ ପରମ୍ପରାସମ୍ବଳିତ ମହାନ ଚରିତ୍ର । ତ୍ୟାଗ, ସହନଶୀଳତା, ଶ୍ରଦ୍ଧା ଇତ୍ୟାଦି ସୁଗୁଣରେ ସେମାନେ ସୁଷମାମଣ୍ଡିତ । ସେହିସବୁ ଚରିତ୍ର ମଧ୍ୟରେ କବିଙ୍କର ମାନବ ସତ୍ତାର ପ୍ରତିଛବି ପ୍ରତିଫଳିତ ହୋଇଛି ।

ଗଙ୍ଗାଧର ବ୍ୟକ୍ତିଗତ ଜୀବନରେ କେବଳ ଜଣେ ନମ୍ର, ସାଧୁ ସ୍ୱଭାବର ଆଦର୍ଶବାଦୀ ବ୍ୟକ୍ତିବିଶେଷ ନୁହନ୍ତି, ତାଙ୍କ ବ୍ୟକ୍ତିତ୍ୱର ଅନ୍ୟ ଏକ ଲକ୍ଷ୍ୟଣୀୟ ଦିଗ ହେଲା ସେ ନିର୍ଭୀକ ଏବଂ ସ୍ପଷ୍ଟବାଦୀ । କବିବର ରାଧାନାଥ ରାୟଙ୍କର ଜୀବନର ଶେଷପାଦରେ ଚାରିତ୍ରିକ ସ୍ଖଳନ ଘଟିଥିଲା । ସେହି ଅନୁତାପଜନିତ ପାପବୋଧରୁ ମୁକ୍ତ ହେବା ପାଇଁ ମୃତ୍ୟୁର ୨/୩ ବର୍ଷ ପୂର୍ବରୁ ସେ 'ଆତ୍ମବିବୃତି' ନାମରେ ଏକ ସ୍ୱୀକାରୋକ୍ତି ପ୍ରକାଶ କରିଥିଲେ ଏବଂ ତାହା ସମସ୍ତ ସରକାରୀ ଦପ୍ତର, ସମ୍ବାଦପତ୍ର ଓ ବନ୍ଧୁମାନଙ୍କ ନିକଟକୁ ପ୍ରେରଣ କରିଥିଲେ । ସେ ସମୟରେ ରାଧାନାଥଙ୍କର ସାହିତ୍ୟ ଓ ସମାଜ କ୍ଷେତ୍ରରେ ବିପୁଳ ପ୍ରତିଷ୍ଠା । ରାଧାନାଥଙ୍କର ସମସାମୟିକ ଫକୀର ମୋହନ, ମଧୁସୂଦନ ପ୍ରଭୃତି ସାହିତ୍ୟିକ ଓ ସାମାଜିକ ସ୍ତରରେ ଆଦର୍ଶବାଦୀ ହେଲେ ସୁଦ୍ଧା କେହି ରାଧାନାଥଙ୍କ ସ୍ୱୀକାରୋକ୍ତିର ପ୍ରତିବାଦ କରି ନ ଥିଲେ । କିନ୍ତୁ ଗଙ୍ଗାଧର, ରାଧାନାଥଙ୍କ ପତ୍ରର ଉତ୍ତରରେ ଲେଖିଥିଲେ, " ଏତେ ଦିନର ଚିତ୍ତ ସଂଯମ ଏପରି ସମୟରେ ନଷ୍ଟ ହୋଇଗଲା ବୋଲି ଖେଦ ହୁଏ .... ଆପଣ ସମୁଦ୍ର ପାର ହୋଇ ବନ ମଧ୍ୟରେ କୁମ୍ଭୀର ହାବୁଡ଼ାଇଲେ ..."

ଡଃ. ନାୟକଙ୍କ ଦୃଷ୍ଟିରେ ଗଙ୍ଗାଧର ଦେବତାର ଆବିର୍ଭାବ ପାଇଁ ତପସ୍ୟା କରି

ନଥିଲେ । ଦେବ ଚରିତ୍ରକୁ ମାନବୀୟ ଭୂମିକାରେ ଅବତୀର୍ଣ୍ଣ କରାଇଥିଲେ । ତାହା ହିଁ ତାଙ୍କର ସ୍ୱାତନ୍ତ୍ର୍ୟ ।

ଭଦ୍ରକରେ ଆୟୋଜିତ ଉପେନ୍ଦ୍ର ପ୍ରସାଦ ଜୟନ୍ତୀ କମିଟି ଆନୁକୂଲ୍ୟରେ ଆୟୋଜିତ କବି ସମ୍ବର୍ଦ୍ଧନା ଉତ୍ସବରେ ୮.୪.୭୯ ରେ ପଠିତ ଆଲୋଚନାଟି ଉପେନ୍ଦ୍ର ପ୍ରସାଦ (୧୮୯୯-୧୯୭୯) ଙ୍କ ସମ୍ବନ୍ଧୀୟ । ସେ ହେଉଛନ୍ତି ଡଃ ନାୟକଙ୍କର ଶିକ୍ଷାଗୁରୁ । ଶିକ୍ଷାଗୁରୁଙ୍କର ପ୍ରତିଭା କଳନା କଲାବେଳେ ସଂକୋଚବୋଧ କଲେ ମଧ୍ୟ ପକ୍ଷପାତିତା ସେ କରିନାହାଁନ୍ତି । କବି ଶେଖର ଚିନ୍ତାମଣି ତାଙ୍କ ଜୀବନ ପଞ୍ଜିକାରେ ସୁପତ୍ର ଉପେନ୍ଦ୍ରଙ୍କର ପିତା ବୋଲି ଗର୍ବ ଅନୁଭବ କରିଛନ୍ତି । ଉତ୍ତରାଧିକାର ସୂତ୍ରରେ ନୁହେଁ, ନିଜସ୍ୱ ପ୍ରତିଭାରେ ଉପେନ୍ଦ୍ର ଭାସ୍ୱରିତ । ସେ ସୌନ୍ଦର୍ଯ୍ୟର ପୂଜାରୀ, ସେ ପୁଷ୍ପ ହେଉ କି ପ୍ରଭାତି ରାଗ ହେଉ କି ପ୍ରଣୟିନୀ ହେଉ, ସୌନ୍ଦର୍ଯ୍ୟ ହିଁ ତାଙ୍କର ଆରାଧନା । ପ୍ରଣୟ - ମୁଗ୍ଧ ଜୀବନରେ ସେ ପ୍ରଣୟନର ଗଭୀରତା ଉପଲବ୍ଧି କରିବା ସହଜ ନୁହେଁ ବୋଲି ସ୍ୱୀକାର କରିଛନ୍ତି ।

"ବୁଝିଲି ଆଜି, ଜଟିଳ ବଡ଼ ପ୍ରଣୟ ଗତି ରୀତି,
ନୀରବେ ଜନ୍ମି ଗୋପନେ ଫୁଟେ ହୃଦ କୁସୁମ ପ୍ରୀତି ।"

(ପ୍ରଣୟ ପୀୟୂଷ - କି କ୍ଷଣେ ଗଲା ଚାହିଁ - ପୃଷ୍ଠା ୩୫)

ତାଙ୍କର ପ୍ରେମ ଶାଶ୍ୱତ, ଚିରନ୍ତନ, ଦେହର ଆକର୍ଷଣ ଅପେକ୍ଷା ହୃଦୟର ଅନୁଭୂତିରେ ସେ ନିମଜ୍ଜିତ । ସେଥିପାଇଁ ପ୍ରଥମାପତ୍ନୀ ରତ୍ନପ୍ରଭାଙ୍କ ବିୟୋଗରେ ସେ ଯେତେଦିନ ବଞ୍ଚିଥିବେ ତାଙ୍କର ପ୍ରଣୟକୁ ହୃଦପଟରେ ଧାରଣକରି ଗର୍ବ ଅନୁଭବ କରୁଥିବେ ବୋଲି ଉଲ୍ଲେଖ କରିଛନ୍ତି । ସେ ପ୍ରକୃତିର ସୁଷମାରାଜିରେ ପ୍ରାଣର ସ୍ପନ୍ଦନ ଅପେକ୍ଷା ପ୍ରଣୟିନୀ ସାନ୍ନିଧ୍ୟରେ ବେଶୀ ରୋମାଞ୍ଚ ଅନୁଭବ କରିଛନ୍ତି ।

କବିପ୍ରତିଭାର କିଏ କିପରି ମୂଲ୍ୟାୟନ କରୁଛି, ସେଥିପ୍ରତି ଉପେନ୍ଦ୍ରଙ୍କର ଭ୍ରୂକ୍ଷେପ ନ ଥିଲା । ସକଳ ସମାଲୋଚନାର ଊର୍ଦ୍ଧ୍ୱରେ ଥିଲା ତାଙ୍କର ସୃଷ୍ଟି ଚେତନା । ସେ ନିଜସ୍ୱ ସୃଷ୍ଟି ସମ୍ଭାରରେ ତୃପ୍ତ ଥିଲେ ।

ପ୍ରଣୟ ତାଙ୍କର ପରିପକ୍ୱ ହୋଇଛି ବିଭୁ ଚେତନାରେ । ସେ ପରମାତ୍ମାଙ୍କ ନିକଟକୁ ପ୍ରତ୍ୟାବର୍ତ୍ତନ କରିବା ପାଇଁ ପ୍ରସ୍ତୁତ । ପ୍ରଣୟ ସାଧନାରେ ସେ ଯେପରି ସ୍ୱଚ୍ଛ ନିର୍ମଳ, ବିଭୁ ଚେତନାରେ ସେ ସମ ପରିମାଣରେ ସ୍ପଷ୍ଟ ଏବଂ ସରଳ । ତାଙ୍କର ନିଜସ୍ୱ ଐକାନ୍ତିକ ନିଷ୍ଠାରେ ସେ ଆସ୍ଥାବାନ । ସତ୍ ଜୀବନଯାପନ କରିଛନ୍ତି ବୋଲି ଆତ୍ମ - ପ୍ରତ୍ୟୟୀ କବି ଈଶ୍ୱରଙ୍କଠାରେ ପୁରସ୍କାର ଦାବି କରିଛନ୍ତି ।

ଆଧ୍ୟାତ୍ମିକତା ବିନା ଭୌତିକତା ଧ୍ୱଂସାଭିମୁଖୀ ବୋଲି କବି ବିଶ୍ୱାସ କରନ୍ତି ।

ଜୀବନର ଶେଷ ଭାଗରେ କବିଙ୍କର ଚିନ୍ତାଧାରା ରହସ୍ୟମୟ ମନେ ହୋଇଛି । ଜୀବନର ଗଭୀର ତତ୍ତ୍ୱକୁ ସେ ଧୂଳିଖେଳ ମନେ କରିଛନ୍ତି, "ଧୂଳିର ମରମ ବୁଝିଚୁରେ ଶିଶୁ / ଧୂଳିକୁ ଜାଣିନୁ ସାର / ଜଗତ ଯେ ଖାଲି ଧୂଳିମୟ ଏହା / ମଣିଛି ବେଦର ଗାର / ସବୁ ଯିବ ପରା ଧୂଳିଟି ରହିବ / ସବୁ ମିଶି ହେବ ଧୂଳି / ଧୂଳିର ବିଜୟ ନିଶାଣ ଉଡ଼ିବ / ବାଜିବ ତା' ଜୟ ତୂରୀ ।"

କବି ଉପେନ୍ଦ୍ରଙ୍କର ବହୁମୁଖୀ ଭାବଧାରାର ଯଥାର୍ଥ ମୂଲ୍ୟାୟନ ଡଃ ନାୟକ କରିଛନ୍ତି । କବିଙ୍କ ଜୀବନୀ ଓ କୃତିକୁ ସେ ନିରପେକ୍ଷ ଦୃଷ୍ଟିକୋଣରୁ ଯଥାଯୋଗ୍ୟ ବିଚାର କରିଛନ୍ତି । ପକ୍ଷପାତିତା ବା କୌଣସି ପ୍ରତିଷ୍ଠିତ ମତାମତର ସେ ବଶୀଭୂତ ହୋଇ ନାହାନ୍ତି । ଏହା ହିଁ ଜଣେ ସାର୍ଥକ ସମାଲୋଚକର ବୈଶିଷ୍ଟ୍ୟ ।

ଉପରୋକ୍ତ ଜୀବନ ଚରିତ୍ର ଆଲୋଚନା ବ୍ୟତୀତ 'ଆଲୋଚନା ପତ୍ର' ପୁସ୍ତକସ୍ଥ ଅନ୍ୟ ଅଭିଭାଷଣଗୁଡ଼ିକରେ ସାହିତ୍ୟର ବିବିଧ ଦିଗ ଆଲୋଚିତ ହୋଇଛି । ସେ ସବୁ ମୁଖ୍ୟତଃ ଦକ୍ଷିଣ ଓଡ଼ିଶାର ବିଭିନ୍ନ ସ୍ଥାନରେ (ବ୍ରହ୍ମପୁର, ଗଞ୍ଜାମ, ଖଲ୍ଲିକୋଟ, ଆଠଗଡ଼) ପ୍ରଦତ୍ତ ହୋଇଛି । କେବଳ ଗୋଟିଏ ଆଲୋଚନା ପତ୍ର ରେଭେନ୍ସା ମହାବିଦ୍ୟାଳୟର ଭାଷା ଓ ସାହିତ୍ୟ ବିଭାଗରେ ଉପସ୍ଥାପିତ ହୋଇଛି । ସମସ୍ତ ଅଭିଭାଷଣ ବିଂଶ ଶତାବ୍ଦୀର ସପ୍ତମ ଦଶକରେ ପ୍ରଦତ୍ତ ।

ଆଧୁନିକତାର ଦର୍ଶନ ସମ୍ବନ୍ଧରେ ଉଲ୍ଲେଖ କରିବାକୁ ଯାଇ ଡଃ ନାୟକ ବ୍ୟକ୍ତ କରିଛନ୍ତି, " ମୋ ବିଚାରରେ ଆଧୁନିକତା ହେଉଛି ବିପ୍ଳବର ଏକ ଫଳଶ୍ରୁତି, ବିପ୍ଳବ ଓ ବିଦ୍ରୋହ ମଧ୍ୟରେ ଭେଦ ଅଛି ।" ଆଧୁନିକତା ଏକ କାଳ ନୁହେଁ, ଏକ ଚେତନା, ଚେତନାର ଅଭ୍ୟୁଦୟ ହିଁ ଆଧୁନିକତା । ନୂତନ ଭାବଧାରା ଆନୟନ କରିବାରେ ଶିଳ୍ପ ବିପ୍ଳବ ଓ ଫରାସୀ ବିପ୍ଳବର ପ୍ରମୁଖ ଭୂମିକା ସମଗ୍ର ବିଶ୍ୱକୁ ପ୍ରଭାବିତ କରିଛି । ସାହିତ୍ୟ ଜଗତରେ ସୃଷ୍ଟି ହେଇଛି ନବୀନ ଚିନ୍ତା ଉଦ୍ରେକକାରୀ ଆଲୋଡ଼ନ । ସାହିତ୍ୟରେ ଆଧୁନିକତା ସଂପର୍କରେ ଡଃ ନାୟକଙ୍କ ମତ ହେଉଛି, "ଯେଉଁ ସାହିତ୍ୟରେ ମଣିଷର ମାନସିକ ସଂଘାତର ଇତିହାସ ସ୍ପଷ୍ଟ, ଧର୍ମ ଓ ବିଜ୍ଞାନ ମଧ୍ୟରେ ଦେଖାଦେଉଥିବା ସଂଘର୍ଷର ଚିତ୍ର ପ୍ରତିଫଳିତ, ଶାସ୍ତ୍ରୀୟ ଆଚାର ଓ ନିଗଡ଼ ଭିତରୁ ମୁକ୍ତ ହେବା ଲାଗି ଯେଉଁଥିରେ ବିଦ୍ରୋହର ସ୍ୱର ଉଚ୍ଚାରିତ, କିମ୍ବା ନୂତନ ସମାଜ ସୃଷ୍ଟିର ଆବେଗ ଯେଉଁ ସାହିତ୍ୟରେ ଉଚ୍ଛଳ, ତାକୁ କୁହାଯିବ ଆଧୁନିକ ସାହିତ୍ୟ ।" କାଳିନ୍ଦୀ ଚରଣ ପାଣିଗ୍ରାହୀ, ଡଃ ହରେକୃଷ୍ଣ ମହତାବ, କାହ୍ନୁଚରଣ ମହାନ୍ତି, ଗୋପୀନାଥ ମହାନ୍ତି, ନିତ୍ୟାନନ୍ଦ ମହାପାତ୍ର ପ୍ରଭୃତିଙ୍କ ସୃଷ୍ଟିରେ ଏତାଦୃଶ ଆଧୁନିକତା ପରିଲକ୍ଷିତ ହୋଇଥାଏ ।

ସାହିତ୍ୟ ମାନବାତ୍ମାର ଉତ୍ତରଣ, ମାନବ ଜୀବନ ନିର୍ମାଣ ହେଉଛି ସାହିତ୍ୟ ସାଧନାର ଲକ୍ଷ୍ୟ । ଆମ ସାହିତ୍ୟର ପରମ୍ପରାରେ ପୁରାଣ ହେଉ ବା ଇତିହାସ ହେଉ ସବୁଠାରେ ମାନବ ଜୀବନର ଉତ୍କର୍ଷ ହିଁ ପ୍ରତିପାଦିତ ହୋଇଛି । କଲ୍ୟାଣକାମୀ ସାହିତ୍ୟର ଦାୟବଦ୍ଧତା ରହିଛି ସମାଜ ନିକଟରେ । ସତ୍ ସାହିତ୍ୟର ବିନାଶ ନାହିଁ । ସାହିତ୍ୟରେ ଶରୀରକୁ କେନ୍ଦ୍ରକରି ଶୀଳ - ଅଶ୍ଳୀଳ ସାହିତ୍ୟ ସୃଷ୍ଟି ହୁଏ । ଶରୀରଭିତ୍ତିକ ସାହିତ୍ୟ ସୁନ୍ଦର ହୋଇପାରେ । ଆବରଣ ମଧ୍ୟରେ ଶାରୀରିକ ସୌନ୍ଦର୍ଯ୍ୟ ଅଧିକ ଆକର୍ଷଣୀୟ ଓ ଅଧିକ କଳ୍ପନାଶ୍ରୟୀ । ଡଃ ନାୟକ ଭାସମାନ ବରଫର ଅନେକାଂଶ ଅଦୃଶ୍ୟ ଜଳମଗ୍ନ ଥିବାର ଦୃଷ୍ଟାନ୍ତ ଦେଇ ଏହି ସୌନ୍ଦର୍ଯ୍ୟବୋଧକୁ ସୁନ୍ଦର ଭାବରେ ବିଶ୍ଳେଷଣ କରିଛନ୍ତି । ତାଙ୍କ ମତରେ, "ସାହିତ୍ୟିକମାନଙ୍କର ନିବାସ ଆମରି ଭିତରେ, କୌଣସି ନିର୍ଜନ ଦ୍ୱୀପରେ ନୁହେଁ ।"

ଜାତୀୟ ସଂହତି ନିମନ୍ତେ ଭାଷାର ଭୂମିକା ଉଲ୍ଲେଖନୀୟ । ଅତୀତରେ ଭାବର ଐକ୍ୟ ଥିବାରୁ ଧର୍ମ, ସଂସ୍କୃତି କ୍ଷେତ୍ରରେ ପରସ୍ପରର ସହନଶୀଳତା ଥିଲା । ଚୈତନ୍ୟ ହୁଅନ୍ତୁ, କବୀର ହୁଅନ୍ତୁ, ମୀରାବାଈ ହୁଅନ୍ତୁ ସମସ୍ତେ ସମାଜର ସମ୍ମାନାସ୍ପଦ ବ୍ୟକ୍ତିବିଶେଷ ଥିଲେ । ବିଭିନ୍ନ ଭାଷାଭାଷୀ ଲୋକେ ଏମାନଙ୍କୁ ଭକ୍ତି କରୁଥିଲେ । ଆଞ୍ଚଳିକତାର ସଂକୀର୍ଣ୍ଣତା ସେମାନଙ୍କୁ ସ୍ପର୍ଶ କରି ନଥିଲା । ଧର୍ମର ଆବରଣ ମଧ୍ୟରେ ଜାତୀୟ ସଂହତି ଓ ସଂସ୍କୃତି ତିଷ୍ଠି ରହିଥିଲା । ବର୍ତ୍ତମାନ ଆଞ୍ଚଳିକ ଭାଷା ଉପରେ ଗୁରୁତ୍ୱ ଆରୋପ କରି ସମଗ୍ର ଭାରତବର୍ଷ କ୍ରମଶଃ ବିଭାଜନର ଶରବ୍ୟ ହୋଇଚାଲିଛି । ପ୍ରାଦେଶିକତା ଅଖଣ୍ଡଭାବ ସୃଷ୍ଟି କରିବାରେ ପ୍ରତିବନ୍ଧକ ହେଉଛି । ଡଃ ନାୟକ ଐକ୍ୟ ମନୋଭାବ ସୃଷ୍ଟିପାଇଁ ପରାମର୍ଶ ଦେଇଛନ୍ତି, "ବିଶ୍ୱ-ବିଦ୍ୟାଳୟ ସ୍ତରରେ ମାତୃଭାଷାକୁ ଅଧିକ ଗୁରୁତ୍ୱ ଦେଇ; ସାଧାରଣ ବ୍ୟାବହାରିକ ଜ୍ଞାନ ହାସଲ ପାଇଁ ଅନ୍ୟ ପ୍ରାଦେଶିକ ଭାଷା ଅଧ୍ୟୟନର ସମ୍ଭାବନା ସୃଷ୍ଟି କରିବା ଉଚିତ ।" ଭାବର ଆଦାନ ପ୍ରଦାନ ଏବଂ ମୈତ୍ରୀଭାବ ବୃଦ୍ଧି ପାଇଁ ସେ ଅନୁବାଦ ସାହିତ୍ୟର ପ୍ରସାର ନିମନ୍ତେ ପରାମର୍ଶ ଦେଇଛନ୍ତି ।

"ସାହିତ୍ୟିକ ହେଉଛି, ଜୀବନର ଅନୁବାଦକ' - ଏହା ହେଉଛି ଅନୁବାଦ ସଂପର୍କରେ ଡଃ କ୍ଷେତ୍ରବାସୀ ନାୟକଙ୍କର ସୁଚିନ୍ତିତ ମନ୍ତବ୍ୟ, ଚିନ୍ତାଧାରାର ଆଦାନ ପ୍ରଦାନ ପାଇଁ, ସମଗ୍ର ବିଶ୍ୱ ସହିତ ପରିଚିତ ହେବା ପାଇଁ, ମାନବ ଜୀବନର ନିର୍ଯ୍ୟାସକୁ ହୃଦୟଙ୍ଗମ କରିବା ପାଇଁ ଅନୁବାଦ ଏକ ଅପରିହାର୍ଯ୍ୟ ସାରସ୍ୱତ କଳା । ଅନୁବାଦକ, ମୂଳରଚନାର ସୌନ୍ଦର୍ଯ୍ୟ ଓ ସତ୍ୟପ୍ରତି ବିଶ୍ୱସ୍ତ ହେବା ବାଞ୍ଛନୀୟ । ଆକ୍ଷରିକ ଅନୁବାଦ ଅନେକ ସ୍ଥଳରେ ମୂଳ ରଚନାର ଭାବକୁ ଅବିକଳ ପ୍ରକାଶ କରିବାକୁ ସକ୍ଷମ ହୋଇ ନ ଥାଏ ।

ଭାବଗତ ଅନୁବାଦରେ ହିଁ ମୂଳରଚନାର ଆତ୍ମା ଅକ୍ଷୁଣ୍ଣ ରହେ । କାବ୍ୟ - କବିତାର ଅନୁବାଦ ଅପେକ୍ଷାକୃତ କଷ୍ଟସାଧ୍ୟ ବ୍ୟାପାର । ସେପରି ସ୍ଥଳେ କବିତାର ବାକ୍‌ଭଙ୍ଗୀ, ଛନ୍ଦ ଓ ଭାବଶକ୍ତି ପ୍ରତି ସଜାଗ ରହିବା ଆବଶ୍ୟକ । "ଯେଉଁ ଭାଷା ଅନୁବାଦ ପାରଙ୍ଗମ ତାହା ଅଗ୍ରଗାମୀ" ବୋଲି ମତବ୍ୟକ୍ତ କରିବା ସହିତ ଡଃ ନାୟକ ଡଃ ମହତାବଙ୍କ ମତକୁ ମଧ୍ୟ ସମର୍ଥନ କରିଛନ୍ତି ।" ଯେଉଁମାନେ ଅନୁବାଦ ସାହିତ୍ୟର ନିନ୍ଦୁକ, ସେମାନେ କ୍ଷୀଣପ୍ରାଣ ଅନୁଚ୍ଚ ଆଦର୍ଶ ସାହିତ୍ୟିକ, ସେମାନେ ଘର ଭିତରେ କବାଟକିଳି ନିଜର ଘର ଲୋକଙ୍କ ଆଗରେ ବୀରତ୍ୱ ପ୍ରମାଣ କରିବାରେ ଉଦ୍ୟମ କରନ୍ତି ।

ସାଂପ୍ରତିକ ଜୀବନ ଓ ସାହିତ୍ୟ ସଂପର୍କରେ ନିଜର ମତବ୍ୟକ୍ତ କରିବା କ୍ରମରେ ଡଃ ନାୟକ ଉପନ୍ୟାସ, ଗଳ୍ପ, କବିତା ଇତ୍ୟାଦିର ଉଦାହରଣର ସାହାଯ୍ୟ ନେଇଛନ୍ତି । ଆଧୁନିକ ଯୁଗରେ ମଣିଷର ଜୀବନ ନାନାଦି ଜଞ୍ଜାଳ ସମସ୍ୟା ମଧ୍ୟରେ ହନ୍ତସନ୍ତ, ଛଳନା, ଭ୍ରାନ୍ତି, ଦ୍ୱନ୍ଦ୍ୱ, ହତାଶା ମଧ୍ୟରେ ବିତୁଥିବା ସାଂପ୍ରତିକ ଜୀବନର ପ୍ରତିଛବି ସାହିତ୍ୟରେ ସୁସ୍ପଷ୍ଟ । ବର୍ତ୍ତମାନ ମଣିଷ ଜୀବନରୁ ସମସ୍ତ, ସୂକ୍ଷ୍ମ ଅନୁଭୂତି ଯେପରି ମିଳେଇ ଯାଉଛି । ବାସ୍ତବତାର ଦ୍ୱାହିଦେଇ ସେ ଜୀବନର ସତ୍ୟଠାରୁ ଦୂରେଇ ଯାଉଛି । ଜୀବନ ବିବିଧ ଶାଖା ପ୍ରଶାଖା ମଧ୍ୟରେ ସୀମିତ, ସମୟ ତା' ନିକଟରେ ଆହୁରି ସଂକୁଚିତ । ସେ ସେଥିପାଇଁ ହୁଏତ କ୍ରମଶଃ ସାହିତ୍ୟରେ 'ମିନି' ପ୍ରକାଶରେ ଆଗ୍ରହୀ, କିନ୍ତୁ 'ମିନି' ପୋଷକ ପରି ତାହା କେତେଦୂର ସାର୍ଥକ ହୋଇପାରିବ - ତାହା ଏକ ପ୍ରଶ୍ନବାଚୀ । ସୁରେନ୍ଦ୍ର ମହାନ୍ତିଙ୍କ ମତରେ ମିନି ପରିଧାନ ପରିଏହା ସାହିତ୍ୟର ଏକ ଆଙ୍ଗିକ ରଚନା । ସେହିପରି ସାହିତ୍ୟରେ ଆଭାସ ଚିତ୍ର ବର୍ତ୍ତମାନ ଏକ ମୁଖ୍ୟ ସ୍ଥାନ ଅଧିକାର କରିଛି । କୌଣସି ବିଷୟରେ ଏକ ପୂର୍ଣ୍ଣାଙ୍ଗ ଚିତ୍ର ପରିବେଷଣ କରିବା ଅପେକ୍ଷା ଏକ ଆଭାସ ଚିତ୍ର ସେ ଲକ୍ଷ୍ୟ ଅଧିକ ସଫଳ ଭାବରେ ପୂରଣ କରିପାରୁଛି । ଡଃ ନାୟକଙ୍କ ଭାଷାରେ, "କାରଣ ସାଂପ୍ରତିକ ଜୀବନ ଏତେ ପରିମାଣରେ ମୁହୂର୍ତ୍ତାଶ୍ରିତ ଯେ କହି ହେବନାହିଁ । ଆଭାସ ଏହି ମୁହୂର୍ତ୍ତାଶ୍ରିତ 'ମୁଡ୍' କୁ ନେଇ ବଳିଷ୍ଠ । ଏହି 'ମୁଡ୍' ଟି ହେଉଛି ଏହାର ନାୟକ, ଚରିତ୍ର ନାହିଁ, ଘଟଣା ନାହିଁ ଅଛି କେବଳ ମାନସିକତା ।"

କବିତା ବୋଧହୁଏ ଡଃ ନାୟକଙ୍କର ଆଦରଣୀୟ ହୋଇଥିବାରୁ ତାଙ୍କ ସାହିତ୍ୟିକ ଆଲୋଚନାର ବହୁଳାଂଶ ତାହା ଅଧିକାର କରିଛି । ଉତ୍କଳ କାବ୍ୟରସର ଅଫୁରନ୍ତ ଆକର । ବହୁ ପୁରାତନ କାଳରୁ ଉତ୍କଳରେ କାବ୍ୟଚର୍ଚ୍ଚାର ପରମ୍ପରା ରହି ଆସିଛି । ଦେଶରେ ଯେତେବେଳେ ରାଜାରାଜୁଡ଼ାଙ୍କ ଶାସନ ପ୍ରଚଳିତ ଥିଲା ସେତେବେଳର ସାହିତ୍ୟ ଥିଲା ଦରବାରୀ ସାହିତ୍ୟ, ବିଳାସୀ ସାହିତ୍ୟ । ସ୍ୱଳ୍ପ ସାକ୍ଷରତା

ଦୃଷ୍ଟିରୁ ତତ୍‌କାଳୀନ ସାହିତ୍ୟ ଜନଜୀବନକୁ ବିଶେଷ ଭାବରେ ସ୍ପର୍ଶ କରୁ ନଥିଲା । କାବ୍ୟକାରମାନେ କେବଳ ରସିକମାନଙ୍କୁ କାବ୍ୟ ବିନୋଦନ ପାଇଁ ସ୍ୱାଗତ କରୁଥିଲେ । ପରବର୍ତ୍ତୀ କାଳରେ କ୍ରମଶଃ କାବ୍ୟକବିତାର ଗଠନ ଶୈଳୀ ଓ ଭାବ-ସତ୍ତାରେ ପରିବର୍ତ୍ତନ ଆସିବା ହେତୁ ପାଠକୀୟ ସ୍ଥିତିରେ ମଧ୍ୟ ପରିବର୍ତ୍ତନ ଦେଖାଗଲା । କେବଳ ରସିକ ହେଲେ ଯଥେଷ୍ଟ ନୁହେଁ, କାବ୍ୟସାହିତ୍ୟକୁ ହୃଦୟଙ୍ଗମ କରିବାକୁ ହେଲେ ଗଭୀର ଅଭିନିବେଶ ଆବଶ୍ୟକ ହେଲା । ପ୍ରଚୁର ଅଧ୍ୟୟନ, କାବ୍ୟପଠନ ପାଇଁ ଆବଶ୍ୟକୀୟ ବିଶ୍ଳେଷଣାତ୍ମକ ଦୃଷ୍ଟିକୋଣ, କାବ୍ୟାନୁଧ୍ୟାନ ପାଇଁ ପ୍ରଖର ଧୀଶକ୍ତିର ଅବର୍ତ୍ତମାନରେ କାବ୍ୟ-କବିତାକୁ ଯଥାର୍ଥ ମୂଲ୍ୟାୟନ କରାଯାଇପାରିଲା ନାହିଁ । ପଠନ ଅପେକ୍ଷା ଅନୁଭୂତି ହେଉଛି କାବ୍ୟକୁ ଆତ୍ମସ୍ଥ କରିବାର ପ୍ରକୃଷ୍ଟ ପନ୍ଥା । ଡଃ ନାୟକ ଆଧୁନିକ କବିତାର ଅସୀମ ପ୍ରସାରଣକୁ ଲକ୍ଷ୍ୟ କରି କହିଛନ୍ତି, "କାରଣ ବେଳାଭୂମିରେ ଥାଇ ମାତ୍ର ଦୃଷ୍ଟିର ନିକିତିରେ ସମୁଦ୍ରର ନୀଳିମ ବିସ୍ତାରକୁ କଳନା କଲାଭଳି କେବଳ ରସିକ ଚିତ୍ତ ନେଇ ଆଧୁନିକ କବିତାର ଭାବ- ସମୁଦ୍ରକୁ ଧାରଣ କରିବା ଏକ ବ୍ୟର୍ଥ ପ୍ରୟାସ ।"

ଅନେକଙ୍କ ମତରେ ଆଧୁନିକ କବିତା ବୋଧଗମ୍ୟ ହେଉନାହିଁ । ଡଃ ନାୟକଙ୍କ ଦୃଷ୍ଟିରେ କବିତାର ତଥ୍ୟାନୁସନ୍ଧାନ କଲେ ନିରାଶ ହେବାକୁ ହୁଏ । ଏହା ଇତିହାସ ନୁହେଁ। ଇତିହାସରେ ତଥ୍ୟ ନିବୃତ୍ତ ହେଲାବେଳେ କବିତାରେ ହୁଏ ବ୍ୟଞ୍ଜିତ । କବିର ଦୃଷ୍ଟି ସାଧାରଣ ଦୃଷ୍ଟି ନୁହେଁ । ସତ୍ୟ-ଶିବ-ସୁନ୍ଦରକୁ ସେ ଏକାଧାରରେ ଦର୍ଶନ କରେ । ଆଧୁନିକ କବିକୁ ଚିହ୍ନିବା ପାଇଁ ଭାବରାଜ୍ୟକୁ ଯିବାକୁ ହୁଏ। ଆଲୋଚକ, ଦୀନକୃଷ୍ଣଙ୍କ ଠାରୁ ଆରମ୍ଭ କରି ରାଧାନାଥ, ରମାକାନ୍ତ, ସୀତାକାନ୍ତ, ପୋପ୍, ଉଇଲିୟମ୍ ବ୍ଲାକ୍‌ଙ୍କ ପର୍ଯ୍ୟନ୍ତ ନାନା ମତବାଦ ମଧ୍ୟରେ କବିତାର ସ୍ୱରୂପ ନିର୍ଣ୍ଣୟ କରିବାକୁ ଚେଷ୍ଟା କରିଛନ୍ତି । ଆଧୁନିକ କବିତାରେ କବି ସିଧାସଳଖ ବିଷୟବସ୍ତୁ ଉପସ୍ଥାପନା କରେ ନାହିଁ । ତା'ର ବକ୍ତବ୍ୟ ଇଙ୍ଗିତଧର୍ମୀ, ସୂଚନାଧର୍ମୀ । ସେ ଯାହା କହେ ତା' ଠାରୁ ଅକୁହା ମଧ୍ୟରେ ଅଧିକ ବ୍ୟଞ୍ଜନା ରହିଥାଏ । ଡଃ ନାୟକ ଏହି ଭାବକୁ ସ୍ପଷ୍ଟ କରିବାକୁ ରମାକାନ୍ତ ରଥଙ୍କର ଏକ ପୂର୍ଣ୍ଣ କବିତା "ବାଘାବଲୋକନ" ର ଆଲୋଚନା କରିଛନ୍ତି । ଭାବ-ଭଙ୍ଗୀ ହିଁ ଆଧୁନିକ କବିତାର ନିର୍ଯ୍ୟାସ, ଚିତ୍ରକଳ୍ପର ଆଶ୍ରୟ ନେଇ ଆଧୁନିକ କବି ନ କହି ମଧ୍ୟ ଅନେକ ଗୂଢ଼ କଥା ପ୍ରକାଶ କରିଥାଏ । ଡଃ ନାୟକଙ୍କର ଏ ସଂପର୍କରେ ନିଜସ୍ୱ ଅଭିବ୍ୟକ୍ତି ହେଉଛି -"ସାଂପ୍ରତିକ ପ୍ରଜ୍ଞାଜୀବନ ସହ ନିଜର ସତ୍ତାକୁ ସାମିଲ କରି କବିତାର ଅନୁଶୀଳନରେ ପ୍ରବେଶ କରିବା ଉଚିତ । ଅନୁଶୀଳନ ବେଳେ କବିତାରେ ପ୍ରଯୁକ୍ତ ଶବ୍ଦର ବିଶ୍ଳେଷଣ ଓ କବିଭାବର ଗହନ ବିନ୍ଦୁ ଅନ୍ୱେଷଣ ଏକାନ୍ତ ଆବଶ୍ୟକ ।"

କବିର ବ୍ୟକ୍ତି ବିଶ୍ୱ ହେଉଛି ତା'ର ପରିସର । ତା'ର ଚେତନା ତା'ର ନିଜସ୍ୱ କାବ୍ୟ ଜଗତ । ସେ ଯାହା ଅନୁଭବ କରେ, ଯାହା ବ୍ୟକ୍ତ କରେ, ତା'ରି ଭିତରେ ତା'ର ବ୍ୟକ୍ତିଗତ ସତ୍ତା ଆବଦ୍ଧ ରହିଥାଏ । ଏହି ବକ୍ତବ୍ୟକୁ ସ୍ପଷ୍ଟ କରିବାକୁ ଯାଇ ଆଲୋଚକ, ସୀତାକାନ୍ତ ମହାପାତ୍ରଙ୍କ ଏକ କବିତାର ଉଦାହରଣ ହେଉଛନ୍ତି, "ମୋ କୋଠରି ହୋଇଥାନ୍ତା / ଯଦି ମୋର ଦେହ, ମନ, ଆତ୍ମାର ଖେଳନା / ରାତି ଦିନ ମୁହୂର୍ତ୍ତ ଓ ଦଣ୍ଡ । ଅନୁଭୂତି ଆବେଗ ପ୍ରଚଣ୍ଡ / .... ମୋ କୋଠରି ଖୋଳପାରେ ପଶି / ଧୀର ପଦେ ଚକିତ ଓ ତ୍ରସ୍ତ ମନେ / ଖୋଳପାରୁ ଟିକେ ବାହାରି ମୁଣ୍ଡଟି ଦେଖାଇ । ପୁଣି ଭିତରକୁ ପଶି ..... ।" କବିତାରେ ସମ୍ବେଦନା ଥିଲେ ତାହା ବିଶ୍ୱ ସହିତ ଏକାତ୍ମ ହୋଇପାରେ । କବିର ଉନ୍ମୁଖତା, ଆବେଗ, ଉଲ୍ଲାସ ଅନ୍ୟକୁ ଭେଦ କରିପାରେ । ଅନ୍ୱେଷଣ କବିର ଧର୍ମ ଉଦାହରଣ ସ୍ୱରୂପ ଗୁରୁ ମହାନ୍ତି ତାଙ୍କ କବିତାରେ ନାନାବିଧ ପରୀକ୍ଷା ନିରୀକ୍ଷା ମାଧମରେ ଜୀବନର ଅନ୍ୱେଷଣ କରିଛନ୍ତି । ଏ କାଳର କବି ପରିବେଶରୁ ଆତ୍ମ-ସତ୍ତା ଅନ୍ୱେଷଣ କରେ । ପରମ୍ପରାରୁ ନୁହେଁ । ପ୍ରେମ, କାରୁଣ୍ୟ, ନିଃସଙ୍ଗତା ଇତ୍ୟାଦି ମଧରେ କବି ଜୀବନର ବାସ୍ତବ ଛବି ଅଙ୍କନ କରେ । 'ବାଘ ଶିକାର', 'କାଳ ପୁରୁଷ', 'ମାଟି ଓ ମଣିଷ' କବିତାମାନଙ୍କରେ ବାସ୍ତବ ଜୀବନରେ ଏହି ଅନୁସନ୍ଧିତ୍ସା ସୁସ୍ପଷ୍ଟ । ଏହି ପରିପ୍ରେକ୍ଷୀରେ ଡଃ ନାୟକ ଅତ୍ୟତମ ସାହିତ୍ୟତତ୍ତ୍ୱବିତ୍ ପ୍ରଫେସର ବିଧୁଭୂଷଣ ଦାସଙ୍କ ମନ୍ତବ୍ୟକୁ ସ୍ମରଣ କରିଛନ୍ତି –" ସାଂପ୍ରତିକ ଲେଖକ ଯେଉଁ ପରିପ୍ରେକ୍ଷୀରେ ଲେଖୁଛି ତାହା ସୀମିତ, ତାହାର ଲେଖା ଆତ୍ମକୈନ୍ଦ୍ରିକ, କାରଣ ଇତିହାସକୁ ସେ ଦେଖୁଛି କେତେ ମୁହୂର୍ତ୍ତ ବା ସମୟ ଏକକ (time unit) ର ସମଷ୍ଟି ହିସାବରେ, ସେ ସତ୍ୟ (reality) କୁ ଦେଖନ୍ତି ନିଜର ଦୃଷ୍ଟିକୋଣରୁ ଏବଂ ସେଥିପାଇଁ ଗୁରୁ ପ୍ରସାଦ ମହାନ୍ତି 'କାଳ ପୁରୁଷ' ରେ କିମ୍ବା ରମାକାନ୍ତ ରଥ', 'ଅନେକ କୋଠରୀ'ରେ ଦୁଇଟି କାଳ ନିରୂପଣ କରିଛନ୍ତି । ଗୋଟିଏ କାଳରେ ରହିଛି ସ୍ଥିତି ଏବଂ ଅନ୍ୟଟିରେ କେବଳ ଗତି । ଏହି ଗତିଶୀଳ ଐତିହାସିକ କାଳର ସ୍ରୋତରେ ଆତ୍ମସତ୍ତାକୁ ଆବିଷ୍କାର କରିବାକୁ ଯାଇ ସେମାନେ ଆତ୍ମ-କୈନ୍ଦ୍ରିକ ହୋଇଛନ୍ତି । ଅନ୍ୟ ପକ୍ଷରେ ଗୋପୀନାଥ ମହାନ୍ତି, "ଆକାଶ ସୁନ୍ଦରୀ" ରେ ସେହି ବ୍ୟକ୍ତିସତ୍ତା (ego) କୁ ତନ୍ନ ତନ୍ନ କରି ବିଶ୍ଳେଷଣ କରିଛନ୍ତି ଓ ମନୋରଞ୍ଜନ ଦାସ "ଅରଣ୍ୟ ଫସଲ" ରେ ସେହି ବ୍ୟକ୍ତି- ସତ୍ତା ମଧ୍ୟରୁ ବାହାରି ଯିବାକୁ ଚେଷ୍ଟା କରିଛନ୍ତି ।" କବିର ଯନ୍ତ୍ରଣାର ସ୍ୱର ନିଜସ୍ୱ ଅନୁଭୂତିରୁ ବିଶ୍ୱାନୁଭୂତିକୁ ପ୍ରସରି ଯାଇପାରେ । ରମାକାନ୍ତ ରଥଙ୍କ 'ଇଣ୍ଡେନ' କବିତା ତାହାର ଏକ ସ୍ପଷ୍ଟ ଆଲେଖ୍ୟ । ନିଜ ଜୀବନର ବେଦନା ବଖାଣିବାକୁ ଯାଇ ସେ ଆଧୁନିକ କାଳର ସମଗ୍ର ମାନବ ଜୀବନର ଏକ ରେଖାଚିତ୍ର ଅଙ୍କନ କରିଛନ୍ତି ' ଇଣ୍ଡେନ' କବିତାରେ ।

ଡଃ ନାୟକ ଆଧୁନିକ କବିତାରେ ବ୍ୟକ୍ତି-ସତ୍ତାର ବିଶ୍ୱ-ସତ୍ତାକୁ ଉତ୍ତରଣ ପାଇଁ ଅଭାବବୋଧକୁ ଇଙ୍ଗିତ କରି ମତବ୍ୟକ୍ତ କରିଛନ୍ତି । କବିର ଆନନ୍ଦମୟ ଗୋଲକ ଆମ କବିତାରେ ବିଶ୍ୱବ୍ୟକ୍ତି ଓ ବହିର୍ବିଶ୍ୱର ଅଭିବ୍ୟକ୍ତି ପାଠକ ମନକୁ ଏପରି ଏକ ସ୍ଥାନକୁ ଉଠେଇନେଇପାରିନାହିଁ । ରହିଯାଉଛି, ଏକରୁ ଏକାତ୍ମ ହେବାର ଅଭାବ । ଏହି ଅଭାବର ନିରାକରଣ କବିତା ଗୌରବ ପାଇଁ ବାଞ୍ଛନୀୟ ନୁହେଁ କି ?

କବିତା ପାଇଁ ସପ୍ତମଦଶକର ଘୋଷଣାର ଡଃ ନାୟକ ପ୍ରବଳ ଭାବରେ ଆଶାବାଦୀ । ବର୍ତ୍ତମାନର କବିତା ବ୍ୟକ୍ତିଠାରୁ ବିଶ୍ୱଯାଏ ପ୍ରସରିତ । ବିଶ୍ୱଭାବନାରେ ସମୃଦ୍ଧ ହେଲେ ମଧ ଓଡ଼ିଆ କବିତା ବିଶ୍ୱ ଦରବାରର ଦ୍ୱାରସ୍ଥ ହୋଇପାରୁ ନାହିଁ । ଊନବିଂଶ ଶତାବ୍ଦୀ ଯାଏ ଓଡ଼ିଆ ସାହିତ୍ୟ ଥିଲା ଭୋଗୀର ସାହିତ୍ୟ, ସୌନ୍ଦର୍ଯ୍ୟ ଉପଲବ୍ଧି ଛଳରେ ଦୈହିକ ଆରାଧନା ଥିଲା ପ୍ରଧାନ । ଏବେ ସୁଦ୍ଧା ସେଇ ଭୋଗଲିପ୍ସା ଭିନ୍ନ ଭାବରେ ଭିନ୍ନ ଭାଷାରେ ରୂପାୟିତ ହେଉଛି । ଏବେ ମଧ ଆଧୁନିକ କବି ନିଜର ଯୌନଇଚ୍ଛାକୁ ନାନାଦି ଚିତ୍ରକଳ୍ପ ମାଧମରେ ପ୍ରକାଶ କରିବାକୁ କୁଣ୍ଠାବୋଧ କରୁନାହିଁ । ପ୍ରକୃତ ସାରସ୍ୱତ ସାଧକର ଦିବ୍ୟଦୃଷ୍ଟି ପାଇଁ ଯେଉଁ ତୃତୀୟ ନେତ୍ରର ଆବଶ୍ୟକ ତାହା ଏବେ ମଧ ଉନ୍ମୀଳିତ ହେଉନାହିଁ । ବିଶ୍ୱଦରବାରରେ ଓଡ଼ିଆ ସାହିତ୍ୟକୁ ଉପସ୍ଥାପିତ କରିବା ପାଇଁ ପ୍ରଚେଷ୍ଟାର ଅଭାବ ରହୁଛି ।

ବର୍ତ୍ତମାନ ଅନେକ ପ୍ରକାର ସନ୍ଦେହର କୁହେଳୀ କବିତାର ପ୍ରଚ୍ଛଦପଟକୁ ଅସ୍ୱଚ୍ଛ କରିଦେଉଛି । କବିତାର ଅଭିବ୍ୟକ୍ତି ସ୍ପଷ୍ଟ ହେଉନାହିଁ । ସମୟ ସମୟରେ କବିତା ଦୁର୍ବୋଧ ବା ଅବୋଧ ହେବା ଦୋଷରେ କଳଙ୍କିତ ହେଉଛି । ଡଃ ନାୟକଙ୍କ ମତରେ ସ୍ଥଳବିଶେଷରେ ଦୁର୍ବୋଧତା ବୋଲି ଯାହାକୁ ନିନ୍ଦିତ କରାଯାଏ ତାହା ମଧ କବିତାର ଉତ୍ତମାନ ନିର୍ଦ୍ଧାରଣରେ ସହାୟକ ହୋଇଥାଏ । ଅର୍ଥାତ୍ ଗୋଟିଏ ଶବ୍ଦ ବା ଚିତ୍ରକଳ୍ପ ପାଠକମାନଙ୍କ ଦ୍ୱାରା ଭିନ୍ନ ଭିନ୍ନ ଭାବରେ ବ୍ୟାଖ୍ୟା କରାଯାଇ କବିତାର ଆତ୍ମିକ ଓ ଶାରୀରିକ ଉଭୟ ସୌନ୍ଦର୍ଯ୍ୟ ବୃଦ୍ଧି କରିଥାଏ । ଏହି ସମସ୍ୟାର ସମାଧାନ ସୂତ୍ର ନିର୍ଣ୍ଣୟ କରିଛନ୍ତି ଡଃ ନାୟକ । "କେତେକ କହୁଛନ୍ତି, ମାଟିର ଆତ୍ମକଥାକୁ ଭୁଲିଯିବା ହେତୁ ମାଟିର ମଣିଷ ନିକଟରେ କବି ପହଞ୍ଚି ପାରୁ ନାହିଁ । ଏହା କେତେକାଂଶରେ ସତ ହୋଇପାରେ; ଏହାଠାରୁ ଅଧିକ ସତ୍ୟ ହେଉଛି କବିର ଆତ୍ମ-କୈନ୍ଦ୍ରିକ ଆଚରଣ, ସମାଜଠାରୁ ବିଚ୍ଛିନ୍ନ ହୋଇ, ଲୋକ-ମନ-ଚର୍ଯ୍ୟାରୁ ଆପଣାକୁ ଦୂରେଇ ନେଇ କବିତା-ଲୀଳାରେ ଆତ୍ମଗୋପନ କରିବାର କବି -ବୃତ୍ତି ହିଁ ଆଜିର ସାହିତ୍ୟ ଓ ତା'ର ପାଠକଙ୍କ ପାଇଁ ଏକ ସଙ୍କଟ । ଏପରି ସଙ୍କଟରୁ ମୁକ୍ତି ପାଇଁ ଲୋଡ଼ା ମାଟିର ମୂଲ୍ୟବୋଧ ସହିତ

ବିଶ୍ୱ-ଜୀବନ ପ୍ରବାହର ଅନ୍ତରଙ୍ଗ ଓ ବିଶ୍ୱାସଯୋଗ୍ୟ ସଂପର୍କ ସ୍ଥାପନ । ତାହା ହିଁ ସମ୍ଭବତଃ ସପ୍ତଦଶକର କବି ଓ କବିତା ପାଇଁ କାମ୍ୟ ।"

ସ୍ୱାଧୀନତା ପୂର୍ବରୁ ଓଡ଼ିଆ ସାହିତ୍ୟରେ ସାଂସ୍କୃତିକ ବିକାଶ ପାଇଁ ସେପରି କ୍ଷେତ୍ର କିଛି ନ ଥିଲା । 'ଉତ୍କଳ ସାହିତ୍ୟ ସମାଜ' ବା 'ସମାଜ' ପରି କେତେକ ପ୍ରତିଷ୍ଠାନ ମାତ୍ର ଥିଲା । ଏପରି ସମୟରେ ଡଃ ହରେକୃଷ୍ଣ ମହତାବଙ୍କ ପ୍ରତ୍ୟକ୍ଷ ପରିଚାଳନା ଓ ସଂପାଦନାରେ 'ପ୍ରଜାତନ୍ତ୍ର', 'ପ୍ରଜାତନ୍ତ୍ର ପ୍ରଚାର ସମିତି (୧୯୪୭), ଝଙ୍କାର (୧୯୪୯) ଇତ୍ୟାଦିର ଅଭ୍ୟୁଦୟ ହେଲା। ନୂତନ ସାହିତ୍ୟ ଓ ପାଠକୀୟ ଆଗ୍ରହ ସୃଷ୍ଟିକରିବା ଥିଲା ଏହାର ଲକ୍ଷ୍ୟ । ରବିବାର 'ପ୍ରଜାତନ୍ତ୍ର', 'ମୀନାବଜାର', 'ଝଙ୍କାର' ଓଡ଼ିଶାର ଅତି ପ୍ରିୟ ପତ୍ରପତ୍ରିକା ଥିଲା ଓ ଏ ସବୁର ଏକ ସ୍ୱତନ୍ତ୍ର ସାରସ୍ୱତ ମୂଲ୍ୟବୋଧ ଥିଲା । ୧୯୪୯-୧୯୭୩ ଯାଏ ଝଙ୍କାର କିପରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛି ତାହା ହିଁ ଡଃ ନାୟକ ଆଲୋଚନା କରିଛନ୍ତି । ଡଃ. ହରେକୃଷ୍ଣ ମହତାବଙ୍କ ମତରେ ଗୋଟିଏ ଦିଗରୁ ବିଚାର କଲେ ସାହିତ୍ୟ ଓ ସାମ୍ବାଦିକତା ମଧ୍ୟରେ ଯେପରି ଘନିଷ୍ଠ ସଂପର୍କ ପରିଲକ୍ଷିତ ହୁଏ, ଅନ୍ୟ ଏକ ଦିଗରୁ ଦେଖିଲେ ଉଭୟ ମଧ୍ୟରେ ଗଭୀର ପ୍ରଭେଦ ମଧ୍ୟ ଉପଲବ୍ଧ ହୁଏ ।

ଅସହଯୋଗ ଆନ୍ଦୋଳନରୁ ଫେରିବା ପରେ ଓଡ଼ିଶାରେ ଏକ ସମୃଦ୍ଧ ପତ୍ରିକା ସଂପାଦନା କରିବାକୁ ଯାଇ ଡଃ ହରେକୃଷ୍ଣ ମହତାବ ତତ୍କାଳୀନ ଇଂରାଜୀ ପତ୍ରିକା 'ଷ୍ଟେଟ୍‌ସ୍‌ମ୍ୟାନ୍' ର ସଂପାଦକ, ଆନନ୍ଦବଜାର ପତ୍ରିକା' ର ସଂପାଦକମାନଙ୍କ ସହ ଆଲୋଚନା କରିଥିଲେ । ଏହି 'ପ୍ରଜାତନ୍ତ୍ର' ଡଃ ମହତାବଙ୍କର ଅନେକ ମିତ୍ର ଓ ଅନେକ ଶତ୍ରୁ ସୃଷ୍ଟି କରିଛି । ସେ କିନ୍ତୁ ସେଥିରେ ବିଚଳିତ ହୋଇ ନାହାନ୍ତି । ଏ ବିଷୟରେ ସେ ଉଲ୍ଲେଖ କରିଛନ୍ତି, "ଆଜି ଯେ ଯାହାକହୁ, ଶେଷରେ ଯେତେବେଳେ ଏ ଜୀବନର କୋଳାହଳ ବନ୍ଦ ହୋଇଯିବ, ସେତେବେଳେ ଧୀରସ୍ଥିର ଭାବରେ ଯେଉଁ ମତ ପ୍ରକାଶ ପାଇବ ତାହା ହିଁ ପ୍ରକୃତ ମତ ବୋଲି ଗୃହୀତ ହେବ । ସେ ମତ ଜାଣିବା ପାଇଁ ମୁଁ ନ ଥିବି; ମୋର ଅନେକ ସହକର୍ମୀ ମଧ୍ୟ ନ ଥିବେ... ସେଇ ମତ ହିଁ ପ୍ରଜାତନ୍ତ୍ରକୁ ଇତିହାସରେ ତା'ର ସ୍ଥାନ ନିରୂପଣ କରେଇଦବ ।"

ସ୍ୱାଧୀନତା ପରେ କୃଷିଭିତ୍ତିକ ସମାଜରେ ଜାତିଭିତ୍ତିକ ବିଭାଜନ ଅପେକ୍ଷା ଶ୍ରେଣୀଭିତ୍ତିକ ବିଭାଜନ ପ୍ରାଧାନ୍ୟ ଲାଭ କଲା, ଅର୍ଥନୈତିକ ବିକାଶ ନିମନ୍ତେ ଶିଳ୍ପର ପ୍ରସାର ପାଇଁ ପ୍ରଚେଷ୍ଟା ଚାଲିଲା । ଅର୍ଥ ବଦଳରେ ଭୌତିକ ଜୀବନର ବିକାଶ ଘଟେ ସିନା ମାନବିକ ଚେତନାର ଉତ୍ତରଣ ହୁଏ ନାହିଁ । ଏହି ଭୌତିକ ଅଳୀକ ମୋହଠାରୁ ମୁକ୍ତ ହେବା ପାଇଁ ଡଃ ମହତାବ ସାହିତ୍ୟିକମାନଙ୍କୁ ପ୍ରତ୍ୟେକ କ୍ଷେତ୍ରରେ ଆହ୍ୱାନ ଦେଇଛନ୍ତି ।

ତାଙ୍କର ପ୍ରତିଟି ବାର୍ଷିକ ଉତ୍ସବର ଅଭିଭାଷଣରେ ସେ ଏହି ମାନବିକତା ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ଭୌତିକ ବିକାଶ ହେତୁ ଆଧୁନିକ ନୈତିକ ଜୀବନର ପତନ ତାଙ୍କୁ ବ୍ୟଥିତ କରିଛି । ୧୯୫୫-୬୨ ଯାଏ ଓଡ଼ିଆ ସାହିତ୍ୟରେ ବିଶେଷ ଉନ୍ନତି ବା ପ୍ରଗତି ପରିଲକ୍ଷିତ ହୋଇନାହିଁ । ସେହି ୭/୮ ବର୍ଷରେ ଓଡ଼ିଆ ସାହିତ୍ୟ ମାତ୍ର ତିନୋଟି କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଛି । ୧୯୬୦ ପରେ ଲେଖକମାନଙ୍କ ମଧ୍ୟରେ ଏକ ନୂତନ ଜାଗରଣ ଦେଖାଦେଇଛି ଓ ମହତାବ ଗାଳ୍ପିକମାନଙ୍କୁ ଦୁଃଖ ଦାରିଦ୍ର୍ୟର କଥା ନ ଲେଖି ଶକ୍ତି, ସାହସର କଥା ଲେଖିବାକୁ ପରାମର୍ଶ ଦେଉଥିଲେ । ଅନ୍ୟ ପ୍ରାଦେଶିକ ସାହିତ୍ୟର ସମକକ୍ଷ ବା ତାହାଠାରୁ ଉନ୍ନତ କରିବା ଓଡ଼ିଆ ସାହିତ୍ୟକୁ ଥିଲା ଝଙ୍କାରର ସ୍ୱପ୍ନ । ପରବର୍ତ୍ତୀ ସମୟରେ ମଧ୍ୟ ଉଚ୍ଚକୋଟୀର ପ୍ରବନ୍ଧ ଓ ସମାଲୋଚନା 'ଝଙ୍କାର' ରେ ପ୍ରକାଶ ପାଇଲା । ପରମାନନ୍ଦ ଆଚାର୍ଯ୍ୟ, ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, କେଦାରନାଥ ମହାପାତ୍ର ପ୍ରମୁଖ ଗବେଷଣାତ୍ମକ ପ୍ରବନ୍ଧ ରଚନା କରି ଅନେକ ଅଜ୍ଞାତ ବିଷୟ ଲୋକ ଲୋଚନକୁ ଆଣିଥିଲେ । ବୁଦ୍ଧିଜୀବୀମାନଙ୍କର ଦୃଷ୍ଟି ଝଙ୍କାରର ସାହିତ୍ୟିକ ବିଭବ ପ୍ରତି ଆକୃଷ୍ଟ ହେଲା । ଓଡ଼ିଆ ସାହିତ୍ୟକୁ 'ଝଙ୍କାର'ର ଅବଦାନ ବିଚାର କରିବାକୁ ଯାଇ ଡ. ନାୟକ ମତବ୍ୟକ୍ତ କରିଛନ୍ତି, "ଝଙ୍କାରର ଆଭିମୁଖ୍ୟ ଓ ଅବଦାନର ବିଭିନ୍ନ ଦିଗ ବିଶ୍ଳେଷଣରୁ ଆମର ଧାରଣା ଜନ୍ମୁଛି ଯେ, ଏହା ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶାର ସାଂସ୍କୃତିକ ଇତିହାସକୁ ପୁଷ୍ଟ କରିଛି । ଆମର ମାନସିକ ଦିଗ୍‌ବଳୟକୁ ପ୍ରସାରିତ କରିଛି । ଏ ଦେଶର ବୁଦ୍ଧିଜୀବୀମାନଙ୍କୁ ସଙ୍ଗଠିତ କରି, ସେମାନଙ୍କ ଚିନ୍ତାର ନାନାବିଧ ପ୍ରସଙ୍ଗକୁ ନିଜ ଜୀବନରେ ଖେଳେଇ ଦେବା ଲାଗି ଅବ୍ୟାହତ ଉଦ୍ୟମ କରିଛି ।"

ଓଡ଼ିଆ ଜାତିର ପ୍ରାଣ ସ୍ପନ୍ଦନରେ ସୃଷ୍ଟିର ମହୋତ୍ସବ ଲାଗି ରହିଥାଏ । ଗ୍ରାମ୍ୟବଧୂ, ଶ୍ରମିକ, କୃଷକ, ଶିଶୁ- ସମସ୍ତଙ୍କ ମୁଖରେ କଲ୍ଲୋଳିତ ହୁଏ କବିତାର ସ୍ୱର ବିଭିନ୍ନ ସମୟରେ । ସାହିତ୍ୟିକ ସଂଗଠନ ବିଭିନ୍ନ କ୍ଷେତ୍ରରେ ଲେଖକ, କବି (ମୌଖିକ ମଧ୍ୟ) ମାନଙ୍କୁ ଉତ୍ସାହିତ କରିବା ସହ ଅନୁକୂଳ ପରିବେଶ ସୃଷ୍ଟି କରି ସେମାନଙ୍କୁ ସାହାଯ୍ୟ ସୁଯୋଗ ଯୋଗାଇଦିଏ । କିନ୍ତୁ ସଂଗଠନ ଦ୍ୱାରା ବ୍ୟକ୍ତିଗତ ସୃଷ୍ଟି ପ୍ରକ୍ରିୟା ବାଧାପ୍ରାପ୍ତ ହୁଏ । ତଥାପି ସଂଗଠନ ଦ୍ୱାରା ନାନାଦି ସଂକଟରୁ ତ୍ରାହି ମିଳେ । ସ୍ରଷ୍ଟା ଓ ସଂଗଠନକାରୀ ଏକାଧାରାରେ ବିକଶିତ ହୋଇପାରନ୍ତି ନାହିଁ । ଦୃଷ୍ଟାନ୍ତ ଉଲ୍ଲେଖ କରି ଡଃ ନାୟକ ଦର୍ଶାଇଛନ୍ତି, "ଏକାଧାରାରେ ଜଣେ କେହି ବ୍ୟକ୍ତି ସ୍ରଷ୍ଟା ଓ ସଂଗଠନକାରୀ ଭୂମିକାରେ ଥାଇ ସଫଳତା ଅର୍ଜ୍ଜିବା ସହଜ ଓ ସାଧାରଣ ଘଟଣା ନୁହେଁ । ଆମ ସାହିତ୍ୟର ଇତିହାସରେ ଫକୀରମୋହନ ସେନାପତି, ବିଶ୍ୱନାଥ କର, ଡଃ ହରେକୃଷ୍ଣ ମହତାବ ଇତ୍ୟାଦିଙ୍କ ପରି ସବ୍ୟସାଚୀଙ୍କର ଦୃଷ୍ଟାନ୍ତ ବହୁ ପରିମାଣରେ ଆଖିରେ ପଡ଼େ ନାହିଁ । ଗୋଟିଏ ହାତରେ

ଲେଖନୀ ଧରି ଅନ୍ୟ ହାତରେ କରଣୀ, ଏଣେ ସୃଷ୍ଟିରେ ତନ୍ମୟ ତ ତେଣେ ସଂଗଠନରେ ତତ୍ପର ଗୋଟିଏ ବ୍ୟକ୍ତିତ୍ୱରେ ଦୁଇଟି ଶକ୍ତିର ପୂର୍ଣ୍ଣାଙ୍ଗ ସ୍ଥିତି ଖୁବ୍ କ୍ୱଚିତ ଦେଖାଯାଏ ।"

ଗତ ଶତାବ୍ଦୀରେ ଏକାଧିକ ସଂଗଠନ ଓଡ଼ିଆ ସାହିତ୍ୟକୁ ଅନେକ ଦୁର୍ବିପାକରୁ ଉଦ୍ଧାର କରିଲେ । 'ଗଞ୍ଜାମ ହିତବାହିନୀ ସଭା' ୧୮୭୨ ରେ ଗଞ୍ଜାମରେ ତେଲେଙ୍ଗା ଭାଷା ପ୍ରଚଳନ ବିରୋଧରେ ଆନ୍ଦୋଳନ କରିଥିଲା । 'ଉତ୍କଳ ସଭା' (୧୮୭୭) 'ଉତ୍କଳ ଉନ୍ନତି ବିଧାୟିନୀ ସଭା', 'ଉତ୍କଳ ଭାଷା ଉଦ୍ଦୀପନୀ ସଭା' ପ୍ରଭୃତି ଏହି ଲକ୍ଷ୍ୟରେ ଗଠିତ ହୋଇ ଓଡ଼ିଆ ଭାଷା ଓ ସାହିତ୍ୟକୁ ବଞ୍ଚାଇ ରଖିଥିଲା । 'ଓଡ଼ିଆ ତାଳପତ୍ର ସାହିତ୍ୟ ଉଦ୍ଧାରଣ କମ୍ପାନୀ, ବାଲେଶ୍ୱର (୧୮୭୭)ର ଲକ୍ଷ୍ୟ ଥିଲା ପ୍ରାଚୀନ ଗ୍ରନ୍ଥ ଉଦ୍ଧାର ଓ ସଂଗ୍ରହ । ଓଡ଼ିଶାର ବିଭିନ୍ନ କୋଣ ଅନୁକୋଣରେ ସାହିତ୍ୟିକ ସଂଗଠନମାନ ଜାଗ୍ରତ ପ୍ରହରୀ ସଦୃଶ ଓଡ଼ିଆ ଭାଷା ସାହିତ୍ୟକୁ ବିପର୍ଯ୍ୟୟ ମୁଖରୁ ଉଦ୍ଧାର କରିଥିଲେ । ଊନବିଂଶ ଶତାବ୍ଦୀରେ 'ଉତ୍କଳ ସାହିତ୍ୟ ସମାଜ' (୧୯୦୩), 'ଓଡ଼ିଆ ସାହିତ୍ୟ ପ୍ରଚାର ସଂଘ' (୧୯୨୪), 'ସବୁଜ ସମିତି' (୧୯୩୩) ଠାରୁ ଅଦ୍ୟାବଧି ଅଗଣିତ ସଂଗଠନ ଓଡ଼ିଆ ଭାଷା ଓ ସାହିତ୍ୟକୁ ଉନ୍ନତ ଓ ସମୃଦ୍ଧ କରିଛି । ଅନୁଷ୍ଠାନଗୁଡ଼ିକରେ ବ୍ୟକ୍ତିଗତ ପ୍ରତିଷ୍ଠାକୁ ଭୁଲି ସମୂହ ପ୍ରତିଷ୍ଠାରେ ନିଜକୁ ସମର୍ପଣ କରିପାରିଲେ ଏ ଜାତି ଧନ୍ୟ ହେବ ।

କବିପ୍ରାଣ ଡଃ କ୍ଷେତ୍ରବାସୀ ନାୟକ କବିତାର ବିବିଧବର୍ଣ୍ଣା ବିପୁଳ ସୌନ୍ଦର୍ଯ୍ୟରେ ନିମଗ୍ନ । ତାଙ୍କ ରଚିତ 'ସାହିତ୍ୟ ଚର୍ଚ୍ଚା' ପୁସ୍ତକରେ କବିତା ସମ୍ବଳିତ ଦୁଇଟି ଆଲୋଚନା' ଓଡ଼ିଆ କାବ୍ୟଧାରା ଓ ପାଶ୍ଚାତ୍ୟ କାବ୍ୟତତ୍ତ୍ୱ' ଏବଂ 'ଓଡ଼ିଆ କାବ୍ୟ କବିତାରେ ପାଶ୍ଚାତ୍ୟ ପ୍ରଭାବ'ସ୍ଥାନ ପାଇଛି । ଏହା ତାଙ୍କର ଗବେଷଣାସଂପର୍କିତ ବିଷୟ ହୋଇଥିବାରୁ ଏଥିରେ ତାଙ୍କର ଅଭିନିବେଶ ଓ ଜ୍ଞାନ ଗଭୀର ।

ବିଶ୍ୱ ସାହିତ୍ୟରେ ପ୍ରତ୍ୟେକ ଯୁଗାନ୍ତକାରୀ ସୃଷ୍ଟି କୌଣସି ନା କୌଣସି କାବ୍ୟ-ତତ୍ତ୍ୱର ଭୂମିକା ଉପରେ ସଂଗଠିତ ହୋଇଛି । ୱାର୍ଡ୍‌ସ୍‌ୱାର୍ଥ, ମାମାର୍ଲେ, ହ୍ୟୁମ୍, ଏଜରାପାଉଣ୍ଡ, ଟି. ଏସ୍. ଇଲିୟଟ୍ ପ୍ରଭୃତି କାବ୍ୟ ଧାରାରେ ଉଭୟ ଆଙ୍ଗିକ ଓ ଆତ୍ମିକ କ୍ଷେତ୍ରରେ ବହୁ ନବ୍ୟ ଚିନ୍ତା ଓ ଚେତନାର ପ୍ରୟୋଗ କରିଛନ୍ତି । ଓଡ଼ିଆ କାବ୍ୟଧାରାରେ ରାଧାନାଥ ଓ ତାଙ୍କର ସମକାଳୀନ କବିଙ୍କଠାରୁ ସାଂପ୍ରତିକ କାଳ ପର୍ଯ୍ୟନ୍ତ କାବ୍ୟଧାରାରେ ନାନା ବିପ୍ଳବ ସୃଷ୍ଟି ହୋଇଛି । ସତ୍ୟବାଦୀ ଯୁଗ, ସବୁଜ ଯୁଗ ଇତ୍ୟାଦି ସବୁ ସମୟରେ କବିମାନେ ଯେ କୌଣସି କାବ୍ୟ-ତତ୍ତ୍ୱଦ୍ୱାରା ପ୍ରଣୋଦିତ ହୋଇଛନ୍ତି ।

ଶ୍ରୀ ଅରବିନ୍ଦଙ୍କ ରଚିତ 'The future poetry' ଗ୍ରନ୍ଥରେ ତିନୋଟି ଧାରା ସୂଚିତ ହୋଇଛି । ଗ୍ରୀକ, ରୋମାନ୍ ଓ କେଲ୍‌ଟିକ୍ ଧାରା । ଶ୍ରୀ ନଳିନୀକାନ୍ତ ଗୁପ୍ତ ଶ୍ରୀ

ଅରବିନ୍ଦଙ୍କ ମତକୁ ସମର୍ଥନ କରିଛନ୍ତି । ଗ୍ରୀକ୍‌ଧାରା ସ୍ୱଚ୍ଛ, ରୋମାନ୍ ଧାରା ଉପଦେଶାତ୍ମକ ଓ ଆଦର୍ଶାନୁପ୍ରାଣିତ ହେଲାବେଳେ କେଲଟିକ୍ ଧାରା ଅସୀମ, ଅମୃତର ସନ୍ଧାନ ପାଇଁ ଉନ୍ମୁଖ । ବିଶ୍ୱସାହିତ୍ୟର ଗତିବିଧିରୁ ଜଣାଯାଏ କାବ୍ୟସରା ଦେଶ ବିଦେଶର ସୀମାରେଖା ଗଣନା କରେ ନାହିଁ । ଗ୍ରୀକ୍‌ରୁ ଲାଟିନ୍, ଲାଟିନ୍‌ରୁ ଫରାସୀ ଏବଂ ଗ୍ରୀକ୍ ଲାଟିନ୍ ସମେତ ଫରାସୀ ଭାଷାର ଅବଦାନରେ ଇଂରେଜୀ ସାହିତ୍ୟ ସମୃଦ୍ଧ । ପାଶ୍ଚାତ୍ୟ ସାହିତ୍ୟର clas-sical poetics ର ପ୍ରବର୍ତ୍ତକମାନଙ୍କ ମଧ୍ୟରେ ପ୍ଲେଟୋ, ଆରିଷ୍ଟଟଲ୍ ଇତ୍ୟାଦି ମୁଖ୍ୟ । ପ୍ଲେଟୋଙ୍କ ମତରେ ବାସ୍ତବ ଜଗତ ହେଉଛି ଈଶ୍ୱରଙ୍କ ସୃଷ୍ଟି । ଏଇ ବାସ୍ତବ ଜଗତର ଛାୟାନୁକରଣ ସାହିତ୍ୟରେ ସଂଘଟିତ ହୁଏ । ସୁତରାଂ, ତାହା ନକଲର ନକଲ । ଏହି ନକଲ ପାଇଁ ଇମୋସନ୍ ବା ଆବେଗ ପ୍ରବଣତା କବିର ସୃଷ୍ଟିମାନସକୁ ଆଚ୍ଛନ୍ନ କରି ରଖିଥାଏ ।

ପାଶ୍ଚାତ୍ୟର ଅନ୍ୟ ଏକ ଅବଦାନ ହେଉଛି ଏପିକ୍ ଓ ଟ୍ରାଜେଡ଼ି ତତ୍ତ୍ୱ । ଟ୍ରାଜେଡ଼ିର ସାର୍ଥକତା କାହାଣୀ ଉପସ୍ଥାପନାରେ ନିହିତ । ମାନବ ଜୀବନର ଦୁଃଖ, ବେଦନା, ବିପର୍ଯ୍ୟୟ, ବ୍ୟର୍ଥତା ମଧ୍ୟରେ ଥିବା କାରଣ ରସରେ ଯେଉଁ ଅନୁଭୂତିପ୍ରବଣ ଆନନ୍ଦବୋଧ ଥାଏ ତାହା ହିଁ ଟ୍ରାଜେଡ଼ି । ରାଧାନାଥଙ୍କ ଅମଳରୁ ପାଶ୍ଚାତ୍ୟ ସାହିତ୍ୟରୁ ଏହି ଟ୍ରାଜେଡ଼ି ଭାବଧାରା ଓଡ଼ିଆ ସାହିତ୍ୟରେ ପ୍ରବେଶ କରିଛି । ଟ୍ରାଜେଡିରେ ଅନ୍ତର୍ନିହିତ ସତ୍ୟ ହିଁ ବାସ୍ତବ ଜୀବନର ପ୍ରତିଛବି । ଗଙ୍ଗେଶ୍ୱରଙ୍କ କୁକର୍ମ (ପାର୍ବତୀ) ଅନୈତିକ ହେଲେ ମଧ୍ୟ ଅସମ୍ଭବ ନୁହେଁ । ଗଙ୍ଗେଶ୍ୱରଙ୍କର ମୃତ୍ୟୁ ସେହି କୁକର୍ମର କରୁଣ ପରିଣତି । ନନ୍ଦିକାଙ୍କର ଉଚ୍ଛୃଙ୍ଖଳ ପ୍ରେମ (ନନ୍ଦିକେଶ୍ୱରୀ) ପାଇଁ ଶାସ୍ତି କ'ଣ ସାମାଜିକ ନ୍ୟାୟ-ନୀତିର ପରିଚୟ ଦିଏ ନାହିଁ ? ସେହିପରି ନନ୍ଦକିଶୋର ବଳଙ୍କର 'କୃଷ୍ଣାକୁମାରୀ' ଓ 'ଶର୍ମିଷ୍ଠା' ରେ ଜୀବନର ବ୍ୟର୍ଥତା ମଧ୍ୟରେ ନୈତିକତାର ରୂପାୟନ ପରିଦୃଷ୍ଟ ହୁଏ ।

'ଏପିକ' ରଚନା ମଧ୍ୟ ପାଶ୍ଚାତ୍ୟର ଆହରଣ । ରାଧାନାଥଙ୍କର 'ମହାଯାତ୍ରା' ଠାରୁ ନୀଳକଣ୍ଠଙ୍କର 'ଖାରବେଳ' ଏପିକ୍ ରଚନା ଶ୍ରେଣୀଭୁକ୍ତ । ଆଧୁନିକ ଓଡ଼ିଆ କାବ୍ୟ ଜଗତକୁ ପାଶ୍ଚାତ୍ୟ ରୋମାଣ୍ଟିକ୍ କାବ୍ୟତତ୍ତ୍ୱର ଅବଦାନ ଅତ୍ୟନ୍ତ ପ୍ରଭାବଶାଳୀ । କବିର ହୃଦୟ ହିଁ ତା'ର ଭାବ ଜଗତ । ମନ୍ମୟ ଚେତନାରେ ସେ ସଦାନିମଗ୍ନ । ଜୀବନର ସୌନ୍ଦର୍ଯ୍ୟ, ବିସ୍ମୟ, ବେଦନାବୋଧ, ଜ୍ୱାଳା, ଯନ୍ତ୍ରଣା, ପ୍ରେମ, ବ୍ୟର୍ଥତା ଆଦି ରୋମାଣ୍ଟିକ୍ କବିତାରେ ଭିନ୍ନ ଭିନ୍ନ ଶୈଳୀରେ ପ୍ରସ୍ଫୁଟିତ ହୋଇଥାଏ । ମାନସିଂହଙ୍କ 'ଧୂପ', 'ହେମଶସ୍ୟ', କାଳିନ୍ଦୀ ପାଣିଗ୍ରାହୀଙ୍କର 'ଲୋହିତ ବ୍ୟଥା', ସଚ୍ଚି ରାଉତରାୟଙ୍କ 'ପଲ୍ଲୀ ଶ୍ରୀ' ଇତ୍ୟାଦି ଏଇ ଶ୍ରେଣୀୟ କବିତା । ମିଷ୍ଟିକ୍ ଅନୁଭବ ବା ରହସ୍ୟମୟତା ରୋମାଣ୍ଟିକ୍

ଚେତନାର ଅନ୍ୟ ଏକ ବିଭବ, ଯାହା ସ୍ପଷ୍ଟଭାବେ ପ୍ରକାଶ କରି ହୁଏ ନାହିଁ, କିଛି ଅସ୍ପଷ୍ଟ ଅଥଚ ଅନୁଭୂତି ରସାଣିତ ହୋଇଥାଏ ତାହା ମିଷ୍ଟିକ୍ ଭାବନାର ଅନ୍ତର୍ଭୁକ୍ତ । 'ଲୋହିତ ବ୍ୟଥା', ବୈକୁଣ୍ଠ ନାଥଙ୍କର 'ଶିଶୁ ସୃଷ୍ଟି', 'ପାନ୍ଥଶାଳା', 'ଯାତ୍ରା ସଙ୍ଗୀତ', ପଦ୍ମଚରଣଙ୍କର 'କିଏ ତୁମେ', ମାନସିଂହଙ୍କର 'ତୃତୀୟ ନୟନ' ରେ ଏହି ମିଷ୍ଟିକ୍ ଅନୁଭବ ସୁସ୍ପଷ୍ଟ । ଏତଦ୍‌ବ୍ୟତୀତ, ସିମ୍ବଲିଷ୍ଟ, ଇମେଜିଷ୍ଟ, ପ୍ରଗତିବାଦୀ କାବ୍ୟ ଚେତନା ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବରୁ ହିଁ ସମ୍ଭୂତ । ସିମ୍ବଲିଜିମ୍ ବା ନେତ୍ରକଳ୍ପ ଆଧୁନିକ ଓଡ଼ିଆ କବିତାର ମାନ୍ୟତା ବହୁଗୁଣରେ ପରିବର୍ଦ୍ଧିତ କରିଛି । ରମାକାନ୍ତ ରଥଙ୍କର 'ଅନନ୍ତ ଶୟନ' କବିତାର ଗୋଟିଏ ଉଦାହରଣ ସେଥିପାଇଁ ଯଥେଷ୍ଟ ହେବ, ସେ ତାଙ୍କର ମୃତବତ୍ସା ପତ୍ନୀଙ୍କୁ ସାନ୍ତ୍ୱନା ଦେଇ ଲେଖିଛନ୍ତି, "ଏବେ ବି ଦିଶୁଚ ତମେ ତୋଫା ଗଙ୍ଗ ଶିଉଳିର / ମଧ୍ୟାହ୍ନ ଖରାରେ ଦଗ୍ଧ ପତ୍ରପରି / ଏବେ ବି ରାତ୍ରିରେ / ଅସ୍ପଷ୍ଟ ପାହାଡ଼ ତଳେ ଦପଦପ ଜଳିବା ନିଆଁର / ମତ୍ତ, ତମ ଦେହେ । ଖରାର ଘଣ୍ଟାରେ। ଏବେ ବି ହୋଇନି ସନ୍ଧ୍ୟା ।" 'ଖରାର ଘଣ୍ଟାରେ ଏବେ ବି ହୋଇନି ସନ୍ଧ୍ୟା ।' - ଚିତ୍ରକଳ୍ପ ମାଧ୍ୟମରେ କବିଙ୍କର ତାରୁଣ୍ୟ ଓ ଉତ୍ତେଜନା ପ୍ରାଞ୍ଜଳଭାବେ ପ୍ରକାଶ ପାଇଛି ।

ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ରାଧାନାଥଙ୍କଠାରୁ ଆରମ୍ଭ । ସେ ବିଷୟବସ୍ତୁ, ଶୈଳୀ, ସବୁ କ୍ଷେତ୍ରରେ ପାଶ୍ଚାତ୍ୟର ଅନୁକରଣ କରିଛନ୍ତି । ତାଙ୍କର 'ଚିଲିକା', ସ୍କଟ୍‌ଙ୍କର 'Lady of the Lake' ର ପ୍ରତିବିମ୍ବ । ରାଧାନାଥଙ୍କର 'ପବନ' କବିତାରେ ୱାର୍ଡ଼ସ୍‌ୱାର୍ଥ୍ ଓ ସେଲିଙ୍କର ପ୍ରକୃତି ପ୍ରାଣତା ପରିଲକ୍ଷିତ । ମଧୁସୂଦନଙ୍କର 'ନିଶିଥ ଚିନ୍ତା', 'ଶ୍ମଶାନ' କବିତାରେ ସେଲିଙ୍କର 'To the Night' ର ସ୍ୱର ସ୍ପଷ୍ଟ । ଶୋକଗୀତି ରଚନା, ବ୍ୟଙ୍ଗ, ସମ୍ବୋଧନ ଗୀତି ଇତ୍ୟାଦିରେ ମଧ ଏହି ପ୍ରଭାବ ଲକ୍ଷ୍ୟ କରାଯାଇଥାଏ । ନୀଳକଣ୍ଠଙ୍କର ଦୁଇଟି କାବ୍ୟ ଓ ଗୋଦାବରୀଶଙ୍କ 'ଚୟନିକା' ର ଅନେକ କବିତା ପାଶ୍ଚାତ୍ୟ ଛାୟାରେ ଲିଖିତ । 'ସବୁଜ ଯୁଗ' ର କବିମାନେ ବହୁଳ ଭାବେ ପାଶ୍ଚାତ୍ୟର 'Romantic age' ର କବିମାନଙ୍କୁ ଅନୁସରଣ କରିଛନ୍ତି । ନୂତନତାକୁ ସ୍ୱାଗତ, ସାମ୍ୟବାଦୀ ଚେତନା ଇତ୍ୟାଦି ପାଶ୍ଚାତ୍ୟର ଆହରଣ । 'ଛୁରୀଟିଏ ଲୋଡ଼ା', 'କିଏ ଶଳା ସଇତାନ', 'ଆଗାମୀ', 'ମୂକ ଭଗବାନ' ପ୍ରଭୃତି କବିତା ତା'ର ଉଦାହରଣ । ଆଧୁନିକ କବିତାମାନଙ୍କ ମଧରେ ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ବିନୋଦ ନାୟକ, ଗୁରୁ ମହାନ୍ତି - ସବୁରି କବିତାରେ ପଶ୍ଚିମର ରାଗ ଅନୁଭୂତ । ଗୁରୁ ମହାନ୍ତି ବିଶେଷ ଭାବରେ ଟି.ଏସ୍. ଇଲିଅଟ୍, ଓନ୍, ବଦ୍‌ଲେୟାର୍ (କଳାପୁରୁଷ)ଙ୍କ ଦ୍ୱାରା ପ୍ରଭାବିତ । ଅନ୍ୟ ସାହିତ୍ୟରୁ ଆହରଣ କରିବାରେ, ପ୍ରଭାବିତ ହେବାରେ ନୂତନତା ନାହିଁ । ସମଗ୍ର ବିଶ୍ୱ ସାହିତ୍ୟରେ ଏହା ପରିଦୃଷ୍ଟ ସୁଚାରୁ

ରୂପେ ନେଇ ଆଣି ଥୋଇପାରିଲେ ଆହରଣ ମୌଳିକ ସୃଷ୍ଟିଠାରୁ ମଧ୍ୟ ସୁନ୍ଦର, ସୌଷ୍ଠବବନ୍ତ ହୋଇପାରିବ ବୋଲି କ୍ଷେତ୍ରବାସୀ ମତବ୍ୟକ୍ତ କରିଛନ୍ତି ।

କ୍ଷେତ୍ରବାସୀ ଏକ ଅଭିଭାଷଣରେ 'ଓଡ଼ିଆ ଦୂତକାବ୍ୟ' ସମ୍ପର୍କରେ ଆଲୋଚନା କରିଛନ୍ତି । କାବ୍ୟରେ ଦୂତର ଭୂମିକା ବହୁ ପୁରାତନ । କାଳିଦାସଙ୍କ ସମୟରୁ ଏହି ପରମ୍ପରା ସାହିତ୍ୟରେ ପ୍ରାଧାନ୍ୟ ଲାଭ କରିଛି । ତାଙ୍କର 'ମେଘଦୂତ' ଏକ ଅନବଦ୍ୟ ରଚନା, ତା' ପରେ ନବମ ଶତାବ୍ଦୀରେ 'ଚନ୍ଦ୍ରଦୂତ', ଦ୍ୱାଦଶ ଶତାବ୍ଦୀରେ 'ପବନ ଦୂତ', ଷୋଡଶ ଶତାବ୍ଦୀରେ ରୂପ ଗୋସ୍ୱାମୀଙ୍କର 'ହଂସଦୂତ' ବ୍ୟତୀତ, 'ମନୋଦୂତ', 'ଶୁକଦୂତ', 'ଭୃଙ୍ଗଦୂତ' ପ୍ରଭୃତି ବହୁ ଦୂତକାବ୍ୟ ରଚିତ ହୋଇଛି । ସଂସ୍କୃତ ଦୂତକାବ୍ୟ ବିପ୍ରଲମ୍ଭ ଶୃଙ୍ଗାରକୁ ଆଶ୍ରୟ କରି ରଚିତ । ଓଡ଼ିଆ ଦୂତକାବ୍ୟର ବୈଶିଷ୍ଟ୍ୟ ହେଉଛି ତାହା ଖଣ୍ଡକାବ୍ୟ ଶ୍ରେଣୀଭୁକ୍ତ, କାହାଣୀଭିତ୍ତିକ, ଆତ୍ମୀୟ ସ୍ୱଜନଙ୍କୁ କେନ୍ଦ୍ରକରି ରଚିତ । ଡଃ ଜାନକୀବଲ୍ଲଭ ମହାନ୍ତି ଓ ପଣ୍ଡିତ ନୀଳମଣି ମିଶ୍ର ପ୍ରଭୃତି ଏହାକୁ ପ୍ରାଚୀନ ଗୀତିକା ଭାବରେ ଗ୍ରହଣ କରଛନ୍ତି । ଓଡ଼ିଆ ଦୂତକାବ୍ୟ ମଧ୍ୟରେ କୋଇଲି ସମ୍ବୋଧିତ ଦୂତବାକ୍ୟ ସଂଖ୍ୟାଧିକ । ମାର୍କଣ୍ଡ ଦାସଙ୍କ 'କେଶବ କୋଇଲି' ସର୍ବପୁରାତନ ଦୂତଗୀତିକା । ଓଡ଼ିଆରେ ଦୂତ ଗୀତିକା ପୁଣି ବେଳେବେଳେ ଚଉତିଶା ରୂପରେ ଲେଖା ଯାଇଛି । ବଳରାମ ଦାସଙ୍କ 'ଶ୍ରୀରାମ କୋଇଲି', 'କାନ୍ତ କୋଇଲି', ଜଗନ୍ନାଥ ଦାସଙ୍କର 'ଅର୍ଥ କୋଇଲି', ଶଙ୍କର ଦାସଙ୍କର 'ବାରମାସୀ କୋଇଲି', ସୁଲକ୍ଷଣା ପଟ୍ଟନାୟକଙ୍କର 'ଦୀନବନ୍ଧୁ କୋଇଲି' ପ୍ରଭୃତି ନାନାଜାତିର ସନ୍ଦେଶ ଗୀତିକା ଓଡ଼ିଆ ସାହିତ୍ୟକୁ ଗୁରିମନ୍ତ କରିଛି । ଡଃ ନାୟକ କୋଇଲି ଗୀତିକାର ବହୁ ଶ୍ରୁତି ମଧୁର ଲଳିତ ଉଦାହରଣ ଉପସ୍ଥାପିତ କରିଛନ୍ତି ।

'ଚିଟାଉ', ଦୂତକାବ୍ୟତୁଲ୍ୟ ଅନ୍ୟ ଏକ ବୈଚିତ୍ର୍ୟ ଓଡ଼ିଆ ସାହିତ୍ୟରେ । 'ଆଜ୍ଞା ପତ୍ରିକା, 'ବିନୟ ପତ୍ରିକା', 'ପ୍ରେମ ପତ୍ରିକା' ଆକାରରେ ଏହା ରଚିତ ।

ଦୂତକାବ୍ୟ ଚଉତିଶା ଶୈଳୀରେ ମଧ୍ୟ ରଚିତ ହୋଇଥାଏ । ଚଉତିଶାରେ 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ୩୪ ଟି ଅକ୍ଷରକୁ ଆଦ୍ୟରେ ରଖି ରଚନା କରାଯାଇଥାଏ । ଓଲଟ ଚଉତିଶାରେ 'କ୍ଷ' ଠାରୁ 'କ' ଯାଏ ପ୍ରତ୍ୟେକ ଧାଡ଼ିର ଆଗରେ ରହିଥାଏ । ଚଉତିଶା ଓଡ଼ିଆ ଗୀତି ସାହିତ୍ୟର ଅତ୍ୟନ୍ତ ପ୍ରିୟ । ଏଥିରେ ପ୍ରେମ, ବିରହ, ବାତ୍ସଲ୍ୟ, ବୈରାଗ୍ୟ, ବନ୍ଧୁତା ଇତ୍ୟାଦି ବିଷୟ ସ୍ଥାନ ପାଇଥାଏ । ତାଳଚେର ରାଜାଙ୍କ ଦ୍ୱାରା ପ୍ରକାଶିତ 'ବାୟସ୍ ଦୂତ' ରେ ଐତିହାସିକ ଘଟଣା ସ୍ଥାନିତ ହେବାର ନଜିର ମଧ୍ୟ ଅଛି । କବି ରାଧାମୋହନ ଗଡ଼ନାୟକଙ୍କ 'ହଂସଦୂତ' ସଂସ୍କୃତ 'ହଂସଦୂତ' ଠାଣିରେ ରଚନା କରାଯାଇଛି । ଡଃ କୁଞ୍ଜବିହାରୀ ଦାସଙ୍କର 'ସ୍ୱପ୍ନଦୂତ' ଦୂତକାବ୍ୟ ପରମ୍ପରାର ଏକ ମହାର୍ଘ ସୃଷ୍ଟି । ଡଃ.

ନାୟକ ଓଡ଼ିଆ ସାହିତ୍ୟରେ 'ଦୂତକାବ୍ୟ' ର ଲକ୍ଷଣ, ଶ୍ରେଣୀବିଭାଗ, ପରମ୍ପରା, ଐତିହ୍ୟ, ଭାଷା, ଶୈଳୀ ଆଦି ପୁଙ୍ଖାନୁପୁଙ୍ଖ ଅନୁଶୀଳନ କରି ଅନୁଭବ କରିଛନ୍ତି - "ଲୋକ ତୁଣ୍ଡରେ ଏ ାର ଆଦର ଏବେ ବି ଅତୁଟ ରହିଛି ।"

ସାହିତ୍ୟ ଓ ଦର୍ଶନ ସଂପର୍କରେ ଆଲୋଚନା କରିବାକୁ ଯାଇ ଡଃ ନାୟକ ସାହିତ୍ୟ ଓ ଦର୍ଶନକୁ ଏକ ନୂତନ ଦୃଷ୍ଟିକୋଣରୁ ବିଚାର କରିଛନ୍ତି । ଏହି ନୂତନତା ପାଇଁ ସେ ସାହିତ୍ୟରେ ଜୀବନ ଦର୍ଶନର ସିଧାସଳଖ ଉପସ୍ଥାପନା ନ କରି ଭିନ୍ନ ଭିନ୍ନ ଏକ ଶୈଳୀରେ ତା'ର ଅବତାରଣା କରିଛନ୍ତି ଏବଂ ତା'ର ଶିରୋନାମା ନିର୍ଣ୍ଣୟ କରିଛନ୍ତି । "ମାଟିର ସାହିତ୍ୟ ଓ ଜାତିର ଦର୍ଶନ ।" ଗ୍ରୀକ୍, ବ୍ରିଟିଶ୍, ସୋଭିଏତ୍ ପ୍ରଭୃତି ଦେଶର ସାହିତ୍ୟ ଓ ଦର୍ଶନ ମଧ୍ୟରେ ଅନେକ ଭିନ୍ନତା ରହିଛି, ରହିବା ମଧ୍ୟ ସ୍ୱାଭାବିକ । ପ୍ରତ୍ୟେକ ଜାତିର ଏକ ସ୍ୱତନ୍ତ୍ର ଜୀବନ ଦୃଷ୍ଟି ରହିଛି । ସାହିତ୍ୟ ମାନବ ଜୀବନର ପ୍ରତିଛବି । ଅନ୍ୟମାଟିର ସାହିତ୍ୟ ଯେତେ ଲୋଭନୀୟ ହେଲେ ମଧ୍ୟ କୌଣସି ସାହିତ୍ୟ ନିଜ ମାଟିର ମାୟା ଛାଡ଼େ ନାହିଁ । ସାହିତ୍ୟ ଯେତେବେଳେ ମନକୁ ପ୍ରସାରିତ କରେ, ମର୍ମସ୍ଥଳୀକୁ ଆଚ୍ଛନ୍ନ କରେ, ସେତେବେଳେ ତାହା ଶକ୍ତିରେ ପରିଣତ ହୋଇଯାଏ । ପରମ୍ପରା ମଧ୍ୟରେ ଗୋଟିଏ ଜାତିର ଜୀବନ ଦର୍ଶନ ପ୍ରତିବିମ୍ବିତ ହୋଇଥାଏ । ଇନ୍ଦ୍ରଦ୍ୟୁମ୍ନ ରାଜା ଶ୍ରୀ ଜଗନ୍ନାଥଙ୍କୁ ବର ମାଗିଛନ୍ତି ନିର୍ବଂଶ ହେବାକୁ । ମନ୍ଦିର ଉପରେ ଉତ୍ତରାଧିକାର ସତ୍ତ୍ୱ ଜାହିର କରି ତାଙ୍କର କେହି ବଂଶଧର କେବେ ଯେପରି ଗର୍ବ ନ କରୁ, ବ୍ୟକ୍ତିଗତ ସଂପତ୍ତି ବୋଲି ତାକୁ ଅଧିକାର ବା ଆତ୍ମସାତ ନ କରୁ । ପୁରୀ ଗଜପତି କପିଳେନ୍ଦ୍ରଦେବ ଛେରା ପହଁରା ପ୍ରତୀକ ମାଧ୍ୟମରେ ସେବାକୁ ପରମ ଧର୍ମ ହିସାବରେ ଗ୍ରହଣ କରିଛନ୍ତି । ଏଥିରୁ ଜଣାଯାଏ ଓଡ଼ିଆ ଜାତିର ଜୀବନର ଧର୍ମ ବା ଦର୍ଶନ ହେଉଛି ତ୍ୟାଗ, ଅହଂକାରଶୂନ୍ୟତା, ମାନବ ସେବା ଓ ସାମ୍ୟବାଦ । ସବୁ ସଂପତ୍ତି ଜଗନ୍ନାଥ ମହାପ୍ରଭୁଙ୍କର । ରଜା ତା'ର ସେବକ (ରାଉତ ) ମାତ୍ର ।

ଓଡ଼ିଶାର ମାଟି ଅନୁରାଗର ମାଟି । ଏଠି ଭକ୍ତର ଅନୁରାଗରେ ପ୍ରଭୁ ଗୋଳି ହୋଇଯାନ୍ତି । ଭକ୍ତ ତାଙ୍କୁ ଶ୍ରଦ୍ଧା କରେ, ଭକ୍ତି କରେ, ପୁଣି ଆପଣା ପଣରେ ମନ ଭରି ଭସନା ବି କରେ । କିନ୍ତୁ ଆବୋରି ଧରିଥାଏ । ବ୍ୟାକୁଳ ହୋଇ ଜଣାଏ, "ଜଗନ୍ନାଥ ହେ, କିଛି ମାଗୁନାହିଁ ତୋତେ । ଧନ ମାଗୁନାହିଁ, ଜନ ମାଗୁ ନାହିଁ । ମାଗୁଛି ଶରଧା ବାଲିରୁ ହାତେ ।" ଓଡ଼ିଶାର ଦେବତା ସାର୍ବଭୌମତାର ପ୍ରତୀକ, ସାର୍ବଭୌମ ଚେତନା ଓଡ଼ିଶା ମାଟିର ପରିଚୟ, ଗୌରବ । ଓଡ଼ିଶା ମାଟିର କବି ହିଁ ସମଗ୍ର ବିଶ୍ୱପାଇଁ ନିଜକୁ

ଉତ୍ସର୍ଗ କରିଦେଇ ଗାଇପାରେ, "ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ପାଉ ।" ଜଗନ୍ନାଥ ଓଡ଼ିଆର ପ୍ରାଣ, ସେଇ ହିଁ ତା'ର ଜୀବନ, ସେଇ ହିଁ ତା'ର ଦର୍ଶନ ।

ଉପରୋକ୍ତ ଆଲୋଚନାରେ ଡଃ ନାୟକ ଓଡ଼ିଶା ମାଟିର ମହିମା, ବିଭୁବିଶ୍ୱାସ, ବିଶ୍ୱ ପ୍ରେମ ମଧ୍ୟରେ ତା'ର ଜନଜୀବନର ଏକ ସ୍ୱତନ୍ତ୍ର ଲିପି ଉଲ୍ଲେଖ କରିଛନ୍ତି ।

ବିଷୁବ ମିଳନ ଉପଲକ୍ଷେ ସାହିତ୍ୟ ସଭାରେ ଡଃ କ୍ଷେତ୍ରବାସୀ ନାୟକ 'ଆଧୁନିକ ଗଦ୍ୟ ସାହିତ୍ୟର ଧାରା' ର ବ୍ୟାପକତା ସଂପର୍କରେ ଆଲୋଚନା କରିଛନ୍ତି । 'ସୋମନାଥ ବ୍ରତକଥା', 'ମାଦଳା ପାଞ୍ଜି, 'ତୁଳାଭିଣା' ଇତ୍ୟାଦି ଗଦ୍ୟ ରଚନାର ଆଦ୍ୟ ରୂପ ହେଲେ ମଧ୍ୟ ଆଧୁନିକ ଗଦ୍ୟସାହିତ୍ୟର ସେମାନେ ପରିସରଭୁକ୍ତ ନୁହଁନ୍ତି । ଊନବିଂଶ ଶତାବ୍ଦୀରେ ଓଡ଼ିଆ ସାହିତ୍ୟ, ଜନମାନସର ଅଶିକ୍ଷା ଓ ପ୍ରକୃତିର ପ୍ରତିକୂଳ ପରିବେଶ ହେତୁ ବହୁ ସଂକଟର ସମ୍ମୁଖୀନ ହୋଇଥିଲା । ଡଃ ନାୟକଙ୍କ ମତରେ ମାନବ ଜାତିର ବିକାଶ ମୁଖ୍ୟତଃ ତିନୋଟି ବିଷୟ ଉପରେ ନିର୍ଭର କରିଥାଏ । ଆତ୍ମରକ୍ଷା, ଆତ୍ମପ୍ରକାଶ ଓ ଆତ୍ମପ୍ରସାର । ଓଡ଼ିଆ ପତ୍ରପତ୍ରିକା ଏହି କ୍ଷେତ୍ର ତ୍ରୟୀରେ ବିଶେଷ ଭୂମିକା ଗ୍ରହଣ କରିଥିଲା । ଓଡ଼ିଆ ଭାଷା ନିଜର ପରିଚୟ ପ୍ରଦାନ କରିବା ସହିତ ଓଡ଼ିଆ ଭାଷାକୁ ଲୋପ କରିଦେବାକୁ ପୟାସ କରୁଥିବା ବିରୋଧୀ ଶକ୍ତିର ମୁକାବିଲା କରିଥିଲା । ଗଦ୍ୟ, ସଂଳାପର ସହଜ ଉଚ୍ଚାରଣ ପାଇଁ ଆବଶ୍ୟକ । ସୁତରାଂ ଗଦ୍ୟସାହିତ୍ୟର ଉନ୍ମେଷ ଓ ପ୍ରସାର ମଧ୍ୟ ଅପେକ୍ଷାକୃତ ସହଜ । ଆଧୁନିକ ଯୁଗରେ ନାନାଦି କାରଣରୁ ମାନବିକ ଚିନ୍ତାଧାରା ବାସ୍ତବବାଦୀ ହୋଇପଡ଼ିବାରୁ ତା'ର ବକ୍ତବ୍ୟ ମଧ୍ୟ ସ୍ୱତଃ ଗଦ୍ୟଧର୍ମୀ ହୋଇଗଲା । ଆଲୋଚକ ଅପନ୍ନା ପଣ୍ଡାଙ୍କ ଅନୁଭବରେ, 'ପ୍ରତ୍ୟେକ ଜାତିର ଘରୁଆ କଥା ଗଦ୍ୟ । ଗଦ୍ୟ ମନୁଷ୍ୟର ସହଜ ମାର୍ଗ ।"

ଓଡ଼ିଆ ଗଦ୍ୟ ସାହିତ୍ୟର ବିକାଶ ପାଇଁ ମିଶନାରୀମାନଙ୍କର ଅବଦାନ ଅବିସ୍ମରଣୀୟ । ଉଇଲିଅମ୍ କେରୀ, ରେଭରେଣ୍ଡ ଲେସି ପ୍ରମୁଖ ନୀତିଗଳ୍ପ ମାଧ୍ୟମରେ ଓଡ଼ିଆ ଗଦ୍ୟ ସାହିତ୍ୟର ଭିତ୍ତିଭୂମି ନିର୍ମାଣ କରି ଥିଲେ ମଧ୍ୟ ପରବର୍ତ୍ତୀ କାଳରେ ଏହା ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛି । ପାଠ୍ୟ ପୁସ୍ତକ ରଚନା ଗଦ୍ୟସାହିତ୍ୟର ଭିତ୍ତିଭୂମିକୁ କ୍ରମଶଃ ସୁଦୃଢ଼ କରିଥିଲା । ପ୍ରାଥମିକ ସମୟରେ ବଙ୍ଗଳା ଓ ଇଂରେଜୀ ଭାଷାର ଅନୁବାଦ ପାଠ୍ୟକ୍ରମରେ ଗଦ୍ୟସାହିତ୍ୟ ଭାବେ ଗୃହୀତ ହେଉଥିଲା । ଫକୀରମୋହନ ସେନାପତି ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କ 'ଜୀବନଚରିତ' ୧୮୪୯ ରେ ଅନୁବାଦ କରିଥିଲେ ପରେ ମୌଳିକ ଓଡ଼ିଆ ଗଦ୍ୟ ରଚିତ ହୋଇଥିଲା ପାଠ୍ୟକ୍ରମରେ । ପାଠ୍ୟପୁସ୍ତକ ରଚନାକାରଙ୍କ ମଧ୍ୟରେ ଗୌରୀଶଙ୍କର ରାୟ, କପିଳେଶ୍ୱର ବିଦ୍ୟାଭୂଷଣ, ପ୍ୟାରୀ ମୋହନ ଆଚାର୍ଯ୍ୟ, ବିଶ୍ୱନାଥ କର ପ୍ରମୁଖ ଅଗ୍ରଗଣ୍ୟ ।

ତତ୍କାଳୀନ ପତ୍ରପତ୍ରିକାଗୁଡ଼ିକର ଭୂମିକା ଗଦ୍ୟ ସାହିତ୍ୟର ବିଭିନ୍ନ ବିଭବ ବିକଶିତ ହେବା ଦିଗରେ ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ ଥିଲା ବୋଲି କ୍ଷେତ୍ରବାସୀ ସୋଦାହରଣ ଦର୍ଶାଇଛନ୍ତି । ରାଧାନାଥଙ୍କର 'ବିବେକୀ', ମଧୁସୂଦନଙ୍କର 'ପ୍ରଣୟର ଅଦ୍ଭୁତ ପରିଣାମ', ରାମଶଙ୍କରଙ୍କର ସୌଦାମିନୀ, ବିଜୟଚନ୍ଦ୍ର ମଜୁମ୍‌ଦାରଙ୍କ 'ସାହିତ୍ୟ ଚର୍ଚ୍ଚା', 'ବିପ୍ଳବ ଓ ସମାଲୋଚନା' ପ୍ରବନ୍ଧ, ବିଶ୍ୱନାଥଙ୍କର 'ବିବିଧ ପ୍ରବନ୍ଧ' ଓ ବହୁ ସମାଲୋଚନା ଏହି ପତ୍ରପତ୍ରିକାର ଅବଦାନ କହିଲେ ଅତ୍ୟୁକ୍ତି ହେବ ନାହିଁ । ଡଃ ନାୟକ ପରବର୍ତ୍ତୀ ସମୟରେ ସ୍ୱାଧୀନୋତ୍ତର ଯୁଗରେ ଓଡ଼ିଆ ଗଦ୍ୟ ସାହିତ୍ୟର ବିଭିନ୍ନ ଦିଗ ପ୍ରତି ଆଲୋକପାତ କରିଛନ୍ତି । ଓଡ଼ିଆ ସାହିତ୍ୟର ଗଦ୍ୟସଂପଦ ଯେ ଭାରତୀୟ ଅନ୍ୟ କୌଣସି ଭାଷାଠାରୁ ନ୍ୟୂନ ନୁହେଁ ତାହା ହିଁ ଡଃ ନାୟକ ତାଙ୍କର ପୁଙ୍ଖାନୁପୁଙ୍ଖ ଆଲୋଚନା ମଧ୍ୟରେ ପ୍ରତିପାଦିତ କରିଛନ୍ତି ।

"କୌଣସି ଜାତିର ପ୍ରଜ୍ଞା କେତେ ଗଭୀର ଓ ଐଶ୍ୱର୍ଯ୍ୟମୟ ତାହାର ଆଭାସ ପ୍ରବନ୍ଧ ସାହିତ୍ୟର ସଂଚୟନରୁ ଜଣାପଡ଼େ ..." । ପ୍ରବନ୍ଧର ବୈଶିଷ୍ଟ୍ୟ ଉପଲବ୍ଧ କରିବା ପାଇଁ ଡଃ ନାୟକଙ୍କର ଏହା ହେଉଛି ସୁଚିନ୍ତିତ ମନ୍ତବ୍ୟ । ସମଗ୍ର ବିଶ୍ୱସାହିତ୍ୟର ତର୍ଜମା କଲେ ଜଣାଯାଏ ପ୍ରବନ୍ଧ, ସାହିତ୍ୟର ସବୁଠାରୁ ଶକ୍ତିଶାଳୀ ଓ ପ୍ରଭାବଶାଳୀ ବିଭାଗ । ଭଲ୍‌ଟେୟାର୍, ରୁଷୋ, କାର୍ଲମାର୍କସ୍, ଦୟାନନ୍ଦ ସରସ୍ୱତୀ, ବିନୋବା ଭାବେ ପ୍ରଭୃତି ଚିନ୍ତାନାୟକମାନେ ପ୍ରବନ୍ଧ ଜରିଆରେ ହିଁ ସମାଜରେ ବିପ୍ଳବ ସୃଷ୍ଟି କରିଛନ୍ତି, ସଂସ୍କାରର ବାର୍ତ୍ତା ବହନ କରିଛନ୍ତି । 'ଡଗର', 'ଝଙ୍କାର', 'ଶଙ୍ଖ', 'ନବଜୀବନ' ପରି ପତ୍ରିକା ସମୂହ ଅନେକ ଯୁଗାନ୍ତକାରୀ ପ୍ରବନ୍ଧର ପୃଷ୍ଠପୋଷକ । ସ୍ୱାଧୀନତା ପୂର୍ବ ସମୟର ପ୍ରାବନ୍ଧିକ ରତ୍ନାକର ପତି, ମାୟାଧର ମାନସିଂହ, ହରେକୃଷ୍ଣ ମହତାବ, କାଳିନ୍ଦୀ ଚରଣ ପାଣିଗ୍ରାହୀ ଇତ୍ୟାଦି ଓଡ଼ିଆ ପ୍ରବନ୍ଧ ସାହିତ୍ୟର ପ୍ରଭୁତ ଉନ୍ନତି ସାଧନ କରିଛନ୍ତି । ଇତିହାସର ଅନାଲୋକିତ ପୃଷ୍ଠା ଉନ୍ମୋଚନ କରିବା ଦିଗରେ ପରମାନନ୍ଦ ଆଚାର୍ଯ୍ୟ, ସୁଧାକର ପଟ୍ଟନାୟକ, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ସତ୍ୟନାରାୟଣ ରାଜଗୁରୁ, କେଦାରନାଥ ମହାପାତ୍ର, ନବୀନ ସାହୁ ପ୍ରମୁଖ ବହୁ ସାଧନା କରିଛନ୍ତି । ଶାସନ, ରାଜନୀତି ସଂପର୍କିତ ପ୍ରବନ୍ଧ ରଚନା କ୍ଷେତ୍ରରେ ଡଃ ଶ୍ରୀରାମଚନ୍ଦ୍ର ଦାଶ, ଡଃ ବୈଦ୍ୟନାଥ ମିଶ୍ର, ଡଃ ରାଧାନାଥ ରଥ ଇତ୍ୟାଦିଙ୍କ ଅବଦାନ ପ୍ରଣିଧାନଯୋଗ୍ୟ । ଡଃ କୁଞ୍ଜବିହାରୀ ଦାଶ ଓ ଡଃ ନଟବର ସାମନ୍ତରାୟ ପତ୍ରପତ୍ରିକାରେ ଜୀବନୀମୂଳକ ପ୍ରବନ୍ଧ ପ୍ରକାଶ କରି ଅନେକ କୃତବିଦ୍ୟ ପ୍ରତିଭାମାନଙ୍କୁ ଜନ ମାନସ ସହିତ ପରିଚିତ କରାଇଛନ୍ତି । ଡଃ ଭୁବନେଶ୍ୱର ବେହେରା ଓଡ଼ିଆ ପ୍ରବନ୍ଧ କ୍ଷେତ୍ରରେ ଏକ ନୂତନ ଦିଗ୍‌ଦର୍ଶନ କରିଛନ୍ତି । ବିଭିନ୍ନ ସାମାଜିକ ସମସ୍ୟାର ବିଚାର ସେ ବଡ଼ ସମ୍ବେଦନଶୀଳ ଦୃଷ୍ଟିରେ କରିଛନ୍ତି । ଚିତ୍ତରଂଜନ ଦାସଙ୍କର ମାନବବାଦ

ଭିତ୍ତିକ ପ୍ରବନ୍ଧାବଳୀର ଉଲ୍ଲେଖ ନକଲେ ପ୍ରବନ୍ଧ ସାହିତ୍ୟର ଇତିହାସ ଅଂସପୂର୍ଣ୍ଣ ରହିଯିବ । ସେ ବହୁଳ ପାଠକୀୟ ଶ୍ରଦ୍ଧା ଓ ସ୍ୱୀକୃତିର ଅଧିକାରୀ । ଏ ସବୁ ପ୍ରାବନ୍ଧିକଙ୍କ କୃତି ସମ୍ପର୍କରେ ବିଶେଷ ଆଲୋଚନା କଲାପରେ ମଧ୍ୟ ଡଃ ନାୟକ ଓଡ଼ିଆ ପ୍ରବନ୍ଧର ସାଂପ୍ରତିକ ସ୍ଥିତିରେ ସନ୍ତୁଷ୍ଟ ନୁହନ୍ତି । ସେ ପ୍ରବନ୍ଧ ସାହିତ୍ୟର ଉତ୍ତରୋତ୍ତର ଉନ୍ନତି ପାଇଁ ଆଶାୟୀ ।

ଓଡ଼ିଆ ସାହିତ୍ୟର ଗବେଷଣା ଧାରା ଓ ପ୍ରବନ୍ଧି ସମ୍ପର୍କରେ ଡକ୍ଟର ନାୟକଙ୍କ ମନ୍ତବ୍ୟ ଗୁରୁତ୍ୱପୂର୍ଣ୍ଣ । ଗବେଷଣା ସାହିତ୍ୟର ବିଧିବଦ୍ଧ ପ୍ରାରମ୍ଭ 'ପ୍ରାଚୀ ସମିତି' (୧୯୨୫) ପ୍ରତିଷ୍ଠା ବେଳରୁ କହିଲେ ଚଳେ । ତା' ପୂର୍ବରୁ ଜନ୍ ବିମ୍‌ସ, ବିଜୟ ଚନ୍ଦ୍ର ମଜୁମ୍‌ଦାର, ମନମୋହନ ଚକ୍ରବର୍ତ୍ତୀ ଇତ୍ୟାଦି ସେ ଦିଗରେ ଚେଷ୍ଟା କରିଥିଲେ ହେଁ ସଂଖ୍ୟାଦୃଷ୍ଟିରୁ ତାହା ଥିଲା ନଗଣ୍ୟ, ପଣ୍ଡିତ ଗୋପୀନାଥ ନନ୍ଦଶର୍ମା, ମୃତ୍ୟୁଞ୍ଜୟ ରଥ, କୁଳମଣି ଦାସ, ନୀଳକଣ୍ଠ ଦାସ ପ୍ରଭୃତି ଗବେଷଣା କ୍ଷେତ୍ରରେ ଏକ ନୂତନ ମାର୍ଗ ଉନ୍ମୋଚନ କରିଥିଲେ । ସାହିତ୍ୟ, ଧର୍ମ, ଦର୍ଶନ, ଇତିହାସ - ସବୁ ବିଷୟରେ ସେମାନଙ୍କର ଅନୁସନ୍ଧିତ୍ସା ଓ ଅନୁଶୀଳନ ପ୍ରବନ୍ଧ ସାହିତ୍ୟକୁ ଋଦ୍ଧିମନ୍ତ କରିଥିଲା । ନୀଳକଣ୍ଠ 'ଓଡ଼ିଆ ସାହିତ୍ୟର କ୍ରମପରିମାଣ' ରେ ଏକ ଭିନ୍ନ ଦୃଷ୍ଟିକୋଣର ପରିଚୟ ଦେଇଥିଲେ ମଧ୍ୟ ସ୍ଥଳବିଶେଷରେ ନିରପେକ୍ଷ ହୋଇପାରି ନାହାଁନ୍ତି । କବି ଜୀବନୀ ଗବେଷଣା କ୍ଷେତ୍ରରେ ସନନ୍ଦ, ଶିଳାଲେଖ, ଦଲିଲ୍ ଇତ୍ୟାଦିର ପ୍ରମାଣ ଅପେକ୍ଷା ଅନୁମାନ ଉପରେ ଗବେଷକମାନେ ବେଶୀ ନିର୍ଭର କରିଥିବାରୁ ପ୍ରକୃତ ସତ୍ୟାନୁଭିତ୍ତିକ ତଥ୍ୟ ମିଳିବାରେ ବାଧା ଉପୁଜିଛି । ସ୍ୱାଧୀନତା ପରବର୍ତ୍ତୀ କାଳରେ ଗବେଷଣାର ପରିସର ପ୍ରଶସ୍ତ ହୋଇଛି ସତ, କିନ୍ତୁ ଅଧିକାଂଶ ଗବେଷକଙ୍କର ପ୍ରଧାନ ଉଦ୍ଦେଶ୍ୟମୂଳକ ଭାବେ ଡିଗ୍ରୀ ଅଭିମୁଖୀ ହୋଇଛି । ସାହିତ୍ୟ ଗବେଷଣାରେ ଅନ୍ୟ ଏକ ଦୋଷ ସାଧାରଣତଃ ବିଚାରକୁ ନିଆଯାଉ ନାହିଁ । ତାହା ହେଲା ସାହିତ୍ୟ ନାମରେ ଅନ୍ୟ ବିଷୟରେ ଗବେଷଣା କରିବା, କୃଷ୍ଣ ସାହିତ୍ୟ, ତତ୍ତ୍ୱ ସାହିତ୍ୟ, ଯୋଗ ସାହିତ୍ୟ, ଜଗନ୍ନାଥ ସାହିତ୍ୟ ଇତ୍ୟାଦି ଦର୍ଶନ ଶାସ୍ତ୍ର ଅଧାନରେ ପର୍ଯ୍ୟବେକ୍ଷଣ କରାଯିବା ବାଞ୍ଛନୀୟ । ଡଃ ନାୟକଙ୍କ ମତରେ," ସାହିତ୍ୟ ଶବ୍ଦଟିର ମର୍ମ ଓ ପରିସର ଯୁକ୍ତିଯୁକ୍ତ ଭାବେ ବିବେଚନା କରାଗଲେ ଏପରି ଭ୍ରାନ୍ତି ଦେଖାଯାଆନ୍ତା ନାହିଁ । "ଗବେଷଣା କ୍ଷେତ୍ରରେ ଅନ୍ୟ ଏକ ସମସ୍ୟା ପ୍ରତି ଆଲୋଚକ ଦୃଷ୍ଟି ଆକର୍ଷଣ କରିଛନ୍ତି । ଓଡ଼ିଆ ସାହିତ୍ୟର ଗବେଷକମାନେ ଦେଶ ବିଦେଶର ଗବେଷଣା ପଦ୍ଧତି ବିଷୟରେ ଅବଗତ ହେବା ଆବଶ୍ୟକ । ସାହିତ୍ୟର ପରିସର ପ୍ରସାରିତ ହେବା ସହିତ ସାହିତ୍ୟର ମୂଲ୍ୟବୋଧ ଅନ୍ୱେଷଣସାପେକ୍ଷ ।

ଡଃ କ୍ଷେତ୍ରବାସୀ ନାୟକଙ୍କର ଅଭିଭାଷଣଗୁଡ଼ିକ ଅନୁଧ୍ୟାନ କଲେ ତାଙ୍କର ଅନନ୍ୟ ସାଧାରଣ ସାରସ୍ୱତ ପ୍ରତିଭାର ପରିଚୟ ମିଳେ । ଓଡ଼ିଶାର ଏକ ପ୍ରାନ୍ତରୁ ଅନ୍ୟପ୍ରାନ୍ତ ଯାଏ ଶ୍ରୋତୃବର୍ଗ ତାଙ୍କର ଜ୍ଞାନଗର୍ଭକ ଭାଷଣରେ ଅଭିଭୂତ ହୋଇଥିଲେ । ଭାଷଣରେ ବୌଦ୍ଧିକତା ସହ କଥିତ ଭାଷାର ମିଶ୍ରଣ ଯୋଗୁ ସେ ଶ୍ରୋତୃମଣ୍ଡଳୀର ନିକଟତର ହୋଇ ପାରିଥିଲେ । ଅନିଷା, କତିରେ, ଇଲାକା, ଆଟୋପ, ଜରିଆରେ, ମିହନ୍ତ, ତନଖି ଇତ୍ୟାଦି ଶବ୍ଦର ସେ ଯଥାଯୋଗ୍ୟ ବ୍ୟବହାର କରିଥିଲେ । ଭାଷଣ ଦେବା ଅବସରରେ ବାରମ୍ବାର 'ବନ୍ଧୁଗଣ' ସମ୍ବୋଧନ କରିବା ଦ୍ୱାରା ସେ ଶ୍ରୋତାମାନଙ୍କର ନିକଟତର ହେବା ସହିତ ଆଲୋଚ୍ୟ ବିଷୟବସ୍ତୁ ପ୍ରତି ସେମାନଙ୍କର ଧ୍ୟାନ ଆକର୍ଷଣ କରିଛନ୍ତି । ବୟୋଜ୍ୟେଷ୍ଠ ବ୍ୟକ୍ତିମାନଙ୍କୁ ସମ୍ମାନ ପ୍ରଦର୍ଶନ କଲେ ମଧ୍ୟ ସେମାନଙ୍କର ଦୋଷ ଦୁର୍ବଳତା ପ୍ରଦର୍ଶନ କରିବାକୁ ସେ କୁଣ୍ଠାବୋଧ କରୁ ନଥିଲେ । 'ଓଡ଼ିଆ ସାହିତ୍ୟ ଗବେଷଣାର ନୂତନ ଆଭିମୁଖ୍ୟ' ବିଷୟରେ ଆଲୋଚନା କଲାବେଳେ ନୀଳକଣ୍ଠ ତାଙ୍କ ସାହିତ୍ୟ ଚର୍ଚ୍ଚାରେ ନିରପେକ୍ଷ ହୋଇପାରିନାହାନ୍ତି ବୋଲି ସେ ଉଲ୍ଲେଖ କରିଛନ୍ତି । ବିଶିଷ୍ଟ ଗବେଷକ ଆର୍ତ୍ତବଲ୍ଲଭ ମହାନ୍ତି, ତାରିଣୀ ଚରଣ ଦାସ, ଶ୍ୟାମସୁନ୍ଦର ରାଜଗୁରୁ ପ୍ରମୁଖ ଶିଳାଲେଖ, ସନନ୍ଦ, ଦଲିଲ ଇତ୍ୟାଦି ବ୍ୟବହାର କରିବା ପରିବର୍ତ୍ତେ ଅନୁମାନ ଉପରେ ଅଧିକ ନିର୍ଭର କରିଛନ୍ତି ବୋଲି ଦୋଷାରୋପ କରିଛନ୍ତି ।

ଡଃ ନାୟକ ଜଗନ୍ନାଥପ୍ରାଣ ପରମ ଭକ୍ତ । ଘରେ ତାଙ୍କର ଜଗନ୍ନାଥ ବିଗ୍ରହ ପ୍ରତିଷ୍ଠିତ । ତାଙ୍କ ଅଭିଭାଷଣ ସଙ୍କଳିତ ପୁସ୍ତକ ଦୁଇଟି ଭକ୍ତିପୂତ ନୈବେଦ୍ୟ ଭାବରେ ଜଗନ୍ନାଥଙ୍କ ଶ୍ରୀ ଚରଣରେ ଅର୍ପିତ । ଉକ୍ତ ଉପାଦେୟ ପୁସ୍ତକଦ୍ୱୟର ପୁନର୍ମୁଦ୍ରଣ ନ ହେବା ଅତ୍ୟନ୍ତ ପରିତାପର ବିଷୟ । ସମସ୍ତ ସାହିତ୍ୟପ୍ରେମୀ, ଶିକ୍ଷାବିତ୍, ପ୍ରକାଶନ ସଂସ୍ଥା, ସର୍ବୋପରି ଡଃ ନାୟକଙ୍କର ପରିଚୟ ପରିସରଭୁକ୍ତ ସମସ୍ତ ବ୍ୟକ୍ତିଙ୍କର ଏ ଦିଗରେ ଗୁରୁ ଦାୟିତ୍ୱ ରହିଛି ।

ଓଡ଼ିଆ ସାହିତ୍ୟ ଜଗତର ଦୁର୍ଭାଗ୍ୟ, ଅବେଳରେ ଏକ ଉଜ୍ଜ୍ୱଳ ନକ୍ଷତ୍ର ସାହିତ୍ୟାକାଶରୁ ଖସି ପଡ଼ିଲା । ଓଡ଼ିଆ ସାହିତ୍ୟ ବନ୍ଧୁ ବହୁମୁଖୀ ଜ୍ଞାନସମ୍ଭୂତ ଜ୍ୟୋତିରୁ ବଞ୍ଚିତ ହେଲା ।



# ସଂପାଦକ କ୍ଷେତ୍ରବାସୀ

ଶ୍ରୀ ସୁଧୀରଚନ୍ଦ୍ର ବେହୁରା

**ସଂ**ପଦ ଅର୍ଜିବା ଓ ସଂପାଦିବା ଉଭୟ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । ସଂପାଦିବା ଲୋଡ଼ା ପଡ଼େ ସମକାଳକୁ ସମ୍ଭାରିବା ପାଇଁ ଓ ଆଗାମୀ କାଳକୁ ସାଇତିବା ପାଇଁ । ଆପେ ସଂପଦର ମହତ୍ତ୍ୱ ବୁଝି ନ ଥିଲେ, ଆପଣା ସ୍ୱାର୍ଥୀ ହୋଇଥିଲେ, ସଂପାଦିବା ଦୂର କଥା, ବିନର୍ବ୍ୟୟ ବା ଅପବ୍ୟୟର ସମ୍ଭାବନା ଅଧିକ । ସଂସାରର ସକଳ ପାର୍ଥିବ ସଂପଦ ପକ୍ଷରେ ଯାହା ସତ୍ୟ; ଭାବ ସଂପଦ କ୍ଷେତ୍ରରେ ସେଇ ଏକା କଥା । ସାହିତ୍ୟ ତହିଁରୁ ବାଦ୍‌ଯା'ନ୍ତା କିପରି ?

ସଂପାଦକ ଆପଣାର ସମକାଳ ଓ ଆଗାମୀ କାଳର ସାହିତ୍ୟ-ସତୀର୍ଥମାନଙ୍କ ପାଇଁ ସାଇତି ଯା'ନ୍ତି ସତ୍‌-ସାହିତ୍ୟର ମଣିମୁକ୍ତା ସ୍ୱସଂପାଦିତ ଗ୍ରନ୍ଥ ମାଧ୍ୟମରେ । ସୃଷ୍ଟିଶୀଳ, ସମୀକ୍ଷକ, ଶ୍ରଦ୍ଧାଯୁକ୍ତ ଚିହ୍ନରା ଗ୍ରାହକ ହୋଇ ସ୍ୱାର୍ଥତ୍ୟାଗୀ, ସ୍ନେହପ୍ରବଣ, ସାହିତ୍ୟପ୍ରାଣ 'ସାରସ୍ୱତ-ମଧ୍ୟସ୍ଥି' ର କାର୍ଯ୍ୟ ନିର୍ବାହର ସୁଯୋଗ ପ୍ରତି ଯୁଗରେ ଅଳ୍ପ କେତେ ଜଣଙ୍କ ଭାଗ୍ୟରେ ଜୁଟେ । ମଧ୍ୟସ୍ଥିର ଯେତେ ଅବିଗୁଣ ଥିଲେ ବି ତାହା ଯେ ଲେଖକୀୟ ଓ ପାଠକୀୟ ରୁଚି ସଂଘର୍ଷର ଶାନ୍ତିପୂର୍ଣ୍ଣ ସମାଧାନ କ୍ଷେତ୍ରରେ ଏକାନ୍ତ ଅପରିହାର୍ଯ୍ୟ ଭୂମିକା ଗ୍ରହଣ କରେ, ଏହା ଅସ୍ୱୀକାର କରାଯାଇ ନ ପାରେ । ପଦେ ପଦେ ଅପଯଶ ଅର୍ଜିବାର ସମ୍ଭାବନାକୁ ସାଦରେ ଗ୍ରହଣ କରି, ତୀକ୍ଷ୍ଣ ଅସିଧାରେ ପଦ ଚାଳି, ବଡ଼ କଠିନ ସେ ସାହିତ୍ୟ-ପ୍ରୀତି ପାଳିବା ।

ଏବେ କିନ୍ତୁ ସଂପାଦନା କ୍ଷେତ୍ରରେ ଦୁର୍ଗତିର ମାତ୍ରା ଅଧିକ । ସିପାହୀ ପାଇଁ ଅଯୋଗ୍ୟ ହେଲେ, ସେନାପତି ହେବାକୁ ମନ ବଳେଇବା ଯେଉଁ ଯୁଗର ଆଭିମୁଖ୍ୟ ହୋଇଛି, ସେଠାରେ ଦେଖା ଯାଉଛି ସଂଗଠନ, ସାହିତ୍ୟର ଧାର୍‌ଧାରୁ ନ ଥିବା ବ୍ୟକ୍ତିମାନେ ସମସ୍ତ ରୁଚିକୁ ଜଳାଞ୍ଜଳି ଦେଇ, ମୂଲ୍ୟବୋଧ ପ୍ରତି ଅଶ୍ରଦ୍ଧା ଜ୍ଞାପନ କରି, ନାଁ ନେବାକୁ ବ୍ୟାକୁଳ ହୋଇ ସଂପାଦକ ବୋଲାଉଛନ୍ତି । ସତ୍ ସଂକଳକର ସାମର୍ଥ୍ୟ ନ ଥାଇ, ସର୍ଜନାକାରୀର ଅପମାନ ଓ ଅସମ୍ମାନ କରିବା ପାଇଁ ସତେ ଯେମିତି ପଣ କରି, ବଢ଼ ଅଶ୍ରଦ୍ଧାର ସହ ବେଉସା କରୁଛନ୍ତି । ଫଳରେ ସାହିତ୍ୟ-ସଂପଦର ଅର୍ଜନ, ଅଥବା ସଂପାଦନା, କୌଣସିଟିର ଉପକାର ସାଧିତ ହୋଇପାରୁ ନାହିଁ । ଏହିଭଳି ନୈରାଶ୍ୟଜନକ ଚିତ୍ରରେ ମ୍ରିୟମାଣ ହୋଇ ନିସ୍ତାର ଲୋଡ଼ିଲେ ମନଶ୍ଚକ୍ଷୁରେ ଦିଶିଯାଏ କୃତସଂକଳ୍ପ ବିଶ୍ୱନାଥ, ନୀଳମଣି, ମାୟାଧର, ବାଳକୃଷ୍ଣ ପ୍ରମୁଖଙ୍କ ଆଶ୍ୱାସଦାୟୀ ବରାଭୟ ମୁଦ୍ରା । ସେହି ଧାଡ଼ିରେ ବସିବାର ଶ୍ରଦ୍ଧା, ସାମର୍ଥ୍ୟ ଥିବା ଆଉ ଜଣକର ମୁହଁ ମନ ଦର୍ପଣରେ ମୁଦ୍ରିତ ହୋଇଯାଏ,

ଦଣ୍ଡେ ମାତ୍ର ମୁଦ୍ରିତ ନୟନରେ ସ୍ମରଣ କଲେ । ସେ ଏବେ ଆମକୁ ଛାଡ଼ି ଚାଲିଯାଇଛନ୍ତି; ତାଙ୍କ ସ୍ମୃତି ଉଜ୍ଜ୍ୱଳତର । 'ଦୂର ପାହାଡ଼' ହୋଇ ନାହାନ୍ତି ସେ, ତେଣୁ ସବୁ ସୁନ୍ଦର ଦିଶିବାର ଅବକାଶ ନାହିଁ । ତାଙ୍କ ସାମର୍ଥ୍ୟର ପାହାଡ଼ ମୁଁ ନିକଟରୁ ଦେଖିଛି, ତହିଁରେ କେତେ କଣ୍ଟା ....... କେତେ ଝଣ୍ଟା, ତାହା କଳିବା କେତେ କଷ୍ଟସାଧ୍ୟ, ତାର ପଥ କେତେ କଙ୍କରିଳ.... ତଥାପି ଲକ୍ଷ୍ୟ ଥିଲା ତା'ର ଆକାଶ- ଆଲିଙ୍ଗନ । ଉଦ୍ୟମର ଉପାୟନ ପିନ୍ଧି, ନିଷ୍ଠାର ଉପବୀତ ଧାରଣା କରିବାରେ ତାଙ୍କର ଦ୍ୱିଜତ୍ୱ ନିହିତ । ସେହି ସାହିତ୍ୟର ସଦ୍‌ବିପ୍ର ସଂପାଦକ କ୍ଷେତ୍ରବାସୀ ...... ଡକ୍ଟର କ୍ଷେତ୍ରବାସୀ ନାୟକ ।

ସ୍ୱର୍ଗତ କ୍ଷେତ୍ରବାସୀଙ୍କ ସବ୍ୟସାଚିତା ସର୍ଜନା ଓ ସଂଗଠନରେ ପ୍ରକାଶିତ । ଆପଣା ଲେଖନୀ ଓ ଅପର ଲେଖନୀର ଆରାଧନା ସତେ ଯେପରି ତାଙ୍କ ଜୀବନର ବ୍ରତ ଥିଲା । ସାହିତ୍ୟିକ ଜୀବନରେ ହେତୁ ପାଇଲା ଦିନୁ ଜୀବନାବସାନ ପର୍ଯ୍ୟନ୍ତ ସେ ଉଭୟ କର୍ମରେ ନିମଗ୍ନ ଥିଲେ । ସେଥିପାଇଁ ସେ ମନୋବୃତ୍ତି ଅନୁକୂଳ ଅଧ୍ୟାପନା ବୃତ୍ତି ବରିଥିଲେ । ସାହିତ୍ୟ-ସେବା ଓ ସାହିତ୍ୟିକ ସାନ୍ନିଧ୍ୟକୁ ଜୀବନର ଅପବର୍ଗ ମଣିଥିଲେ । ବୋଧହୁଏ ସେହି ହେତୁ ସେ ଏକକ ସମ୍ପାଦନାଠାରୁ ମିଳିତ ସମ୍ପାଦନା ସହ ଅଧିକ ସଂପୃକ୍ତ ହୋଇଥିଲେ । ସାହିତ୍ୟର ସକଳ ବିଭାଗରେ ସେ ଆପଣାର ଶ୍ରଦ୍ଧା ସଂଯୁକ୍ତ କରିଥିଲେ । ତାହାର ଫଳଶ୍ରୁତି ସ୍ୱରୂପ ଗଳ୍ପ, କବିତା, କାବ୍ୟ, ପ୍ରବନ୍ଧ, ସମାଲୋଚନା ଆଦିର ପୁସ୍ତକ ଓ ପତ୍ରିକାକାରରେ ସମ୍ପାଦନାରେ ମନୋନିବେଶ କରିଥିଲେ । ସେହି ସମ୍ପାଦିତ କୃତିସମୂହର କାଳାନୁକ୍ରମିକ ସଂକ୍ଷିପ୍ତ ସୂଚନା ନିମ୍ନରେ ପ୍ରଦତ୍ତ ହେଲା ।

**'କଳିକା' ଓ 'ଛାତ୍ର ମଞ୍ଜୁଷା' (୧୯୫୪) :**

କ୍ଷେତ୍ରବାସୀଙ୍କ ସମ୍ପାଦନା କର୍ମର ଖଡ଼ିଛୁଆଁ ହୁଏ ଏହି ପତ୍ରିକା ଦୁଇଟି ମାଧ୍ୟମରେ । ପଞ୍ଚମ ଦଶକର ଆଦ୍ୟ ପାଦରେ ଭଦ୍ରକ ହାଇସ୍କୁଲର ଛାତ୍ର ଥିବା ସମୟରେ ସାହିତ୍ୟ ଶିକ୍ଷକଙ୍କ ପ୍ରେରଣାରୁ ଏହି ଦୁଇଟି ପତ୍ରିକାର ସମ୍ପାଦକ ଦାୟିତ୍ୱ ନିଅନ୍ତି ସେ । ଶିକ୍ଷକଙ୍କ ସଂଶୋଧନ ଏବଂ ନିର୍ବାଚନ ପରେ ଗୋଲ୍ ଅକ୍ଷରରେ ଉତାରି ଅଥବା ସହପାଠୀଙ୍କ ଦ୍ୱାରା ଉତରାଇ ବାଣ୍ଟିବା ଓ ଲେଖା ସଂଗ୍ରହ ଦାୟିତ୍ୱ ମଧ୍ୟରେ ଏହା ଥିଲା ସୀମିତ । ଭଲ ମନ୍ଦ ବିଚାରିବା ପାଇଁ ଅଧୁନା ଏହି ପତ୍ରିକାଦ୍ୱୟ ଦୁଷ୍ପ୍ରାପ୍ୟ । କେବଳ ଏଥି ସମ୍ପର୍କରେ ସୂଚନା ମିଳେ ୧୯୬୩ ମସିହାରେ ପ୍ରକାଶିତ ଭଦ୍ରକ ଲେଖକ ସମ୍ମେଳନ ସ୍ମରଣିକାରୁ ।

**ରଶ୍ମି (୧୯୬୯) :**

କଲେଜ ଛାତ୍ର ଜୀବନରେ କ୍ଷେତ୍ରବାସୀ ଉତ୍କଳ ଛାତ୍ର ୟୁନିୟନ୍‌ର ମୁଖପତ୍ର 'ରଶ୍ମି' ର ସମ୍ପାଦନା ସହ ସଂପୃକ୍ତ ଥିଲେ । ଏହା ପ୍ରଥମେ ଭଦ୍ରକରୁ ପ୍ରକାଶ ପାଉଥିଲା ଓ

ପରେ କଟକରୁ ପ୍ରକାଶିତ ହେଲା । ଭଦ୍ରକର ତତ୍କାଳୀନ କଲେଜ ଛାତ୍ର ଏବଂ ପରବର୍ତ୍ତୀ ସମୟର ରାଜସ୍ୱ ମନ୍ତ୍ରୀ ଶ୍ରୀ ଯୁଗଳକିଶୋର ପଟ୍ଟନାୟକ ସେତେବେଳେ ଏଥି ସହିତ ଘନିଷ୍ଠ ଭାବରେ ସଂଯୁକ୍ତ ଥିଲେ । ପରେ ସର୍ବଶ୍ରୀ ଅକ୍ଷୟ ପଣ୍ଡା, ରମେଶ ଧଳ, ସରୋଜ ରଞ୍ଜନ ମହାନ୍ତି ପ୍ରମୁଖ ଏଥିସହ ଯୋଗଦେଲେ । ଯୁବମାନସର ଚିନ୍ତା ଚେତନାର ପ୍ରକାଶ ମାଧ୍ୟମ ଏବଂ ବହୁ ତରୁଣ କଲେଜ ଛାତ୍ରଙ୍କର ପ୍ରେରଣାର ଉତ୍ସରୂପେ କାର୍ଯ୍ୟ କରିଥିବା ଏହି ପତ୍ରିକା ଛାତ୍ର-ରାଜନୀତିର ଗଠନାତ୍ମକ ଦିଗରେ ଉଜ୍ଜ୍ୱଳ ନିଦର୍ଶନ ଭାବରେ ସ୍ୱୀକୃତ ।

**ଶତରୂପା (୧୯୬୪) :**

ଭଦ୍ରକରୁ ପ୍ରକାଶିତ ଏହି ତ୍ରୈମାସିକ ପତ୍ରିକାଟି କ୍ଷେତ୍ରବାସୀଙ୍କ ସମ୍ପାଦକ ଜୀବନର ଏକ ସ୍ମରଣୀୟ ସଂଯୋଜନ । ଏହାର ମାତ୍ର ଚାରୋଟି ସଂଖ୍ୟା ପ୍ରକାଶ ପାଇଥିଲା । ପ୍ରତି ସଂଖ୍ୟା ମିଳିତ ସଂପାଦନାରେ ପ୍ରସ୍ତୁତ ହେଉଥିଲା । ଏହାର ସଂପାଦନା-ମଣ୍ଡଳୀରେ ଥିଲେ ଅଧ୍ୟାପକ ନବକିଶୋର ମହାନ୍ତି, ଅଧ୍ୟାପକ ରାମଚନ୍ଦ୍ର ରାଉତ ଓ ଅଧ୍ୟାପକ କ୍ଷେତ୍ରବାସୀ ନାୟକ । ଅଧ୍ୟାପକ ମହାନ୍ତି ପ୍ରବନ୍ଧ-ସମାଲୋଚନା ବିଭାଗ, ଅଧ୍ୟାପକ ରାଉତ କାବ୍ୟ କବିତା ଓ ଅଧ୍ୟାପକ ନାୟକ କାହାଣୀ-ଏକାଙ୍କିକା ବିଭାଗର ସଂପାଦନା ଦାୟିତ୍ୱରେ ଥିଲେ । ପ୍ରଥମ ସଂଖ୍ୟା ସଂପାଦନାରୁ କ୍ଷେତ୍ରବାସୀଙ୍କର ଅକୁତୋଭୟ ସଂପାଦକତ୍ୱର ସୂଚନା ମିଳେ । ତତ୍କାଳୀନ ସାହିତ୍ୟିକ ବାତାବରଣକୁ ସରଗରମ କରିଥିବା ଡକ୍ଟର କୃଷ୍ଣ ଚରଣ ବେହେରାଙ୍କ 'ଦେବୀ' ଗଳ୍ପ ଏଥିରେ ପ୍ରକାଶ କରିବାର ସାହସ କରିପାରିଥିଲେ କ୍ଷେତ୍ରବାସୀ ।

**ପ୍ରବନ୍ଧ ଓ ପ୍ରାବନ୍ଧିକ (୧୯୬୮) :**

କ୍ଷେତ୍ରବାସୀ ଓ ତାଙ୍କର ସହଧର୍ମିଣୀ ଶ୍ରୀମତୀ ଲାବଣ୍ୟ ନାୟକଙ୍କ ମିଳିତ ସଂପାଦନାରେ ଏହି ପ୍ରବନ୍ଧ ସଂକଳନଟି ପ୍ରକାଶିତ । ଐତିହାସିକ କ୍ରମ ରକ୍ଷା କରି ଉତ୍କୃଷ୍ଟ ପ୍ରବନ୍ଧର ସମୃଦ୍ଧ ସଂକଳନ ଏବଂ 'ପ୍ରବନ୍ଧ-କଳା ଏକ ପରିଚୟ' ଶୀର୍ଷକ ଉପୋଦ୍‌ଘାତ ଏହି ଗ୍ରନ୍ଥର ବୈଶିଷ୍ଟ୍ୟ । ପ୍ରବନ୍ଧସମୂହର ବିଷୟ ବୈଚିତ୍ର୍ୟ ଓ ବିନ୍ୟାସ ବିଭିନ୍ନତା ଓଡ଼ିଆ ପ୍ରବନ୍ଧ ସାହିତ୍ୟର ବିକାଶ ଧାରାର ସ୍ପଷ୍ଟ ସୂଚନା ଦେଇ ପାରନ୍ତି । ଏହା ବିଶ୍ୱବିଦ୍ୟାଳୟର ସ୍ନାତକ ସ୍ତରରେ ପାଠ୍ୟ ପୁସ୍ତକ ହେବାର ସୁଯୋଗ ଲାଭ କରିଥିଲା । କେବଳ ପାଠ୍ୟ ପୁସ୍ତକ ହେଲା ବୋଲି ନୁହେଁ, ନାନ୍ଦନିକ ଦୃଷ୍ଟିଭଙ୍ଗୀ ନେଇ କୃତି-ଚୟନ ଓ କୃତିତ୍ୱ-କଳନା ପ୍ରୟାସ ଏହି ସଂକଳନଟିକୁ ମର୍ଯ୍ୟାଦାବନ୍ତ କରିଛି ।

**ପୋଷ୍ଟର୍ କବିତା (୧୯୭୦) :**

କିଛି ନୂଆ କରିବାର ଚିନ୍ତା, ଭିନ୍ନ ଭାବରେ କରିବାର ଧାରା ସଦାସର୍ବଦା କ୍ଷେତ୍ରବାସୀଙ୍କୁ ଆଛନ୍ନ କରିଥିଲା । ସମାଜରେ ରୁଚିହୀନତାର ପ୍ରବଳ ଜୁଆର ମାଡ଼ି ଚାଲିଥିବାବେଳେ ସଂପୂର୍ଣ୍ଣ ଭଟା ପକାଇ ନ ପାରିଲେ ବି ପ୍ରତିରୋଧ କରିବାର ଉଦ୍ୟମର ଫଳଶ୍ରୁତି ଥିଲା ପୋଷ୍ଟର କବିତା ପତ୍ରିକା । ବଲାଙ୍ଗୀରର 'ଆତ୍ମ ପ୍ରକାଶନୀ' ଆନୁକୂଲ୍ୟରେ ଏହା ପ୍ରକାଶ ପାଏ ୧୯୭୦ମସିହା ନଭେମ୍ବର ୯ ତାରିଖ ସନ୍ଧ୍ୟାରେ । ପ୍ରଥମ ପ୍ରକାଶର ସ୍ମୃତିଚାରଣ କରି ଡଃ ନାୟକ କହନ୍ତି "ସେଇଠୁ (ବଲାଙ୍ଗୀରରୁ) ପୁଣି ଜନ୍ମନେଲା ଆଉ ଏକ ନୂଆ ପରୀକ୍ଷାର ଯୋଜନା ମୋର ସରକାରୀ ବସାଘରେ । ସେଦିନ (୯-୧୧-୧୯୭୦) ଆମେ ବସି ଆଳାପ କରୁଥାଉଁ - ରତ୍ନାକର ଚଇନି, ସତନ ଦାସପଟ୍ଟନାୟକ ଆଉ ମୁଁ । ଆକସ୍ମିକ ଭାବେ ଇଚ୍ଛା ହେଲା ପୋଷ୍ଟର କବିତା କରି ଚାରିଆଡ଼େ ମାରି ଦିଆଯିବ । ଖବର ଗଲା; ଆପଣ (ଶ୍ରୀ ଶ୍ରୀନିବାସ ଉଦ୍‌ଗାତା) ତତ୍‌କ୍ଷଣାତ୍ ବାରଣ୍ଡାରୁ ଯେଉଁ କବିତାଟି ଲେଖିଲେ ତାକୁ ପଠାଇଲେ, ରାସ୍ତାରେ ଭେଟିଲୁ ପ୍ରସନ୍ନ ମିଶ୍ରଙ୍କୁ, ପାନ ଦୋକାନରେ ପାନ କିଣୁ ଥାଉଁ - ସେ କବିତା ଭାବୁଥା'ନ୍ତି କି ଲେଖୁଥା'ନ୍ତି କେଜାଣି ? ତାଙ୍କ କବିତା ଆସିଲା - ଆମେ ହେଲୁ ପାଞ୍ଚଜଣ, ଆମରି କବିତା ସେଇଦିନ ଛାପା ହୋଇ ବାହାରିଲା; ସନ୍ଧ୍ୟାବେଳକୁ ତା'ର ଉଦ୍‌ଘାଟନ ଉତ୍ସବ ହେଲା ମୋ' ବସାରେ; କବି ଚିନ୍ତାମଣି ବେହେରା ଓଡ଼ିଶାର ସର୍ବପ୍ରଥମ ପୋଷ୍ଟର କବିତା ଆନ୍ଦୋଳନକୁ ଉଦ୍‌ଘାଟନ କରି ଗଛରେ କବିତାର ଛାପା ଫର୍ଦ୍ଦଟିଏ ଛାପିଦେଲେ ।'*

ପ୍ରଥମ ସଂଖ୍ୟାରେ ରତ୍ନାକର ଚଇନିଙ୍କ 'ସମ୍ବାଦ', ପ୍ରସନ୍ନ କୁମାର ମିଶ୍ରଙ୍କ 'ମ୍ୟୁଜିୟମ୍ ପାଇଁ କେତୋଟି ଛବି' ଶ୍ରୀନିବାସ ଉଦ୍‌ଗାତାଙ୍କ 'ପ୍ରତିଛବି', କ୍ଷେତ୍ରବାସୀ ନାୟକଙ୍କ 'ଶୋଷ' ଓ ସନତ୍' ଦାସ ପଟ୍ଟନାୟକଙ୍କ 'ଶୀତ' କବିତା ପ୍ରକାଶ ପାଇଥିଲା । ସମ୍ପାଦକଙ୍କ ବକ୍ତବ୍ୟ ଥିଲା ଏହିପରି 'ପ୍ରାଚୀର ଦେହରେ ଅନେକ ବିକଳାଙ୍ଗ ପୋଷ୍ଟର । ମନ ଖୋଜେ ତା' ମନଲାଖି ଗୋଟିଏ । ନିରାଶ ହୁଏ । ଅସହାୟ ଭାବେ ହୁଇସିଲ୍ ମାରି ଚାଲିଯାଏ । ଅଥଚ ସେ ଆଜି ପଛକୁ ଚାହୁଁଚି । ହଁ-କରି ଠିଆ ହୋଇଚି । ଏ ଯେ ତା'ର ମନ ପୋଷ୍ଟର !....... ପୋଷ୍ଟର କବିତା ।' ଏହାର ପ୍ରାୟ ତିନୋଟି ସଂଖ୍ୟା ପ୍ରକାଶ ପାଇବା ପରେ ପତ୍ରିକା ପ୍ରକାଶନ ବନ୍ଦ ରହେ ।

---

* ସ୍ମୃତି ଚିଟାଉ', ବଲାଙ୍ଗିର ଜିଲ୍ଲା ଲେଖକ ସମ୍ମିଳନୀ ୧୯୭୬ ସ୍ମରଣିକା ପୃ.୧୨

**ପ୍ରବନ୍ଧ-ବିଚିତ୍ରା (୧୯୭୨) :**

ଶ୍ରୀମତୀ ନାୟକଙ୍କ ସହ ମିଳିତ ଭାବରେ 'ପ୍ରତିଭାଚର୍ଚ୍ଚା ଓ ସ୍ମରଣ' ର ମହତ ଉଦ୍ଦେଶ୍ୟ ରଖି ଓଡ଼ିଆ ପ୍ରବନ୍ଧ ସାହିତ୍ୟର ସୃଷ୍ଟି ସମ୍ଭାର ଓ ତାହାର ବରେଣ୍ୟ ସ୍ରଷ୍ଟାମାନଙ୍କର ଦୃଷ୍ଟିଭଙ୍ଗୀ ସହିତ ଆଗାମୀ ବଂଶଧରମାନଙ୍କୁ ପରିଚିତ କରିବାର ଲକ୍ଷ୍ୟରେ ଏହି ସଂକଳନର ସଂପାଦନା କରାଯାଇଥିଲା । 'ପ୍ରବନ୍ଧ ଓ ପ୍ରାବନ୍ଧିକ' ପରି ଏହି ସଂକଳନ ବିଶ୍ୱବିଦ୍ୟାଳୟର ପାଠ୍ୟପୁସ୍ତକ ରୂପେ ନିର୍ବାଚିତ ହୋଇଥିଲା ।

**ସାଂପ୍ରତିକ ଓଡ଼ିଆ ସାହିତ୍ୟ ସମ୍ପର୍କରେ (୧୯୭୩) :**

'ଆତ୍ମପ୍ରକାଶନୀ' ତରଫରୁ ୧୯୬୯ ଫେବୃୟାରୀରେ ଓଡ଼ିଆ ଯୁବ ଲେଖକ ସମ୍ମେଳନର ପଞ୍ଚମ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ତହିଁରେ ବହୁ ଆଲୋଚକ ସାଂପ୍ରତିକ ସାହିତ୍ୟ ସଂପର୍କରେ ଲିଖିତ ଭାଷଣ ପ୍ରଦାନ କରିଥିଲେ । ସେସବୁକୁ ସ୍ଥାୟୀ ପୁସ୍ତକ ରୂପ ପ୍ରଦାନ କରିବା ପାଇଁ ସମ୍ମେଳନର ଅଭ୍ୟର୍ଥନା ସମିତିର ସାଧାରଣ ସଂପାଦକ ଶ୍ରୀ ନାୟକ ଓ ସାହିତ୍ୟିକ ଶ୍ରୀ ଶ୍ରୀନିବାସ ଉଦ୍‌ଗାତା ଏହାର ସଂପାଦନା ଦାୟିତ୍ୱ ଗ୍ରହଣ କରନ୍ତି । କଥା ସାହିତ୍ୟ, କବିତା ଓ ନାରୀ ଲେଖନୀ ସମ୍ପର୍କିତ ରଚନାବଳୀ ଭାଷଣରୁ ସଂଗୃହୀତ ଏବଂ ନାଟ୍ୟ-ସାହିତ୍ୟ ଓ ପ୍ରବନ୍ଧ ସମ୍ପର୍କିତ ଆଲୋଚନାମାନ ପରେ ସଂପାଦକ ଦ୍ୱୟଙ୍କ ଉଦ୍ୟମରେ ସଙ୍କଳିତ । ଆଧୁନିକ ଓଡ଼ିଆ ସାହିତ୍ୟ ସଂପର୍କିତ ଏକ ସ୍ୱୟଂସମ୍ପୂର୍ଣ୍ଣ ସମୀକ୍ଷା ଗ୍ରନ୍ଥର ଗୌରବ ଦାବୀକରେ ଏ ସଙ୍କଳନ ।

**ରାଧାନାଥ ଗ୍ରନ୍ଥାବଳୀ (୧୯୭୫) :**

ସଂପାଦକ କ୍ଷେତ୍ରବାସୀଙ୍କର ଏହା ଏକ ସୁବର୍ଣ୍ଣ ଫସଲ । ବହୁଚର୍ଚ୍ଚିତ କବି ରାଧାନାଥଙ୍କ ରଚନାବଳୀର ସଂପାଦନାରେ ସତେ ଯେପରି ସେ ଆପଣାର ସକଳ ଶକ୍ତି ଓ ଶ୍ରଦ୍ଧା ନିଗାଡ଼ି ଦେଇଛନ୍ତି । ବହୁ ପୂର୍ବସୂରୀଙ୍କ ଦ୍ୱାରା ଓ ବହୁ ନାମଜାଦା ପ୍ରକାଶକଙ୍କ ଦ୍ୱାରା ସଂପାଦିତ ଓ ପ୍ରକାଶିତ ହୋଇଥିଲେ ବି ଡଃ ନାୟକଙ୍କ ସମ୍ପାଦିତ "ରାଧାନାଥ ଗ୍ରନ୍ଥାବଳୀ" ସେସବୁ ମଧ୍ୟରେ ଉତ୍କୃଷ୍ଟ ବିବେଚିତ ହୁଏ । ସଂପାଦକ ଡଃ ନାୟକଙ୍କ ଚୟନ-କୌଶଳ ଓ ବିନ୍ୟାସ-ବୈଶିଷ୍ଟ୍ୟ ତାଙ୍କୁ ଏହି ଗୌରବ ପ୍ରଦାନ କରେ । "ଉତ୍କଳ ରଚନା", "ବ୍ୟାକରଣ ପରିଚୟ"ଓ ଆତ୍ମକଥାର କିୟଦଂଶ ଗ୍ରନ୍ଥାବଳୀର ନୂତନ ସଂଯୋଜନା । ପ୍ରତି ରଚନାର ପୃଷ୍ଠଟୀକା ଭାବରେ ତା'ର ପ୍ରଥମ ପ୍ରକାଶ କାଳ ଓ ଐତିହାସିକ ବିବରଣୀ ପ୍ରଦତ୍ତ । କବି ରାଧାନାଥ (୧୮୪୮-୧୯୦୮) ଙ୍କ ବ୍ୟକ୍ତିତ୍ୱ ଓ ସାହିତ୍ୟ ଅଧ୍ୟୟନ ପାଇଁ ଶ୍ରୀଯୁକ୍ତ ନାୟକଙ୍କ ସଂଯୋଜିତ "କବି ଚରିତ ରାଧାନାଥ" ଶୀର୍ଷକ ମନୋଗ୍ରାଫ୍ ବିଶେଷ ଉପଯୋଗୀ । ପ୍ରାୟ ଶହେ ପୃଷ୍ଠାର ଏହି ଆଲୋଚନା ସଂପାଦିତ ଗ୍ରନ୍ଥଟିର ମୂଲ୍ୟ ବୃଦ୍ଧିରେ ସହାୟକ ।

**ଶ୍ରୀ ଜଗନ୍ନାଥ ପଦ୍ୟାବଳୀ (୧୯୭୭-୮୦) :**

ଏକକ ସଂପାଦିତ ଗ୍ରନ୍ଥଗୁଡ଼ିକ ମଧ୍ୟରେ 'ଶ୍ରୀ ଜଗନ୍ନାଥ ପଦ୍ୟାବଳୀ' ଡଃ ନାୟକଙ୍କ ଉଲ୍ଲେଖଯୋଗ୍ୟ ଉଦ୍ୟମ । ଭଜନ ପୂଜନ ପାଇଁ ଭକ୍ତି ଗୀତିକାର ସଂଗ୍ରହ ଅବକାଶରେ ଓଡ଼ିଆ ସାହିତ୍ୟରେ ଓଡ଼ିଆତ୍ୱର ଏକ ନିଦର୍ଶନ ଭାବରେ ଜଗନ୍ନାଥୈକପ୍ରାଣତା ପ୍ରତି ତାଙ୍କର ଧ୍ୟାନ ଯାଇଛି । ଏଣୁ ସେ ଶ୍ରୀ ଜଗନ୍ନାଥ ପଦ୍ୟାବଳୀର ସଂପାଦନାରେ ମନୋନିବେଶ କରନ୍ତି । ୧୯୭୭ ରୁ ୮୦ ମଧ୍ୟରେ ପଦ୍ୟାବଳୀ ଚାରୋଟି ଭାଗରେ ପ୍ରକାଶ ପାଏ । ପଞ୍ଚଦଶ ଶତାବ୍ଦୀଠାରୁ ବିଂଶ ଶତାବ୍ଦୀର ଆଦ୍ୟପାଦ ଯାଏ ଅଠାବନ ଜଣ ଭକ୍ତକବିଙ୍କର ଦୁଇଶହରୁ ଊର୍ଦ୍ଧ୍ୱ ଭଜନ-ଜଣାଣ ଓ ଜଗନ୍ନାଥ କାହାଣୀ କିମ୍ବଦନ୍ତୀ ଗର୍ଭିତ କାବ୍ୟାଂଶ କାଳାନୁକ୍ରମିକ ରୀତିରେ ସଜ୍ଜିତ । ପ୍ରତି କବିଙ୍କ ପରିଚୟ ଓ କବିତାର ସାହିତ୍ୟିକ ଆଭିମୁଖ୍ୟ କଥିତ । ପ୍ରତି ଖଣ୍ଡର ଭୂମିକାରେ ଓଡ଼ିଆ ପଦ୍ୟାବଳୀ ସାହିତ୍ୟ ସଂପର୍କିତ ସାରଗର୍ଭକ ଆଲୋଚନାରେ ସଂପାଦକ ଶ୍ରୀ ଜଗନ୍ନାଥଙ୍କୁ ଓଡ଼ିଶାର "ଭକ୍ତିନିଧି" କେବଳ ନୁହେଁ "ସାରସ୍ୱତ ନିଧି" ଭାବରେ ପ୍ରତିପାଦିତ କରିବାକୁ କ୍ଷମ ହୋଇଛନ୍ତି ।

ସଂପାଦକଙ୍କ ଯୋଜନା ଥିଲା - ପଦ୍ୟାବଳୀକୁ ଦଶ ଖଣ୍ଡରେ ବିଭକ୍ତ କରି ସଂପାଦନା କରିଥା'ନ୍ତେ । ଏହି ସଂପର୍କରେ ସେ ଜର୍ମାନର ହାଇଡେଲ୍‌ବର୍ଗ ବିଶ୍ୱବିଦ୍ୟାଳୟର ପ୍ରାଚ୍ୟବିଦ୍ୟା ଅଧ୍ୟାପକ ବିଶିଷ୍ଟ ଗବେଷକ ଡକ୍ଟର ହରମାନ୍ କୁଲ୍‌କେଙ୍କଠାରୁ ଅନୁକୂଳ ମତ ପାଇଥିଲେ । * କିନ୍ତୁ ତାଙ୍କ ଆଶା ଓ ଯୋଜନା ସଫଳ ହୋଇପାରିଲା ନାହିଁ । ଏହା ମୂଳରେ ସମ୍ଭବତଃ ନିମ୍ନ ପାଞ୍ଚୋଟି କାରଣ ବିଦ୍ୟମାନ -

୧. ବ୍ରହ୍ମପୁରସ୍ଥ ଖଲ୍ଲିକୋଟ କଲେଜରୁ କଟକର ରେଭେନ୍‌ସା କଲେଜକୁ ବଦଳି ଯୋଗୁଁ ପଦ୍ୟାବଳୀ ପ୍ରକାଶକ 'ପୁସ୍ତକ ଭଣ୍ଡାର, ବ୍ରହ୍ମପୁର' ସହ ପ୍ରତ୍ୟକ୍ଷ ଯୋଗାଯୋଗ ବିଚ୍ଛିନ୍ନ ।

୨. ସାଂପ୍ରତିକ କାଳର ଲେଖକ ଅବା ମୃତ ଲେଖକଙ୍କ ଉତ୍ତରାଧିକାରୀମାନଙ୍କଠାରୁ ଅନୁମତି ଗ୍ରହଣ ଭଳି ପ୍ରକାଶନଗତ ଅସୁବିଧା ।

୩. ଶିକ୍ଷାଗୁରୁ ଡକ୍ଟର ବେହେରାଙ୍କ ପ୍ରତିକୂଳ ମତ (ଡଃ ବେହେରାଙ୍କ ତା ୨୨-୧୧-୭୭ ରେ ଲିଖିତ ପତ୍ରର ବିପକ୍ଷ ବକ୍ତବ୍ୟ ।)

---

* " I realy hope that you will find time and means to publish the whole series of ten volumes." Quoted from Dr. Kulk's letter to Dr. Nayak Dt. 16-12-77.

୪. କଟକାବସ୍ଥାନ କାଳରେ 'ଓଡ଼ିଆ ଗବେଷଣା ପରିଷଦ' ସଙ୍ଗଠନ କାର୍ଯ୍ୟରେ ଅଧିକ ସମୟ ବିନିଯୋଗ ।

୫. ଫ୍ରେଣ୍ଡସ୍ ପବ୍ଲିଶର୍ସ, ସାଂସ୍କୃତିକ ବିଭାଗ କର୍ତ୍ତୃକ ପ୍ରକାଶିତ ସମଶ୍ରେଣୀୟ କେତୋଟି ସଂକଳନର ବିପଣୀ-ପ୍ରବେଶ ।

**ଫକୀରମୋହନ କଥାସାହିତ୍ୟ (୧୯୭୭) :**

ରାଧାନାଥ ଗ୍ରନ୍ଥାବଳୀର ସଫଳତା ବୋଧହୁଏ ପ୍ରକାଶକଙ୍କୁ ଆତୁର କଲା । ତେଣୁ ଡକ୍ଟର ନାୟକଙ୍କୁ ସେ ଫକୀରମୋହନଙ୍କ ଗଳ୍ପ-ଉପନ୍ୟାସ ସମ୍ପାଦନା କରିବା ପାଇଁ ବରାଦ ଦେଲେ । ଏଭଳି ମନ୍ତବ୍ୟ ଦେବାର କାରଣ 'ରାଧାନାଥ ଗ୍ରନ୍ଥାବଳୀ' ଓ 'ନାରୀକବି ଅନ୍ନପୂର୍ଣ୍ଣା ରଚନା ଶ୍ରୀ' ର ସଫଳତା 'ଫକୀରମୋହନ କଥା ସାହିତ୍ୟ' ରେ ଦୁର୍ଲ୍ଲଭ । କେବଳ ସର୍ବଜନପ୍ରିୟ ଚାରୋଟି ଉପନ୍ୟାସ ଓ ଦୁଇଟି ଗଳ୍ପ ଗ୍ରନ୍ଥ ଅଲଗା ପୃଷ୍ଠାଙ୍କ ଥାଇ ସମୟାନୁକ୍ରମିକ ପ୍ରକାଶ କାଳ ଭିତ୍ତିରେ ଏକତ୍ର ବନ୍ଧାଇ ହୋଇ ପ୍ରକାଶ ପାଇଛି । କୌଣସିଟିରେ ପ୍ରଥମ ପ୍ରକାଶକାଳ କିମ୍ବା ସମ୍ପାଦକଙ୍କ ମନ୍ତବ୍ୟ ନାହିଁ । ଏ ସମସ୍ତ ଦୁର୍ବଳତା ସତ୍ତ୍ୱେ ଅନ୍ଧାରୀ ଆକାଶର ତାରାଟିଏ ଭଳି 'ଭୂମିକା'ଟି ସଂପାଦକଙ୍କର ମାନରକ୍ଷା କରେ । ଭୂମିକାର ବୈଶିଷ୍ଟ୍ୟ ଭୂମିକାକାରଙ୍କ ଭାଷାରେ, "ଏକ ଅଭିନବ ଦୃଷ୍ଟିକୋଣରୁ ଫକୀରମୋହନଙ୍କୁ ଚିହ୍ନିବାର କେତୋଟି ସମ୍ଭାବନାର ସୂଚନା ଏଠି ଦେଉଛି; ଉଦ୍ଦେଶ୍ୟ ପୋଷିଛି - ପାଠକ ଫକୀରମୋହେନଙ୍କ ସମଗ୍ର କଥା ସାହିତ୍ୟକୁ ଏକତ୍ର ପାଠ କରି ନବଦିଗନ୍ତରୁ ତାଙ୍କୁ ଆସ୍ୱାଦନ କରିବେ ।" ଫକୀରମୋହନଙ୍କ କାୟାପ୍ରବେଶ କଳା, ପରିପକ୍ୱ ବୋଧଦୃଷ୍ଟି ଓ ଅଭିନବ ଅଭିବ୍ୟକ୍ତି ତାଙ୍କ ରଚନା ଭିତରୁ ସୂତ୍ର ଉଦ୍ଧାର କରି ଡଃ ନାୟକ ପ୍ରମାଣିତ କରିଛନ୍ତି ।

**ନାରୀକବି ଅନ୍ନପୂର୍ଣ୍ଣା ରଚନାଶ୍ରୀ (୧୯୭୮) :**

ଏହି ଶତାବ୍ଦୀର ଆଦ୍ୟପାଦର ସୃଷ୍ଟିମୁଖରା କବି ଅନ୍ନପୂର୍ଣ୍ଣା (୧୮୮୩-୧୯୪୮) ଙ୍କର କବିତାର ଧାରା ବିସ୍ମୃତିର ବାଲୁକା ଗର୍ଭରେ ବିଲୟ ଭଜିବା ପୂର୍ବରୁ ତାର ସୁମଧୁର ଜଳରାଶି ସଂଗ୍ରହ କରିବାର କଠିନ ଉଦ୍ୟମ କରନ୍ତି କ୍ଷେତ୍ରବାସୀ ଖଲ୍ଲିକୋଟ କଲେଜରେ ଅଧ୍ୟାପନା କାଳରେ । ଅତ୍ର ତତ୍ର ବିକ୍ଷିପ୍ତ ପ୍ରାଚୀନ ପତ୍ରପତ୍ରିକା, କବିକନ୍ୟାଙ୍କ ସୌଜନ୍ୟରୁ ପ୍ରାପ୍ତ କୀଟଦଂଷ୍ଟ ଅପ୍ରକାଶିତ ପାଣ୍ଡୁଲିପିରୁ ସଂଗୃହୀତ ରଚନାବଳୀ ସଂକଳନ ଓ ସଂପାଦନା କରି କଠୋର ଶ୍ରମ ଓ ସାଧନାର ସ୍ୱାକ୍ଷର ରଖିଯାଇଛନ୍ତି ସେ । କବିଙ୍କ ଜୀବଦ୍ଦଶାରେ ମାତ୍ର ସତଁତିରିଶଟି କବିତା ପୁସ୍ତକାକାରରେ ପ୍ରକାଶିତ ହୋଇଥିବା ସ୍ଥଳେ ସମ୍ପାଦକ ମହୋଦୟ ୧୨୪ଟି ପଦ୍ୟ ରଚନା ଓ ୯ଟି ଗଦ୍ୟ ରଚନା ଚୟନ କରିଛନ୍ତି । ପ୍ରତି

ରଚନାର ପ୍ରକାଶକାଳ, ପ୍ରକାଶ ମାଧ୍ୟମ ଓ ପାଣ୍ଡୁଲିପି କ୍ଷେତ୍ରରେ ରଚନାକାଳର ଉଲ୍ଲେଖ ରହିଛି । କବିଙ୍କର ଏକ ସୁଦୀର୍ଘ ଜୀବନାଲେଖ୍ୟ ଓ କୃତି କଳନା' 'ରଚନାଶ୍ରୀ' ର ମହତ୍ତ୍ୱ ବହୁଗୁଣିତ କରିଛି । ଏକ ସ୍ୱଳ୍ପଜ୍ଞାତ କବି ପ୍ରତିଭାକୁ ସର୍ବଜ୍ଞାତ କରିବା ଆଭିମୁଖ୍ୟ, ସଙ୍କଳନ-କୃତିତ୍ୱ ଓ ସମ୍ପାଦନା-ସୌକର୍ଯ୍ୟ ଉକ୍ତ ଗ୍ରନ୍ଥର ବିଶେଷତ୍ୱ ।

**ଚୟନିକା (୧୯୭୯) :**

ଡକ୍ଟର କୃଷ୍ଣଚରଣ ବେହେରାଙ୍କ ସହ ମିଳିତ ଭାବରେ ଏହି କବିତା ସଂକଳନଟି ସଂପାଦିତ । ପ୍ରାଚୀନ କାଳରୁ ସାଂପ୍ରତିକ କାଳଯାଏଁ ଓଡ଼ିଆ କାବ୍ୟ ସାହିତ୍ୟର ବିକାଶଧାରା ଓ ବିଷୟ ବୈଚିତ୍ର୍ୟ ପ୍ରତି ସଚେତନ ପାଠକଙ୍କ ଦୃଷ୍ଟି ଆକର୍ଷଣ କରିବା ଲକ୍ଷ୍ୟରେ ଏହା ପ୍ରକାଶିତ । କବି ବୈଷ୍ଣବ ପାଣି ଓ କବି ହମିଦ୍ ମିଆଁଙ୍କ ପରି ଜନପ୍ରିୟ କବିଙ୍କ ରଚନା ସ୍ଥାନିତ କରି ସଂପାଦକଦ୍ୱୟ ପ୍ରାଚୀନ ସାଆନ୍ତିଆ ମନୋବୃତ୍ତିଧାରୀ ସାହିତ୍ୟ-ସମୀକ୍ଷକଙ୍କ ସମାଲୋଚନାର ଶିକାର ହୋଇଥିଲେ ବି ଏହା ଉକ୍ତ ସଂକଳନର ଏକ ବିଶିଷ୍ଟତା ।

**କୈବଲ୍ୟ' (୧୯୮୧-୮୩) :**

ଏକଦା ବହୁ ସମ୍ଭାବନାର ସ୍ୱାକ୍ଷର ନେଇ ଶ୍ରୀ ସୁଦର୍ଶନ ସାହୁଙ୍କ ସଂପାଦକତ୍ୱରେ କଟକରୁ ପ୍ରକାଶ ପାଉଥିବା ତ୍ରୈମାସିକ ସାହିତ୍ୟ ପତ୍ର 'କୈବଲ୍ୟ'ର ପୁରାତନୀ ବିଭାଗର ସଂପାଦନା ଦାୟିତ୍ୱ ବହନ କରିଥିଲେ ଡଃ କ୍ଷେତ୍ରବାସୀ । କୈବଲ୍ୟକୁ ସ୍ୱୟଂସଂପୂର୍ଣ୍ଣ, ସର୍ବଦିଗସ୍ପର୍ଶୀ, ସଂସ୍କୃତିସଂପନ୍ନ କରିବା ଲକ୍ଷ୍ୟରେ ସଂଯୋଜିତ ଏହି ବିଭାଗରେ ଆଧ୍ୟାତ୍ମବାଦୀ ବହୁ ଉପାଦେୟ ପ୍ରବନ୍ଧ ପ୍ରକାଶ ପାଇଥିଲା । ଜଗନ୍ନାଥଙ୍କୁ ପ୍ରାଣୋତ୍ସର୍ଗ ପରେ କ୍ଷେତ୍ରବାସୀଙ୍କର ଜୀବନ ଧାରା ଆଧ୍ୟାତ୍ମିକତା ପ୍ରତି ଉନ୍ମୁଖ ହୋଇଥିଲା । ମାନସଚିନ୍ତା ଓ କାର୍ଯ୍ୟଧାରା ମଧ୍ୟରେ ସମନ୍ୱୟ ଆସିଥିବାରୁ ଏହି ବିଭାଗଟିର ସଂପାଦନା ସେ ନିଷ୍ଠାର ସହ ଆଦରି ନେଇଥିଲେ ।

**ଏଷଣା (୧୯୮୦) :**

କ୍ଷେତ୍ରବାସୀଙ୍କ ସଂଗଠନକାରୀ ଜୀବନର ସର୍ବଶେଷ ଓ ସର୍ବଶ୍ରେଷ୍ଠ ସାକାର ସ୍ୱପ୍ନ 'ଓଡ଼ିଆ ଗବେଷଣା ପରିଷଦ' ର ମୁଖପତ୍ର ଭାବରେ ଷାଣ୍ମାସିକ ସାହିତ୍ୟ ପତ୍ର 'ଏଷଣା'ର ସଂପାଦନା । ଡଃ କୃଷ୍ଣଚରଣ ବେହେରା, ଡଃ ନରେନ୍ଦ୍ର ନାଥ ମିଶ୍ର, ଡଃ ହେମନ୍ତ କୁମାର ଦାସ, ଅଧ୍ୟାପକ ଶ୍ରୀ ପଞ୍ଚାନନ ମହାନ୍ତିଙ୍କ ଭଳି ବିଦ୍ୱାନ ସଂପାଦକ-ମଣ୍ଡଳୀର ପ୍ରାଜ୍ଞ ପରାମର୍ଶରେ ଜର୍ଣ୍ଣାଲଟିର ରୂପାୟନ ନୈପୁଣ୍ୟ ପ୍ରତି ସଂଖ୍ୟାରେ ପ୍ରକଟିତ । ୧୯୮୦ ରୁ ୮୫ ମଧ୍ୟରେ କ୍ଷେତ୍ରବାସୀଙ୍କ ଜୀବଦ୍ଦଶାରେ ଏଷଣାର ମୋଟ ୧୧ ଟି ସଂଖ୍ୟା ପ୍ରକାଶିତ । ତନ୍ମଧ୍ୟରୁ ଦଶୋଟି ତାଙ୍କର ସ୍ନେହପୂର୍ଣ୍ଣ ପରିଚର୍ଯ୍ୟା ପାଇଛନ୍ତି । ପ୍ରତି ସଂଖ୍ୟାରେ ଆପଣାର ଚିନ୍ତାପୂର୍ଣ୍ଣ, ସାରଗର୍ଭକ ବକ୍ତବ୍ୟ ସେ ସଂପାଦକୀୟ ସ୍ତମ୍ଭରେ ଲିପିବଦ୍ଧ କରିଯାଇଛନ୍ତି ।

**ଓଡ଼ିଆ ଗବେଷଣା ପରିଷଦ ଗ୍ରନ୍ଥମାଳା :**

ଓଡ଼ିଆ ଗବେଷଣା ପରିଷଦର ସଂପାଦକ ଭାବରେ ପରିଷଦ ଗ୍ରନ୍ଥମାଳାର ମୁଖ୍ୟ ସଂପାଦକ ଦାୟିତ୍ୱ ଡକ୍ଟର ନାୟକ ତୁଲାଇଥିଲେ । ଡକ୍ଟର କୃଷ୍ଣ ଚରଣ ବେହେରା ଓ ଶ୍ରୀ ଚିତ୍ତରଞ୍ଜନ ଦାସଙ୍କ ସହ ମିଳିତ ଭାବରେ ସେ ପାଞ୍ଚୋଟି ଗ୍ରନ୍ଥ ସଂପାଦନା କରିଛନ୍ତି । ସେଗୁଡ଼ିକ ହେଲା -

୧. କବି ବଳରାମ ଦାସଙ୍କ ବିରଚିତ ଶ୍ରୀ ରୋଢ଼ା ବା ରୁକ୍ମିଣୀ ବିବାହ ଲେଖନ (୧୯୮୧)

୨. ସର୍ଜନାତ୍ମକ ସାହିତ୍ୟ-ସମୀକ୍ଷା (୧୯୮୨)

୩. ଆଧୁନିକ ଅବବୋଧ (୧୯୮୩)

୪. ଓଡ଼ିଆ ଭାଷାଚର୍ଚ୍ଚାର ପରମ୍ପରା (୧୯୮୩) ଓ

୫. ତୁଳନାତ୍ମକ ସାହିତ୍ୟ (୧୯୮୪) ।

ଓଡ଼ିଆ ସାହିତ୍ୟରେ ପୂର୍ବରୁ ଅନାଲୋଚିତ ବିଭିନ୍ନ ବିଷୟରେ ଗ୍ରନ୍ଥ ସଂପାଦନା ପରିଷଦର ଆଭିମୁଖ୍ୟ ହୋଇଥିବାରୁ ସେସବୁର ସଂଗ୍ରହ ଓ ସଂପାଦନାକୁ ସେ ନିଜର ଆଭିମୁଖ୍ୟ କରିଥିଲେ ।

ସଂପାଦକ କ୍ଷେତ୍ରବାସୀଙ୍କ କୃତିତ୍ୱ କଳନା ପୂର୍ବରୁ, ତାଙ୍କ ସଂପାଦନାର ବିଶ୍ଳେଷଣ ଆବଶ୍ୟକ । ଚାରୋଟି ଗ୍ରନ୍ଥ ଛାଡ଼ି ଅନ୍ୟ ସମସ୍ତ ଗ୍ରନ୍ଥ ଓ ପତ୍ରପତ୍ରିକା ସେ ମିଳିତ ଭାବରେ ସଂପାଦନା କରିଛନ୍ତି । ମିଳିତ ସଂପାଦନାରେ ବ୍ୟକ୍ତିଗତ ରୁଚିକୁ ସଂପାଦକ ମଣ୍ଡଳୀର ସର୍ବସମ୍ମତ ରୁଚିରେ ପରିଣତ କରିବାର ଯନ୍ତ୍ରଣା ନିହିତ ଥାଏ । ତେଣୁ ତହିଁରେ କୃତିତ୍ୱ ପ୍ରଦର୍ଶନ ଅବକାଶ ସୀମିତ । ଏକାତ୍ମ, ସମଧର୍ମା, ସହୃଦୟ ସୁହୃଦ୍‌ଙ୍କ ସହ ସମ୍ମିଳିତ ସଂପାଦନାରେ ସେ ଅଂଶଗ୍ରହଣ କରିଥିବାରୁ ସେ ଏ ଯନ୍ତ୍ରଣାର ଉତ୍କଟପୀଡ଼ା ଅଳ୍ପ ଉପଲବ୍ଧି କରିଥିବେ । ସ୍ୱପତ୍ନୀ ଲାବଣ୍ୟ ଦେବୀ, ଶିକ୍ଷାଗୁରୁ ଡଃ କୃଷ୍ଣ ଚରଣ ବେହେରା, ବନ୍ଧୁ ଶ୍ରୀନିବାସ ଉଦ୍‌ଗାତା ପ୍ରମୁଖଙ୍କ ସହ ସାହିତ୍ୟ-କର୍ମ କରିଥିବାରୁ ତାଙ୍କ ରୁଚି ଯଥୋଚିତ ସମ୍ମାନ ପାଇଛି । କାରଣ, ଏମାନେ କେହି ଗ୍ରାସ କରିବାର ବା ଗ୍ରସ୍ତ ହେବାର ବ୍ୟକ୍ତିତ୍ୱସଂପନ୍ନ ସାହିତ୍ୟିକ ନୁହନ୍ତି । ତେଣୁ ପାଠ୍ୟ ପୁସ୍ତକ ହେଉ ବା ସାଧାରଣ ସାହିତ୍ୟ ଗ୍ରନ୍ଥ ହେଉ, ସର୍ବତ୍ର କିଛି ନା କିଛି ବୈଶିଷ୍ଟ୍ୟ ନିହିତ ରହିଛି । ତାଙ୍କ ରଚିତ ଭୂମିକା ମଧ୍ୟ ସଂକଳିତ ଗ୍ରନ୍ଥକୁ ସୁସଂପାଦିତ ଗ୍ରନ୍ଥର ଗୌରବ ପ୍ରଦାନ କରିଛି ।

ମିଳିତ ଉଦ୍ୟମ ହେଲେ ବି ଯେଉଁଠାରେ ସଂପାଦନାର ବିଭାଗ ବଣ୍ଟନ ହୋଇଛି, ସେଠାରେ କୃତିତ୍ୱ ନିର୍ଦ୍ଧାରଣ ସହଜସାଧ । 'ଶତରୂପା' ଓ 'କୈବଲ୍ୟ' ପତ୍ରିକାର ବିଶେଷ ବିଭାଗ ଦାୟିତ୍ୱରେ ରହି କ୍ଷେତ୍ରବାସୀ ସ୍ୱଷ୍ଟଚେତା ଓ ନିର୍ଭୀକତା ତଥା ନୂତନ ଦୃଷ୍ଟିକୋଣ ପ୍ରତି ଶ୍ରଦ୍ଧାର ପ୍ରମାଣ ଦେଇଛନ୍ତି ।

ଏକକ ଭାବରେ ସଂପାଦିତ କୃତି ଚତୁଷ୍ଟୟ - ରାଧାନାଥ ଗ୍ରନ୍ଥାବଳୀ, ଫକୀରମୋହନ କଥା-ସାହିତ୍ୟ, ନାରୀକବି ଅନ୍ନପୂର୍ଣ୍ଣା ରଚନାଶ୍ରୀ ଓ ଶ୍ରୀ ଜଗନ୍ନାଥ ପଦ୍ୟାବଳୀରେ କ୍ଷେତ୍ରବାସୀ ସଂପାଦକ ଭାବରେ ଅଧିକ ସଫଳ । ଉପରୋକ୍ତ ଏକକ ସଂପାଦିତ ଗ୍ରନ୍ଥାବଳୀରେ ସୌନ୍ଦର୍ଯ୍ୟବୋଧ ଦ୍ୱାରା ଅନୁପ୍ରେରିତ ହୋଇ ସେ ସଂପାଦନା କାର୍ଯ୍ୟ କରିଛନ୍ତି ।

'ରାଧାନାଥ ଗ୍ରନ୍ଥାବଳୀ' ରେ କ୍ଷେତ୍ରବାସୀଙ୍କ ସଂପାଦନା ନୈପୁଣ୍ୟର ବିଶେଷ ଉତ୍କର୍ଷ ନିହିତ । ଉକ୍ତ ଗ୍ରନ୍ଥ ସଂପାଦନାରେ ସେ ଉଚ୍ଚକୋଟୀର ସଂପାଦକଙ୍କ ବିଶେଷତ୍ୱ ଇତିହାସ-ବୋଧ ଓ ସୌନ୍ଦର୍ଯ୍ୟବୋଧ ରକ୍ଷା କରି ପାରିଛନ୍ତି । "ଜଣେ କବିର ଜୀବନ ଦେଇ ତାର କାବ୍ୟକୁ ଦେଖିବା ଓ କାବ୍ୟ ଦେଇ ତାର ଜୀବନକୁ ଦେଖିବା " (ଶ୍ରୀ ଚିତ୍ତରଞ୍ଜନ ଦାସ) ରୀତିର ପ୍ରବର୍ତ୍ତନ କରିଛନ୍ତି । କବିଙ୍କର ବକ୍ତବ୍ୟ ଭିତ୍ତିରେ ତାଙ୍କ ସମଗ୍ର କୃତିର କୃତିତ୍ୱ କଳନା କରିବା ପାଇଁ ଯେଉଁ ଗଭୀର ଅନ୍ତଃ ପ୍ରବେଶ ଓ ବିଶେଷ ପ୍ରୀତି ଦରକାର, ସେ ସେଥିପ୍ରତି ଠିକ୍ ବିଚାର ପ୍ରଦର୍ଶନ କରିପାରିଛନ୍ତି ।

କ୍ଷେତ୍ରବାସୀଙ୍କ କୃତିତ୍ୱର ସ୍ୱର୍ଣ୍ଣାଭ ସ୍ୱାକ୍ଷର ତାଙ୍କ ରଚିତ ସମ୍ପାଦକୀୟମାନଙ୍କରେ ନିହିତ । ତାଙ୍କର ତତ୍ତ୍ୱାବଧାନରେ ପ୍ରକାଶିତ ଏଷଣାର ଦଶଟିଯାକ ସଂଖ୍ୟାରେ ଦଶଟି ସାରଗର୍ଭକ ସମ୍ପାଦକୀୟ ସ୍ଥାନ ପାଇଥିଲା । ସମାଲୋଚନା ସାହିତ୍ୟର ନାନା ଦିଗ, ସୀମା, ସମ୍ଭାବନା, ଆଶା ଆଶ୍ୱାସନାର କାହାଣୀ କଥିତ ହୋଇଥିଲା ଏଥିରେ । ତୀକ୍ଷ୍ଣ ମେଧା ସହ ତୀବ୍ର ମହତ୍ତ୍ୱ ବୋଧ କ୍ଷେତ୍ରବାସୀଙ୍କୁ ପ୍ରଜ୍ଞା ଓ ପ୍ରଣୟର ଜଣେ ପ୍ରକୃତ ପୂଜାରୀରେ ପରିଣତ କରିଥିଲା । ପାଠକର ମସ୍ତିଷ୍କ ଓ ହୃଦୟ ଆଲୋଡ଼ିତ କରିବାର ଗରିମାମୟ ଗୁଣରେ ତାଙ୍କ 'ସମ୍ପାଦକୀୟ' ହୋଇଥିଲା ଗୌରବାନ୍ୱିତ ।

ଏକାଦଶ ଖଣ୍ଡ 'ଏଷଣା' ସଂପାଦନାରେ ଡଃ କ୍ଷେତ୍ରବାସୀ ସକ୍ରିୟ ଅଂଶଗ୍ରହଣ କରିପାରିଲେ ନାହିଁ । ୧୯୮୫ ନଭେମ୍ବର ଆଦ୍ୟରୁ ସେ ଭୀଷଣ ଯକୃତ ବ୍ୟାଧିରେ ପୀଡ଼ିତ ହେଲେ । 'ଏଷଣା' ର ତତ୍ତ୍ୱାବଧାନ କଲେ ଡକ୍ଟର କୃଷ୍ଣଚରଣ ବେହେରା । ତାଙ୍କ ନିର୍ଦ୍ଦେଶରେ ମୋତେ ସଂପାଦନାର ବହିରଙ୍ଗ କାର୍ଯ୍ୟ ନିର୍ବାହ କରିବାକୁ ପଡୁଥିଲା । ଡଃ ବେହେରା ସେତେବେଳେ ସୁଦୂର ଫୁଲବାଣୀର ସରକାରୀ କଲେଜରେ ଅଧ୍ୟାପନାରତ ।

ତାଙ୍କ ଅନୁପସ୍ଥିତିରେ କାଗଜ କିଣା, ପ୍ରୁଫ୍ ଦେଖା ଆଦି କାମ ସାଙ୍ଗକୁ ଆହୁରି କାମ ଜୁଟାଇ ଦିଅନ୍ତି କ୍ଷେତ୍ରବାସୀ ବାବୁ । ପ୍ରତି ପ୍ରବନ୍ଧ ରୋଗ ଶଯ୍ୟାରେ ମୋ' ଦ୍ୱାରା ପଢ଼ାଇ ଶୁଣନ୍ତି । ଢଳ ଢଳ ହୋଇ ଦିଶିଯାଉଛି ସେ ଦିନ । ଲୋକନାଥ ନର୍ସିଂ ହୋମ୍‌ରେ ଭୀଷଣ ବାନ୍ତି ହେଉଥାଏ ତାଙ୍କୁ । ଶରୀର ଶୀର୍ଣ୍ଣ, ଚକ୍ଷୁ କୋଟରାଗତ, ସ୍ୱର କ୍ଷୀଣ... ତଥାପି ସେ ଦୃଷ୍ଟିର ତୀବ୍ରତା, ସ୍ୱରର ସାରଲ୍ୟଭରା ଅନୁରୋଧ ମୋତେ ବାଧ୍ୟ କଲା ଚିତ୍ତଭାଇଙ୍କ ଲେଖା ରାଇବାବୁଙ୍କ 'ଚେତନାର ଉନ୍ମେଷ ଓ ଉତ୍ତରଣ' ଗ୍ରନ୍ଥସମୀକ୍ଷା ପାଣ୍ଡୁଲିପି ପଢ଼ି ଶୁଣାଇବା ପାଇଁ । ଘଣ୍ଟାଏ କାଳ ପଢ଼ିଲି, ସେ ଶୁଣିଲେ ଧୈର୍ଯ୍ୟର ସହ । ଶିରୋନାମା ଦେଲେ 'ଚେତନାର ଅନୁସନ୍ଧାନ' । ସେହି ନାମରେ ଛପା ହେଲା । ଏହିଭଳି ଆମେ ଯେତେ ଚାପ ଦେବାକୁ ଚାହୁଁ ନ ଥାଉଁ, ସେ ସେତେ ସଂପୃକ୍ତ ହେବାକୁ ବ୍ୟାକୁଳ ହେଉଥା'ନ୍ତି । ରୋଗ ଆହୁରି ବଢ଼ିଲା । ସେ ଦିଲ୍ଲୀ ଗଲେ ଡିସେମ୍ବର ମଧ୍ୟ ଭାଗରେ ସ୍ୱାସ୍ଥ୍ୟ ପରୀକ୍ଷା ଏବଂ ରୋଗ ନିର୍ଦ୍ଧାରଣ ପାଇଁ । ଯିବା ପୂର୍ବରୁ ମାଗିଥିଲି ସଂପାଦକୀୟ... ଆସିବା ଆଗରୁ ଲୋଡ଼ା ପଡ଼ିପାରେ । ଜାନୁଆରୀ ପ୍ରଥମ ସପ୍ତାହରେ 'ଏଷଣା' ବାହାରିବ । ହସି ହସି ସେଦିନ କହିଲେ, "ମୁଁ ଫେରି ଆସେ, ନିଶ୍ଚୟ ଲେଖିବି । ମୁଁ ଥାଉଁ ଥାଉଁ କ'ଣ

ସଂପାଦକୀୟ ନ ଥାଇ ବାହାରିବ ? ମୁଁ ମରିଗଲେ ତମେ ଶୋକ ପାଳି ବନ୍ଦ କରବ ସନା ।"

ଶେଷ ଫର୍ମା ଛାପା ସରିବା ପାଖେଇ ଆସୁଥାଏ । କ୍ଷେତ୍ରବାସୀ ବାବୁ ଫେରିଲେ ଆହୁରି ଅସୁସ୍ଥ ଶରୀର ନେଇ, ଦୁରାରୋଗ୍ୟ ବ୍ୟାଧିର ସମ୍ବାଦ ଆଣି । ସଂପାଦକୀୟ ପାଇଁ ପୁଣି ଗଲୁ ସୁଦର୍ଶନ ବାବୁ (ଏଷଣା'ର ତତ୍କାଳୀନ ମୁଦ୍ରାକର), ମୁଁ । ଅବସ୍ଥା ଦେଖି ମନ ବଳିଲା ନାହିଁ ମାଗିବା ପାଇଁ । ସେ ସଂଖ୍ୟା 'ଏଷଣା'ର ସଂପାଦକୀୟ ଅଲେଖା ରହିଗଲା... । ଏଥିସହିତ ଅସମୟରେ ପରିସମାପ୍ତି ଘଟିଲା ଓଡ଼ିଆ ସାହିତ୍ୟ-ସଂପାଦନାର ଏକ ସ୍ୱର୍ଣ୍ଣାଭ ଅଧ୍ୟାୟର ।



# କାବ୍ୟତତ୍ତ୍ୱ ଓ ରସ ପ୍ରସଙ୍ଗ

ଡକ୍ଟର ବନମାଳୀ ବାରିକ

ଅଧ୍ୟାପକ ନାୟକ ଶିକ୍ଷକତାକୁ ଆଦରି ନେଲାବେଳେ ଓଡ଼ିଆ ସାହିତ୍ୟ ଚର୍ଚ୍ଚା କ୍ଷେତ୍ରରେ ବହୁବିଧ ଅଭାବ ଲାଗିରହିଥିଲା । ଶିକ୍ଷକ ଓ ଛାତ୍ରମାନଙ୍କ ପାଇଁ ଉପଯୁକ୍ତ ବହିର ଅଭାବ ତାଙ୍କୁ ବ୍ୟାକୁଳ କରିଥିଲା । ସେ ତାଙ୍କର ଅବସର ସମୟକୁ ପୂର୍ଣ୍ଣପ୍ରାଣରେ ସାହିତ୍ୟ ଚର୍ଚ୍ଚା/ପୁସ୍ତକ ରଚନାରେ ନିୟୋଜିତ କଲେ । ମନରେ ତାଙ୍କର କେତେ ଯୋଜନା, କେତେ କଳ୍ପନା, କେତେ ଭାବନା ଅନେକ ପୂର୍ଣ୍ଣାଙ୍ଗ ଗ୍ରନ୍ଥାବଳୀ ପ୍ରକାଶିତ ହେବ, ଅନେକ ନୂଆ ନୂଆ ରାସ୍ତାରେ ଗବେଷଣା ହେବ, ଅନେକ ଗ୍ରନ୍ଥ ସମୀକ୍ଷା ପ୍ରକାଶ ପାଇବ, ଅନେକ ସୁଲଭ/ଦୁର୍ଲ୍ଲଭ ଗଦ୍ୟ/ପଦ୍ୟ ସଙ୍କଳିତ ହେବ, ବିରଳ ଗ୍ରନ୍ଥ ପୁନଃ ପ୍ରକାଶିତ ହେବ, ଓଡ଼ିଆ ସାହିତ୍ୟର ପୂର୍ଣ୍ଣାଙ୍ଗ ଇତିହାସ ଲେଖାଯିବ ଇତ୍ୟାଦି ଇତ୍ୟାଦି । ନୂଆ ପୀଢ଼ିର ଯୁବକମାନେ ଭାଷା ଓ ସାହିତ୍ୟର ନୂଆ ନୂଆ ଦିଗନ୍ତ ଉନ୍ମୋଚନ କରିବେ । ଓଡ଼ିଆ ସାହିତ୍ୟର ତୁଳନାତ୍ମକ ଅଧ୍ୟୟନ ହେବ । ଓଡ଼ିଆ ଭାଷାର ଭାଷାତାତ୍ତ୍ୱିକ ଅଧ୍ୟୟନ ହେବ । ଭାଷା ଓ ସାହିତ୍ୟର ସାଂସ୍କୃତିକ ଅଧ୍ୟୟନ ହେବ । ଜ୍ଞାନର ନବ ନବ ଦିଗନ୍ତ ଯଥା - ସମାଜବିଜ୍ଞାନ, ମନସ୍ତତ୍ତ୍ୱ, ନୃତତ୍ତ୍ୱ, ଲୋକ ସଂସ୍କୃତିକୁ ଭିତ୍ତି କରି ଓଡ଼ିଆ ସାହିତ୍ୟର ଚର୍ଚ୍ଚା ହେବ । ଓଡ଼ିଆର ପରିଚୟ ସଂପୂର୍ଣ୍ଣ ବଦଳିଯିବ । କିଛି ବର୍ଷ ପୂର୍ବରୁ ଓଡ଼ିଆ ସାହିତ୍ୟ ପ୍ରାୟ ସଂସ୍କୃତ ସାହିତ୍ୟର ପଣତରେ ବନ୍ଧା ଥିଲା । ଇଂରାଜୀ, ହିନ୍ଦୀ, ବଙ୍ଗଳା ସାହିତ୍ୟର ଅଳ୍ପକେତେ ଜଣ ଅବଗାହୀ ଥିଲେ । ତତ୍‌କାଳୀନ ନିଯୁକ୍ତିର ବହୁଳ ସୁବିଧା ସୁଯୋଗକୁ ଆଦରି ନେଇ ସାହିତ୍ୟର ଛାତ୍ରମାନେ ନୂତନତା / ସାହସିକତା ପ୍ରତି ନାସିକାକୁଂଚନ କରୁଥିଲେ । ସମୟର ଏପରି ମୋଡ଼ରେ ମୁଁ ଭେଟିଥିଲି ଅଧ୍ୟାପକ ନାୟକ ଓ ଅଧ୍ୟାପିକା ନାୟକଙ୍କୁ - ବ୍ରହ୍ମପୁର ରହଣି ବେଳେ ଖୁବ ନିକଟରୁ ଦେଖିବାକୁ ସୁଯୋଗ ପାଇଲି । ସେମାନଙ୍କ ଅଧ୍ୟୟନ ପ୍ରୀତି / କର୍ତ୍ତବ୍ୟନିଷ୍ଠା ମଧ୍ୟ ଦେଖିଲି ।

ଏଭଳି ସାହିତ୍ୟିକ ବ୍ୟାକୁଳତାରୁ ଅନେକ ଗ୍ରନ୍ଥର ସୃଷ୍ଟି । ଅଧ୍ୟାପକ ନାୟକ ହୋଇଛନ୍ତି ପ୍ରଚୁର ସିଦ୍ଧିର ଅଧିକାରୀ । ସେସବୁ ମଧ୍ୟରେ ତାଙ୍କର ଅଳଂକାରତତ୍ତ୍ୱ / କାବ୍ୟତତ୍ତ୍ୱ ଚର୍ଚ୍ଚା ବେଶ୍ ଉଲ୍ଲେଖଯୋଗ୍ୟ । ଜଟିଳ ବିଚାରକୁ ସରସତା ପ୍ରଦାନ କରିବାକୁ ସେ ବଦ୍ଧପରିକର ଥିଲେ । ୧୯୬୮ ମସିହାରେ ମିଳିତ ଉଦ୍ୟମରେ ପ୍ରକାଶ ପାଇଲା (ଟିଟିଲାଗଡ଼ରୁ) 'ଅଳଂକାର ଓ ଅଳଂକାର ତତ୍ତ୍ୱ' । ସେତେବେଳେ ଅଧ୍ୟାପକ ଦମ୍ପତି ବଲାଙ୍ଗୀର କଲେଜରେ କାର୍ଯ୍ୟରତ ଥିଲେ । ସେଥିରେ ଲେଖାଅଛି - " ଆମ ସାହିତ୍ୟରେ

ଅନେକ ଅଭାବ । x x ତନ୍ମଧ୍ୟରୁ ଏକ ସ୍ୱୟଂସଂପୂର୍ଣ୍ଣ ସହଜବୋଧ ଅଳଂକାର ଗ୍ରନ୍ଥର ଅଭାବ ଆମେ ଅଧ୍ୟୟନ ସ୍ତରେ ସ୍ତରେ ଅନୁଭବ କରୁଥିଲୁ x x ଛାତ୍ର ଛାତ୍ରୀଙ୍କର ଅନୁରୋଧ ଓ ଅଧ୍ୟାପକ ବନ୍ଧୁମାନଙ୍କର ପ୍ରେରଣା କଙ୍କାଳକୁ ଜୀବନ୍ୟାସ ଦେବାରେ ସାହାଯ୍ୟ କଲା । (ପୃ କ,ଖ) ୧୯୮୧ ମସିହାରେ ପ୍ରକାଶ ପାଇଲା ତାଙ୍କର 'ଭାରତୀୟ କାବ୍ୟ ତତ୍ତ୍ୱ' । ଅଳଙ୍କାର ତତ୍ତ୍ୱର ସୀମିତ ପରିସର ଛାଡ଼ି ସେ ଆସିଲେ କାବ୍ୟ ଚର୍ଚ୍ଚାର ବ୍ୟାପକ କ୍ଷେତ୍ରକୁ । କାବ୍ୟ ତତ୍ତ୍ୱ, ରସ ପ୍ରସଙ୍ଗ, ଧ୍ୱନି ପ୍ରସଙ୍ଗ, ବକ୍ରୋକ୍ତି ପ୍ରସଙ୍ଗ, ଔଚିତ୍ୟ ପ୍ରସଙ୍ଗର ମିଳିତ ରୂପ ନେଲା ଏହି ସୃଷ୍ଟି । ପୂର୍ବରୁ ଏଭଳି ବହି ଥିଲା । କିନ୍ତୁ ତାହା ସଂସ୍କୃତ ବନ୍ଧନରେ ଥିଲା ଅଣନିଃଶ୍ୱାସୀ ! କାବ୍ୟତତ୍ତ୍ୱର ସଂସ୍କୃତ ପରିଭାଷା ଓ ପରିସରକୁ ପାଶ୍ଚାତ୍ୟ / ବିଶେଷତଃ ଇଂରାଜୀ ସାହିତ୍ୟ ସହ ମିଳାଇ ପଢ଼ିବା / ଦେଖିବାର ଭଙ୍ଗୀକୁ ସେ ଆପଣେଇ ନେଲେ । ଛାତ୍ରର ସ୍ୱାର୍ଥ ଓ ଅଧ୍ୟାପକର ସ୍ୱାର୍ଥ ଏଥିରେ ସୁରକ୍ଷିତ ହେଲା । କାବ୍ୟର / କାବ୍ୟତତ୍ତ୍ୱର ଅଧ୍ୟୟନ ସହଜ ହେଲା । ପାରମ୍ପରିକତା ଓ ଆଧୁନିକତାର ସମ୍ମିଶ୍ରଣ ହେଲା । ସଂସ୍କୃତର କ୍ଲିଷ୍ଟ ଭାଷା ଓ ଭାବନାର ଜଟିଳ ପଥ ପରିବର୍ତ୍ତେ ସାହିତ୍ୟ ଚର୍ଚ୍ଚାର ମାର୍ଗ ସୁଗମ ହେଲା । ରସ, ରୀତି, ଧ୍ୱନି, ବକ୍ରୋକ୍ତି ଆଦି ସଂସ୍କୃତ ସାହିତ୍ୟର ଇଲାକା ଛାଡ଼ି ଓଡ଼ିଆ ସାହିତ୍ୟର ଅଧ୍ୟୟନ ଇଲାକାରେ ପ୍ରବେଶ କଲେ । ଅଧ୍ୟାପକ ନାୟକ ଭଞ୍ଜ, ରାଧାନାଥ, ଗଙ୍ଗାଧର, ମାନସିଂହ ପ୍ରଭୃତିଙ୍କ କାବ୍ୟରୁ ଉଦାହରଣମାନ ସଂଗ୍ରହ କରି ପାଠକମାନଙ୍କର ଉପଲବ୍ଧିର ପଥ ପରିଷ୍କାର କରିଦେଲେ ।

ଅଧ୍ୟାପକ ନାୟକଙ୍କ କାବ୍ୟ ଚର୍ଚ୍ଚାର ଅନ୍ୟ ଏକ ବୈଶିଷ୍ଟ୍ୟ ହେଲା ଇଂରାଜୀ, ବଙ୍ଗଳା, ହିନ୍ଦୀ ସାହିତ୍ୟର ସମୀକ୍ଷା ସହ ହାତ ମିଳାଇବା । ଇଂରାଜୀ ସାହିତ୍ୟର କିଛି ଅଧ୍ୟାପକ ଏ କ୍ଷେତ୍ରରେ ତତ୍‌ବିଦ୍ ଥିଲେ । ମାତ୍ର ଓଡ଼ିଆ ସାହିତ୍ୟରେ ସେସବୁ ପ୍ରୟୋଗ କରିବାକୁ 'କୁଣ୍ଠା' ପ୍ରକାଶ କରୁଥିଲେ । ଏକମାତ୍ର ଆକ୍ଷେପ ଥିଲା ଓଡ଼ିଆରେ କିଛି ନାହିଁ । ଏହିପରି ସଂକଟ କାଳରେ ଅଧ୍ୟାପକ ନାୟକ ସଂକଳ୍ପବଦ୍ଧ ହୋଇ କାର୍ଯ୍ୟ କରିଥିଲେ । ଦରକାର ପଡ଼ିଲେ ସଂସ୍କୃତ ଓ ଇଂରାଜୀ ପଣ୍ଡିତମାନଙ୍କ ସହାୟତା ଲୋଡୁଥିଲେ । ଜ୍ଞାନ ଆହରଣ ଓ ବିତରଣ କ୍ଷେତ୍ରରେ ସେ କେବେହେଲେ କେଉଁଠି କୁଣ୍ଠା ପ୍ରକାଶ କରୁନଥିଲେ। ନିଜେ ପରିଶ୍ରମ କରୁଥିଲେ । ଅନ୍ୟମାନଙ୍କୁ ପ୍ରବୃତ୍ତ କରୁ ଥିଲେ । ନିଜ ଭାଷା ଓ ସାହିତ୍ୟର ସମ୍ମାନଜନକ ସ୍ଥିତି ପ୍ରତିଷ୍ଠା ପାଇଁ ତାଙ୍କର ଅବିରତ ଉଦ୍ୟମ ଯିଏ ନିଜ ଆଖିରେ ନ ଦେଖିଛି ସେ ବିଶ୍ୱାସ କରିପାରିବ ନାହିଁ ।

କାବ୍ୟତତ୍ତ୍ୱର ଚର୍ଚ୍ଚା ପାଇଁ ସେ ନୃତତ୍ତ୍ୱବିତ୍ ଭେରିଅର୍ ଏଲୱିନଙ୍କ ଆଦିବାସୀ ସ୍ୱପ୍ନତତ୍ତ୍ୱ ଶ୍ରୀ ଅରବିନ୍ଦଙ୍କ ସ୍ୱପ୍ନ ପ୍ରେରଣା ଏବଂ କ୍ରୋଚେଙ୍କ ଭାବସ୍ଫୁଲିଙ୍ଗର ବିକିରଣ ,

ଷ୍ଟିଫେନ୍ ସ୍ପେଣ୍ଡରଙ୍କ କବି ପ୍ରେରଣା ଉପରେ ଆଲୋକପାତ କରିଛନ୍ତି । ପ୍ରସଙ୍ଗକ୍ରମେ ରାଜଶେଖରଙ୍କ ମତି ଦର୍ପଣ ସହ ଭାମଭୋଜ ଓ ମିଲ୍ଟନ୍‌ଙ୍କ ଦିବ୍ୟ ଦୃଷ୍ଟି ମଧ୍ୟରେ ତୁଳନା କରିଛନ୍ତି । ପ୍ରାଚ୍ୟ ଓ ପ୍ରାଶ୍ଚାତ୍ୟର ତୁଳନା କରିବାକୁ ଯାଇ ସେ 'କଳ୍ପନା' ବିଷୟ ଉଲ୍ଲେଖ କରିଛନ୍ତି । ଆମର ପ୍ରାଚୀନ ଆଚାର୍ଯ୍ୟଗଣ ଏ ସମ୍ପର୍କରେ ନୀରବ । କଲେରିଜ ଓ ଆର୍.ଏଲ୍. ବ୍ରେଟ ଓ ଅନ୍ୟ ସମୀକ୍ଷକଙ୍କୁ ଉଦ୍ଧାର କରି ସେ କଳ୍ପନାର ଗୁରୁତ୍ୱ / ଭୂମିକା ବିଷୟ ବୁଝାଇଛନ୍ତି । ପ୍ରାଚ୍ୟ-କାବ୍ୟତତ୍ତ୍ୱରୁ 'ଭାବନା'ର ସନ୍ଧାନ କରି ଅଧ୍ୟାପକ ନାୟକ ପାଶ୍ଚାତ୍ୟ ଜଗତରେ ବିଶେଷ ସ୍ୱୀକୃତି ଲାଭ କରିଥିବା 'କଳ୍ପନା'କୁ ତା'ର ସମକକ୍ଷ ନିକଟତମ ବୋଲି ସୂଚାଇଛନ୍ତି ଫଳରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ମଧ୍ୟରେ ଶବ୍ଦଗତ ପାର୍ଥକ୍ୟ ଓ ଦୂରତା ପ୍ରତ୍ୟକ୍ଷ କରାଯାଉଥିଲେ ହେଁ ଆନ୍ତରିକ ପରିଚୟ-ଚମତ୍କାର ରୂପ ଧାରଣ କରିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କ ନିଜ ଭାଷାରେ- ଏହି ଦୁଇଟି ଦୃଷ୍ଟିକୋଣର ଭିନ୍ନତା ଅଛି ବୋଲି ଯଦିଓ ଜଣାଉଛି ତଥାପି ସେମାନେ ଗୋଟିଏ ବିନ୍ଦୁରେ ମିଶି ଯାଇଛନ୍ତି ।

ଆଧୁନିକ କାବ୍ୟ ବିଚାର କ୍ଷେତ୍ରରେ ବହୁ ମତବାଦ ଦୃଷ୍ଟିଗୋଚର ହୁଏ । ରେନାଁସା ଯୁଗରେ କାବ୍ୟସୃଷ୍ଟିର ପରିବର୍ତ୍ତିତ ଦୃଷ୍ଟିଭଙ୍ଗୀ; ବୋଦ୍‌ଲେୟାର, ମାଲାର୍ମେ ଓ ଭାଲାଇଙ୍କ 'କଳାପାଇଁ କଳାସୃଷ୍ଟି' ଭାବନ; କ୍ୟାଣ୍ଟ, ରବୀନ୍ଦ୍ରନାଥ ଓ ଶ୍ରୀ ଅରବିନ୍ଦଙ୍କ ଆନନ୍ଦବାଦୀ ଅବବୋଧ, ରୁଷ ଓ ଚୀନ ବିପ୍ଳବରୁ ଉଦ୍ଭୁତ ବସ୍ତୁବାଦୀ ଚିନ୍ତାଧାରା ବା ମାର୍କ୍ସବାଦୀ ନନ୍ଦନତତ୍ତ୍ୱର କାବ୍ୟିକ ପ୍ରୟୋଗ ପ୍ରସଙ୍ଗକୁ ବ୍ୟାପକ କରିଛି । ତର୍କ ଓ ବିତର୍କର ଅନ୍ତନାହିଁ । ପରିସର ଭିତରକୁ ଆସିଛନ୍ତି ଆରିଷ୍ଟଟଲ, ପ୍ଲାଟୋ, ଗ୍ରୀକ୍ ନାଟ୍ୟକାରଗଣ, ଭାରତୀୟ ନାଟ୍ୟଶାସ୍ତ୍ର ପ୍ରଣେତା ଆଚାର୍ଯ୍ୟ ଭରତ, ଆଳଂକାରିକ ଆଚାର୍ଯ୍ୟ ଦଣ୍ଡୀ, ଆଚାର୍ଯ୍ୟ ଭାମହ ପ୍ରଭୃତି । କାବ୍ୟର ହେତୁ ନିର୍ଣ୍ଣୟ କରିବାକୁ ଯାଇ ସମସ୍ତେ ଜଣା ଅଧିକେ ନୈତିକ ପ୍ରେରଣା, ସଦାଚାର, ଶିକ୍ଷା ଓ ଚେତନାର ବିକାଶ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି ।

ଏଠାରେ ଲକ୍ଷ୍ୟ କରିବାର କଥା ବିଶିଷ୍ଟ ଓଡ଼ିଆ ଜନନାୟକମାନଙ୍କର ସାହିତ୍ୟ ତତ୍ତ୍ୱ ସଂପର୍କିତ ଆଲୋଚନାକୁ ଲେଖକ ବେଶ୍ ପ୍ରାଧାନ୍ୟ ଦେଇଛନ୍ତି । ପଣ୍ଡିତ ନୀଳକଣ୍ଠ, ଗୋପୀନାଥ ମହାନ୍ତି, ବାମା ଚରଣ ମିତ୍ର, ଚିତ୍ତରଂଜନ ଦାସ, ନିତ୍ୟାନନ୍ଦ ମହାପାତ୍ର, ଅନ୍ନଦାଶଙ୍କର ରାୟ, କୃଷ୍ଣଚରଣ ବେହେରାଙ୍କ ବିଭିନ୍ନ ଆଲୋଚନା / ବକ୍ତବ୍ୟର ସାରାଂଶ ଉଲ୍ଲେଖ କରାଯାଇଛି । ଏହା ଲେଖକଙ୍କ ବିଚରଣ ଭୂମି, ଅଧ୍ୟୟନ ଲିପ୍ସା ଓଡ଼ିଆ ସାଂସ୍କୃତିକ ଜିଜ୍ଞାସା ପ୍ରତି ଗଭୀର ଶ୍ରଦ୍ଧା ସୂଚାଇଦିଏ ।

ଏଭଳି ସମଗ୍ର ପୃଥିବୀ ଅତିକ୍ରମଣ କଲାପରେ ସେ ଭାରତୀୟ କାବ୍ୟତତ୍ତ୍ୱର କେତୋଟି ମୌଳିକ ଉପାଦନ ନିକଟକୁ ଫେରି ଆସିଛନ୍ତି । ପଣ୍ଡିତରାଜ ଜଗନ୍ନାଥଙ୍କ

'ରମଣୀୟାର୍ଥ ପ୍ରତିପାଦକ ଶବ୍ଦଃ କାବ୍ୟମ୍', ଆଚାର୍ଯ୍ୟ ଭାମହଙ୍କ 'ନ କାନ୍ତମପି ନିର୍ଭୂଷ ବିଭାତି ବନିତା ମୁଖମ୍' - ଅର୍ଥାତ୍ ରମଣୀୟତା, ରସ ଓ ସୌନ୍ଦର୍ଯ୍ୟ (କାବ୍ୟର ବିଶିଷ୍ଟ ଗୁଣାବଳୀ) ର ସନ୍ଧାନରେ କାବ୍ୟତତ୍ତ୍ୱ ବିଚାରକମାନେ ଅକ୍ଳାନ୍ତ ପରିଶ୍ରମ କରିଯାଇଛନ୍ତି । କବିତାରେ ତା'ର ପ୍ରମାଣ/ ତାର ଖିଅ ଖୋଜା ଚାଲିଛି । 'ମା ନିଷାଦ ପ୍ରତିଷ୍ଠା'ର ରଚୟିତା ବାଲ୍ମୀକିଙ୍କ ଠାରୁ 'ଓ୍ୱେଷ୍ଟଲ୍ୟାଣ୍ଡ'ର ସ୍ରଷ୍ଟା ଟି. ଏସ୍ ଏଲିଅଟଙ୍କ ପର୍ଯ୍ୟନ୍ତ । ପରେ ସେ କହିଛନ୍ତି - "ଏହି ସୌନ୍ଦର୍ଯ୍ୟବାଦୀ ବିଚାର ବିମର୍ଶର ନମୁନା ଆମେ ଭଣା ଅଧିକେ ଭାରତୀୟ କାବ୍ୟତତ୍ତ୍ୱରୁ ମଧ ପାଇଥାଉ ।" (ପୃ.୬୧) ଶବ୍ଦ ଓ ଅର୍ଥର ଭାଷା ଓ ଭାବର ଖେଳ ମଧ୍ୟରେ କବିତା ଆଗକୁ ଆଗକୁ ଚାଲିଛି । ଆଲଙ୍କାରିକମାନେ, ଦାର୍ଶନିକମାନେ ସମୀକ୍ଷକମାନେ ତା ପାଇଁ ସୂତ୍ର / ନିୟମ / ଶୃଙ୍ଖଳା ସବୁ ଗଢ଼ିଚାଲିଛନ୍ତି ।

କାବ୍ୟତତ୍ତ୍ୱର ବିଚାର କ୍ଷେତ୍ରରେ ମୁଖ୍ୟ ପ୍ରସଙ୍ଗ ହେଉଛି ରସ । ଭାରତୀୟ ଜିଜ୍ଞାସା 'ରସକୁ ସ୍ୱତନ୍ତ୍ର ମାନ୍ୟତା ପ୍ରଦାନ କରିଛି । କେତେବେଳେ ତାହା 'ବ୍ରହ୍ମାନନ୍ଦ ସହୋଦର' ତ କେତେବେଳେ ତାହା 'ରସୋବୈସଃ' । ଅବଶ୍ୟ ଏହା ରସୋପଲବ୍ଧିର ଚରମ ପର୍ଯ୍ୟାୟ । ସିଦ୍ଧିର ପର୍ଯ୍ୟାୟ ମାତ୍ର ସହୃଦୟ ପାଇଁ, ସାମାଜିକ ପାଇଁ ରସର ସ୍ଥିତି ସ୍ୱତନ୍ତ୍ର । ନାଟକରେ, କାବ୍ୟରେ, ସାହିତ୍ୟରେ ରସର ଯେଉଁ ଚିତ୍ର ସୃଷ୍ଟି ହୁଏ ତାହା ବ୍ୟକ୍ତିର ହୃଦୟକୁ, ଭାବକୁ ରସସିକ୍ତ କରେ । ପାର୍ଥିବ ଜୀବନରେ ଏହା ଏକ ଊର୍ଦ୍ଧ୍ୱତର ଅଲୌକିକ ଉପଲବ୍ଧି ।

ସଂସ୍କୃତ ସାହିତ୍ୟାଦର୍ଶକୁ ଆଧାର କରି ଅଧ୍ୟାପକ ନାୟକ ରସର ଚର୍ଚ୍ଚା କରିଛନ୍ତି । ସଂସ୍କୃତରେ ଯାହା ଥିଲା କଠିନ ଓ ଅବୋଧ ବା ଦୁର୍ବୋଧ ସେ ତାକୁ ସରଳ ଓ ସାବଲୀଳ ଭାବରେ ବୁଝାଇଛନ୍ତି । ଆଚାର୍ଯ୍ୟ ଭରତଙ୍କ ପ୍ରସିଦ୍ଧ ଉକ୍ତି - 'ଯଥା 'ବୀଜାଦ୍ ଭବେତ୍ ବୃକ୍ଷୋ ...' ଶ୍ଳୋକକୁ ଉଦ୍ଧାର କରି ଅନ୍ୟମାନଙ୍କ ଭଳି ରସରେ ଶ୍ରେଷ୍ଠତ୍ୱ ଦର୍ଶାଇଛନ୍ତି । କାବ୍ୟ ରସହୀନ ହେଲେ ପ୍ରାଣଶକ୍ତି ହରାଇଥାଏ ବୋଲି କହିଛନ୍ତି ।

ଭରତଙ୍କ ପ୍ରସିଦ୍ଧ ଉକ୍ତି- 'ବିଭାବ ଅନୁଭାବ ବ୍ୟଭିଚାରୀ ସଂଯୋଗାତ୍ ରସ ନିଷ୍ପତ୍ତି, ବା ସ୍ଥାୟୀଭାବ, ବିଭାବ, ଅନୁଭାବ, ବ୍ୟଭିଚାରୀ ଭାବର ସଂଯୋଗରେ ରସ ଅଭିବ୍ୟକ୍ତି ଲାଭ କରେ । 'ସଂଯୋଗ' ଓ 'ନିଷ୍ପତ୍ତି' ଏହି ଦୁଇ ଶବ୍ଦକୁ ଆଧାର କରି ଆଲଙ୍କାରିକମାନଙ୍କ ମଧ୍ୟରେ ନାନା ବିତର୍କ ସୃଷ୍ଟି ହୋଇଛି । ଫଳରେ ଚାରିଟି ମତବାଦ ପ୍ରମୁଖ ସ୍ଥାନ ହାସଲ କରିଛି । ଲୋଲ୍ଲଟଙ୍କ 'ଉତ୍ପତ୍ତିବାଦ', ଶଙ୍କୁଙ୍କ 'ଅନୁମିତିବାଦ' ଭଟ୍ଟନାୟକଙ୍କ 'ଭୁକ୍ତିବାଦ' ଓ ଅଭିନବଗୁପ୍ତଙ୍କ ' ଅଭିବ୍ୟକ୍ତିବାଦ' - ଗୋଟିଏ ଗୋଟିଏ ବାଦ ପାଇଁ ଗୋଟିଏ ଗୋଟିଏ ଦାର୍ଶନିକ ବିଚାର । ଲେଖକ ସେହି ଦାର୍ଶନିକ ଚର୍ଚ୍ଚାରୁ ବିରତ ହୋଇଛନ୍ତି । ସାଧାରଣ ପାଠକଙ୍କ ପାଇଁ ଏସବୁ ଜଟିଳ ବ୍ୟାପାର । ସମସ୍ତଙ୍କ ପାଇଁ ଏକ ସରଳ ସୂତ୍ର ସେ ଖୋଜିଛନ୍ତି ।

ସ୍ଥାୟୀ ଭାବ, ବିଭାବ, ଅନୁଭାବ ଓ ବ୍ୟଭିଚାରୀଭାବ ସେମାନଙ୍କର ପରିଭାଷା, ପ୍ରକାରଭେଦ ଓ ବ୍ୟାଖ୍ୟା- ଏଠାରେ ପ୍ରସଙ୍ଗକ୍ରମେ ବର୍ଣ୍ଣିତ ହୋଇଛି । ଲେଖକ ସୁପ୍ରଚଳିତ ମତଗୁଡ଼ିକୁ ଗ୍ରହଣ କରି ନେଇଛନ୍ତି । କେତୋଟି ଅଳଂକାର ଶାସ୍ତ୍ର, ତାର ପ୍ରଣେତା, ରସ ନିର୍ଦ୍ଦେଶ, ସ୍ଥାୟୀଭାବ - ଭିତ୍ତିରେ ସେ ଏକ ଦୀର୍ଘ ବିବରଣୀ ପ୍ରଦାନ କରିଛନ୍ତି । ସାଧାରଣତଃ ରସର ସଂଖ୍ୟା ନଅ । ପ୍ରଦତ୍ତ ବିବରଣୀ ଅନୁସାରେ ତାର ସଂଖ୍ୟା ଅଧିକ । ଏଥିରେ ଭକ୍ତି, ବତ୍ସଳ, ପ୍ରେୟାନ, ଉଦାତ୍ତ, ଉଦ୍ଧତ, ସ୍ନେହ ଇତ୍ୟାଦି ନୂତନ ନୂତନ ରସର ଉଲ୍ଲେଖ ଅଛି ।

ଶୃଙ୍ଗାର ରସ - ରସମାନଙ୍କ ମଧ୍ୟରେ ଶ୍ରେଷ୍ଠରସ, ପ୍ରଧାନ ରସ, ଆଦି ରସ । ମଧୁର ରସ ହେଉଛି - ଶୃଙ୍ଗାର । ଏହାର ସ୍ଥାୟୀ ଭାବ ହେଉଛି ରତି । ନାରୀ ଓ ପୁରୁଷ / ନାୟିକା ଓ ନାୟକ - ଆଲମ୍ବନ ବିଭାବ । ଚନ୍ଦ୍ର-ଚକୋର, ନିର୍ଜ୍ଜନ ସ୍ଥାନ, ଉପବନ, ବସନ୍ତ ଇତ୍ୟାଦି ଏହି ରସର ଉଦ୍ଦୀପନ ବିଭାବ । ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ ଇତ୍ୟାଦି ଏହାର ଆଠଗୋଟି ଅନୁଭାବ । ସ୍ୱପ୍ନ, ମୋହ, ଆଳସ୍ୟ, ଉନ୍ମାଦ, ବିଷାଦ ଇତ୍ୟାଦି ଏହାର ତେତିଶ ଗୋଟି ବ୍ୟଭିଚାରୀ ଭାବ ।

ଶୃଙ୍ଗାର ରସ-ଦୁଇ ଭାଗରେ ବିଭକ୍ତ ପୁଣି ସମ୍ଭୋଗ ଓ ବିପ୍ରଲମ୍ଭ । ସଂଭୋଗ ଚାରି ପ୍ରକାର । ମିତା, ସଙ୍କର, ସଂପନ୍ନ, ସମୃଦ୍ଧିମାନ । ବିପ୍ରଲମ୍ଭ ଚାରି ପ୍ରକାର । ପୂର୍ବରାଗ, ମାନ, ପ୍ରବାସ, କରୁଣ । ପୂର୍ବରାଗ ତିନି ପ୍ରକାର- ନୀଳି, କୁସୁମ୍ଭ, ମଞ୍ଜିଷ୍ଠା । ପୂର୍ବରାଗ ବିପ୍ରଲମ୍ଭରେ କାମର ଦଶ ଦଶା - ଅଭିଳାଷ, ଚିନ୍ତା, ସ୍ମୃତି, ଗୁଣ, କଥନ, ଉଦ୍‌ବେଦ, ସଂପ୍ରଳାପ, ଉନ୍ମାଦ, ବ୍ୟାଧି, ଜଡ଼ତା ଓ ମୃତ୍ୟୁ । ପ୍ରବାସ ତିନି ପ୍ରକାର- ଭୂତ, ଭବିଷ୍ୟ, ବର୍ତ୍ତମାନ ।

ଶୃଙ୍ଗାର ରସରେ ସମ୍ଭୋଗ ଅପେକ୍ଷା ବିପ୍ରଲମ୍ଭର ପ୍ରାଧାନ୍ୟ ସ୍ୱୀକୃତ । ଆଳଂକାରିକମାନେ ବିପ୍ରଲମ୍ଭର ନାନା ଭେଦ ପ୍ରଦାନ କରିଛନ୍ତି । ବୈଷ୍ଣବ ଶାସ୍ତ୍ରରେ ଆତ୍ମେନ୍ଦ୍ରିୟ ପ୍ରୀତି ବାଞ୍ଛାକୁ କାମ ଓ କୃଷ୍ଣେନ୍ଦ୍ରିୟ ପ୍ରୀତି ବାଞ୍ଛାକୁ ପ୍ରେମ ବୋଲି କୁହାଯାଇଛି । ନାୟିକା ଭେଦ ଓ ନାୟକ ଭେଦ ଶୃଙ୍ଗାର ବିଚାର କ୍ଷେତ୍ରରେ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । ସଂଭୋଗ ଓ ବିପ୍ରଲମ୍ଭର ସୂକ୍ଷ୍ମାତିସୂକ୍ଷ୍ମ ବିଭାଗକରଣ ପ୍ରଦାନ କରିବା ଏକ ସ୍ୱତନ୍ତ୍ର ଅଧ୍ୟୟନର ବିଷୟ । ସୀମିତ ପରିସର ମଧ୍ୟରେ ସେସବୁ ସମ୍ଭବ ନୁହେଁ । ଲେଖକ ତେଣୁ ସେସବୁକୁ ପରିହାର କରିବା ସ୍ୱାଭାବିକ ।

ଶୃଙ୍ଗାର ପରେ ହାସ୍ୟ, କରୁଣ, ରୌଦ୍ର, ବୀର, ଭୟାନକ, ବୀଭତ୍ସ, ଅଦ୍‌ଭୂତ, ଶାନ୍ତ ଓ ବାତ୍ସଲ୍ୟ ରସର ପରିଭାଷା ଓ ଉଦାହରଣମାନ ପ୍ରଦାନ କରାଯାଇଛି । ଅଧିକାଂଶ

ଉଦାହରଣ ରାଧାନାଥ, ଫକୀରମୋହନ ଓ ଗଙ୍ଗାଧରଙ୍କ ରଚନାରୁ ସଂଗୃହୀତ ଏବଂ ସୁବୋଧ । କେବଳ ଶୃଙ୍ଗାର ରସର ଉଦାହରଣରେ ଭଂଜଙ୍କ କାବ୍ୟାଂଶ କିଞ୍ଚିତ କଠିନ ।

ସମୟ କୋଳରେ ମଣିଷ ହସେ, କାନ୍ଦେ, ଆନନ୍ଦରେ ଗଡ଼େ, ବିଷାଦରେ ବୁଡ଼େ । ଏହାହିଁ ଜୀବନର ଗତି, ରୀତି ଓ ପ୍ରବୃତ୍ତି । ହାସ୍ୟ, କରୁଣ, ଶୃଙ୍ଗାର - ସବୁ ତାର ଚେତନା ସହ ଓତଃପ୍ରୋତ ଭାବରେ ଜଡ଼ିତ । ଭାରତୀୟ ଆଳଂକାରିକଗଣ ମଣିଷର ପ୍ରବୃତ୍ତିଗୁଡ଼ିକୁ ରସର ମାନ୍ୟତାରେ ମଣ୍ଡିତ କରି ଏକ ଶୃଙ୍ଖଳାର ସଂଧାନ କରିଛନ୍ତି । କାଳକ୍ରମେ ତା'ର ପରିମାର୍ଜନ, ପରିବର୍ତ୍ତନ ଘଟିଛି । ନାନା ତତ୍ତ୍ୱ, ନାନା ବିଚାର, ନାନା ସଂଯୋଜନ, ନାନା ପ୍ରୟୋଜନ ଫଳରେ ରସତତ୍ତ୍ୱ ମହାଦ୍ରୁମରେ ପରିଣତ ହୋଇଛି । କେତେ ଦାର୍ଶନିକ, କେତେ ସଂସ୍କାରକ, କେତେ ବିଚାରକ, କେତେ ନାଟ୍ୟକାର, କେତେ କାବ୍ୟକାର, କେତେ ଇତିହାସକାର ସହଯୋଗର ହାତ ବଢ଼ାଇଛନ୍ତି । ଯେଉଁମାନେ କୃତିତ୍ୱ ଅର୍ଜ୍ଜନ କଲେ, ସେମାନେ ସମାଜର / କାଳର ସ୍ୱୀକୃତି ପାଇଲେ ।

ଅଧ୍ୟାପକ କ୍ଷେତ୍ରବାସୀ ନାୟକ ଏକ କାଳର ଆହ୍ୱାନକୁ ଭେଟିଥିଲେ । ଅକ୍ଳାନ୍ତ ପରିଶ୍ରମ ଓ ଅଶେଷ ନିଷ୍ଠା ଫଳରେ ସଫଳତାର ଶିଖରକୁ ଯାଇଥିଲେ । ସ୍ୱଳ୍ପ ଜୀବନ କାଳ ମଧ୍ୟରେ କେତେ ଗ୍ରନ୍ଥାବଳୀ, କେତେ ପଦ୍ୟାବଳୀ, କେତେ ପରୀକ୍ଷା, କେତେ ସମୀକ୍ଷା ଆମ ପାଇଁ ଛାଡ଼ିଦେଇଗଲେ । 'ଭାରତୀୟ କାବ୍ୟତତ୍ତ୍ୱ' - ତାଙ୍କ ସାମଗ୍ରିକ ଉଦ୍ୟମର କ୍ଷଣ ଅଂଶ । ପ୍ରାଚ୍ୟ ଓ ପାଶ୍ଚାତ୍ୟ କାବ୍ୟତତ୍ତ୍ୱ ଯେତେବେଳେ ଥିଲା ଏକ ସୁଦୂର କଳ୍ପନା, ସେତେବେଳେ ସେଥିରେ ମନୋନିବେଶ କରିଥିଲେ ଏବଂ ଘୋଷଣା କରିଥିଲେ - "ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟରେ ଏହି ରସ ହୁଏତ ଭିନ୍ନ ଭିନ୍ନ ଅର୍ଥ ଭଙ୍ଗୀରେ କାବ୍ୟର ପ୍ରାଣରୂପେ ପ୍ରତିଷ୍ଠିତ । ପାଶ୍ଚାତ୍ୟ ସାହିତ୍ୟରେ ଥିବା କାବ୍ୟ ସୌନ୍ଦର୍ଯ୍ୟ ଓ ପ୍ରାଚ୍ୟ ସାହିତ୍ୟିକ ସଂବିଧାନରେ ରସ ପ୍ରକାଶ ଉଭୟ ଏକ ଆସନର ଅଧିକାରୀ ।" ଏହା ଯେତିକି ତାତ୍ପର୍ଯ୍ୟପୂର୍ଣ୍ଣ ସେତିକି ଗୁରୁତ୍ୱପୂର୍ଣ୍ଣ ।



# ଦିବ୍ୟସତ୍ୟ ଓ ଭାରତୀୟ କାବ୍ୟତତ୍ତ୍ୱ

ଡକ୍ଟର ସିପ୍ରା ମଲ୍ଲିକ୍

ଋଗ୍‌ବେଦ ଉଦ୍‌ଘୋଷିତ କରେ -

"ମୟା ସୋ ଅନ୍ନମତ୍ତି, ଯୋ ବିପଶ୍ୟତି,

ଯଃ ପ୍ରାଣିତି, ଯ ଇ ଶୃଣୋତ୍ୟୁକମ୍,

ଅମନ୍ତବୋ ମାଂ ଚ ଉପକ୍ଷିୟନ୍ତି,

ଶ୍ରୁଧି ଶ୍ରୁତ ଶ୍ରଦ୍ଧିବଂ ତେ ବଦାମି ।" (ବାକ୍‌ସୂକ୍ତ)

"ଯେ ମୋତେ ଅନ୍ନ ପରି ଗ୍ରହଣ କରେ, ମୋ ଦ୍ୱାରା ଯେ ଦର୍ଶନ କରେ, ମୋତେ ହିଁ ନିଃଶ୍ୱାସ ରୂପେ ଗ୍ରହଣ କରେ, ମୋ ଦ୍ୱାରା ଶ୍ରବଣ କରେ ସେ ଅକ୍ଷୟତ୍ୱ, ଅବିନଶ୍ୱରତାକୁ ପ୍ରାପ୍ତ କରେ । ଶୁଣ, ଯଦି ପାରୁଛ ଧାରଣ କର । ଏହା ହିଁ ଦିବ୍ୟ ସତ୍ୟ ।"

ବାକ୍ ତତ୍ତ୍ୱର ପ୍ରଥମ ଉନ୍ମେଷ ମନୁଷ୍ୟର ଇଚ୍ଛାଶକ୍ତିର ପ୍ରଥମ ବିସ୍ଫୋଟ, ଅନ୍ତଃକରଣର ଉଲ୍ଲାସ, ଇଚ୍ଛାଶକ୍ତି ଓ କ୍ରିୟାଶକ୍ତି ମାଧ୍ୟମରେ ମନୁଷ୍ୟର ଅନ୍ତର୍ନିହିତ ବିଶୁଦ୍ଧ ଚୈତନ୍ୟର ଅଭିବ୍ୟକ୍ତି ଘଟେ । ଚୈତନ୍ୟର ଏହି ଅଭିବ୍ୟକ୍ତିର ସୀମାହୀନ ବ୍ୟାକୁଳତା ହିଁ ଲାଳିତ୍ୟ ତତ୍ତ୍ୱର ମୂଳ ଉତ୍ସ । ଏହି ଉତ୍ସରୁ ଉତ୍‌ସାରିତ କାବ୍ୟ । 'ସତ୍ୟ' ଏହାର ସାଧ୍ୟ, ସୌନ୍ଦର୍ଯ୍ୟ ଏହାର ସାଧନ । 'ସତ୍ୟ' ନିଜର ଏକତ୍ୱରେ ଅସୀମ, ଅଖଣ୍ଡ; ସୌନ୍ଦର୍ଯ୍ୟ ନିଜର ବିବିଧତ୍ୱରେ ଅନେକତ୍ୱରେ ଅନନ୍ତ, ଅପରିସୀମ । ଏହି ଅଖଣ୍ଡକୁ ଖଣ୍ଡରେ, ଅନଶ୍ୱରକୁ ନଶ୍ୱରରେ, ଅମୃତକୁ ମର୍ତ୍ତ୍ୟରେ ଅଭିବ୍ୟକ୍ତ କରି ଆସ୍ୱାଦନ କରିବାର ମାଧ୍ୟମ ହିଁ ଆନନ୍ଦ । ସଘନ ଘନ ଆନନ୍ଦ ହିଁ ରସ । ତୈତ୍ତିରୀୟ କହେ 'ରସଂ ହ୍ୟେବାୟଂ ଲବ୍‌ଧ୍ୱା ଆନନ୍ଦୀ ଭବତି ।' ଆନନ୍ଦରୁ ଏ ଜଗତ ସୃଷ୍ଟି, ଆନନ୍ଦରେ ପରିବର୍ଦ୍ଧିତ, ଆନନ୍ଦରେ ହିଁ ସୃଷ୍ଟିର ଲୟ । ଆନନ୍ଦରେ ହିଁ ସ୍ଥିତି, ଆନନ୍ଦରେ ଗତିଶୀଳ ଏ ଜୀବନ ।

ଜୀବନକୁ ଗତିଶୀଳତା ପ୍ରଦାନ କରିବା ଦୁଇ ଧାରାରେ ସମ୍ଭବ । ଏକରେ ବାହ୍ୟ ଅନୁଶାସନ ଅନୁସାରେ ଗତି କରିବା, ଅନ୍ୟଟି ହେଲା ଅନ୍ତଃଜଗତର ପ୍ରେରଣା ଅନୁସାରେ ଜୀବନରେ ଏପରି ସ୍ଫୂର୍ତ୍ତିଜାତ କରିବା ଯାହାଦ୍ୱାରା ଜୀବନ ବିବିଧ ଭାବରେ ପରିପୂର୍ଣ୍ଣ ହେବ, ଯାହାଦ୍ୱାରା ଗତିଶୀଳତା ଅନିବାର୍ଯ୍ୟ ହୋଇପଡ଼ିବ । ଅନ୍ତଃଜଗତର ପ୍ରେରଣା ଅନୁସାରେ ଗତିଶୀଳ ସାଧକର ସ୍ଥିତି ସେହି 'ବୀଜ' ପରି ଯେ 'ଭୂମି'କୁ ରଙ୍ଗ ରୂପ ରସରେ ବ୍ୟକ୍ତ କରିବା ପାଇଁ ସ୍ୱୟଂ ମାଟିର ଅନ୍ଧକାରରେ ଲୀନ ହୋଇଯାଏ । ନିଜକୁ

ଛିନ୍ନ କରେ, ସ୍ଫୁଟିତ ହୁଏ । ଭେଦ କରେ ନିଜର ହୃଦୟ । ବାସ୍ତବରେ କବି ନିଜର ଆତ୍ମକାହାଣୀ ହିଁ ବ୍ୟକ୍ତ କରେ ଶବ୍ଦ ମାଧ୍ୟମରେ । 'କଳା' କେବଳ ବୌଦ୍ଧିକ ଚିନ୍ତାର ପରିଣାମ ନୁହେଁ, ଏହା କବିର ନିଜସ୍ୱ ଅନୁଭୂତି, ହୃଦୟର କଥା, ଯାହା ସେ ପାଠକ ପାଖରେ ବ୍ୟକ୍ତ କରେ ଏକ ବିଶିଷ୍ଟ ଶୈଳୀରେ । କଣ୍ଟାରେ ବିନ୍ଧ କରି କଣ୍ଟାରେ ବିନ୍ଧ ହେବାର ପୀଡ଼ା ଦିଏ ଦୁନିଆ । ହେଲେ କଣ୍ଟାରେ ବିଦ୍ଧ ନ ହୋଇ କଣ୍ଟାରେ ବିଦ୍ଧ ହେବାର ତୀବ୍ର-ମଧୁର ଅନୁଭୂତିରେ ପାଠକର ହୃଦୟକୁ ରସସିକ୍ତ କରି ତୋଳିବା କବି ପକ୍ଷେ ସମ୍ଭବ । ବୌଦ୍ଧିକ ନିଷ୍କର୍ଷ ପାଠକ ଭିତରେ ନିଜର ପ୍ରତିବିମ୍ବ ଖୋଜେ, ପରନ୍ତୁ ଅନୁଭୂତି ପାଠକର ହୃଦୟ ସହ ତାଦାତ୍ମ୍ୟ ହୋଇ ଆନନ୍ଦର ଆସ୍ୱାଦନ କରାଏ ।

ଡକ୍ଟର କ୍ଷେତ୍ରବାସୀ ନାୟକ ବୌଦ୍ଧିକ ଚିନ୍ତନ ଜଗତକୁ ଗଭୀର ଭାବେ ସ୍ପର୍ଶ କରିଛନ୍ତି, ସ୍ୱୀକାର କରିଛନ୍ତି ଏବଂ ପାଠକ ନିକଟରେ ନିଜର ଅନୁଭୂତିର ମନୋରମ ମର୍ମର ସହ ବ୍ୟକ୍ତ କରିଛନ୍ତି, ଅନ୍ତରର ଅବବୋଧକୁ ରୂପାୟିତ କରିଛନ୍ତି ତାଙ୍କର ପୁସ୍ତକରେ । 'ଭାରତୀୟ କାବ୍ୟତତ୍ତ୍ୱ' ପୁସ୍ତକଟିରେ ପ୍ରାଚୀନ ଆଚାର୍ଯ୍ୟମାନଙ୍କର ଜ୍ଞାନାନୁଭୂତିର ବିଶାଳ କାନ୍‌ଭାସ ଉପରେ କ୍ଷେତ୍ରବାସୀଙ୍କର କାବ୍ୟିକ ସତ୍ତାର ଛାୟାଚିତ୍ର ଜୀବନ୍ୟାସ ପାଇଛି, ଯେଉଁଥିରେ ବୁଦ୍ଧିର ତର୍କ ଶୃଙ୍ଖଳା ଅପେକ୍ଷା 'ଭାବ' ତଥା ଜୀବନାନୁଭୂତିର ସ୍ପନ୍ଦନ ଅଧିକ ସ୍ପନ୍ଦିତ । 'ଜ୍ଞାନ' କୁ 'କଳା' ର ସିଂହାସନରେ ଅଭିଷିକ୍ତ କରିଛନ୍ତି କ୍ଷେତ୍ରବାସୀ ।

ଭାରତୀୟ ମନୀଷାର ଅଖଣ୍ଡ ପ୍ରବାହ, କାବ୍ୟତତ୍ତ୍ୱର ସମୃଦ୍ଧ ପରମ୍ପରା ଯାହା ଭରତଙ୍କ ଠାରୁ ଆରମ୍ଭ ହୋଇ ଅଦ୍ୟାବଧି ଜନମାନସକୁ ଋଦ୍ଧିମନ୍ତ କରିଛି, ମୁଖ୍ୟତଃ କ୍ଷେତ୍ରବାସୀ ନାୟକଙ୍କ ପୁସ୍ତକ ସେହି ମୂଳ ତତ୍ତ୍ୱ ଉପରେ ପର୍ଯ୍ୟବସିତ । ରୀତି, ଗୁଣ, ଧ୍ୱନି, ବକ୍ରୋକ୍ତି ଓ ଔଚିତ୍ୟ-ଏହି ପଞ୍ଚତତ୍ତ୍ୱ ଉପରେ କାବ୍ୟ ପ୍ରପଞ୍ଚ ଆଧାରିତ । ଏହି ତତ୍ତ୍ୱଗୁଡ଼ିକର ମନ୍ଥନରୁ ନିର୍ଗତ ନବନୀତ ହିଁ 'ରସ' । ଡଃ କ୍ଷେତ୍ରବାସୀ ନାୟକଙ୍କର ପୁସ୍ତକଟିର ପ୍ରସଙ୍ଗ ମଧ୍ୟ ଏହି କ୍ରମ ଅନୁସାରେ ନିର୍ଦ୍ଧାରିତ ହୋଇଛି ।

ପ୍ରଥମ ପ୍ରସଙ୍ଗ ଭାବେସେ 'କାବ୍ୟତତ୍ତ୍ୱ' ର ନିର୍ଦ୍ଧାରଣ କରିଛନ୍ତି । କାବ୍ୟର ପରିଭାଷା, ସ୍ୱରୂପ, କାବ୍ୟୋତ୍ପତ୍ତିର କାରଣ, କାବ୍ୟ ଭାଷା, କାବ୍ୟ ସତ୍ୟ ଓ ଜୀବନ ସତ୍ୟ, କାବ୍ୟ ସୃଷ୍ଟିର ପ୍ରୟୋଜନ ଇତ୍ୟାଦି କ୍ରମାନ୍ୱୟରେ ପ୍ରଥମ ପ୍ରସଙ୍ଗ 'କାବ୍ୟ' ଓ କାବ୍ୟତତ୍ତ୍ୱ'ରେ ନିରୂପିତ । ଦ୍ୱିତୀୟଟି 'ରସ' ପ୍ରସଙ୍ଗ । ଏଥିରେ 'ରସ' ର ସଂଜ୍ଞା, ରସ ଅଭିବ୍ୟକ୍ତି, 'ରସ' ସ୍ୱରୂପ, ରସାଭିବ୍ୟକ୍ତିର ବିଶ୍ଳେଷଣ, ବିଭାବ, ଅନୁଭାବ, ବ୍ୟଭିଚାରି ଭାବ, ରସଭେଦ, ରସର ବ୍ୟାପକତା ଇତ୍ୟାଦିର ବ୍ୟାଖ୍ୟା ରହିଛି । ତୃତୀୟ, ଚତୁର୍ଥ,

ପଞ୍ଚମ, ଷଷ୍ଠ ଓ ସପ୍ତମ ଅଧ୍ୟାୟ କ୍ରମାନୁସାରେ ରୀତି, ଗୁଣ, ଧ୍ୱନି, ବକ୍ରୋକ୍ତି, ଔଚିତ୍ୟ ପାଇଁ ଉତ୍ସର୍ଗୀକୃତ । ବିଚାରଧାରା ପ୍ରସ୍ତୁତ କରିବା ସମୟରେ ପ୍ରାଚ୍ୟ ଚିନ୍ତନ ଧାରା ସହ ପାଶ୍ଚାତ୍ୟ ମତବାଦର ଉପସ୍ଥାପନା କରିଛନ୍ତି ଡକ୍ଟର ନାୟକ । ପ୍ରଚଳିତ ଧାରଣା ରହିଛି ଭାରତ ଆଧ୍ୟାତ୍ମିକବାଦୀ ଏବଂ ପଶ୍ଚିମ ଭୌତିକବାଦୀ । ଭାରତ ଓ ପଶ୍ଚିମ ଦର୍ଶନର ତୁଳନାତ୍ମକ ଅଧ୍ୟୟନ ଦେଖିଲେ ଏହି ଭାବଧାରା ଖଣ୍ଡିତ ହୋଇଯାଏ । ଅଧ୍ୟାତ୍ମବାଦ ଉପରେ ଭାରତର ସାର୍ବଭୌମ ଅଧିକାର ନାହିଁ, ନା ଭୌତିକବାଦ ଉପରେ ୟୁରୋପର । ପ୍ଲାଟୋଙ୍କଠାରୁ ଆରମ୍ଭ କରି ହେଗଲ ପର୍ଯ୍ୟନ୍ତ ଅନେକ ପ୍ରମୁଖ ପାଶ୍ଚାତ୍ୟ ଦାର୍ଶନିକ ସିଦ୍ଧ କରିବାର ପ୍ରଯତ୍ନ କରିଛନ୍ତି ସୌନ୍ଦର୍ଯ୍ୟ ବସ୍ତୁଗତ ନୁହେଁ । ଏହା ସୌନ୍ଦର୍ଯ୍ୟର ପ୍ରତିବିମ୍ବନ ମାତ୍ର, କଳା ଏହି ପ୍ରତିବିମ୍ବନର ପ୍ରତିବିମ୍ବନ । ଲେଖକ 'କାବ୍ୟତତ୍ତ୍ୱ'ର ସମସ୍ତ ମୌଳିକ ବିଷୟ ଉପରେ ଆଲୋକପାତ କରିଛନ୍ତି ଅତି ମନୋମୁଗ୍ଧକର ଶୈଳୀରେ ।

କାବ୍ୟତତ୍ତ୍ୱ ବ୍ୟାଖ୍ୟା କରିବାକୁ ଯାଇ ସର୍ବପ୍ରଥମେ ନିର୍ଦ୍ଧାରଣ କରିଛନ୍ତି କାବ୍ୟର ପରିଭାଷା - 'କାବ୍ୟ କବି ଚିତ୍ତର ରସମୟ ଅଭିବ୍ୟକ୍ତି" । ମାନବ ଜୀବନ ଓ ବିଶ୍ୱ ପ୍ରକୃତି ସହ କବିର ନିବିଡ଼ ସମ୍ବନ୍ଧରୁ ଉପଲବ୍ଧ ଅନୁଭବର ନିର୍ମଳ ପ୍ରକାଶ ହିଁ କାବ୍ୟ । ମନୁଷ୍ୟ ସ୍ୱୟଂ ଏକ ସଜୀବ କବିତା, କବିର କାବ୍ୟ କେବଳ ତା'ର ଶବ୍ଦଚିତ୍ର ମାତ୍ର । କାବ୍ୟ କେବଳ ରମଣୀୟାର୍ଥ ପ୍ରତିପାଦକ ନୁହେଁ, ଶବ୍ଦ ଅର୍ଥର ସଂଯୋଗ ନୁହେଁ, ରସାତ୍ମକ ବାକ୍ୟ ନୁହେଁ, କାବ୍ୟ କବି ଚିତ୍ତର, ଆତ୍ମିକ ସତ୍ତାର ଏକ ରସମୟ ପରିପ୍ରକାଶ । କବିର ଜୀବନ ଦର୍ଶନ, ଜୀବନବ୍ୟାପି ଦୃଷ୍ଟିକୋଣ, ଆନନ୍ଦ-ଅଶ୍ରୁ, ମଧୁର-କଟୁ, ସୁଖ-ଦୁଃଖ ଅନୁଭବର ପ୍ରତିବିମ୍ବ ହିଁ କାବ୍ୟ । କାବ୍ୟର ପରିଧି ବାହ୍ୟ ଓ ଅନ୍ତଃଜଗତ ଉଭୟରେ ପରିବ୍ୟାପ୍ତ । ତେଣୁ ବିଶ୍ୱ ପ୍ରକୃତି ଓ ମାନବ ଜୀବନ-ଏ ଉଭୟର ପ୍ରତ୍ୟକ୍ଷ, ଯଥାର୍ଥ ଏବଂ ନିବିଡ଼ ପ୍ରତିଫଳନ ହିଁ କାବ୍ୟ । ବ୍ୟକ୍ତି ଓ ସମଷ୍ଟି; ବ୍ୟକ୍ତି ସତ୍ତା ଓ ବିଶ୍ୱ ସତ୍ତା ସମାନ । ବ୍ୟକ୍ତି ଜୀବନର ହର୍ଷ-ଶୋକ, ଆଶା-ନିରାଶାର ସଂଖ୍ୟାତୀତ ବିବିଧତାକୁ ସ୍ୱୀକୃତି ଦେବା ପାଇଁ କଳାର ସୃଜନ, କାବ୍ୟର ପ୍ରସୂତି । କାବ୍ୟ ଉତ୍ପତ୍ତିର ଅବସ୍ଥା ସମାଧି, ଅର୍ଥାତ୍ ଏକାଗ୍ରତାର ତୀବ୍ର ତନ୍ମୟତା, ଭାବସ୍ଥିତ ଅବସ୍ଥା, ପ୍ରାଣରେ ସତ୍ତ୍ୱଗୁଣର ପ୍ରାବଲ୍ୟ ହେତୁ ଅନ୍ତଃଜଗତ ତରଳାୟିତ ହୁଏ ଏବଂ ଏହି ଭାବାବେଗକୁ ପ୍ରକାଶ କରିବାର ଶକ୍ତି ହିଁ ପ୍ରତିଭା । ସମାଧି ଓ ସାଧନାର ସଂଯୋଗରୁ ସୃଷ୍ଟ ଶକ୍ତି ହିଁ କବି ପ୍ରତିଭା । କବିତ୍ୱ ଶକ୍ତିର ଅନ୍ୟ ଏକ ମୌଳିକ ସହଚର 'ପ୍ରେରଣା' (inspiration) । ଏକ ଆତ୍ମବିସ୍ମୃତ ଅବସ୍ଥା । ଭାବବିଭୋରିତ ଦଶା । ଅସାଧାରଣ ଚିତ୍ତ ଦଶା । ଯାହାକୁ ଲେଖକ "ଦିବ୍ୟ ଉନ୍ମତ୍ତତା" ବୋଲି ବ୍ୟାଖ୍ୟା କରିଛନ୍ତି । କାବ୍ୟ ରଚନା କାଳରେ ଏପରି ସମୟରେ ବେଳେବେଳେ

କବିର ଆବେଗ ଏବଂ ଅନୁଭବର ଭଗ୍ନାଂଶ ସବୁ ହଠାତ୍ ଆସି କେନ୍ଦ୍ରୀଭୂତ ହୁଅନ୍ତି । କବି ଆତ୍ମସୃଷ୍ଟ ଜଗତକୁ ପ୍ରସ୍ଥାନ କରେ । ଆତ୍ମସ୍ଥ ହୁଏ । ଏହା ହିଁ ସମାଧି । କବିତାର ସର୍ଜନା ମୁହୂର୍ତ୍ତକୁ ଅତି ମନୋରମ ଶୈଳୀରେ ଉପସ୍ଥାପନା କରିଛନ୍ତି ଲେଖକ । 'ଆକାଶରୁ ମାଟିକୁ ସ୍ପର୍ଶ କଲା ପର୍ଯ୍ୟନ୍ତ ବିଦ୍ୟୁତ୍‌ରେଖା କେତେ ଦୂରତ୍ୱ ଅତିକ୍ରମ କରେ ତାହା କ'ଣ ଆଖି ଧରି ରଖିପାରେ । କାବ୍ୟ ସ୍ଫୂର୍ତ୍ତି କ୍ଷେତ୍ରରେ ସେହି ବିଦ୍ୟୁତ୍ ପରି ପ୍ରେରଣାର କ୍ରିୟା ।' ପ୍ରତିଭା ଓ ପ୍ରେରଣାର ଆରମ୍ଭ ଲୌକିକ ଅବସ୍ଥାରୁ ଅଲୌକିକ ସ୍ତରକୁ । କବିତା ଏକ ବର୍ଣ୍ଣିଳ ଇନ୍ଦ୍ରଧନୁ ଯାହା ଆକାଶ ଓ ମାଟିକୁ ସଂଯୋଜିତ କରେ ।

ପ୍ରତିଭା ଓ ପ୍ରେରଣା କାବ୍ୟ ସୃଷ୍ଟି ପାଇଁ ଯଥେଷ୍ଟ ନୁହେଁ । ଦ୍ୱନ୍ଦ୍ୱ ଓ ବୈଚିତ୍ର୍ୟ ମଧ୍ୟରେ ଐକ୍ୟର ସନ୍ଧାନ ଦିଏ 'କଳ୍ପନା' । ଡଃ ନାୟକଙ୍କ ଭାଷାରେ 'କଳ୍ପନାର ଯୂଇ ଫୁଲ ସହୃଦୟ ହୃଦୟକୁ ସୁରଭିସିକ୍ତ କରେ' । କଳ୍ପନାର ଅଭିବ୍ୟକ୍ତି ଓ ଆବେଗର ପରିପ୍ଲାବନ ସାହିତ୍ୟର ରମଣୀୟତା ପାଇଁ ଦାୟୀ । 'କଳ୍ପନା' ହିଁ ଭଟ୍ଟନାୟକଙ୍କର "ଭାବନା ବ୍ୟାପାର" । କଳ୍ପନା ହିଁ ଆଣେ ଅନୁଭବରେ ନବୀନତା, ପ୍ରକୃତିକୁ କରେ ସ୍ୱପ୍ନିଳ । ଏହି କଳ୍ପନା ଦ୍ୱାରା ହିଁ ଅମୂର୍ତ୍ତ ହୁଏ ମୂର୍ତ୍ତ, ନିରାକାର ହୁଏ ସାକାର, ଜଡ଼ ହୁଏ ଚେତନ । ଏହା ହିଁ କାବ୍ୟର ଜନ୍ମ ଲଗ୍ନ । କଳ୍ପନା ପିନ୍ଧାଇ ଦିଏ ଝରଣା ପାଦରେ ନୂପୁର, ମେଘ ହାତରେ ବର୍ଷାର ମନ୍ଦ୍ରବୀଣା, ଫୁଲ ଓଠରେ ମୃଦୁହସ ।

ଯଦି 'କଳ୍ପନା' କାବ୍ୟର ଆଧାର ଭୂମି, ତେବେ କାବ୍ୟ ସତ୍ୟ ଓ ଜୀବନ ସତ୍ୟ କ'ଣ ଭିନ୍ନ ? ଏକ ମୌଳିକ ପ୍ରଶ୍ନ ଆସେ ମନକୁ । କାବ୍ୟର ସତ୍ୟ କ'ଣ କେବଳ କଳ୍ପନା ଇନ୍ଦ୍ରଧନୁର ରଙ୍ଗ ବିଭା ? କଳ୍ପନା କେବଳ ନିଛକ ଅବାସ୍ତବତା ନୁହେଁ, ଏହା 'ସତ୍ୟ' ର ସୌନ୍ଦର୍ଯ୍ୟକରଣ ମଧ୍ୟ । 'କଳ୍ପନା ସତ୍ୟ' ର ସଦା ଅନୁଗାମିନୀ । କାବ୍ୟ ସତ୍ୟ, ଅନୁଭୂତି ଓ କଳ୍ପନାର ମିଶ୍ରିତ ରୂପ । କାବ୍ୟ ଜୀବନର ଅନୁକରଣ, ପ୍ରତିରୂପ । ଲେଖକଙ୍କ ବ୍ୟାଖ୍ୟା ଏହିପରି "ନରକରୁ ସ୍ୱର୍ଗ ପର୍ଯ୍ୟନ୍ତ ମାନବାତ୍ମାର ଯେଉଁ ତୀର୍ଥଯାତ୍ରା, ତାର ସକଳ ଭାବଲିପି ଏହି କାବ୍ୟ କଳେବରରେ ମୋହିତ ହୋଇ ରହିଯାଏ । କଦାଚିତ୍ ଏହାର ବିଲୟ ନାହିଁ । ଜୀବନ ଓ କାବ୍ୟ - ନିତ୍ୟ ସମ୍ବନ୍ଧଯୁକ୍ତ । ଭରତଙ୍କ ଅନୁସାରେ 'ଲୋକବୃତ୍ତାନୁକରଣମ୍' ଲୋକ ଜୀବନର ଅନୁକରଣ ହିଁ କଳା । ଲୋକ ବୃତ୍ତିର ପ୍ରତିଫଳନ ହିଁ କାବ୍ୟ ।

ତେବେ ଅନୁକରଣ କ'ଣ ଅବିକଳ ? ଏ ପ୍ରଶ୍ନ ଅତି ପୁରାତନ । ଭରତ ପ୍ରଥମ ଶତକରେ ଏହି ମୌଳିକ ପ୍ରଶ୍ନର ଉତ୍ତର ଦେଇଛନ୍ତି - ଲୋକଧର୍ମୀ ଓ ନାଟ୍ୟଧର୍ମୀ, ଦୁଇଟି ତତ୍ତ୍ୱର ଉପସ୍ଥାପନା ଦ୍ୱାରା । ଲେଖକ ଅତି ମନୋରମ ଶୈଳୀରେ ବ୍ୟାଖ୍ୟାୟିତ

କରିଛନ୍ତି ଏହି ମୌଳିକ ଶଙ୍କାକୁ ' - କାବ୍ୟର ଧର୍ମ ହେଲା ସାଦୃଶ୍ୟର ସଙ୍କେତ ଦର୍ଶାଇ ଭିନ୍ନ ଉପାଦାନରେ ଜୀବନର ସ୍ୱରୂପ ଉଦ୍‌ଘାଟନ କରିବା । ଅତଏବ କାବ୍ୟ ବାସ୍ତବ ଘଟଣାର 'ଯଥାର୍ଥ ଅନୁକରଣ' ନୁହେଁ, 'ସମ୍ଭାବ୍ୟ ଅନୁକରଣ' । ପ୍ରସଙ୍ଗର ଅନୁସଙ୍ଗ ଥାଇ ପ୍ରତୀତିବୋଧର ପ୍ରତ୍ୟୟ ଜନ୍ମିଲେ ସେଇଠି ସୂଚିତ ହୁଏ 'ସଂଭାବ୍ୟତା'ର ପରିଚୟ ।

'ସମ୍ଭବ ଅସମ୍ଭାବ୍ୟତା' ଅପେକ୍ଷା କାବ୍ୟରେ 'ଅସମ୍ଭବ ସଂଭାବ୍ୟତା' ଶ୍ରେୟସ୍କର । ରାଜଶେଖରଙ୍କ 'ପ୍ରତିଭାସ' ତତ୍ତ୍ୱ ହିଁ 'ଅସମ୍ଭବ-ସଂଭାବ୍ୟତା' । ସେଥିପାଇଁ ବେଦନା ବିଧୂରିତ ଅନୁଭବ କାବ୍ୟ ଭୂମିରେ ଆନନ୍ଦ ସଞ୍ଚାରକ ହୋଇଥାଏ । ତମସାତୀରେ ସାଥୀ ବିରହିତ କ୍ରୌଞ୍ଚୀର କରୁଣ କ୍ରନ୍ଦନ ଆଜି ବି ପ୍ରତିଧ୍ୱନିତ ହୁଏ ପ୍ରତ୍ୟେକ ସହୃଦୟର ହୃଦୟରେ ଆଦିକାବ୍ୟ ରୂପରେ । ବିରହୀ ଯକ୍ଷର ବିରହବ୍ୟାକୁଳତା ପ୍ରତ୍ୟେକ ରସିକର ପ୍ରାଣକୁ ରସସିକ୍ତ କରେ ।

ତେବେ କାବ୍ୟ ସର୍ଜନାର ପ୍ରାପ୍ତି କ'ଣ ? ଭରତ, ଭାମହଙ୍କ ଠାରୁ ଆରମ୍ଭ କରି ଜଗନ୍ନାଥ, ରବୀନ୍ଦ୍ରନାଥ, ଶ୍ରୀ ଅରବିନ୍ଦ ପର୍ଯ୍ୟନ୍ତ ସମସ୍ତ ଆଚାର୍ଯ୍ୟଗଣ 'ରସାନୁଭୂତି'କୁ କାବ୍ୟଭୋଗର ପ୍ରାପ୍ତି ବୋଲି ସ୍ୱୀକାର କରିଛନ୍ତି । ଲେଖକଙ୍କର ଉତ୍ତର ହେଉଛି - "ଆଖି ଦେଖା ଉପାଦାନକୁ 'ଭାବ ରସରେ ଜାରି ଦେଲେ ଅବଶେଷ ଯାହା ରହେ ତାହା ହିଁ ଅନ୍ତରର ଐଶ୍ୱର୍ଯ୍ୟ, ଏହାର ପ୍ରାପ୍ତି ଲାଗି ଆନନ୍ଦ-ସ୍ପନ୍ଦିତ ମନର ସଂଯୋଗ, ଆନନ୍ଦର ଐଶ୍ୱର୍ଯ୍ୟ ଭୋଗ ହିଁ କାବ୍ୟର ଶ୍ରେଷ୍ଠ ଫଳ ।'

ଆନନ୍ଦର ଐଶ୍ୱର୍ଯ୍ୟପ୍ରାପ୍ତି- ରସ- ଆସ୍ୱାଦନର ସ୍ଥିତି ପ୍ରାଚ୍ୟ ଆଚାର୍ଯ୍ୟମାନଙ୍କର 'ସାଧାରଣୀକରଣ' ଅବସ୍ଥା, ଯାହାକୁ ପାଶ୍ଚାତ୍ୟ ଶାସ୍ତ୍ର କହେ Transcendental aesthetics. । 'ସାଧାରଣୀକରଣ' ଏକ ସାଧାରଣ ପ୍ରକ୍ରିୟା ନୁହେଁ, ଏହା ଏକ ଅଲୌକିକ, ଅତୀନ୍ଦ୍ରିୟ ଅବସ୍ଥା, ଯାହା ସମଗ୍ରତାର ବୋଧ କରାଏ । ଯଦି ସମଗ୍ରତାରବୋଧ ଓ ସତ୍ୟର ଉପଲବ୍ଧି ନ ହୁଏ, ତେବେ ସହୃଦୟ 'ବ୍ରହ୍ମର ଅନୁଭବ ପାଇପାରେ ନାହିଁ । ଯେ ବ୍ରହ୍ମକୁ ଜାଣେନା ଏପରି ଦାର୍ଶନିକର ଦର୍ଶନରେ, ଧାର୍ମିକର ଧର୍ମାଚରଣରେ, ବୈଜ୍ଞାନିକର ବିଜ୍ଞାନରେ, କଳାକାରର କଳାରେ,କବିର କାବ୍ୟରେ 'ରସ' ପ୍ରକଟ ହୁଏ ନାହିଁ । କାରଣ 'ରସୋ ବୈଃସଃ' । ରସ ହିଁ ସ୍ୱୟଂ ବ୍ରହ୍ମ । ଯାହାର ରସାନୁଭୂତି ନାହିଁ ତାର ବ୍ରହ୍ମାନନ୍ଦର ଅନୁଭବ ନାହିଁ । "ରସଂ ହ୍ୟେବାୟଂ ଲବ୍‌ଧ୍ୱା ଆନନ୍ଦଭବତି" ।

ଲେଖକ 'ରସ' ର ପରିଭାଷା ମଧ୍ୟ ଅତି ହୃଦୟଗ୍ରାହୀ ଭାବରେ ପ୍ରଦାନ କରିଛନ୍ତି - "ରସ ଅନୁଭୂତିଶୀଳ ସହୃଦୟଚିତ୍ତର ଆନନ୍ଦମୟ ଏକ ମାନସିକ ଅବସ୍ଥା, ଯାହା ପାଠକ ହୃଦୟକୁ ଦ୍ରବୀଭୂତ, ମନକୁ ତନ୍ମୟ, ଶରୀରକୁ ପୁଲକିତ ଓ ଭାବ ବ୍ୟାପାରକୁ ଏକୀଭୂତ

କରେ ।" ଉପରୋକ୍ତ ପରିଭାଷାରେ ଲେଖକ ପଞ୍ଚ ଅବସ୍ଥାର ଉଲ୍ଲେଖ କରିଛନ୍ତି । ଚିତ୍ତର ଆନନ୍ଦମୟ ଅବସ୍ଥା, ହୃଦୟର ଦ୍ରବୀଭୂତତା, ମନର ତନ୍ମୟତା, ଶରୀରର ପୁଲକିତ ଅବସ୍ଥା, ଭାବର ଏକୀଭୂତତା । ଏହି ଦିବ୍ୟ ଅନୁଭୂତି-ସଂଜାତ ଆନନ୍ଦମୟ ନିର୍ମଳ ଅବସ୍ଥା ହିଁ ରସଭୋଗର ଅବସ୍ଥା ଯେଉଁଠାରେ ଚିତ୍ତ, ମନ, ଭାବ, ହୃଦୟ ଓ ଶରୀର ଏକାକାର, ଏକୀଭୂତ ହୋଇଯାଏ ।

ରସ ଏକ ଅଲୌକିକ ଆନନ୍ଦବୋଧର ସ୍ଥିତି । ରସାନୁଭୂତି ପାଇଁ ଦୁଇଟି Pre-condition ବା ପୂର୍ବାବସ୍ଥାର ଆବଶ୍ୟକତା ରହିଛି, 'ବାସନା' ଓ ସହୃଦୟତା । 'ବାସନା' ବେଦାନ୍ତର ମୂଳ ତତ୍ତ୍ୱ-ଯାହା ପୁନର୍ଜନ୍ମର ସ୍ମୃତି, ଅନୁଭୂତି ସହିତ ପରଜନ୍ମରେ 'ସଂସ୍କାର' ରୂପେ ମନୋଜଗତ ସହ ସଂଶ୍ଳିଷ୍ଟ ହୋଇ ରହେ ଏବଂ ମାନବର ସ୍ୱଭାବ ଓ ଚରିତ୍ରର ନିରୂପଣ କରେ । ଦର୍ଶକ ରୂପେ ଯେତେବେଳେ ଆମେ ରସ ଆସ୍ୱାଦନ କରୁ 'ବାସନା' ହିଁ ଆଧାର ରୂପେ କାର୍ଯ୍ୟ କରେ । କବିର କାବ୍ୟ ସର୍ଜନା ସମୟରେ 'ବାସନା' ହିଁ ସର୍ଜକତତ୍ତ୍ୱ ଭାବେ କାର୍ଯ୍ୟ କରେ । ପ୍ରତ୍ୟେକ ବ୍ୟକ୍ତି ପାଇଁ ଏକ ପୁଷ୍ପର ସୌନ୍ଦର୍ଯ୍ୟର ଅନୁଭବ ଭିନ୍ନ ଭିନ୍ନ ହୁଏ । ଯେଉଁ ବ୍ୟକ୍ତି ଅଙ୍ଗାର ଉପରେ ଚାଲିବାର ଅଭ୍ୟାସ ରଖନ୍ତି, ତାଙ୍କ ପାଇଁ ଅନ୍ତରବାହକତା ତୀବ୍ର ହୁଏ ନାହିଁ । ଯାହାର କଣ୍ଟା ଉପରେ ଶୟନ କରିବାର ଅଭ୍ୟାସ ବା ଅନୁଭୂତି ଥାଏ, ତା'ର କଣ୍ଟବିଦ୍ଧ ହେବାର ତୀବ୍ର ଦୁଃଖାନୁଭୂତି ହୁଏ ନାହିଁ । ପରନ୍ତୁ ଏହି ଅନୁଭୂତିର ଅନ୍ତରାଳରେ ଏକ ବ୍ୟାପକ ବିଶାଳ ଅଖଣ୍ଡ ସଂବେଦନାତ୍ମକ ଧରାତଳ ସହୃଦୟର ଅନ୍ତର୍ଜଗତରେ ପୂର୍ବରୁ ରହିଛି ଯାହା କାବ୍ୟଭୋଗ ସମୟରେ ଆମକୁ ଅସ୍ଥିର କରାଏ, ବ୍ୟାକୁଳିତ କରାଏ, ଉଦ୍‌ବେଳିତ କରାଏ । ସୌନ୍ଦର୍ଯ୍ୟାନୁଭୂତିର ଏହି ରହସ୍ୟମୟ ଅନୁଭୂତି ହିଁ ରସ ଭୋଗ । ରସର ବ୍ୟାପକତା, ଅଖଣ୍ଡତା, ସ୍ୱପ୍ରକାଶତା, ଅନିର୍ବଚନୀୟତା ଇତ୍ୟାଦି ସମସ୍ତ ଲକ୍ଷଣକୁ ସ୍ପର୍ଶ କରିଛନ୍ତି ଲେଖକ । ରସଭେଦ ନିରୂପଣ କରିବା ସମୟରେ ପ୍ରତ୍ୟେକ ରସର ସ୍ଥାୟୀ, ବିଭାବ, ଅନୁଭାବ, ବ୍ୟଭିଚାରୀ ଭାବର ଉପସ୍ଥାପନା କରିଛନ୍ତି ନିଜସ୍ୱ ଶୈଳୀରେ । କରୁଣ ରସର ଆନନ୍ଦମୟତା ନିର୍ଦ୍ଧାରିତ କଲାବେଳେ କବିଙ୍କର ଦୃଷ୍ଟି ସୂକ୍ଷ୍ମତର ହୋଇଛି । ଲେଖକଙ୍କ ଭାଷାରେ - 'କାରୁଣ୍ୟରେ ହିଁ ଆନନ୍ଦର କାରଣ ନିହିତ ଯେପରି ଅନ୍ଧକାରରେ ହିଁ ଆଲୋକର ଅବଭାସ ସଂଭାବିତ ।"

ଭାବର ପ୍ରକାଶ ପାଇଁ ମାଧ୍ୟମ ହେଉଛି ଶବ୍ଦ । ଶବ୍ଦ ସହ ପ୍ରତିଭା ଓ ପ୍ରେରଣାର ମଣିକାଞ୍ଚନ ଯୋଗ । ତତ୍‌ପରେ ବର୍ଣ୍ଣସଂଯୋଜନା, କଳାତ୍ମକତା ଆଦିର ସାହଚର୍ଯ୍ୟ ଆବଶ୍ୟକ ପଡ଼େ । ଏହି ସାହଚର୍ଯ୍ୟ ଆମର ମାନସିକ ଅବସ୍ଥା ଓ ରୁଚିର ପ୍ରକ୍ଷେପଣ

କରେ । ସାହଚର୍ଯ୍ୟରେ ସର୍ବପ୍ରଥମେ ଆସେ 'ରୀତି' ତତ୍ତ୍ୱ । ରୀତି ଏକ ସ୍ୱୟଂସିଦ୍ଧ ଅଭିବ୍ୟକ୍ତିବାଦ । ସଂସ୍କୃତ ଭାଷା ଓ ସାହିତ୍ୟର ସମୃଦ୍ଧ ଉର୍ବର ଧରାତଳେ ଅଙ୍କୁରିତ, ପଲ୍ଲବିତ, ପୁଷ୍ପିତ, ଫଳିତ-ରୀତି, ଗୁଣ ଓ ମାର୍ଗ । ଏହି ତିନୋଟି ତତ୍ତ୍ୱ ମଧ୍ୟରେ ଥିବା ସୂକ୍ଷ୍ମଭେଦକୁ ଅତି ମନୋରମ ଶୈଳୀରେ ଉପସ୍ଥାପନା କରିଛନ୍ତି ଲେଖକ । ରୀତିର ପ୍ରାଧାନ୍ୟ ଯେତେବେଳେ ଅଧିକ ହୋଇଛି ରୀତିକୁ ବାକ୍ୟର 'ଆତ୍ମା' ବୋଲି ମଧ୍ୟ ଗ୍ରହଣ କରାଯାଇଛି । ଓଡ଼ିଆ ସାହିତ୍ୟରେ ଭଞ୍ଜଙ୍କର କାଳକୁ ରୀତିକାଳ ଭାବରେ ନାମିତ କରାଯାଇଛି । କବିଙ୍କ ଦୃଷ୍ଟିରେ ଶ୍ରେଷ୍ଠରୀତି ସୁକୁମାର ରୀତି । ସୁକୁମାର ରୀତିର ବିଶେଷତ୍ୱ ହେଉଛି ଏଥିରେ ଶବ୍ଦକୁଟିଳତା ପ୍ରାବଲ୍ୟ ନ ଥାଏ, ଆୟାସସିଦ୍ଧ ନ ହୋଇ ସହଜ ସ୍ୱାଭାବିକ ହୋଇଥାଏ । ଏହାର ଚମତ୍କାରିତା ଅପେକ୍ଷା ସ୍ନିଗ୍ଧତା ମନକୁ ସ୍ପର୍ଶ କରେ । ଡକ୍ଟର କ୍ଷେତ୍ରବାସୀଙ୍କ ଅନୁଭବ ହେଉଛି – "ରୀତି କେବଳ ବହିଃଜଗତ ବ୍ୟାପାର ନୁହେଁ । ଶବ୍ଦ ଓ ଅର୍ଥର ବହିଃରଙ୍ଗର ସଂଘଟନରେ ରୀତି ସୀମିତ ନୁହେଁ । ରୀତି କବି ମନର ଅନ୍ତରଙ୍ଗ ବ୍ୟାପାର ସହ ଜଡ଼ିତ । କବିର କାବ୍ୟ କୌଣସି ଏକ ବିଶେଷ ଶୈଳୀକୁ ଆଶ୍ରୟ କରିଛି, ତା'ର କାରଣ ଶୈଳୀଟି କବି ମନର ସ୍ୱାଭାବିକ ଅଭିବ୍ୟକ୍ତ । କବି ଚିତ୍ତର ବୈଶିଷ୍ଟ୍ୟ କବିର ରଚନା ଶୈଳୀରେ ପ୍ରତିଫଳିତ ହୁଏ । ଏଣୁ ରୀତି ହିଁ କବି ଆତ୍ମାର ଅନିବାର୍ଯ୍ୟ ବହିଃ ପ୍ରକାଶ ।"

'ଗୁଣାଃ ଉତ୍କର୍ଷହେତବଃ ।' ଚତୁର୍ଥ ପ୍ରସଙ୍ଗ ଗୁଣର । ରସରେ ଗୁଣର ନିତ୍ୟ ସ୍ଥିତି । କାବ୍ୟର ଆତ୍ମାରୂପୀ ରସ ମାଧୁର୍ଯ୍ୟ, ପ୍ରସାଦ, ଓଜଃ ଆଦି ଗୁଣ ଦ୍ୱାରା ବିଶୋଭିତ ହୁଏ । କ୍ଷେତ୍ରବାସୀଙ୍କ ଅନୁସାରେ – "କୌଣସି ନାୟିକାର ଅଙ୍ଗ ସୌଷ୍ଠବ ଅଂଳକରଣ ହେତୁ ପ୍ରଭାବନ୍ତ ହୋଇପାରେ । ମାତ୍ର ତା'ର ଆତ୍ମାର ଉତ୍କର୍ଷ ବିଧାୟକ ଧର୍ମ ନ ଥିଲେ ସେ ପଲାଶ ପରି ମୂଲ୍ୟନ୍ୟୁନତା ଲାଭ କରେ । ବହିଃ ରଙ୍ଗକୁ ଶୋଭାମଣ୍ଡିତ କଲେ କ'ଣ ହେବ ? ଅନ୍ତଃରଙ୍ଗର ବିଷୟ ଚିରସବୁଜ, ଚିରସୁକୁମାର ।"

ଶବ୍ଦ ଏକ ମାନସିକ ଅମୂର୍ତ୍ତନ, ବାକ୍ୟ ଅର୍ଥକୁ ଉପସ୍ଥିତ କରାଏ, 'ଶବ୍ଦ' ବାକ୍ୟର ବାହ୍ୟରୂପ, 'ଅର୍ଥ' ବାକ୍ୟର ଆନ୍ତରିକ ରୂପ । ବାକ୍ୟର ବାହ୍ୟ ସଂରଚନା ଶବ୍ଦ, ସ୍ୱର, ଛନ୍ଦ, ଅଳଂକରଣ ଇତ୍ୟାଦି ସହ ସଂଯୁକ୍ତ । ଯେତେବେଳେ ଏହା ଅନ୍ତଃବର୍ତ୍ତୀ ସଂରଚନା 'ଅର୍ଥ'ର କିରଣ ବିକିରଣ କରେ, ପାଠକକୁ ଆଲୋକସ୍ନାତ କରାଏ । ତେଣୁ ଆନନ୍ଦ ବର୍ଦ୍ଧନ 'ଅର୍ଥ'ର 'ଅଭିଧା' ଓ 'ଲକ୍ଷଣା'କୁ ସ୍ୱୀକାର କରି ଭାଷାର ତୃତୀୟ ଯୋଗ୍ୟତା ଆଡ଼କୁ ଧ୍ୟାନାକର୍ଷଣ କଲେ, ଯାହାକି ଭାଷାର ସାଙ୍କେତିକ ସାମର୍ଥ୍ୟ ବ୍ୟଞ୍ଜନା ବା 'ଧ୍ୱନି' ।

ଧ୍ୱନି ଭାବୋତ୍ପାଦକ ତଥା ଆନନ୍ଦୋତ୍ପାଦକ । ଅତଏବ 'ଧ୍ୱନି' ବା କାବ୍ୟାତ୍ମକ 'ସାଙ୍କେତିକତାର ପ୍ରଭାବ' ସୌନ୍ଦର୍ଯ୍ୟପରକ ଅଟେ । ଡଃ ନାୟକଙ୍କ ଅନୁସାରେ 'ଧ୍ୱନି'ର ପରିଭାଷା - ଅର୍ଥର ଅନ୍ତରାଳରେ ଥିବା ଅର୍ଥର ଉପଲବ୍ଧିରୁ ଯାହା ପ୍ରାପ୍ତ ହୁଏ ତାହା ହିଁ କାବ୍ୟର ଅନ୍ତଃସୌନ୍ଦର୍ଯ୍ୟ ବା ଧ୍ୱନି ।' 'ଭାବ' ର ବ୍ୟଞ୍ଜନା ହିଁ କାବ୍ୟର ସୌନ୍ଦର୍ଯ୍ୟ । ଶବ୍ଦ ଜଠରରେ ଲୁକ୍କାୟିତ ଭାବସ୍ପନ୍ଦନ ହିଁ ଧ୍ୱନି' । ଅତି ସୂକ୍ଷ୍ମ ସୁକୁମାର ଭାବ ଯାହା ଶବ୍ଦ ଭିତରେ ଗୋପନ ଥାଏ ତା'ର ଅଭିବ୍ୟଞ୍ଜନା ଦ୍ୱାରା ପାଠକର ହୃଦୟ ଆନନ୍ଦରେ ସରୋବର ହୋଇଉଠେ, ସେତେବେଳେ ଧ୍ୱନିର ଉପସ୍ଥିତି ସ୍ପଷ୍ଟ ପ୍ରତିଭାତ ହୁଏ । ଲେଖକଙ୍କର ଲେଖନୀ ଅଧିକ ଚଞ୍ଚଳ ହୋଇଛି 'ଧ୍ୱନି' ତତ୍ତ୍ୱର ବ୍ୟାଖ୍ୟା କଲାବେଳେ ।

କାବ୍ୟାନନ୍ଦ ଅନୁଭବର ଅନୁପମ, ଦିବ୍ୟ ମୁହୂର୍ତ୍ତଟିକୁ ମୂର୍ତ୍ତ କରିଛନ୍ତି ଲେଖକ ନିଜର ଅବବୋଧ ଦ୍ୱାରା - " ସହୃଦୟ ଯେତେବେଳେ କୌଣସି କାବ୍ୟକୃତିରେ ଆତ୍ମଲୀନ ହୋଇଯାଏ ସେହି ଅବସ୍ଥାଟି ଅଭିବ୍ୟକ୍ତି ଓ ଅବବୋଧର ଏକାତ୍ମସଙ୍ଗମ" । ଏହାହିଁ ସୌନ୍ଦର୍ଯ୍ୟ ପରକ ଅନୁଭବର ପରକାଷ୍ଠା, ଯେଉଁଠି ଆନନ୍ଦ ଆଉ ସୀମିତ ଅନୁଭବ ହୋଇ ରହେ ନାହିଁ, ଯେଉଁଠି ବ୍ୟକ୍ତିନିଷ୍ଠତା ଓ ବସ୍ତୁନିଷ୍ଠତାର ଦ୍ରୁତ ସମାପ୍ତି ହୋଇଯାଏ ।

'ଧ୍ୱନି'ର ଏହି ସୌନ୍ଦର୍ଯ୍ୟପରକ ଅନୁଭବ ହିଁ 'ଔଚିତ୍ୟ' । ଦୈନନ୍ଦିନ ଜୀବନାନୁଭବ ଠାରୁ ପୃଥକ ଏକ ଭିନ୍ନ ଧରାତଳ, ଯେଉଁଠି ଭାବ, ଅନୁଭବ, ଶବ୍ଦ ସଂରଚନା, ଛନ୍ଦ, ଶୈଳୀ, ଅଂଳକରଣ, ଧ୍ୱନି ଏବଂ ରସ ସବୁକିଛି ପରସ୍ପର ଅର୍ନ୍ତଲୀନ । ପରସ୍ପର ନିବିଡ଼ ଭାବେ ସଂଯୋଜିତ, ସଂସ୍ଥାପିତ । ଲେଖକଙ୍କ ଅନୁସାରେ "ସୁମତି ବୋଧ ଓ ସଙ୍ଗତି ବିଚାରବଳରେ ଔଚିତ୍ୟର ବିନ୍ୟାସ ।"

କାବ୍ୟ ସଂରଚନା ପାଇଁ ସମସ୍ତ ତତ୍ତ୍ୱର 'ସଙ୍ଗତି' ଏକାନ୍ତ ଆବଶ୍ୟକ । ଏହି 'ସଙ୍ଗତି' ସମ୍ଭବ କବିମନର ଏକ ବିଶିଷ୍ଟ ଶକ୍ତିବଳରେ । କବି ଭିନ୍ନ ରୂପରେ, ରଙ୍ଗରେ ରୂପାୟିତ କରି ସଜାଏ ତା'ର ସୃଷ୍ଟି ସୌଷ୍ଠବ । ସେହି ତତ୍ତ୍ୱଟି 'କଳ୍ପନା' ସତ୍ୟର 'ରୂପାନ୍ତରୀକରଣ' । ଅନୁଭବର ଅମୃତୀକରଣ ତଥା ଭାବର ଆନନ୍ଦୀକରଣ ସମ୍ଭବ ହୁଏ କବି କଳ୍ପନା ଦ୍ୱାରା ବା ପ୍ରତିଭା ଦ୍ୱାରା । "ଅପୂର୍ବବସ୍ତୁ ନିର୍ମାଣକ୍ଷମ ପ୍ରଜ୍ଞା" ହିଁ କଳ୍ପନା । ଡକ୍ଟର କ୍ଷେତ୍ରବାସୀ ନାୟକଙ୍କର ପ୍ରଜ୍ଞା ଶିଖରକୁ ସ୍ପର୍ଶ କରିଛି ଯେତେବେଳେ ସେ ଅନୁଭବ କରିଛନ୍ତି, କାବ୍ୟ 'ସଂରଚନା' ର ଅନ୍ତରାଳରେ ନିହିତ ସମସ୍ତ ତତ୍ତ୍ୱଗୁଡ଼ିକର ହୃଦୟଗ୍ରାହୀ ବ୍ୟାଖ୍ୟା କରିଛନ୍ତି, ବିଭିନ୍ନ ମୂଳ ତତ୍ତ୍ୱକୁ ପରିଭାଷିତ କରିଛନ୍ତି ଓ ସୂକ୍ଷ୍ମ ଭାବରେ ସଂଯୋଜିତ କରିଛନ୍ତି ।

'ଆଲୋଚନା' ବିଭିନ୍ନ ଦୃଷ୍ଟିରୁ ହୋଇପାରେ, ବିଭିନ୍ନ ଦିଗରୁବି ହୋଇପାରେ । 'କୃତି'ର ମୂଲ୍ୟାୟନ, ପ୍ରତ୍ୟକ୍ଷ ବା ପରୋକ୍ଷ "ପ୍ରତିମାନ'ର ଅଭାବରେ ସମ୍ଭବ ହୋଇପାରେନା । 'ମାନଦଣ୍ଡ' ର ବିନା 'ମାପ' କିପରି ସମ୍ଭବ ? ଏଇଠି ପ୍ରଶ୍ନ ଉଠେ, କେଉଁଠି ସେହି ଅନ୍ତିମ ନିକଷ ପାଷାଣ ଯାହା ଉପରେ କଷି ଆମେ ପରଖି ପାରିବା କୌଣସି 'କୃତି' ର 'ଧାତୁ'କୁ ସୌନ୍ଦର୍ଯ୍ୟ ଓ ଶିବତ୍ୱର ଏକ ଅନୁପମ ସଙ୍ଗମ ସେ 'ପ୍ରତିମାନ' ଯାହାର ମୂଳଉସ ମାନବାତ୍ମା । ଭାରତୀୟ ଆତ୍ମାର କଷଟି ପଥରରେ କଷି ଦେଲେ କ୍ଷେତ୍ରବାସୀ ନାୟକଙ୍କର 'କୃତି' "ଭାରତୀୟ କାବ୍ୟଶାସ୍ତ୍ର" ଜାଜ୍ଜୁଲ୍ୟମାନ ହୋଇଉଠେ, ଦେଦୀପ୍ୟମାନ ହୋଇଉଠେ ଅନୁପମ ବର୍ଣ୍ଣବିଭାରେ ।



# କ୍ଷେତ୍ରବାସୀ କାବ୍ୟ ଚେତନାରେ ଅନୁଭୂତି ସାନ୍ଦ୍ରତା

ଡଃ ସଂଘମିତ୍ରା ମିଶ୍ର

ଡଃ କ୍ଷେତ୍ରବାସୀ ନାୟକ ଓଡ଼ିଆ ସାହିତ୍ୟ ଜଗତରେ ଏକ ସମ୍ମାନାସ୍ପଦ ନାମ । ଗଳ୍ପ, କବିତା, ଆଲୋଚନା, ଜୀବନୀ,ସମାଲୋଚନା ତଥା ସଂପାଦନା କ୍ଷେତ୍ରରେ ସେ ନିଜ ବ୍ୟକ୍ତିତ୍ୱର ଛାପ ଅଙ୍କନ କରିଯାଇଛନ୍ତି । ତାଙ୍କର ସାରସ୍ୱତ ପ୍ରତିଭାର ମୂଲ୍ୟାୟନ ଏପର୍ଯ୍ୟନ୍ତ କରାଯାଇ ନାହିଁ । ଓଡ଼ିଆ ସାହିତ୍ୟର ପ୍ରଥିତଯଶା ଅଧ୍ୟାପକ ଭାବରେ ସେ ସ୍ମରଣୀୟ । ଯୌବନରେ ଗଳ୍ପ ଓ କବିତା ରଚନାରେ ହାତ ଦେଇ ସେ ସମଧର୍ମୀମାନଙ୍କ ମଧ୍ୟରେ କବି ଭାବରେ ଆଦୃତ ହୋଇଥିଲେ । ୧୯୬୩ ଠାରୁ ୧୯୬୯ ପର୍ଯ୍ୟନ୍ତ ତାଙ୍କଦ୍ୱାରା ଲିଖିତ କବିତାଗୁଡ଼ିକ ତତ୍‌କାଳୀନ ପ୍ରମୁଖ ସାହିତ୍ୟ ପତ୍ରିକା ଡଗର, ଆସନ୍ତାକାଲି, ଉତ୍କଳ, ବେଲା, ତ୍ରୟୀ, ସୌରଭ, ଆଲୋକ, ପଞ୍ଚମୁଖୀ, ସାଧନା, ରବିବାର ପ୍ରଜାତନ୍ତ୍ର ଓ ମାତୃଭୂମିରେ ପ୍ରକାଶିତ ହୋଇ ପାଠକମାନଙ୍କର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଥିଲା । ଏହି କବିତାମାନଙ୍କୁ ଏକତ୍ର କରି, ତହିଁରୁ ସୁନିର୍ବାଚିତ କବିତାମାନଙ୍କୁ ନେଇ 'ଉଚ୍ଚାରଣ' ଶୀର୍ଷକ କବିତା ସଂକଳନ ପ୍ରକାଶିତ ହୋଇଛି । 'ଉଚ୍ଚାରଣ' କବିତା ପୁସ୍ତକଟି ତିରିଶିଟି କବିତା ସହିତ ଏକ ଦୀର୍ଘ ପୃଷ୍ଠବନ୍ଧରେ ବିନ୍ୟସ୍ତ । ଏହି ପୃଷ୍ଠବନ୍ଧ କବିଙ୍କର ପ୍ରିୟବନ୍ଧୁ ଇଂରାଜୀ ଅଧ୍ୟାପକ ରାଜକିଶୋର ମିଶ୍ରଙ୍କ ଦ୍ୱାରା ଲିଖିତ । ରୁଚିକର ସଂକଳନଟିଏ ପ୍ରସ୍ତୁତ କରିବାର ଦାୟିତ୍ୱ କ୍ଷେତ୍ରବାସୀ ନାୟକ ମହୋଦୟ ତାଙ୍କର ସହଧର୍ମିଣୀ ପ୍ରଖ୍ୟାତ ଲେଖିକା ଶ୍ରୀମତୀ ଲାବଣ୍ୟ ନାୟକଙ୍କୁ ଅର୍ପଣ କରିଥିଲେ । କବିତାର ପାଣ୍ଡୁଲିପିରୁ ଉପଯୁକ୍ତ କବିତା ଚୟନ ପାଇଁ ଏକାଧିକ କବିତାନୁରାଗୀ ପାଠକଙ୍କ ମତାମତ ଗ୍ରହଣ କରାଯାଇଥିଲା । ପରେ ଏଗୁଡ଼ିକ ଏକତ୍ର କରି ବଲାଙ୍ଗୀରର ଆତ୍ମପ୍ରକାଶନୀ ଆନୁକୂଲ୍ୟରେ 'ଉଚାରଣ' ଶୀର୍ଷକରେ ସଂକଳିତ ହୋଇଥିଲା ।

'ଉଚ୍ଚାରଣ' ଆତ୍ମପ୍ରକାଶ କରିବା ପୂର୍ବରୁ ମଧ୍ୟ ଅଧ୍ୟାପକ ନାୟକ କବିତା ରଚନାର ପ୍ରୟାସ କରିଥିଲେ । ନିଜର ସମଧର୍ମୀ ବନ୍ଧୁ ଅକ୍ଷୟ କୁମାର ନନ୍ଦ (ଅ.ନ), ରାଜ କିଶୋର ମିଶ୍ର (ରା.ମି), ରାମକୁମାର ଅଗ୍ରୱାଲ (ରା.ଅ), ଶ୍ରୀନିବାସ ଉଦ୍‌ଗାତା (ଶ୍ରୀ.ଉ) ଓ ନିଜେ କ୍ଷେତ୍ରବାସୀ ନାୟକ (କ୍ଷେ.ନା) ଭାବରେ ଏକତ୍ର ହୋଇ "ବିଫଳତା ସପକ୍ଷରେ" ଶୀର୍ଷକ କବିତା ପୁସ୍ତକ ୧୯୬୮ ସ୍ୱାଧୀନତା ଦିବସରେ ଆତ୍ମପ୍ରକାଶନୀ କର୍ତ୍ତୃକ ପ୍ରକାଶ କରାଇଥିଲେ । ଏମାନଙ୍କ ସହଯୋଗୀ ଥିଲେ ପ୍ରସନ୍ନ କୁମାର ମିଶ୍ର ଓ ସରୋଜ ରଂଜନ ମହାନ୍ତି । ନବ ପତ୍ରର ସଂପାଦକ ରଜନୀକାନ୍ତ ଦାସ ଏହି ପୁସ୍ତକକୁ ପ୍ରଥମେ 'ସୌମିତ୍ରୀର

ଦୃଷ୍ଟା' ନାମରେ ପ୍ରକାଶ କରିଥିଲେ । କବି ସମାଲୋଚକ ଚିନ୍ତାମଣି ବେହେରା ଏହି ପୁସ୍ତକର ନାମକରଣ କରିଥିଲେ 'ବିଫଳତା ସପକ୍ଷରେ' । ତେଣୁକିଟି ସନ୍ଧ୍ୟାରେ ଏହି ବନ୍ଧୁମାନେ ଏକତ୍ରବସି କବିତାଗୁଡ଼ିକର କେତୋଟି ଧାଡ଼ି ଯୋଡ଼ିବାର ପ୍ରୟାସ କରିଥିଲେ । ସେମାନଙ୍କର ବକ୍ତବ୍ୟ ଥିଲା "ପଞ୍ଚ ପାଣ୍ଡବଙ୍କ ପାଞ୍ଚାଳୀ ଭଳି ବିଫଳତା ଆମର ବାକ୍‌ଦତ୍ତା" ।

ଓଡ଼ିଆ ସାହିତ୍ୟରେ ବଙ୍ଗଳା ବାରୋୟାରୀ ଉପନ୍ୟାସ ଭଳି ସବୁଜ ଯୁଗର ନଅଜଣ ସାହିତ୍ୟିକଙ୍କ ମିଳିତ ଉଦ୍ୟମରେ 'ବାସନ୍ତୀ' ଉପନ୍ୟାସ ରଚିତ ହୋଇଥିଲା । ପୁଣି ନିତ୍ୟାନନ୍ଦ ମହାପାତ୍ର, ଗୋପୀନାଥ ମହାନ୍ତି ଓ ରାଜକିଶୋର ପଟ୍ଟନାୟକ ମିଶି 'ପ୍ରେମର ନିୟତି' ଶୀର୍ଷକ ଉପନ୍ୟାସ ଲେଖିବାରେ ସମର୍ଥ ହୋଇଥିଲେ । ଅନୁରୂପ ଭାବରେ କ୍ଷେତ୍ରବାସୀ ନାୟକ ଓ ତାଙ୍କ ବନ୍ଧୁଗଣ ଏକାଠି ହୋଇ 'ବିଫଳତା ସପକ୍ଷରେ' କବିତା ସଙ୍କଳନ ସୃଷ୍ଟି କରିଥିଲେ । ମିଳିତ ଉଦ୍ୟମରେ ଉପନ୍ୟାସର କାହାଣୀ ଭାଗକୁ ଗତିଶୀଳ କରିବା ଠାରୁ ଏଭଳି କବିତା ଲେଖିବା ନିଶ୍ଚିତ ଭାବରେ ଅଧିକ ସତର୍କତା ଆବଶ୍ୟକ କରେ -ଏଥିରେ ମତଦ୍ୱୈଧ ନାହିଁ । ମାତ୍ର ଏତାଦୃଶ ଉଦ୍ୟମ ଯେ ପ୍ରଶଂସନୀୟ ଏହା ମଧ୍ୟ ସ୍ୱୀକାର୍ଯ୍ୟ । ଏହି ବନ୍ଧୁମାନଙ୍କ ମଧ୍ୟରୁ ରାମକୁମାର ଅଗ୍ରୱାଲ, ଶ୍ରୀନିବାସ ଉଦ୍‌ଗାତା, ସରୋଜ ରଞ୍ଜନ ମହାନ୍ତି ଓ ପ୍ରସନ୍ନ କୁମାର ମିଶ୍ର କବି ଭାବରେ ପ୍ରତିଷ୍ଠା ପାଇଛନ୍ତି । ରାଜକିଶୋର ମିଶ୍ର ଓ କ୍ଷେତ୍ରବାସୀ ନାୟକ ପ୍ରାବନ୍ଧିକ ତଥା ସମାଲୋଚକ ଭାବରେ ଓଡ଼ିଆ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିପାରିଛନ୍ତି ।

କ୍ଷେତ୍ରବାସୀ ନାୟକ କେବଳ କବି ନୁହଁନ୍ତି । ସେ 'ଫୁଲର କବର' ଶୀର୍ଷକ କ୍ଷୁଦ୍ରଗଳ୍ପ ସଂକଳନର ମଧ୍ୟ ସ୍ରଷ୍ଟା । ଏସବୁ ବାଦ୍ ଦେଇ ସେ ଅନେକ ସାହିତ୍ୟିକଙ୍କର ସାରସ୍ୱତ ଜୀବନକୁ ନିଜର ପ୍ରଜ୍ଞାର ଆଲୋକ ଦେଇ ଆଲୋକିତ କରିଛନ୍ତି । 'ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ', 'କବି ଓ କାମିନୀ', 'ସାହିତ୍ୟର ସାମାନ୍ୟକଥନ', 'ସାହିତ୍ୟ ବୀକ୍ଷା ଓ ନିରୀକ୍ଷା', 'ଭାରତୀୟ କାବ୍ୟତତ୍ତ୍ୱ', 'ଅଳଙ୍କାର ଓ ଅଳଂକାର ତତ୍ତ୍ୱ' ଓ 'ଆଲୋଚନାପତ୍ର' ଭଳି ବିଶିଷ୍ଟ ସମାଲୋଚନା ଗ୍ରନ୍ଥର ସେ ପ୍ରଣେତା । 'ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ' ସଂପର୍କୀୟ ଗବେଷଣା କରି ସେ ୧୯୭୬ ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି ଉପାଧି ପ୍ରାପ୍ତ ହୋଇଥିଲେ । ଗବେଷକ ଭାବରେ ତାଙ୍କର କୃତିତ୍ୱ ଅବିସମ୍ବାଦିତ । ସେ କବି ଅର୍ଜୁନ ଦାସ, ନାରୀକବି ଅନ୍ନପୂର୍ଣ୍ଣା, କବି ଚରିତ ରାଧାନାଥ ଓ କବି ନୀଳକଣ୍ଠ ଭଳି ମନୋଗ୍ରାଫ୍‌ର ରଚୟିତା । ସରଳ ସାବଲୀଳ ଢଙ୍ଗରେ ସେ ଏଭଳି ଜୀବନୀ ତଥା ସାହିତ୍ୟ ସୃଷ୍ଟି ସଂପର୍କୀୟ ପୁସ୍ତକ ରଚନା କରିଛନ୍ତି । ଫକୀରମୋହନଙ୍କ କଥା ସାହିତ୍ୟ, ଅନ୍ନପୂର୍ଣ୍ଣା ରଚନାଶ୍ରୀ ଭଳି ଅନେକ

ଗ୍ରନ୍ଥର ସେ ସଂପାଦନା କରିଛନ୍ତି । ଓଡ଼ିଆ ଭାଷା ସାହିତ୍ୟ ପ୍ରତି ଦାୟବଦ୍ଧ ଏହି ବିଦ୍ୱାନ ଅଧ୍ୟାପକ ନିଜର ଭାବୟିତ୍ରୀ ପ୍ରତିଭାକୁ ନେଇ ଯଥେଷ୍ଟ ସୁନାମ ଅର୍ଜନ କରିବା ସହିତ ଓଡ଼ିଆ ସମାଲୋଚନା ସାହିତ୍ୟର ଶ୍ରୀବୃଦ୍ଧି ସାଧନ କରିଛନ୍ତି । ଅବଶ୍ୟ କବିତା ରଚନା ପ୍ରତି ଯେତିକି ଦୃଷ୍ଟି ଦେବା କଥା ସେତିକି ଦୃଷ୍ଟି ସେ ଦେଇପାରିନାହାନ୍ତି । ଏ ପ୍ରବନ୍ଧରେ ତାଙ୍କର କବିତାଗୁଡ଼ିକର ହିଁ ସ୍ୱତନ୍ତ୍ର ଆଲୋଚନା କରାଯାଉଛି ।

'ବିଫଳତା ସପକ୍ଷରେ' ର ଉତ୍ସର୍ଗ ପତ୍ରରେ କବିବନ୍ଧୁମାନେ ବ୍ରହ୍ମା ହୋଇ କବିତାର ଅହଲ୍ୟା ଗଢ଼ିଛନ୍ତି ଓ ଗୌତମଙ୍କୁ ତାହା ଅର୍ପଣ କରିଛନ୍ତି । ଏଥିରେ ସ୍ଥାନିତ ତେଇଶଟି କବିତା ମଧ୍ୟରୁ କୋଡ଼ିଏଟିରେ କ୍ଷେତ୍ରବାସୀ ନାୟକଙ୍କ ଲେଖନୀର ସ୍ପର୍ଶ ରହିଛି ।ଏଥିରେ ଦେବକୀ, ବଶିଷ୍ଠ, ଯଯାତି, ସୌମିତ୍ରୀ, ଦ୍ରୌପଦୀ, ବିମ୍ବିସାର, ନନ୍ଦ, ଗୋପୁର, ଆମ୍ରପାଲୀ, ବାସବଦତ୍ତା, ସଂଘ ଓ ସିଦ୍ଧାର୍ଥମାନେ କବିଙ୍କୁ ପୁରାଣ ଓ ଇତିହାସ ସହିତ ସଂପର୍କିତ କରିଛନ୍ତି । ବୟସରେ ତରୁଣ ଏହି କବିମାନେ କେବଳ ସ୍ୱପ୍ନ ଓ କାମନାକୁ ନେଇ କବିତା ଲେଖିନାହାନ୍ତି, ସେମାନେ ପ୍ରବୀଣ ସଦୃଶ ଦାୟିତ୍ୱସଂପନ୍ନ ହୋଇ 'ସତ୍ୟ ଶିବ ସୁନ୍ଦର'ଭଳି କବିତା ଲେଖି ଜୀବନର ସଂଜ୍ଞା ନିରୂପଣର ପ୍ରୟାସ କରିଛନ୍ତି ।

'ଉଚ୍ଚାରଣ' କବିତା ଗ୍ରନ୍ଥକୁ ସେ ତାଙ୍କର କନ୍ୟା ଲୋପାମୁଦ୍ରା (ଲିପି) ଓ ପୁତ୍ର ଅନୁରକ୍ତକୁ ସମର୍ପଣ କରି ଆଗାମୀ ସମୟର ସାହିତ୍ୟିକ ଦାୟାଦଭାବେ ଉଭୟଙ୍କୁ ଏକ ସାରସ୍ୱତ ପରମ୍ପରାର ଉତ୍ତରାଧିକାର ପ୍ରଦାନ କରିଛନ୍ତି । ଏହି କବିତାଗୁଡ଼ିକ ଭାବ ଓ ଭାଷା ଦୃଷ୍ଟିରୁ ବେଶ୍ ଜୀବନ୍ତ ।

**ଜ୍ୟୋତ୍ସ୍ନା ଏବଂ ପୁଲକର ସହରରେ କବି :**

ସାପୁଆ ନଈର ଗଣ୍ଡରେ ନାଆ ଭାସିଲାବେଳେ କବି ଜ୍ୟୋତ୍ସ୍ନା ଓ ପୁଲକର ସହରକୁ ଭେଟିବାକୁ ସ୍ୱପ୍ନ ଦେଖନ୍ତି । ଅଉରୀ ନାଆ ବାହେ । ତାର ଗନ୍ତବ୍ୟସ୍ଥଳ ହେଉଛି ନଦୀ ଆରପାରିର ଧବଳ ମନ୍ଦିର । ସତେ ଯେପରି ସ୍ଥିର ବିଶ୍ୱାସର ଉଜ୍ଜଳତା ନେଇ ସେ ମନ୍ଦିରରେ ଚୂନ ଧଉଳା ହୋଇଛି । ପୋତପାଳଟିଏ ଗତ ଶତାବ୍ଦୀର ଭଗ୍ନ ପୋତାଶ୍ରୟ ତେଇଁ ଆସିଛି । ତାର ଦୃଷ୍ଟି ପ୍ରସାରିତ । କବି ହିଁ ସେହି ପୋତପାଳ, ଯାହା ଦୃଷ୍ଟିରେ

ପ୍ରାସାରିତ ଦୃଷ୍ଟି ମୋର ତନଖି ଦେଖୁଛି
ଦିଗନ୍ତ ଦୁଆରେ ଖଞ୍ଜା ସୂର୍ଯ୍ୟାସ୍ତର ସିଡ଼ି
ଅସୁମାରୀ ପଦଚିହ୍ନ ଦିଶୁ ଅଛି ପୂର୍ବଜମାନଙ୍କ
ଯେଉଁମାନେ ଆଣ୍ଠୁ ଦେଲେ ଅନ୍ତପଦ ପରେ

"ଉଜେଇଁ ସ୍ୱଧର୍ମସଭା ସମୁଦ୍ର ଢେଉରେ" (ପୋତପାଳର ସଙ୍ଗୀତ - ପୃ ୨୮) ମୃତବନ୍ଦରରେ ପରିତ୍ୟକ୍ତ ଜୀବଙ୍କର କଙ୍କାଳ ପଡ଼ିଛି । ସାଧବର ଅଭିମାନରେ ସାଧବାଣୀ କାନ୍ଦିକାନ୍ଦି ଅସ୍ଥିର ହେଉଛନ୍ତି । ସକଳ ଆଶା ଓ ବିଶ୍ୱାସ ତୁଟିଯାଉଛି । ତଥାପି କବି ଘାଟ ଜଗିଛନ୍ତି କାଳେ ଦିନେ ବ୍ୟର୍ଥପିପାସୀ ମଣିଷର ଘଟାନ୍ତର ହୋଇପାରେ ।

**ଭୋକ ମୋର ଚେଇଁ ଉଠେ :**

କବି ପ୍ରେମ, ଶରୀର ସଂପର୍କର ଉଦାମତା, ଶିହରଣ ବେପଥୁ ସଂପର୍କରେ ଉଦାସୀନ ନୁହଁନ୍ତି ବରଂ ପରିଚ୍ଛନ୍ନ । ଯୌବନର ପୁଲକରେ ସେ ମିସ୍ ରୀତା ଓ ସ୍ମିତାଦାସମାନଙ୍କୁ ଅନୁଧାନ କରିଛନ୍ତି । ତାଙ୍କ ଜୀବନର ଫାଲ୍‌ଗୁନରେ ଅନେକ ଜହ୍ନରାତିର ଉଦ୍ଘାଟନ । ମେଘ ଆଉ ରାଗର ଉହାଡ଼ରେ ମୟୂର ଓ ମୃଗମାନେ ଆତ୍ମଗୋପନ କରିବାର ଦୃଶ୍ୟରେ ସେ ଅନ୍ୟମନସ୍କ ହୁଅନ୍ତି । କିନ୍ତୁ ଏସବୁ କ୍ଷଣସ୍ଥାୟୀ ବୋଲି ସେ ଜାଣନ୍ତି । 'ବର୍ଷା' କବିତାର ଶେଷପଦରେ -

"ସୁଖ ଆଉ ସପନର ମଉସୁମୀ ବର୍ଷା ବିନ୍ଦୁ
ବୁଭୁକ୍ଷିତ କୋଟି କୋଟି ନିରନ୍ନ ମନରେ
ସିଞ୍ଚିଯାଏ ଧୀରେ ଧୀରେ ଜୀବନର ଅଖଣ୍ଡ ପ୍ରତ୍ୟୟ ।" (ବର୍ଷା-ପୃ-୩୩)

ଜରାୟୁ, ମୃଗ ଏକ ବିନ୍ଦୁଏ ସ୍ୱପ୍ନର ଭଳି କବିତାରେ ସେ ଗୋଲାପବ୍ରନ ସହିତ ଇସ୍‌ପାତି ବୟସର କଣ୍ଢା ଦେଖିପାରନ୍ତି । ସେଥିପାଇଁ ତ ସେ ସପନର କାଉଁଚିଠି ହଳଦିମାଖି ହୋଇ ଆସୁ ବୋଲି କାମନା କରନ୍ତି ।

**ଥାପିଗଲି ପ୍ରତ୍ୟୟ ପ୍ରଚୁର :**

କବି ପ୍ରେମର ଯେଉଁ ପରିଭାଷା ଦେଇଛନ୍ତି ତାହା ହେଉଛି 'ପ୍ରତ୍ୟୟ' । ନିହାତି ଜଣେ ସାମାନ୍ୟ ମଣିଷ ପ୍ରିୟାର ନିରୁତା ପ୍ରେମ ପାଇ ପ୍ରୀତିମୟ ପାଲଟି ଯାଏ । ବର୍ଷା ଶୃଙ୍ଗାର, ଶିଳା ଓ ସଂଗୀତ ଭଳି କବିତାରେ ସେ ଚନ୍ଦ୍ରର ଚିବୁକ ଚିରି ଝରୁଥିବା ଜହ୍ନର ଆଲୁଅରେ ପ୍ରିୟାର ହୃଦୟ ଖୋଜନ୍ତି । ତା ସହିତ ଖୋଜନ୍ତି ପେଡ଼ିରେ ସାଇତା ଶିଂଗ ଫଗୁଆ, ପାଟଶାଢ଼ି ଓ ପାଣିକାଚ କେଇପଟ । 'ଶିଳା ଓ ସଙ୍ଗୀତ' କବିତାରେ ତାଙ୍କ ପ୍ରୀତିର ଆଲେଖ୍ୟ ଏହିଭଳି-

"ମୁଁ ହେଲି ବିସ୍ମିତ ପ୍ରିୟା ।ଲଭି ତୁମ ପ୍ରେମ ପ୍ରତିଦାନ
ମୋ ପାଇଁ ସହିବ ବୋଲି ବ୍ୟଥା ନିନ୍ଦା ନିଷ୍ଠୁର କଷଣ
ପ୍ରେମ ଓ ପ୍ରଣୟ ଯଦି ଦେହଦାହୀ କାମନାର ହୁଏ

ଜୀଇଁବା ଦୀଘିର ତେଜ ମଣିଷ ହିଁ ମରଣକୁ ସହେ" (ଶିଳା ଓ ସଙ୍ଗୀତ– ପୃ.୫୦)

ଦାମ୍ପତ୍ୟର ମଧୁର ଅନୁଭବ, ବରଣୀୟା ବଧୂର ପ୍ରେମର ବର୍ତ୍ତିକାକୁ ସେ ଶାଶ୍ବତ କରିବାକୁ ଚାହାନ୍ତି । ଏହି କବିତାରେ ପ୍ରଣୟୀ କବି ମାୟାଧର ମାନସିଂହଙ୍କର 'ଧରାବତରଣ' ର ଭାବସାମ୍ୟ ପରିଦୃଷ୍ଟ ହୋଇଥାଏ । ଦିନେ ହୁଏତ ଯୌବନ ଅନ୍ତର୍ହିତ ହେବ, ମାତ୍ର ଶାଶ୍ବତ ପ୍ରେମର ଔଜ୍ଜ୍ୱଲ୍ୟ ସକଳ ମଳିନତାକୁ ଅତିକ୍ରମ କରି ଚିରନ୍ତନ ପାଲଟିଯିବ । 'ସମର୍ପଣ' ସେହି ମାନସିକତାର କବିତା, ଯେଉଁଠି କବି ନିଜ ପ୍ରେମିକାର ପଦତଳେ ନିଜର ସକଳ ଗୌରବକୁ ସମର୍ପଣ କରିଦେବାକୁ ଚାହିଁଛନ୍ତି । ଗଡ଼ନାୟକଙ୍କର 'କବିବଧୂର ଗୌରବ' ଭଳି ଏ କବିତା ମଧୁର ଦାମ୍ପତ୍ୟ ପ୍ରେମର ଜୟଗାନ କରିଥାଏ । ତଥାପି ଅକ୍ଷତ, ମୃତ୍ୟୁଭଳି କବିତାରେ ଏହି ପ୍ରଣୟର ସ୍ୱର ବେଶ୍ ସମାହିତ ।

**ଦିଅ ମୋତେ ଗୋଟିଏ ମୁହୂର୍ତ୍ତ :**

ଜୀବନ କ୍ଷୟିଷ୍ଣୁ ଜାଣି ମଧ କବି ଗଢ଼ିବାରେ ବିଶ୍ୱାସ କରନ୍ତି । ତେଣୁ ସେ ବିଗତଯୌବନା ଶ୍ରୀମତୀ ବେହେରାଙ୍କଠାରୁ ଆରମ୍ଭ କରି ନେତ ଗାଈ ପର୍ଯ୍ୟନ୍ତ ସବୁରି ଦୁଃଖକୁ ଅନୁଭବ କରିପାରନ୍ତି । ତାଙ୍କ ବିଚାରରେ ଈଶ୍ୱର ହିଁ ନିଷ୍ଠୁର, ଯିଏ ଅନେକ ମଣିଷଙ୍କର ଆକାଙ୍କ୍ଷାକୁ ନିର୍ବିକାରରେ ହତ୍ୟା କରିପାରନ୍ତି । ଏକ ମୃତ୍ୟୁହୀନ ବିଶ୍ୱର କାମନା କରିବା ଭିତରେ ସେ ପ୍ରେମର ବର୍ତ୍ତିକା ଜଳାଇ ରଖନ୍ତି । ବେଳେବେଳେ ଚଉଦୁଆରୀ ଘରର ଚତୁର୍ଥ ଦ୍ୱାରବାଟେ ଯାଇ ଜୀବନ୍ତ ମନ୍ଦିର ଭେଟିବାର ଭରସା ଦିଅନ୍ତି । ନିଜର ସ୍ରଷ୍ଟାପଣରେ ବିଭୋର କବି ଘଡ଼ିଏ ପାଇଁ ସ୍ରଷ୍ଟାଙ୍କୁ ଅସ୍ୱୀକାର ମଧ କରନ୍ତି -

"ଇଚ୍ଛା ନୁହେଁ ଏଥିପାଇଁ ସ୍ରଷ୍ଟାଙ୍କୁ ମୋ ସ୍ୱୀକାର କରିବା
ମୃତ୍ୟୁର ଅନଳ ଜାଳେ ଯେ ଦେବତା, ତାହା ଲାଗି ଅର୍ଘ୍ୟ ସଜାଡ଼ିବା
ଅଥବା ବିବେକ ଭୁଲି ସ୍ରଷ୍ଟା ସମ୍ବୋଧିବା ।" (ଶ୍ମଶାନ ସ୍ରଷ୍ଟା - ପୃ-୪୯)

କିନ୍ତୁ ପରମୁହୂର୍ତ୍ତରେ ସେ ନିଜକୁ ଭାଗ୍ୟର ଦୁର୍ଲ୍ଲଙ୍ଘ୍ୟ ରଜ୍ଜୁରେ ବନ୍ଦୀ ଭାବରେ ଆବିଷ୍କାର କରନ୍ତି । ବାରମ୍ବାର ନିଜର ଅସହାୟତା ସେହି ଈଶ୍ୱରଙ୍କ ପଦତଳେ ନିବେଦନ କରନ୍ତି । ତାଙ୍କର ଚିନ୍ତାରେ -

"ଆଉକି ନିର୍ମମ ଶାସ୍ତି ଏ ଜୀବନେ ସାଇତା ରହିଛି
ପ୍ରଭୁଙ୍କୁ ଜଣାଣ ମାତ୍ର, ଛେଉଣ୍ଡର ଆଶ୍ରୟ କେଉଁଠି ?"

(ଛେଉଣ୍ଡର ଶେଷ ଗୀତି ପୃ-୧୪)

ଅଭାଗୀର ଆତ୍ମଲିପି, ଜରାୟୁ ଭଳି କବିତାରେ ସେ ଭଗବାନ୍‌ଙ୍କୁ ସ୍ୱୀକାର କରିଛନ୍ତି ସତ କିନ୍ତୁ ତାଙ୍କ ବିଚାରରେ ଯଦି କେବେ ଲକ୍ଷେ ଯୋଜନ ଟପି ଭଗବାନ୍‌ଙ୍କୁ ଭକ୍ତର ବ୍ୟାକୁଳ ଡାକ ଶୁଭେ, ସେ ନିଶ୍ଚୟ ବାଆଁଫଳ ହାତରେ ଧରି ତା ପାଖକୁ ଆସିବେ । ତାଙ୍କର ଅମୁହାଁ ଦେଉଳ ଭିତରକୁ ଭକ୍ତର ଆକୃତି ଯଦି ପହଞ୍ଚିପାରେ ତେବେ ଭଗବାନଙ୍କର ରୂପାନ୍ତର ଘଟିବ, ନଚେତ କେବଳ କଳ୍ପବଟ ଶାଖାରେ ପଥର ଝୁଲାଇବା ଅବା ଦୀପଜାଳି ନିଜର ଉପଭୋଗ ପାଇଁ ପ୍ରଭୁଙ୍କୁ ପ୍ରାର୍ଥନା କରିବା କୌଣସି ଅର୍ଥ ହେବ ନାହିଁ ।

ସମୟ ସବୁ କାମନାକୁ ନଷ୍ଟ କରିଦିଏ । ଈଶ୍ୱର ସଦୟ ହୋଇପାରନ୍ତି ମାତ୍ର ସମୟ ନିଷ୍ଠୁର । ସେ' ନୀତିବତୀ ବୟସର ଗୋଧୂଳି ଲଗ୍ନ' କୁ ଆଣି ଆମ ସାମନାରେ ଠିଆ କରିଦିଏ । ଅନ୍ଧାର ଗର୍ଭଚିରି ସୂର୍ଯ୍ୟ ଭୂମିଷ୍ଠ ହୁଅନ୍ତି। କବିଙ୍କ ଭାଷାରେ ଅନ୍ଧାର ହିଁ - ସୂର୍ଯ୍ୟର ଜନକ । ତେଣୁ ସମୟର ପରିବର୍ତ୍ତନ 'ସଂପର୍କରେ ତାଙ୍କର ଉକ୍ତି -

"ସତ୍ୟ ଯେ ଘୋଷଣା କରେ ଆନ ଲାଗି ସତ୍ୟର ପ୍ରେରକ
ମୃତ୍ୟୁରେ ଅଧିରତନୁ ଲୋଡୁଥାଏ ମୁକ୍ତିର ସଡ଼କ
ଜୀବ ଦେହେ ଉତୀର୍ଣ୍ଣବୟସ ହୁଏ ଯେଣୁ ମୃତ୍ୟୁର ପାହାଚ
ଜନମୁଁ ଜନମ ଯାଏଁ ମଣିଷ ହିଁ ସାଜୁଥାଏ ମୃତ୍ୟୁର ଜନକ ।"(ମୃତ୍ୟୁ.ପୃ-୪୦)

**ରୂପ ମହକେ ଭୁଲିବୁନି ଆତ୍ମାର ଆହ୍ୱାନ :**

କବି କେବଳ ସ୍ୱପ୍ନ ଦେଖନ୍ତି ନାହିଁ । ସେ ଉଦୟର ଏକୁଟିଶାଳରେ ଲୋହିତ ଶିଶୁର ଆଭା ଦେଖି ଚମକୃତ ହୁଅନ୍ତି । ପରପୀଢ଼ି ପାଇଁ ସେ ଖୁବ୍ ସଚେତନ । ନିଜ ଦାୟାଦମାନଙ୍କୁ ସେ ଆଲୋକ ଉଜ୍ଜଳ ଚନ୍ଦ୍ରିକା ଶୀତଳ ଜୀବନ ଦେବାକୁ ଚାହାଁନ୍ତି । ଯେଉଁମାନେ କି ତାଙ୍କ ଅଭିଜ୍ଞତାରୁ ବଞ୍ଚିବାର କଳା ଶିଖିବେ । ତଥାପି ସେ ବାରମ୍ବାର ପ୍ରଶ୍ନ କରନ୍ତି । ସଂସ୍କୃତି ସାଇତି ତୁମେ ପାରିବ କି ? ସଂସ୍କୃତି ଆଦର୍ଶ ବିଷୟରେ ଭାଷଣ ଦେବା ସହଜ ମାତ୍ର ତା'ର ସାଧନା କରିବା ଓ ନିଜକୁ ସେହି ମୂଲ୍ୟବୋଧ ଛାଞ୍ଚରେ ଢାଳିବା କଷ୍ଟକର । 'କଲ୍ୟାଣୀୟାସୁ' କବିତାରେ ସେ ନିଜର ପ୍ରୀତିର ପ୍ରତିମା କନଜ କନ୍ୟାକୁ କୁହନ୍ତି -

"ରୂପର ମହକେ ଭୁଲିବୁନି ଆତ୍ମାର ଆହ୍ୱାନ
ବିସ୍ତୃତ ଏ ବିଶ୍ୱର ଚାହାଣେ, ଏକନିଷ୍ଠ ମନେ
କରିବୁ ତୁ ଥରେ ଅନ୍ୱେଷଣ
ମଣିଷ ଓ ମଣିଷର ମନ ।" (କଲ୍ୟାଣୀୟାସୁ - ପୃ.୧୧)

କନ୍ୟା ତାଙ୍କ ରକ୍ତର ପ୍ରାଣବାନ୍ ବନ୍ୟା ଯିଏ ତାଙ୍କର ସକଳ ଅପୂର୍ଣ୍ଣ ଅଭିଳାଷକୁ ଭସାଇ ନେଇ ତାଙ୍କ ପାଇଁ ସାର୍ଥକ କବିତାଟିଏ ପାଲଟିଯିବ । ସଂକଳନର ପ୍ରଥମ କବିତା 'ଆରଣ୍ୟକରେ' ସେ ସମ୍ବୋଧନ କରନ୍ତି 'ହେ ମୋର ଦାୟାଦମାନେ' । ଏଠାରେ ସେ କେବଳ ନିଜର କୁକ୍ଷିଜାତ ସନ୍ତାନମାନଙ୍କୁ ନୁହେଁ ବରଂ କୃଷ୍ଟିଜାତ ସନ୍ତାନମାନଙ୍କୁ ସମ୍ବୋଧନ କରିଛନ୍ତି ଓ ଏକ ପରିପୂର୍ଣ୍ଣ ଆଲୋକଉଜ୍ଜଳ ଭବିଷ୍ୟତର ଚିତ୍ର ସେମାନଙ୍କ ଆଗରେ ଉପସ୍ଥାପନ କରିଛନ୍ତି । ସେ ଅରଣ୍ୟକୁ 'ମାନବ ସଭ୍ୟତାର ଷଠୀଘର' ବୋଲି ସମ୍ବୋଧନ କରନ୍ତି । ସେହି ଷଠୀଘରୁ ଦିନେ ସଭ୍ୟତାର ଆଦ୍ୟ ଓଁକାର ଶୁଭିଥିଲା । ଆତ୍ମାର ଆହ୍ୱାନ ଶୁଣି ଯଦି ତାଙ୍କର ଦାୟାଦମାନେ ଜାଗ୍ରତ ହେବେ, ତେବେ ପୃଥିବୀରେ ଭଲଦିନ ଅବଶ୍ୟ ଆସିବ । ଏଥି ସହିତ ମଣିଷର ମନକୁ ଅନ୍ୱେଷଣ କରିବାକୁ ହେବ କାରଣ ପ୍ରାଚୁର୍ଯ୍ୟର ପ୍ରାଦୁର୍ଭାବରେ ମଣିଷର ମନ ତାର ସୌନ୍ଦର୍ଯ୍ୟ ହରାଇବସିଛି । ଦେହର ସୌନ୍ଦର୍ଯ୍ୟ କ୍ଷଣସ୍ଥାୟୀ ମାତ୍ର ଆତ୍ମାର ଚିରନ୍ତନ ସୌନ୍ଦର୍ଯ୍ୟକୁ ଯେ ଥରେ ଅବଲୋକନ କରିଛି, ତା ପାଇଁ ସମଗ୍ର ପୃଥିବୀ ହିଁ ଆପଣାର ହେବା ସମ୍ଭବ । ଆଦ୍ୟ ଯୌବନରେ ଏଭଳି ପ୍ରେରଣାପୂର୍ଣ୍ଣ କବିତା ରଚନା କରି କବି କ୍ଷେତ୍ରବାସୀ ସତେ ଯେପରି ପରପୀଢ଼ି ପାଇଁ ମୂଲ୍ୟବୋଧର କର୍ଷିତ କ୍ଷେତ୍ର ସୃଷ୍ଟି କରିଛନ୍ତି । ତେଣିକି ତହିଁରେ ବୀଜବପନର ଭାର ତାଙ୍କର ପରପୀଢ଼ି ବହନ କରିବେ ।

**ଅସୁମାରୀ ପଦଚିହ୍ନ ଦିଶୁଅଛି ପୂର୍ବଜମାନଙ୍କ :**

କବି ପରମ୍ପରା ସହିତ ବନ୍ଧୁ ଭାବରେ ସଂପର୍କିତ । ପରଂପରାମାନ୍ୟତା ଚିହ୍ନ ନେଇ ତାଙ୍କର କବିତାଗୁଡ଼ିକ ବେଶ୍ ଚିନ୍ତାଦ୍ୟୋତକ । ପୁରାଣର ଜରତା ଋଷ୍ୟଶୃଙ୍ଗ, କୁନ୍ତି, ଉର୍ମିଳା, ବଳି, ବାମନ, ଜଟାୟୁ ଓ ସୀତା, ବିଦର୍ଭ ତନୟା ଓ ଅଗସ୍ତି ଆଶ୍ରମ, ଅହଲ୍ୟା ଓ ରାମଙ୍କ ସହିତ ପିତୃଲୋକ, ବୈତରଣୀ ନଦୀ ପ୍ରଭୃତି ତାଙ୍କ ସୃଷ୍ଟିରେ ମୁହଁ ଦେଖାନ୍ତି । ଅଧିକନ୍ତୁ ଯଯାତିର ମନ, ସୌମିତ୍ରୀର ତୃଷା, ଉର୍ମିଳାର ଦହନ, କୁନ୍ତିର କାମନା, ଦେବକୀର ଅଶ୍ରୁ, ଶାଶ୍ୱତ ଦ୍ରୌପଦୀ ଭଳି ପ୍ରୟୋଗ ଭିତରେ ସେ ପରମ୍ପରା ଭିତରକୁ ବେଶ୍ ଦମ୍ଭରେ ପାଦ ପକାଇଛନ୍ତି । ଆମର ସାମୂହିକ ଅବଚେତନରେ ଏଭଳି ପ୍ରୟୋଗର ପ୍ରଭାବ ଯଥେଷ୍ଟ । ଫକୀରମୋହନଙ୍କର କ୍ଲାସିକ ସୃଷ୍ଟି ଛମାଣ ଆଠଗୁଣ୍ଠର ସାରିଆ ଓ ନେତ ମଧ୍ୟ କବିଙ୍କୁ କବିତା ଲେଖିବା ପାଇଁ ପ୍ରଚୋଦିତ କରିଛନ୍ତି । ଏଥି ସହିତ ପରମ୍ପରାର ରଜ ଖିଲିପାନ ଓ ପୋଡ଼ପିଠାର ବାସ୍ନା ମଧ୍ୟ ପାଠକ ତାଙ୍କ କବିତାରୁ ପାଇଥାଏ । ଭାଷା ବିନ୍ୟାସ କ୍ଷେତ୍ରରେ ମଧ୍ୟ କବି କେତେକ ଅପ୍ରଚଳିତ ଶକ୍ତିଶାଳୀ ଶବ୍ଦର ବ୍ୟବହାର କରିଛନ୍ତି ଯେମିତି ଉଜେଇବା, ତନଖିବା, ପାମ୍ପରା, ମୁହାଁସ, ଅପାଳକ ପ୍ରଭୃତି । ଅଧ୍ୟାପକ ରାଜକିଶୋର ମିଶ୍ର 'ଉଚ୍ଚାରଣ' ର ପ୍ରାନ୍ତ ଭାଗରେ ଦୀର୍ଘ ପୃଷ୍ଠବନ୍ଧ ଲେଖି ଓଡ଼ିଆ କବିତାରେ ବିଭିନ୍ନ ପରୀକ୍ଷା ପ୍ରୟୋଗ କଥା ଉଲ୍ଲେଖ କରିଛନ୍ତି । ରବୀନ୍ଦ୍ରନାଥ ଓ ଇଲିୟଟ ପ୍ରଭୃତିଙ୍କ

ରଚନାର ଭାବ ଓ ଭାଷା ସହିତ ନିଜର ବିପୁଳ ଅନୁଭୂତି ଓ କବି କ୍ଷେତ୍ରବାସୀଙ୍କ ପାଇଁ ଅଜସ୍ର ଶ୍ରଦ୍ଧା ସହିତ ରଚିତ ପୃଷ୍ଠବନ୍ଧ ଭଳି ଏକ ଆଲୋଚନା ଲେଖିବା ଦୁରୂହ । ତେଣୁ ଅଧ୍ୟାପକ ରାଜକିଶୋର ମିଶ୍ରଙ୍କ ରଚନାରୁ ଏ ଉଦ୍ଧୃତି । "ଉଦ୍ଧୃତ ଓ ସମାଲୋଚିତ କେଇଟି କବିତାରେ ଏ ମନର ବିବିକ୍ତ ନିଳୟରେ ଅସ୍ପଷ୍ଟ ଓ ବୌଦ୍ଧିକ ଅନୁଚିନ୍ତ । ଉଦାସୀନ ଶିଥିଳ ଅନୁଭୂତିର ସ୍ପଷ୍ଟ ଛାପ ରହିଛି ଓ ସନ୍ନିକଟସ୍ଥ ଆଉ ଏକ କୋଠରୀରେ ତାରୁଣ୍ୟର ଉଦ୍ଦାମ ଚପଳ ପ୍ରଗଳ୍‌ଭ ଉଲ୍ଲାସ ରହିଛି ।"

ଲେଖକ ଜୀବନର ଆଦିପାଦରେ ' ଉଚ୍ଚାରଣ' ଭଳି କବିତା ପୁସ୍ତକ ରଚନା କରିଥିବା କବି କ୍ଷେତ୍ରବାସୀଙ୍କ ଲେଖନୀରେ ଯେ କବିତା ରଚନାର ଅଜସ୍ର ସମ୍ଭାବନା ଥିଲା ଏହା ପାଠକମାତ୍ରେ ଅନୁଭବ କରିପାରେ । ୧୯୬୮ ବେଳକୁ ସଚ୍ଚିରାଉତରାୟ ଓ ଗୁରୁ ପ୍ରସାଦ ଇତ୍ୟାଦି ଶୀର୍ଷରେ ଉପନୀତ । ରମାକାନ୍ତ ଓ ସୀତାକାନ୍ତ କବିତାର ନୂତନ ଦିଗନ୍ତ ସନ୍ଧାନ ତଥା କବିତାର ବ୍ୟାପକ ସମ୍ଭାବନାର ନିରୀକ୍ଷଣରେ ନିଜର ସାମର୍ଥ୍ୟ ବିନିଯୋଗ କରିଛନ୍ତି । ଏହି ସମୟରେ ଅନେକ ତରୁଣ କବିତା ରଚନା ଆରମ୍ଭ କରିଥିଲେ, ଯେଉଁମାନଙ୍କ ମଧ୍ୟରୁ କ୍ଷେତ୍ରବାସୀ ନାୟକ ଅନ୍ୟତମ ।

ଯେମିତି ଆମ କଥା ସାହିତ୍ୟର ଜନକ ଫକୀରମୋହନ ନିଜ କବିତାଗୁଡ଼ିକୁ ନିଜ ଗଦ୍ୟ ସୃଷ୍ଟିର ବିପୁଳ ଉଚ୍ଚତାରେ ଆଢୁଆଳ କରିଦେଲେ, ଠିକ୍ ସେହିପରି କବି କ୍ଷେତ୍ରବାସୀ ପ୍ରାବନ୍ଧିକ, ଗବେଷକ, ସମାଲୋଚକ ଓ ସଂପାଦକ କ୍ଷେତ୍ରବାସୀଙ୍କ ବ୍ୟକ୍ତିତ୍ୱର ଉତ୍ତୁଙ୍ଗତା ଟପି ମୁହଁ ଦେଖାଇପାରିନାହାନ୍ତି । ହୁଏତ କବିତା ଶିଶୁ ଉପଯୁକ୍ତ ଲାଳନ ଅଭାବରୁ ଠିକ୍ ଭାବରେ ବିକଶିତ ହୋଇପାରି ନାହିଁ । ତେବେ ଏକବିଂଶ ଶତାବ୍ଦୀର ପ୍ରଥମ ଦଶକରେ ୧୯୬୯ ରେ ପ୍ରକାଶିତ କବିତା ପୁସ୍ତକର ଆଲୋଚନା ବେଶ୍ ପ୍ରାସଙ୍ଗିକ ମନେ ହୁଏ । ନିଖିଳ ବିଶ୍ୱର ଆର୍ତ୍ତି ଦେଖି ସହାନୁଭୂତିରେ ତରଳିଯାଉଥିବା ଏକ କବିର ହୃଦୟ କବି କ୍ଷେତ୍ରବାସୀ ନାୟକଙ୍କର ଥିଲା, ଯେଉଁଥିପାଇଁ ସେ ଯଶୋଦେହରେ ଆଜି ମଧ୍ୟ ଆୟୁଷ୍ମାନ ହୋଇରହିଛନ୍ତି । 'ଉଚ୍ଚାରଣ' ଓ ଆଚରଣରେ ଜୀବନ ଓ ଜଗତପ୍ରତି ଶ୍ରଦ୍ଧାଶୀଳ ଏହି ମହାନ୍ ଆତ୍ମାଙ୍କ କାବ୍ୟକୃତି ତାଙ୍କୁ କାବ୍ୟାମୋଦୀମାନଙ୍କରେ ଅମର କରି ରଖିବ ।



# କ୍ଷେତ୍ରବାସୀ କବି ମାନସ

ଶୈଳଜ ରବି

୧୯୭୯ ମସିହାରେ କ୍ଷେତ୍ରବାସୀ ଗୋଟିଏ ଭାଷଣ ଦେଇଥିଲେ ଭଦ୍ରକରେ । କବିଶେଖର ଚିନ୍ତାମଣିଙ୍କର ସୁପୁତ୍ର କ୍ଷେତ୍ରବାସୀଙ୍କର ଶିକ୍ଷାଗୁରୁ କବି ଉପେନ୍ଦ୍ର ପ୍ରସାଦଙ୍କ ଜନ୍ମଦିବସରେ । ତାଙ୍କର ସେହି ଭାଷଣର ପ୍ରଥମ କେତୋଟି ବାକ୍ୟକୁ ମୋର ଏ ପ୍ରବନ୍ଧର ଗୌରଚନ୍ଦ୍ରିକା ରୂପେ ବ୍ୟବହାର କରିବାର ପ୍ରଲୋଭନ ଏଡ଼ାଇପାରୁ ନାହିଁ । କ୍ଷେତ୍ରବାସୀ କହୁଛନ୍ତି, "ଉପେନ୍ଦ୍ର ପ୍ରସାଦ ହେଉଛନ୍ତି ମୋର ଶିକ୍ଷା-ଗୁରୁ । ଜ୍ଞାନଦାତା ଗୁରୁଦେବଙ୍କର କବି-ମନୀଷା କଳନା କଲାବେଳେ ଭୟ-ଭକ୍ତିଭରା ଛାତ୍ର-ପ୍ରାଣର ସକଳ ସଙ୍କୋଚ ଘେନି ବୁଝିବାର ଅପଚେଷ୍ଟା କରିନାହିଁ । କବିତାର ଅକ୍ଷରରେ ମୋ ପରି ଦେଶର ଅଗଣିତ ପାଠକମାନଙ୍କ ସହିତ ସେ ଯେପରି ଆଳାପ କରିଛନ୍ତି ଏବଂ ସେଇ ଆଳାପ ଆଲୋଚନାର ହେତୁବୀଜ କେଉଁଠି; ତାଙ୍କ କବି ପୁରୁଷର ଇସ୍ତାହାର କ'ଣ ଇତ୍ୟାଦି ଅନେକ ପ୍ରଶ୍ନ ମୋ ମନକୁ ଆଚ୍ଛନ୍ନ କରିଛି । ସେ ସବୁର ସମାଧାନ ପରସ୍ତ ପରସ୍ତ ବିସ୍ତାରି କହୁନାହିଁ, ସୂଚନାରେ ଜଣାଇ ଦେବାର ଅଭିପ୍ରାୟ ପୋଷିଛି । ଏହାକୁ ଉପେନ୍ଦ୍ର ପ୍ରସାଦଙ୍କ କାବ୍ୟ-ମନ୍ଦିରର ବେଢ଼ାବୁଲା କହିଲେ ଚଳେ ।" (କବି ଉପେନ୍ଦ୍ର ପ୍ରସାଦ, ଆଲୋଚନା ପତ୍ର)

ଅବଶ୍ୟ ଉପେନ୍ଦ୍ର ପ୍ରସାଦଙ୍କ ପରି କ୍ଷେତ୍ରବାସୀ ନ ଥିଲେ ମୋର ଶିକ୍ଷାଦାତା, ଥିଲେ ଅଗ୍ରଜ । ମିଷ୍ଟଭାଷୀ ଅଥଚ ସ୍ପଷ୍ଟବାଦୀ କ୍ଷେତ୍ରବାସୀ ଉପେନ୍ଦ୍ରଙ୍କ କାବ୍ୟକୃତିର ଆଲୋଚନା ଆରମ୍ଭରୁ ସ୍ୱୀକାର କରି ନେଇଛନ୍ତି ଯେ ସେ ଉପେନ୍ଦ୍ରଙ୍କ "କବି ମନୀଷା କଳନା କଲାବେଳେ ଭୟ-ଭକ୍ତିଭରା ଛାତ୍ରପ୍ରାଣର ସକଳ ସଙ୍କୋଚ ଘେନି ବୁଝିବାର ଅପଚେଷ୍ଟା କରିନାହାନ୍ତି ।"

ମୁଁ ମଧ୍ୟ ମୋର ଏହି ଅଗ୍ରଜ ପ୍ରତିମ କବି ସତୀର୍ଥଙ୍କ କବି ମନୀଷାର ଯଥାସମ୍ଭବ ନିର୍ମୋହ, ନିରାସକ୍ତ ଆକଳନ କରିବାକୁ ତାଙ୍କ ଦ୍ୱାରା ଅନୁପ୍ରେରିତ ହୋଇଛି । କ୍ଷେତ୍ରବାସୀଙ୍କ ପରି ମୁଁ ମଧ୍ୟ ଏଠି କବି ପାଠକଙ୍କ ଆଳାପ ଆଲୋଚନାର ହେତୁବୀଜ ଅନ୍ୱେଷଣ କରିବାରେ ଏବଂ କବିଙ୍କର କାବ୍ୟପୁରୁଷର ଇସ୍ତାହାର ଅନୁଶୀଳନ କରିବାରେ ପ୍ରୟାସୀ । ଅଥଚ ସେ ସବୁର ସମାଧାନ ପରସ୍ତ ପରସ୍ତ ବିସ୍ତାରି କହିବି ନାହିଁ । କାରଣ କଳା- ସାହିତ୍ୟର ମୂଲ୍ୟାୟନ କ୍ଷେତ୍ରରେ ପରସ୍ତ ପରସ୍ତ ବିସ୍ତାରି କହିବା କେବଳ ଛାତ୍ରଛାତ୍ରୀଙ୍କ 'ମାନେ ବହିରେ'ରେ ସମ୍ଭବ । ଆଉ ରହିଲା ବେଢ଼ା ବୁଲା କଥା । କ୍ଷେତ୍ରବାସୀ ଉପେନ୍ଦ୍ର ପ୍ରସାଦଙ୍କ କାବ୍ୟ ମନ୍ଦିରର କେବଳ ବେଢ଼ା ପରିକ୍ରମା କରିଛନ୍ତି

ବୋଲି ସ୍ୱୀକାର କରିଛନ୍ତି । ମାତ୍ର ମୋ ପକ୍ଷରେ ସେତକ ମଧ୍ୟ ସମ୍ଭବ ହୋଇନାହିଁ । କାରଣ ସେ ମନ୍ଦିରର ବେଢ଼ା ନାହିଁ । ତାଙ୍କ କବିତା ସଂକଳନର ଉପୋଦ୍‌ଘାତରେ କ୍ଷେତ୍ରବାସୀ ସୂଚାଇ ଦେଇଛନ୍ତି "ଗନ୍ଧନିର୍ମାଣଶାଳାରୁ କାବ୍ୟ ମନ୍ଦିର ଦର୍ଶନ ପାଇଁ ଯାଇ (ମୁଁ) ମୁଖଶାଳାରେ ପହଞ୍ଚିଛି ମାତ୍ର ।" ତାଙ୍କର ଏ ମୁଖଶାଳା କୋଣାର୍କର ମୁଖଶାଳା । ଅକାଳରେ ଭୁଷୁଡ଼ି ପଡ଼ିଛି ବେଢ଼ା । ନିବୁଜ ହୋଇଯାଇଛି ପ୍ରବେଶ ପଥ । ସୂର୍ଯ୍ୟମନ୍ଦିର ପରି କ୍ଷେତ୍ରବାସୀ ମଧ୍ୟ ଅକାଳରେ ଶୂନ୍ୟବାସୀ । ତାଙ୍କର ସର୍ଜନଶୀଳ କାବ୍ୟପୁରୁଷ ସଂପର୍କରେ ଆଜି କିଛି ପ୍ରତ୍ୟକ୍ଷଜ୍ଞାନ ବା ତଥ୍ୟ ଆହରଣ ଏକ ପ୍ରକାର ଅସମ୍ଭବ । କେବଳ ରହିଛି ଖଣ୍ଡେ କୃଶତନୁ କାବ୍ୟକୃତିର କିଛି କବିତା ଆଉ କାବ୍ୟ-କର୍ମ ସଂପର୍କୀୟ କିଛି ଆଲୋଚନା । କବିତାର ଏହି କେତୋଟି ଅଳସକନ୍ୟା, ଶାଳଭଞ୍ଜିକା ଆଉ ସେମାନଙ୍କୁ ବେଢ଼ି ରହିଥିବା ତାଙ୍କ ସମୀକ୍ଷା ସାହିତ୍ୟର କିଛି ଅଶ୍ୱ, ଗଜ, ପଦାତିକଙ୍କୁ ଦୃଶ୍ୟ କରି କ୍ଷେତ୍ରବାସୀଙ୍କର କାବ୍ୟ କୋଣାର୍କକୁ କଳ୍ପନା କରିବା ବ୍ୟତୀତ ଅନ୍ୟ ଗତି ନାହିଁ । କହିଛି, କ୍ଷେତ୍ରବାସୀ ତାଙ୍କ କବିତାର ମୂଲ୍ୟାୟନ ପାଇଁ ଛାଡ଼ିଯାଇଛନ୍ତି ମାତ୍ର କେତୋଟି ସଂକଳନ । 'ଉଚ୍ଚାରଣ' ତାଙ୍କର ପ୍ରଥମ ଓ ଶେଷ କବିତା ସଂକଳନ । ଏଗୁଡ଼ିକ ଲିଖିତ ୧୯୬୩ ରୁ ୧୯୬୯ ଭିତରେ । ଅର୍ଥାତ୍ ତାଙ୍କର ୨୩ ରୁ ୨୮ ବର୍ଷ ବୟଃକାଳ ଭିତରେ । ଏହାପରେ ଇହଧାମ ତ୍ୟାଗ କରିବା ପର୍ଯ୍ୟନ୍ତ ଅର୍ଥାତ୍ ପ୍ରାୟ ଦୁଇ ଦଶନ୍ଧି ଧରି ସେ ଆଉ ପ୍ରାୟ କବିତା ଲେଖିନାହାନ୍ତି । ସୁକବି କ୍ଷେତ୍ରବାସୀ ହଠାତ୍ ନିଜ କାବ୍ୟବଧୂ ନିକଟରୁ କାହିଁକି ସନ୍ନ୍ୟାସ ନେଲେ ତାହା ବୁଝାଇବା ପାଇଁ ତାଙ୍କର ଏକଦା ପ୍ରଣୟିନୀ, ପରେ ଅର୍ଦ୍ଧାଙ୍ଗିନୀ, ସାଥି ଏବଂ ସତୀର୍ଥ ଲାବଣ୍ୟ ଦେବୀ ମଧ୍ୟ ଅସମର୍ଥ । ଏଣୁ ତାଙ୍କ କାବ୍ୟପୁରୁଷର ସମ୍ଭୂତି, ତା'ର ସୃଜନ ପ୍ରକ୍ରିୟା ତଥା ଅକାଳ ନିର୍ବାଣର ହେତୁବୀଜ ନିର୍ଣ୍ଣୟ କରିବା ଏ ସମୀକ୍ଷକ ପକ୍ଷରେ ଏକ ଦୁଷ୍କର ବ୍ୟାପାର । କ୍ଷେତ୍ରବାସୀଙ୍କର ପରିବ୍ୟାପ୍ତ ମହାକାଶରୁ ଯେତିକି ଗ୍ରହାଣୁ ଦୃଶ୍ୟ ତାକୁ ଭିତ୍ତିକରି ତାଙ୍କ ରହସ୍ୟମୟ ନଭୋମଣ୍ଡଳର ଅଦୃଶ୍ୟ ଅବଶିଷ୍ଟକୁ କଳନା ନୁହେଁ କେବଳ କଳ୍ପନା କରିବାକୁ ଚେଷ୍ଟା କରିଛି । ତାଙ୍କ ପକ୍ଷରେ ଯାହା ସମ୍ଭବ ହୋଇଛି ତାକୁ ଭିତ୍ତିକରି ସମ୍ଭାବ୍ୟ ବା ସମ୍ଭାବନାର ଚିତ୍ରଟିଏ ନିର୍ମାଣ କରିବାକୁ ଚେଷ୍ଟା କରିଛି ମାତ୍ର ।

ବହୁଧା ବିଭକ୍ତ ବ୍ୟକ୍ତିର ସାମାଜିକ ଭୂମିକା । ବହୁଧା ବିଭକ୍ତ ତାର ଆତ୍ମିକ ଅନ୍ତର୍ଭୂମି । ଏମାନଙ୍କ ଭିତରେ ପାରସ୍ପରିକ ସଂପର୍କ ଏକ ଦ୍ୱନ୍ଦ୍ୱାତ୍ମକ ସଂପର୍କ । ସଂଘାତ - ସଂଘର୍ଷର ସମ୍ପର୍କ । ଏହି ଭଳି ସଂପର୍କ ଦେଇ ବ୍ୟକ୍ତିର ଉର୍ଦ୍ଧ୍ୱାୟନ ହେଉଥାଏ ଗୋଟିଏ ସମନ୍ୱୟ ବିନ୍ଦୁରୁ ଆଉ ଏକ ସମନ୍ୱୟ ବିନ୍ଦୁକୁ । ଯଦି କୌଣସି ସ୍ତରରେ ସଂଘାତ ସହଜ ନୁହେଁ ଏବଂ ସଂଘର୍ଷ ଅସମାହିତ ତେବେ ସେ କ୍ଷେତ୍ରରେ ବ୍ୟକ୍ତି ସାଲିସ୍ କରେ, ଅଥବା ଭାଙ୍ଗିପଡ଼େ । ଅଥବା ବାଟ କାଟି ଅନ୍ୟ ଏକ ଇଲାକାକୁ ବରିନିଏ । ସାରସ୍ୱତ ଜଗତରେ

ସାଲିସ୍ କରିଗଲେ ସୃଷ୍ଟି ହୁଏ ନିର୍ବୀର୍ଯ୍ୟ, ସାହିତ୍ୟ ଭାଙ୍ଗିପଡ଼ିବାର ଫଳଶ୍ରୁତି ନୀରବତା । ଯିଏ ସାଲିସ୍ କରିବାକୁ ମଙ୍ଗେ ନାହିଁ ଓ ଭାଙ୍ଗି ପଡ଼ିବାକୁ ପ୍ରସ୍ତୁତ ନୁହେଁ ସିଏ sublimate କରେ । ଅବାଟକୁ ବାଟରେ ପରିଣତ କରେ । ନିଜ ବାଞ୍ଛିତ ଅଭିଳାଷକୁ ଉପଲବ୍ଧ ବାସ୍ତବତାର ଛାଞ୍ଚରେ ଢାଳି ତାକୁ ରୂପାନ୍ତରିତ କରେ । ଓଡ଼ିଆ ନିର୍ବୀର୍ଯ୍ୟ କବିତାର ଉଦାହରଣ ଦେବି ନାହିଁ । ଏ ଆତସବାଜି ଆମେ ପ୍ରତ୍ୟହ ଦେଖୁଛୁ । ଉର୍ଦ୍ଧ୍ୱକୁ ଉଡ଼ାଣ ଦେଉଥିବା ଏହି ରଙ୍ଗବେରଙ୍ଗ ହାଉଇ ଅଚିରେ ପୂଳାଏ ପାଉଁଶ ହୋଇ ତଳକୁ ଖସି ଆସୁଛନ୍ତି । ଆଉ ଭାଙ୍ଗିପଡ଼ିବାର ଉପସର୍ଗ ତ ବହୁବିଧ । ଏହାର ବହିଃ ପ୍ରକାଶ ହୋଇପାରେ ଜୀବନଚର୍ଯ୍ୟାରେ ଅଥବା ସାହିତ୍ୟ କ୍ଷେତ୍ରରେ । ନଜରୁଲ୍ ମୂକ ହୋଇଯାଇଛନ୍ତି । ମାୟାକୋଭ୍‌ସ୍କି ଆତ୍ମହତ୍ୟା କରିଛନ୍ତି । ପାଉଣ୍ଡ ପାଗଳଖାନାରେ ପଶିଛନ୍ତି । ର୍‍ୟାମ୍ବୋ କବିତା ଛାଡ଼ି ଘୋଡ଼ାବେପାର କରିଛନ୍ତି । ସୌଭାଗ୍ୟବଶତଃ ଶେଷ ପ୍ରକାରର ସାରସ୍ୱତ ସାଧକଙ୍କ ଦୃଷ୍ଟାନ୍ତ ଦେଇ ବସିଲାବେଳକୁ ସ୍ୱତଃ ମନକୁ ଆସିଯାଉଛି ଦୁଇଟା ଉଦାହରଣ ଆମ ଘରଭିତରୁ । ଚିତ୍ତରଞ୍ଜନ ଦାସ ଏବଂ କ୍ଷେତ୍ରବାସୀ ନାୟକ ସେମାନେ ସାଲିସ୍ କରି ନାହାନ୍ତି କି ହାରିଯାଇନାହାନ୍ତି । ନିଜ ସ୍ୱଧର୍ମ ଆବିଷ୍କାର କରି କ୍ଷେତ୍ରାନ୍ତରର କ୍ଷେତ୍ରବାସୀ ହୋଇଛନ୍ତି । ସେମାନେ ସାହିତ୍ୟିକ ଜୀବନ ଆରମ୍ଭ କରିଛନ୍ତି କବିତା ଅଥବା ଗଳ୍ପ ଲେଖାରୁ । ମାତ୍ର ଏହି ତଥାକଥିତ ସର୍ଜନଶୀଳ ଇଲାକାରୁ ଅଚିରେ ବିଦାୟ ନେଇ ବାଛି ନେଇଛନ୍ତି ପ୍ରବନ୍ଧର କଙ୍କରିଳ ଭୂମି । ପୂର୍ବରୁ କହିଛି, 'ଉଚ୍ଚାରଣ' ର କବିତାଗୁଡ଼ିକ ଲେଖା ହୋଇଥିଲା, ୧୯୬୩ ରୁ ୧୯୬୮ ଭିତରେ । କିଛି କବିତା ଲେଖିଛନ୍ତି ପ୍ରେମରେ ଉବୁଟୁବୁ ହେଉଥିବା ପ୍ରେମିକ କ୍ଷେତ୍ରବାସୀ । ଆଉ କିଛି କବିତା ଲେଖିଛନ୍ତି ସଦ୍ୟ ବିବାହିତ କ୍ଷେତ୍ରବାସୀ । ଏ ବୟସରେ ଓ ଏ ଅବସ୍ଥାରେ ପୃଥିବୀର ସର୍ବତ୍ର ପ୍ରତ୍ୟେକ ମସୀଧାରୀ କବିତା ଗାରେଇଥାଏ । ତେବେ କ୍ଷେତ୍ରବାସୀଙ୍କ କବିତା କ'ଣ ସେହିପରି ମୂକକୁ ବାଚାଳ କରୁଥିବା ଉଚ୍ଚାଟ ପ୍ରେମର ନିଛକ ପଦବନ୍ଧ ବାବଦୂକତା ? 'ଉଚ୍ଚାରଣ' ର କବିତାଗୁଡ଼ିକୁ ଏକାନିଃଶ୍ୱାସକେ ପଢ଼ିଗଲେ ଯେକେହି ଅନୁଭବ କରିପାରିବ ପ୍ରତିଶ୍ରୁତି ମୟ ଏକ ଉନ୍ନତ କବି ଚିତ୍ତର ଉନ୍ମୀଳନ ପର୍ବ । ସଂକଳନର ପ୍ରଥମ କବିତା ହିଁ ପାଠକକୁ ଦେଇଥାଏ ତାର ପ୍ରମାଣ । ସେଇ ପ୍ରଥମ କବିତା 'ଆରଣ୍ୟକ' ର କେତୋଟି ପଂକ୍ତି :

"ନିଘଞ୍ଚ ଅରଣ୍ୟ ଗଲା,

ଉଡ଼ିଗଲେ ବନହଂସୀଦଳ,

ବୃନ୍ତରୁ ପଡ଼ିଲା ଝରି ନିର୍ବିଚଳ ମାଳତୀ ବକୁଳ ।

ବଳ୍କଳ ତେଜିଲା ବୃକ୍ଷ

ପ୍ରସ୍ତପ୍ରସ୍ତ ପତ୍ରର ପଲକେ...
ନିଦ୍ରିତ ଯେ ନାଗ ଶିଶୁ,
ପଲକେ ଉଠିଲା ଫୁଲି
ଗର୍ଭବତୀ ନଈ ପରି ଶେଷ ଶ୍ରାବଣର ।"

ନା, କେବଳ ଶୁଦ୍ଧ ଭାଷାର ନୁହେଁ, କଥ୍ୟଭାଷାରେ ଲିଖିତ 'ଅକ୍ଷର' କବିତାଟିର କେଇପଦ ଶୁଣନ୍ତୁ ।

"ମାନମୟୀ, ଚମ୍ପାବତୀ ଫେରୁଥିବ ପୋଖରୀ ତୁଠରୁ
ଭାଉଜୋ'ଉ ଖୋଜୁଥିବ ଭାଇଙ୍କ ଖବର
ଆଗରେ ସାବିତ୍ରୀ ବ୍ରତ ଭାଇକି ଆସିବେ ସତେ ଉଆଁସ ଅନ୍ଧାରୁ !
ଗାଢ଼ିତ ପହଞ୍ଚେ ଏଠି ଭୋ'ରୁ ଭୋ'ରୁ ।"

'ସମର୍ପଣ' କବିତାଟି ପଢ଼ିଲେ ବୋଧହେବ ସତେକି ସେ କୃତି ସବୁଜ ଗୋଷ୍ଠୀର କେଉଁ କବିଙ୍କର । ନିଜ ପ୍ରେୟସୀଙ୍କୁ ନିଜର ସମସ୍ତ ଗର୍ବ ଗୌରବ ସମର୍ପଣ କରିଦେଇ କବି ଗାଉଛନ୍ତି :

"ଧରଣୀ ଧୂଳି ପରେ ଯାତନା, ଶେଯ ପାରି
ଅପୁରା ଜୀବନେ ଯେ ବେଦନା ମସୀଭରି
ବିଜୟ ଗଉରବ ପାଇଁ ଗୋ
ଏ ମନେ ଅଭିଳାଷ ନାହିଁ ମୋ !
କିଏ ସେ ଦେବ କହ ବିଜୟଟୀକା ଲେଖି
ମରମ ବେଦନାର ସଫଳ ପ୍ରତିଲିପି
ରଚିବ ସତେ କିଏ ? ମଲା ମୋ ଜୀବନରେ
ପରାଣ ସଉରଭ ଦେଇ ଗୋ
ମୋ ପାଇଁ ସେଇମନ କାହିଁ ଗୋ

x x x x x

ଗରବ କିଛି ଯଦି ଜୀବନେ କରେ କେବେ
ସଅଁପି ଦେବି ତାକୁ ତମରି ପଦତଳେ
ଉଜେଇ ଦେବ କିବା ଭାଳୁଛି ଭାଳ ନାହିଁ
ଏକାକୀ ପାରିବ କି ଗରବ ଭାର ବହି ?"

ତା'ପରେ 'ବର୍ଷା' କବିତାଟି ପଢ଼ିଲେ ଲାଗିବ ସତେକି 'ଧୂପ' ର ନାୟିକା ହଠାତ୍ ବେଶ ବଦଳାଇ ସାଜିଛି 'ଅଳକା ସାନ୍ୟାଲ୍' ଅଥବା 'ପ୍ରତିମା ନାୟକ' ।

"ବର୍ଷାବିନ୍ଦୁ ଝରିପଡ଼େ ରୀତାଦାସ କୃଷ୍ଣ କବରୀରେ
ତା' ବେଣୀରେ କୁଞ୍ଜର ସ୍ତବକ ସ୍ଖଳନଚ୍ୟୁତ ମେଘର ଆଘାତେ ।
ମୁଖେ ତା'ର ବାରି ବିନ୍ଦୁ ଚିକ୍‌ଚିକ୍ ସ୍ଫଟିକ ଫଳକ
ଭିଜା ଶାଢ଼ି ଛନ୍ଦି ହୁଏ ଦେହ ବଲ୍ଲରୀରେ
ଦେହରୁ ଅଲଗା କରେ ଅସ୍ପୃର୍ଶ୍ୟ ହାତର ପରଶେ ।"

'ଉଚ୍ଚାରଣ' ରେ ସଂକଳିତ କବିତା ମୁଖ୍ୟତଃ ପ୍ରେମ କବିତା ହୋଇଥିଲେ ମଧ୍ୟ ସନ୍ନିବିଷ୍ଟ ଆଉ କିଛି କବିତାରେ ରହିଛି ଈଶ୍ୱରଙ୍କୁ ଆବାହନ ଅଥବା ଆହ୍ୱାନ, କନ୍ୟାକୁ ହିତୋପଦେଶ, ଛମାଣ ଆଠଗୁଣ୍ଠର ନେତ ଗାଈ ଅଥବା ସାରିଆ, ଭଗିଆକୁ ଉପଜୀବ୍ୟ କରି ଶୋଷଣ ନିଷ୍ପେଷଣର ପ୍ରତିବାଦ ଅଥବା  ସଂସ୍କୃତିର ଭଙ୍ଗା କେଉଁ ପୋତାଶ୍ରୟରେ ପୋତପାଳର ଐକତାନ । ଆଧୁନିକତା ଏବଂ ଆଧୁନିକ କବିତା ସଂପର୍କରେ କ୍ଷେତ୍ରବାସୀ ତାଙ୍କର ଅନେକ ନିବନ୍ଧରେ ଆଲୋଚନା କରିଛନ୍ତି, ବ୍ୟକ୍ତିସତ୍ତାର ଉନ୍ମୋଚନ ଏବଂ ତା'ର ନିଜକୁ ଜାହିର କରିବାର ସଚେତନତା ତଥା ଶକ୍ତି 'ସର୍ଜନାତ୍ମକ ଆଧୁନିକତା' ର ଏକ ବିଶେଷ ଲକ୍ଷଣ ବୋଲି କ୍ଷେତ୍ରବାସୀ ଠାଏ କହିଛନ୍ତି । ତାଙ୍କ ମତରେ ବ୍ୟକ୍ତିର ବିଶ୍ୱାସବୋଧ ଓ ବ୍ୟକ୍ତିର ଶକ୍ତିକୁ ନେଇ ତା'ର ବ୍ୟକ୍ତି-ସତ୍ତା ନିର୍ମିତ । ଯଦି ଆମେ ତାଙ୍କ କବିତାକୁ ଏହି ମାନଦଣ୍ଡରେ ମାପୁ ତେବେ ଦେଖିପାରିବା ଏହି ତରୁଣ କବି ବାସ୍ତବରେ ତାଙ୍କ ଚିନ୍ତା ଏବଂ ଚେତନାରେ କେତେ ଆଧୁନିକ ଥିଲେ । ତାଙ୍କର 'ଉଚ୍ଚାରଣ' କବିତାଟି ଏହି ଦୃଷ୍ଟିରୁ ତାଙ୍କର ଏକ ଘୋଷଣା ପତ୍ର । ତାଙ୍କର ବିଶ୍ୱାସନାମା ବା  credo । କବି ଘୋଷଣା କରୁଛନ୍ତି :

"ଚେତନାରୁ ଜନ୍ମ ମୋର ସଞ୍ଚରିତ ଚେତନା ସମୁଦ୍ରେ
ନବଜାତ ଆତ୍ମା ଘେନେ ନିଷ୍କଳଙ୍କ ଆଲୋକ ବହଇ
ଯଦିଚ ମୋ ଲକ୍ଷ୍ୟ ସ୍ଥିର । ବହମାନ କାଳେ ପ୍ରଭାବିତ
ମଣିଷ ମୁଁ ରକ୍ତଭିକ୍ଷୁ ସୃଷ୍ଟି ବିନାଶକ ।
ସତ୍ୟ ମୋର ଉତ୍ତରତା ! ଏ ଜୀବନ ମିଥ୍ୟା- ଅନୁଗତ
ଆୟୁଷ ଲୋଡ଼ୁଛି ଯେଣୁ ପୋଇମଞ୍ଜି ଚିପୁଡ଼ା ରୁଧିର
ନିହାତି ନିର୍ମମଚିତ୍ତ ଅନୁକ୍ଷଣେ ନିତ୍ୟ ପିପାସିତ

ନୁହେଁ ଅନୁରକ୍ତ ଭଗବାନ ତୁମରି ସୃଷ୍ଟିର
ମୁଁ ମୋର ସୃଷ୍ଟିର ହେତୁ, ପ୍ରସ୍ତାବକ ଭିନ୍ନ ଦିଗନ୍ତର"

'ମୁଁ ମୋର ସୃଷ୍ଟିର ହେତୁ' ବୋଲି କବି ସଦମ୍ଭେ ଘୋଷଣା କରିପାରୁଛନ୍ତି କାରଣ ସେ ବିଶ୍ୱାସ କରନ୍ତି 'ମୃତ୍ୟୁ' କବିତାରେ କହିବା ଭଳି :

"ଜୀବରୁ ଜୀବନ ଜନ୍ମେ
ସୃଷ୍ଟି ହୁଏ ଶୂନ୍ୟରୁ ଶୂନ୍ୟର
ସବୁ ମିଥ୍ୟା, ମିଥ୍ୟା ଏଇ ଆତ୍ମାର ପ୍ରଚାର"

ତେବେ କବିଙ୍କର ଏହି ସ୍ଥିତିବାଦୀ ବିଶ୍ୱାସ ଏକ ନେତିମୂଳକ, ନିହିଲିଷ୍ଟ ବିଶ୍ୱାସ ନୁହେଁ । ଏହା ତାଙ୍କୁ ଏକ ବୃହତ୍ତର ମିଶନ୍, ଏକ ସତ୍ୟଶିବ ମାନବିକ ଅଭୀପ୍ସା ଦିଗରେ ପ୍ରଚୋଦିତ କରୁଛି । 'ପୋତପାଳର ସଙ୍ଗୀତ' ରେ କବି ନିଜର ଗୌରବମୟ ଗତାୟୁ ସଭ୍ୟତାକୁ ଏକ ଭଗ୍ନ ପୋତାଶ୍ରୟ ରୂପେ କଳ୍ପନା କରିଛନ୍ତି ଓ ନିଜକୁ ଘାଟ ଓ ପୋତ ଜଗିଥିବା ଏକ ବୃଦ୍ଧ ପୋତପାଳ ରୂପେ ପରିଚିତ କରିଛନ୍ତି । ପୋତପାଳର ଶେଷ ସ୍ୱଗତୋକ୍ତି :

"ମୁଁ କିନ୍ତୁ ନିମିତ୍ତ ମାତ୍ର ମୃତ ପ୍ରାଣେ । ଭରିବାକୁ ଅମୃତ ଆବେଗ ।
ରଖିଛି ସ୍ୱଦେହ ସତ୍ତା ଏଇ ମୋର ପୂର୍ଣ୍ଣ ପରିଚୟ ।"

ତାଙ୍କର ପରବର୍ତ୍ତୀ ଜୀବନରେ ଧର୍ମୀୟ ବିଶ୍ୱାସ ଜଗନ୍ନାଥ କବିତାଗୁଡ଼ିକରେ ସ୍ଥାନେ ସ୍ଥାନେ ରହିଛି ହୃଦୟରେ ଚମକ ସୃଷ୍ଟିକଲା ଭଳି ରୂପକଳ୍ପ, ଯଥା : "ଏକ ସ୍ମୃତିର ବିସ୍ମୃତି ପାଇଁ" କବିତାରେ କବି ନିଜ ବନ୍ଧୁମାନଙ୍କଠାରୁ ବିଦାୟ ମନେଉଛନ୍ତି ଏବଂ ସେମାନଙ୍କୁ ତାଙ୍କର ସବୁଦୋଷ କ୍ଷମା କରିନେବାକୁ ଓ ଉଚିତ ମନେକଲେ ସେ ସବୁ ଭୁଲ୍‌କୁ (ଅଥବା ତାଙ୍କୁ) ସଂପୂର୍ଣ୍ଣ ଭୁଲିଯିବା ପାଇଁ ଅନୁରୋଧ କରୁଛନ୍ତି ଏଇ ଭାଷାରେ :

"ଯଦି ନା ଆଘାତ କିଛି ଦେଇଥିବି, ନିର୍ଦ୍ଦୋଷ ଅନ୍ତରେ
ଭୁଲିଯିବ, ଗଣିକା ଭୁଲିଲାପରି ରାତ୍ରୀ ଆଗନ୍ତୁକେ ।"

ପୂର୍ବଜନ୍ମ ପରଜନ୍ମ ବିଶ୍ୱାସ ଏକ ଭ୍ରାନ୍ତି ବୋଲି ଦର୍ଶାଇବାକୁ ଯାଇ 'ମୃତ୍ୟୁ' କବିତାରେ ସେ କହୁଛନ୍ତି :

"ସ୍ମୃତିର ଶୃଙ୍ଗାର ଲିପି ହୃତ ଜୀବନର
ଯଦି କେହି ଉଦ୍‌ଥାପିତ କରେ ପୁନର୍ବାର
ଜନ୍ମକୁ ଦେଖାଇ ଦିଏ
ଗୋଲାକାର ପାତ୍ରେ ଥିବା ଦଧିର ଦେହରେ
ଲୋଳିତ ସ୍ୱପ୍ନକୁ ସବୁ ସଞ୍ଜୀବିତ କରେ ।"

ଅବଶ୍ୟ ଅନେକ କବିତାରେ ଉଚ୍ଚାଙ୍ଗ କବିତାର ଗୋଟିଏ ଗୋଟାଏ ଝଲକ ଥିଲେ ମଧ ବିଭିନ୍ନ କାରଣରୁ ସାମଗ୍ରିକଭାବେ କେତେକ କବିତା କଞ୍ଚାଥିଆ ହୋଇଯାଇଛନ୍ତି । ହୁଏତ କବିତା ଲେଖା ଦିଗରେ ଏହା ତାଙ୍କର ପ୍ରଥମ ପ୍ରଚେଷ୍ଟା ହୋଇଥିବାରୁ ସ୍ଥାନେ ସ୍ଥାନେ ଭାବର ଅଗଭୀରତା ଅଥବା ସେ ଭାବକୁ ଯଥାଯଥ ରୂପ ଦେବା ଦିଗରେ ଭଙ୍ଗୀର ଅକ୍ଷମତା ପାଠକ ସ୍ଥାନେ ସ୍ଥାନେ ଅନୁଭବ କରିପାରେ । କେତେକ କବିତା ପ୍ରେମର ଉଚ୍ଚାଟ ଅବସ୍ଥାରେ ରଚିତ ହୋଇଥିବାରୁ ଓ ଟେକ୍‌ନିକ୍ ଉପରେ ଯଥେଷ୍ଟ ନିୟନ୍ତ୍ରଣ ରହିନଥିବାରୁ ସେଗୁଡ଼ିକ ଶୃଙ୍ଗାର ରସ ସୃଷ୍ଟି କରିବା ପରିବର୍ତ୍ତେ ଅଶ୍ଳୀଳବୋଧ ହୁଅନ୍ତି । କାବ୍ୟିକ ରସ Raw emotions ରୁ ଚିପୁଡ଼ା ହୋଇପାରେ ନାହିଁ । ଏଥିପାଇଁ ଦରକାର ପଡ଼େ emotions recollected in tranquility ଅର୍ଥାତ୍ ଉତଲା ଅବସ୍ଥାରେ ବାହାରୁଥିବା ଭାବାବୋଧ ନୁହେଁ, ବିଶ୍ରମ ଓ ବିଶ୍ରମ୍ଭ ଅବସ୍ଥାରେ, ଅର୍ଥାତ୍ ଏକ ସମାହିତ ମନଃସ୍ଥିତିରେ ହେଉଥିବା ରୋମନ୍ଥନରୁ ଜାତ ସଂବେଗ ହିଁ ସଫଳ କବିତାର ଉତ୍ପ୍ରେରକ ହୋଇପାରେ । ସେପରି ଅବସ୍ଥାକୁ ଅପେକ୍ଷା କରିଥିଲେ ସେ 'କଳାନାଗ' ଅଥବା 'ନାଲିମନ୍ଦାର' ଭଳି ଘଷରା ପ୍ରତୀକ ବ୍ୟବହାର କରି ନଥାଆନ୍ତେ, ଅଧିକ ଉତ୍ତେଜକ ଅଥଚ ସୌମ୍ୟ ରସଘନ ରୂପକଳ୍ପ ବ୍ୟବହାର କରିପାରିଥାଆନ୍ତେ ।

କ୍ଷେତ୍ରବାସୀ କାହିଁକି ଏହି ଖଣ୍ଡେ ମାତ୍ର ଚଟି କବିତା ସଂକଳନ ପ୍ରକାଶ କରିବା ପରେ ପରେ କବିତା ଲେଖା ଏକବାରେ ବନ୍ଦ କରିଦେଲେ ? ତାଙ୍କର ପତ୍ନୀ ସତୀର୍ଥ ଅଧ୍ୟାପିକା ନାୟକ ଯେପରି ଏ ଦିଗରେ ବିଶେଷ ଆଲୋକପାତ କରିପାରି ନାହାନ୍ତି ସେହିପରି କରିପାରି ନାହାନ୍ତି ତାଙ୍କର ଗୁରୁ ଓ ପଥପ୍ରଦର୍ଶକ ପ୍ରଫେସର କୃଷ୍ଣଚରଣ ବେହେରା ଅଥବା ଏକଦା ତାଙ୍କର ସହକର୍ମୀ ଏବଂ ତାଙ୍କ ସହିତ ଯୌଥ କବିତା ଲେଖିବାର ଏକ ଅଭିନବ ପରୀକ୍ଷା କରିଥିବା ଏବଂ 'ଉଚ୍ଚାରଣ' କବିତା ସଂକଳନର ପୃଷ୍ଠବନ୍ଧ ଲେଖିଥିବା ଅଧ୍ୟାପକ ରାଜକିଶୋର ମିଶ୍ର । ସମସ୍ତଙ୍କର ସେଇ ଏକା ଉତ୍ତର : ସେ ସମାଲୋଚନା ସାହିତ୍ୟରେ ସମସ୍ତ ଶକ୍ତି ନିୟୋଜିତ କରିବା ସ୍ଥିର କଲେ । କିନ୍ତୁ କାହିଁକି ? ସେ କ'ଣ ଏକାଧାରାରେ କବି ସମାଲୋଚକ ହୋଇପାରି ନ ଥାଆନ୍ତେ ? ମାଥ୍ୟୁ ଆର୍‌ନୋଲ୍ଡ ଅଥବା ଏଲିୟଟ୍‌ଙ୍କର କିମ୍ବା ଆମ ରାଜ୍ୟରେ ମାନସିଂ ଅଥବା ସଚ୍ଚି ରାଉତରାଙ୍କ ସାରସ୍ୱତ ବାଙ୍ମୟ ପ୍ରତି ଦୃଷ୍ଟିପାତ୍ କଲେ ଦେଖାଯାଏ ତାହା ସମୀକ୍ଷା ସମାଲୋଚନା ସାହିତ୍ୟରେ ଯେପରି ସମୃଦ୍ଧ ସେହିପରି କାବ୍ୟକବିତାରେ ମଧ ଋଦ୍ଧିମନ୍ତ । କିଏ ଜାଣେ, ସେ ହୁଏତ ପ୍ରଫେସର ବେହେରାଙ୍କ ପରି ଅଥବା ସ୍ୱର୍ଗୀୟ ରଘୁନାଥ ଦାସଙ୍କ ପରି ପୁଣି ଶେଷଜୀବନରେ କବିତା କି ଗଳ୍ପକୁ ଲେଉଟି ନ ଥାଆନ୍ତେ ? ତେବେ ତାଙ୍କର ଉପରୋକ୍ତ ତିନି ଘନିଷ୍ଠ ସତୀର୍ଥଙ୍କ ମତାମତ ଉପରେ ନିର୍ଭର କରି ଏ ଆଲୋଚକ ଏହିଭଳି ଏକ ଉପସଂହାରରେ ପହଞ୍ଚିଛି ଯେ,

ତାଙ୍କର ଆଦ୍ୟ ଜୀବନରେ ଆସିଥିବା ପ୍ରେମର ବଢ଼ିପାଣି ଛାଡ଼ିଯିବା ପରେ, ଅର୍ଥାତ୍ ଶୃଙ୍ଗାରିକ ସଂବେଗର ଊର୍ମି ଓ ଜଳାବର୍ତ୍ତ ସବୁ ଶାନ୍ତ ହୋଇଯିବା ପରେ ସେ ନିଜର ସ୍ୱଧର୍ମ ଖୋଜିଛନ୍ତି ଏବଂ ଚିତ୍ତରଞ୍ଜନ ଦାସ ଅଥବା ଦାଶରଥି ଦାସଙ୍କ ପରି ଅଳ୍ପକାଳ କବିତାଚର୍ଚ୍ଚା ପରେ ସବୁଦିନ ପାଇଁ କବିତା ରାଜ୍ୟରୁ ଆତ୍ମନିର୍ବାସନ ନେଇଛନ୍ତି ଏବଂ ସମାଲୋଚନାର ଜଗତକୁ ବରି ନେଇଛନ୍ତି ।

କବିତା ସଂଶ୍ଳେଷଣର ଜଗତ, ସମାଲୋଚନା ବିଶ୍ଳେଷଣର । କବିତା ଚିତ୍ରରେ କଥା କହେ । ଏହି ଚିତ୍ରଭାଷା ଏକ ରୂପକଧର୍ମୀ ଭାଷା । ଏକ Metaphonic discourse । ସମାଲୋଚନାର ଭାଷା ମାପ୍‌ଚୁପ୍ ତାର୍କିକ ଭାଷା । ଏକ logical discourse । କବିତାର ଚିତ୍ରଭାଷା ଧୌତ ପ୍ରକ୍ରିୟାରେ ଅଙ୍କିତ ଜଳରଙ୍ଗର ଚିତ୍ର ପରି ଝାପ୍‌ସା, ଅସ୍ପଷ୍ଟ । ସମାଲୋଚନାର ଭାଷା ଖରାବେଳ ପରି ଫର୍ଚ୍ଚା ଓ ସ୍ପଷ୍ଟ । ତେଣୁ ଏ ଉଭୟ ଜଗତ ମଧ୍ୟରେ ଚଳପ୍ରଚଳ ଆଦୌ ସହଜସାଧ୍ୟ ବ୍ୟାପାର ନୁହେଁ । ଯେଉଁମାନେ ଗୋଟିଏ ମିଡ଼ିୟମ୍‌ରୁ ଆଉ ଏକ ମିଡ଼ିୟମକୁ ଅବଲୀଳାକ୍ରମେ ଯାତାୟତ କରିପାରିଛନ୍ତି ସେମାନେ କେବଳ ଯେ ଉଭୟ ମିଡ଼ିୟମର ଭିତର ବାହାର ତନ୍ନତନ୍ନ କରି ବୁଝିପାରିଛନ୍ତି ସେତିକି ନୁହେଁ, ସେଇ ବୁଝିବାକୁ କାର୍ଯ୍ୟକାରୀ କରିବା ନିମିତ୍ତ ଯଥେଷ୍ଟ ଜିଦ୍,. ଶକ୍ତି ଓ ଧୈର୍ଯ୍ୟ ସଞ୍ଚୟ କରିପାରିଛନ୍ତି । କଳା ସାହିତ୍ୟ କ୍ଷେତ୍ରର ମୁଖା ବା personna ଚଟାପଟ୍ ବଦଳାଇ ହେବାଭଳି ଏକ ମୁଖା ନୁହେଁ । ଏହା ଶବସାଧକର ଅନ୍ୟ ଶରୀର ପ୍ରବେଶ ପରି ଏକ ଦୁରୂହ, ଆୟାସସାଧ୍ୟ ସାଧନା । ଓଡ଼ିଆ ସାହିତ୍ୟର ଜଣେ ପ୍ରଥମଧାଡ଼ିର ସମୀକ୍ଷକରୂପେ କ୍ଷେତ୍ରବାସୀ ଏକଥା ଭଲରୂପେ ବୁଝିଥିଲେ । ଯଦି କେବଳ ଶବ୍ଦଜ୍ଞାନ, ଛନ୍ଦଜ୍ଞାନ, ଉପମା-ଉପମେୟ, ଚିତ୍ରକଳ୍ପ ବା ମିଥ୍‌ରେ କବିତାର ମଣ୍ଡନର ଗୁପ୍ତ ସୂତ୍ର ଅର୍ଥାତ୍, ଟେକ୍‌ନିକ୍, କ୍ରାଫ୍‌ଟ୍‌ସମ୍ୟାନ୍‌ସିପ୍ ବିଷୟରେ ଯଥେଷ୍ଟ ଜ୍ଞାନ ଭଲ କବିତାଟିଏ ଲେଖିବାରେ ସାହାଯ୍ୟ କରିପାରୁଥାଆନ୍ତା, ତେବେ କ୍ଷେତ୍ରବାସୀ ହେଉଛନ୍ତି ଶେଷ ବ୍ୟକ୍ତି ଯିଏ ଏ ଦିଗରେ ପଛେଇଥାଆନ୍ତେ । ଉଭୟ ପ୍ରାଚ୍ୟ ପାଶ୍ଚାତ୍ୟ କାବ୍ୟତତ୍ତ୍ୱର ସେ ଥିଲେ ସମକାଳୀନ ଓଡ଼ିଶାରେ ଜଣେ ବିରଳ ତଦ୍‌ବିତ୍ । ସେଥିକୁ 'କାବ୍ୟପୁରୁଷର କଥା', 'କବିତା କାହିଁକି ?' 'ଆଧୁନିକତା ଓ ଆଧୁନିକ କବିତା ତତ୍ତ୍ୱ', ପରି ଉଚ୍ଚକୋଟୀର ନିବନ୍ଧମାନ ଲେଖିଥିବା କ୍ଷେତ୍ରବାସୀଙ୍କ ପାଇଁ ତ ଆଧୁନିକ କବିତା ଲେଖିବା ବାଁ ହାତର ଖେଳ ହୋଇଥାଆନ୍ତା । ବିଶେଷକରି ଯେତେବେଳେ ଆଧୁନିକ କବିତା ଠିଆଠିଆ ବସ୍ତ୍ରାଣ୍ଡରେ ଲେଖି ହୁଏ ଇତି ଦୁର୍ନାମଃ । କାହିଁକି ତା ହେଲେ କ୍ଷେତ୍ରବାସୀ ଯେକି ମୂଳତଃ ଜଣେ କବି ଥିଲେ କବିତା ଲେଖା ଛାଡ଼ି ଦେଲେ ? ୧, ୨, ୩, ୪ କରି

ପଏଣ୍ଟ ଦେଇ ଆଧୁନିକ କବିତାର ସେ ଯେଉଁସବୁ ଲକ୍ଷଣ ତାଙ୍କର ଅନେକ ପ୍ରବନ୍ଧରେ ବଖାଣିଛନ୍ତି, ସେ ବୁଝିଥିଲେ ଯେ ତାହା ପରୀକ୍ଷାରେ ଭଲ ମାର୍କ ପାଇବା ପାଇଁ ଘୋଷା ଯାଇପାରେ କିମ୍ବା ଆଉ ଗୋଟିଏ ସମୀକ୍ଷକକୁ ପ୍ରବନ୍ଧଟିଏ ଲେଖିବାରେ ସହାୟକ ହୋଇପାରେ, କିନ୍ତୁ କବିତା କରିବାର ଗୁପ୍ତରହସ୍ୟ ସେଥିରୁ ବୁଝି ହୁଏ ନାହିଁ । ଭଲ କବିତାର କଷଟି ପଥରଟିଏ ତିଆରି କରିଥିଲେ ସମାଲୋଚକ କ୍ଷେତ୍ରବାସୀ ନୁହନ୍ତି, କରିଥିଲେ ତରୁଣ କବି କ୍ଷେତ୍ରବାସୀ । ମନେହୁଏ, ଏହି କଷଟି ପଥରଟି ଆବିଷ୍କାର କରିବା ପାଇଁ ସେ ନିଜର ବିଦ୍‌ବତ୍ତା ଅପେକ୍ଷା କବି ହିସାବରେ ନିଜର ସହଜଜ୍ଞାନ ବା intution କୁ ଅଧିକ ପ୍ରୟୋଗ କରିଥିଲେ । ଏଇଥିପାଇଁ ସେ ମାତ୍ର ଗୋଟିଏ ସହଜ ସରଳ ବାକ୍ୟରେ ଉତ୍ତାଙ୍କ କବିତାର ଲକ୍ଷଣ ପ୍ରକାଶ କରିଯାଇଛନ୍ତି ତାଙ୍କର' ସେହି କବିତା ସଂକଳନର ଭୂମିକାରେ । 'ସ୍ମରଣୀୟ ଲିପି' ଶୀର୍ଷକ ଏହି ଭୂମିକାରେ ସେ କହୁଛନ୍ତି । "କେତୋଟି ସ୍ପନ୍ଦନର ପ୍ରମୂର୍ତ୍ତ ଲିପି ଏଇ ମୋର କବିତାଗୁଡ଼ିକ ।"

ସତରେ କବିତା କେତୋଟି ସ୍ପନ୍ଦନର ପ୍ରମୂର୍ତ୍ତଲିପି । ଏହାଠୁ ଆଉ ଅଧିକ ଶକ୍ତିଶାଳୀ ଭାଷାରେ ମୁଁ କବିତାର ଅନୁଭବକୁ ପ୍ରକାଶ କରିପାରିବି ନାହିଁ । କବି କର୍ମ ମୁହୂର୍ତ୍ତକୁ ମହାକାଳ ପାଇଁ ବାନ୍ଧି ରଖିବାର ଏକ ଦୁଃସାଧ୍ୟ ପ୍ରଚେଷ୍ଟା । ଧାନର ଶିଶା ଉପରେ ଢଳଢଳ ହେଉଥିବା ଶିଶିର ବିନ୍ଦୁଟିକୁ ଯେପରି ରବୀନ୍ଦ୍ରନାଥ ଧରି ରଖିପାରିଛନ୍ତି ଚିରକାଳ ପାଇଁ । ଶହଶହ ଲୋକ ଦେଖୁଥିବା ସେହି ଦୃଶ୍ୟଟି କିନ୍ତୁ କବି ହୃଦୟରେ ସୃଷ୍ଟି କରିଛି ଏକ ସ୍ପନ୍ଦନ । ତେବେ କେବଳ ସ୍ପନ୍ଦନ ସୃଷ୍ଟି ଯଥେଷ୍ଟ ନୁହେଁ । ସେହି ଭାବ-ସ୍ପନ୍ଦନକୁ ଧରି ରଖିପାରିବାର ଓ ଲିପିବଦ୍ଧ କରିପାରିବାର ଶକ୍ତି ଥିବା ଦରକାର । ବିଜୁଳିକନ୍ୟାକୁ ଧରିବାର ଓ ତାକୁ ବଶୀଭୂତ କରିବାର ପ୍ରଚେଷ୍ଟା ପରି ଏହା ଆପାତତଃ ଏକ ଅସମ୍ଭବ ବ୍ୟାପାର । ଏକ ଉଦ୍ଦୀପକ କବିତା ଏହିଭଳି ବଶୀଭୂତା ବିଜୁଳି କନ୍ୟା । ଭଲ କବିତା ପଠନର ପ୍ରଥମ ପ୍ରତିକ୍ରିୟା ହେବ ଯାହାକୁ ଇଂରାଜୀରେ କହିପାରିବା epiphanic । Epiphany ଏକ ଦିବ୍ୟ ସ୍ପନ୍ଦନ । ଜଗତର ମୁକ୍ତିଦାତା ଜନ୍ମ ହୋଇସାରିଲେଣି । ଏ ଖବର ପାଇ ପ୍ରାଚ୍ୟ ଦେଶରୁ ପଣ୍ଡିତମାନେ ଗ୍ରାମୁ ଗ୍ରାମାନ୍ତର ଖୋଜିଛନ୍ତି । ହତାଶ ହୋଇ ଫେରିଯିବା କଥା ଚିନ୍ତା କରୁଥିବାବେଳେ ସେମାନେ ଦର୍ଶନ କରିଛନ୍ତି ଜେରୁଜେଲମ୍‌ର ଏକ ଘୋଡ଼ାଶାଳରେ ଜନ୍ମ ନେଇଥିବା ଏକ ନବଜାତକୁ । ସେଇ ପ୍ରଥମ ଦର୍ଶନରେ ହିଁ ସେମାନେ ଏକ ଦିବ୍ୟସ୍ପନ୍ଦନ ପାଇଛନ୍ତି ଏବଂ ବୁଝିଯାଇଛନ୍ତି ସିଏ ହିଁ ସେହି ପ୍ରତୀକ୍ଷିତ ପୁରୁଷ । Epiphany ଅର୍ଜୁନ ଅନୁଭବ କରିଥିଲେ ନବଗୁଞ୍ଜରର ଦର୍ଶନରେ । ନବଗୁଞ୍ଜରର ବିଚିତ୍ର ଅଙ୍ଗ ଅବୟବ ଅର୍ଜୁନଙ୍କୁ ଚକିତ କରିନଥିଲା । ପ୍ରଥମ ଦର୍ଶନରୁ ହିଁ ସେ ଠଉରେଇ ପାରିଥିଲେ ତାର ବ୍ରହ୍ମପିଣ୍ଡ । ସେଇଥିପାଇଁ ସ୍ୱତଃ ତାଙ୍କର ହାତ ଦୁଇଟି ଯୋଡ଼ି

ହୋଇଯାଇଥିଲା । ସଫଳ କବିତାଟିଏ ପଢ଼ିବାର ପ୍ରଥମ ପ୍ରତିକ୍ରିୟା ହୁଏ ଏହିପରି । ଏଲିୟଟ୍ କହିବା ଭଳି : it is felt before it is understood । ଏହା ସଫଳ ଏକ joke ବା ହସକଥା ପରି । ଫେଣେଇ ଫଟେଇ ବୁଝେଇ ବସିଲେ ହସ ଆଉ ବାହାରେ ନାହିଁ ।

ସମୀକ୍ଷାର ଭଙ୍ଗୀ କିନ୍ତୁ ଫେଣେଇ ଫଟେଇ କହିବାର ଭଙ୍ଗୀ । ସେଠି ଏହା ଏକ ଦୋଷ ନୁହେଁ, ଏକ ଅଳଙ୍କାର । ସେଠି ପ୍ରାଞ୍ଜଳ ହେବାକୁ ପଡ଼େ, ବାବଦୂକ ହେବାକୁ ପଡ଼େ । କାରଣ ସେଠି ବିଶ୍ଳେଷଣ କରିବାକୁ ପଡ଼େ । କବିତାର ପଦ୍ଧତି ସଂଶ୍ଳେଷଣ ପଦ୍ଧତି । ସମୀକ୍ଷକ ଦୃଷ୍ଟିରେ ଢିଙ୍କିଶାଳର ଆଲୋଚନାରେ ଢେଙ୍କାନାଳର ଆଲୋଚନା ପୂରାଇବା ଏକ ଗର୍ହିତ କାର୍ଯ୍ୟ । ଏହା ବରଦାସ୍ତ କରାଯାଇପାରେନା । କିନ୍ତୁ ଦକ୍ଷ କବିଟିଏ ଢେଙ୍କାନାଳ, ଢିଙ୍କିଶାଳ ଏବଂ ଢାଙ୍କୁଣି ଭିତରେ ସଂଶ୍ଳେଷଣ ଆଣି ସୁନ୍ଦର କବିତାଟିଏ ଗଢ଼ି ଦେଇପାରେ ।

ସମୀକ୍ଷାକୁ ନିତ୍ୟକର୍ମପରି ଧରାବନ୍ଧା ରୁଟିନ୍‌ରେ ପକାଯାଇପାରେ । ଇଚ୍ଛା ହେବା ମାତ୍ରକେ ବା ବରାଦ ମିଳିବା ମାତ୍ରକେ କଲମ ଚଳାଯାଇପାରେ । ମାତ୍ର ଭଲ କବିତାଟିଏ ସୃଷ୍ଟି ପାଇଁ ଭାବ-ସ୍ପନ୍ଦନର ସେହି ଚରମ ମୁହୂର୍ତ୍ତଟିକୁ ଅପେକ୍ଷା କରି ରହିବାକୁ ପଡ଼େ । ହୁଏତ୍ ଦିନ ଦିନ, ହୁଏତ ମାସମାସ । ପ୍ରେମର ବଢ଼ିପାଣି ଛାଡ଼ି ଯିବା ପରେ ଅପେକ୍ଷାର ବିପ୍ରଲମ୍ଭ ପାଇଁ କ୍ଷେତ୍ରବାସୀଙ୍କର ଆଉ ଧୈର୍ଯ୍ୟ ନ ଥିଲା । ସିଆଡ଼େ ଅଧ୍ୟାପକ କ୍ଷେତ୍ରବାସୀ କବି କ୍ଷେତ୍ରବାସୀଙ୍କ ପାଇଁ ଏକ ଆହ୍ୱାନ ହୋଇ ଠିଆ ହେଲେଣି । କାରଣ ମାନସିଂହ ବାରମ୍ବାର ଟିହାଇଲେଣି "ଓଡ଼ିଆ ଅଧ୍ୟାପକ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ଓହ୍ଲାଇବାକୁ ଡରନ୍ତି ।" ଡଃ ବେହେରା ତୁହାକୁ ତୁହା କାନରେ ଫୋଡ଼ିଲେଣି 'ଛାତ୍ରଙ୍କ ପାଇଁ କିଛି ଉନ୍ନତମାନର କାର୍ଯ୍ୟ କରିବାକୁ ହେବ ।' ଏଣୁ କ୍ଷେତ୍ରବାସୀ କବିତାର ଦୁସ୍ତର ଚିତ୍ରମାର୍ଗ ଛାଡ଼ି ସମୀକ୍ଷାର ବିଚିତ୍ର ମାର୍ଗକୁ ବରିନେଲେ ଅବଶିଷ୍ଟ ଜୀବନ ପାଇଁ । କବିତା ସ୍ରୋତସ୍ୱିନୀ ଶୁଖିଯିବା ପରେ ତା'ର ବାଲୁକା ଶଯ୍ୟାରେ ଧାନ, ବିରି, କୋଳଥ ଚାଷ ହେଲା । ଭଲ ହେଲା । ଆଉ ଏକ ଭଲ କବି କ୍ଷେତ୍ରବାସୀଙ୍କ କବିତ୍ୱ କ୍ଷେତ୍ରବାସୀଙ୍କ ରସିକ ପାଠକଙ୍କୁ ସେ ସଂପୂର୍ଣ୍ଣ ହତାଶ କରିନାହାନ୍ତି । ସେଠି ବି ଅନ୍ତଃସଲିଳା ଫଲ୍‌ଗୁ ପରି ପ୍ରବାହିତ ତାଙ୍କ ସମୀକ୍ଷାର ଛତ୍ରେ ଛତ୍ରେ ଫୁଟି ଉଠେ କବିତ୍ୱ । ଉଦାହରଣ ସ୍ୱରୂପ, କବିତା ଓ କବିତ୍ୱ, କଳାବସ୍ତୁ ଓ କଳାଶକ୍ତି ଭିତରେ ସଂପର୍କ ବୁଝାଇବାକୁ ଯାଇ ସେ "କାବ୍ୟପୁରୁଷର କଥା" ନିବନ୍ଧଟି ଆରମ୍ଭ କରୁଛନ୍ତି : "ସଶରୀରେ ସଙ୍ଗୀତ ଆସି ଉଭାହୁଏ ନାହିଁ । ଧ୍ୱନିରେ ଲୁଚି ରହିଥାଏ ତା'ର କାୟ । ଶ୍ରୁତ, ଅଶ୍ରୁତ କେତେ ଭଙ୍ଗୀରେ ଏଇ ସଙ୍ଗୀତ, ମନରେ ମିଶେ,

ପ୍ରୀତିରେ ମଜ୍ଜେ, ମରମରେ ଦୋଳି ଖେଳେ । ଶାଳଭଂଜିକାର ତନୁରାଗରେ ଉଛୁଳି ପଡୁଥାଏ ପ୍ରସ୍ଫୁଟିତ ଯୌବନର ଆଭା, ଚିଟାଉ ଲେଖିକା ପ୍ରଣୟିନୀର ଆଶାଦୀପ୍ତ ଦୃଷ୍ଟିରେ କେତେ ସ୍ପର୍ଶକାତରତା ! କବିତାର କଳେବରରେ କେତେ ଆବେଗ ଅନୁଭୂତିର ତରଙ୍ଗ ମେଖଳା । ଏମାନେ ସମସ୍ତେ ତ ନିଜ ରୂପର ଆଲୋକରେ ମୂର୍ତ୍ତିମାନ, ଆପଣା ସଂସ୍କାର ଆଭରଣ ଘେନି ପରିଚିତ । କବିତା, ସଙ୍ଗୀତ, ସ୍ଥାପତ୍ୟ ଇତ୍ୟାଦି ଅଭିବାଚକ ଶବ୍ଦଗୁଡ଼ିକ ଗୋଟିଏ ଗୋଟିଏ ଆଧାର । ଆଧେୟର ମୂଲ୍ୟ ବଳରେ ଏମାନେ ମୂଲ୍ୟବାନ । ଆଧେୟ ନ ଥିଲେ ଆଧାର ମୃତ । ପ୍ରାଣ ଉଡ଼ିଗଲେ ଶରୀର ଶବ ହେଲାପରି, ପିଣ୍ଡ ପଡ଼ିଛି, ପ୍ରାଣ ନାହିଁ । ପିଣ୍ଡରେ ପ୍ରାଣ ପଶିଲେ ମଣିଷ କଥା କହେ । କଳା-ବସ୍ତୁରେ କଳା-ଶକ୍ତିର ସଂଯୋଗ ଘଟିଲେ ତାହାର ଜୀବନ ତେଜ ଫିଟେ, ଧୂସରତା ଉଭେଇଯାଏ, ବିବର୍ଣ୍ଣତାର ଦୃଷ୍ଟିଦାଗ ଲିଭିଯାଏ ।”

କ୍ଷେତ୍ରବାସୀ କବିତା ଛାଡ଼ି ଦେଇଛନ୍ତି କିନ୍ତୁ କବିତ୍ୱ ତାଙ୍କୁ ଛାଡ଼ିପାରି ନାହିଁ । ତାଙ୍କ ପରି ତାଙ୍କ କବି ଜୀବନ ମଧ୍ୟ ଅକାଳରେ ସରିଯାଇଛି ସତ, ହେଲେ ତାଙ୍କର କାବ୍ୟପୁରୁଷ ଓଡ଼ିଆ ସାହିତ୍ୟ ବିଦ୍ୟାବଧୂକୁ ପ୍ରଣୟପାଶରେ ଆବଦ୍ଧ କରି ରଖିଥିବ, ହାତଧରି ବାଟ କଢ଼େଇ ନେଉଥିବ ଚିରଦିନ ।



# କବି କ୍ଷେତ୍ରବାସୀଙ୍କ କାବ୍ୟ-ମାନସ

ଶ୍ରୀ ଅପୂର୍ବ ରଂଜନ ରାୟ

**କା**ବ୍ୟ ସ୍ରଷ୍ଟାର ତନ୍ମୟ ଅବସ୍ଥା, ଶିଳ୍ପକାରକୁ କେଉଁ ଦିଗନ୍ତର ସନ୍ଧାନୀ କରାଏ, ତାହା ସହଜରେ ଅନୁଭବ କରିହୁଏ ନାହିଁ । ଏହା ଗମ୍ଭୀର ଅଥଚ ପ୍ରଶାନ୍ତ ହୋଇଥିବାରୁ, କାବ୍ୟକାରର ତନ୍ମୟାବସ୍ଥା 'କାବ୍ୟମୀମାଂସା' ଗ୍ରନ୍ଥରେ 'ବ୍ରହ୍ମାସ୍ୱାଦ ସହୋଦର' ରୂପେ ବର୍ଣ୍ଣିତ ହୋଇଛି । ପଦ୍ମଫୁଲର ଶୋଭାରେ ଦର୍ଶକ ମୁଗ୍ଧ ହେଲାବେଳେ, କେବେ କ'ଣ ତା' ସୃଷ୍ଟିର ଭିତ୍ତିଭୂମି ପଙ୍କିଳ ପରିବେଶ ବୋଲି ବିଚାରକୁ ଆସିଥାଏ କି । ସେମିତି କବି - ମାନସର ପ୍ରତୀକ କବିତାର ସ୍ରଷ୍ଟା ଏତେ ମନୋମୁଗ୍ଧକର କାବ୍ୟ ସ୍ୱର ଶୁଣାଉଥିବା ବେଳେ ଏହି ସ୍ୱରର ଭିତ୍ତିଭୂମି କିପରି ଓ ପାରିପାର୍ଶ୍ୱିକ ପରିବେଶ ସୁଗନ୍ଧମୟ ଅବା ଆକର୍ଷଣୀୟ କି, ଏହା କେବେ ବିଦଗ୍ଧ ପାଠକ କଳ୍ପନା କରେ ନାହିଁ । କଳ୍ପନା କରିବା ମଧ୍ୟ ଅସମ୍ଭବ ହୋଇପଡ଼େ । ଯେଉଁ ପାଠକ ସମାଲୋଚକ, କବି ଆତ୍ମାର ଅନ୍ୱେଷଣ ଓ କାବ୍ୟ ସାଧନାର ବିକାଶ ପଥର ଜିଜ୍ଞାସୁ, ସେହି ହିଁ ସ୍ରଷ୍ଟା ଚିତ୍ତକୁ ଭିତ୍ତିକରି ସୃଷ୍ଟି କ୍ରିୟାକୁ ଅନୁଶୀଳନ କରିପାରେ । ମିଥ୍ୟା, ଅସତ୍ୟର ଇଲାକା ତା' ପାଇଁ କୁଣ୍ଠିତ ପରିବେଶ ମନେହେଲେ ହେଁ, ସେଠାରୁ ସାମୟିକ ମୁକ୍ତି ନପାଇପାରି, ଉଦ୍‌ଗିତ ଚିତ୍ତାଲୋକରେ କବି କ୍ଷେତ୍ରବାସୀ ଗାଇ ଉଠନ୍ତି -

> "ମଣିଷ ମୁଁ ରକ୍ତ ଭିକ୍ଷୁ ସୃଷ୍ଟି ବିନାଶକ
> ସତ୍ୟ ମୋର ଉତ୍ତରଣ
> ଏ ଜୀବନ ମିଥ୍ୟା - ଅନୁଗତ ।"

କବି ଚିତ୍ତକୁ ବିଶ୍ଳେଷଣ ସହଜ ବ୍ୟାପାର ନୁହେଁ । ଏହା ବି ସାଧନାର କଠୋର ସାତ୍ତ୍ୱିକ ପ୍ରେମାଲିଙ୍ଗନ । ଆତ୍ମୋଯୋନ୍ନତ ପ୍ରୀତିମଗ୍ନ ଶ୍ରଦ୍ଧାସିକ୍ତ ମୁକ୍ତାବେଶର ଦୃପ୍ତ ଦିବ୍ୟଦର୍ଶନ ସହାୟତା କରିଥାଏ । ଅପରୂପ ସୌନ୍ଦର୍ଯ୍ୟ ସୃଷ୍ଟିକର୍ତ୍ତାଙ୍କ ପ୍ରଦତ୍ତ ସୃଷ୍ଟିରେ ପରିପୂର୍ଣ୍ଣ ହୋଇଥିବା ବେଳେ, ଅବିଚଳିତ ଅନୁଭବୀର ଅନୁଭବ, ବ୍ୟକ୍ତିସତ୍ତାରେ ବିଶ୍ୱବ୍ୟାପ୍ତିର ଚିତ୍ର ଅଙ୍କିତ ହୋଇପାରିଥିବା ସତ୍ତ୍ୱେ, କବି କ୍ଷେତ୍ରବାସୀଙ୍କ ତୃଷ୍ଣା ସତେ ଯେପରି ଆହୁରି ଉଦଗ୍ର । ସେହି ପିପାସା ଯେମିତି ଅକୁଣ୍ଠ 'ଉଚ୍ଚାରଣ'ରେ ଧ୍ୱନିତ ହେଉଛି -

> "ନୁହେଁ ଅନୁରକ୍ତ ଭଗବାନ ତୁମରି ସୃଷ୍ଟିର,
> ମୁଁ ମୋର ସୃଷ୍ଟିର ହେତୁ, ପ୍ରସ୍ତାବକ ଭିନ୍ନ ଦିଗନ୍ତର ।"

ଏକଦା କେତେ ଜଣ ସୃଜନଶୀଳ ସ୍ରଷ୍ଟା, କାବ୍ୟ -ସ୍ରଷ୍ଟା ରାଧାନାଥ ରାୟଙ୍କ ସୃଷ୍ଟ ସାହିତ୍ୟଧାରାକୁ ଅନୁସରଣ ନକରି, ସ୍ୱକୀୟ ଧାରା ସଂଧାନରେ ମନୋନିବେଶ କଲେ । ଆଉ କେତେକ ବେଦନାକ୍ଲିଷ୍ଟ ଜୀବନ-ଯାତ୍ରା, ହତାଶା ଜର୍ଜରିତ କ୍ଲାନ୍ତିମନ ଓ ବ୍ୟର୍ଥତାର ସନ୍ଧିକ୍ଷଣରେ ସଂଘର୍ଷମୟ ଜୀବନଠୁଁ ଦୂରେଇ ଗଲେ । ଆଉ ଯେଉଁମାନେ ସ୍ୱପ୍ନ ଓ ସମ୍ଭୋଗର ଲାଳସାରେ କଳ୍ପନା-ଜଗତକୁ ଉଡ଼ିଚାଲିଲେ, ସେମାନେ ନୈରାଶ୍ୟ ଓ ଅନ୍ଧକାରକୁ ଭୟଭୀତ କଲେ । ସଂଗ୍ରାମ ଓ ସଂଘାତ ଭିତରେ ବଞ୍ଚି ରହିବାର ପ୍ରୟାସ କରିଥିବା କବିମାନଙ୍କ ଭିତରେ ଡଃ କ୍ଷେତ୍ରବାସୀ ନାୟକ ଅନ୍ୟତମ । ପ୍ରଗତିଶୀଳ ଓ ପଳାୟନବାଦର ଦ୍ୱନ୍ଦ୍ୱ ଭିତରେ ମନେହୁଏ କବି କ୍ଷେତ୍ରବାସୀ ପ୍ରଗତିଶୀଳ ଚେତନାରେ ଉଦ୍‌ବୁଦ୍ଧ ହୋଇଛନ୍ତି । ତତ୍‌କାଳୀନ ତରୁଣ କବି ଯୌବନର ଦୀପ୍ତିରେ ପ୍ରାଣବନ୍ତ, ସ୍ୱପ୍ନରେ ସରସ ଓ ସୁନ୍ଦର ଅନୁଭବ କରୁଛନ୍ତି । ସେତେବେଳେ ଶିଳ୍ପ-ସାଧନା ଲାଗି ହୁଏତ ଆଉ ଏକ ଦିଗନ୍ତର ସନ୍ଧାନରେ କବି ଦୃଷ୍ଟି ପ୍ରସାରିତ । ଏପରି ଦିଗନ୍ତର ପ୍ରସ୍ତାବନାରେ ବଙ୍ଗଳାର କଲ୍ଲୋଳ ଯୁଗ ବା ଓଡ଼ିଆ ସାହିତ୍ୟରେ ସବୁଜ ଯୁଗର ଚିନ୍ତାଧାରା କେବେ ସମୁଜ୍ଜ୍ୱଳ ହୋଇନାହିଁ । ପାପତାପ-ଦଗ୍ଧ, ପଥଚ୍ୟୁତ ମନୁଷ୍ୟ ଅମୃତର ସନ୍ଧାନ ପାଉ, ଏହି ବାସନା-ବିକଳ ବ୍ୟାକୁଳତା ତାଙ୍କୁ ଏହି ପଥର ସନ୍ଧାନୀ କରାଇଛି ।

ଆଧୁନିକ ଜୀବନ ଓ ମନ ନେଇ ଏଠାରେ ଯିଏ ଆଧୁନିକତାର ଖୋଜପା ନାଇଛି, ସେ କ'ଣ ସତରେ ମନୁଷ୍ୟର ପ୍ରାଣ ନେଇ ଜୀଇଁଛି । ତା'ର ପାଶବିକତା ତାକୁ ପ୍ରତି ମୁହୂର୍ତ୍ତରେ ଦଂଶନ କରୁଛି । ସେ ହେଉଛି କ୍ଷତ ବିକ୍ଷତ – ରକ୍ତାକ୍ତ । ଯନ୍ତ୍ରଣା ଜ୍ୱଳନରେ ଜୀବନ ଅସହ୍ୟ ହେଲାମାତ୍ରେ, ସେ ନିରୂପାୟ ହୋଇ ନିଃସହାୟତାର କ୍ରନ୍ଦନ ଧ୍ୱନି ଶୁଣାଉଛି । ସ୍ରଷ୍ଟାଙ୍କ ନିକଟରେ ହାତ ଟେକି ଦେଇ, ତାଙ୍କର ବନ୍ଦନାଗାନରେ ବ୍ରତୀ ହେଉଛି । ବିପଦର ପଙ୍ଗପାଳ ମାଡ଼ି ଆସୁଥିବା ବେଳେ, ପ୍ରତି କ୍ଷେତ୍ରରେ ଶ୍ମଶାନରେ ଜୁଇର ଚିତା ଜଳୁଥିବାର ଦୃଶ୍ୟ ତାକୁ ଦହନ କରୁଛି । ତଥାପି ନିଜକୁ ଚାହିଁ ମଣିଷ ଖାଲି ଆଶ୍ୱସ୍ତ ହେଉଛି ସିନା, ମାନବିକତା ହ୍ରାସ ହୋଇଥିବାବେଳେ, କେଉଁ ମଣିଷ ଆଉ ଏକ ଜ୍ୱାଳାମୟ ଜୀବନର ଭାଷ୍ୟ ବୁଝିପାରନ୍ତା । କବି କ୍ଷେତ୍ରବାସୀଙ୍କ ଲେଖନୀରୁ ଝରି ଆସିଛି –

"ମୁଁ ଯେଣୁ ପଶୁରେ ଜାତ ଥିଲି ଥାଉ ମଣିଷର ମନ,
ଅମଣିଷେ ବୁଝିବେ କି, ଜୀବ ଦେହେ କେତେ ଯେ ଦହନ ।"

କବି ଚିତ୍ତର ଯେଉଁ ସହାନୁଭୂତି ଏବଂ ଯେଉଁ କ୍ଷୋଭ, ତାହା ଯେମିତି ବେଦନାର୍ଦ୍ର ପ୍ରାଣରୁ ବିଶ୍ୱବ୍ୟାପୀ ହୋଇଯାଇଛି । କବିତାର ସ୍ୱର ଅଶ୍ରୁସଜଳ ଓ କାରୁଣ୍ୟରେ କମନୀୟ ହୋଇ ସୁଦ୍ଧା, ଗୋଟିଏ ବିପ୍ଳବର ବଜ୍ର ଗମ୍ଭୀର ଶବ୍ଦରେ କାବ୍ୟଜଗତ ପ୍ରତିଧ୍ୱନିତ ହେଉଛି ।

'ଛେଉଣ୍ଡର ଶେଷ ଗୀତି' କବିତାରେ କବି କ୍ଷେତ୍ରବାସୀଙ୍କ ସ୍ୱରରେ ପରିପୂର୍ଣ୍ଣ ହୋଇଛି ଅଭିମାନ ଓ ସ୍ୱଗତୋକ୍ତି -

"ମୁଗୁନି ଚିକ୍‌କଣ ଦିହେ ଦାଗ ରହେ ହଳିଆ ପାଞ୍ଚଣ
ଆଉ କି ନିର୍ମମ ଶାସ୍ତି,ଏ ଜୀବନେ ସାଇତା ରହିଛି
ପ୍ରଭୁଙ୍କୁ ଜଣାଣ ମାତ୍ର ! ଛେଉଣ୍ଡର ଆଶ୍ରୟ କେଉଁଠି ?"

ମନୁଷ୍ୟର ଆକର୍ଷଣ ମାଟି ପ୍ରତି ଯେତେ, ଆକାଶ ପ୍ରତି ସେତେ ନାହିଁ । ଏହି ଧୂଳି ଧୂସରିତ ଧୂମ-ପାଂଶୁଳ ପୃଥିବୀ ପ୍ରତି କେତେ ମମତା, କେତେ ଶ୍ରଦ୍ଧାସିକ୍ତ ଆବେଗ ସତେ ! ଏଇଠି ସେ ଜୀବନକୁ ଅନୁଭବ କରିବାର ରହସ୍ୟଘନ କୁଞ୍ଜବନ ରଚନା କରନ୍ତି ଓ କାହିଁ କେତେ ଗୋପନ ଦୂରରୁ ଭାସିଆସେ ଦିବ୍ୟବିଳାସୀ ଦୁର୍ଲ୍ଲଭ ମୂର୍ଚ୍ଛନା । ଜୀବନକୁ ଭଲ ପାଇଲେ, କଳା ବି ଜୀବନମୟ ହୋଇଯାଏ । ବହୁ ଇସ୍ତାହାର ସତ୍ତ୍ୱେ କବି କି କଳାକାର, ଜୀବନ ପାଇଁ ନିଜକୁ ଉତ୍ସର୍ଗ କରିବାର ସାଧନା ମନ୍ତ୍ରର ଉଦ୍‌ଗାତା ହୁଅନ୍ତି । ବିଶିଷ୍ଟ ଲେଖକ ହେନେର ଜାମସ୍ କହନ୍ତି - "The aim of art are not to resolve a question irritably, but to compel one to love life in all its manifestations." ରସର ମୂଳ ଉତ୍ସ ଭାବେ ଜୀବନକୁ ଗ୍ରହଣ କରାଯାଇଥାଏ । ଏହି ଜୀବନକୁ ଚିହ୍ନି ଚିହ୍ନାଇବା ଲାଗି ଯେଉଁ ଅନ୍ତର୍ଦୃଷ୍ଟି ଆବଶ୍ୟକ, ତାହା କବି କ୍ଷେତ୍ରବାସୀଙ୍କ କାବ୍ୟ-ଜଗତର ଆଲୋଚ୍ୟବିଭବ । ଧୀରୋଦାତ୍ତ ବା ଧୀରଦକ୍ଷିଣ ଚରିତ୍ରମାନଙ୍କ ପ୍ରତି ଲେଖକ ଦୃଷ୍ଟି ଦେଲେ ସୃଷ୍ଟି-ପୂର୍ଣ୍ଣାଙ୍ଗ ହେବ ନାହିଁ । ନିଜ ସୃଷ୍ଟି କୁଞ୍ଜରେ ଧୂଳିର ମଣିଷମାନଙ୍କୁ ନିମନ୍ତ୍ରିତ ଅତିଥି କରିପାରିଲେ, ଏବଂ ଗଜଦନ୍ତ ରାଜପୁରଠାରୁ ମାଟିର ମହକରେ ବିଭୋର ହୋଇପାରିଲେ କବିଚିତ୍ତ ସତ୍ୟ ଜଗତ ଆଡ଼କୁ ଅଧିକ ଆକୃଷ୍ଟ ହୋଇଥାଏ । ମାଟିଗନ୍ଧ ଓ ଧୂଳି ଧରଣୀରେ କବି ଅନୁପମ ନୈପୁଣ୍ୟ ଫୁଟାଇବାର ଲାଳସା ରଖି କହିଛନ୍ତି -

"ମାଟିର ଚଟାଣ ଭଲ, ଚାହୁଁନି ମୁଁ ଉଆସ ମହଲ
ପେଜର ସୁଆଦ ମୋତେ ମିଠା ଲାଗେ, ମିଠା ଲାଗେ
ନିରୀହା ମାଆର ଯେତେ ନାନାବାୟା ଗୀତ ।"

କବିର ସାରସ୍ୱତ ଉପାସନାରେ ଯେଉଁ ମୁକ୍ତିର ମନ୍ତ୍ର ଉଚ୍ଚାରିତ ହୁଏ, ତା' ଯୋଗୁଁ ସକଳ ମିଥ୍ୟା, ଅନ୍ଧକାର, ଅସତ୍ୟର ପାହାଡ଼ ଉପରେ ପୋତିପାରେ ଅମରତ୍ୱର ପତାକା । ସେହି ମୁକ୍ତ ଓ ଅମର ମନରେ ସତ୍ୟର ବୀଜବପନ ଲାଗି ସମର୍ଥ ହୁଏ । କବି କ୍ଷେତ୍ରବାସୀ ଜୀବନ ଯାତ୍ରାର ସକଳ ବର୍ଣ୍ଣାଢ୍ୟ ଅନୁଭୂତି ଓ ଅନୁଭବର ଗମ୍ଭୀର ଐନ୍ଦ୍ରଜାଲିକ ଶକ୍ତି ସଂଚୟରେ ବିଶ୍ୱାସୀ । ସେହି ଶକ୍ତି ହିଁ ତାଙ୍କ ଜୀବନର ମିଥ୍ୟା ଓ ସତ୍ୟକୁ ଏକାକାର

ନେବା ତାଙ୍କ କବି ଲେଖନୀର ସାର୍ଥକତା । ଦେବଦାସୀ ବାହ୍ୟିକ ଭାବରେ ଯେତେ ଆକୃଷ୍ଟ କଲେ ସୁଦ୍ଧା, ତା'ର ଠାଣି, ତା'ର ଭଙ୍ଗୀ, ତା'ର ଲାସ୍ୟମୟୀ ରୂପ କ'ଣ କବିର ପ୍ରଥମ ଆରାଧନାର ଚରିତ୍ର ହୋଇଯାଏ ! ଦେହାତୀତକୁ କବି କ୍ଷେତ୍ରବାସୀ ସ୍ପର୍ଶ କରିପାରି ନାହାନ୍ତି । ତାରୁଣ୍ୟର ସ୍ପନ୍ଦିତ ପ୍ରାଣ ଉଲ୍ଲସିତ ହୋଇ ଗାଇଉଠିଛି -

"ରାତିର ରମଣୀ ମୁହିଁ ରାତି ପାଇଁ ତୁମେ ମୋର ପତି
ମୋ' ଆଖିର ନୀଳ ଢେଉ ମୁକୁଳା ମୋ ବୟସର ଛାତି,
ତୁମ ପାଇଁ ସମର୍ପିତ, ପାନ କର ଦାନ କର ତୃଷ୍ଣା ମୋ ମେଣ୍ଟାଇ
ଏ ଦେହ ସମ୍ବଳ ମୋର ପ୍ରାଣ ମୋର, ବଞ୍ଚିଛି ମୁଁ ଦେହ ଦେଇ ଦେଇ ।"

ମନୁଷ୍ୟ ମନକୁ ବିଶ୍ଳେଷଣ କରି ଫ୍ରୟେଡ଼୍ ଯୌନଲାଳସାକୁ ଅସାଧାରଣ ପ୍ରବୃତ୍ତି ଭାବରେ ମନ୍ତବ୍ୟ ଦେଇଗଲେ, ସେହି ଯୌନଲାଳସାର ବହିଃପ୍ରକାଶ ଭାବେ ପ୍ରେମର ସ୍ନିଗ୍ଧ, ସୁନ୍ଦର ଓ ମଧୁର ରୂପ ବିଦ୍ୟମାନ । ଦୈହିକ ମିଳନ ଓ ମାନସିକ ସଂପର୍କର ବ୍ୟବଧାନ ସୃଷ୍ଟି ହେଲେ ତାହା ପାଶବିକତାରେ ପର୍ଯ୍ୟବସିତ ହୋଇଯାଏ । ପୁଣି ଦୈହିକ ସଂପର୍କ ଓ ମାନସିକ ପ୍ରୀତି ସଂଭୋଗର ଦୂରତ୍ୱ ବଜାୟ ରହିଲେ ପ୍ରଣୟ ଉପହସିତ ହୋଇଥାଏ । ମନ ଓ ଶରୀରର ସ୍ୱାଭାବିକତାକୁ, ସ୍ରଷ୍ଟା-ମାନସିକ ଚିରନ୍ତନତାର ଗୌରବରେ ମହୀୟାନ କରିଆସିଛି । ତେବେ କବି କ୍ଷେତ୍ରବାସୀଙ୍କ ଲେଖନୀରେ ପ୍ରୀତିର ମହାନତା ପ୍ରକୀର୍ତ୍ତିତ ହେଉଥିବାବେଳେ, ଶୃଙ୍ଗାର ରସର ପ୍ରାଧାନ୍ୟ ଆମ କାବ୍ୟ ପରଂପରାକୁ ପୁଷ୍ଟଳ କରିଛି ।

"ଶୃଙ୍ଗାର ଏବ ମଧୁରଃ ପରଃ ପ୍ରହ୍ଲାଦନୋ ରସଃ
ଯମର୍ଥମବଲମ୍ବେନ ମାଧୁର୍ଯ୍ୟଂ ପ୍ରତିତିଷ୍ଠତି ।"

ଯୌବନୋନ୍ମତ୍ତ, ସ୍ୱପ୍ନପିପାସୁ, ସବୁଜ ପ୍ରାଣ, ବ୍ୟଥା- ବ୍ୟର୍ଥତାକୁ ଗଭୀର ଚିତ୍ତ ଚେତନାରେ ପରଖି ପାରିବା ସମ୍ଭବ ହୋଇନାହିଁ । ଅଶ୍ରୁ-ନିରାଶାର ହଳାହଳ ଭିତରେ କେବଳ ତରୁଣ କବି ଲେଖନୀରେ ଆକାଶ-କୁସୁମର ଶୋଭାଶ୍ରୀ ପୁଷ୍ପିତ ହୋଇଉଠିଛି । ବିଶ୍ୱ ସୁଷମାରେ କବି କ୍ଷେତ୍ରବାସୀ ଏହି ସୁଲଳିତ ସ୍ୱର ମୂର୍ଚ୍ଛନାର ଆହ୍ୱାନରେ ଯେମିତି ଆଉ ଉଦ୍‌ପୀଡ଼ିତର କ୍ରନ୍ଦନ ଧ୍ୱନି ଶୁଣିପାରିନାହାନ୍ତି । ପାନ୍ଥର ତନୁତନିମା ତାଙ୍କୁ ଯେମିତି ସମ୍ବର୍ଦ୍ଧିତ କରିଛି ଓ ସେ ମୁଗ୍ଧନୟନରେ ପାର୍ଥିବ ବଳୟରେ ସଙ୍କୁଚିତ ହୋଇଯାଇଛନ୍ତି ।

ଅନ୍ୟତ୍ର କବି କ୍ଷେତ୍ରବାସୀଙ୍କ ମାନବିକତାର ଛତ୍ରେ ଛତ୍ରେ ସର୍ବକଲ୍ୟାଣଦାୟୀ ଆତ୍ମାର ମହିମାମୟ ପ୍ରୀତିଉଲ୍ଲାସ ବେଶ୍ ଗମ୍ଭୀର ଓ ଦିଗନ୍ତପ୍ରସାରୀ । ରିକ୍ତତାର ଯାତ୍ରା ପଥରେ, ବୋଇତ ଭାସି ଆସି ବନ୍ଦରରେ ଉପନୀତ ହେବା ମାତ୍ରେ, ସେ ହା-ହୁତାଶର

ଚିତ୍ରରେ ମ୍ରିୟମାଣ । ନିଃସଙ୍ଗ ବେଳାଭୂମି ତାଙ୍କୁ ସମସ୍ୟା-ସଂଘର୍ଷର ଆହୁରି ନିକଟତର କରିନେଉଛି । ବହୁ ଦୂରରୁ କାତମାରି ବୋଇତକୁ ବୋହି ଆଣିବା ପରେ, କିଏ ତାଙ୍କୁ ସଂଖୋଳିବାକୁ ନାହିଁ ଘାଟ ପ୍ରହରାର ଅନୁପସ୍ଥିତିରେ ସେ ଇତସ୍ତତଃ ହୋଇପଡ଼ିଲେ ବି, ବନ୍ଦରବ୍ୟତୀତ ଅନ୍ୟତ୍ର ପଳାୟନ ଯେପରି ତାଙ୍କ ପାଇଁ କାପୁରୁଷତାର ପରିଚାୟକ । ସାଥୀହରା ଭାବରେ ସେ ସେଇଠି ଏକାକୀ ଘାଟପ୍ରହରୀ ଭାବରେ ସମାଜରେ ମୁଖରିତ ବିପଣୀକୁ ଅନୁଭବ କରିବା ଲାଗି ଆଦୌ କୁଣ୍ଠିତ ହୋଇନାହାନ୍ତି । ବରଂ ଏଇଠି ତାଙ୍କର କବି-ବ୍ୟକ୍ତିତ୍ୱର ଉତ୍ତୁଙ୍ଗ ପୌରୁଷ ପ୍ରତିଷ୍ଠିତ ହୋଇଛି ।

"ମଣିଷ ତାପିତ ସଖା ରୁଧିରାକ୍ତ ବ୍ୟର୍ଥ ପିପାସାରେ
କ୍ଷାନେ ତା'ର ଘଟାନ୍ତର ବିକାଶେ ପୂର୍ଣ୍ଣାଙ୍ଗ
ପଶୁ ପ୍ରାଣେ ଦେବତା ଉଦୟ
ସାଧନାରେ ମାନବାତ୍ମା ଚିର ନିରାମୟ ।"

କାଳାତୀତ ମାନବିକ ଚେତନାକୁ ଉପଲବ୍ଧ କରିବାର ପ୍ରୟାସୀ କବିପ୍ରାଣ ସତତ ବ୍ୟାକୁଳ । ଇନ୍ଦ୍ରିୟାତୀତ ଜଗତର ଦିଗ୍‌ବଳୟ ସ୍ପଷ୍ଟ କରିବା ପାଇଁ କବି ଧ୍ୟାନମଗ୍ନ ହେବାରେ ତୃପ୍ତ । ଏଇଠି ତା'ର ଆବିର୍ଭାବ ଏବଂ ଏହି ପରିସରକୁ ନବ କଳେବର ମନ୍ତ୍ରରେ ଅଭିମନ୍ତ୍ରିତ କରିବା ଲାଗି ମୁକ୍ତି ପଥର ସାରଥୀ ହୁଏ । ଆନନ୍ଦାଲୋକର ସନ୍ଧାନୀ କବି କ୍ଷେତ୍ରବାସୀ ଐନ୍ଦ୍ରଜାଲିକ ମାୟାରେ ବିସ୍ମୟାଭିଭୂତ କରି ରଖିବାକୁ ସମର୍ଥ । ଶିଳ୍ପର ଅନ୍ତର୍ନିହିତ ଏହି ସନାତନ ସତ୍ୟ-ସ୍ୱରୂପ ଅତ୍ୟନ୍ତ ସୌନ୍ଦର୍ଯ୍ୟମୟ । ଏହାରି ଆବାହନ ପାଇଁ କବି ଯୁଗେ ଯୁଗେ ତପୋମଗ୍ନ ।

ରଚନାକୁ ଛନ୍ଦମୟ କରିଦେଲେ କବିତା ହୁଏ ନାହିଁ, ଯଦିଓ ଛନ୍ଦ ହେଉଛି କବିତାର ଏକ ବିଶିଷ୍ଟ ଭୂଷଣ । ଯାଦୁକାରୀ ମାୟାଜାଲରେ କବିତା ଚିରକାଳ ବନ୍ଦୀ ହୋଇଆସିଛି । ଯେତେବେଳେ କବିତାକୁ ଏହି ବନ୍ଧନରୁ ମୁକ୍ତ କରିବା ଲାଗି ପ୍ରୟାସ ହୋଇଛି, ସେତେବେଳେ ତାହା ଆଉ କବିତା ରୂପେ ପରିଚିତ ହୋଇନି, ଶ୍ରୀହୀନ ରୂପେ ନାନା ଅପବାଦରେ ଭାରାକ୍ରାନ୍ତ ହୋଇପଡ଼ିଛି । ରୂପଶ୍ରୀ ଲାବଣ୍ୟବତୀ କାବ୍ୟନାୟିକା ବିକଳାଙ୍ଗ ଧୂଳିଧୂସରିତା ହୋଇଯାଇଛି । ଛନ୍ଦର ସ୍ପର୍ଶରେ କବିତା ଆପଣାର ସ୍ୱତନ୍ତ୍ର ସତ୍ତାକୁ ପ୍ରକଟିତ କରେ, ସାହିତ୍ୟ ଜଗତରେ ବୈଶିଷ୍ଟ୍ୟ ପ୍ରତିପାଦନ ଲାଗି ଶକ୍ତିଶାଳୀ ହୋଇଉଠେ । ଅବଶ୍ୟ ଏହି ଛନ୍ଦର ପ୍ରକାରଭେଦ ପରିବେଶ ଓ ଭାବାବେଗକୁ ନେଇ ସଂଯୋଜିତ ହୋଇଥାଏ । ସ୍ଥଳବିଶେଷରେ ସଂଯୋଜିତ ଛନ୍ଦର ସ୍ୱର ଭିନ୍ନ ଭିନ୍ନ ପ୍ରକାରର ହେବାକୁ ବାଧ ହୋଇପଡ଼େ । ଏହି ଛନ୍ଦ ପ୍ରୟୋଗର ସ୍ୱାଧୀନତା ନିଶ୍ଚିତ ରୂପେ କବିର

ନିୟନ୍ତ୍ରଣାଧୀନ । ସେଥିପାଇଁ ବିଭିନ୍ନ ଯୁଗରେ କବିମାନେ ଯେତେବେଳେ ଛନ୍ଦ ପ୍ରୟୋଗ କରିଛନ୍ତି, ସେତେବେଳେ ସେମାନେ ଆବଶ୍ୟକତାନୁଯାୟୀ ପ୍ରଚଳିତ ପାରମ୍ପରିକ ଛନ୍ଦଧାରାଠାରୁ ଦୂରେଇ ଯାଇଛନ୍ତି । ମାତ୍ର ସେମାନେ ଛନ୍ଦର କୁହୁକ ଜାଲରୁ ସଂପୂର୍ଣ୍ଣ ମୁକ୍ତି ପାଆନ୍ତି ନାହିଁ । ଯୁଗ ରୁଚିରେ କବିତାର ଯେପରି ଆଙ୍ଗିକର ପରିବର୍ତ୍ତନ ହେଉଛି, ଠିକ୍ ସେହିପରି ଛନ୍ଦ ପ୍ରୟୋଗର ଧାରାରେ ମଧ୍ୟ ପରିବର୍ତ୍ତନ ଘଟୁଛି । ମାତ୍ର କାବ୍ୟ-ଧାରା ସହିତ ସର୍ବଦା ଓତପ୍ରୋତ ଭାବେ ଏହା ଜଡ଼ିତ ରହିଛି । ଏଇ ଥାମ ଓଡ଼ିଆ କାବ୍ୟ-ସାହିତ୍ୟକୁ ବିଚାର କରାଯାଉ । କବିତାର ଜନ୍ମ-ଜାତକ ସହିତ ଛନ୍ଦର ନିବିଡ଼ ସମ୍ପର୍କ । ପ୍ରାଚୀନ କାଳରେ ଛନ୍ଦକୁ ଯେପରି ଭାବେ କାବ୍ୟ-କବିତାରେ ବ୍ୟବହୃତ କରାଯାଉଥିଲା, ଊନବିଂଶ ଶତାବ୍ଦୀର ଶେଷ ଭାଗରେ ତାହା ଆଉ ଗ୍ରହଣୀୟ ହେଲା ନାହିଁ- ନ ହେବା ବି ସ୍ୱାଭାବିକ । ସେ ଯୁଗର କାବ୍ୟକାରଗଣ ଚିନ୍ତାରେ ନୂତନତା ଆଣିବା ସଙ୍ଗେ ସଙ୍ଗେ ଛନ୍ଦ ପ୍ରୟୋଗର ଧାରାରେ ମଧ୍ୟ ପରିବର୍ତ୍ତନ ଆଣିଲେ । କେତେକ ସମାଲୋଚକଙ୍କର ମତ ଯେ, ଏହିପରି ଛନ୍ଦ ପ୍ରୟୋଗ ଲାଗି ତତ୍କାଳୀନ କାବ୍ୟକାରବୃନ୍ଦ ବାଧ୍ୟ ହୋଇଥିଲେ । ନବଯୁଗୀୟଭାବ ଓ ସ୍ୱପ୍ନ ପ୍ରକାଶ କରିବାଲାଗି ସେହିପରି ପରିବର୍ତ୍ତିତ ଛନ୍ଦକୁ ମାଧ୍ୟମ ନ କରି ବୋଧହୁଏ ଅନ୍ୟ କିଛି ଛନ୍ଦକୁ ମାଧ୍ୟମ କରାଯାଇପାରିନଥାନ୍ତା ।

କବି କ୍ଷେତ୍ରବାସୀଙ୍କ କବିତା ଛନ୍ଦମୟ ହୋଇଥିବାରୁ ତାହା ସାଧାରଣ ପାଠକଙ୍କୁ ମଧ୍ୟ ଆକୃଷ୍ଟ କରିଥାଏ । ଛନ୍ଦୋବଦ୍ଧ ଭାବେ କବିତା ରଚିତ ହେଲେ ବହୁ କ୍ଷେତ୍ରରେ କବିତାର ଭାବ ବାଧାପ୍ରାପ୍ତ ହୋଇଥାଏ । କବି ତାଙ୍କ କବିତାରେ ଛନ୍ଦ ପ୍ରୟୋଗ କରି କାବ୍ୟ ରଚନା ଲାଗି ଯେଉଁ ଭାବକୁ ଛନ୍ଦ ମାଧ୍ୟମରେ ପ୍ରକାଶ କରିଛନ୍ତି ତାହା ହେଉଛି କାବ୍ୟ ପ୍ରତିଭାର ଉଜ୍ଜ୍ୱଳ ଦୃଷ୍ଟାନ୍ତ । କବିତାର ଯେଉଁ 'ପ୍ରାନ୍ତିକ ମିଳନ' ରହିଥାଏ ତାହା ଉପରେ କେତେ କାବ୍ୟକାର ସମାଲୋଚନା କରିଥିବା ଦେଖାଗଲେ ବି ଏପରି କବିତାର ରୂପ ଓ ଭାବ ପାଠକ ପାଇଁ ଆକର୍ଷଣୀୟ ହୋଇଥାଏ । କବି କ୍ଷେତ୍ରବାସୀ ଯେଉଁ ଛନ୍ଦ ପ୍ରୟୋଗ କରିଛନ୍ତି ସେଥିରେ ସାଂଗୀତିକତାର ମୂର୍ଚ୍ଛନା ଶୁଣିବାକୁ ମିଳେ । ସାଙ୍ଗୀତିକତା ଓ ଯଥାର୍ଥ ଛନ୍ଦ ଭିତରେ ଆଧୁନିକତାର ସ୍ୱର ମାଧୁରୀ ବେଶ୍ ଶୁଣିହୁଏ । ଆଧୁନିକ ପାଠକ କବିତାର ଛନ୍ଦ ଝଙ୍କାର ଭିତରୁ ଆଧୁନିକ ଚେତନାକୁ ଅନୁଭବ କରିପାରେ । ଚେତନଶୀଳ ମନ ଅଧିକ ପ୍ରସାରିତ ହୁଏ । ଛନ୍ଦର ମୋହାଚ୍ଛନ୍ନ ଶକ୍ତି ଆଧୁନିକ କବିତାକୁ ଅଧିକ ରସସିକ୍ତ କରେ ବୋଲି କବି ମିଲଟନ୍ ମତ ଦେଇଥାନ୍ତି । ଏହି ଦୃଷ୍ଟିରୁ ବିଚାରି ବସିଲେ କବି କ୍ଷେତ୍ରବାସୀଙ୍କ ଆଲୋଚ୍ୟ କାବ୍ୟଧାରା 'ଅକ୍ଷର ବୃତ୍ତ' ଓ 'ମାତ୍ରାବୃତ୍ତ' ଭିତରେ ଆବଦ୍ଧ ହୋଇନଥିଲେ ହେଁ ମୁକ୍ତ ଛନ୍ଦ ଓ ଅନ୍ତରାଣ ଛନ୍ଦରେ କବିତାର ରୂପ ସୁଷମାମଣ୍ଡିତ ହୋଇଛି । ସେ ଆଧୁନିକ କବିତାର ମୋହର ମାରି କବିତାକୁ ଶୁଷ୍କ ମରୁଭୂମି ଭିତରେ ଛାଡ଼ି

ଦେଇନାହାନ୍ତି । ଆନନ୍ଦ ଅନୁଭୂତି ଭିତରେ ତାକୁ ରସସିକ୍ତ କରିବା, ସେହି ରସପାନରେ ପାଠକ ଯେପରି ଆନନ୍ଦିତ ହୁଏ ଏବଂ ତାହା ହୃଦୟରେ ପୁଲକ ସଂଚାର କରେ, ଏହା ପ୍ରତି ଆଲୋଚ୍ୟ କବି ଦୃଷ୍ଟି ଦେଇଛନ୍ତି । ତାଙ୍କ ଅନ୍ତରାଣ ଛନ୍ଦର ଏକ ନମୁନା –

"ଗରବ କିଛି ଯଦି ଜୀବନେ କରେ କେବେ
ସଅଁପି ଦେବି ତାକୁ ତମରି ପଦ ତଳେ,
ଉଦ୍ଧେଇ ଦେବ କିବା ଭାଳୁଛି ଭାଳୁ ନାହିଁ
ଏକାକୀ ପାରିବି କି ଗରବ ଭାର ବୋହି ?"

କବି କ୍ଷେତ୍ରବାସୀଙ୍କ ଆଗରେ କାବ୍ୟ ସାଧନାର ଏକ ବିସ୍ତୃତ ଭିତ୍ତିଭୂମି ପଡ଼ିରହିଥିଲା । ସେହି ଭୂମି ଉପରେ କବି ଲେଖନୀ ଚାଳନା କରି ଚିର ତାରୁଣ୍ୟର ମୂର୍ତ୍ତ ଆବେଗ ଓ ସ୍ୱର ଶୁଣାଇଛନ୍ତି । ବ୍ୟଗ୍ରତା ଓ ବ୍ୟସ୍ତବହୁଳ ଜୀବନ ଭିତରେ କବିତାକୁ ସେ ଯେପରି ଭାବରେ ସୌନ୍ଦର୍ଯ୍ୟମୟ କରିପାରିଛନ୍ତି ତାହା ଜଣେ ତରୁଣ ସବୁଜ କବି ପ୍ରାଣର ଉତ୍‌କଣ୍ଠିତ ଉଚ୍ଚାରଣ । ତେଣୁ ତାଙ୍କ କବିତାଗୁଡ଼ିକ ପଢ଼ିଲେ ପାଠକ ସ୍ୱପ୍ନ ଦେଖିବା ପରି ଓ ନବୀନ ସୁନ୍ଦର ପୃଥିବୀର ଆବାହନ କଲା ପରି ଅନୁଭବ କରିଥାଏ । କବି କ୍ଷେତ୍ରବାସୀଙ୍କ ସ୍ୱପ୍ନ ଭିତରେ ବହୁ ସୁଦୂରପ୍ରସାରୀ ଚିନ୍ତା, ଦୂରନ୍ତ ଯାତ୍ରାର ଆନ୍ତରିକ ନିଷ୍ଠା ଓ ଉଦଗ୍ର ଉତ୍ସାହ ଭରି ରହିଛି । ତାଙ୍କ କବିତା ଯେପରି ଚିରସବୁଜ ସେପରି ବି ଜୀବନକୁ ଭଲ ପାଇବାର ମହାର୍ଘ ସମ୍ପଦ ଭିତରେ ଏକ ସୁନ୍ଦର ସଂସାର । ତାଙ୍କର ପ୍ରତିଭା ଥିଲା, ବହୁଧା ବି ରହିଛି, ବିଭକ୍ତ । ସିଏ କବିତା ରଚନାରୁ ତାଙ୍କ ସାରସ୍ୱତ ସାଧନା ଆରମ୍ଭ କରିଥିଲେ ହେଁ ଗଳ୍ପ, ପ୍ରବନ୍ଧ ଓ ସମାଲୋଚନା ସାହିତ୍ୟରେ ନିଜକୁ ଅଧିକ ନିମଜ୍ଜିତ କରିଥିଲେ । ଏହି ଆଲୋଚ୍ୟ 'ଉଚ୍ଚାରଣ' କବିତା ସଂକଳନଟି ୧୯୬୯ ମସିହାରେ ପ୍ରକାଶ ପାଇଥିଲା । ପ୍ରଜାତନ୍ତ୍ର ପ୍ରଚାର ସମିତି ପକ୍ଷରୁ ଏଥିପାଇଁ କବିଙ୍କୁ ବିଷୁବ ପୁରସ୍କାର ପ୍ରଦାନ କରାଯାଇଥିଲା । ଏହା ହିଁ ତାଙ୍କର ପ୍ରଥମ ଓ ଏକମାତ୍ର କବିତା ଗ୍ରନ୍ଥ । ସେ 'ଫୁଲର କବର' ଗଳ୍ପଗ୍ରନ୍ଥ 'ପ୍ରବନ୍ଧ ଓ ପ୍ରାବନ୍ଧିକ', 'ସାହିତ୍ୟର ସାମାନ୍ୟ କଥନ', 'ସାହିତ୍ୟିକ ବୀକ୍ଷା ଓ ନିରୀକ୍ଷା', 'କବି ନୀଳକଣ୍ଠ', 'ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ', 'ଆଲୋଚନା ପତ୍ର', 'ଭାରତୀୟ କାବ୍ୟ ତତ୍ତ୍ୱ' ଓ 'ସାହିତ୍ୟ ଚର୍ଚ୍ଚା' ପ୍ରଭୃତି ସମୀକ୍ଷା ଗ୍ରନ୍ଥ ରଚନା କରିଛନ୍ତି । ଏହା ସହିତ 'ରାଧାନାଥ ଗ୍ରନ୍ଥାବଳୀ', 'ଶ୍ରୀ ଜଗନ୍ନାଥ ପଦ୍ୟାବଳୀ' ସଂପାଦନା କରିଛନ୍ତି । ଏହି କାବ୍ୟ ପୁରୁଷ ସାରସ୍ୱତ ସାଧନା ପାଇଁ ଓଡ଼ିଆ ସାହିତ୍ୟରେ ଅମ୍ଳାନ ସ୍ୱାକ୍ଷର ରଖିଯାଇଛନ୍ତି ।

**ସହାୟକ ଗ୍ରନ୍ଥସୂଚୀ :**


୧. The modern writer and his world : G.S. Fraser

୨. ଉଚ୍ଚାରଣ : ଡଃ କ୍ଷେତ୍ରବାସୀ ନାୟକ, ଆତ୍ମପ୍ରକାଶନୀ, ବଲାଙ୍ଗୀର - ୧୯୬୯

୩. ସାହିତ୍ୟ ଓ ସମାଲୋଚନା : ନାରାୟଣ ମୋହନ ଦେ

୪. ଆଧୁନିକ କବିତାର ଦିଗ୍‌ଦର୍ଶନ : ଅପୂର୍ବ ରଞ୍ଜନ ରାୟ

୫. କବିତା ବୀକ୍ଷା : ଅପୂର୍ବ ରଞ୍ଜନ ରାୟ

୬. ଏଷଣା ପ୍ରବନ୍ଧାବଳୀ : ଓଡ଼ିଆ ଗବେଷଣା ପରିଷଦ, କଟକ




# କ୍ଷେତ୍ରବାସୀ : ଅନୁଚ୍ଚାରିତ

ଶ୍ରୀ ସନତ୍ ଦାସପଟ୍ଟନାୟକ

କ୍ଷେତ୍ରବାସୀ କେଉଁ କ୍ଷେତ୍ରର ବାସିନ୍ଦା ଥିଲେ ଜାଣେନା । ଗବେଷଣା, ସମାଲୋଚନା, ଗଳ୍ପ ତଥା କବିତାର କ୍ଷେତ୍ର ଭିତରେ ସେ ଅନେକ ସମୟରେ ଭିନ୍ନ ଭିନ୍ନ ମନେହୁଅନ୍ତି । ସେ' ବାସ୍ତବରେ ଥିଲେ ଅନୁଚ୍ଚାରିତ । ଯଦିଓ ତାଙ୍କର କବିତା ସଂକଳନର ନାମକରଣ କରିଥିଲେ ସେ' ନିଜେ 'ଉଚ୍ଚାରଣ' । ଆତ୍ମିକ ସ୍ତରରେ ସେ' ଥିଲେ ଲାବଣ୍ୟମୟ ବ୍ରହ୍ମାଣ୍ଡର କାବ୍ୟ ପୁରୁଷ । ଯୁବାବସ୍ଥାରୁ ଜଣେ ନିଷ୍ଠୁର ବାସ୍ତବବାଦୀ, ରୋକଠୋକ୍ ସମାଲୋଚକ ପରି ଦୂରରୁ ଦିଶୁଥିଲେ ବି, ନିଜ ମନର ଜଳ୍ପାର୍ଣ୍ଣ ଚେତନସ୍ତରରେ କ୍ଷେତ୍ରବାସୀୟ, ସ୍ୱକୀୟ କାବ୍ୟିକ ରୂପଟି ବେଶ୍ ମନଲୋଭା । ସେଇଥିପାଇଁ ସେ ନିଜେ ସ୍ୱୀକାର କରିଥିଲେ "ଦେଖିବା ଲୋକର ଆଖି ଖୁବ୍ ଛୋଟ ।" (ସ୍ମୃତି)

ଆମ ପରି, ଆଖି ନିକୁଟେଇ ଦେଖୁ ଦେଖୁ ଭିଡ଼ ଜମଉଥିବା ମଣିଷମାନଙ୍କ ଆଖି ସତରେ ଖୁବ୍ ଛୋଟ । ସେଇ ଆଖିରେ କ୍ଷେତ୍ରବାସୀଙ୍କ 'ଉଚ୍ଚାରଣ' ର ପୁରୁଣା ପୃଷ୍ଠାଗୁଡ଼ିକୁ ଓଲଟାଉଥିଲାବେଳେ ଗୋଟିଏ କଥା ସୁସ୍ପଷ୍ଟ ହୋଇଯାଏ । ସେ ଥିଲେ ଆତ୍ମପ୍ରତ୍ୟୟର କବି । ନିଜ ଛୋଟିଆ ଜୀବନର ମହନୀୟ ରୂପକୁ ସେ' ଶବ୍ଦର ଆଲୋଡ଼ନ ଭିତରେ ଉଚ୍ଚାରଣ କରିଥିଲେ ବାରମ୍ବାର । ସବୁ ସ୍ମୃତିକୁ ବର୍ତ୍ତମାନର ଆକାର ଭିତରେ ସେ' ସାକାର କରିଛନ୍ତି । "ସ୍ମୃତିରେ ସଜୀବମନ ଭେଦିପାରେ ବୟସର ଶୀତୁଆ କୁହୁଡ଼ି ।" (ସ୍ମୃତି) ସେଇ ସଜୀବ ମନଟି ବୃନ୍ଦାବନ । ଯେଉଁଠି ଅତୀତ, ବର୍ତ୍ତମାନ, ଭବିଷ୍ୟତ ଏକ ଅଲୌକିକ ପ୍ରକ୍ରିୟାରେ ସଂଯୋଜିତ । ତେଣୁ ବାର୍ଦ୍ଧକ୍ୟର ଶୀତୁଆ କୁହୁଡ଼ି ଭିତରେ ସ୍ମୃତି ଏକ ଜୀବନ୍ତ ପ୍ରାଣସ୍ପର୍ଶୀ ସମୟର ପରିଭାଷା । ଏହା ଏକ ରୋମାଣ୍ଟିକ୍ ଚତୁରତା । କବିର ସେଇ ଚତୁର ପ୍ରଗଲ୍‌ଭ ମନଟି ନିଜକୁ ବିଶ୍ଳେଷଣ କରିଛି । ଆଶା ନିରାଶାର, ବିରହ ମିଳନର, ଜନ୍ମମୃତ୍ୟୁର ଦାର୍ଶନିକ ପ୍ରକ୍ରିୟା ବା କୌଣସି ନିର୍ଦ୍ଦିଷ୍ଟ ଆଧୁନିକ କାବ୍ୟ ପ୍ରକ୍ରିୟାଠାରୁ ଦୂରରେ ଥାଇ ସେ' ଲକ୍ଷ୍ୟ କରିଥିଲେ ନିଜ ଭିତରେ ଗଜୁରି ଉଠୁଥିବା କବି ପ୍ରାଣର ଚାରାଗଛଟିକୁ ଏବଂ ଉଚ୍ଚାରଣ କରିଥିଲେ ସ୍ପଷ୍ଟ ଭାବରେ ତା'ର ନିରୀହ ନିଷ୍ପାପ ସ୍ୱଗତୋକ୍ତିକୁ ।

"ମୁଁ ମୋର ସୃଷ୍ଟିର ହେତୁ, ପ୍ରସ୍ତାବକ ଭିନ୍ନ ଦିଗନ୍ତର" (ଉଚ୍ଚାରଣ) ଯେହେତୁ "ମାଟି ତେଜି ମୁଁ ମାଟି ଖୋଜିଛି ।" ପ୍ରତ୍ୟେକ ସୃଷ୍ଟି ପଛରେ ଗୋଟିଏ ଧ୍ୱଂସର ସୂତ୍ର ଥାଏ । 'ମୁଁ' ଟି ହେଉଛି ସବୁ ସୃଷ୍ଟିର ନିର୍ଯ୍ୟାସ । 'ମୁଁ' ଟି ଭିତରେ ଅନେକ ଅନୁଚ୍ଚାରିତ

ଦିଗନ୍ତ ଗୋପନରେ ଅପେକ୍ଷା ରଖନ୍ତି । କେବେ ଦିନେ ସେମାନେ ଉନ୍ମୋଚିତ ହେବେ ବାସ୍ତବ ଜଡ଼ ଜଗତର କ୍ରୁର ଆଘାତରେ । ଜନ୍ମ ପରେ ମୃତ୍ୟୁ, ମୃତ୍ୟୁ ପରେ ଜନ୍ମ- ଏ ମାଟିକୁ ଛାଡ଼ିଦେଇ ପୁଣି ନୂଆ ମାଟି ଖୋଜିବା ହେଉଛି ଜନ୍ମ ଜନ୍ମାନ୍ତରର ଇତିହାସ । ତେଣୁ "ତୁମେ ଆମେ ଚେତନପୁରୁଷ / ଆରଣ୍ୟକ ଆଦିମ ରକ୍ତର । "x x x ତୁମେ ସବୁ ଆରଣ୍ୟକ / ହେ ମୋର ଭଉର ପୁରୁଷ ।" (ଆରଣ୍ୟକ) ସେଇଥିପାଇଁ କ୍ଷେତ୍ରବାସୀ ପ୍ରତ୍ୟେକଟି ଜୀବସତ୍ତା ଭିତରେ ଏକ ସୁପ୍ତ ଆରଣ୍ୟକର ଆଦିମ ଯନ୍ତ୍ରଣାକୁ ନିଜ ଭିତରେ ଅନୁଭବ କରିଥିଲେ । ସେଇ ଆରଣ୍ୟକଟି ଏକ ସ୍ମୃତି, ଏକ ଚିରନ୍ତନ ସତ୍ତା । "ସ୍ମୃତିପରା କଥା କୁହେ ଶ୍ମଶାନିତ ସମୟ କବରୁ / ତମେ ଥିଲ ଉଡ଼ିଗଲା ଚଢ଼େଇଙ୍କ ଶାବକ ମେଳରେ / କିଛିଦିନ, ସ୍ୱପ୍ନ ପ୍ରାଣ ଇଲାକାର ମୌନ ପ୍ରତୀକ୍ଷାରେ ।" (ଏକ ସ୍ମୃତିର ବିସ୍ମୃତି ପାଇଁ..)

କ୍ଷେତ୍ରବାସୀ ବେଶ୍ ବୁଝିଥିଲେ ଜୀବନକୁ । ବାରମ୍ବାର ନିଜ କାବ୍ୟିକ ଛନ୍ଦରେ ଉଚ୍ଚାରଣ କରିଥିଲେ ମଣିଷର ଅସହାୟ ବଞ୍ଚିବା ଭାବକୁ । ଶାବକ ଚଢ଼େଇ ପରି ଶୈଶବର ସବୁଜ ପଡ଼ିଆରେ ଓଲଟ ମାରୁ ମାରୁ ସମୟ ଟାଣି ନେଇଯାଏ ସମୟ-ନଈର ମଝିଧାରକୁ । ନାଆ ଟଳମଳ ହୁଏ । ପାର୍ଥିବ ସୁଖ ପଛରେ ଧଇଁସଇଁ ଧାଉଁଥିବା ମଣିଷଟି ଏମିତି ଟଳମଳ ହୁଏ । ନିଜ ସ୍ଥିତି ସଂପର୍କରେ ପ୍ରଶ୍ନ କରେ । ନିରାଶା, ଅଭାବବୋଧ, ଏକାକୀ ଭାବର ଛନ୍ଦକପଟ ଭିତରେ ସେ' ଆପରିକରେ "ନଈ ବା ଛାଡୁଚି କାହିଁ ? x x x ଦେଉଳ ଅନେକ ଦୂର ନାଆ ଭାସେ ନଈର ମଝିରେ" (ନଈ ଓ ନାଉରୀ) ଜୀବନର ମଝିନଈରେ ଶୈଶବର ରୋମାଣ୍ଟିକ ସ୍ମୃତି ପ୍ରାଣସଞ୍ଚାର କରେ । ବଞ୍ଚିବା ପାଇଁ ପ୍ରେରଣା ଦିଏ । ସେଇ ପ୍ରେରଣାର ଉତ୍ସଖୋଜୁ ଖୋଜୁ ସେ ଆସି ପହଞ୍ଚେ "ଏ ମୃତ ବନ୍ଦରେ" ଯେଉଁଠି "ଖାଲି ଶାମୁକାଙ୍କ ଗହଳି ଚହଳି ।" "ଏଠି ଖାଲି ବୋଝବୋଝ ବାଲିର ଜମାଟ / ଠାଏ ଠାଏ ପରିତ୍ୟକ୍ତ ଜୀବଙ୍କ କଙ୍କାଳ / ଏ ବନ୍ଦରେ ପରିପୂର୍ଣ୍ଣ ଅସ୍ଥିର ଫସଲ ।" (ପୋତପାଳର ସଙ୍ଗୀତ) ଏମିତି ଏକ ଜଞ୍ଜାଳମୟ ଜୀବନ ପାଇ, ଏକ ଧ୍ୱଂସସ୍ତୂପ ଉପରେ ଠିଆହୋଇ ମଧ ମଣିଷ "ବାମନ ଲୋଡୁଛି ଚନ୍ଦ୍ର", "ନିଜକୁ ତରୁଣ ମଣି ତୁମ ରଙ୍ଗେ ଅଙ୍ଗ ମୁଁ ଢାଳନ୍ତି ।" (ବର୍ଷା ଶୃଙ୍ଗାର) କାରଣ ସ୍ୱପ୍ନିଳ ଶାନ୍ତି, ଆନନ୍ଦ ପରି "ହଳଦୀ ବସନ୍ତ ଅଛି ନିଖୋଜ ଜିଲ୍ଲାରେ" (ବାମନର ହଳଦୀ ବସନ୍ତ) ସେଇ ବାମନ-ରୂପୀ ମଣିଷଟି ରୂପହୀନ କାରଣ "ଯେତେ ଆମ ପିତାମାତା ପ୍ରପିତା ପ୍ରମାତା / ତାଙ୍କ ଦେହ ନିର୍ମୋକର ଭଗ୍ନ ରୂପାନ୍ତର ।" ଏଇ ରୂପାନ୍ତରିତ ରୂପର ପଛପଟେ ସଦାସର୍ବଦା ମୃତ୍ୟୁର କରାଳ ଛାଇ

ଅଟ୍ଟହାସ୍ୟ କରୁଛି । ନିଜ ଯୌବନ-ମୃତ୍ୟୁକୁ କ୍ଷେତ୍ରବାସୀ ଯେମିତି ବହୁ ପୂର୍ବରୁ ନିଜ ଭିତରେ ଅନୁଭବ କରିଥିଲେ । 'ତା' ପାଇଁ ଆସୁଛି ଖରା, ବଙ୍କଶାଖୀ ତତଲା ପବନ / ବିପଦର ପଙ୍ଗପାଳ ଅନାହାରୀ ପ୍ରେତଙ୍କ କଙ୍କାଳ / ମଶାଣୀର କୂଳ ତଳୁ ବାନ୍ଧିଲେଣି ମେଳ" (ଛେଉଣ୍ଡର ଶେଷ ଗୀତ) ଏପରି ଏକ ବିଷାଦାବସ୍ଥାରେ ଜହ୍ନରାତି ବି କୁଳର ଜ୍ୱଳନପରି ଦେହ ମନକୁ ବାଧେ । " ଜହ୍ନ ଓ ଜହ୍ନ ଯେ ତୁମେ ଯୂଇଫୁଲ ସବୁଜୀବନର / ଜରତାର ଉଷ୍ୟଶୃଙ୍ଗ । ଅଗଣିତ ଇଚ୍ଛାର କୁମୁଦ / ତୁମରି ଏ ଶବଯାତ୍ରା ଅଚାନକ ଯନ୍ତ୍ରଣା ନଗରେ / ଶୋକରେ ଜାଳିଛି ତନୁ ରାତି ଏବଂ ରତିର ଅଗ୍ନିରେ ।" (ଜହ୍ନରାତି) ଏ ଜ୍ୱଳନ ଚିରସ୍ଥାୟୀ । ବାସ୍ତବ ! ଏପରି ଜ୍ୱଳନଜନିତ ଯନ୍ତ୍ରଣାକୁ ପାଥେୟକରି ବଞ୍ଚିବା ଏକ ଅଭିଯାନ । କାରଣ "ଦେହ ଯଦି ଦଗ୍ଧ ହୁଏ ତଥାପି ସେ' କହିବ ଗୋ ଏ ରାତିର କଥା / ବୟସର କ୍ଷତ ଚିହ୍ନ ନଗଁଲେବି ସହୁଥିବ କାମନାର ମର୍ମାନ୍ତିକ ବ୍ୟଥା ।" (ଦେହ ଓ ଦେହୀ)

କବି କ୍ଷେତ୍ରବାସୀ ଜନ୍ମ ଓ ମୃତ୍ୟୁର 'ତୋରଣ' ତଳେ ଠିଆହୋଇ ଚିରାଚରିତ ମଣିଷର ସ୍ୱପ୍ନ, ଆଶା ଆକାଂକ୍ଷା, ପ୍ରେମ, ବିରହ ତଥା ପ୍ରାପ୍ତି ଅପ୍ରାପ୍ତିର ନବୀନ ସଂସ୍କରଣର ଅନ୍ୱେଷଣ କରିଛନ୍ତି ନିଜ କବିତାରେ । ଜଣେ ଦାର୍ଶନିକ ପରି ମନେହେଉଥିବା କବି ନିଜ ଯୁବସୁଲଭ କାବ୍ୟିକ ଅକ୍ଷରମାନଙ୍କୁ ଉଚ୍ଚାରଣ କଲାବେଳେ ସଚେତନ ହୋଇ ପଡ଼ିଛି । ପ୍ରେମିକାର ପ୍ରଥମ "ପ୍ରଣୟର ଲଫାପାରେ ଜହ୍ନିମଞ୍ଜି ଅକ୍ଷରେ ଅକ୍ଷରେ" ଲିପିବଦ୍ଧ ହୋଇଛି ପ୍ରେମାନୁଭୂତି "କଇଁଫୁଲ ହସ" । (ଅକ୍ଷର) ଏବଂ ଯେତେବେଳେ "ଶ୍ରାବଣୀ ମେଘର କନ୍ୟା ଘୁମେଇଛି ଆକାଶ ଛାତିରେ x x x ଜନହୀନ ମହାନଦୀ ପଠା x x x ଭୁଲିଯିବେ ତୁମ ଆମ ପ୍ରେମ ଇତି କଥା" (ତଥାପି ଅକ୍ଷତ) । ତେଣୁ ସଚେତନ କବି କ୍ଷେତ୍ରବାସୀ ସ୍ୱୀକାର କରନ୍ତି "ମୁଁ ଏକ ଜଳନ୍ତା ଦୀପ / ତୁମେ ତାର ତରଳ ଇନ୍ଧନ / ଦେଖ ମୁଁ ଜଳୁଛି ଏଠି ଏଢ଼ି ସବୁ ବ୍ୟଥାର ତୋଫାନ" (ଶାଶ୍ୱତିକା) । ସେ' ନିଜକୁ ନିଜେ ସମର୍ପଣ କରିଛନ୍ତି ସମୟର ଗତୁଚକ୍ରବ୍ୟୂହ ଭିତରେ ଅଭିମନ୍ୟୁ ପରି । ଅତି ସତର୍କ ହୋଇ ସେ ଲକ୍ଷ୍ୟ କରିଛନ୍ତି - "ମୁଁ ଦେଖିଲି ମୁକ୍ତାବିନ୍ଦୁ ଦୁଇଟି ଆଖିର" (ସ୍ପନ୍ଦନ) ଏବଂ ସେଇଥିପାଇଁ ସେ' ଯୁକ୍ତି କରିଛନ୍ତି "ଦେଖିବା ଲୋକର ଆଖି ଖୁବ୍ ଛୋଟ" କାରଣ "ବୟସ ଚେତାଏ ତାକୁ (କହିବାକୁ) ସତକଥା, ଆତ୍ମସତର୍କତା" (ସ୍ମୃତି) ।

ଏହା କ୍ଷେତ୍ରବାସୀଙ୍କର ବିନୟୀ ଭାବର ଏକ ଉଦାହରଣ । ନିଜ ଜୀବନାନୁଭୂତିକୁ ସେ' ତାଙ୍କ ଛୋଟ ଆଖିରେ ଦେଖି ଯେତିକି ବୁଝିଥିଲେ ସେତିକିକୁ ସେ ନିଜସ୍ୱ ଶବ୍ଦରେ

ଉଚ୍ଚାରଣ କରିଛନ୍ତି 'ଉଚ୍ଚାରଣ'ରେ ସନ୍ନିବେଶିତ କବିତାମାନଙ୍କରେ । 'ଛୋଟ'ଭିତରେ 'ବିରାଟ' ର ପ୍ରତିମୂର୍ତ୍ତିକୁ ସେ' ଆଲୋକିତ କରିଛନ୍ତି । ଏକ ମେଟାଫିଜିକାଲ ଭିତ୍ତିଭୂମି ଉପରେ ଠିଆ ହୋଇ କବି ଜୀବନର ନିଷ୍କପଟ ଚିତ୍ର ଆଙ୍କିବା ପାଇଁ ଆଗ୍ରହୀ । ଏହାହିଁ ତାଙ୍କର ବିଶେଷତ୍ୱ । ନିଜକୁ ଗୌଣ ମନେ କରି ଅନ୍ୟକୁ ମହାନ୍ କରି ଗଢ଼ିତୋଳିଛନ୍ତି ସେ । କବି କ୍ଷେତ୍ରବାସୀ ଦାର୍ଶନିକ ନଥିଲେ, ମାତ୍ର ଚଳନ୍ତି ଜୀବନର ମହନୀୟ ଭାବମୂର୍ତ୍ତିକୁ ସେ' ଖୁବ୍ ଆନ୍ତରିକତାର ସହ ଭଲପାଉଥିଲେ । ଶାମୁକା ଖୋଳୁ ଖୋଳୁ ଜୀବନର ନୂତନ ସ୍ୱାଦକୁ ସେ' ଆପଣାର କରିନେଉଥିଲେ ।

କ୍ଷେତ୍ରବାସୀ ନାହାନ୍ତି ପୁଣି ଅଛନ୍ତି । ତାଙ୍କର ସେଇ ଛୋଟିଆ ଆଖି ଦୁଇଟି ଆଜି ଯେମିତି ପ୍ରସାରିତ ହୋଇଯାଇଛି କେଉଁ ନବଦିଗନ୍ତକୁ - କେଉଁ ଅନ୍ୟ ଏକ ଜହ୍ନରାତିରେ ରତିକ୍ଲାନ୍ତ ହୋଇ ନିଜର ଦେହକୁ ବିଦେହର ଅଗ୍ନିରେ ଜାଳି ଦେବାକୁ । ଏହାହିଁ ତାଙ୍କ କାବ୍ୟପୁରୁଷର ମହାନତା, ମହନୀୟତା ।



# କ୍ଷେତ୍ରବାସୀଙ୍କ କବିତାରେ ମାନବବାଦ ।

ଶ୍ରୀ ଚୈତନ୍ୟ ପ୍ରସାଦ ସେଠୀ

**ଡ଼ଃ** କ୍ଷେତ୍ରବାସୀ ନାୟକ କେବଳ ଜଣେ ଅନନ୍ୟ ସାଥୀଟିଏ ହୋଇ ଆମ ଗହଣରେ ବା ଓଡ଼ିଶାର ସାହିତ୍ୟ ସାଧନା କ୍ଷେତ୍ରରେ ଆଉ କେଉଁ ଅନନ୍ୟଟିଏ ହୋଇ ଜୀବନରେ ଅଟକି ଯାଇ ନ ଥିଲେ; ବରଂ ତାଙ୍କର ପ୍ରାଞ୍ଜ ଜୀବନ - ପ୍ରଦୀପଟିରେ ବହୁ ସ୍ମରଣୀୟ ଆଲୋକର ଛଟା ପରି-ପ୍ରକାଶ କରି ସମସ୍ତଙ୍କ ଭିତରେ ଏକ ଅନ୍ତରଙ୍ଗ ଭାବ ସୃଷ୍ଟି କରିପାରିଥିଲେ । ସେଇଥିପାଇଁ ଆଜି ମଧ୍ୟ ଓଡ଼ିଶାର ସୁଧୀ ବିଦ୍ୱାନମାନଙ୍କ ମାନସ ପଟରେ ସେ ବେଶ୍ ଉଜ୍ଜୀବିତ ହୋଇ ରହିପାରିଛନ୍ତି । ତାଙ୍କର ପ୍ରାଞ୍ଜିକ କର୍ମଗୁଡ଼ିକ ଆଜି ବି ଆମ ସମକ୍ଷରେ ତାଙ୍କ ସମୁଚିତ ଔଜ୍ଜଲ୍ୟରେ ପ୍ରଭାମୟ ହୋଇ ଉଠୁଛନ୍ତି ।

କ୍ଷେତ୍ରବାସୀ ଭାଇଙ୍କ ସାହିତ୍ୟ ସାଧନା ବହୁ ଦିଗଦର୍ଶୀତାର ପରିଚୟ ଦେଇଥାଏ । ତାଙ୍କର ସାହିତ୍ୟ ସମୀକ୍ଷା, ପ୍ରବନ୍ଧ ରଚନାର ଅସାମାନ୍ୟ ଶୈଳୀ ଓ ଗବେଷଣା ପଦ୍ଧତିର ଆତ୍ମୀୟତା, ତାଙ୍କ ସୃଷ୍ଟି ସମ୍ଭାରର ମଧୁର ଉଷ୍ମତା, ଆମ ଭିତରେ ଅଜସ୍ର ପ୍ରେରଣା ସୃଷ୍ଟି କରିବାରେ ସକ୍ଷମ ହୋଇପାରିଛି । ତାଙ୍କ ଗଳ୍ପ, କିଞ୍ଚିତ୍ ରମ୍ୟରଚନା ବା ଲଳିତ ପ୍ରବନ୍ଧ ଆଜି ମଧ୍ୟ ପାଠକର ସ୍ମୃତିପଟରେ ବେଶ୍ ଆମୋଦତା, ମାଦକତା ସୃଷ୍ଟି କରିପାରୁଛି । ଆମେ ଜାଣିବାରେ, ତାଙ୍କ ସମଗ୍ର ଗଦ୍ୟରଚନାରେ ଏକ ଅନ୍ତଃସଲିଳା କାବ୍ୟିକ ଅପ୍ରଚ୍ଛନ୍ନ ସ୍ରୋତ ରହିଥିବାର ଅନୁଭୂତ ହୋଇଥାଏ । ତାଙ୍କ କାବ୍ୟମାନସର ଭାବଛାୟା, ସେଇ ସବୁ ରଚନାରେ ବେଶ୍ ବାରି ହୋଇଯାଏ । ସେ' ଯେ ଜଣେ କବି, ସେଇଠୁ ହିଁ ଜଣାପଡ଼ିଯାଏ । ସତେ ଅବା ଜଣେ ମାର୍ମିକ କବି, କାହିଁ କେଉଁ ଅତୀତରେ ଗଦ୍ୟ ରଚନା - ରତ୍ନର ଆବେଗପୂର୍ଣ୍ଣ ଆହ୍ୱାନରେ ପଥଭ୍ରଷ୍ଟ ହୋଇ ନୂତନ ଏକ ସୃଜନ ରାଜ୍ୟରେ ଅଭିଷିକ୍ତ ହୋଇ ରହିଯାଇଛନ୍ତି ଓ ସେଥିପାଇଁ ତାଙ୍କ ରଚନାରେ କାବ୍ୟ ନାୟିକାଟିକୁ ଭୁଲି ନ ପାରି ଗଦ୍ୟ ଭିତରେ ତାଙ୍କୁ ଆବିଷ୍ଟ କରି ରଖି ପାରିଛନ୍ତି ।

ତେଣୁ ବସ୍ତୁତଃ ଆମକୁ ଲାଗେ ଯେ, କବିଟିଏ ସବୁ ସ୍ତରରେ କବି ହୋଇ ରହିଯାଇଛନ୍ତି । ଅବଶ୍ୟ କବି ଶବ୍ଦର ବ୍ୟାଖ୍ୟା ଆମକୁ ସ୍ପଷ୍ଟ ଭାବେ କହିଦିଏ "କବୟତି ଇତି କବି" ଅର୍ଥାତ୍ ସକଳ ପ୍ରକାର ସୃଷ୍ଟିର ସ୍ରଷ୍ଟା ହିଁ ହେଉଛି କବି । ଏଇ ସମଗ୍ର ବିଶ୍ୱର ଯିଏ କବି, ହୁଏତ ତାଙ୍କରି ଏକ କ୍ଷୁଦ୍ରାତିକ୍ଷୁଦ୍ର ଆଲୋକ କଣିକାର ଧାସ ହୋଇ କବି କ୍ଷେତ୍ରବାସୀଙ୍କ ଆନ୍ତଃକରଣରେ ଉଲ୍ଲୋଳିତ କବି ମାନସଟିଏ ରୂପରେ ଆମ ପାଇଁ ଏଠି

କବି କ୍ଷେତ୍ରବାସୀ ଭାବେ ପ୍ରତିଭାତ । କବି ଓ କବିତା ଯୁଗେ ଯୁଗେ ପରସ୍ପରର ପରିପୂରକ କହିଲେ ଆଦୌ ଅତ୍ୟୁକ୍ତି ହେବନାହିଁ ।

ତ୍ରେତୟା ଯୁଗରୁ, ପରମ ଋଷି ବାଲ୍ମୀକିଙ୍କ ଅମଳରୁ ପ୍ରତୀୟମାନ ହୁଏ ଯେ- ମନୁଷ୍ୟର ଭାଷା ଆଦ୍ୟରୁ କବିତାଶ୍ରୟୀ । ହୃଦୟସ୍ପର୍ଶୀ ଭାଷା ଉଚ୍ଚାରଣ ହିଁ କବିତା । ସେଇଥି ପାଇଁ କାବ୍ୟିକ ଭାଷା ଓ ଭାବ ବିନ୍ୟାସ ସର୍ବଦା ଅନନ୍ୟ ତଥା ଆମୋଦ ଦାୟକ। ଏମିତି କି, ସବୁଠାରୁ ସୁଖ ପ୍ରଦାୟିନୀ କବିତା ହେଉଛି ତାହା, ଯାହା ଆମ ଦୁଃଖଦ ଚିନ୍ତାର ରସସିକ୍ତ ପରିପ୍ରକାଶ । ଇଂରାଜୀ କବି ଶେଲୀ ସତରେ କେତେ ହୃଦୟସ୍ପର୍ଶୀ ଭାଷାରେ ଭଲ କବିତାର ସଂଜ୍ଞା ପ୍ରଦାନ କରି କହି ଯାଇଛନ୍ତି - "Our Sweetest Songs are those that tell us the saddest thoughts". ଏମିତି ଭାଷା କେବଳ ମାନବବାଦୀ ଦରଦୀ କବି କଲମରୁ ଝରିପାରେ ।

ଠିକ୍ ସେହିପରି ଜଣେ ଦରଦୀ କବିଙ୍କର ଆଲୋଚନା ଆଜି ଏଠି ଆମ ପାଇଁ ଏକ ଅନନ୍ୟ ସୁଖ ଚେତନାର ପରିସର ସୃଷ୍ଟି କରିପାରିଛି । ପୁରାତନ ସଂସ୍କୃତ ସାହିତ୍ୟ ଆମକୁ ତ ସ୍ପଷ୍ଟ କହିଛି ଯେ - ବିଚାରଶୀଳ ମଣିଷ ହିଁ କାବ୍ୟଶାସ୍ତ୍ର ବିନୋଦନରେ କାଳ କାଟିଥାଏ । ତେଣୁ କାବ୍ୟ କବିତାର ଆଲୋଚନା ଓ ବିଶେଷକରି ମାନବପ୍ରେମୀ କବି କ୍ଷେତ୍ରବାସୀ ନାୟକଙ୍କ କବିତାଗୁଡ଼ିକର ସମ୍ୟକ୍ ଆଲୋଚନା ନିଶ୍ଚିତଭାବେ ଆମକୁ ଆନନ୍ଦିତ କରିପାରିବ । ଏଥିରେ ସନ୍ଦେହର ଅବକାଶ ନାହିଁ ।

ସପ୍ତମ ଦଶକରେ ଚିହ୍ନିବାର ମାନବୀୟ ଧାରା ଓ ଜୀବନ ଏବଂ ଜୀବନର ସ୍ୱପ୍ନ ସମ୍ଭାର ବାଞ୍ଛିତ ବା ଅବାଞ୍ଛିତ ଆକସ୍ମିକଭାବେ ଆମଭିତରକୁ ପଶି ଆସିଥିବା ସଭ୍ୟତାର ଆଖି ଝଲସା ଆଲୋକରେ ଭିଜିଥିବା ଏ ଦେଶ ଓ ଓଡ଼ିଶା ମାଟିର ଜୀବନ ସେତେବେଳେ ଯୁବ କବିର ଆଖିରେ ଏବଂ ଅନୁଭୂତିରେ ନାନା ମାନବୀୟ ଉଦ୍‌ବେଳନ ସୃଷ୍ଟି କରିଥିଲା ଏବଂ କବି କ୍ଷେତ୍ରବାସୀଙ୍କ କବି ମାନସରେ ମଧ୍ୟ ଯେଉଁ ଆଲୋଡ଼ନ ତଥା ଆନ୍ଦୋଳନ ସୃଷ୍ଟି କରିଥିଲା, ତହିଁର କିଞ୍ଚିତ୍ ପରିପ୍ରକାଶ ତାଙ୍କ ରଚିତ "ଉଚ୍ଚାରଣ" କବିତା ସଂକଳନରେ ଆମକୁ ତାଙ୍କ ମାନବବାଦୀ କବି ହୃଦୟର ପରଚୟ ପ୍ରଦାନ କରେ । ସେଇ ସମୟ ଅବଧିର ବହୁ ଉଦୀୟମାନ କବି ସେ କାଳର ଘଟଣା ପ୍ରବାହରେ ଭାସି ଯାଉଥିବା ମାନବ ଜୀବନ ଏବଂ ତା'ର ସମସ୍ୟାଗୁଡ଼ିକୁ ନିରପେକ୍ଷ ଭାବେ ନ ବୁଝି କବି ହେବାପାଇଁ ବାସନାଟିଏ ମନରେ ଧରି ଆଧୁନିକ କବିତା ନାଆଁରେ ବହୁ ଅକବିତା ରଚନା କରି, ବାହାସ୍ଫୋଟ ମାରି ଅପ୍ରଚ୍ଛନ୍ନ ବା ଅନୁଚ୍ଚାରିତ ଅପବାଦକୁ ଭୁରିଡ଼ିରେ ଉଡ଼ାଇ ବେଶ୍

ମନଖୁସିରେ ଚାଲିଗଲେ । ମାତ୍ର କବି କ୍ଷେତ୍ରବାସୀଙ୍କ କ୍ଷେତ୍ରରେ ତାହା ଅନ୍ୟ ପ୍ରକାରର ଥିଲା । ତାଙ୍କ କବିତାରେ ଅଙ୍ଗୁଳିମେୟ ମାତ୍ର କେଇଟି ଅବାଞ୍ଛିତ କାବ୍ୟ ଅସଂଗତି ପରିଦୃଷ୍ଟ ହେଲେ ମଧ୍ୟ ଏକ ଦରଦୀ ମାନବବାଦୀ ଦୃଷ୍ଟିଭଙ୍ଗୀ ପ୍ରତ୍ୟେକ କାବ୍ୟପ୍ରେମୀକୁ ଆକୃଷ୍ଟ କରିବାରେ **ସ୍ୱଷ୍ଟ** ସଫଳକାମୀ ହୋଇପାରି ଥିବାର ଆମେ ଅନୁଭବ କରୁ ।

ଆଲୋଚ୍ୟ କବିଙ୍କ ବିରଚିତ କବିତାଗୁଡ଼ିକର ସମାହାର ଆମେ "ଉଚ୍ଚାରଣ" କବିତା ସଂକଳନରେ ଦେଖିବାକୁ ପାଉ । ସଂକଳନର ପ୍ରଥମ କବିତାରେ ମଣିଷର ପ୍ରଥମ ତଥା ଶ୍ରେଷ୍ଠତମ Emotion ବା ଆବେଗର ଇତିବୃତ୍ତିଟିକୁ ସୁନ୍ଦର କାବ୍ୟିକ ଭାଷାରେ ଆମକୁ ସିଏ ବାଢ଼ିଦେଇଛନ୍ତି । ଏହା ନିରାଟ ସତ୍ୟ କଥା ଯେ - ମାନବୀୟ ପ୍ରେମାବେଗ କେବେ ବାଡ଼ ବତା ମାନେ ନାହିଁ । ବାସ୍ତବ ଏକ ସୃଜନର ମୋହରେ ସେ ସବୁ କିଛି ଭୁଲିଯାଏ । ସେଠି ସତେ ଅବା ସୌନ୍ଦର୍ଯ୍ୟର ରୂପାନ୍ତର ଘଟୁଥାଏ । ଆଦିମ ଆରଣ୍ୟକର ଭାବ ବିଭୋରିତ ହୋଇ ଆଗତ ଭବିଷ୍ୟର ଶ୍ରେୟ ଅଶ୍ରେୟ ବିଚାରଠାରୁ ବହୁ ଦୂରକୁ ସେ ଚାଲିଯାଏ । ଆଦିମତାର ଆନନ୍ଦ ତଳେ ଯେ ନିଦ୍ରିତ ନାଗ ଶିଶୁଟିଏ ରହିଛି, ତାହା ମଧ୍ୟ ସେ ଜାଣିପାରେ ନାହିଁ । ଅର୍ଥାତ୍ ପିଲାଟିକୁ ମଣିଷ କରିବା ଭିତରେ ଓ ସେ ମଣିଷ ହୋଇସାରିବା ପରେ ନାନା ତିକ୍ତ ମଧୁର ମାନସିକ କ୍ଷତ ଯେ ମଣିଷକୁ ସାଂସାରିକ କ୍ଳେଦରେ ବୁଡ଼ାଇ ରଖି ଜୀବନକୁ ନାନା ଯନ୍ତ୍ରଣାରେ ଭରିଦିଏ, ତାହା ସେ ସେତେବେଳେର ଆଦିମ ଆବେଗମୟ ଆଦାମ ଏବଂ ଇଭ୍ ମିଳନାତ୍ମକ ନାଟକର ଦୃଶ୍ୟରେ ସେ ଭାବିବାକୁ ସମୟ ପାଇ ନ ଥାଏ । ସେଇ ପାଇଁ ଏଠି ଜୀବନ ଓ ଯୌବନର ଶ୍ୟାମଶସ୍ୟ ସୌନ୍ଦର୍ଯ୍ୟପୂର୍ଣ୍ଣ ଅରଣ୍ୟ ଉଜୁଡ଼ି ଯାଏ । ଜୀବନର ସ୍ୱପ୍ନମୟ ବନହଂସୀ ଦଳ କାହିଁ କେଉଁଆଡ଼େ ଉଡ଼ି ଚାଲିଯାଆନ୍ତି । ଜୀବନର ସରସତା କମି କମି ଆସେ । ସବୁ କିଛି ତେଣିକି ଉଜୁଡ଼ା ଅରଣ୍ୟ ପରି ଦିଶେ ଓ ପ୍ରସ୍ତ ପ୍ରସ୍ତ ପଲ୍ଲବିତ ପତ୍ରର ତଳୁ ନିଦ୍ରିତ ନାଗ ଶିଶୁଟି ଚେଇଁ ଉଠେ, ପ୍ଳାବନ ପୂର୍ଣ୍ଣ ଶ୍ରାବଣର ଗର୍ଭବତୀ ନଈ ପରି, ସାମାନ୍ୟତମ ଦୈହିକ ଆମୋଦ ମଣିଷକୁ ବାଧ୍ୟ କରି ଅନ୍ୟ ଏକ ଅବଶ୍ୟମ୍ଭାବୀ ଦୁଃଖଦ ପ୍ରସ୍ତକୁ ଟାଣି ନିଏ । ଅବଶ୍ୟ ଏଇ ଦୁଃଖଭିତରେ ମଧ୍ୟ ଖିଆଡ଼ ବନ୍ଧା ସୁଖଟିଏ ରହିଥାଏ । ମଣିଷ ଯୌନ ଜୀବନର ଆରଣ୍ୟକ ଇତିବୃତ୍ତି ନିମ୍ନୋକ୍ତ କବିତାଂଶରୁ ବେଶ୍ ପ୍ରତୀୟମାନ, ଯଥା - ନିଘଞ୍ଚ ଅରଣ୍ୟ ଗଲା / ଉଡ଼ିଗଲେ ବନହଂସୀ ଦଳ / ବୃନ୍ତରୁ ପଡ଼ିଲା ଝରି ନିର୍ବିଚଳ ମାଳତି ବକୁଳ / ପ୍ରସ୍ତ ପ୍ରସ୍ତ ପତ୍ରର ପଲକେ ...... / ନିଦ୍ରିତ ଯେ ନାଗ ଶିଶୁ / ପଲକେ ଉଠିଲା ଫୁଲି / ଗର୍ଭବତୀ ନଈ ପରି ଶେଷ ଶ୍ରାବଣ ।" ଏଇ କବିତାଟିର ଭାଷାରେ ଭାବବିନ୍ୟାସ ପାଇଁ ଆବଶ୍ୟକ Sym-

୮୦। ବା ପ୍ରତୀକଗୁଡ଼ିକ ଅତି ରସୋତ୍ତୀର୍ଣ୍ଣ ହୋଇ ପାଠକର ଚିତ୍ତ ଚୈତନ୍ୟକୁ ଅନେକ ସମୟପାଇଁ ଭାବାବେଶରେ ରଖିବାକୁ ସକ୍ଷମ ହୋଇପାରିଛି । ଚିତ୍ରକଳ୍ପଗୁଡ଼ିକ ମାନବୀୟ ଆବେଗାଭିମୁଖୀ ହୋଇ ଉଠିଛି ।

ଆଉ ଏକ କବିତା "ଅଭାଗୀର ଆତ୍ମଲିପି"କୁ ଆଲୋଚନା ପରିସରରେ ନିରୀକ୍ଷଣ କଲେ କବି କ୍ଷେତ୍ରବାସୀ ଯେ ଜଣେ ସଚ୍ଚୋଟ ଦରଦୀ ମାନବବାଦୀ କବି, ତାହା ସ୍ପଷ୍ଟ ପ୍ରତୀୟମାନ ହୁଏ । ଆମ ସମାଜରେ ଥିଲାବାଲା, ନ ଥିଲାବାଲାର ଦ୍ୱନ୍ଦ୍ୱ, ଜୀବନର ହତଶ୍ରୀ ଦୃଶ୍ୟର ଅବତାରଣା କରିଥାଏ । "Haves and havenots" ସାମାଜିକ ଜୀବପନ ପଟ୍ଟର ହନ୍ତସନ୍ତ ଭାବ ମନୁଷ୍ୟକୁ ବ୍ୟଥିତ କରେ । ଅଭାବୀ ବା ଗରିବ ହୋଇଗଲେ ପାର୍ଥିବ ଜୀବନ ଦୁର୍ବିସହ ହୋଇଯାଏ । ଚଉଦିଗ ଶୂନ୍ୟ ଅଭାବୀ ସ୍ତ୍ରୀ ଲୋକର କ୍ଷେତ୍ରରେ ଜୀବନ ଆହୁରି କରୁଣ ହୋଇଉଠେ । ତା' ଜୀବନରେ ନାନା ଅବାଞ୍ଛିତ ଅପବାଦର ଯନ୍ତ୍ରଣାଠାରୁ ଆରମ୍ଭ କରି ଭୋକର ଯନ୍ତ୍ରଣା - ସବୁ କିଛି ତାକୁ ରିକ୍ତ କରିଦିଏ । ନା' ମାନ, ନା' ସମ୍ମାନ, ଅଭିମାନ ସବୁ କିଛି ତତଲା ମରୁ ମରୀଚିକାର ଦାଉପରି ମାଡ଼ି ଆସେ । ଶେଷରେ ସିଏ ଜଗନ୍ନାଥଙ୍କ ବଡ଼ଦାଣରେ "ନିରାଶ୍ରୟୀଙ୍କୁ ଜଗଦୀଶ ସାହା" ଭାବ ମନେ ପୋଷଣକରି ଠାକୁରଙ୍କ ଘୋଷ ଯାତ୍ରାରେ ଠାକୁରଙ୍କୁ ଅତ୍ୟନ୍ତ ଈର୍ଷା, ଦୁଃଖ, ରାଗ ଓ ଅଭିମାନରେ କହି ଉଠେ "ତୁମର ଏ ଆଡ଼ମ୍ବରେ ଶୋଭାଯାତ୍ରା ଜନ ସମୁଦ୍ରର / ଇର୍ଷୁକ ଚେତନା ମୋର ଇଚ୍ଛାକରେ ଲଭିବାକୁ ତୁମ ସିଂହାସନ (ଜାଣିରଖ ) ମଣିଷ ବି ଭଗବାନ, ତୁମେ ଯଦି ବିତାଉଛ ବ୍ୟସନେ ଜୀବନ / ଦିଅ ମୋତେ ତୁମ ପ୍ରାପ୍ୟ, ଅଭାଗୀର ଚିର ପ୍ରୟୋଜନ"। କବିତାଟିରେ ସତେ ଅବା ନିଜେ ଅଭାଗୀ ସ୍ତ୍ରୀଲୋକଟିର ପ୍ରାଣର ଦୁଃଖଦ ସ୍ପନ୍ଦନ ପାଇଟି ଯାଇଛନ୍ତି ଓ ନିଜେ ବି କ୍ଷୋଭିତ କଣ୍ଠରେ ସାରା ଜଗତର ଅଭାବୀ ପ୍ରାଣର ଗାଥା ଗାଇଯାଇଛନ୍ତି କବିଙ୍କର ମାନବବାଦୀ ଚେତନାର ଚମକ ସଂଶିତ ପୁସ୍ତକଟିର ବହୁ କବିତାରେ ସୁସ୍ପଷ୍ଟ । ତାଙ୍କୁ ଓ ତାଙ୍କର ମାନବବାଦୀ ପ୍ରାଣସତ୍ତାକୁ ଶତ ପ୍ରଣାମ ।



# କ୍ଷେତ୍ରବାସୀଙ୍କ କବିପଣ ଓ କବିତା

ଶ୍ରୀ ଚିରରଂଜନ ବେହେରା

**କା**ବ୍ୟ-କବିତା ହେଉଛି ସାହିତ୍ୟର ଆଦିପର୍ବ । ସାହିତ୍ୟର ସ୍ରୋତସ୍ୱିନୀକୁ ପ୍ରଖର କରିବାରେ କବିତାର ଭୂମିକା ଥିଲା ବଳିଷ୍ଠ । ଏହା କ୍ରମଶଃ ତା'ର କ୍ଷେତ୍ର ପ୍ରସାରିତ କରି ଚାଲିଥିଲା ଆଦିମରୁ ଆଧୁନିକ ପର୍ଯ୍ୟନ୍ତ ଏହାର ଗତି ଓ ସ୍ଥିତିକୁ ଜାହିରି କରିଚାଲିଲା । ସଭ୍ୟତାର କ୍ରମବିକାଶ ସହ ସମତାଳରେ ସାହିତ୍ୟ ତାଳ ଦେଇ ବହି ଚାଲିଲା । ଆଧୁନିକ ମଣିଷର ମାନସିକ ଅସ୍ଥିରତା, ସ୍ୱପ୍ନଭଙ୍ଗ, ହତାଶା ଓ ମୃତ୍ୟୁର ଆତଙ୍କ ଠାରୁ ଆରମ୍ଭ କରି ପ୍ରେମ-ପ୍ରତାରଣାର ପ୍ରତିଛବିକୁ  ତୂଳୀରେ ତୋଳି ଧରିଲା । ଅଭିଜ୍ଞତାଯୁକ୍ତ ବିସ୍ତାରିତ ଭାବଚେତନା କବିତା ପାଇଁ ଏକ ପ୍ରସାରିତ ପୃଷ୍ଠଭୂମି ଖୋଜି ବସିଲା । ସାଂପ୍ରତିକ ଜୀବନ ଜଞ୍ଜାଳର ଚିତ୍ରକୁ ପ୍ରତିଫଳିତ କଲା । ଚିନ୍ତା ଚେତନାର ଦ୍ରୁତ ପ୍ରସାର ଯୋଗୁଁ ଜିଇଁବାର ଭାବ ବଦଳିଗଲା । ଭାବ ବଦଳିବାରୁ ଅନୁଭବ ବି ବଦଳିଗଲା । ଏହା ସୁଦୂର ଦିଗ୍‌ବଳୟକୁ ଛୁଇଁଲା । ଏହି ପରିପ୍ରେକ୍ଷୀରେ କବିତାର କ୍ଷେତ୍ର ମଧ ସୁଦୂରପ୍ରସାରୀ ହେଲା । କବି କ୍ଷେତ୍ରବାସୀଙ୍କ କବିପଣ ଓ କବିତାର କ୍ଷେତ୍ର ଏହିସବୁ ଭାବଠାରୁ ଭିନ୍ନ ହୋଇପାରି ନାହିଁ । ତାଙ୍କ ସମଗ୍ର କବିପଣିଆ ଜୀବନ ଜଞ୍ଜାଳର ଜଉଘର ଭିତରେ ପଶିଯାଇଛି ।

ଜୀବନର ପ୍ରାରମ୍ଭିକ ପର୍ଯ୍ୟାୟରେ କବିତା ଲେଖୁଥିବା କ୍ଷେତ୍ରବାସୀଙ୍କୁ ସତୀର୍ଥ ସାହଚାର୍ଯ୍ୟ ଦେଇଛନ୍ତି ତାଙ୍କର ଧର୍ମପତ୍ନୀ ଲାବଣ୍ୟ ନାୟକ । ତାଙ୍କରି ସଂପାଦନାରେ ପ୍ରକାଶ ପାଇଛି କ୍ଷେତ୍ରବାସୀଙ୍କ ପ୍ରଥମ କାବ୍ୟ ସଂକଳନ 'ଉଚାରଣ' । ତାରୁଣ୍ୟ ହେଉଛି ଉଦ୍ଦାମ ଉଚାରଣର ଋତୁ । ତାରୁଣ୍ୟରେ ଗିରି ଲଂଘିଯିବାର ଅଭୀପ୍‌ସା ମନକୁ ଆସେ । ଖୁବ୍ ବେଗରେ ଧାଏଁ ମନ । ପ୍ରଖର ହୋଇଉଠେ ନିଶ୍ୱାସ । ସବୁ ପଥ ସୁଗମ ଲାଗେ । ସବୁ ଲାଗେ ମିଠା ମିଠା । ମଧୁର ସ୍ୱପ୍ନରେ ବିମୋହିତ ହୋଇପଡ଼େ । ଖୋଜିବସେ ଜହ୍ନରାତି ଓ ଜହ୍ନିଫୁଲ । କ୍ଷେତ୍ରବାସୀ ବି ଖୋଜିଛନ୍ତି ଜହ୍ନରାତିକୁ ଓ ଜହ୍ନିଫୁଲକୁ । ତାଙ୍କ 'ଜହ୍ନରାତି' କବିତାରେ କବି ଲେଖିଛନ୍ତି - 'ହଠାତ୍ ଓହ୍ଲାଇ ଜହ୍ନ ନିରୁତପ୍ତ ମନର ମନ୍ଦିରେ / ଖୋଜିଗଲା ମୁଠା ମୁଠା ଜହ୍ନିଫୁଲ ଆବେଗ ସପନ / କହିଁଲ ସେବତି କେତେ ମ୍ରିୟମାଣ ଇନ୍ଦ୍ରିୟ ପଥାରେ / ଖୋଜିଲା ଅନେକ କିଛି / ନିଶ୍ୱାସର ତରଙ୍ଗସ୍ରୋତରେ ।' ମିଠା ମିଠା ଅନୁଭବର ତାତିକୁ ସେ ଦେଖିଛନ୍ତି ଖୁବ୍ ନିକଟରୁ । ଅନୁଭବ କରିଛନ୍ତି ଇନ୍ଦ୍ରିୟାନୁଭୂତିକୁ । ସୌନ୍ଦର୍ଯ୍ୟବୋଧକୁ ଥୋଇଦେଇଛନ୍ତି ଠିକଣା ଜାଗାରେ ।

କାବ୍ୟର ମୌଳିକ ଉଦ୍ଦେଶ୍ୟ ସୌନ୍ଦର୍ଯ୍ୟ ସୃଷ୍ଟି । ସୌନ୍ଦର୍ଯ୍ୟ ନ ଥିଲେ କାବ୍ୟସତ୍ତାକୁ ବାରିବା କଷ୍ଟ ହୋଇପଡ଼େ । ସୌନ୍ଦର୍ଯ୍ୟ ହିଁ ସତ୍ୟ । ସତ୍ୟ ହିଁ ସୌନ୍ଦର୍ଯ୍ୟ । ସୌନ୍ଦର୍ଯ୍ୟବୋଧ ମଣିଷର ଏକ ଅଂଶ । ମଣିଷ ମାତ୍ରେ ହିଁ ସୌନ୍ଦର୍ଯ୍ୟ ପିପାସୁ । ପୁଣି କବି ମଣିଷଟି ଅତ୍ୟନ୍ତ ନିଆରା । ସେ ତା'ର ତୃତୀୟ ନୟନରେ ଯାହା ଦେଖେ ତାହା ସାଧାରଣ ମଣିଷ ଦେଖିପାରେ ନାହିଁ । ତାଙ୍କର କବିତାର କ୍ଷେତ୍ର ବ୍ୟାପକ ନ ହେଲେ ମଧ ସେ ସୌନ୍ଦର୍ଯ୍ୟାନୁଭୂତିରୁ ବାହାରି ଯାଇପାରି ନାହାନ୍ତି । ନାନ୍ଦନିକ ଦୃଷ୍ଟିଭଙ୍ଗୀକୁ ଏଡାଇ ଯାଇନାହାନ୍ତି । ତାଙ୍କର ସାମଗ୍ରିକ କାବ୍ୟସତ୍ତା ସୌନ୍ଦର୍ଯ୍ୟାନୁଭୂତିରେ ପର୍ଯ୍ୟବସିତ । ତାଙ୍କ କବିତାର ଭିତ୍ତିଭୂମି ନାନ୍ଦନିକ ରୂପ କଳ୍ପ ଉପରେ ଠିଆ । ସେ ହେଉ 'ନଈ ଓ ନାଉରୀ' କି 'ସମର୍ପଣ' କବିତା । ସବୁଠି ସୌନ୍ଦର୍ଯ୍ୟବୋଧର ସୂକ୍ଷ୍ମ କଳା ଓ ନାନ୍ଦନିକ ଅନୁଭବ । 'ନଈ ଓ ନାଉରୀ' କବିତାରେ ଲେଖିଛନ୍ତି – 'ସେଇ ଯେ ଇଲାକା ମୋର ଜ୍ୟୋସ୍ନା ଏବଂ ପୁଲକ ସହର / ବହୁଛି ସାପୁଆ ନଈ ବାଟେଘାଟେ ଧବଳ ମନ୍ଦିର / ନାଉରୀ ମେଲିଛି ନାଆ ପହଞ୍ଚିବ ସେପାରି ଦେଉଳ । x x x ନଈ ବା ଛାଡୁଛି କାହିଁ ? ନାଉରୀ କି ଦେଉଳ ଭେଟୁଛି ? / ଦେଉଳ ଅନେକ ଦୂର ସାପୁଆ ନଈର ଗଣ୍ଡେ ନାଆ ଯେ ଭାସୁଛି ?'

କବିପୁରୁଷ ସମଗ୍ର କବିପଣକୁ ଅଜାଡ଼ି ଦେଇଛନ୍ତି ତାଙ୍କ କବିତାରେ । ପୁଣି ସମର୍ପି ଦେଇଛନ୍ତି ପୁରୁଷକାରକୁ ଧରଣୀର ଧୂଳିରେ ପ୍ରେମିକାର ପ୍ରେମରେ । ସମର୍ପଣ କବିତାରେ ଉଭୟ ପ୍ରେମ ଓ ଆଧାତ୍ମ ଦିଗ ପ୍ରତିଫଳିତ । ଭଗବାନଙ୍କୁ ସମର୍ପଣ କରୁଛନ୍ତି ତ ପୁଣି ପ୍ରେମିକାର ପୟରରେ ସବୁକୁ ଅଜାଡ଼ି ଦେଉଛନ୍ତି । ଲେଖିଛନ୍ତି– 'ତୁମେ ଗୋ ଯଦି ଏବେ ମୁକୁଳା ମନ ନେଇ / ହତାଶୀ ପରାଣେ ମୋ ଅଶେଷ ଆଶା ଦେଇ / ଜୀବନେ ସମତା ଯେ ଭରିଲ / ସେତିକି ପାଇଁ ମୁହିଁ ବଞ୍ଚିବି ଚିର ଦିନ / ପାଥେୟ କିଛି ଲୋଡ଼େ ନାହିଁ ଗୋ !' ସେ ଥିଲେ ଜଗନ୍ନାଥ ବିଶ୍ୱାସୀ । ପ୍ରଭୁଙ୍କ ଚରଣରେ ପୂର୍ଣ୍ଣପ୍ରାଣରେ ସବୁକିଛି ସମର୍ପି ଦେଇଛନ୍ତି । ନିଜର ଭାବାବେଗକୁ ଅଜାଡ଼ି ଦେଇଛନ୍ତି ପ୍ରଭୁଙ୍କ ଚରଣରେ । ପୁଣି ଜଣାଯାଏ ନା ଏ କବିତାରେ ପ୍ରେମିକାଟିଏ ପ୍ରେମିକର ହୃଦୟକୁ ଜୟ କରିବାକୁ ସବୁକିଛିକୁ ସମର୍ପଣ କରି ଦେଉଛି । ତାଙ୍କ ଭାଷାରେ – 'ଗରବ କିଛି ଯଦି ଜୀବନେ କରେ କେବେ / ସଅଁପି ଦେବି ତାକୁ ତମରି ପାଦ ତଳେ / ଉଚ୍ଛେଇ ଦେବ କିବା ଭାଙ୍ଗୁଛ ଭାଙ୍ଗ ନାହିଁ / ଏକାକୀ ପାରିବି କି ଗରବ ଭାର ବହି ! ଗୋଟିଏ ଅର୍ଥରେ ଅଜ୍ଞାତ ଆଧାତ୍ମ ଅନୁଶୀଳନ ତ ଆଉ ଗୋଟିଏ ଅର୍ଥରେ ସମର୍ପଣ । ଏହି କବିତାଟି ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ କବିତା ପରି ଦ୍ୱୈତ ଅର୍ଥବୋଧକ ମନେ ହୁଏ ।

ସାମାଜିକ ଏବଂ ରାଜନୈତିକ ପରିବେଶ କବିଙ୍କୁ ପ୍ରଭାବିତ କରିଛି । ସେ ଗଭୀର ପ୍ରତିକ୍ରିୟା ପ୍ରକାଶ କରିଛନ୍ତି। 'ସହର ଛାତିରେ ଯେଉଁ ନାଲିମାଟି ଚୂନଲିପା ଘର ଅନେକ ବିପଣୀ ଏବଂ ପାନ୍ଥଶାଳା ରାଜାଙ୍କ ଦେଉଳ / ପ୍ରବେଶ ନିଷେଧ ସେଠି, ହେ ଭିକ୍ଷୁ ବାଚାଳ ।' ସାଧାରଣ ମଣିଷ ପାଇଁ ସେ ପ୍ରତିକ୍ରିୟା ପ୍ରକାଶ କରିଛନ୍ତି । ସହରର ଛାତି ଉପରେ ଠିଆହୋଇଥିବା ପାନ୍ଥଶାଳା କି ରାଜାଙ୍କ ଦେଉଳ ତାହା କେବଳ ଗୋଟିଏ ଗୋଷ୍ଠୀ ପାଇଁ ଅଭିପ୍ରେତ । ସାଧାରଣ ଗରିବ ମଣିଷ ପାଇଁ ତାହା ନିଷେଧ । ଏକଥାକୁ ସେ ସ୍ପଷ୍ଟ କରିଛନ୍ତି । ସମାଜରେ ଥିବା ଉଚ୍ଚନୀଚ, ଧନୀ ଦରିଦ୍ରର ଭେଦଭାବ ଯେ ତୀବ୍ର ତାହା ସେ ଭଲଭାବରେ ହୃଦୟଙ୍ଗମ କରିଛନ୍ତି ।

କବି କ୍ଷେତ୍ରବାସୀଙ୍କ ଆଚରଣ ଯେମିତି ଉଚ୍ଚାରଣ ବି ସେମିତି । କବି ସ୍ୱପ୍ନାବିଷ୍ଟ ହୋଇପଡ଼ିଛନ୍ତି । ସବୁଜ ଘାସ ଗାଲିଚାରେ ବସି ସ୍ୱପ୍ନ ଦେଖିଛନ୍ତି । 'କନିଅର କୁଆଁରୀ ଗୋ ! ତୁମ ଦେହେ କେତେ ଯେ ବସନ୍ତ / ଢଳିଥିବ ଅନୁଗମି ଅନେକ ଶରତ / ଇସ୍ପାତୀ ବୟସ କଣ୍ଟା କେଉଁଠି ଶୋଇଛି / କଳନା ବହୁତ ଦୂରେ, ମନେ ମୋର ଆଶା ଘନେଇଛି' (ପୃଷ୍ଠା - ୪୧) । ଏଥିରେ କବିଙ୍କର ରୋମାଣ୍ଟିକ୍ ଭାବ ପରିଦୃଷ୍ଟ ହୁଏ । ପ୍ରିୟାର ସ୍ମୃତି, ସ୍ୱପ୍ନ ଓ ମିଳନ ମାଧୁରୀରେ 'ମୃଗ ଏକ ବିନ୍ଦୁଏ ସ୍ୱପ୍ନର' କବିତା ରସସିକ୍ତ । କବିତାଙ୍କର ମନର ମାନସୀକୁ ଖୋଜିଛନ୍ତି - ଲୋଡ଼ିଛନ୍ତି । "ରାଜରାଣୀ ଚିଉଁଟରା ଶାଳଭଞ୍ଜିକାରେ / କେଦାରର ମଶାଣିରେ ଝୁମୁଝୁମୁ ହଂସକ ତାଳରେ / ତୁମ ଛାଇ ଏଇ ଆଖି ନିତି ଦେଖୁଛି / ତୁମକୁ ମୁଁ ଅନେକ ଖୋଜୁଛି ।" (ପୃଷ୍ଠା - ୪୨)

ଏହି ଭାବନାକୁ ନେଇ କବି କେତେବେଳେ ତାଙ୍କ ପ୍ରାଣପ୍ରିୟାଙ୍କୁ ଖୋଜି ଚାଲିଛନ୍ତି । ସେ ଖୋଜିବାର ଯେମିତି ଅନ୍ତ ନାହିଁ । ସାଂପ୍ରତିକ କାଳରେ ନାରୀ-ପୁରୁଷର ପ୍ରେମ ସଂପର୍କ ଦୈହିକ ସଂପର୍କ ଆଡ଼କୁ ସଂପୂର୍ଣ୍ଣ ମୁହାଇଛି । ସେଠି ନାହିଁ ଆତ୍ମାର ଉଚ୍ଚାଟନ ଓ ପ୍ରାଣର ସମର୍ପଣ ଭାବ । ପ୍ରେମ ପାଇଁ ପ୍ରେମ ହେଉ ନାହିଁ । ପ୍ରେମ ପଣ୍ୟ ହୋଇଯାଉଛି । ହେଲେ କବି କ୍ଷେତ୍ରବାସୀ ସମର୍ପଣର ଭାବକୁ ବିଶ୍ୱାସ କରିଛନ୍ତି । ସେ ସବୁକିଛିକୁ ପୂର୍ଣ୍ଣପ୍ରାଣରେ ସମର୍ପି ଦେବାକୁ ଚାହିଁଛନ୍ତି । "ଲୋଡ଼େନା ସୁଖ' କିଛି ସରସ କଳପନା / ଦୁନିଆ ରାଜପଥେ ବିପୁଳ ଅରଚନା / ଉଚ୍ଛଳା ଅନୁରାଗ ପାଇଁ ଗୋ ! ସତତ ଅଭିଳାଷୀ ମୁହିଁ ଗୋ !" (ପୃଷ୍ଠା - ୫୨, ଉଚ୍ଚାରଣ) କବିଙ୍କର ରୋମାଣ୍ଟିକ ଅନୁଚିନ୍ତା ବାସ୍ତବବାଦୀ କାବ୍ୟଧାରାରେ ସାମିଲ ହୋଇଯାଇଛି । ଅତଏବ କବି ମାଟି ଓ ମଣିଷର ଆହ୍ୱାନକୁ ଶୁଣି ପାରିଛନ୍ତି । ମଣିଷର କାମନାକୁ ପ୍ରକାଶ କରିଛନ୍ତି ।

କବିଙ୍କ ' ଆରଣ୍ୟକ' କବିତାରେ ମଣିଷର ଆଦିମ ପ୍ରବୃତ୍ତି କଥାକୁ ଅତି ନିଖୁଣ ଭାବେ ବ୍ୟକ୍ତ କରିଛନ୍ତି । ମଣିଷ ଯେ ଆରଣ୍ୟକ ପ୍ରବୃତ୍ତି ସହ ଏକାନ୍ତ ଜଡ଼ିତ, ତାହା ସେ ସ୍ପଷ୍ଟ କରିଛନ୍ତି । 'ନିଘଞ୍ଚ ଅରଣ୍ୟ ଗଲା / ଉଡ଼ିଗଲେ ବନହଂସୀ ଜଳ, ବୃନ୍ତରୁ ପଡ଼ିଲା ଝରି ନିର୍ବିଚଳ ମାଳତି ବକୁଳ । / ବଳ୍କଳ ତେଜିଲା ବୃକ୍ଷ /ପ୍ରସ୍ତ ପ୍ରସ୍ତ ପତ୍ରର ପଲକେ ... / ନିହିତ ଯେ ନାଗ ଶିଶୁ, ପଲକେ ଉଠିଲା ଫୁଲି / ଗର୍ଭବତୀ ନଈ ପରି ଶେଷ ଶ୍ରାବଣର ।/ ଭାଙ୍ଗିଲା ଲଜ୍ଜାର ନୀଦ୍ / ଭାସିଗଲେ ଲାଜକୁଳି ଲତା / ଅରଣ୍ୟରେ ଭୂମିକମ୍ପ/ ଖେଳିଗଲା ସ୍ପର୍ଶକାତରତା । (ଆରଣ୍ୟକ - ଉଚ୍ଚାରଣ - ପୃଷ୍ଠା ୧/୨)

ମନରେ ତେଜି ଉଠୁଥିବା କାମଭାବ ଓ ତା'ର ପରବର୍ତ୍ତୀ ପରିଣତିକୁ ମୂର୍ତ୍ତିମନ୍ତ କରିବାକୁ ଯାଇ ସେ କହିଛନ୍ତି - 'ଏ ଦେହର ଶିହରଣ / ଇଚ୍ଛାର ତୂଣୀର କେତେ / ଗୋଟା କେତେ କାମନା  କାର୍ମୁକ / ମୂର୍ତ୍ତିମାନ ... ହେ ପୁରୁଷ / କ୍ଷୁବ୍ଧ ଆରଣ୍ୟକ ।' ମଣିଷ ଭିତରେ ଉଦ୍‌ବେଳନକୁ ତୋଳି ଧରିବାକୁ ଯାଇ ସେ ଯାହା କହିଛନ୍ତି ତାହା ସୌନ୍ଦର୍ଯ୍ୟାନୁଭୂତି ନୁହେଁ ତ ଆଉ କ'ଣ ? ଏହା ତାଙ୍କ ଅନୁଭବର ଅନୁସରଣନ । ଏହି ସୌନ୍ଦର୍ଯ୍ୟବୋଧ ମଣିଷର ସମ୍ବେଦନଶୀଳତା ସହ ଜଡ଼ିତ । ମଣିଷର ଦୃଷ୍ଟି, ଦର୍ଶନ, ଶ୍ରଦ୍ଧା ଓ ସଂସ୍କାର ସହିତ କଳାବୋଧର ସମ୍ବନ୍ଧ ରହିଛି । କେହି କାହାରିଠାରୁ ଊଣା ନୁହଁନ୍ତି । ପରସ୍ପରର ପରିପୂରକ ଭାବେ ପ୍ରତିବିମ୍ବିତ  ହୁଅନ୍ତି ।

ନାନ୍ଦନିକତା ହେଉଛି ମଣିଷ ଜୀବନର ଏକ ଉତ୍କୃଷ୍ଟ ସାମର୍ଥ୍ୟ । ଏହା ହେଉଛି ମଣିଷର ବୈଶିଷ୍ଟ୍ୟ । କବି ମଣିଷଟି ଏଥିରୁ ଆଦୌ ବାଦ ନୁହେଁ । ଭାବ ପୁଲକରେ ପୁଲକିତ ହେଇପଡ଼ିଥିବା କବି ନିରୁତା ପ୍ରେମର ପ୍ରାର୍ଥନା ଗାଇ ଉଠନ୍ତି । 'ମୁଁ ଏକ ଜଳନ୍ତା ଦୀପ / ତୁମେ ତା'ର ତରଳ ଇନ୍ଧନ/ ଦେଖ ମୁଁ ଜଳୁଛି ଏଠି ଏଡ଼ି ସବୁ ବ୍ୟାଥାର ତୋଫାନ ।' x x x  ପ୍ରେମ ଯେଣୁ ଅନୃତେ ଶାଶ୍ୱତ / ଆଉ ସବୁ ମୃଣ୍ମୟ କ୍ଷଣିକା ।' (ଉଚ୍ଚାରଣ - ଶାଶ୍ୱତିକା - ୪୨ - ୪୮ପୃଷ୍ଠା)

'ଅଭାଗୀର ଆତ୍ମଲିପି' କବିତାଟି କ୍ଷେତ୍ରବାସୀଙ୍କ କବି ପଣିଆକୁ ବାଢ଼ିଦିଏ ଆମ  ଆଗରେ ଓ ଯୋଡ଼ିଦିଏ ନୂତନ ଦିଗନ୍ତର ନୂଆ ଫର୍ଦ୍ଦଟିଏ । କବିତାର ଅଧ୍ୟାତ୍ମଭାବ ପ୍ରତିଫଳିତ ହୋଇଛି । ଜଣେ ନିରୀହ ବେସାହାରା ନାରୀର ନରକ ଯାତନାକୁ ସେ ମର୍ମେ ମର୍ମେ ଅନୁଭବ କରିଛନ୍ତି । ଅନୁଭବ କରିଛନ୍ତି ତାର କଷ୍ଟକୁ, ଦୈନ୍ୟକୁ ଓ ଯାତନାକୁ । ଭାଗ୍ୟହୀନ ନାରୀର କଷଣ ଯେ କେତେ ଉତ୍ତପ୍ତ ତାହା ସେ କବିତାରେ କହିଛନ୍ତି । ପ୍ରାର୍ଥନା କରିଛନ୍ତି ପରମ କାରୁଣିକ ଭଗବାନଙ୍କ ନିକଟରେ । ନାରୀ ହେଉଛି

ସୃଷ୍ଟି ସର୍ଜନାର ମୂଳ ଉସ । ସୃଷ୍ଟି ପ୍ରକ୍ରିୟାର ମୌଳିକ ଉପାଦାନ ରୂପେ ନାରୀର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଆଧାତ୍ମିକ ଦୃଷ୍ଟିରେ ନାରୀ ହେଉଛି ପ୍ରକୃତିର ରୂପାନ୍ତର । ନାରୀ ହେଉଛି ସକଳ ଶକ୍ତିର ଆଧାର । ତେବେ ସେ ଯେତେବେଳେ ନିଆଶ୍ରୀ ହୋଇଯାଏ, ସେତେବେଳେ ବୃନ୍ତଚ୍ୟୁତ ଫୁଲଟିଏ ପରି ଝରିପଡ଼େ ଅକାଳରେ । ପ୍ରଭୁଙ୍କୁ ସ୍ମରଣା କରି ଦିନ କାଟିବାକୁ ଚାହେଁ । 'ଅଭାଗୀର ଆତ୍ମଲିପି' ସେହିପରି ଏକ କବିତା ଯହିଁରେ ରହିଛି ଜଣେ ନାରୀ କଥା ଓ ବ୍ୟଥା । 'ଉଚ୍ଛନ୍ନ ଅତୀତେ ରିକ୍ତ ମୋ ଚେତନା ନିଆଶ୍ରୀ ଲଳନା ବ୍ୟଥିତ କାତର ପ୍ରଭୁ ! ଘୂରି ଘୂରି ନିର୍ଲକ୍ଷ୍ୟ ଭୂଇଁରେ / ଖୋଜୁଛି ଆଶ୍ରୟଟିକେ ବଡ଼ଦାଣ୍ଡ ପସରା ଛାତିରେ / ମୁଣ୍ଡପାତି ଘଡ଼ିଏ ପହରେ, ମୋ ମନର ନିଷ୍ପାପ ପକ୍ଷୀର / ଉଚ୍ଚେଇ ଦିଅନ୍ତି ପ୍ରଭୁ ! ନନ୍ଦିଘୋଷ ଚକ୍ରର ଚରଣେ ।"

କ୍ଷେତ୍ରବାସୀଙ୍କ କେତୋଟି କବିତାରେ ବୌଦ୍ଧିକ ଅନୁଚିନ୍ତା ପ୍ରତିଫଳିତ । ତାଙ୍କର' 'ଉଚ୍ଚାରଣ' କବିତାଟି ସେହି ପର୍ଯ୍ୟାୟର ମନେ ହୁଏ । ସହଜରେ ବୋଧଗମ୍ୟ ହେଉ ନଥିଲେ ମଧ ବୌଦ୍ଧିକ ତତ୍ତ୍ୱର ତାତ୍ତ୍ୱିକ ବିଶ୍ଳେଷଣ ଏଥିରେ ବାରି ହୋଇପଡ଼େ । ବୌଦ୍ଧିକତାର ଆଲୋକରେ ସେ ଆଲୋକିତ କରିବାକୁ ଇଚ୍ଛା କରିଛନ୍ତି । 'ମାଟି ଦେଇ ମୁଁ ମାଟି ଖୋଜୁଛି / ମାଟିର ପ୍ରଲେପ ବୋଲି ସ୍ୱର୍ଗେ ପହଞ୍ଚିଛି ।' କବିଙ୍କର କି ଭାବ ? ଚେତନା ସ୍ତରରେ ଦେଉଥିବା ଉଦ୍‌ବେଳନକୁ ସେ ଏକଜୁଟ କରି ବୁଝିଛନ୍ତି । ଏ ମଣିଷ ନିମିତ୍ତମାତ୍ର । ଏକ ଅଦୃଶ୍ୟ ଶକ୍ତିର ଇଶାରାରେ ଗତି କରୁଛି । ମାଟିରୁ ଆସି ମାଟିରେ ମିଶୁଛି । 'ଚେତନାରୁ ଜନ୍ମ ମୋର ସଞ୍ଚରିତ ଚେତନା ସମୁଦ୍ରେ / ନବଜାତ ଆତ୍ମା ଘେନେ ନିଷ୍କଳଙ୍କ ଆଲୋକ ବନ୍ଧନ / ଯଦିଚ ମୋ ଲକ୍ଷ୍ୟ ସ୍ଥିର । ବନ୍ଧମାନ କାଳେ ପ୍ରଭାବିତ / ମଣିଷ ମୁଁ ରକ୍ତଭିକ୍ଷୁ ସୃଷ୍ଟି ବିନାଶକ । ସତ୍ୟ ମୋର ଉତ୍ତରତା ! ଏ ଜୀବନ ମିଥ୍ୟା - ଅନୁଗତ । ସବୁରୁ ଆକର୍ଷଣ ସମ୍ମୋହନକୁ ଏଡ଼ି ଆଗେଇ ଯିବାର ପ୍ରୟାସ ବାସ୍ତବରେ ପ୍ରଶଂସନୀୟ । ଅଧାପକ ରାଜ କିଶୋର ମିଶ୍ର 'ଉଚ୍ଚାରଣ' ଗ୍ରନ୍ଥର ପୃଷ୍ଠବନ୍ଧରେ କହିଛନ୍ତି - 'ତାଙ୍କର ଉଚ୍ଚାରଣ' ଓ 'ଆରଣ୍ୟକ' ଦୁଇଟି କବିତାରେ ସ୍ରଷ୍ଟାଙ୍କ ସଂବୋଧନ କରିବା ସଙ୍ଗେ ସଙ୍ଗେ ଏଇ ମାୟା ମୋହବନ୍ଧ ରକ୍ତର ପିଣ୍ଡରେ ଛନ୍ଦାୟିତ ଉଚ୍ଚାରଣ ରକ୍ତାରୁଣ ନଭରେ ଓ ଜୀବନର ସ୍ୱଚ୍ଛ ସ୍ଫଟିକ ଫଳକରେ 'ସଂଚାରିଣୀ ହୋମଶିଖା' ପରି ତରଙ୍ଗାୟିତ ଲାସ୍ୟ ଭିତରୁ 'ଚରୈବେତି' ର ଉତ୍‌କ୍ରମଣ ସ୍ପଷ୍ଟ ଭାବରେ ଦେଖିବାକୁ ମିଳେ ଏବଂ ସବୁରି ଆକର୍ଷଣ ଓ ସମ୍ମୋହନର ଶୃଙ୍ଖଳ ଭିତରେ ନିଜକୁ ଆବଦ୍ଧ କରି ସ୍ୱର୍ଗଲୋକ ଗମନ ପ୍ରୟାସ କରିବାକୁ କୁଣ୍ଠାବୋଧ କରି ନାହାନ୍ତି ।"

ପାହାଡ଼, ଅରଣ୍ୟ ଡେଇଁ ଝରଣା ବହିଚାଲେ । ତା'ର ଗତିପଥ ଆଗକୁ ଆଗକୁ । ଅଟକି ଯାଏନା କେବେ । ସେହିପରି ମଣିଷ ଜୀବନ ହେଉଛି ଏକ ଝରଣା । ସେ ସବୁ ବାଧା-ପ୍ରତିବନ୍ଧକକୁ କାଟି ଆଗେଇ ଆଗେଇ ଚାଲିଥାଏ । ଯେତେ ଅଙ୍କାବଙ୍କା ପଥ ହେଉ ନା କାହିଁକି ସେ ମାଡ଼ିଚାଲେ । କ୍ଷେତ୍ରବାସୀଙ୍କ 'ଝରଣା' କବିତାଟି 'ଜୀବନ'ର କଥା କହିଛି । କହିଛି ଯାତନାର କଥା । କବି ମଣିଷଟି ଦେଖିଛି ଝରଣା ବହୁ ବହୁ ଯେମିତି ତା' ଦେହରେ ବାଲିଚର ମାଡ଼ି ପୋତି ହୋଇଯାଉଛି, ଠିକ୍ ସେମିତି ମଣିଷର ଗତିପଥରେ ଅଭାବ-ଅନଟନ, ଅସଜଡ଼ା ସପନ ତାକୁ କାବୁ କରି ନେଉଛି । କବିଙ୍କ ଭାଷାରେ - 'କାଟିକାଟି ଅଙ୍କାବଙ୍କା କଙ୍କରିଳ ଯାତନା ପଥକୁ । / ବରଫର ଚନ୍ଦ୍ରୋଦୟ ଦେହେ ଦେହେ ସପନର ସୁନା ଖାଡ଼ି ଛୁଆଁଇ ଯାଉଛି / ତୁହା ତୁହା ଜହ୍ନ ଢେଉ କେରି କେରି କଇଁପାଖୁଡ଼ାରେ ଝରି ବା ପଡୁଛି ।' (ପୃଷ୍ଠା -୨୦) । ଅଧ୍ୟାପକ ରାଜ କିଶୋର ମିଶ୍ର ଲେଖିଛନ୍ତି - "ସ୍ପନ୍ଦନହୀନ ଝରଣା ସେଠି ବାକ୍‌ହୀନା । ସେ ହିଁ ଜୀବନର ସ୍ରୋତ,ଯେ କି ତୃଷାର ପଥ କାଟି ଅସୁମାରୀ କ୍ଷତର ଉଦ୍‌ବେଳନ ନିଜ ଦେହରେ ପ୍ରତିବିମ୍ବିତ କରାଇ ଆଗେଇ ଚାଲିଛି - ବୋଧହୁଏ ରବୀନ୍ଦ୍ରନାଥଙ୍କର ମରୁପଥରେ ବଞ୍ଚିବାର ସ୍ୱପ୍ନ ରଚି ଆଗେଇବାର ତଟିନୀର ଠିକ୍ ସପତ୍ନୀ ଭଳି ।" (ପୃଷ୍ଠା - ୭୧-୭୨)

କବିଙ୍କ ଦେହ ଓ ଦେହୀ କବିତା ବହନର ବାର୍ତ୍ତା ବହନ କରିଛି । ଦେହରେ ଦହନ ଅଛି । ସେହି ଦହନକୁ ଦେହ ହିଁ କେବଳ ଅନୁଭବେ । ଦୈହିକ ନିବେଦନ ଓ ଶୃଙ୍ଗାର ଚେତନା ଦେଖିବାକୁ ମିଳେ । କବି ଲେଖିଛନ୍ତି - 'ନିଝୁମ ବରଷା ରାତି ରୋମ ଥରା ହେମାଳ ପବନ / ଚଟି ଘରେ କେହି ନାହିଁ ନିଛାଟିଆ ନିହାତି ନିର୍ଜନ / ତୁମେ କି ଆସନ୍ତ ଏଥି ଓଦା ଆଖି ଭିଜାତନୁ ନେଇ / ପଚାରନ୍ତି କେତେ ପ୍ରଶ୍ନ ମୋତେ ଟିକେ ଆଶ୍ରା ମିଳିବ କି ?' ସେହିପରି 'ବର୍ଷାର ଶୃଙ୍ଗାର' କବିତାରେ କବି କହିଛନ୍ତି - 'ତୁମେଇ ଖୋଜନ୍ତ ଏଠି ଦେହ ଲାଗି ପରସ୍ତେ ଉତାପ / ଉତାପର ଆକର୍ଷଣେ ପତଙ୍ଗେ ବା ଯେମିତି ଝାସନ୍ତି / ନିଜକୁ ତରୁଣ ମଣି ତୁମ ରଙ୍ଗେ ଅଙ୍ଗ ମୁଁ ଢାଳନ୍ତି ।"

କବିର ମନ ଓ ମାନ ତାର ବିବେକାନୁମୋଦିତ କାର୍ଯ୍ୟ ଉପରେ ନିର୍ଭର କରେ । କବି ଉଚିତ ମାର୍ଗରେ ଉଚିତ୍ କଥାକୁ ବୃହତ୍ତର ପାଠକ ସାମ୍ନାରେ ବାଢ଼ି ଦେଇ ପାଏ ଆତ୍ମତୃପ୍ତି । ସେଥିରେ ଥାଏ ତା'ର ଅସୀମ ଆନନ୍ଦ । ଯେଉଁ କବିତା କବିଙ୍କୁ ଉଦାମ ଉଚ୍ଚାରଣର ପଥ ଦେଖାଉଥିଲା, ତାହା ଅଧବାଟରେ ଅଟକି ଗଲା । କବି ଗଦ୍ୟକୁ ଆପେଣେଇ ନେଲେ । ହେଲେ ପ୍ରାରମ୍ଭିକ ପର୍ଯ୍ୟାୟର ଶଙ୍କର ଏହି  କବତା ତାଙ୍କ କବି ପଣିଆକୁ

ବାମନ କରିଥୋଇ ଦେଇଯାଇଛି । ପିପାସା ଅନନ୍ତ ଅସୀମ ହେଲେ ତାହା ମେଣ୍ଟି ପାରି ନାହିଁ । 'ବାମନର ହଳଦୀ ବସନ୍ତ' କବିତାରେ କ୍ଷେତ୍ରବାସୀ ଲେଖିଛନ୍ତି – 'ବାମନ ଲୋଡୁଛି ଚନ୍ଦ୍ର ! ତୃଷାକଣ୍ଠ ଚାତକ ପରାଏ / ବଳୀମାନେ ବୁଝନ୍ତି ଓ ନିଜକୁ ହଜାନ୍ତି / ଚନ୍ଦ୍ରମାକୁ ଶୋଷି ଶୋଷି ବିବରେ ପଶନ୍ତି । / ଆକାଶେ ଉଡ଼ନ୍ତି ଯେତେ ବାମନର ହଳଦୀ ବସନ୍ତ / ହାତ ବା ପହଞ୍ଚେ କାହିଁ ? ବାମନର ପିପାସା ଅନନ୍ତ ।' କବି ବାମନର ମନ ନେଇ ଅନେକ ଆଶା ପୋଷଣ କରିଛନ୍ତି । ତାଙ୍କର ମାନସିକ ପ୍ରତ୍ୟୟ ପ୍ରତିଫଳିତ ହୋଇଛି । ଏହି ମାନସିକ ପ୍ରତ୍ୟୟ ହେଉଛି ମଣିଷର ଶ୍ରେଷ୍ଠ ପ୍ରତ୍ୟୟ, ଏହାକୁ ସ୍ୱୀକାର କରିବାକୁ ହେବ । ଡଃ କ୍ଷେତ୍ରବାସୀ ନାୟକଙ୍କ ମତରେ – 'ମାନସିକ ପ୍ରତ୍ୟୟ ହେଉଛି ମଣିଷର ଶ୍ରେଷ୍ଠ ପ୍ରତ୍ୟୟ । ପ୍ରତ୍ୟୟର ଦୃଢ଼ତା ଓ ମୂଲ୍ୟବଳରେ ମଣିଷ ପଣିଆକୁ ମୂଲ୍ୟବାନ ମଣେ । ମନନଶୀଳ ମଣିଷର ଉଚ୍ଚାରଣକୁ ପୁଞ୍ଜିକରି ଜାତି ଆପଣାର ମହିମା ପ୍ରଚାର କରିଥାଏ । ସାହିତ୍ୟର ଇତିହାସ ଭିତରୁ ଏ ସବୁକୁ ଖୋଜାଲୋଡ଼ା କରି, ଆଗାମୀ କାଳର ମଣିଷ ଆପଣାକୁ ପ୍ରସ୍ତୁତ କରେ । x x x ' (ସଂପାଦକ କ୍ଷେତ୍ରବାସୀ – ସଂପାଦନା.- ସୁଧୀର ଚନ୍ଦ୍ର ବେହୁରା – ପୃଷ୍ଠା – ୬୬)

କବିଙ୍କ 'କଲ୍ୟାଣୀୟାସୁ' କବିତାଟି ପିତୃପଣର ନିଛକ ପ୍ରତିଛବି ଆଙ୍କିଛି । ଅସରା ଅସରା ଆଶୀର୍ବାଦ ଢାଳି ଦେଇଛନ୍ତି କବି ନିଜ ଶିଶୁ କନ୍ୟା ଉପରେ । ନାରୀ ହେଉଛି ନାରାୟଣୀ । ନାରୀ ବିନା ଏ ଧରଣୀ ଅସାର । ସମାଜରେ ନାରୀର ଏକ ସ୍ୱତନ୍ତ୍ର ଓ ସମ୍ମାନନୀୟ ସ୍ଥାନ ରହିଛି । ଶିକ୍ଷା ସହିତ କଳା ଓ ସାହିତ୍ୟ ସାଧନା କ୍ଷେତ୍ରରେ ମଧ୍ୟ ନାରୀର ଅବଦାନ କମ୍ ନୁହେଁ । ବୈଦିକ ଯୁଗରେ ଲୋପାମୁଦ୍ରା, ବିଶ୍ୱବରା, ଅଦିତି, ଜୁହୁ, ଘୋଷା, ବଧ୍ରମତୀ ପ୍ରମୁଖ ମହୀୟସୀ ମହିଳା ବେଦର ବିଭିନ୍ନ ସୂକ୍ତ ରଚନା କରି ନିଜର କାବ୍ୟ କୁଶଳତା ପ୍ରକାଶ କରିଥିଲେ । କବି କ୍ଷେତ୍ରବାସୀ 'ଲୋପାମୁଦ୍ରା' କବିତାଟିରେ ବୈଦିକ ଯୁଗର ବିଦର୍ଭ ତନୟା 'ଲୋପାମୁଦ୍ରା'ଙ୍କ ସହ ତୁଳନା କରିଛନ୍ତି । ଲେଖିଛନ୍ତି – "ଯାହା ଦିନେ ବିଦର୍ଭ ତନୟା ଲୋପା ହାତପାତି / ଲୋଡ଼ିଥିଲେ ଅଗସ୍ତି ଆଶ୍ରମେ, ପରିଣାମେ ବିଫଳତା କିନ୍ତୁ / ବରିନେଲ ବରମାଳା ପରି / ଉପଚାରୀ ସେବାବ୍ରତେ – / ନିଜକୁ ମିଶାଇ ବିତିଲା ଜୀବନ – ପ୍ରସ୍ଫୁଟିତ ଯୌବନର କମଳ କଳିକା / ଏକମାତ୍ର ସନ୍ତାନ ଜନନେ ହେଲା ପରିପକ୍ୱ / ତୁମ ଦେହେ ନଇଁଗଲା ଅକାଳ ବାର୍ଦ୍ଧକ୍ୟ । (ଲେପାମୁଦ୍ରା – ୪୫) । କବି କିନ୍ତୁ ଏହାଠାରୁ ଆଉ ଟିକିଏ ଉର୍ଦ୍ଧ୍ୱକୁ ଯାଇ ଖୋଜିଛନ୍ତି ଅନେକ କିଛି । ସମାଜରେ ନାରୀମାନଙ୍କ ପ୍ରତି ହେଉଥିବା ଅନ୍ୟାୟ ଅତ୍ୟାଚାରକୁ ସେ

ସହିପାର ନାହାନ୍ତି । ନାରୀର ଦେହ ଲୋଭରେ ନାରୀ ଜାଳିପୋଡ଼ି ପାଉଁଶ କରି ଦେଉଥିବା ଏ ଜାତିକୁ ସେ ତୀର୍ଯ୍ୟକ ଦୃଷ୍ଟିକ୍ଷେପ କରିଛନ୍ତି । କହିଛନ୍ତି – 'ନାରୀତ୍ୱକୁ ନିର୍ଲଜେ ବିଦାରି ଏ ଜାତିଟା / ଆଶାବାନ୍ଧୁଥିବ, ପ୍ରଗତିର ସ୍ୱପ୍ନେ ହୋଇଘାରି । / ସେତେବେଳେ ତୁମେ ଲୋପାମୁଦ୍ରା ! / ବିତରିବ କି ଆଦର୍ଶ ନୀତିସିଦ୍ଧ ନିଷ୍ଠାର ସଂକେତ / ପ୍ରତିମନେ ଅଗଣିତ ଜନତା ଜୀବନେ ! (ଲୋପାମୁଦ୍ରା – ପୃଷ୍ଠା – ୪୫– ୪୬) । ବସ୍ତୁତଃ 'ଲୋପାମୁଦ୍ରା' କବିତାଟି ନାରୀଜୀବନର ସ୍ୱରୂପ ଓ ସ୍ୱାକ୍ଷର ବହନ କରିଛି ।

କ୍ଷେତ୍ରବାସୀଙ୍କ ଜୀବନ ବହୁମୁଖୀ । ସେ କେବଳ ଜଣେ ସାହିତ୍ୟ ସ୍ରଷ୍ଟା ନୁହନ୍ତି, ନିଜ ଚାରିପାଖରେ ସୃଷ୍ଟି କରିଛନ୍ତି ସାଧନାର ପଥ । କବି ହୋଇ ଜୀବନ ଆରମ୍ଭ କରିଥିଲେ । ହେଲେ ଅଧାବାଟରୁ ଅଟକି ଗଲା ସେଇ କବିତା ଲେଖା । ଗବେଷଣା ଓ ସାହିତ୍ୟାଲୋଚନାରେ ଜୀବନ ବିତିଲା । ଗଢ଼ାହେଲା 'ଓଡ଼ିଆ ଗବେଷଣା ପରିଷଦ' । ତାଙ୍କ ଭିତରେ ଥିଲା କବିର ମନ, ସାହିତ୍ୟିକର ଭାବନା ଓ ଗବେଷକର ଆତ୍ମା । ସେ ଥିଲେ ଖୁବ୍ ଆତ୍ମ ବିଶ୍ୱାସୀ । 'ଲୋପାମୁଦ୍ରା' କବିତାରେ ସେଇ ଆତ୍ମବିଶ୍ୱାସ ବାରି ହୋଇପଡ଼େ । ଗଭୀର ମନନଶୀଳ ଓ ଆଶାବାଦୀ କବିଙ୍କ ସୂକ୍ଷ୍ମଦୃଷ୍ଟି ବେଶ୍ ହୃଦୟଛୁଆଁ ଓ ମନଲୋଭା ଆକର୍ଷଣୀୟ ଶବ୍ଦ ଓ ମଠା ଭାବରେ ରସସିକ୍ତ । ସେ ସବୁକୁ ହଜମ କରି ପ୍ରଗତିର ମହାମନ୍ତ୍ରକୁ ଉଚ୍ଚାରଣ କରିପାରନ୍ତି । 'ଦୁର୍ଭିକ୍ଷ ଓ ମରୁଡ଼ିର ଅଗ୍ନିକଣା ଢକଢକ ପିଇ / ଏ ଜାତିର ପୁରୁଷତ୍ୱ ନିମନ୍ତେଣେ ଆଶ୍ରା ଲୋଡୁଥିବ / ମାତ୍ର କେଇ ଟଙ୍କାର ଆଶାରେ, ସେଇଠାରେ, ନାରୀତ୍ୱକୁ ନିର୍ଲଜେ ବିଦାରି ଏ ଜାତିଟା / ଆଶା ବାନ୍ଧୁଥିବ, ପ୍ରଗତିର ସ୍ୱପ୍ନେ ହୋଇଘାରି । (ଲୋପାମୁଦ୍ରା – ପୃଷ୍ଠ– ୪୫)

'ଉଚ୍ଚାରଣ' ଗ୍ରନ୍ଥରେ ' ଆରଣ୍ୟକ' ଠାରୁ 'ସ୍ମୃତି' ପର୍ଯ୍ୟନ୍ତ କବିଙ୍କର ପରିକଳ୍ପନାର ପରିଧି ଲମ୍ବିଯାଇଛି । କବି ଅନୁଭବ କରିଛନ୍ତି ସୌନ୍ଦର୍ଯ୍ୟ ବୋଧକୁ । ନାନ୍ଦନିକ ଦୃଷ୍ଟିଭଙ୍ଗୀ ଘେନି ତାଙ୍କର କବିତା ହେଉଛି କମନୀୟ ଓ ଲତାପରି ନମନୀୟ । ତା ଭିତରେ କଳାଶକ୍ତି ବା କବି ପଣିଆ ଅମୂର୍ତ୍ତ । କବିପଣ ନଥିଲେ କବିତା ସୁପ୍ରତ୍ୟକ୍ଷ ହୁଏ ନାହିଁ । କ୍ଷେତ୍ରବାସୀଙ୍କ କବିତାର ପରିଣାମ ସଂଖ୍ୟାତ୍ମକ ଦୃଷ୍ଟିରୁ ଊଣା ହୋଇଥିଲେ ମଧ୍ୟ ତାଙ୍କ କବିତାର କ୍ଷେତ୍ର ଊଣା ନୁହେଁ । ଏହା ଦିଗଦିଗାନ୍ତ ପ୍ରସାରୀ ।

କଳାଶକ୍ତି କବିକୁ ସମ୍ମୋହିତ କରେ । ଫୁଲର ମହକପରି ମହକିଯାଏ ତା'ର କବିପଣ । ଉତୁରି ଆସେ ରାଶି ରାଶି କବିତା । ସବୁ ଆବେଗର ଫେଣାଫେଣି ଫେନୀଳ ସ୍ୱପ୍ନ ଏକାଠି ହୋଇଯାଆନ୍ତି । କେଉଁଠି ପ୍ରେମିକାର ପଣତ ତଳେ ତ କେଉଁଠି ମିଳନରତ

କ୍ରୌଞ୍ଚ ପକ୍ଷୀର ଚିତ୍କାରରେ । ସେଇଥି ପାଇଁ ତ ମାଟିର ମହାକବି ବାଲ୍ମୀକି ବ୍ୟାଧର ଶରାଘାତରେ ରତିକ୍ରୀଡ଼ାରେ ନିମଗ୍ନ କ୍ରୌଞ୍ଚପକ୍ଷୀର ଆର୍ତ୍ତଚିତ୍କାର ଶୁଣି ବିଗଳିତ ହୋଇ ପଡ଼ିଥିଲେ । ତାଙ୍କ କଣ୍ଠରୁ ଝରିପଡ଼ିଥିଲା ମା ନିଷାଦ..' । ଏହା ପୁଣି ମହାକାବ୍ୟର ରୂପ ନେଇଥିଲା । ତାହା ଆଜିବି ବିଶ୍ୱଜନମାନସରେ ଗଭୀର ରେଖାପାତ କରିଚାଲିଛି । କବିତ୍ୱକୁ ଘେନି କବିତା । କବି ପଣିଆ ନ ଥିଲେ କବିତା ଆସେ ନାହିଁ । କବିତାରେ କବିତ୍ୱ ନ ଥିଲେ ତାହା ମଧୁର ଲାଗେ ନାହିଁ । କବିତାରେ କବିତ୍ୱ ଯେ ନିହାତି ଲୋଡ଼ା ତାହା କେବଳ କ୍ଷେତ୍ରବାସୀଙ୍କ ପରି ଜଣେ ଦରଦୀ କବି ହୃଦୟଙ୍ଗମ କରିଛନ୍ତି । କ୍ଷେତ୍ରବାସୀ ନିଜେ ତାଙ୍କ 'କାବ୍ୟ ପୁରୁଷର କଥା' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି ଯେ - 'କଳାଶକ୍ତି ବା କବିତ୍ୱ -ଶକ୍ତି ଅମୂର୍ତ୍ତ । ଏହା ସୁପ୍ରତ୍ୟକ୍ଷ ହେବା ପାଇଁ ବସ୍ତୁସତ୍ତା ଅପେକ୍ଷା ଭାବ ସତ୍ତାର ଦାୟ ବେଶୀ । କାରଣ ବର୍ଣ୍ଣମୟ ରୂପର ଜ୍ୟୋତି ଲିଭିଯାଇପାରେ, କୁହୁଡ଼ି ତାକୁ ଗ୍ରାସ କରିପାରେ, ଅନ୍ଧାର ତାକୁ ଆବୃତ୍ତ କରିପାରେ, ପ୍ଲାବନ ତାକୁ ଲୁଚେଇ ଦେଇପାରେ, ମାତ୍ର ଭାବମୟ ସତ୍ତାର ଜ୍ୟୋତି ତ ଲିଭିବାର ନୁହେଁ କି ହଜିବାର ନୁହେଁ । ଯେଉଁଠି ଏହାର ସ୍ଫୂର୍ତ୍ତି ସେଇଠି ତା'ର ମୂର୍ତ୍ତିମୟ ପ୍ରକାଶ । ସ୍ଫୂର୍ତ୍ତି କି ଘେନି ମୂର୍ତ୍ତି, କବିତ୍ୱକୁ ଘେନି କବିତା । କବିତାରେ କବିତ୍ୱ ନଥିଲେ, ତାହା ପାଷାଣୀ- ଅହଲ୍ୟା, ଆକାର ଅଛି ଆତ୍ମା ନାହିଁ । (କାବ୍ୟ ପୁରୁଷର କଥା - ଅଧ୍ୟାପକ ଡଃ କ୍ଷେତ୍ରବାସୀ ନାୟକ- ପୃଷ୍ଠା -୩)

କବି କ୍ଷେତ୍ରବାସୀ ଜଣେ ଦରଦୀ କବି । ତାଙ୍କର ହୃଦୟ ଅଛି । ଅଛି ଗୋଟିଏ ମନ । ତାଙ୍କ କବିତାର ଭାଷା ସରଳ ଓ ସାରଲୀଳ । କେଉଁଠି ରୂପ କଳ୍ପର ଆଶ୍ରା ନେଇଛନ୍ତି ତ କେଉଁଠି ନିଛକ ଗାଉଁଲି ଶବ୍ଦ ବ୍ୟବହାର କରି କବିତାକୁ କରିଛନ୍ତି ପ୍ରାଣବନ୍ତ । ଏଣୁ ଯଥାର୍ଥରେ କହିବାକୁ ଗଲେ କବି କ୍ଷେତ୍ରବାସୀଙ୍କ କବିତାରେ ସରଳ ଭାଷା, ହୃଦୟସ୍ପର୍ଶୀ ଭାବ, ଆବେଗୋଚ୍ଛଳ ପ୍ରକାଶ ଶୈଳୀ ପ୍ରାତ୍ୟହିକ ଜୀବନରେ ନିଛକ ପ୍ରତିଛବିର ପରିପ୍ରକାଶ ଘଟିଛି । କ୍ଷେତ୍ରବାସୀଙ୍କ କବିତାର ନିରୁତା ରୂପଚିତ୍ର ତାଙ୍କ କବି ପଣିଆକୁ ବୃହତ୍ତର ପାଠକ ଗୋଷ୍ଠୀ ନିକଟରେ ଆବେଦନ ସୃଷ୍ଟି କରିବାରେ ସମର୍ଥ ହୋଇଛି ।



# କବି କ୍ଷେତ୍ରବାସୀ : ଏକ ଆକଳନ

ଶ୍ରୀ ଅଶ୍ୱିନୀ କୁମାର ମିଶ୍ର

ଓଡ଼ିଆ ସମାଲୋଚନା ସାହିତ୍ୟରେ ଡଃ କ୍ଷେତ୍ରବାସୀ ନାୟକ ଏକ ପ୍ରାତଃସ୍ମରଣୀୟ ନାମ । ନିରନ୍ତର ସାହିତ୍ୟର କୋଳାହଳ ଭିତରେ ନିଜକୁ ଡୁବେଇ ରଖିଥିବା ଡଃ ନାୟକ 'କବି ନୀଳକଣ୍ଠ', 'କବି ଓ କାମିନୀ', 'ସାହିତ୍ୟ ଚର୍ଚ୍ଚା', 'ଆଲୋଚନା ପତ୍ର', 'ଭାରତୀୟ କାବ୍ୟତତ୍ତ୍ୱ', 'କବିଚରିତ ରାଧାନାଥ' ଇତ୍ୟାଦି ବହୁ ଉପାଦେୟ ସମାଲୋଚନା ଗ୍ରନ୍ଥର ପ୍ରଣେତା । 'ଆଧୁନିକ ଓଡ଼ିଆ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ (୧୮୦୩-୧୯୨୦), ବିଷୟକ ଗବେଷଣା-ନିବନ୍ଧ ପାଇଁ ସିଏ ୧୯୭୬ ମସିହାରେ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡି. ପାଇଥିଲେ । ତେବେ ତାଙ୍କୁ ଜଣେ କବି ଭାବରେ ଜାଣିବାର ଅବକାଶ ବିଶେଷ ପାଠକଶ୍ରେଣୀ ପାଇନାହାନ୍ତି । ଏହାର କାରଣ ବହୁବିଧ । କ୍ଷେତ୍ରବାସୀ ନାୟକ ଯେଉଁ ସମୟରେ କବିତା ଲେଖିବା ଆରମ୍ଭ କଲେ, ସେତେବେଳେ ଓଡ଼ିଆ କାବ୍ୟ କବିତାରେ ଅନେକ ପ୍ରତିଭାଶାଳୀ କବିଙ୍କର ରାଜୁତି ଥିଲା । ରୂପକଳ୍ପ, ଚିତ୍ରକଳ୍ପର ବିଭିନ୍ନ ପରୀକ୍ଷା ନିରୀକ୍ଷା ମାଧ୍ୟମରେ ବାକ୍‌ରୀତି ଓ କାବ୍ୟିକ ରୀତିକୁ ମିଶେଇ ନୂତନ କବିତାର ଶୈଳୀ ନିର୍ଦ୍ଧାରଣରେ କ୍ଷେତ୍ରବାସୀ ନିଜକୁ ସଂପୂର୍ଣ୍ଣ ଆଧୁନିକପ୍ରବଣ କରି ପାରିଲେ ନାହିଁ କାରଣ ନିଜେ ଭାଷା ସାହିତ୍ୟର ଅଧ୍ୟାପନା କରି ଅପେକ୍ଷାକୃତ ପ୍ରାଚୀନ କବିତାର ଅଙ୍ଗ ଓ ଆତ୍ମାକୁ ଏତେ ସହଜରେ ନିଜର ସୃଜନ କ୍ରିୟାଠାରୁ ଦୂରେଇ ରଖିବାକୁ ସେ ହୁଏତ ଚାହିଁଲେ ନାହିଁ । ତା ଛଡ଼ା, ଏବର କିଛି କବିଙ୍କ ଭଳି ବେପରୱା ସୃଜନ ପଣକୁ ସିଏ କିମ୍ୱା ତାଙ୍କ ଆଖପାରେ ଥିବା ସାହିତ୍ୟ ପ୍ରଶଂସୁମାନେ ତାଙ୍କ ସୃଜନିକା ଭିତରେ ଦେଖିବାକୁ କାଳେ ନାପସନ୍ଦ କଲେ । ଅଧ୍ୟାପକ ହୋଇ ଘରସଂସାର କରିସାରିଲା ପରେ ନିଜ ଲେଖନୀର ଉତ୍ତରଣକୁ ଅନେକ ମାପଚୁପ ଭିତରେ ରଖି ନିଅନ୍ତି ଓ ଏହାରି ମନସ୍ତାତ୍ତ୍ୱିକ ଦିଗକୁ ମୁଁ ଏଠି ଆଲୋଚନା କରୁନାହିଁ । ଏହି କାରଣରୁ ଅନେକ କବି ନିଜ ଅଗ୍ରଧାବତି ସଫଳତାକୁ ନିଜେ ଆପାତତଃ କବର ଦେଇ ଏକ ଚିରାଚରିତ ଜୀବନଲୀଳା ସାଙ୍ଗରେ ନିଜକୁ ସାଲିସ୍ କରେଇ ନିଃଶେଷ ହୋଇଯାନ୍ତି ସମୟର ପ୍ରବହମାନତାରେ । ଏଭଳି ନଜିର ଆମ ଓଡ଼ିଆ ସାହିତ୍ୟରେ ବିରଳ ନୁହେଁ । ଏକଥା ନିଧାର୍ଯ୍ୟ କ୍ଷେତ୍ରବାସୀ ନିଜେ ଜଣେ ବିଜ୍ଞ ବ୍ୟକ୍ତିଥିଲେ । ସାହିତ୍ୟର ମତାଦର୍ଶ ଉପରେ ସିଏ ବେଶ୍ ମନନଶୀଳ ପ୍ରବନ୍ଧମାନ ଲେଖିଯାଇଛନ୍ତି । ତେଣୁ ସମାଲୋଚକ କ୍ଷେତ୍ରବାସୀ ଯେତେବେଳେ କବି କ୍ଷେତ୍ରବାସୀ ଭାବେ ଆମ ନିକଟରେ ପରିଚିତ ହୁଅନ୍ତି ସେତେବେଳେ

ତାଙ୍କ କବିତାର ଗଢ଼ଣ ଅପରନ୍ତୁ ସ୍ଥାପତ୍ୟ ପାଇଁ କିଭଳି ତତ୍ପର ବିକଳ ହୋଇଥିବେ ତାହା କିଛିକାଂଶରେ ଅନୁମାନ କରି ହୁଏ । ପୁନଃଶ୍ଚ, କବିତାର ମୌଳିକ କାବ୍ୟିକ ପଣ ମୌଳିକ ପାଣ୍ଡିତ୍ୟ ପଣକୁ ଆଦୌ ସହିପାରେ ନାହିଁ । ସେଭଳି ହୋଇଥିଲେ ଅନେକ ଶକ୍ତିଶାଳୀ ବ୍ୟାକରଣବିତ୍ ଶ୍ରେଷ୍ଠ କବି ଆସନକୁ ଅଚିରେ ଉତ୍ତୀର୍ଣ୍ଣ ହୋଇ ପାରିଥାନ୍ତେ । ସୃଜନର ଅବଲୀଳା ଆଗରେ ଭାଷା ସାହିତ୍ୟର କଠୋର ଶୃଙ୍ଖଳା ହାର୍ ନ ମାନିଲେ କବିଟିଏ ତା'ର ମୌଳିକତାକୁ ନେଇ ନିଜ କାବ୍ୟିକ ଉତ୍କର୍ଷ ପ୍ରତିପାଦିତ କରିପାରେ ନାହିଁ । ଅବଶ୍ୟ ଏହାରି ବ୍ୟତିକ୍ରମ ରହିଛି ଓ ମୁଁ ଅଙ୍କଶାସ୍ତ୍ର ଭଳି କୌଣସି ଗାଣିତିକ ମାପକାଠିରେ ସୃଜନ ସାହିତ୍ୟକୁ ଯୋଡୁନାହିଁ । ପ୍ରାବନ୍ଧିକ କ୍ଷେତ୍ରବାସୀଙ୍କ ନିଜ ଭାଷାରେ "ଯେଉଁ କଳ୍ପନାର ଶକ୍ତି ଏତେ, ତାକୁ ପୁଣି ଲେଖକମାନେ ମିଛ ବୋଲି କହନ୍ତି, ଏଇ ମିଛର ଅସ୍ତିତ୍ୱ ସାହିତ୍ୟରେ ବା ଜୀବନରେ ସତ ପାଲଟେ । x x x କାବ୍ୟ ସତ୍ୟ କହିଲେ ମୋଟ ଉପରେ ବୁଝାଯାଏ ସମ୍ଭାବ୍ୟ-ସତ୍ୟ, ଆଦର୍ଶ-ସତ୍ୟ ବା ଔଚିତ୍ୟର ସତ୍ୟ । x x x କଳ୍ପନାରେ ଧରା ଦେଉଥିବା ବସ୍ତୁ । ତା'ର ବାସ୍ତବ ସ୍ଥିତି ଥାଉକି ନ ଥାଉ କାବ୍ୟ ପାଇଁ ତାହା ହେଉଛି ସତ୍ୟ । ଯେଉଁଠିକୁ ଗଲେ ସୁଦ୍ଧା ମାଟିକୁ ଛାଡ଼ି ବଞ୍ଚିବା କାବ୍ୟ ନାୟକ ପାଇଁ ଦୁରୂହ ନିଶ୍ଚୟ ।

"ମାଟି ତେଜି ମୁଁ ମାଟି ଖୋଜିଛି
ମାଟିର ପ୍ରଲେପ ବୋଳି ସ୍ୱର୍ଗେ ପହଞ୍ଚିଛି ।" (ଉଚ୍ଚାରଣ)

ଏଠି ସ୍ୱର୍ଗପ୍ରାପ୍ତି ନିଷ୍ପ୍ରୟୋଜନ । ହୁଏତ ସ୍ୱର୍ଗ ଏକ ପ୍ରତୀକାତ୍ମକ ଅବବୋଧ । କିନ୍ତୁ ସେଠିକି ପହଞ୍ଚିବାରେ ବି ଶରୀରସାରା ମାଟିର ପ୍ରଲେପ । କବିଙ୍କ ମାଟିମନସ୍କ ଜୀବନ ଅନୁଭୂତିର ଗଭୀରତାକୁ ଚିହ୍ନିତ କରେ । ଶାଣିତ କରେ କାବ୍ୟିକ ଅନ୍ତର୍ଦୃଷ୍ଟିକୁ । ଏହା ସାଧାରଣ ବ୍ୟାବହାରିକ ଦର୍ଶନ । ପାଣ୍ଡିତ୍ୟର ପୁଷ୍ପବଟୁ କୌଣସି ଆଙ୍ଗୁଠିରେ ଶୋଭନୀୟ ଜଣାପଡୁନାହିଁ । ଯେମିତି ଖୋଲାମେଲା ଚିତ୍ତବୃତ୍ତି ।

କବି ଅନ୍ୟତ୍ର ରୋମାଣ୍ଟିକ୍ ଭାବ ବନ୍ଧନରେ ଆପ୍ୟାୟିତ ହେବାକୁ ପସନ୍ଦ କରିଛନ୍ତି । ଚାହିଁଛନ୍ତି ପଦ୍ମଭୁକ୍ ମନ ନେଇ କବିତାର ପଂକ୍ତିମାନଙ୍କରେ ନିମଜ୍ଜି ଯିବାକୁ । ଯେଉଁଠି ଚିଠିଟିଏ ଉପଲକ୍ଷ୍ୟ :

"ତୁମେ ଆଉ ଭାଳନା ଗୋ ଚିଠି ଦେଉ ମୋଅରି ପରଶ
ତୁମେ ପାଅ ମୁଁ ପାଏଁ ଟିକେ ଖାଲି କଇଁଫୁଲା ହସ
ସରିଯାଉ ରଙ୍ଗ ପଳାଏ ଶେଷ ବରଷ ।" (ଅକ୍ଷର)

"ଚିଠି ନେଉ ମୋ' ଅରି ପରଶ" ଚିଟାଉଜନିତ ସ୍ମରଣୀୟ ସମୟର ଭଗ୍ନାଂଶ । ଆଜିର

ପୃଥିବୀରେ ଏହା ବେଶ୍ ଦ୍ରୁତଗତିରେ ବଦଳିବାରେ ଲାଗିଛି । ମାନସିଂ, ସଚ୍ଚିରାଉତରାୟଙ୍କ ପ୍ରାୟୋଗିକ ସ୍ୱପ୍ନକୁଞ୍ଜ ଅବଲୀଳା କ୍ରମେ ପତନୋନ୍ମୁଖୀ । କବିତାର ପଂକ୍ତିମାନଙ୍କରେ ଅତୀତର ଏଇ ଅନୁଭୂତି ଉପଲକ୍ଷ୍ୟ ମାତ୍ର ।

କାବ୍ୟନାୟକ ପଲ୍ଲୀଜୀବନର ପୂଜକ । ନିଛାଟିଆ ପଲ୍ଲୀ ଯେମିତି ତା ଆଖିରେ କଜ୍ଜଳ ଭଳି ଲେପି ହୋଇଯାଇଛି । ଯଥା -

"ଜୀବନ କ୍ଷୟିଷ୍ଣୁ ଆମ ଶିଳାସମ ତଟିନୀ ତଟର
ଯଂତ୍ରଣାର ହସ୍ତାକ୍ଷର ଲିପିବଦ୍ଧ ପ୍ରତିଟି ସ୍ନାୟୁରେ
ବଞ୍ଚିବା ବାହାନା ମାତ୍ର ଏ ସହରୀ ମିଥ୍ୟା ବିପଣୀର
ହେଲେ ବି ନିବୋଧ ଆମେ ଖୋଜିବୁଲୁ ବନ୍ଧୁ ଆପଣାର ।"

ସାଧାରଣ ପାଠକଟିକୁ ଏଠି କିଛି ବୁଝେଇବାର ଆବଶ୍ୟକତା ନାହିଁ । 'ନିର୍ଭେଜାଲ' ଜୀବନ ପଛରେ କି ପ୍ରାଣାଂତକ ଉଦ୍ୟମ । ସଫଳତାର ଚାବିକାଠି ଯେମିତି କାହିଁ କେଉଁଠି ହଜିଯାଇଛି । 'ମରୀଚିକ'ର ଉପଲବ୍ଧି ଭିତରେ ମଣିଷ ହନ୍ତସନ୍ତ । କବିଙ୍କ ଭୂୟୋଦୃଷ୍ଟି ବାସ୍ତବରେ ପ୍ରଶଂସନୀୟ ।

କବି କ୍ଷେତ୍ରବାସୀଙ୍କ ନିଜ ଭାଷାରେ "ଜୀବନର ଅନୁଶୀଳନରୁ ଯେଉଁ ଅଭିଜ୍ଞାନର ଉଦ୍‌ଭବ ହୁଏ, ତାହାକୁ କବି ଏକ ବାଣୀରୂପ ପ୍ରଦାନ କରିଥାଏ । ଯଥା :

"ତୁମେ ସବୁ ଆରଣ୍ୟକ
ହେ ମୋର ଉତ୍ତର ପୁରୁଷ !
ନିଜକୁ ଭୁଲିଛ ନିଜେ
ଭୁଲିଅଛ ତୁମରି ଅରଣ୍ୟ
ଯାଦୁଘରେ ପକ୍ଷୀ ଭୁଲେ
ଯେମିତି ତା ପ୍ରାଚୀନ ଜୀବନ !" (ଉଚ୍ଚାରଣ)

ନଗ୍ନ ମଣିଷର ଆଦିମ ଚେତନାକୁ ବହୁଳ ଭାବରେ ପୃଥିବୀର ବିଭିନ୍ନ ସାହିତ୍ୟରେ ପ୍ରାଥମିକତା ଦିଆଯାଇଛି । 'ଆରଣ୍ୟକ' ବହୁ ବ୍ୟବହୃତ ଉପମାଟିଏ । ତେବେ ଯାଦୁଘରେ ନିଷ୍ପ୍ରାଣ ପକ୍ଷୀଟି ପ୍ରାଚୀନ ଜୀବନକୁ କେମିତି ଭୁଲିବ ? ଭୁଲିବା ନ ଭୁଲିବା ଜୀବିତ ବର୍ଗଙ୍କ କାମ । ଏହାକୁ କେହି କେହି 'କାବ୍ୟିକ ଭ୍ରମ' କହିପାରନ୍ତି ।

'କଲ୍ୟାଣୀୟାସ୍ତୁ' ଏକ ସ୍ୱୀକାରୋକ୍ତିମୂଳକ କବିତା । ନିବିଡ଼ ଭାବାବେଗରେ ନିଜ କନ୍ୟା ପ୍ରତି ଉଦ୍ଦିଷ୍ଟ କାବ୍ୟନାୟକର ଚିରଉଦାତ୍ତ ଆବାହନୀ 'ତୁମେ ଗୀତାମାନର ସଂହିତା, ମୋ ପ୍ରାଣର ଅମଳିନ, ସାର୍ଥକ କବିତା ।"

ପ୍ରକୃତିର ବୈଭବ ସହିତ କବିଙ୍କ ଏକାତ୍ମବୋଧ ବେଶ୍ ପ୍ରାଞ୍ଜଳ ଓ ମାର୍ମିକ । 'ଝରଣା' ସଂପର୍କରେ କହିଲାବେଳକୁ ଗତାନୁଗତିକ ବର୍ଣ୍ଣନାର ପାଟବତାକୁ ସିଏ ଆଉ ଥରେ କବିତା ଭିତରକୁ ଟାଣି ଆଣିନାହାନ୍ତି । କବିତାର ସ୍ୱାଭାବିକ ଗୀତିମୟତା ପ୍ରତି ସିଏ ବେଶ୍ ଯତ୍ନବାନ୍ ହୋଇ ଉଚ୍ଚାରିଛନ୍ତି :

"ଯଦିବା ପଚାରେ ତାକୁ କେଉଁଠି ତାହାର ଦୀଘି
ସମୟର ବାଲୁଚର ତାକୁ କେତେ ପୋତି ବା ଦେଲାଣି
ଭାଲୁନାଚ ନାଚି ବୁଲିବୁଲି ବଣବିଲ ଗାଁ ସରହଦ
ଉତାପ ଦେହରୁ ତା'ର କେତେ କମିଲାଣି ।" (ଝରଣା)

କବି ଅନେକ ସ୍ଥାନରେ ଚିରାଚରିତ ଦୃଷ୍ଟିଭଙ୍ଗୀରେ ପୀଡ଼ିତ, ଯଥା : ଶ୍ରାବଣୀ ମେଘର କନ୍ୟା (ତଥାପି ଅକ୍ଷତ), ଅଳସ ଆଖି (ତୋରଣ), ନିଝୁମ୍ ବରଷା (ଦେହ ଓ ଦେହୀ) ଇତ୍ୟାଦି । ଅନ୍ୟତ୍ର ଚିତ୍ରକଳ୍ପର ଚମତ୍କାର ଉପସ୍ଥାପନା । ଯଥା : ଦିଗଂତ ଦୁଆରେ ଖଞ୍ଜା ସୂର୍ଯ୍ୟାସ୍ତର ସିଡ଼ି । 'ପୋତମାଳର ସଙ୍ଗୀତ' କବିତାଟି ସଂପୂର୍ଣ୍ଣ ରୂପେ ପ୍ରତୀକଧର୍ମୀ । ଏଠି ସଂସାରକୁ ପୋତାଶ୍ରୟ ଓ ନଶ୍ୱର ଜୀବନକୁ ପୋତ ଭାବରେ ସୂଚାଯାଇଛି । ପୋତାଶ୍ରୟକୁ ଜଗିଥିବା ବୃଦ୍ଧ ପୋତପାଳ " ନିଜକୁ ଉତ୍ସର୍ଗ କର ଆଶ୍ରୟ ଜଠରେ" କହିବାରେ ପଳାୟନବାଦ ସୁସ୍ପଷ୍ଟ । 'ବ୍ୟର୍ଥ ପିପାସରେ ମଣିଷ ରୁଧିରାକ୍ତ' ଓ ତାକୁ ଏଠି ଆଗେଇ ଯିବାର ନିର୍ଦ୍ଦେଶ ହିଁ କବିତାଟିର ଅନ୍ତଃସ୍ୱର ।

ଆଧୁନିକ ଓଡ଼ିଆ କବିତାରେ ନାରୀ ଚରିତ୍ର ଚିତ୍ରଣ ନୂଆ କଥା ନୁହେଁ । ସଚ୍ଚି ରାଉତରାୟ 'ପ୍ରତିମା ନାୟକ' କବିତାରେ 'ମୁହଁରେ ଖାକିର ହସ ଆଖିରେ ତା' ରାତିର ଇସାରା ଦୁଇ ପାଖେ ଦ୍ରୁତବାନ ଗତିବାନ୍ ନକ୍ଷତ୍ରର ଧାରା" କିମ୍ବା ଗୁରୁପ୍ରସାଦ ମହାନ୍ତିଙ୍କ 'ଅଳକା ସାନ୍ୟାଲ୍ କବିତାରେ' "ମୁଁ ତୁମକୁ ଦେଖେ ଆଜି ତୁମେ ଦିଅ ବ୍ଲାଉଜର ବୋତାମ୍ ଚା ଦାଗ ତୁମେ ଧୁଅ, ସେମିଜ୍‌ରୁ ଗରମ ପାଣିରେ, ଭଳି ଧାଡ଼ିଗୁଡ଼ିକ ସମୟାନୁକ୍ରମେ ରଙ୍ଗଛଡ଼ା ହେବାକୁ ବସିଲେଣି କାରଣ ଏକ ବିଂଶ ଶତାବ୍ଦୀର ପୋଷାକୀ ପରିବର୍ତ୍ତନ ସାଙ୍ଗକୁ ଆଜି ନାରୀ ମନସ୍ତାତ୍ତ୍ୱିକ ଭିତ୍ତିଭୂମିରେ ନୂତନ ରଙ୍ଗର ଢେଉ ଉଠୁଛି । ତେବେ ଅତୀତର ପୃଷ୍ଠଭୂମିରେ ବର୍ତ୍ତମାନକୁ ମିଳେଇ ଦେଖିବାରେ ହିଁ ବାସ୍ତବ ପରିବର୍ତ୍ତନକୁ ଅନୁଭବ କରିହେବ । କ୍ଷେତ୍ରବାସୀଙ୍କ କବିତାରେ –

"ବର୍ଷାବିନ୍ଦୁ ଝରିପଡ଼େ ରାତାଦାସ କୃଷ୍ଣା କବରୀରେ
ତା' ବେଣୀରେ କୁନ୍ଦର ସ୍ତବକ ସ୍ଥାନଚ୍ୟୁତ ମେଘର ଆଘାତେ
ମୁଖେ ତା'ର ବାରି ବିନ୍ଦୁ ଟିକ୍‌ଟିକ୍ ସ୍ଫଟିକ ଫଳକ

ଭିକ୍ଷାଶାଢ଼ୀ ଛନ୍ଦି ହୁଏ ଦେହ ବଲ୍ଲରୀରେ

ଦେହରୁ ଅଲଗା କରେ ଅସ୍ତସୂର୍ଯ୍ୟ ହାତର ପରଶେ ।" (ବର୍ଷା)

ଏଠି ଗତାନୁଗତିକ ଶବ୍ଦମୋହ ସାଙ୍ଗକୁ ଚିରାଚରିତ ବର୍ଣ୍ଣନାରେ ପଂକ୍ତିଗୁଡ଼ିକ ଅନେକାଂଶରେ ପୀଡ଼ିତ । ବର୍ଣ୍ଣନାରେ ନୂତନତ୍ୱର ଅବତାରଣା ପଛକୁ ହଟିଯାଉଛି । ମୁକ୍ତଛନ୍ଦ ତେଜୋଦୀପ୍ତ ନ ହୋଇ ପୂର୍ବାନୁଗାମୀ କାବ୍ୟ ପରମ୍ପରାକୁ ବାଟ ଛାଡ଼ି ଦେଉଛି । ଏହା କ୍ଷେତ୍ରବାସୀଙ୍କ କାବ୍ୟ-ପ୍ରତିଭାର ଦୁର୍ବଳ ଅବସ୍ଥାନ ।

ଈଶ୍ୱର ବିଶ୍ୱାସ କବିଙ୍କର କାବ୍ୟଚେତନାକୁ ଉଚ୍ଚାଟିତ କରୁଛି । ବିଭୁ ପ୍ରେମର ବହ୍ନିରେ ସେ ଜଳୁଛନ୍ତି ଯଥା : "ସକଳ ମୋ ଚେଷ୍ଟା ପରେ ଡେଇଁବାକୁ ଜରାର ଜୀର୍ଣ୍ଣତା, କରୁଣା ଚାହୁଁଛି ପ୍ରଭୁ" (ଶ୍ମଶାନ ସ୍ରଷ୍ଟା) । ପୁନଃଶ୍ଚ "ଯନ୍ତ୍ରଣା ଜ୍ୱଳନଠାରୁ ଅହସ୍ୟ ତୋ ଲୁହ ବରଷଣ । ସାମର୍ଥ୍ୟ ଦେଇନି ପ୍ରଭୁ । ରୋକିପାରେ ମାତାର କଷଣ" । "ବିହଗୀର କଣ୍ଠ ଶୁଭେ କରୁଣାକ୍ତ ମନର ସଙ୍ଗୀତ, ସେଇ ମୋ ପୃଥିବୀ ପ୍ରଭୁ ! ଛାୟାଚ୍ଛନ୍ନ ନିଃସର୍ଗ ନିପୁଣ" ଇତ୍ୟାଦି ପଂକ୍ତିମାନଙ୍କରୁ ତାଙ୍କ ବଳିଷ୍ଠ ଈଶ୍ୱର ପ୍ରେମର ଆଭାସ ମିଳେ । ସେ କୌଣସିଠାରେ ଈଶ୍ୱରଙ୍କ ବ୍ୟକ୍ତିତ୍ୱକୁ ନେଇ ଖେଳ ଖେଳିନାହାନ୍ତି । ଗମ୍ଭୀର ଭାବାପନ୍ନ ଏକକ ମୁଦ୍ରାର ଧ୍ୟାନ ହିଁ ତାଙ୍କ ଜୀବନର ଲକ୍ଷ୍ୟ ହୋଇଛି ।

'ବାମନର ହଳଦୀ ବସନ୍ତ' କ୍ଷେତ୍ରବାସୀ ବାବୁଙ୍କ ଅନ୍ୟତମ ଶ୍ରେଷ୍ଠ କବିତା । ଏହି କବିତାରେ ଉଭୟ ଆବେଗ ଓ ବୌଦ୍ଧିକତାର ସମ୍ମିଶ୍ରଣକୁ ଅନୁଭବ କରିହୁଏ ।

"ସମୁଦ୍ରେ ଶାମୁକା ଭିଡ଼ ଆକାଶେ ନକ୍ଷତ୍ର
ଜଳଂତି ବା ପହଁରନ୍ତି ମୁହୂର୍ତ୍ତ ବନ୍ୟାରେ
ଯେତେ ଆମ ପିତାମାତା ପ୍ରପିତା ପ୍ରମାତା
ତାଙ୍କ ଦେହ ନିର୍ମୋକର ଭଗ୍ନ ରୂପାନ୍ତରେ
ମୁଁ ତାଙ୍କ ଜୀବନ ସ୍ୱର ରୂପହୀନ ବାମନ ଯଦିଓ
ସେମାନଙ୍କ ବ୍ୟତିକ୍ରମ, ସ୍ୱର୍ଗ ଏଠୁ କାହିଁ କେତେ ଦୂର ।"

ନିଜେ କାବ୍ୟ ନାୟକ ଏଠି ବାମନ ରୂପରେ ଅବତୀର୍ଣ୍ଣ । ତା ପାଇଁ ସ୍ୱର୍ଗ ଅପହଂଚ । ମିଥ୍‌କୁ ସୁନ୍ଦର ଭାବେ ଆଦିମ ପିପାସା ସହିତ ଯୋଡ଼ାଯାଇପାରିଛି । ଯଥା : "ବାମନ ଲୋଡୁଛି ଚନ୍ଦ୍ର ! ତୃଷାକଣ୍ଠ ଚାତକ ପରାଏ" ମନେ ପକାଇ ଦିଏ ଓଡ଼ିଆ ଜନଜୀବନର ପୁରୁଣା ରୂଢ଼ି ପ୍ରୟୋଗକୁ । ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼େଇବା ଯେମିତି ଏକ ଅସଫଳ ବ୍ୟକ୍ତିତ୍ୱର ଦୀର୍ଘଶ୍ୱାସ । ଲାଳିତ୍ୟହରା ଉଲ୍ଲାସରେ କବି ସଂପୂର୍ଣ୍ଣ ମାଦକତା ନେଇ ବର୍ଷାକୁ ସଜାଡ଼ିଛନ୍ତି କବିତା ମାଧ୍ୟମରେ । 'ବର୍ଷା ଶୃଙ୍ଗାର' ଆଧୁନିକ

ଚେତନାର ବଶବର୍ତ୍ତୀ କି ନା ସେ କଥା ନ କହି ଏହାକୁ ଏକ ସଫଳ କବିତା ଭାବେ ଗ୍ରହଣ କରାଯାଇପାରେ ।

"ସହର ନାଚୁଛି ଏଠି ତାଳେତାଳେ ବର୍ଷୁକ ମେଘର
ତମାଳ ବନର ଛାଇ ଘେରିଛି ବା ଆକାଶ ପ୍ରାନ୍ତର ।
ଥରୁଛି ପୁଷ୍କର ଛାତି ଚନ୍ଦ୍ରହୀନ ପଥର ଦୀପାଳି
ଭରା ଛାତ ଧାନକ୍ଷେତ, ଝାଉଁବଣ, କଦମ୍ବ କାନନ
ବର୍ଷାର ଉଲଗ୍ନ ରାସ ଆଣେ ମନେ ଅଶାନ୍ତ ସ୍ପନ୍ଦନ ।"

ଏହି କବିତାରେ "ଝରକାର ମେରୁଦଣ୍ଡ ଏବଂ ପଞ୍ଜରା ହାଡ଼ ଫାଙ୍କେ" ଭଳି ଚମତ୍କାର ଚିତ୍ରକଳ୍ପ ପାଠକକୁ ଆପ୍ୟାୟିତ କରେ ।

କବି କ୍ଷେତ୍ରବାସୀ ନାୟକ ମାତ୍ର ଛୟାଳିଶ ବର୍ଷ ବୟସରେ ଆମଠାରୁ ଚିର ମେଲାଣି ନେଇଛନ୍ତି । ତେଣୁ ତାଙ୍କ କାବ୍ୟ-କୃତିର ପୂର୍ଣ୍ଣାଙ୍ଗ ରୂପ ଦେଖିବା ପାଇଁ ଆହୁରି ବାକି ରହିଗଲା । କବିତା ସମ୍ବନ୍ଧିତ ଏକ ଅସମାହିତ ଆଲୋଚନା ଯେମିତି ତାଙ୍କ ପ୍ରତିଭାର ନିଅଣ୍ଟିଆ ରୂପ । ତେବେ ଗଭୀର ପ୍ରାଣୋଚ୍ଛ୍ୱାସ ଆଗରେ ପ୍ରତିଭାକୁ ବି ବେଳେବେଳେ ନତଜାନୁ ହେବାକୁ ପଡ଼ିପାରେ । ଆଲୋଚ୍ୟ କବି ତହିଁର ଏକ ଉଦାହରଣ ମାତ୍ର ।



# ଚାରିଦଶନ୍ଧିର ଗଳ୍ପମାଳିକା : ଫୁଲର କବର

ଡଃ ମନ୍ଦାକିନୀ ଦାସ

ଗପ ଲେଖିବା କମ୍ କଳା କି ? ଗପ ପାଇଁ ଗୋଟେ ମଜ୍‌ବୁତିଆ ଖୋପ ଦରକାର । କମକରା ଖୋପ । ତା ଚଉହଦୀରେ ଜମ୍ବୁରା କାଗଜର ଘେରା ଭିତରେ ଥିବ ପାକଳ ଶାଗୁଆନ୍‌ର ପେଟରା; ଚିକ୍‌ଚିକ୍ କରୁଥିବ; ଆଖି ଝଲସେଇ ଦେଉଥିବ । ତା' ଭିତରେ ଛୋଟ  ପେଟିଟାଏ, ସେବି ସୁନାର ହୋଇଥିବ । ତା' ଭିତରେ ମୋତି ମାଣିକର ଏମତି ଆଉରି ଛୋଟ ଆଉରି ଛୋଟ କୁଚ୍ଚି କୁଚ୍ଚି ପେଟି । ସବା ଭିତରକୁ ଥିବ ମଞ୍ଜିଟିଏ । ମଞ୍ଜି ନୁହେଁତ ନାଟିକା । ଭାବର ନାଟିକା, ଅଭାବର ନାଟିକା, ବ୍ୟଥାର ନାଟିକା, ରସିକତାର ନାଟିକା ..... ଏମିତି କେତେ ରକମର ହୋଇପାରେ ସେଇଟି । ତାକୁ ଚିହ୍ନିବାକୁ ଚିହ୍ନରାଟିଏ ଲୋଡ଼ା । ଯେ ପିନ୍ଧିଥିବ ବହଳ ସପନର ପରଚକ୍ଷୁ, ତରଳ ଉଲ୍ଲାସର ଅଞ୍ଜନ ଏବଂ ହୋଇଥିବ ଗରାଖଟିଏ ପୂରାପୂରି ବିବେକୀ । ତା ହେଲେ ଲେଖିଲା ବାଲାର ଶ୍ରମ ସାର୍ଥକ, କର୍ମ ସଫଳ । ଗପ କରୁଥିବା ଲୋକଟି ଯେ ଏକବାର ଆତ୍ମମଗ୍ନ, ଭାବଭୋଳା - ଏକଥା କାହାକୁ ଅଛପା ଯେ । ଏ କ୍ଷେତ୍ରରେ ମହାନାୟକ ହୋଇପାରନ୍ତି କ୍ଷେତ୍ରବାସୀ, ତେଣୁ ତାଙ୍କ ନାଁ ହୋଇଥିବ କ୍ଷେତ୍ରବାସୀ ନାୟକ । ତାଙ୍କ ପାଇଁ ବଡ଼ଦାଣ୍ଡ ଥିବା ପାଠକର ସାଇବେଗୀ ଭକ୍ତି ଅଭିଯାନର ସରଣୀ । ମଝିରେ ମଝିରେ ବାଲିଗାଁର ଦାସିଆ ପରି ବାଉଳା ପାଠକମାନେ ପଠେଇ ଦେଉଥିବେ ପତ୍ରର ନାରିକେଳ । କ୍ଷେତ୍ରବାସୀଙ୍କ ଅଦୃଶ୍ୟ ହୃଦୟ ଆଡ଼କୁ ପ୍ରସାରିତ ହୋଇ ଯାଉଥିବ ସେଇ ଶ୍ରୀଫଳର ମଧୁସ୍ରାବ । ଗପଟି ଲାଗୁଥିବ କେବଳ ମଧୁ ମଧୁ । "ମଧୁ କ୍ଷରନ୍ତି ସୈନ୍ଧବଃ" ର ବେଦବାଣୀ ଉଚ୍ଚାଟିତ କରୁଥିବ କ୍ଷେତ୍ର ଭୂମିର ପାବନ ନଭମଣ୍ଡଳକୁ । କ୍ଷେତ୍ରବାସୀ ହୋଇଯିବେ ମୂଳକର ମହାନାମୀ । ଆଣିବେ ନୂଆ ପରୀକ୍ଷା, ନିରୀକ୍ଷା, ନୂଆ ଦିଗ୍‌ବିଜୟ, ନୂଆ ସବୁଜିମା, ନୂଆ ନୂଆ ସୁରଭି; ବିଗତ ଚାରିଦଶନ୍ଧିର ଚିନ୍ତାଧାରାରେ ଭରିରହିଥିବ ମାଳିକାର ଦୂରଦର୍ଶିତା, ଭବିଷ୍ୟଧାରା । ସେଇ ଦସ୍ତାବିଜ୍ ଭିତରୁ ପୁରାଣ ପଣ୍ଡା  ନିକାଳି ଆଣିଥିବ ଧୂପ ବାସନାରେ ମହମହ ଏଇ ଗପମାଳିଟିକୁ । ଯାହାର ସଂକଳିତ ନାମ ହୋଇଥିବ "ଫୁଲର କବର" । କ୍ଷେତ୍ରବାସୀ ସାଉଁଟି ଆଣନ୍ତି ଦେହ ଦେହଳୀର ମଞ୍ଜପଟାକୁ । ସିଗ୍‌ମଣ୍ଡ ଫ୍ରୟେଡ୍‌ଙ୍କଠାରୁ ଆରମ୍ଭ କରି ମୁନ୍‌ସି ପ୍ରେମଚାନ୍ଦଙ୍କ ପର୍ଯ୍ୟନ୍ତ ସମସ୍ତ ଦର୍ଶନ ଓ ସାମ୍ୟବାଦୀ, ବାମାବାଦୀ, ବିଚ୍ଛିନ୍ନତାବାଦୀ ଚିନ୍ତାଧାରାକୁ ଖଞ୍ଜି ଦିଅନ୍ତି ତାଙ୍କର ଭିନ୍ନ ଭିନ୍ନ ଗପରେ । ସକାଳଠାରୁ ରାତି ପାହିବା ପର୍ଯ୍ୟନ୍ତ ରାଜରାସ୍ତାରେ ଅନ୍ଧମୁହାଣୀ ଧାଉଁଥିବା କୁଷ୍ଠୀଠାରୁ କୁବେର ପର୍ଯ୍ୟନ୍ତ ସମସ୍ତ ଚରିତ୍ରକୁ

ଧରିଆଣି ଗପର ଚିଡ଼ିଆଖାନାରେ କଏଦୀ କରିଦେବାର ଓସ୍ତାଦ୍ ବନିଯାଆନ୍ତି କ୍ଷେତ୍ରବାସୀ । ବିକଳାଙ୍ଗଠାରୁ ଆରମ୍ଭ କରି ପୂର୍ଣ୍ଣଦେହୀ ପର୍ଯ୍ୟନ୍ତ, ହିପ୍‌ପୀନଷ୍ଟଲଜିକ୍‌ରୁ ଆରମ୍ଭ କରି ସଂସ୍କୃତିପ୍ରବଣ ପରମ୍ପରାବାଦୀ ପର୍ଯ୍ୟନ୍ତ । ବାରଣାସୀରୁ ଆରମ୍ଭ କରି କାଳିଗଳି ପର୍ଯ୍ୟନ୍ତ ସମସ୍ତ ପୁରୁଷ, ପ୍ରମଦା ତାଙ୍କ ମହଲରେ ସଂଘର୍ଷ କରି ଚାଲନ୍ତି ଅହରହ ପ୍ରତିନିୟତ । ଆବେଗମାନ କେଉଁଥିରେ ସମାସଯୁକ୍ତ ହୋଇଯାଆନ୍ତି ତ କେଉଁଠି କେଉଁଠି ହୋଇଯାଆନ୍ତି ବ୍ୟାସମଣ୍ଡିତ । ସମସ୍ତ ପ୍ରକାର ଦୁଷ୍କୃତି, ନିଷ୍କୃତି, ସଂସ୍କୃତି, ବିକୃତି, ସମଯୋଜନ, ବିଭେଦାୟନ, ସଂଗୋପନ, ସଂଶ୍ଳେଷଣର ଆଲେଖ୍ୟ କି ସୁନ୍ଦରଭାବେ ଗୁନ୍ଥିହୋଇ ମାଳାଟିଏ ମାନ ହୋଇ ଶୋଭାପାଆନ୍ତି ଗପର ଦୋଳମଣ୍ଡପରେ । ମୁହୂର୍ତ୍ତକ ପାଇଁ ପାଠକଟିଏ ଭୁଲିଯାଏ ତା'ର ଜଗତ ଜଞ୍ଜାଳକୁ । ହଜିଯାଏ ଗପର ଗୋପଦାଣ୍ଡରେ, ଭାବର ବଣିକ କ୍ଷେତ୍ରବାସୀଙ୍କ ମାୟାପଟଳ ମଧ୍ୟରେ । ଗପମାନଙ୍କର ନାମକରଣଟି ହୋଇଥାଏ ସେମିତି ଏକଦମ୍ ମନୋମୁଗ୍ଧକର । ଯେମିତିକି 'ମରୁବଲ୍ଲରୀର ପୁଲକ", 'ସୀମାନ୍ତ', 'ଅଙ୍ଗାର', 'ସେ ଏକ ଅସ୍ଥି ବିନ୍ଦୁ' ଇତ୍ୟାଦି ଇତ୍ୟାଦି । ଚରିତ୍ରମାନେ ଚଳଚଞ୍ଚଳ ଫଲ୍‌ଗୁ । ପାଠକମାନେ ଉଷ୍ଣତାପୀ ଅବଗାହୀ ଲିପ୍‌ସୁ । ବାଃ କି ସୁନ୍ଦର ମଧୁର ସମବାୟ । ସବାହ୍ୟାଭ୍ୟନ୍ତର ଶୁଚି ହୋଇଗଲା ପବିତ୍ର ଗଙ୍ଗାରଧାରରେ । ମନ୍ଦଗହନରୁ ଉତୁରିଗଲା ଆବିଳତା ଓ ଅତୃପ୍ତିର ମଳକୁଟି । ଏବେ ସର୍ବତ୍ର କେବଳ ଶାନ୍ତି ଓ ଶାନ୍ତି । ଧନ୍ୟ କ୍ଷେତ୍ରବାସୀ, ଧନ୍ୟ ତୁମ କରଣୀ ! ତୁମ ବିନ୍ଧାଣି ଜୀବନର ପରମାର୍ଥ ଏଇଠି ମିଳିଗଲା ... ଏଇଠି କେବଳ ଗପର ମାୟାମହଲରେ ।

ଏଠି ଜୀବନ ଏକ ଅଜବ ଜଗତ । ଉଦ୍‌ଭଟତା ଏଠାରେ ଯୁଗ ଯନ୍ତ୍ରଣା । ସାଧାରଣ ଘଟଣା ଭିତରେ ଏଠାରେ ଅନ୍ତର୍ନିହିତ ଏକ ଅଜବ ଦୃଷ୍ଟିକୋଣ । ଯନ୍ତ୍ର ଯୁଗରେ ସ୍ରଷ୍ଟା ବସ୍ତୁବାଦୀ ନୁହନ୍ତି - ବରଂ ବସ୍ତୁର ନିରର୍ଥକତାକୁ ସେ ଭେଟନ୍ତି, ଇନ୍ଦ୍ରିୟାତୀତ ସତ୍ତାକୁ ଉପଲବ୍‌ଧି କରନ୍ତି । ଯନ୍ତ୍ରଣା ଓ ଅସ୍ତିତ୍ୱ ତାଙ୍କ ଅନୁଭୂତିର ରୂପରେଖ । କାମ୍ୟୁ, କାଫ୍‌କା ଓ ସାର୍ତ୍ରେଙ୍କ କଥା ସୃଷ୍ଟି ଭଳି ତାହା କେତେବେଳେ ନିରାଟ ନିସଙ୍ଗତାର ଜଗତ୍ । ଅନୁଭୂତି ସେଠାର ଯେପରି ଆକସ୍ମିକ ସେହିପରି କ୍ଷଣସ୍ଥାୟୀ- ଜୀବନପରି । ସେଥିପାଇଁ ସେ ଜୀବନର ଏକ ନୂତନଧାରା କାମନା କରନ୍ତି । ନିଜକୁ ଅନୁଭବ କରିବାକୁ ଚାହିଁଛନ୍ତି, ତାହା ପୁଣି ଜୀବନ ଯନ୍ତ୍ରଣାର ସ୍ନାୟୁକୋଷକୁ ଉତ୍ତେଜିତ କରି । ତାଙ୍କ ଗଳ୍ପରେ ଯନ୍ତ୍ରଣା ଭିତରେ ହିଁ ଜୀବନର ଅନୁଭୂତି । ଯନ୍ତ୍ରଣାର ବିକଳ୍ପ- ଶୂନ୍ୟତା । ଜୀବନ-ମୃତ୍ୟୁର ପାରସ୍ପରିକ ସଂଘର୍ଷ ଭିତରେ କେବେ କେବେ ଜୈବିକ ଅନୁଭବରୁ ଉଭାରି ଆସେ ମୃତ୍ୟୁହୀନ ସତ୍ୟ । ଏହିପରି ଏକ ଗଳ୍ପ 'ମରୁ ବଲ୍ଲରୀର ପୁଲକ' । ଗଳ୍ପରେ ଜୀବାଣୁ ଓ ଜୀବାଣୁଙ୍କ ସହ

ଗୋବରୀ ସଂଘର୍ଷ କରୁକରୁ ସେ ଯେମିତି ରୋଗମୁକ୍ତ ହୋଇଯାଏ - ଜୀବନ ଫୁଲ ହୋଇ ଫୁଟେ । ତା'ର ଅବଚେତନ ମନରେ ବସା ବାନ୍ଧିଥିବା ଭୟ ଉଭେଇଯାଏ । ପଚମାନ ଶରୀର ବଳୟରୁ ଜନ୍ମନିଏ ଏକ ଅମୃତ ସୃଷ୍ଟିର ଆକାଂକ୍ଷା । ସେଇ ଶିଶୁ ଜନନୀର ଆଶା ନିରାଶାର ଧୂପଛାଇରେ ବହିଯାଉଥାଏ ଜୀବନ ନଦୀ । କୂଳର ଆକର୍ଷଣ ବିକର୍ଷଣ-ପତନ ଅଭ୍ୟୁଦୟର ଖେଳ ଲାଗିରହିଥାଏ ଇହକାଳ । ଏଇ ଭାବରେ ଆଧାରିତ ଏ ଗଳ୍ପଟି ।

ପଚମାନ ଶରୀର କୁଷ୍ଠରୋଗାକ୍ରାନ୍ତ ହୋଇ ଭିକ୍ଷାବୃତ୍ତି କରୁଥିବା 'ଗୋବରୀ' ନୂଆ ବିବାହିତା ଦମ୍ପତି ଦେଖି ଅବଚେତନ ମନର ସୁପ୍ତ ଆଶାକୁ ଜାଗ୍ରତ କରିଛି । ପୁଣି କଅଁଳ ଶିଶୁର ଖିଲିଖିଲି ହସ, ଚାଲି ଗୋବରୀ ମନର ମାତୃତ୍ୱକୁ ଉଦ୍ଦୀପ୍ତ କରିଛି । ଜଲିଲ୍ ଭିକ୍ଷା ବୃତ୍ତି କରି ବଞ୍ଚେ ଏବଂ ଖୁବ୍ ସମ୍ବେଦନଶୀଳ ସେ ଗୋବରୀ ପ୍ରତି । କାରଣ ଜଲିଲ ନିଜ ଛଡ଼ା ଆଉ କାହା ସହ ଗୋବରୀ ଭିକ୍ଷାମାଗି ଯିବାଟାକୁ ପସନ୍ଦ କରେନା । ଗୋବରୀକୁ ମଧ ମନା କରେ । ନିଜ ରୋଜଗାରରୁ ବି ତାକୁ ଖାଇବାକୁ ଦିଏ । ପରସ୍ପର ପରସ୍ପରକୁ ଭଲପାଆନ୍ତି । ହୃଦୟର ବିନିମୟ ହେଉ ପଛକେ କିନ୍ତୁ ଦେହ ବିନିମୟ ନହେଉ, ଗୋବରୀର ଭୟ । କାରଣ ତୃତୀୟର କଅଁଳ ରକ୍ତକୁ ପୀଡ଼ିତ କରିବାକୁ ସେ ଚାହେଁନା । କିନ୍ତୁ ଶେଷରେ ପରିବେଶ ନିକଟରେ, ମନର ଭୟ ନିକଟରେ ହାରିଯାଇଛି । ବର୍ଷାର ସନ୍ଧ୍ୟା ସହ ଶୀତୁଆ ଦେହ- ରାତିର ଆଶ୍ରୟସ୍ଥଳ ସ୍କୁଲଦାଣ୍ଡ - ଚାରୋଟି ବାହୁବନ୍ଧନରେ ଦୁଇଟି ଖର ନିଶ୍ୱାସ- ଗୋଟିଏ ଉଷ୍ଣ ଆନନ୍ଦ । ଏଇଠି ମନେହୁଏ କୁଷ୍ଠ ରୋଗାକ୍ରାନ୍ତ ଗୋବରୀ ଜୀବନ ପ୍ରତି ଅନାସକ୍ତ ନୁହେଁ ବରଂ ଆସକ୍ତିର ବଳୟରେ ବଞ୍ଚୁଥିବା ମଣିଷଟି ଏଠାରେ ଅନାସକ୍ତ ଭାବସତ୍ତାକୁ ଭେଟୁଥାଏ ପ୍ରତିଟି ବିକଳ୍ପ ମୁହୂର୍ତ୍ତରେ । ପଚମାନ ଶରୀରରେ ବଞ୍ଚୁଥିବା ମଣିଷଟିର ମଧ ସଂଭୋଗ ବାସନାରୁ ନାହିଁ ପରିତ୍ରାଣ । ଅନ୍ଧକାରର ବୃନ୍ତରୁ ମୁକୁଳିବାର ସମ୍ଭାବନାଟିଏ ଉଦ୍‌ଜୀବିତ ହେବା ଆଗରୁ ଜୀବନ ମନେ ହୁଏ ସୁନ୍ଦର ଫୁଲପରି । ଅନ୍ତରାତ୍ମାରେ ଅନୁଷ୍ଣ ଯନ୍ତ୍ରଣାରେ ଘାରି ହେଉଥାଏ ନାୟିକା । ହୁଏତ କାହାକୁ ଭଲ ପାଇବାର ଶକ୍ତିହୀନତା ଜଗାଇଦେଉଥିବା ଶୂନ୍ୟତାବୋଧରୁ ପୁଣି ଜାଗିଁ ଉଠେ ସୁନ୍ଦର ଜୀବନର ସ୍ୱପ୍ନ । ନାୟକ ହେତୁବାଦୀ ନୁହେଁ । ସେ ଆବେଗପ୍ରବଣ । ତା'ର ଭାବପ୍ରବଣତା ଅତିଶୟ ତୀକ୍ଷ୍ଣ । ସେ ଦେଖେ ପରସ୍ପର ବିରୋଧୀ - ସ୍ୱପ୍ନ, ଜୀବନ ଓ ମୃତ୍ୟୁ ଏଠି ଏକତ୍ର ବିଚରଣ କରନ୍ତି କୋଳାକୋଳି ହୋଇ । ଏ ମୃତ୍ୟୁ କିନ୍ତୁ କାମ୍ୟ, ଅନ୍ତତଃ ଜୀବନ ପାଇଁ ।

କାମନା ବାସନାର ଅତିପ୍ରବଳତା ମୃତ୍ୟୁକୁ ଭ୍ରୂକ୍ଷେପ କରେନା - ମୃତ୍ୟୁ ଚିନ୍ତାର ଅତିଶୟତା କାମନା ବାସନାକୁ ପରାଭୂତ କରେ । ଏଇ ମାନସିକ ଚେତନାର ସଂଘର୍ଷିତ ସଂସାର - ଏଇ ଦୁଇ ବିଚାରର ପ୍ରାବଲ୍ୟର ଦ୍ୱନ୍ଦ୍ୱରେ ହିଁ 'ଗୋବରୀ' ଝାସ ଦେଇଛି । ଗଳ୍ପ ଜରିଆରେ ପାଠକକୁ ଏକାଧାରାରେ ପରିତୃପ୍ତି ଓ ଅତୃପ୍ତିର ଜ୍ୱାଳା, ଆନନ୍ଦବୋଧ ଅନ୍ୱୀଷବୋଧି ଓ ଉପଲବ୍ଧି, ଚେତନାର ନବଦିଗନ୍ତକୁ ପ୍ରକଟ କରାଇବାରେ ଗାଳ୍ପିକ ନିଜ ବାହାଦୁରୀ ଦେଖାଇଛନ୍ତି । 'ସେ ଏକ ଅସ୍ଥିର ବିନ୍ଦୁ' ଗଳ୍ପରେ ଜୀବନକୁ ସ୍ୱାଭାବିକ ଭାବରେ ଗ୍ରହଣ କରିବାର ଅବ୍ୟବହିତ ପୂର୍ବରୁ ବନାନୀ ହୋଇଛି ଅସ୍ୱାଭାବିକ । ବନାନୀ ବିକାଶର ବ୍ୟକ୍ତିତ୍ୱ ପ୍ରତି ଆକ୍ଷେପ କରି କହିଲା - 'କେତେ ମାଇଚିଆ ନାଆଁଟାଏମ' । ଅସ୍ୱାଭାବିକ ସମାଜର ପାରମ୍ପରିକ ଗତିପ୍ରବାହ ସହ ନିଜକୁ ସାମିଲ କରିବା ଖୁବ୍ କଷ୍ଟସାଧ୍ୟ । ଏହି ବିଚ୍ଛିନ୍ନତାବୋଧ ସାଂପ୍ରତିକ ଆଧୁନିକତାର ଏକ ଅଙ୍ଗ । ଆଧୁନିକ ଜୀବନଧାରା - ଜୀବନର ଆନନ୍ଦ ଆହରଣରୁ ବ୍ୟକ୍ତିକୁ ବିଚ୍ୟୁତ କରାଇ କରାଏ ଅସ୍ଥିର । ବିଂଶ ଶତାବ୍ଦୀର ଭାରତୀୟ ଜୀବନଧାରା ଏହି ବିଚ୍ଛିନ୍ନତା, ଅସ୍ଥିରତାବୋଧରେ ହୋଇଛି ଆକ୍ରାନ୍ତ । ଆମ ପାଇଁ ଏହା ପାଶ୍ଚାତ୍ୟ ଆଧୁନିକତାର ଅନୁକରଣ ମାତ୍ର ନ ହୋଇ ଆଜି ଏହା ହୋଇଛି ଅଙ୍ଗେଲିଭା ଅନୁଭୂତି । ବଡ଼ ଆଶ୍ଚର୍ଯ୍ୟଲାଗେ ଗାଳ୍ପିକ ଡକ୍ଟର କ୍ଷେତ୍ରବାସୀ ନାୟକ ୧୯୬୭ ମସିହାରେ ଏହି ବିଚ୍ଛିନ୍ନତାବୋଧ ଓ ଆଧୁନିକତାର ଏକ ସୁନ୍ଦର ଗଳ୍ପଗ୍ରନ୍ଥ ଆମକୁ ଦେଇଯାଇଛନ୍ତି, ଅଥଚ ଏ ପର୍ଯ୍ୟନ୍ତ ତାହା ଆମ ଚକ୍ଷୁ ଆଢୁଆଳରେ ରହିଯାଇଥିଲା ।

ଏ ଗଳ୍ପର ନାୟିକା ବନାନୀ ବିକାଶର ପ୍ରକୃତ ଭଲପାଇବାର ଆଦର୍ଶକୁ ଭୁଲି ମନର ଖୁଧା ପାଇଁ ଭବାନୀକୁ ଭଲ ପାଇଛି । ସେଇଥିପାଇଁ ବୋଧହୁଏ ଭବାନୀ ବନାନୀର ଭୋକିଲା ମନ ଜାଣି ତାକୁ କହିଛି - 'ଅବସର ପାଇଁ ନାରୀଟିଏ ଲୋଡ଼ା । ତୁମେ ତ ଅବସରର ଖୋରାକ । ହଜାରେ ଫୁଲର ମଧୁ ପିଇଲେ କ୍ଷତି କ'ଣ ? ବନାନୀର କ୍ଷୁଧିତ ମନ ଭବାନୀର ପ୍ରଶସ୍ତ ଛାତି ତଳେ ଆଶ୍ରା ପାଇଲା - ଅବସର କଟିଲା - କ୍ଲାନ୍ତି ବି ମେଣ୍ଟିଲା । କିନ୍ତୁ ବିକାଶ ଭାରତୀୟ ସଂସ୍କୃତିର ଆଦର୍ଶ । ସେ ଭଲ ପାଇବାରେ - ତ୍ୟାଗରେ ବିଶ୍ୱାସ କରେ । ସେଥିପାଇଁ ଭବାନୀ ଓ ବନାନୀର ସମ୍ପର୍କ ଜାଣି ନିଜ ଭଲ ପାଇବାକୁ ଭୁଲି ବିକାଶ ଚିଠି ଲେଖିଛି ବନାନୀକୁ - 'ତୁମେ ଭବାନୀର ହୁଅ- ମୋର ଆପତ୍ତି ନାହିଁ - କିନ୍ତୁ ତାର ଭିତରର ମଣିଷଟିକୁ ଭଲପାଅ । ମୁଁ ତୁମ ସ୍ମୃତି ନେଇ ସୁଖରେ ବଞ୍ଚିପାରିବି ।' ଏଠି ଆଦର୍ଶ ଓ ତ୍ୟାଗର ପ୍ରେମ କଥା ଗାଳ୍ପିକ କହିଛନ୍ତି କିନ୍ତୁ ଭବାନୀ ଯେ କେବଳ ଭୋଗରେ ବିଶ୍ୱାସ ରଖେ ତ୍ୟାଗରେ ନୁହେଁ । ସେଥିପାଇଁ ଭବାନୀ ବନାନୀକୁ ଚିଠି ଲେଖିଛି - ବନାନୀ କେବଳ ତା'ର ବନ୍ଧୁ କିନ୍ତୁ ପ୍ରିୟା ନୁହେଁ । ଏହାପରେ ବନାନୀ

ମନରେ ଆସିଛି ବିକାଶର ସ୍ମୃତି । ବନାନୀର ମନର କଥାକୁ ବିକାଶ କିନ୍ତୁ ଶୁଣି ପାରିନି ଶୁଣିଛି ତାର ଫଟୋ । ସାର୍ଥକ ଗଳ୍ପର ଗୁଣ ବହନ କରି ଏ ଗଳ୍ପର ପରିସମାପ୍ତି ପାଠକ ମନରେ ଅନେକ ପ୍ରଶ୍ନବାଚୀ ସୃଷ୍ଟି କରେ । ଗଳ୍ପଟି ସରିଯାଇଥିଲେ ବି ଆହୁରି ଅନେକ କିଛି ଗାଳ୍ପିକ କହିପାରିଥାନ୍ତେ ବୋଲି ପାଠକ ମନରେ ଆସେ । ଏଇତ ପ୍ରକୃତ କ୍ଷୁଦ୍ରଗଳ୍ପର ଗାରିମା ।

ଉତାଙ୍କ ସୃଜନଶୀଳ କଥା ସାହିତ୍ୟ ମାଧମରେ ନୂଆ ପରମ୍ପରା ସୃଷ୍ଟି କରିବାରେ ସୁରେନ୍ଦ୍ର ମହାନ୍ତି, କିଶୋରୀ ଚରଣ, ଅଖିଳ ମୋହନଙ୍କ ଗଳ୍ପଗୁଡ଼ିକ ବିଶେଷତଃ ବୌଦ୍ଧିକ ଓ ଦାର୍ଶନିକ ଚେତନାପ୍ଲୁତ ହେବା ସଙ୍ଗେ ସଙ୍ଗେ ମାନବ ଜୀବନର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ମଧରେ ଉତାଙ୍କ ସୃଜନଶୀଳ ଗଳ୍ପର ନୂଆ ପରମ୍ପରା ସୃଷ୍ଟି କରିପାରିଛନ୍ତି ଏ କ୍ଷେତ୍ରରେ ଏମାନଙ୍କ ଅବଦାନ ଅତୁଳନୀୟ । ଗଳ୍ପରେ ନାରୀ ଜୀବନର ନିକ୍ଷେପିତ ଚିତ୍ର, ପୁରାତନ ତଥା ପାରମ୍ପରିକତା ଉପରେ ଆଧୁନିକତାର ଶାସନ, ସାଂସ୍କୃତିକ ଅବକ୍ଷୟର ପୃଷ୍ଠଭୂମି ସଙ୍ଗେ ଭାଷାରେ, ବର୍ଣ୍ଣନାରେ, ଚରିତ୍ରରେ, କାହାଣୀର ପ୍ରତ୍ୟେକ ପାଦରେ ନୂତନତା ପରିଲକ୍ଷିତ ହୁଏ । ଡକ୍ଟର ନାୟକଙ୍କ ଗଳ୍ପରେ ମଧ ବଡ଼ବଡ଼ ଲେଖକଙ୍କ ପରି ଉପରୋକ୍ତ ସମସ୍ତ ଗୁଣ ରହିଛି ।

ଗାଳ୍ପିକଙ୍କ 'ଅସ୍ଥିରବିନ୍ଦୁ', 'ଦୁଇଟି କାହାଣୀ' (ସୃଷ୍ଟି ଓ ସୌନ୍ଦର୍ଯ୍ୟ)ଗଳ୍ପରେ ଗଳ୍ପାଂଶ ନାହିଁ । ଆଭାସଧର୍ମୀ ଗଳ୍ପପାଇଁ ସେ ଯେଉଁ ଆଙ୍ଗିକର ଆଶ୍ରୟ ଲୋଡ଼ିଛନ୍ତି ତାହା ପାଠକୀୟ ଉତ୍କଣ୍ଠାକୁ କୌଣସି ମତେ ପ୍ରତିହତ କରେ ନାହିଁ । ଏ ଗଳ୍ପ ବ୍ୟଞ୍ଜନାଧର୍ମୀ । 'ସୃଷ୍ଟି' ଗଳ୍ପରେ - "ଅନୀତ ଓ ମୁଁ ସୁଖ ସଂସାରରେ ତୃତୀୟର ଆଗମ ଚାହୁଁନା । 'ସୌନ୍ଦର୍ଯ୍ୟ' ଗଳ୍ପରେ - 'ମୁଁ ବୃଦ୍ଧ - ଜୀବନର ଅବଶିଷ୍ଟ ସୌନ୍ଦର୍ଯ୍ୟ ଉପଭୋଗ କରିବି । ସୃଷ୍ଟିର ସୀମା ମଧରେ ସୌନ୍ଦର୍ଯ୍ୟ କିମ୍ବା ସୌନ୍ଦର୍ଯ୍ୟର ସୀମା ମଧରେ ସୃଷ୍ଟିର ସ୍ଥାନ ନାହିଁ ।" ଏଭଳି ମଣିଷ ଜୀବନର ଦର୍ଶନ, ମନସ୍ତତ୍ତ୍ୱ ଆଦରି ଟିକିନିଖି ବିଶ୍ଳେଷଣରେ ଗଳ୍ପାଂଶ ଆଚ୍ଛାଦିତ ହେବା ସଙ୍ଗେ ସଙ୍ଗେ ମଣିଷର ବହୁମୁଖୀ ରୂପ, ମାନବୀୟ ସଂପର୍କର ଭିନ୍ନ ଭିନ୍ନ ସଂଜ୍ଞା, ଜୀବନ ବଞ୍ଚିବାର ନୂଆ ମାଧମ, ଛଳନା, ପ୍ରତାରଣା ସହିତ ମିଳନ ବିରହ ସଂଶ୍ଳିଷ୍ଟ ଜୀବନର ବହୁବିଧ ଦିଗକୁ ସେ ଦେଖାଇବାକୁ ଭିନ୍ନ ଭିନ୍ନ Plot ନିର୍ବାଚନ ସହିତ ରଚନାଶୈଳୀର ଆମୂଳଚୂଳ ପରିବର୍ତ୍ତନ ଆଣି କଥା ସାହିତ୍ୟରେ ନୂଆ ଇମେଜ୍ ସୃଷ୍ଟି କରିବାର ପ୍ରୟାସ ଆରମ୍ଭ କରିଛନ୍ତି ଆଜିକୁ ପଚାଶବର୍ଷ ତଳୁ, ଏକଥା ଭାବିଲେ ଆମକୁ ସ୍ତମ୍ଭୀଭୂତ ହେବାକୁ ପଡ଼େ ।

ଅକାଳରେ ଏ ମୂଲ୍ୟବାନ ଜୀବନ କେବଳ ସାହିତ୍ୟ ଜଗତରୁ ନୁହେଁ ଜୀବନ

ବୃକ୍ଷରୁ ଝଡ଼ିଗଲେ, ଏହା ଓଡ଼ିଆ କଥା ସାହିତ୍ୟ ପାଇଁ ଏକ ବଡ଼ ଆଘାତ । ତାଙ୍କ ଗଳ୍ପ ପଢ଼ିଲେ ମନେହୁଏ ସେ ସବୁକାଳର ସ୍ରଷ୍ଟା । 'ସଂକେତ' ଗଳ୍ପ ଆଦର୍ଶ ଓ ବାସ୍ତବତାବୋଧର ସମନ୍ୱୟରେ ସ୍ୱକୀୟ ଚିନ୍ତାଧାରାର ଏକ ସୁନ୍ଦର ଉଦାହରଣ । ବୃତ୍ତିକୁ ନେଇ ମଣିଷ ବଞ୍ଚେ ସିନା, ପ୍ରବୃତ୍ତିର ଆକ୍ରମଣରେ ନିଜର ଆଦର୍ଶକୁ ଅନାବଶ୍ୟକଭାବେ ବିକ୍ରି କରିଦେଇନଥାଏ । ଲତିକା ଦେହର ବାସ୍ନାଠାରୁ ମନର ବାସ୍ନାକୁ ଗୁରୁତ୍ୱ ଦେଇଛି ଆଉ ମାନିନେଇଛନ୍ତି ଶ୍ରୀପ୍ରଧାନ । ଆଭିଜାତ୍ୟ ଜୀବନର ଉଚ୍ଛୃଙ୍ଖଳ ମାନସିକତା, ମଣିଷର ସ୍ୱଚ୍ଛ କଳେବର ଅନ୍ତରାଳରେ ଥିବା ପାଶବିକ ପ୍ରବୃତ୍ତି, ପୁରୁଷର ନାରୀକୁ ଉପଭୋଗ ଆଶାକୁ ଅତି ଚତୁରତାର ସହ ଲତିକା ନିଜ ଶାରୀରିକ ଦହନ ସତ୍ତ୍ୱେ କଣ୍ଟ୍ରୋଲ କରିଛି ଓ ସୁନ୍ଦର ବ୍ୟଞ୍ଜନାଧର୍ମୀ ଭାଷା ମାଧ୍ୟମରେ ଶ୍ରୀ ପ୍ରଧାନଙ୍କୁ କହିଛନ୍ତି - 'ଛିଃ ଥାଉ, କିଛି ହେଲେ ସାଇତି ରଖ, ମଦ ପାତ୍ରର ଦ୍ରାକ୍ଷା ସରିଯିବ ଯେ' । ସେଥିପାଇଁ ସ୍ପର୍ଶ ପିପାସା ଶ୍ରୀ ପ୍ରଧାନଙ୍କ ମନରେ ଜାଗିଥିଲେ ମଧ୍ୟ ତାହା ପୂର୍ଣ୍ଣ ହୋଇନି । ସେଥିପାଇଁ ନଗ୍ନ ନର୍ତ୍ତକୀର କଳାଶ୍ରୀ ଉପଭୋଗ କରି ହସିଛି ଲତିକା କିନ୍ତୁ ଖୁବ୍ ଚାପା ହସ । ନ ପାଇବା ଭିତରେ ମଧ୍ୟ ପାଇବାର ଏକ ସୁନ୍ଦର ଆନନ୍ଦ ରହିଛି । ପରାଜିତ ପୁରୁଷକାର ନେଇ ଅଧ୍ୟାପକ ପ୍ରଧାନ ଆତ୍ମତୃପ୍ତିର ମଧୁର ମଦିରାରେ ହସି ଉଠିଛନ୍ତି । ମନ ଓ ବିବେକର ଦ୍ୱନ୍ଦ୍ୱ ଭିତରେ ଲତିକା ହୃଦୟର ଆହ୍ୱାନ ଶୁଣିଛନ୍ତି । ମିଳନାତୁର ଏ ଦୁଇଟି ହୃଦୟ ମନର ଶାସନ ନିକଟରେ ଆତ୍ମସମର୍ପଣ କରି ବେଦନାର ବ୍ୟଥାକୁ ମାନିନେଇଛନ୍ତି । ଆତ୍ମତୃପ୍ତିରେ ହସିଉଠିଛନ୍ତି ପ୍ରଣୟର ଏ ସିଦ୍ଧାନ୍ତ ପାଇଁ । ଆଦର୍ଶ ଓ ବାସ୍ତବବୋଧର ସମନ୍ୱୟର ସ୍ୱକୀୟ ପ୍ରତିଭାରେ ମହିମାନ୍ୱିତ ହେବା ସହ ପାରମ୍ପରିକତାର ବୋଝରୁ ମୁକୁଳି ନ ପାରିଥିବାର ଯନ୍ତ୍ରଣା ଓ ଦ୍ୱନ୍ଦ୍ୱକୁ ଚିତ୍ରାୟିତ କରିବା ପାଇଁ ତାଙ୍କର ସଯତ୍ନ ପ୍ରୟାସ ଏ ଗଳ୍ପଟି ।

ସେହିପରି 'ସମ୍ପୁଜାସଖୋୟା' ଗଳ୍ପାଂଶରେ ଦିଆଯାଇଛି ମନସ୍ତତ୍ତ୍ୱର ଚିତ୍ରଟିଏ । ଆଶା ଆକାଂକ୍ଷାର ଗୁଡ଼ି ଉଡ଼ା ଭିତରେ ଚେଇଁ ଉଠିଛି ଘର, ଗାଡ଼ି, ନବାନ୍ନ ପାଇଁ ଚାକରାଣୀର ଲୁଗା - ଅଗଣିତ ସମସ୍ୟାର ସମାଧାନ ହେଉଛି କିଛି ଜ୍ୟୋତ୍ସ୍ନା, ପୁଞ୍ଜାଏ ଫୁଲ, ସାମାନ୍ୟଟିକେ ଚନ୍ଦନ - ସଂକେତଧର୍ମୀ ଭାଷାରେ ଗାଳ୍ପିକ ଏ ସବୁ ମାଧ୍ୟମରେ ସୂଚାଇ ଦେଇଛନ୍ତି ପାରିବାରିକ ଶାନ୍ତି, ପ୍ରାଚୁର୍ଯ୍ୟ ଓ ସ୍ନିଗ୍ଧତା ସମସ୍ୟା ମଧ୍ୟରେ ମଧ୍ୟ ନିହିତ ଥାଏ ।

ଏବର କ୍ଷୁଦ୍ରଗଳ୍ପ ବହିର୍ମୁଖୀ ନୁହେଁ -ଅନ୍ତର୍ମୁଖୀ । ସେଥିପାଇଁ ବୋଧହୁଏ ଗଳ୍ପରେ ଗଳ୍ପାଂଶ ବିଦାୟ ନେବାକୁ ବସିଲାଣି । କେବଳ ମନ ଗହନର ଗୋଟିଏ ଚରମ ସ୍ପନ୍ଦନ ପ୍ରକାଶ କରିପାରିଲେ ସେଇ ଯଥେଷ୍ଟ । ଗଳ୍ପପାଇଁ ଗଳ୍ପାଂଶ ଗୁରୁତ୍ୱପୂର୍ଣ୍ଣ ନୁହେଁ, ଗୁରୁତ୍ୱ ତା'ର ମନ ଗହନର ଅସଲ କଥା - ତାରବାର୍ତ୍ତା-ପାଠକ ପାଇଁ ସେଇ ଯଥେଷ୍ଟ । ଏହି

ସାଂପ୍ରତିକ ଚିନ୍ତାଧାରାକୁ ଗାଳ୍ପିକ ସେ ସମୟରେ ଅର୍ଥାତ୍ ପଚାଶ ବର୍ଷ ପୂର୍ବରୁ ପ୍ରକାଶକରି ଏକ ପ୍ରଗତିଶୀଳ ଚିନ୍ତାଧାରାର ପରିଚୟ ଦେଇଛନ୍ତି ।

'କ୍ଷଣପ୍ରଭା', 'ସୀମାନ୍ତ' ଏ ଦୁଇ ଗଳ୍ପରେ ଗଳ୍ପାଂଶ ନାହିଁ ପୁଣି ଅଛି । ବାହ୍ୟତଃ ଏ କେତୋଟି ଆଭାସ ଚିତ୍ର ମାତ୍ର । ଗଳ୍ପାଂଶ ଅନ୍ତଃସ୍ଥଳରେ ପ୍ରଚ୍ଛନ୍ନ ଭାବେ ସଂରକ୍ଷିତ । ଏ ଗଳ୍ପ ସମୂହ ବ୍ୟଞ୍ଜନାଧର୍ମୀ । ତେଣୁ ଅଣୁ ଭିତରେ ପରମାଣୁ ଶକ୍ତି ନିହିତ ଥିବା ଭଳି ଏଥିରେ ବହୁକଥା ପ୍ରକାଶିତ ହୋଇଛି ଯାହାକି ଆଧୁନିକ ଗଳ୍ପର ବୈଶିଷ୍ଟ୍ୟ । 'ସୀମାନ୍ତ' ଗଳ୍ପରେ ଆକାଶର ଅଗଣିତ ତାରକା ମଧ୍ୟରେ ଗୋଟିଏ ମାତ୍ର ପରିଦୃଷ୍ଟ ତାରା – ତାହା ତାରକା ନୁହଁ ଗୋଟିଏ ସତ୍ୟ । ଦୁର୍ବଳ ସମୟରେ ସକଳ ଅତୀତକୁ ମନେ ପକାଇବାର ଆନନ୍ଦ ଅଛି । ତାହାହିଁ ଘଟିଛି ସଂଗ୍ରାମ କ୍ଷେତ୍ରରେ 'ସୀମାନ୍ତ'ଗଳ୍ପରେ । ଏ ପ୍ରକାର ବ୍ୟଞ୍ଜନାଧର୍ମୀ ଗଳ୍ପ ସେ ସମୟରେ ଖୁବ୍ କ୍ୱଚିତ ଲେଖା ହୋଇଛି ଏଥିରେ ସନ୍ଦେହ ନାହିଁ ।

ତାଙ୍କ ଗଳ୍ପଗୁଡ଼ିକ ଏକ ଦେଶଦର୍ଶୀ ନୁହେଁ କି ପକ୍ଷଭୁକ୍ତ ନୁହେଁ । ଆଦର୍ଶକୁ ଗୁରୁତ୍ୱ ଦେଉଥିବା ସତ୍ତ୍ୱେ ନୈତିକ ବିଚ୍ୟୁତି ଓ ସ୍ଖଳନର ସାମାଜିକ ବାସ୍ତବକତାକୁ କେବେ ଏଡାଇ ଯାଇହେବନି । ମନର ବିଭିନ୍ନ ଅବସ୍ଥାର ପ୍ରତିନିଧିତ୍ୱ କରିଛି 'ନିଦ' ଗଳ୍ପ । ସାଧାରଣ ଘଟଣାକୁ ନେଇ ଗୋଟିଏ ପରିବେଶର ବର୍ଣ୍ଣନା ମାତ୍ର । ଅଧ୍ୟାପକଙ୍କ ଅନ୍ୟବନ୍ଧୁ ସହ ନିଭୃତ ଅନ୍ଧକାର କୋଠରୀକୁ ପ୍ରବେଶ ଓ ସେଠାରେ ପ୍ରିୟ ଛାତ୍ରର ଶବ ଓ ଟେବୁଲ ଉପରେ ଶୁଭ ପରିଣୟ ପତ୍ରଟି ଯାହାକି ପାଠକମାନଙ୍କ ଭାବନାର ପରିସମାପ୍ତି ଘଟାଇଛି । କୌଣସି ବର୍ଣ୍ଣନାର ଆଧିକ୍ୟ ନଥିଲେ ବି ସଂକେତ ମାଧ୍ୟମରେ ଗାଳ୍ପିକ ସୂଚେଇଛନ୍ତି ନିମନ୍ତ୍ରଣ ପତ୍ର ତା' ପ୍ରଣୟିନୀର ଅପର ଯୁବକ ସହ ବିବାହର ସଂକେତ । ସେଥିପାଇଁ ସେ ଜୀବନ ଯୁଦ୍ଧରେ ପରାଜିତ ହୋଇ ଆତ୍ମହତ୍ୟା କରିଛି ।

'ମରୁ ଓ ମୌସୁମୀ' ଗଳ୍ପରେ ଆଧୁନିକ ନାରୀର ବେପରୁଆ ମନୋବୃତ୍ତିର ଚିତ୍ର ପ୍ରକାଶ ପାଇଛି । ଅନେକ ଭାବନ୍ତି ରୂପ ଓ ପାର୍ଥିବ ବିଭବ ହିଁ ନାରୀର ରକ୍ଷାକବଚ । ଉର୍ବଶୀ ସେଇଆ ଭାବିଛି । ଅଭାବ କ'ଣ ଜାଣିନି । ଦେହକୁ ବର୍ଣ୍ଣିଳ କରିଛି, ମନକୁ ସ୍ୱପ୍ନରେ ସବୁଜ କରିଛି, କିନ୍ତୁ ଜଞ୍ଜାଳକୁ ସେ ପସନ୍ଦ କରେନା । ବିବାହରେ ନାରୀର ସ୍ୱାଧୀନତା ନଷ୍ଟ ହୁଏ ବୋଲି ତାର ଯୁକ୍ତି । ପ୍ରବୀର ଉର୍ବଶୀର ବନ୍ଧୁ । ସେ ତା' ଘରକୁ ଆସନ୍ତି । ଉର୍ବଶୀ ତାଙ୍କୁ ଅଭ୍ୟର୍ଥନା କରିଛି କିନ୍ତୁ ପ୍ରବୀରର ପ୍ରସ୍ତାବ ସତ୍ତ୍ୱେ ସେ ବିବାହରେ ରାଜି ହୋଇନି, କହିଛି – "ଯେଉଁଠି ଦେହ, ମନ ଓ ଆତ୍ମାର ସ୍ୱାଧୀନତା ନାହିଁ ସେଠି ଜୀବନ ନିହାତି ବୈଚିତ୍ର୍ୟହୀନ । ବିଚିତ୍ର ଅନୁଭୂତି ଓ ବିବିଧ ଆନନ୍ଦ ହିଁ ମୋର କାମ୍ୟ ।"

ଉର୍ବଶୀ ସ୍ୱେଚ୍ଛାଚାରୀ ହୋଇ ନିଜ ଅହଂରେ ନିମଜ୍ଜିତ । ସମୟ କିନ୍ତୁ ଆଗେଇ ଚାଲିଛି । ଅନୁଶୋଚନାରେ କିନ୍ତୁ ବୟସ ଅତିକ୍ରାନ୍ତ ସହ ପ୍ରବୃତ୍ତି ଜାଗ୍ରତ । ପ୍ରବୃତ୍ତି ଓ ପିପାସାର ପରିତୃପ୍ତି ପାଇଁ ଅଭାବ ଅନଟନରେ ନିତି ବଞ୍ଚୁଥିବା ରିକ୍‌ସାବାଲା ଓ ତା ସ୍ତ୍ରୀକୁ ଦେଖି ନିଜକୁ ନିଃସ୍ୱ ଭାବିଛି । ଜୀବନର ପୂର୍ଣ୍ଣତା ପାଇନି । ସମୟକୁ ସମ୍ମାନ ଦେଇପାରିନି ସେଥିପାଇଁ ସେ ହରାଇଛି ସମୟକୁ - ପ୍ରବୀରକୁ - ଜୀବନର ମଧୁରିମାକୁ । ଜୀବନ ତା ପାଇଁ ନୈରାଶ୍ୟର ମରୁ-ମରୀଚିକା । ନୈରାଶ୍ୟବୋଧକୁ ଉର୍ବଶୀ ଚରିତ୍ର ମାଧ୍ୟମରେ ଦର୍ଶାଇ ଲେଖକ ଭାରତୀୟ ସଂସ୍କୃତିର ଆଦର୍ଶ ବୈବାହିକ ଜୀବନକୁ ଓ ଫ୍ରୟେଡ୍‌ୀୟ ମନସ୍ତତ୍ତ୍ୱର ସମନ୍ୱୟ ମଧ୍ୟରେ ଗଳ୍ପରେ ଏକ ନୂତନ ଦୃଷ୍ଟିକୋଣ ଦର୍ଶାଇଛନ୍ତି ।

'ଅଙ୍ଗାର' ଗଳ୍ପରେ ଗାଳ୍ପିକଙ୍କ ନିରବ ମନର ନିରବ ବିପ୍ଳବ ସ୍ଥାନ ପାଇଛି । ଶଶିକାନ୍ତ, ଅନୁରଞ୍ଜନ ଦୁଇବନ୍ଧୁ ଗଳ୍ପ ଲେଖନ୍ତି । ବଡ଼ ହେବା ପରେ ଶଶିକାନ୍ତ ଖୁବ୍ ଭଲ ଲେଖୁଥିଲେ ମଧ୍ୟ ବଣମଲ୍ଲୀ ପରି ଝଡ଼ିଯାଇଛି ପରିସ୍ଥିତିରେ ପଡ଼ି । କାରଣ, ଏ ଯୁଗ ବିଜ୍ଞାପନର ଯୁଗ, ସେ ସମ୍ବଳହୀନ । କିନ୍ତୁ ଅନୁରଞ୍ଜନ କ୍ଷମତା ବଳରେ ଶାସକ ପାଇଟି ଯାଇଛି, ପୁଣି ସେତିକି ନୁହେଁ ତାର ଲେଖା ପାଇଁ ପାଇଛି ସାହିତ୍ୟ ଏକାଡେମୀ ପୁରସ୍କାର । ତଥାକଥିତ ସମାଜରେ ଘଟୁଥିବା ଘଟଣା । ଶଶୀକାନ୍ତଙ୍କ ପତ୍ନୀ ସୁକାନ୍ତିଙ୍କୁ କିନ୍ତୁ ଉଭୟ ବନ୍ଧୁ ପଢ଼ିବା ସମୟରେ  ଭଲପାଉଥିଲେ  । ପ୍ରେମ ଯେ ମୃତ୍ୟୁକୁ ଅମୃତ କରିଦିଏ ତାହା ପ୍ରତିପାଦିତ ହୋଇଛି ଏ ଗଳ୍ପରେ । ନିଃସ୍ୱ ରିକ୍ତ ଶଶୀବାବୁ ଶ୍ରୀମତୀଙ୍କ ମୃତ୍ୟୁ ଶଯ୍ୟାରେ ଯେଉଁ ସ୍ପର୍ଶ ପାଇଛନ୍ତି  ସୁକାନ୍ତିଙ୍କ ନିଷ୍ପ୍ରଭ ନରମ ଓଠର ସରୁ ଚୁମ୍ବନ-ଟୋପାଏ ଅଶ୍ରୁ ମୃତ୍ୟୁ-ଉପରେ ବିଜୟବାନା ଉଡାଇଛି । ସେହି ମୃତ୍ୟୁ ଯାହା ଆସିଥିଲା ତାଙ୍କ ଅସହାୟତାର ସୁଯୋଗ ନେଇ ଓ ବନ୍ଧୁର କୃତଘ୍ନତାର ଶିକାର ହୋଇ-ଏ-ମୃତ୍ୟୁ, ଯନ୍ତ୍ରଣା ଭିତରେ ବି ଆନନ୍ଦ ଦିଏ - ପ୍ରେମର ଉଲ୍ଲାସରେ ଉଲ୍ଲସିତ କରେ ଶରୀରକୁ - ସ୍ୱର୍ଗୀୟ ଭାବରେ ହୃଦୟରେ ଅମୃତର ବାରି ସିଞ୍ଚେ - ସେଇଥିପାଇଁ ବି ଏ ମୃତ୍ୟୁକୁ ସ୍ୱାଗତ କରିବା ଯୋଗ୍ୟ ।

'ଅତୀତ ବର୍ତ୍ତମାନ ଭବିଷ୍ୟତ' ଗଳ୍ପରେ ଲେଖକ ସାମାଜିକ ମନୋବୃତ୍ତିକୁ ଶେଷରେ ପରିବର୍ତ୍ତନ କରିଛନ୍ତି । ନାରୀର ପ୍ରଗତି ପ୍ରତି ଗାଳ୍ପିକ ସତର୍କ ଅଛନ୍ତି କିନ୍ତୁ ସଂଯତ ଜୀବନ ଚାଲିବାର ଭାବନାରେ ଲେଖକଙ୍କ ପ୍ରତ୍ୟୟ । ସେଇଥିପାଇଁ ବୋଧହୁଏ ଗଳ୍ପରେ ଅଧ୍ୟାପକ ତାଙ୍କ ପିତୃଦେବଙ୍କ ଚଳଣିରେ ପରିବର୍ତ୍ତନ କରିନାହାନ୍ତି - ଝିଅକୁ ପାଠ ପଢ଼ାଇବାରେ ଅନିଚ୍ଛା ପ୍ରକାଶ ନ କରି ସଂଯତ ଭାବରେ ଚଳିବାର ଇଙ୍ଗିତ ଦେଇଛନ୍ତି । ସଭ୍ୟଶିକ୍ଷିତ ନାଁରେ ଉଚ୍ଛୃଙ୍ଖଳ ନ ହେବାକୁ କହି ଗାଳ୍ପିକ କହିବାକୁ ଚାହିଁଛନ୍ତି ଯେ ଝିଅ ଥିବା ସମୟରେ ସବୁ ଦୋଷରେ କ୍ଷମଣୀୟ ହୋଇଥାଏ,  କିନ୍ତୁ ଝିଅରୁ ବୋହୂ ହେଲେ

ସେ ସବୁ ଦୋଷ ଗୁଣ ଭବିଷ୍ୟତରେ ପାରିବାରିକ ଶାନ୍ତିକୁ ବ୍ୟାହତ କରିଥାଏ । ଗଳ୍ପର ପରିସମାପ୍ତି ଗଳ୍ପର ଅସମାପ୍ତ ଭାବକୁ ସୂଚେଇଥିବାରୁ ପାଠକ ମନରେ ଅନେକ ଭାବନାର ଖିଅ ଯୋଡ଼ିଦିଏ ।

'ଚନ୍ଦ୍ରରାତିର କାହାଣୀ' ଗଳ୍ପରେ ପରିବାରର ଅଭାବ ଅନଟନ ଆର୍ଥିକ ସମସ୍ୟା ମିନିକୁ ବିପଥଗାମୀ କରାଇଛି । ପିତା ଉତ୍ପଳ ସେନଙ୍କ ନିଅଣ୍ଟିଆ ପେନ୍‌ସନ୍ ହେତୁ ପିଲାମାନଙ୍କ ପାଠପଢ଼ା ବନ୍ଦ ହୁଏ - ମିନିର ମାସକୁ ଶହେ ଟଙ୍କାର ଚାକିରି ଘର ଚଳିବା ପାଇଁ ଯଥେଷ୍ଟ ନୁହେଁ । ସେଥିପାଇଁ ମିନି ଯୌବନର ଅଗ୍ନିଶିଖାରେ ଆହୁତି ପାଇଁ ଇନ୍ଧନ ଯୋଗାଇ ବାକିଥିବା ଚାରିମାସର ଘର ଭଡ଼ା ଦେଇଛି । ପିତାର ପିତୃତ୍ୱ ଧିକ୍‌କାର କରିଛି - ସେ ଜୀବନ ସମସ୍ୟାରୁ ପଳାୟନପନ୍ଥୀ ସାଜିଛନ୍ତି - ଏଥିରୁ ନିବୃତ୍ତି ପାଇଁ ଆତ୍ମହତ୍ୟା କରିଛନ୍ତି, ସମସ୍ୟାର ସମାଧାନ ମନେକରି । ବାସ୍ତବବାଦୀ ଗଳ୍ପ ଭିତରେ ଭୀରୁତା, ନିଜକୁ ନିଃଶେଷ କରିବା ଚିନ୍ତା- ଆଦର୍ଶ ଓ ବାସ୍ତବତାର ଦ୍ୱନ୍ଦ୍ୱ- ସଂଘର୍ଷ । ମିନିର ଦେହ ଓ ସେଥିରୁ ସୃଷ୍ଟ ମିଳିତ ବିଳାପ- ବିବେକ ଓ ବାସ୍ତବତାର ବିଳାପ । ଉତ୍ପଳ ସେନର ଭାବନା - ପିତାର ଭାବନା -ପରମ୍ପରାବାଦୀ ଆଦର୍ଶର ଭାବନା । ଅନ୍ୟପଟେ ମିନିର ଭାବନା ସ୍ୱାଧୀନ ବାସ୍ତବବାଦୀ ଭାବନା - ଜୀବନ ବଞ୍ଚିବାର ଭାବନା । ପାରମ୍ପରିକତାର ବୋଝ ଓ ସେଥିରୁ ମୁକୁଳି ନ ପାରି ହନ୍ତସନ୍ତ ହେଉଥିବା ମଣିଷର ଯନ୍ତ୍ରଣା ଓ ଦ୍ୱନ୍ଦ୍ୱକୁ ସୁନ୍ଦର ଭାବେ ଏଥିରେ ରୂପାୟିତ କରାଯାଇଛି । ପୁରୁଷ ନାରୀ ମଧ୍ୟରେ ବୈଧ-ଅବୈଧ ସଂପର୍କ, ଅତ୍ୟାଧୁନିକ ରୁଚି ସହ ପାରମ୍ପରିକତାର ସଂଘର୍ଷ, ଦେହ ଓ ପ୍ରେମୋପଲବ୍ଧିର ନବୀନ ସଂସ୍କରଣ ଏହି ଗଳ୍ପରେ ଦେଖିବାକୁ ମିଳିଛି ।

'ଅପୂର୍ଣ୍ଣାର ଆତ୍ମଗୀତି' ଗଳ୍ପରେ ଫ୍ରୟେଡ଼ୀୟ ଚିନ୍ତା ରହିଛି, ବାମବାଦୀ ଚିନ୍ତା ମଧ୍ୟ ଲୁକ୍‌କାୟିତ ହୋଇ ରହିଛି । ଗୋଟିଏ ମନର ଆଉ ଗୋଟିଏ ମନ ପ୍ରତି ଆକର୍ଷଣ । ଧୀରା ଅପୂର୍ଣ୍ଣା । ଶରୀର ଖଣ୍ଡିତ । ତେଣୁ କାହାକୁ ଭଲ ପାଇବାର ଶକ୍ତିହୀନତା ତା' ମନରେ ଆଣିଦିଏ ଶୂନ୍ୟତାବୋଧ । କିନ୍ତୁ ଧୀରାର ବା ଦୋଷ କ'ଣ ? ସେ ବି ସ୍ୱପ୍ନ ଦେଖି ଜାଣେ - ସେ ଦେଖେ ସ୍ୱପ୍ନ- ପରସ୍ପର ବିରୋଧୀ ସ୍ୱପ୍ନ । ସେ ବିକୃତ ହେଲେ ମଧ୍ୟ ତା' ମନରେ ଦେହର ବାସ୍ନା ଉଙ୍କିମାରେ । ଧୀରା ପୁଣି ଶୁଣେ ଆରପଟ କୋଠରୀରୁ ତା ଭଉଣୀ ମୀରା ଓ ବିନୟର ପ୍ରେମର ସ୍ୱର-ଦେହ ଆକର୍ଷଣର ସ୍ୱର । ବିନୟ ଧୀରାକୁ ଆଘାତ ଦେଇ କହିଥିଲା - "ଯିଏ ଖଣ୍ଡିତ ଉଦୟ ସାଥେ ହିଁ ତାର ଅସ୍ତ' ଦୁନିଆଁ ଲୋଡ଼େନା ସେ ସ୍ଥିତିଶୀଳ ବସ୍ତୁକୁ ।" ବିନୟ ତାର ନାରୀତ୍ୱକୁ ଅପମାନ କରିଛି । ସେଇଥିପାଇଁ ଧୀରାର ମନ ଈର୍ଷାତୁରା ହୋଇ ବିଦ୍ରୋହ କରି ଉଠିଛି - ମନ ଚାହିଁଛି,

ପୁରୁଷର ସାନ୍ନିଧ । ଦେହ ଚାହୁଁଛି ଅନେକ କିଛି, ଅପୂର୍ଣ୍ଣତା ଚାହୁଁଛି ପୂର୍ଣ୍ଣତା । ସେଇ ଈର୍ଷା ଓ ବିଦ୍ରୋହଭାବ ପ୍ରକାଶିତ ହୋଇଛି ଅନ୍ଧକାର ଭିତରେ ଆଖି ଆଗରେ ଗୋରାତକତକ ଯୌବନସଂପନ୍ନ ଚାକର ରତନାକୁ ଦେଖି । ଅପୂର୍ଣ୍ଣ ହେଲେ ମଧ ସେ ସଂପୂର୍ଣ୍ଣ ହେବାକୁ ଚାହେଁ ଏ ଜନ୍ମରେ । ଦେହର ଅଭାବବୋଧକୁ ପରିପୂର୍ଣ୍ଣ କରିଛି ଚାକର ପାଖରେ - ଅନ୍ଧକାର ଭିତରେ ନିଜର ସଂଭ୍ରାନ୍ତପଣିଆ ଭୁଲି ଚାକର ରତନାର ବାହୁବନ୍ଧନର ଉଷ୍ଣତାରେ ନିଜକୁ ପରିପୂର୍ଣ୍ଣ କରିଛି । 'ଗୋବରୀ' ପରି ଧୀରା ଜୀବନରେ ପ୍ରାୟ ସେହି ଏକା କଥା ହିଁ ଘଟିଛି । ଗୋବରୀ ନିଜର ଗୁଗ୍ଣାବସ୍ଥାକୁ ଉପଲବ୍ଧ କରି ସତର୍କ ରହିଛି-ନାରୀତ୍ୱ ଅସଂପୂର୍ଣ୍ଣ ରହୁ ପଛକେ । କିନ୍ତୁ ଗୋଟିଏ ଘଟଣା - କୂଳବଧୂଟିର ଶଙ୍ଖାପିନ୍ଧା ହାତରେ ପଇସା ଦାନ ଗୋବରୀର ସୀମନ୍ତିନୀ ହେବାର ସୁପ୍ତ ଆଶାକୁ ଜାଗ୍ରତ କରିଛି । ଶେଷରେ ପରିବେଶର ଶିକାର ହୋଇ ଦେହର କ୍ଷୁଧାଠାରେ ସଂଯତ ମନ ତାର ହାର ମାନିଛି । ଧୀରା କିନ୍ତୁ ଏ ଗଳ୍ପରେ ଈର୍ଷାତୁରା ହୋଇଛି ମୀରା ଓ ବିନୟର ସଂପର୍କ ଦେଖି, ମନ ତାର ନୀରବ ବିଦ୍ରୋହ କରିଛି ନିଜର ବିକୃତ ଅଙ୍ଗପାଇଁ । ତାର ଅବଚେତନ ମନ କିନ୍ତୁ ଅପୂର୍ଣ୍ଣ ଶରୀରକୁ ମାନିବାକୁ ପ୍ରସ୍ତୁତ ନୁହେଁ । ଅଙ୍ଗ ଅପୂର୍ଣ୍ଣ ହେଲେ ମଧ ଦେହରେ ସେ ସମର୍ଥ । ତାର ଏହି ଭାବବୋଧରୁ ଜନ୍ମ ନେଇଛି ବିଦ୍ରୋହ । ସେଇଥିପାଇଁ ଲେଖକ ଧୀରାର ରତନା ସହ ଶାରୀରିକ ମିଳନକୁ ବିଦ୍ରୋହ ଭାବର ପ୍ରଚ୍ଛନ୍ନତା ବୋଲି ପ୍ରକାଶ କରିଛନ୍ତି । ଶରୀରକୁ ଗାଳ୍ପିକ ଅସ୍ୱୀକାର କରିପାରିନାହାନ୍ତି । ଧୀରା ପାଇଁ ଏ ଦେହ ସତ୍ୟ, ନାରୀ ପାଇଁ ପୁରୁଷର ପ୍ରେମ ସତ୍ୟ, ମନ ପାଇଁ ଦେହ ସତ୍ୟ । ନୀତିବୋଧର ହତ୍ୟା ଭୟରେ ଆଭିଜାତ୍ୟର ଦୁହାଇଦେଇ ଧୀରା କ'ଣ ଦୈହିକ କ୍ଷୁଧାର ହତ୍ୟା କରିବା ଜୀବନ ପାଇଁ ସମ୍ଭବ କି ? ଫ୍ରଏଡ୍‌ଙ୍କ ମତରେ ତାହା ବୃଥା ଆଦର୍ଶ, ଫାଙ୍କା ଆଓ୍ୱାଜ ।

ଫ୍ରଏଡ୍ କହନ୍ତି - "ମଣିଷ ମନର ଅଚେତନ ଅବସ୍ଥାରେ ସୁରକ୍ଷିତ କାମନା ବା ଇଚ୍ଛା ଶରୀରର ଆଦି ପ୍ରବୃତ୍ତିରୁ ଶକ୍ତି ଆହରଣ କରୁଥାଏ । ବାସ୍ତବତା ସହିତ ଖାପ ଖୁଆଇ ଚଳୁଥିବା ଓ ବାହ୍ୟ ବିପଦକୁ ଆଡ଼େଇ ଯାଉଥିବା ମଣିଷ ମନର ଚେତନ ଅଂଶ ଅପେକ୍ଷା ସେହି ଅଚେତନ ଅଂଶ କ୍ରିୟାଶୀଳ ହୋଇଥାଏ ଓ ତତ୍‌କାଳୀନ ସୁଖ ଅନୁଭବ କରୁଥାଏ । ସ୍ୱାଭାବତଃ ଏହି ଆଦି ପ୍ରବୃତ୍ତି ବିପୁଳଭାବେ ଯୌନ ସଂପର୍କିତ ଅଥବା ଧ୍ୱଂସାତ୍ମକ ହୋଇଥାଏ । ସାମାଜିକ ଓ ସଭ୍ୟ ମାନସକ୍ରିୟା ସହିତ ଏହା ସମ୍ପର୍କ ରଖିବାକୁ ବାଧ ।"

ଗାଳ୍ପିକଙ୍କ ଫ୍ରଏଡୀୟ ଚେତନାଭିତ୍ତିକ ଗଳ୍ପଗୁଡ଼ିକରେ ସୁଦ୍ଧା ଯୌନତାର ନାରକୀୟତା ସତ୍ତ୍ୱେ ଜୀବନର ଶୁଚିସ୍ନିଗ୍‌ଧ ଶୁକ୍ରତାରା ପ୍ରତିଫଳନ ସମ୍ଭବ ବୋଲି ଆଶା ପ୍ରକାଶ ପାଇଛି । ଏ ଗଳ୍ପରେ ଆଉଏକ ବଡ଼କଥା ଆମ ଦୃଷ୍ଟିକୁ ଆସେ । ଆମେ ଆଜି

ଯେଉଁ ବାମାବାଦୀ ଚିନ୍ତାଧାରାର ଡିଣ୍ଡିମ ପିଟୁଛୁ, ଗାଳ୍ପିକ ପଚାଶ ବର୍ଷ ପୂର୍ବରୁ ଅତି ସନ୍ତର୍ପଣତା ସହକାରେ ଏ ଗଳ୍ପରେ ସେ ଭାବଧାରା ପ୍ରକାଶ କରିଛନ୍ତି । ଏହା ବାସ୍ତବିକ ବିସ୍ମୟକର ।

'ଫୁଲରକବର' ଗଳ୍ପଟି ମୁହୂର୍ତ୍ତାନ୍ତିକ ମାନସିକତାର ପ୍ରତିକ୍ରିୟା । ଗଳ୍ପଟିରେ ପୁରୁଷ ଚରିତ୍ରଟି ଅଜାଣତରେ ପହଞ୍ଚି ଯାଇଛି ଏଭଳି ଏକ ସ୍ଥାନରେ - ସମାଜଅସ୍ୱୀକୃତ ଜାଗା ଓ ଚରିତ୍ର 'ତାନି' ପାଖରେ । ଗାଳ୍ପିକଙ୍କ ଭାଷାରେ - 'ଅନ୍ଧାର ଏଠିବି ପଶିଛି ହେଲେ ସର୍ବାଙ୍ଗ ବୁଡ଼େଇ ପାରିନି, ଏଇ ନୀଡ଼ଟିର ଜନଜୀବନ ଅନ୍ଧାରରେ ଥିଲେ ବି ଆଲୁଅ ଜାଳୁଛନ୍ତି - ଅନ୍ଧାରକୁ ସୌଭାଗ୍ୟ ମଣୁଛନ୍ତି- ମନ କିଣୁଛନ୍ତି-ପଥ ହୁଡୁଛନ୍ତି । କିଛି କ୍ଷଣ ପାଇଁ ହୁଏତ ଗୋଟି ଗୋଟି ଜୀବନକୁ ବାନ୍ଧୁଛନ୍ତି ସପନର ସୁନାହାର ପିନ୍ଧାଇ, ଫୁଲର ମହକ ଶୁଘାଇ ସ୍ୱପ୍ନାବିଷ୍ଟ କରୁଛନ୍ତି ଆଗନ୍ତୁକଙ୍କୁ । "ତାନି ପାଖରେ ପାପହିଁ ପୁଣ୍ୟ । ଜୀବନ ଓ ଜୀବିକା ପାଇଁ ସବୁ ପାପ ଏଠି ପୁଣ୍ୟରେ ପରିଣତ ହୁଏ । ଏପରି ଏକ ସ୍ଥାନରେ ପହଞ୍ଚି ନାୟକଙ୍କ ସେ ମୁହୂର୍ତ୍ତର ମନର ବିଶ୍ଳେଷଣ-ଦେହର ମୂଲ, ଫୁଲର ସଉଦା-ମନରେ ପ୍ରଶ୍ନବାଚୀ ? ପୁଣି ପର ମୁହୂର୍ତ୍ତରେ ମେଘରଙ୍ଗର ଶାଢ଼ୀ ଭିତରେ ତାନିର ଭଙ୍ଗୀ - ତା ଦେହର ରକ୍ତବର୍ଣ୍ଣର ମାଂସପେଶୀ -ସ୍ଫୀତ ବକ୍ଷ ଚୋଳ-ତାନି ଚାହୁଁଛି ପୁରୁଷୋଚିତ ହାତର ସ୍ପର୍ଶ । ସେ ସମୟରେ ତାନିକୁ ନୀତିବାକ୍ୟ ଶୁଣାଇବା ଅଯୌକ୍ତିକ ମନେହୁଏ । ସେ ସ୍ୱୀକାର କରୁଛନ୍ତି 'ମୁଁ ଆହ୍ୱାନ କଲି ନାରୀତ୍ୱର ପରାଜୟକୁ ।' ତେଣୁ ଲେଖକ ଜାଣିଶୁଣି ପୁରୁଷ ଚରିତ୍ରଟିକୁ ଆଦର୍ଶମୁଖୀ କରାଇ ତାନିକୁ ଅପମାନ ଦେବା ଉଦ୍ଦେଶ୍ୟରେ ପାଖ କୋଠରୀରୁ ତାନି ଶାଢ଼ୀ ପରିବର୍ତ୍ତନ କରି ଆସିବା ପର୍ଯ୍ୟନ୍ତ ଅପେକ୍ଷା କରି ବସିଥିଲେ । ଅବଶ୍ୟ ଆଜିର ସମାଜସେବୀ ସଂସ୍ଥା ଭଳି ପତିତା ନାରୀର ଉଦ୍ଧାର ପାଇଁ, ସମାଜ ସୁଧାରିବା ଉଦ୍ଦେଶ୍ୟ ନେଇ ଲେଖକ ଚରିତ୍ରଟିକୁ ସେଠାରେ ଉପସ୍ଥିତ କରାଇ ତାନି ମନକୁ ପରିବର୍ତ୍ତନ କରିବାକୁ ଚେଷ୍ଟା କରିବାର ପ୍ରୟାସ ସ୍ୱାଗତଯୋଗ୍ୟ । କିନ୍ତୁ ଏ ଗଳ୍ପରେ ସେ ଭାବର କୌଣସି ଆଭାସ ଦେଖିବାକୁ ମିଳେନା । ତେଣୁ ଏ ଗଳ୍ପର ସମାପ୍ତିରେ ନିର୍ଦ୍ଦିଷ୍ଟ ପରିଣତିର ସୂଚନା ନାହିଁ । ଗଳ୍ପଟି ଯେତିକି ଆକସ୍ମିକ ସେତିକି ଜିଜ୍ଞାସାମୂଳକ । ଯେତେବେଳେ ତାନି ଆଗନ୍ତୁକଙ୍କ ଆଗରେ ନିଜକୁ ଅପମାନିତ ବୋଧକରି ସାନ ମନେ କଲା, ସେତେବେଳେ ସେ ସୁନ୍ଦରୀ ଓ ଉରମାରୁ ସୁତୀର୍ଥାକୁ ପରିବର୍ତ୍ତିତ ହେଲା କିପରି ? ଏହିପରି ଅସଂଖ୍ୟ ପ୍ରଶ୍ନ ମନକୁ ଆସେ, ବହୁତ କିଛି କଥା ଭାବିବାକୁ ଏ ଗଳ୍ପରୁ ଉପାଦାନ ମିଳେ । ନାରୀତ୍ୱ ରୂପକ ଫୁଲ ଆଗନ୍ତୁକ ଚରିତ୍ର ପାଖରେ କବର ପାଇଛି । ସେଥିପାଇଁ ଗଳ୍ପ ସଂକଳନ ନାମ 'ଫୁଲର କବର' ରଖାଯାଇଛି ।

ଡକ୍ଟର କ୍ଷେତ୍ରବାସୀ ନାୟକଙ୍କ ଗଳ୍ପର ଭାଷାର ଅନନ୍ୟତା ଖୁବ୍ ଆକର୍ଷଣୀୟ ।

ଗଳ୍ପଗୁଡ଼ିକର ଭାଷା ଅଦ୍‌ଭୂତ ଚମକ ଖେଳାଏ ପାଠକ ହୃଦୟରେ । ଭାଷାର ଛନ୍ଦାୟିତ ଶବ୍ଦ, ଅପୂର୍ବ ଗୀତିମୟତାରେ ସତେ ଯେମିତି ମଣ୍ଡିତ । Wordsworth ତାଙ୍କ Preface ରେ କହନ୍ତି ଗଦ୍ୟ ଓ ପଦ୍ୟର ଭାଷାରେ କୌଣସି ପ୍ରଭେଦ ନାହିଁ , ଅଛି କେବଳ ଛନ୍ଦରେ । କବିତା ଯଦି ଛନ୍ଦହୀନ ହୁଏ ଅସୁବିଧା । ବିଷୟବସ୍ତୁ ଓ ରସ ସୃଷ୍ଟି ସମ୍ପର୍କରେ ମଧ୍ୟ କବିତା ଓ ଗଦ୍ୟରେ କୌଣସି ପାର୍ଥକ୍ୟ ଥିଲାପରି ମନେହୁଏ ନାହିଁ- ଅବଶ୍ୟ ଏଇଟା ବିଚାରସାପେକ୍ଷ । ଗଳ୍ପ ଓ କବିତା ଭଳି ଏ ଯୁଗର ଜନପ୍ରିୟ ସାହିତ୍ୟିକ ରୂପ କିପରି ଏକତ୍ର ସହାବସ୍ଥାନ କରିଛନ୍ତି ତାହା ଦେଖିବାକୁ ମିଳେ କ୍ଷେତ୍ରବାସୀଙ୍କ ଗଳ୍ପରେ । ଏବେ ଉଭୟ ଭିତରେ ଯେତେ ପାର୍ଥକ୍ୟ ଥିଲେ ବି ଗାଳ୍ପିକଙ୍କୁ କ୍ଷେତ୍ରବାସୀଙ୍କ କବି ଓ କବିଙ୍କୁ କିଞ୍ଚିତ ଭାବେ ଗାଳ୍ପିକ ହେବାକୁ ପଡ଼ିବ ନଚେତ୍ ପ୍ରକାଶଭଙ୍ଗୀ ଦୁର୍ବଳ ହୋଇପଡ଼ିବ । ଗାଳ୍ପିକଙ୍କୁ ସଫଳତା ଆଣିଦେଇଛି ଗୀତିମୟ ପ୍ରକାଶଭଙ୍ଗୀ । ଶୈଳୀର ବ୍ୟଞ୍ଜନାତ୍ମକତା ଓ ଭାଷା ବିନ୍ୟାସର ଗୀତିମୟତା- ଭାଷାର ସାଞ୍ଚୁ ଭିତରେ ରକ୍ଷିତ । ଆଭିଜାତ୍ୟ ଶବ୍ଦ ସଂଯୋଜନାରେ ମଧ୍ୟ ଗାଳ୍ପିକ ଧୂରନ୍ଧର । ପାଠକ ତାଙ୍କ ଗଳ୍ପ ପଢ଼ିଲାମାତ୍ରେ ଏକଥା ଅନୁଭବ କରେ । ଉଦାହରଣ ସ୍ୱରୂପ - "ମୁଁ ଅନେକ ଧ୍ୱନି ଶୁଣିଛି, କୀର୍ତ୍ତନ, ସଂକୀର୍ତ୍ତନ, ଗୁଞ୍ଜରଣ, ସମ୍ବୋଧନ, ରୋଦନ, ବିଳାପନ । ମୁଁ ପହଁରିଛି ସେଇ ଧ୍ୱନିରେ, ଉଡ଼ିଛି ଆକାଶରେ, ଭାସିଛି ଆଗାମୀର ସ୍ୱପ୍ନ ଜଗତରେ ।" ପୁନଃଶ୍ଚ - "ଗୋଲାପ ଭଳି ହସୁଥିବ, ଡାକିଲେ ଡରିବନି, ଡେଇଁପଡ଼ିବ- ହସରୁ ଝରୁଥିବ ଅବାରିତ ସୁଧାଝର ..."

ତାଙ୍କର ଭାଷା ଛନ୍ଦାୟିତ ଗୀତି କବିତାର ଗୌରବରେ ବିମଣ୍ଡିତ, ଗଦ୍ୟଗ୍ରନ୍ଥ ହେଲେବି କବିତାର ଭାଷାରେ ବିମଣ୍ଡିତ । ଭାଷାରେ ରହିଛି ପୁଣି ସମ୍ବେଦନୀ ଓ ସଙ୍ଗୀତ ପରିପୂର୍ଣ୍ଣ ଧ୍ୱନି । ମୁଗ୍ଧ ପ୍ରାଣରେ ପାଠକ ରସାସ୍ୱାଦନ କରେ- ମଝିରେ ମଝିରେ କବିତାର ପ୍ରଭାବରେ ବିଭୋର ହୋଇଥାଏ । ସେ ସମୟର ଗଳ୍ପରେ ଏପରି ଚମତ୍କାରୀ ଭାଷାରେ ପ୍ରୟୋଗ ପ୍ରାୟ ନାହିଁ କହିଲେ ଭୁଲ ହେବନି । ଗଳ୍ପ ସିଧାସଳଖ ବକ୍ତବ୍ୟ ମାଧ୍ୟମରେ ହେଉ ବା ଇଙ୍ଗିତ ମାଧ୍ୟମରେ ହେଉ ଲେଖକଙ୍କର ଜୀବନ ସମ୍ପର୍କିତ ଧାରଣାର ଯଥାର୍ଥ ଅର୍ଥ ପ୍ରକାଶର କ୍ଷମତା ଧାରଣ କରିଥାଏ । ପାଠକର ମନ ଭିତରେ ନିଶ୍ଚିତଭାବେ ଏକକ ପ୍ରଭାବ ସୃଷ୍ଟିକରେ କ୍ଷୁଦ୍ରଗଳ୍ପ । କ୍ଷୁଦ୍ରଗଳ୍ପ ନିଶ୍ଚିତଭାବେ ଆପତ୍‌କାଳୀନତାର ଭାବ ପୋଷଣ କରିବା ବିଧେୟ ଏବଂ ତାହା ଭାବଗତ ଆବେଗକୁ ଓ ବୌଦ୍ଧିକତାକୁ ସ୍ପର୍ଶ କରେ । ପାଠକ ମନରେ ଶୂନ୍ୟସ୍ଥାନ ଓ ପ୍ରଶ୍ନବାଚୀ ସୃଷ୍ଟି କରିପାରୁଥିବା ନିର୍ବାଚିତ ଘଟଣା ଓ ଟିକିନିଖି ବର୍ଣ୍ଣନାକୁ କ୍ଷୁଦ୍ରଗଳ୍ପ ସଚେତନଭାବେ ଆତ୍ମସ୍ଥ କରିଥାଏ । ଏ ସବୁ ଦୃଷ୍ଟିରୁ ଦେଖିଲେ ତାଙ୍କ ଗଳ୍ପଗୁଡ଼ିକରେ ଆରମ୍ଭ, ଅଭିବୃଦ୍ଧି ଓ ପରିସମାପ୍ତି ପ୍ରାୟ ଅଚାନକ ଓ ଆକସ୍ମିକ ।

ଚିରାଚରିତ ପ୍ରଥାନୁସାରେ ଆରମ୍ଭ କରି ଗାଳ୍ପିକ କୌଣସି ଗଳ୍ପକୁ କାହାଣୀ ଦୋଷରେ ଅଭିଶପ୍ତ କରିନାହାନ୍ତି । କେତେକ ଗଳ୍ପ ତାଙ୍କର ଆକସ୍ମିକ ତ କେତେକ ଜିଜ୍ଞାସାମୂଳକ । ଗଳ୍ପଗୁଡ଼ିକର କଳେବର ଛୋଟ ହେଲେ ମଧ୍ୟ ପାଠକ ମନରେ ଏକକ ଭାବ ସୃଷ୍ଟିକରେ । ତାଙ୍କର ସବୁ ଗଳ୍ପରେ ତ ତାଙ୍କର ବ୍ୟଞ୍ଜନାଧର୍ମୀ ଭାଷାର ପ୍ରୟୋଗ । ଗଳ୍ପ ଜରିଆରେ ପାଠକକୁ ଏକାଧାରାରେ ପରିତୃପ୍ତି ଓ ଅତୃପ୍ତିର ଜ୍ୱାଳା ପ୍ରଦାନ କରିବାରେ ଗାଳ୍ପିକ ସଦା ତତ୍ପର ଥିବାପରି ଜଣାପଡ଼େ । ଗଳ୍ପମାନସ ଗଳ୍ପ ବକ୍ତବ୍ୟ ଆଶ୍ରିତ ହେଲେ ହେଁ ଗଳ୍ପ ଆଙ୍ଗିକ ଉପରେ ତାହାର ନିର୍ଭରତା ଉପେକ୍ଷଣୀୟ ନୁହେଁ । କାରଣ ଉତ୍ତମ ବକ୍ତବ୍ୟ ଅଧମ ଆଙ୍ଗିକ ପ୍ରକରଣରେ ଯଥୋଉପଯୁକ୍ତଭାବେ ଅଭିଷିକ୍ତ ହୋଇପାରେ ନାହିଁ । ଭାବସମ୍ପଦ ଦୃଷ୍ଟିରୁ ତାଙ୍କ ଗଳ୍ପର ଶୈଳୀ ନିୟନ୍ତ୍ରିତ । ତାଙ୍କର କୌଣସି ଗଳ୍ପରେ ନଗ୍ନବାସ୍ତବତା ସ୍ଥାନ ପାଇନି, ପାଇଛି ତାର ଏକ ରୂପାନ୍ତରିତ ରୂପଶ୍ରୀ - ଆଦର୍ଶ ଓ ବାସ୍ତବତାର ମଣିକାଞ୍ଚନ ସଂଯୋଗ ହୋଇଚି ଅନେକ ଗଳ୍ପରେ । କେତେକ କ୍ଷେତ୍ରରେ ପୃଷ୍ଠଭୂମି ଏବଂ ପରିବେଶ ତାଙ୍କ ଶୈଳୀକୁ ପ୍ରଭାବିତ କରିଛି । ଗଳ୍ପର ପ୍ରବୃତ୍ତି ଦୃଷ୍ଟିରୁ ଆଭାସଗଳ୍ପ, ଗଳ୍ପହୀନ ଗଳ୍ପ, ଅନ୍ତର୍ଗର୍ଭୀ ଗଳ୍ପ, କାହାଣୀଧର୍ମୀ ଗଳ୍ପ ପ୍ରଭୃତି ବିଭିନ୍ନ ରୀତି ସେ ତାଙ୍କ ଗଳ୍ପରେ ପ୍ରୟୋଗ କରିଛନ୍ତି । ଗଳ୍ପ ଉପସ୍ଥାପନା ଓ ପରିବେଷଣ କ୍ଷେତ୍ରରେ ଭାଷାରେ ମଧ୍ୟ ସ୍ୱତନ୍ତ୍ର ରୀତି ପ୍ରୟୋଗ କରି ସେ ନିଜ ମୌଳିକତାର ସ୍ୱାତନ୍ତ୍ର୍ୟ ରକ୍ଷା କରିଛନ୍ତି । ୧୯୬୪ ରେ ପ୍ରକାଶିତ ରବି ପଟ୍ଟନାୟକଙ୍କ 'ଅସାମାଜିକର ଡାଏରୀ' ଗଳ୍ପପରି ଡକ୍ଟର ନାୟକ ଆଙ୍କିଛନ୍ତି ସେ ସମୟର ଅବକ୍ଷୟଧାରାରେ ଧାବମାନ ଏକ ସମାଜରେ ମଣିଷର ସ୍ଥିତି, ମାନସିକ ଚେତନାର ସଂଘର୍ଷିତ ସଂସାର ।

ଶିଳ୍ପୀଙ୍କ ସ୍ୱଳ୍ପ ଜୀବନକାଳ ଭିତ ସିଦ୍ଧିର ସ୍ୱର ଅବଶ୍ୟ ଆନୁପାତିକ ଦୃଷ୍ଟିରୁ ଅନସ୍ୱୀକାର୍ଯ୍ୟ । ତଥାପି 'ଫୁଲର କବର' ବିଂଶ ଶତାବ୍ଦୀ ରେ ଲେଖାହୋଇଥିଲେ ମଧ୍ୟ ସାଂପ୍ରତିକ ଅର୍ଥାତ୍ ଏକବିଂଶ ଶତାବ୍ଦୀର ଜଟିଳ ଜୀବନ ପ୍ରକ୍ରିୟାକୁ ଉପସ୍ଥାପିତ କରିପାରିଛି ଅତି ସଫଳ ଭାବରେ । ତେଣୁ ପ୍ରକୃତରେ 'ଫୁଲର କବର' ଏକବିଂଶ ଶତାବ୍ଦୀର ପ୍ରାଣସ୍ପନ୍ଦନ ଦ୍ୱାରା ଅନୁପ୍ରାଣିତ ଏକ ଗଦ୍ୟଗ୍ରନ୍ଥ ।



# ପାଠକୀୟ ବିବେଚନା ଓ କ୍ଷେତ୍ରବାସୀଙ୍କ କଥାକାରିତା

ଡକ୍ଟର ବାବାଜୀଚରଣ ପଟ୍ଟନାୟକ

ଓଡ଼ିଶାର ସରକାରୀ ମହାବିଦ୍ୟାଳୟମାନଙ୍କରେ ଓଡ଼ିଆ ଭାଷା-ସାହିତ୍ୟ ଅଧ୍ୟାପନା ସହିତ ସାହିତ୍ୟିକ ସମାଲୋଚନା ଓ ଉଚ୍ଚାଙ୍ଗ ଗବେଷଣାକୃତି ସଂରଚନା ଦୃଷ୍ଟିରୁ ସ୍ୱତନ୍ତ୍ର ଏକ ପରିଚୟ ସୃଷ୍ଟି କରିଥିବା ସ୍ୱର୍ଗତ କ୍ଷେତ୍ରବାସୀ ନାୟକ ସର୍ଜନାତ୍ମକ ସାହିତ୍ୟ ସାଧନା-ସଂସକ୍ତ ଥିବା ତାଙ୍କ 'ଫୁଲର କବର ଓ ଅନ୍ୟାନ୍ୟ ଗଳ୍ପ' ପୁସ୍ତକ ଅଧ୍ୟୟନରୁ ଜାଣିହୁଏ । ଓଡ଼ିଆ ସାହିତ୍ୟର ବହୁବିଧ ବିଭାବକୁ ବିଚାର ଆଲୋଚନା କରିବାରେ ତାଙ୍କ ଅଧ୍ୟୟନ-ଲବ୍ଧ ଅଭିନବ ଅବବୋଧ କିଭଳି ସ୍ୱତନ୍ତ୍ର ଦୃଷ୍ଟିସୂଚକ ଓ ତହିଁର ଅଭିବ୍ୟକ୍ତି ନିଜସ୍ୱ ଗଦ୍ୟ-କଳା-କାରିଗରୀ ଦ୍ୟୋତକ ତାହା ପୂର୍ବବର୍ତ୍ତୀ ତଥା ସମକାଳର ସମାଲୋଚକଙ୍କ କୃତି ପରିପ୍ରେକ୍ଷୀରେ ବାରିହୋଇପଡ଼େ । ଏପରିକି ଓଡ଼ିଆ ସମାଲୋଚନା ସାହିତ୍ୟରେ ତାଙ୍କ ସୃଷ୍ଟ ଅଣ-ପାରମ୍ପରିକ ଗଦ୍ୟ ଶୈଳୀ ଓ ଶିଳ୍ପ-ସ୍ଥାପତ୍ୟ ତାଙ୍କୁ ସର୍ଜନଶୀଳ-ସମୀକ୍ଷକ ଗୌରବ ପ୍ରଦାନ କରେ । ସେଥିପାଇଁ ତାଙ୍କ ରଚିତ ସାହିତ୍ୟ ସମାଲୋଚନା ସୁଖପାଠ୍ୟ । ପ୍ରାଞ୍ଜଳ ଅବବୋଧ, ଆବେଗିକ ବିକ୍ଷୁବ୍ଧତା ଦେଇ ଅଭିବ୍ୟକ୍ତି ଲୋଡ଼ିବାର ଚଳଚଞ୍ଚଳତା ତାଙ୍କ ବାଙ୍‌ମୟ କଳା-ରୂପରୁ ଅବଧାରିତ ହୋଇଛି । ତାଙ୍କ ସମାଲୋଚନା ସାହିତ୍ୟର ଗଦ୍ୟଭାଷାରେ କାବ୍ୟିକ ସାଦୃଶ୍ୟ, ଉପମା, ରୂପକାଦି ଯେଭଳି ସୁଲଭ୍ୟ ଆଲୋଚ୍ୟ ପୁସ୍ତକରେ ସଂକଳିତ ଥିବା ରଚନାଗୁଡ଼ିକର ଭାଷାରୁ ପ୍ରତୀକ, ଚିତ୍ରକଳ୍ପାଦି ସମେତ ନାଟକୀୟ ସଂଳାପାଦିର ବ୍ୟବହାର ମଧ୍ୟ ସେଭଳି ଉପଲବ୍ଧ ।

"ଫୁଲର କବର ଓ ଅନ୍ୟାନ୍ୟ ଗଳ୍ପ' ପୁସ୍ତକ ପ୍ରକାଶ ପାଇଛି ୧୯୬୭ ମସିହାରେ । ଷୋହଳଟି ରଚନାରେ ଏହାର ଅଙ୍ଗ ସଂସ୍ଥାନ କରାଯାଇଛି । ଏଗୁଡ଼ିକୁ ପଢ଼ିବା କାଳରେ ନାମବର ସିଂହଙ୍କ 'କିତନେହୀ ନିବନ୍ଧ ଏସେ ହେ ଜିନକେ ଅଂଦର କୋଇ-ନ-କୋଇ କହାନୀ ପିରୋଇ ହୁଇ ହୋ ଔର ଉପନ୍ୟାସ ତେ ତଭୀ ଏସେ ହେଂ ଜିନକେ ବୀଚ-ବୀଚ ମେ ଭରେ-ପୁରେ ନିବଂଧ ରଚତେ ଚଲେ ଗୟେ ହୌଁ' ଅଭିମତ ମନେ ପଡ଼େ । ହଜାରୀ ପ୍ରସାଦ ଦ୍ୱିବେଦୀଙ୍କ ଲେଖାବଳୀ ଉପରେ ସିଂହଙ୍କ ଉପରୋକ୍ତ ଅଭିମତକୁ କ୍ଷେତ୍ରବାସୀଙ୍କ ଏହି ପୁସ୍ତକର ରଚନାଗୁଡ଼ିକ ସଂପର୍କରେ ବଦଳାଇ କୁହାଯାଇପାରେ; ଏଗୁଡ଼ିକୁ ଗପ ବୋଲି ଚିହ୍ନିତ କରାଯାଇଥିଲେ ହେଁ କାହା କାହା ଭିତରେ ସମାଲୋଚନା ଗଦ୍ୟ, ପ୍ରବନ୍ଧ ଅଥବା ରମ୍ୟରଚନାର ଧାରା ପଶିଆସିଛି । ଏଭଳି ଘଟିବା ସ୍ୱାଭାବିକ । କାହିଁକି ନା, ବିଂଶ ଶତାବ୍ଦୀର ଷଷ୍ଠ ଦଶନ୍ଧିରେ ଓଡ଼ିଆ କ୍ଷୁଦ୍ରଗଳ୍ପକୁ

ଘେନି ଯେଉଁଭଳି ପରୀକ୍ଷା-ନିରୀକ୍ଷା ଚାଲୁଥିଲା ତହିଁରେ ପାରମ୍ପରିକ ସଂଜ୍ଞାସୁଲଭ ମାପ ଖୋଜିବା ବିଡ଼ମ୍ବନାର କଥା । ଏହି ଦୃଷ୍ଟିରୁ ପାରମ୍ପରିକ ଜୀବନବୋଧ ସହିତ ଆଧୁନିକ ଜୀବନ ସଂଘର୍ଷର ଏକାନ୍ତ ଅନୁଭୂତିର ଦ୍ୱନ୍ଦ୍ୱ ମୁହୂର୍ତ୍ତକ ପାଇଁ ଗାଳ୍ପିକଙ୍କ ଅନ୍ତରରେ ଯେଉଁ ବିକ୍ଷୁବ୍ଧତା ତୋଳିଛି ତହିଁର କଳାତ୍ମକ ରସଘନ ପରିଚୟ ଆଲୋଚ୍ୟ କୃତିଗୁଡ଼ିକରୁ ଉପଲବ୍ଧ ହେଉଛି । ଘଟଣା ଅପେକ୍ଷା ତହିଁର ପ୍ରତିକ୍ରିୟା, କାହାଣୀ ଅପେକ୍ଷା ତତ୍ ସଂପୃକ୍ତ ଚରିତ୍ରର ମନସ୍ତତ୍ତ୍ୱ, ଅପରର ଜୀବନଧାରା ଅପେକ୍ଷା ନିଜ ଜୀବନର ପ୍ରଭାବଶାଳୀ ଝଲକ ପଠିତ କୃତିଗୁଡ଼ିକରୁ ଆଭାସ, ପ୍ରତୀକ ଅଥବା ରୋମାଣ୍ଟିକ୍ ଚିତ୍ର ଦେଇ ସହଜବୋଧ ହୋଇପାରୁଛି । 'କଥାକାରର କଥା' ପର୍ଯ୍ୟାୟରେ ଅଧ୍ୟାପକ ନାୟକ ଉଲ୍ଲେଖ କରିଛନ୍ତି' ଫୁଲର କବର'ର ଗଳ୍ପସମୂହ ୧୯୬୦ ଓ ତା' ପରବର୍ତ୍ତୀ ସମୟର ରଚନା", ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ; ଏହି କାଳରେ ଓଡ଼ିଆ କ୍ଷୁଦ୍ରଗଳ୍ପକୁ ଘେନି ବହୁବିଧ ପରୀକ୍ଷା ନୀରିକ୍ଷା ଚାଲିଛି । ପରିଣତିରେ ମିନିଗଳ୍ପ, ଆଭାସଗଳ୍ପ, ଗଳ୍ପହୀନ ଅଥବା କାହାଣୀହୀନ ପ୍ରତୀକଗଳ୍ପ, ଅଣୁଗଳ୍ପ ଆଦି ରଚିତ ହୋଇଛି । ରୋମାଣ୍ଟିକ ପରଂପରାରେ ଆତ୍ମନିଷ୍ଠବାଦରୁ ଉନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଇଂରାଜୀ ସାହିତ୍ୟରେ କଳାକାରମାନେ ନିଜସ୍ୱ ଅଭିବ୍ୟକ୍ତି ପାଇଁ ଉନ୍ମୁଖ ହୋଇ ବ୍ୟକ୍ତିବାଚୀ, ସାହିତ୍ୟ ସୃଷ୍ଟିକରିବାଭଳି ଆଲୋଚନାଧୀନ କାଳର ସର୍ଜନଶୀଳ ଓଡ଼ିଆ ସାହିତ୍ୟରେ ବିଶେଷକରି କ୍ଷୁଦ୍ରଗଳ୍ପ ଓ କବିତା ରଚନାରେ ସେହି ଧାରା ଅନୁସୃତ ହୋଇଥିବା ଜଣାଯାଏ; ଯଦିଓ ରୋମାଣ୍ଟିକ୍‌ସୁଲଭ ଭାବାଳୁତା ପ୍ରତ୍ୟାଖ୍ୟାନ ଦୃଷ୍ଟିରୁ ଆଧୁନିକ ସାହିତ୍ୟର ବିକାଶ ଘଟିଛି ବୋଲି ଅନେକ ଆଲୋଚକ ମତ ଦେଇଥାଆନ୍ତି । କିନ୍ତୁ ନିଜକୁ ଅଭିବ୍ୟକ୍ତ କରିବାର ପ୍ରତୀକାତ୍ମକ ରୀତି ଅଥବା ଅନ୍ୟର ଉପଲକ୍ଷଣାରେ ନିଜ ଜୀବନର ରସବନ୍ତ ଅନୁଭୂତି ଅଥବା ଅଙ୍ଗେ ନିଭା ସ୍ମରଣୀୟ ଅନୁଭବ ପରିବେଷଣ କରିବାର କାବ୍ୟିକ ଚାତୁରୀ ରୋମାଣ୍ଟିକ ଶୈଳୀର ପୂର୍ବବର୍ତ୍ତୀ ନୁହେଁ । ଆଲୋଚ୍ୟକାଳର ଓଡ଼ିଆ କ୍ଷୁଦ୍ରଗଳ୍ପରେ ଭାବବସ୍ତୁ ଓ ଶିଳ୍ପପ୍ରକରଣକୁ ଅଭ୍ୟସ୍ତ ସଂଜ୍ଞାର ଫର୍ମୁଲାରେ ବିଚାର କରିହେବ ନାହିଁ । ପ୍ରସଙ୍ଗତଃ ସମାଲୋଚକ ଦାଶରଥି ଦାସଙ୍କ ଅଭିମତକୁ ସ୍ମରଣ କରିହେବ । "ନିର୍ଦ୍ଦିଷ୍ଟ ଘଟଣାଟିଏ ମଧ୍ୟ ଅନେକେ ଖୋଜୁ ନାହାନ୍ତି । ନାଟକୀୟତା ପ୍ରତି ଦୃଷ୍ଟି କି ଆଗ୍ରହ ନାହିଁ । ଅନେକତ୍ର ଗଳ୍ପ କହିବାର ପଦ୍ଧତି ହୋଇଉଠିଛି ଆତ୍ମ-ଜୈବନିକ ଓ ସ୍ୱୀକାରୋକ୍ତିମୂଳକ । ବହିର୍ମୁଖୀନତା ଅପେକ୍ଷା ଅନ୍ତର ଆଲୋଡ଼ନ ସ୍ୱାଦୁତର ହୋଇ ରହିଛି । ଠାବେ ଠାବେ ଲେଖକଙ୍କର ଆତ୍ମପ୍ରକୃତିର ପ୍ରକ୍ଷେପ ମଧ୍ୟ ଆୟାସ ଲକ୍ଷ୍ୟ ନୁହେଁ । ଚେତନାମଗ୍ନ ଭାବପ୍ରବାହରେ ସମାଜ ଓ ଜୀବନର ଖଣ୍ଡିତ ଦୃଶ୍ୟାବଳୀ ତୀର୍ଯ୍ୟକ କିମ୍ବା ବିକୃତଭାବେ ପ୍ରକାଶିତ ହେଉଛି । ପ୍ରଥାସିଦ୍ଧ ପ୍ଲଟ ସ୍ଥାନରେ ଆପାତଃ ଅସଂଲଗ୍ନ ଦୃଶ୍ୟରାଜିର ଆତ୍ମପ୍ରକାଶ ଘଟୁଛି । ଅନେକ ଗଳ୍ପ ହୋଇଛି ତେଣୁ ନିର୍ଲିପ୍ତ ଧାରାବାହିକ ସଂଲଗ୍ନ କିମ୍ବା ଅସଂଲଗ୍ନ

ଦୃଶ୍ୟ ସମବାୟ ମାତ୍ର । ତାକୁ ଆଉ pointed finger କହିଲେ ଠିକ୍ ହେବ ନାହିଁ । ଆଜିର ଏହି ଅନ୍ତର୍ମୁଖୀ ଗଳ୍ପ ଯେହେତୁ ଲେଖକ-ବ୍ୟକ୍ତିତ୍ୱର ମୌଳିକ ପ୍ରକାଶ ଓ ନିତ୍ୟ ପରିବର୍ତ୍ତନଶୀଳ; ତେଣୁ ତାକୁ ପ୍ରଚଳିତ କୌଣସି ସଂଜ୍ଞା ଓ ସ୍ୱରୂପ ଦୃଷ୍ଟିରୁ ବିଚାରି ବସିବା ଅସମୀଚୀନ ହେବ ।" (ସାହିତ୍ୟ ସନ୍ଧାନ-୧୯୭୫, ପୃ.୧୯୭) ଏହି ପରିପ୍ରେକ୍ଷୀରେ ଫୁଲର କବର ଓ ଅନ୍ୟାନ୍ୟ ଗଳ୍ପ' ପୁସ୍ତକରେ ସ୍ଥାନିତ କୃତିଗୁଡ଼ିକ ବିଚାରଣୀୟ ।

-୧-

'ଫୁଲର କବର ଓ ଅନ୍ୟାନ୍ୟ ଗଳ୍ପ' - ପୁସ୍ତକର ଏଭଳି ନାମକରଣରୁ ଜଣାପଡୁଛି ଯେ; ଏଥିରେ ସଂକଳିତ ହୋଇଥିବା ଲେଖାଗୁଡ଼ିକ ଗଳ୍ପଶ୍ରେଣୀୟ । କିନ୍ତୁ ତଦବଧି ପ୍ରଚଳିତ ଥିବା କ୍ଷୁଦ୍ରଗଳ୍ପର ସଂଜ୍ଞାକୁ ମାପକାଠି ରୂପେ ନେଇ ଏଗୁଡ଼ିକୁ ବିଚାର କରିହେବ ନାହିଁ ବୋଲି ପୂର୍ବରୁ ଦର୍ଶାଯାଇଛି । ଯେପରି ଗଳ୍ପର ସଂଜ୍ଞାୟନ କରିବାକୁ ଯାଇ ଅଭିନବବୋଧ ଓ ନୂତନ ଶିଳ୍ପରୁଚିରେ ପ୍ରତ୍ୟୟ ରଖୁଥିବା ନିଜସ୍ୱ ଢାଞ୍ଚାର ଓଡ଼ିଆ ଗଦ୍ୟ ସ୍ଥପତି କ୍ଷେତ୍ରବାସୀ ଉଲ୍ଲେଖ କରିଅଛନ୍ତି; "ଗଳ୍ପ ଗାଳ୍ପିକର ପ୍ରେମିକା । ଅଙ୍ଗର ରୂପରାଗ ଯେପରି ଅଙ୍ଗନାର ସୌଷ୍ଠବ ବୃଦ୍ଧିକରେ, ଗଳ୍ପାରଙ୍ଗର ବିକଚ ବିଳାସ ସେଇପରି ପାଠକର ହୃଦୟ ହରଣ କରେ । ଆତ୍ମିକ ପରିବେଷଣ ଖୁବ୍ ରୁଚିକର ହୋଇଉଠେ ଆଙ୍ଗିକ ସତ୍ତାର ପ୍ରୟୋଗ-ପରୀକ୍ଷାରେ ।" ଆଙ୍ଗିକ ସତ୍ତାର ପ୍ରୟୋଗ-ପରୀକ୍ଷାରୁ ଆତ୍ମିକ ପରିବେଷଣ ରୁଚିକର ଓ ପାଠକର ହୃଦୟ ହରଣ କରିବାରେ କ୍ଷମ ହୁଏ କ୍ଷୁଦ୍ରଗଳ୍ପ- ଏହି ମତରେ ବିଶ୍ୱାସ ରଖି ଗଳ୍ପରଚନାରେ ବ୍ରତୀ ହୋଇଛନ୍ତି କ୍ଷେତ୍ରବାସୀ । ସମାଜଚେତନା ହେଉ କି ଆଧୁନିକ ମଧ୍ୟବିତ୍ତ ମଣିଷର ଆତ୍ମାନୁସନ୍ଧାନ ହେଉ ଅଥବା ନିଜସ୍ୱ ଜୀବନବୋଧକୁ ପରିବେଷଣ କରିବାର ଗଳ୍ପାକାଙ୍କ୍ଷା ଯେକୌଣସି ଶିଳ୍ପୀକୁ ଆଙ୍ଗିକ ପ୍ରୟୋଗ- ପରୀକ୍ଷା ନିମିତ୍ତ ଜୀବନଭୂମିରୁ ଉପକରଣ ସଂଗ୍ରହ ପ୍ରବୃତ୍ତ କରିବା ସ୍ୱାଭାବିକ । ଏହି ପ୍ରବୃତ୍ତିର ଚରିତାର୍ଥତା ଶିଳ୍ପୀର ସ୍ମୃତି, ଅନୁଭୂତି ଓ ଦୃଷ୍ଟଲବ୍ଧ ଉପାଦାନରେ ସଂସାଧିତ ହୋଇଥାଏ । 'ଫୁଲର କବର'- ଏହି ଶୀର୍ଷକର ସାଧାରଣ ଅର୍ଥ ହୋଇପାରେ ଫୁଲର ମୃତ୍ୟୁ କିମ୍ବା ଅସାଧାରଣ ଅର୍ଥାତିରିକ୍ତ ଅର୍ଥ ବି ହୋଇପାରେ ସୌନ୍ଦର୍ଯ୍ୟ, ପ୍ରେମ, ଫଗୁଣର ତମାଦି । ଅପରପକ୍ଷେ ଶିଳ୍ପୀର କଳ୍ପନା ଏବଂ ଆବେଗର ତିରୋଧାନ ମଧ୍ୟ ବ୍ୟଞ୍ଜିତ ରହେ, 'ଫୁଲର କବର' ପଦରେ । କିନ୍ତୁ ଏହି ପଦଟି ସହିତ ଓଡ଼ିଆ ସାହିତ୍ୟ ପାଠକଙ୍କର ପୂର୍ବଯୋଗାଯୋଗ ଥିବାରୁ ସେମାନେ ଗଳ୍ପର ଶୀର୍ଷକ ପ୍ରତି ଅଧିକ ଆକୃଷ୍ଟ ହେବା ସ୍ୱାଭାବିକ । ଏହି ଶୀର୍ଷକ ଅଧ୍ୟୟନ କରିବାକ୍ଷଣି ସାହିତ୍ୟ-ପାଠ-ଚିତ୍ତବୃତ୍ତିର ପାଠକ ସ୍ମୃତିରୁ ଉଙ୍କାଡ଼ ହୋଇପଡ଼ିବ -

"ଭଲ ଯଦି ନାଇ ଲାଗେ ସଖା ଆଜି ଏ ମୋର କବିତା
ତହିଁପରେ ଢାଳିଦିଅ ନିଜହାତେ ଶମଶାନ ଚିତା ।
ରଚିଦିଅ ଫୁଲର କବର
ତଳେ ତାର ଲୁଚିଯାଉ କ୍ଷୁବ୍ଧ ଏକ ବିକଳ ଅଂତର ।"

ସେହିପରି 'ମରୁବଲ୍ଲରୀର ପୁଲକ' ଗଳ୍ପ ପଢ଼ିବା ପୂର୍ବରୁ ପାଠକ ଅଭ୍ୟସ୍ତ ଥିବା 'ପ୍ରଣୟବଲ୍ଲରୀ' ପରିପ୍ରେକ୍ଷୀରେ ମରୁବଲ୍ଲରୀକୁ ଚିହ୍ନିବ, ମନେ ପଡ଼ିବେ କବି ଗଙ୍ଗାଧର ମେହେର; ତୁଳନା କରିବାର ଚିନ୍ତା ପରିପୃକ୍ତ ହେବ; 'ଭାଙ୍ଗିଦେଲା ବନବଲ୍ଲରୀ, ଉଦ୍ୟାନ ଲତିକାର ଅଭିମାନ' ପଙ୍‌କ୍ତିକୁ ମନେ ପକେଇ । ଗଳ୍ପ-ପଢ଼ା ସହିତ ପାଠକର ସ୍ମୃତିରୁ ବନବଲ୍ଲରୀ ଚିତ୍ର ନିକିଳି ଆସି ପାଠକର ବୋଧ-ଭାବନାସାଥେ ଚାଲି ଚାଲି ଉପସଂହାର ପର୍ଯ୍ୟାୟରେ ଖସିଯିବ । ପାଠକ ମରୁବଲ୍ଲରୀ ନ ଦେଖିଥିଲେ ବି ତହିଁର ଏକ ଅର୍ଥ ପାଇଯିବ । ବନ ବଲ୍ଲରୀ ପକ୍ଷେ ଆଶ୍ରୟପ୍ରାପ୍ତି ଈପ୍‌ସା ଯେପରି ସ୍ୱାଭାବିକ ସୌନ୍ଦର୍ଯ୍ୟ ଅଭିପ୍ରେତ, ତହିଁର ସହଜ ଚରିତାର୍ଥତା ବି ସେହିପରି ପାଠକ ପ୍ରାଣରେ ଆବେଗ ସଂଚାରକ । କିନ୍ତୁ ମରୁବଲ୍ଲରୀର ସୃଷ୍ଟି ଯେଉଁଳି ଅପ୍ରତ୍ୟାଶିତ ତା'ର ଅବଲମ୍ୱନପ୍ରାପ୍ତି ମଧ୍ୟ ସେହିଭଳି ଅନାକାଙ୍‌କ୍ଷିତ । ଅଠର ବର୍ଷିଆ କୃଷୀ ଅଥଚ ରୂପସୀ ଗୋବରୀ ମରୁବଲ୍ଲରୀ ରୂପକରେ ପ୍ରତୀକିତା । ଗୋବରୀର ଅଙ୍ଗରାଗ ବର୍ଣ୍ଣନାରେ ଲେଖକଙ୍କ ବାସ୍ତବଦୃଷ୍ଟି ଆବେଗ ବିକ୍ଷୁବ୍‌ଧତାକୁ ନିୟନ୍ତ୍ରଣ କରିପାରିନାହିଁ । ଯେପରି ଗୋବରୀର 'ଅସ୍ତରାଗବୋଳା ତନୁଶ୍ରୀ', 'ବିପର୍ଯ୍ୟସ୍ତ କେଶରାଶି', 'ନେସରା କୋତରା ଆବରଣ ଭିତରୁ ତା ତନୁର ତନିମା ଫୁଟିଉଠୁଥାଏ ।' ଭିକ୍ଷୁ-ଭିକ୍ଷୁଣୀମାନଙ୍କ ଧାଡ଼ି ଭିତରେ ଗୋବରୀ ସତେ ଯେମିତି ବିକ୍ଷତ ରତ୍ନଟିଏ ।' 'ବିକ୍ଷତରତ୍ନ' ଚିତ୍ରକଳ୍ପର ପଶ୍ଚାତ୍‌ରେ 'ଶାଣବସା ବିଶୀର୍ଣ୍ଣ ରତ୍ନ' ରୂପକ ପ୍ରେରଣାପ୍ରଦ ହୋଇଥିବା ଅନୁମେୟ । ଗାଳ୍ପିକ ଶ୍ରୀ ନାୟକ ଓଡ଼ିଆ ଭାଷା-ସାହିତ୍ୟର ଅଧ୍ୟାପକ ଥିଲେ । ତେଣୁ ରାବଣ କର୍ତ୍ତୃକ ଅପହୃତା ସୀତା ଲଙ୍କାଗଡ଼ରେ 'ବିଶୀର୍ଣ୍ଣ ଶାଣବସା ରତ୍ନ ଗଣ୍ଠିରୁ ଫୁଟି ପତନ ହେଲା ପରା' ପ୍ରତୀତ ହେବାର ଭଞ୍ଜୀୟ ବର୍ଣ୍ଣନା ସହିତ ସେ ପରିଚିତ ଥିବେ । ଅନେକ ଗଳ୍ପର ନାମକରଣ ଓ ଅଭିବ୍ୟକ୍ତିରେ ଉପଯୋଗ ହୋଇଥିବା ପ୍ରତୀକ, ଚିତ୍ରକଳ୍ପ ଓ ଦୃଷ୍ଟାନ୍ତ ସହିତ ପାଠକ ପୂର୍ବରୁ ଅଭ୍ୟସ୍ତ ରହିଥିବାରୁ ସେଗୁଡ଼ିକ ପଢ଼ିବା କାଳରେ ସୁଖକର ବୋଧ ହୋଇଥାଏ । 'ସଯୁଜା ସଖାୟା' ଶୀର୍ଷକ ପଢ଼ିବାବେଳେ ଉପନିଷଦର ଶ୍ଳୋକ ମନେ ପଡ଼େ । 'କ୍ଷଣପ୍ରଭା' ପ୍ରସଙ୍ଗରେ କାହ୍ନୁଚରଣଙ୍କ 'ଝଞ୍ଜା', 'ସେ ଏକ ଅସ୍ଥିର ବିନ୍ଦୁ' ଗଳ୍ପର ବନାନୀ ଚରିତ୍ର ଭିତରେ ଗୋପୀନାଥ ମହାନ୍ତିଙ୍କ 'ହରିଜନ' ଉପନ୍ୟାସର ମାନମୟୀକୁ ଭେଟିହୁଏ । ବସ୍ତୁତଃ ଯେଉଁ ଗଳ୍ପ ପଢ଼ିବାବେଳେ ପାଠକର

ସ୍ମୃତି ଦରଜା ଆପଣାଛାଏଁ ଖୋଲିଯାଏ ଓ ତହିଁରୁ ଗଢ଼ିଆସୁଥିବା ଜୀବନ ଏବଂ ଜଗତ ସଂପର୍କିତ ଅନୁଭୂତି ଅଥବା ଅଧ୍ୟୟନ-ଆହୃତ ଭାବ ସମ୍ପଦ ଗାଳ୍ପିକଙ୍କ ଅଭିବ୍ୟକ୍ତି ସହିତ ଓତପ୍ରୋତ ରହି ଅଧ୍ୟୟନର ଶେଷାବକାଶ ପର୍ଯ୍ୟନ୍ତ ପାଠକକୁ ତଲ୍ଲୀନ ରଖିପାରେ ସେଗୁଡ଼ିକ ବୋଧହୁଏ ଶ୍ରେଷ୍ଠ ଗଳ୍ପ । ଏହି ଦୃଷ୍ଟିରୁ ମରୁବଲ୍ଲରୀର ପୁଲକ, ଫୁଲର କବର, ଆକାଶ କର୍ଯ୍ୟାଁ- ଚିଲିକା ମାଛ, ନିଦ, ଅନ୍ଧକାରର ମୋହ, ଅଙ୍ଗାର ଆଦି ଗୋଟେ ଗୋଟେ ଉଜ୍ଜ୍ୱଳ ସୃଷ୍ଟି; ଯହିଁରୁ ପାଠକ ନିଜକୁ ଆବିଷ୍କାର କରୁ କରୁ ବିହ୍ୱିର୍ଚାପରେ ହଠାତ୍ ଚମକିପଡ଼େ । ଖାସ୍ ଏଇଥିପାଇଁ ଏଗୁଡ଼ିକୁ ଗୋଟେ ଗୋଟେ ଶ୍ରେଷ୍ଠ ଗଳ୍ପ ବୋଲି କହିବାକୁ ପଡୁଛି ।

-୨-

'ମରୁବଲ୍ଲରୀର ପୁଲକ' ଗଳ୍ପରେ ଅଷ୍ଟାଦଶ ବର୍ଷୀୟା କୁଷ୍ଠୀ ଗୋବରୀ ରାଜପଥ କଡ଼ରେ କେରପାଲ ଖଣ୍ଡେ ବିଛେଇ ବସିଯାଏ । ଆଗରେ ଥୋଇଦିଏ ଫିତାଲଗା ଡାଲଡା ଟିଣ । ପଥର ପଥିକାଙ୍କୁ ପଇସା ପାଇଁ ଅନୁନୟ କରେ । ଇବ୍ଧ ଅର୍ଥରେ ଗୁଜୁରାଣ ମେଣ୍ଟାଏ । ତା' ଶରୀରରେ ଢେଉ ଭାଙ୍ଗୁଥିବା ରୂପର ଲହଡ଼ିକୁ କେହି କେହି ନିରେଖିବାକୁ ଦଣ୍ଡେ ଘଡିଏ ତା' ପାଖରେ ଅଟକିଯାନ୍ତି । କାହାରି କାହାରି ମରମଘେନା ଦରଦୀ କଥାରେ ବିହ୍ୱଳ ହେଉ ହେଉ ସେ ନିଜର ଗୋଡ଼ ଓ ପାଦକୁ ଚାହିଁ ଆତ୍ମ-ସଚେତନ ହୁଏ । ଭିତରେ ଉହୁଁକୁଥିବା କାମନାର ସିଂହକୁ ନିୟନ୍ତ୍ରଣ କରେ । ରାଜପଥରେ ଯାଉଥିବା ତାରି ବୟସର ବୋହୂକୁ ଦେଖି ସେ ଆନମନା ହୁଏ । ଛୋଟପିଲା ଦେଖିଲେ କୋଳେଇ ନେବାକୁ ଅଲକ୍ଷ୍ୟରେ ହାତ ଉଠାଏ ସେ । ଅଥଚ ତା' ଦେଇ ସୃଷ୍ଟି ସମ୍ଭାବନା ପ୍ରତି ସେ ନିଷ୍ଠୁରା ରହେ । ସେ ଚାହେଁନା ସୃଷ୍ଟି ତାରିଭଳି ବିକଳାଙ୍ଗ ହେଉ । ହେଲେ, ସମାନଧର୍ମା ଜଲିଲ୍‌ର ତା' ପ୍ରତି ଆକର୍ଷଣ ତୀବ୍ର । ଅବଶ୍ୟ ଗୋବରୀ ଭିତରେ ଜଲିଲର ମନୋଭାବ କୌଣସି ଆଲୋଡ଼ନ ସୃଷ୍ଟି କରେ ନାହିଁ । ଗାଳ୍ପିକଙ୍କ ଭାଷାରେ - "ସମୁଦ୍ରର ଉଠାଣି ଢେଉ ଉପକୂଳର ବାଲିଶେଯ ଚୁମିଯାଏ । ତା'ର ଅସ୍ତିତ୍ୱ ପୁଣି ସେଇଠି ଲିଭିଯାଏ । ଜଲିଲ ମନର ଢେଉ ତା'ରି ମନ ସମୁଦ୍ରରେ ହିଁ ମରେ । ତା'ର ପ୍ରତିଧ୍ୱନି ଗୋବରୀ ଅନ୍ତରରେ କିଛି ଆଲୋଡ଼ନ ସୃଜି ପାରେନା । କରିବାର ସୁବିଧା ଥିଲେ ବି, ଗୋବରୀ ମନକୁ ଖୁବ୍ ସଂଯତ କରେ - ଦୂରେଇ ରହିବାକୁ ଚେଷ୍ଟାକରେ ।" ହେଲେ କୌଣସି ଏକ ବର୍ଷାରାତିରେ ଏକତ୍ର ସହାବସ୍ଥାନରୁ ଗୋବରୀର ଦେହ ନିବେଦିତ ହୁଏ ଜଲିଲର ଉପଭୋଗ ଲିପ୍ସା ନିକଟରେ । ମରୁବଲ୍ଲରୀର ପୁଲକ ଅପ୍ରତ୍ୟାଶିତ ମିଳନରେ ନିମିଳିତ ରହେ । କୌଣସି ଦର୍ଶନ ଅଥବା ସତ୍ୟ ଉପରେ ଗଳ୍ପର ସଫଳତା ନିର୍ଭର କରେ ନାହିଁ । ବରଂ ସ୍ରଷ୍ଟାର ଆଭିମୁଖ୍ୟ ଓ ତାହାକୁ ପ୍ରାଞ୍ଜଳ କରାଇବାର ଉପକରଣ ଉପଯୋଗ କଳା

ଉପରେ ତାଙ୍କର ସଫଳତା ବିଚାରିତ ହୁଏ । ମଗୁ ବଲ୍ଲରୀ ହେଲେବି ତାହା ବଲ୍ଲରୀ । ଗୋବରୀ କୁଷ୍ଠୀ ଓ ଭିକ୍ଷାଜୀବୀ ହେଲେ ବି ଅଠର ବର୍ଷ ବୟସ୍କା ଯୁବତୀ ନାରୀ । ସଚେତନ ମନର ଭାବନାରେ ସେ ଆତ୍ମସଚେତନା ଓ ବାସ୍ତବିକା । ଅଥଚ ଅବଚେତନୀୟ ବାସ୍ତବତାରେ ସେ ନିର୍ବାକ, କିନ୍ତୁ ପୁଲକିତା । ବୋଧହୁଏ ଏହି ଜୀବନ ସତ୍ୟ ଉପସ୍ଥାପନର ଲେଖକୀୟ ଆଭିମୁଖ୍ୟ ଚିତ୍ରାତ୍ମକ ଶବ୍ଦ ଓ ସଂଜ୍ଞାପଧର୍ମୀ ଭାଷା ଜରିଆରେ ଖୁବ୍ ପ୍ରାଞ୍ଜଳ ହୋଇପାରିଛି ପାଠକଙ୍କ ପାଖରେ ।

ଗଳ୍ପର ବିଜୟୋଲ୍ଲାସ ଦୁଇଟି ସୂତ୍ରରୁ ଅବଧାରିତ ହୁଏ । ଗୋଟିଏ ହେଉଛି ବର୍ଣ୍ଣିତଘଟଣା ଅଥବା mere plot; ଯାହା ସମୟାନୁକ୍ରମିକ ଅଥଚ ଆକସ୍ମିକ, ବାସ୍ତବ ଜୀବନ ଘଟିତ ଏବଂ ତଦନୁରୂପ ଭାଷାରେ ଉପସ୍ଥାପିତ ହେବା ବାଞ୍ଛନୀୟ । ଅନ୍ୟଟି ହେଉଛି ଉପସ୍ଥାପ୍ୟ ଘଟଣା ଉପଯୋଗୀ ସଂପର୍କାନ୍ୱିତ ସୁଗଠିତ ଅନ୍ୟାନ୍ୟ ବର୍ଣ୍ଣନା । ଏହି ବର୍ଣ୍ଣନା ଦେଇ ପାଠକର ଭାବାନୁଭୂତି ଓ କଳ୍ପନା ସ୍ମୃତିବୋଧ- ଜାରିତ ହୋଇ ନୂତନ ରୁଚିକୁ ସାମ୍ନା କରିବ । ଏହି ଦୃଷ୍ଟିକୋଣରୁ ଗାଳ୍ପିକଙ୍କ 'ଫୁଲର କବର' ଗଳ୍ପ ବିଚାର୍ଯ୍ୟ । ଓଡ଼ିଆ ସାହିତ୍ୟର ନିଷ୍ପାପର ପାଠକ ସ୍ମୃତିକୁ 'ଫୁଲର କବର' କିଭଳି ଉସୁକାଏ ତାହା ପୂର୍ବରୁ ଆଲୋଚନା କରାଯାଇଛି । ଏହି କ୍ରମରେ ପାଠକ ବି ତାଙ୍କର ପ୍ରତୀକାର୍ଥ ସମ୍ବନ୍ଧରେ ମୋଟାମୋଟି ଭାବେ ଅବଗତ ରହେ । 'ଫୁଲର କବର'ରେ ଉପସ୍ଥାପିତ କାହାଣୀ ସାମାଜିକ ବାସ୍ତବତାର ଏକ ଦୃଷ୍ଟାନ୍ତ । କିନ୍ତୁ ଅଭିବ୍ୟକ୍ତ ରୀତି ଆଦର୍ଶାନୁଗ । ବାସ୍ତବତା ଯେଉଁଠି ଶିକ୍ଷକୋଚିତ ବେତହଲାର ଆଦର୍ଶ ଦେଇ ସାରସ୍ୱତ ମୁକ୍ତି ଲୋଡ଼େ ସେତେବେଳେ ଗଳ୍ପ-କଳାର ଉପସ୍ଥାପନ ଉପକ୍ରମ ଯାତ୍ରାଶୈଳୀର ଉଦ୍‌ଘୋଷଣର ବାରତାକୁ ଗ୍ରହଣ କରେ । ଯାତ୍ରାର ବିଷୟବସ୍ତୁ ସହିତ ଉଦ୍‌ଘୋଷଣର ସଂପର୍କ ଥାଇପାରେ ନ ଥାଇପାରେ । କିନ୍ତୁ ତାହା ଦର୍ଶକଙ୍କ ପକ୍ଷେ ଶ୍ରୁତିସୁଖକର ଓ ଉପଭୋଗ୍ୟ ହୋଇଥାଏ । ପ୍ରସଙ୍ଗତଃ 'ଫୁଲର କବର' ଗଳ୍ପର ଉପକ୍ରମସୁଲଭ ଆଦ୍ୟ ଅଭିବ୍ୟକ୍ତିର ଭାଷାକୁ ଲକ୍ଷ୍ୟ କରାଯାଉ - "ଆକାଶରେ ବି ବନ୍ୟା ଆସେ – ଅନ୍ଧକାରର ବନ୍ୟା । ସେ ଅଥଳ ସମତଳ କିଛି ମାନେନା । ପାହାଡ଼ ଛୁଏଁ, ଗଛ ଚଢ଼େ, ନଈ ପହଁରେ । ବାଲିକଣା ଉପରେ ବି ବହଳ ଅନ୍ଧାର ଶେଯପାରି ଶୋଇଯାଏ ।'

ଏଭଳି ବର୍ଣ୍ଣନା ଅବଶ୍ୟ ଘଟଣା ବିଚ୍ଛିନ୍ନ ନାଟକୀୟ ଚମକ୍ ନୁହେଁ । କିନ୍ତୁ କାବ୍ୟିକ । ବାସ୍ତବତା ଅପେକ୍ଷା କଳ୍ପନା ଓ ଆବେଗର ଛଟା ବର୍ଣ୍ଣନାକୁ ସୁଖପାଠ୍ୟ କରିଛି । ଏ ଧରଣୀର ରୋମାଣ୍ଟିକ୍ ପୃଷ୍ଠଭୂମିରେ ବାସ୍ତବବାଦୀ ଜୀବନବୋଧର କଣ୍ଟ୍ରାଷ୍ଟ । ଗାଳ୍ପିକଙ୍କ ଅଭିବ୍ୟକ୍ତିକୁ କେତେବେଳେ ଆଦର୍ଶ ଦୀକ୍ଷିତ କରିଛି ତ ଅନ୍ୟବେଳେ କାବ୍ୟାୟିତ କରିଛି ।

ସମାଜରେ ପରିଦୃଷ୍ଟ କଅଁଳ ଫୁଲ ବଅସର ରୂପ-ଜୀବୀ ସହିତ ଗଳ୍ପନାୟକଙ୍କ ଭେଟ-ସଂଭାଷଣର ବାର୍ତ୍ତା ଉତ୍କୀର୍ଣ୍ଣ ରହିଛି 'ଫୁଲର କବର' ରେ । ଦେହକୁ ଖଟେଇ ଜୀଇବାର ପୁଞ୍ଜି ଯୋଗାଡ଼ କରୁଥିବା କଅଁଳ ତରୁଣୀ ତନ୍ମୟା ଓରଫ ତାନି ବିଲ୍ୱମଙ୍ଗଳର ନାଁ ଶୁଣିବା କି ଦରକାର ? ସିରାପ ପିଇବାକୁ ଦେବା, 'ବାବୁ' କେତେ ଦେବ'ବୋଲି ପଚାରିବା, 'ଆଲୁଅ ନିଭେଇ ଦେଉଚି' ବୋଲି ଅନୁମତି ଲୋଡ଼ିବା, 'ମେଘୀ ରଙ୍ଗର ଖସରା ଶାଢ଼ି ପିନ୍ଧି କ'ଣ ଭଲଦିଶୁନି' ପଚାରିବା ତା ଜୀବନର ସ୍ୱାଭାବିକତା । ଏହି ବାସ୍ତବତା ଶିକ୍ଷକୋଚିତ ଶିଳ୍ପ-ସର୍ଜନାପଣର କରଣୀରେ ଆଦର୍ଶବାଦିତାକୁ ବେହରଣ କରିଛି । ତେଣୁ ବାସ୍ତବତା, ରୋମାଣ୍ଟିକ୍‌ସୁଲଭ ସୌନ୍ଦର୍ଯ୍ୟଦୃଷ୍ଟି ଓ ଆଦର୍ଶବାଦିତାର ସମନ୍ୱୟରେ 'ଫୁଲର କବର' ଗଳ୍ପର ଶୈଳୀ କେବଳ ପାଠକୀୟ ରୁଚି ପରିବର୍ତ୍ତନର ସଂକେତ ହୋଇନାହିଁ ପରନ୍ତୁ ବହୁଧାରା-ପରକ ଶୈଳୀରେ ତାହା ବର୍ଣ୍ଣିତ ହୋଇଛି । ଆଦର୍ଶବାଦୀ ଅଭିବ୍ୟକ୍ତିର ସଂଘାତରେ ରୋମାଣ୍ଟିକ ସୌନ୍ଦର୍ଯ୍ୟ ଓ ବାସ୍ତବବାଦୀ ସ୍ୱାଭାବିକତାର ଶୈଳୀ ବିରୋଧାଭାସ ସୃଷ୍ଟି କରିଛି । ଯେପରି; "ମୁଁ ଦେଖୁଥିଲି, ତା' ଦେହରେ ଦେହରେ ରକ୍ତବର୍ଣ୍ଣର ମାଂସପେଶୀ, ସ୍ଫୀତ ବକ୍ଷ ଚୋଳ, ସୁନ୍ଦର ସେମାନଙ୍କର ସ୍ଥିତି । ଆଚ୍ଛାଦିତ ବୁକୁରେ ଦୁଇମୁଠା ସ୍ତନ, ସତେ ଯେପରି ଚାହୁଁଥିଲା ପୁରୁଷ ପାପୁଲିର ଗୁରୁପ୍ରାସ, ପ୍ରାଣଭରା ମନ୍ଥନ । ଝୀନବସନ ଭେଦି ଦିଶିଯାଉଥାଏ ମାଂସଳ ନିତମ୍ୱର ପରିଧି, କ୍ଷୀଣ କଟୀରେ ଲମ୍ୱିଛି ତ୍ରିବଳୀର ଭଙ୍ଗିଳ ରେଖା କେଇଟି ! ବାହୁରେ ବାହୁରେ ଭରିଛି ଖୁନ୍ଦିଲା ଆଭାମୟୀ ଯୌବନର ସ୍ୱାକ୍ଷାଂକ । ଅଧରେ ଅଧରେ ରୋମାଞ୍ଚର ଢେଉ ।" ଠିକ୍ ପରେ ପରେ 'ଲୁଣ୍ଠନର କାମ୍ୟ ନୁହେଁ, ସଂରକ୍ଷଣ ହିଁ ବିଧେୟ' କମ୍ ବେପରୱା ଶୈଳୀ ସଂକଟ ସୃଷ୍ଟି କରିନାହିଁ । ପୁଣି ଆଦର୍ଶବାଦୀ ଭାବାଭିବ୍ୟକ୍ତି ଗଳ୍ପର ଗତିପଥକୁ ଅପ୍ରତ୍ୟାଶିତଭାବେ ଭିନ୍ନ ମୋଡ଼ ଦେଇଛି । ଯେପରି; "ହଁ, ତୁମେ ସୁନ୍ଦରୀ, ଉତ୍ତମା ବି କିନ୍ତୁ ସୁତୀର୍ଥା ହେବାକୁ ଚେଷ୍ଟାକର ତାନି !" କାହାଣୀ ବର୍ଣ୍ଣନାର ପ୍ରକରଣରେ ଭିନ୍ନ ରୁଚିର ଏବଂବିଧ ଶୈଳୀ ଗାଳ୍ପିକଙ୍କ ପ୍ରୟୋଗ-ପରୀକ୍ଷାଦୃଷ୍ଟିର ଇଚ୍ଛାକୃତ ବ୍ୟବହାର ।

ଆଧୁନିକ ବ୍ୟକ୍ତିଜୀବନର ଦୋଳାୟିତ ଦ୍ୱନ୍ଦ୍ୱ ମାନସିକତା ଓ ତହିଁରେ ନିହିତ ଥିବା ପୁନଃ ଅସଂଲଗ୍ନତା ପୂର୍ବୋକ୍ତ ଶୈଳୀରେ ପରିଚ୍ଛନ୍ନ ରୂପ ଗ୍ରହଣ କରିନାହିଁକି ? କୁହାଯାଏ; ବାସ୍ତବବାଦୀ ଲେଖକ ଓ ରୋମାଣ୍ଟିକ ଲେଖକ – ଉଭୟଙ୍କର ସମାନ ପ୍ରକୃତି ଓ ଅନୁସନ୍ଧାନ ପ୍ରବୃତ୍ତି ଥାଏ । କିନ୍ତୁ ତଫାତ୍ ହେଉଛି; ବାସ୍ତବବାଦୀ ଲେଖକ ଦୈନନ୍ଦିନ ଜୀବନରୁ ପ୍ଲଟ ସଂଗ୍ରହ କଲାବେଳେ ରୋମାଣ୍ଟିକ୍ ଲେଖକ ଅତୀତର କ୍ରମପ୍ରବାହୀ ଜୀବନ ଅଥବା ଆଦର୍ଶ ପରିମଣ୍ଡଳରୁ ପ୍ଲଟ ସଂଗ୍ରହ କରେ । କିନ୍ତୁ ବେଳେବେଳେ ବାସ୍ତବବାଦୀ

ଘଟଣାକୁ ଆଦର୍ଶବାଦୀ ବକ୍ତବ୍ୟରେ ଉପସ୍ଥାପନ କରିବାକୁ ଯାଇ ସ୍ରଷ୍ଟା କବିତ୍ୱ ରୀତିର ଅଥବା ଚିତ୍ର-ଚେତନା ଉଦ୍‌ବୋଧକ ରୋମାଣ୍ଟିକ ଅଭିବ୍ୟକ୍ତିର ଉପଯୋଗ କରିଥାନ୍ତି । ଖାସ୍ ଏଇଥିପାଇଁ ବିଶ୍ୱର ଶ୍ରେଷ୍ଠ ଲେଖକମାନଙ୍କୁ ବାସ୍ତବବାଦୀ ତଥା ରୋମାଣ୍ଟିକ୍ କୁହାଯାଇଥାଏ । 'ଫୁଲର କବର' ଗଳ୍ପର ଅଭିବ୍ୟକ୍ତ ରୀତିରୁ ଅଧ୍ୟାପକ ନାୟକଙ୍କୁ ବାସ୍ତବବାଦୀ- ରୋମାଣ୍ଟିକ୍ (Realist-romantic) କୁହାଯାଇପାରିବ । ଏହି ଗଳ୍ପରେ ଉପାନ୍ତବର୍ଣ୍ଣ ମେଳଥିବା କାବ୍ୟରୁ ଲେଖକଙ୍କ କବିତ୍ୱ-ମାନସକୁ ଉପଲବ୍ଧ କରିହୁଏ । ଯେପରି; "ଭିତରେ ମିଞ୍ଜି ମିଞ୍ଜି ହୋଇ ଆଲୁଅ ଜଳୁଛି / ଅନ୍ଧାର ଏଠି ବି ପଶିଛି / ହେଲେ ସର୍ବାଙ୍ଗ ବୁଡେଇ ପାରିନି । ଏଇ ନୀଡ଼ଟିର ଜନଜୀବନ ଅନ୍ଧାର ଭିତରେ ଥିଲେ ବି ଆଲୁଅ ଜାଳୁଛନ୍ତି; ହେଲେ ଅନ୍ଧାରକୁ ସୌଭାଗ୍ୟ ମଣୁଛନ୍ତି । ମନ କିଣୁଛନ୍ତି, ପଥ ହୁଡୁଛନ୍ତି । କିଛି କ୍ଷଣ ପାଇଁ ହୁଏତ ଗୋଟି ଗୋଟି ଜୀବନ ବାନ୍ଧୁଛନ୍ତି । ସପନର ସୁନାହାର ପିନ୍ଧେଇ, ଫୁଲର ମହକ ଶୁଂଘେଇ ମନ ମୋହୁଛନ୍ତି" । କେତେକ ସ୍ଥାନରେ ଚିତ୍ରକଳ୍ପଧର୍ମୀ ବର୍ଣ୍ଣନା 'କ୍ଷୁଦ୍ରଗଳ୍ପର ପ୍ରାଣଧର୍ମ କବିତାର'- ଏହି ଉକ୍ତିର ସତ୍ୟତାକୁ ପ୍ରତିପାଦନ କରୁଅଛି । ତହିଁରୁ କେତୋଟିକୁ ଲକ୍ଷ୍ୟ କରନ୍ତୁ - 'ସେ ଖାଲି ହସୁଥିଲା ପୋଷ୍ଟର ନାୟିକା ଭଳି ।' 'ଆଶାପୋଷିଲା ଆଖିରେ ମୋତେ ଚାହିଁ ରହିଛି ।' 'ଗଛ କେଇଟାର ଗହନ ପତ୍ର ଫାଙ୍କରୁ ଧଳା ଧଳା ଫୁଲ ପେନ୍ଥାଟିମାନ ଜହ୍ନ ଚିତାଭଳି ଆଖି ଦେଖୁଥିଲା ।' ସେଦିନ ଓଡ଼ିଆ କ୍ଷୁଦ୍ରଗଳ୍ପ ପରୀକ୍ଷାଧର୍ମିତାର ପ୍ରୟୋଗଶାଳାରେ କାବ୍ୟରୀତିର ଶିଳ୍ପ ପ୍ରକରଣରୁ କିଭଳି ଅଙ୍ଗୀକାର କରିଛି ତହିଁର ସତ୍ୟତା 'ଫୁଲର କବର' ଗଳ୍ପରୁ ଲକ୍ଷ୍ୟ କରିହୁଏ ।

ଗାଳ୍ପିକ କ୍ଷେତ୍ରବାସୀ ଏକାଧାରାରେ ବାସ୍ତବବାଦୀ ଓ ରୋମାଣ୍ଟିକ୍ । 'ଆକାଶ କଯାଁ.... ଚିଲିକା ମାଛ' ଗଳ୍ପରେ ନିର୍ଦ୍ଦିଷ୍ଟ ଏକ କାହାଣୀ ରହିଛି । ଗଳ୍ପର ନାୟକ ଅଜିତ୍ ବନାମ ବୁଲା ପରିସ୍ଥିତିରେ ପଡ଼ି ଭିକାରୀ ହୋଇଛି । ବନ୍ୟାର ଆକ୍ରୋଶରେ ନିଃସ୍ୱ ବନିଥିବା ଅଜିତ୍ ରୁଗ୍ଣା ମା ଓ ଅନୂଢା ଭଉଣୀକୁ ଧରି ଗାଁରୁ ଚାଲିଆସିଛି ସହର । ଭିକମାଗି ପରିସ୍ଥିତିକୁ ସମ୍ଭାଳିଛି । ମା'କୁ ରୋଗମୁକ୍ତ କରିବ - ଭଉଣୀକୁ ବାହାଦେବ- ଏମିତି କେତେ କେତେ କଳ୍ପନା କରିଛି ସେ । ଜନଗହଳିପୂର୍ଣ୍ଣ ନାଗପୁର ରେଳଷ୍ଟେସନରେ ବସି ସେ ଦେଖିଛି ଜଣେ ବୃଦ୍ଧାଙ୍କର ଏକ ମନିପର୍ସ ଗଳିପଡ଼ିଛି । ତା' ମନରେ ଅସୁମାରି ସମସ୍ୟା ସମାଧାନର ଚିନ୍ତା ଢେଉପିଟିଛି । ରେଳ ଗଲାପରେ ଅଜିତ୍ ମନିପର୍ସଟି ଆଣିଛି । ତହିଁର ଚେନ୍‌କୁ ଜୋର୍‌କରି ଟାଣି ନେଇଛି । ପ୍ଲାଟ୍‌ଫର୍ମରେ କେତେଟା ନୂଆପଇସା ଝଣକରି ଚିତ୍କାର କରି ବିଛାଡ଼ି ହୋଇପଡୁଛି । ଅଜିତର ଭାବନା 'ଆକାଶ କଯାଁ... ଚିଲିକା ମାଛରେ ପର୍ଯ୍ୟବସିତ ହେଉଛି । କିନ୍ତୁ ଉପସଂହାରରେ ଗାଳ୍ପିକ ଯେଉଁ ଚିତ୍ରାତ୍ମକ

ଅଭିବ୍ୟକ୍ତି ବାଢ଼ିଛନ୍ତି ତହିଁରୁ ନିଃସୃତ ରହିଛି ଅର୍ଥାତିରିକ୍ତ ଭାବ-ବ୍ୟଞ୍ଜନ । ଗଳ୍ପଟି ସତେଯେପରି ଶେଷ ହୋଇବି ଶେଷ ହେଇନି । ପରିଣତି ବେଶ୍ ଇଙ୍ଗିତପୂର୍ଣ୍ଣ- ଅଜିତ୍‌କୁ 'ଟ୍ରେନ୍‌ର ସେଇ କଂପାର୍ଟମେଣ୍ଟଟି ଏବେ ବି ଦିଶୁଛି । ଆଗ ଆକାଶରେ ଧୂମ ଆସ୍ତରଣ, ପଛରେ ନିଶୂନ ରେଳପଥ; ସମତଳ ପ୍ଲାଟଫର୍ମ ଛାତିରେ କେଇବୁନ୍ଦା ଅଶ୍ରୁ ।'

'ନିଦ' - ଏକ ଆଭାସଧର୍ମୀ ଗଳ୍ପ । ଏଥିରେ କାହାଣୀ ନାହିଁ; ଅଥଚ ସାମାଜିକ ବ୍ୟବସ୍ଥା ପ୍ରତି ପ୍ରତିକ୍ରିୟାର ଲମ୍ବା ଇସ୍ତାହାର ରହିଛି ତରୁଣ ଅଧାପକ ମାନିକ ରାୟଙ୍କ ସ୍ୱଗତୋକ୍ତିରେ । ଅଥଚ ଅଧାପକ ରାୟ ଯେତେବେଳେ ସମ୍ବଲପୁରର ସେଇ ହୋଟେଲର ଗୋଟିଏ ପ୍ରକୋଷ୍ଠରେ ତାଙ୍କ ଛାତ୍ର ସୁଶାନ୍ତ ଆତ୍ମହତ୍ୟା କରିଥିବା ଦେଖିଲେ ସେତେବେଳେ ସେ ଚମକି ପଡ଼ିଲେ । ଛାତର କଡ଼ିରେ ସୁଶାନ୍ତର ଶବ ଦୋହଲୁଛି .... ପାଖ ଟେବୁଲ ଉପରୁ ଦିଶୁଛି 'ଶୁଭ ବିବାହ'ର ନିମନ୍ତ୍ରଣ ପତ୍ର । ଉପସଂହାରର ଚିତ୍ରରୁ ସ୍ପଷ୍ଟ ହେଉଛି ଯେ, ସୁଶାନ୍ତର ଆତ୍ମହତ୍ୟା ପ୍ରେମହେତୁକ । ଗତଦିନର ପ୍ରେମିକା ହୁଏତ ପଠାଇଛି ତା ବିବାହର ନିମନ୍ତ୍ରଣପତ୍ର । ଏହି ଚିତ୍ରଦେଇ ଆଭାସିତ ହେଉଛି ତତ୍‌କାଳୀନ ଜୀବନ ଭୂମିରେ ସଂଘଟିତ ପ୍ରେମ ଓ ତହିଁର କରୁଣ ପରିଣତି । ଗଳ୍ପଟି କ୍ଷୁଦ୍ରାବୟବ ବିଶିଷ୍ଟ । ମୁଖ୍ୟପ୍ରସଙ୍ଗକୁ ଆଲୋକିତ କରିବା ପାଇଁ ଯଥୋପଯୁକ୍ତ ଆନୁଷଙ୍ଗିକ ବର୍ଣ୍ଣନା ପ୍ରଦତ୍ତ ହୋଇଛି ଅବଶ୍ୟ।

ଆଲୋଚନାଧୀନ ପୁସ୍ତକରେ ସ୍ଥାନିତ ଥିବା ଶ୍ରେଷ୍ଠ ଗଳ୍ପମାନଙ୍କ ମଧ୍ୟରେ 'ଅନ୍ଧକାରର ମୋହ' ଅନ୍ୟତମ । ଅନ୍ଧକାର ପ୍ରତି ଯେଉଁମାନେ ମୋହଗ୍ରସ୍ତ ସେମାନଙ୍କ ପକ୍ଷେ ଆଲୋକ ନିରର୍ଥକ । ସାମାଜିକ ଜୀବନରେ ଏଭଳି ଚରିତ୍ର ବି ଦେଖାଯାନ୍ତି ଯେଉଁମାନେ ଅଭ୍ୟସ୍ତ ରହିଥାନ୍ତି 'ଯାହା ଶିଖାଇଛି ଜଟାଧାରୀରେ ବରାଙ୍ଗୀ' ରୀତିରେ । ନୂଆ କିଛି ଗ୍ରହଣ କରିବା ସେମାନଙ୍କ ଦେଇ ସମ୍ଭବପର ହୁଏ ନାହିଁ । ଏମିତି ଏକ ଚରିତ୍ର ହେଉଛନ୍ତି ସୁମିତ୍ରା ଦେଈ । ଇଞ୍ଜିନିୟର ନୀଳାଦ୍ରିବାବୁଙ୍କ ପାଳନକାରିଣୀ, ମାତା ବନାମ ପିଉସୀ । ଇଞ୍ଜିନିୟର ନୀଳାଦ୍ରିଙ୍କ ପତ୍ନୀ ମମତା, ସୁମିତ୍ରା ଦେଈଙ୍କ ଆକଟରେ ସେ ଘର ଏଗୁଣ୍ଡିବନ୍ଧ ଡେଇଁ ପାରିନି । ଅତୀତର ମାତୃ-ସୋହାଗରେ ଉଚ୍ଛଳ ନୀଳାଦ୍ରି ମଧ୍ୟ ମା'ଙ୍କ ରୀତି-ନୀତିରେ ପରିବର୍ତ୍ତନ ପାଇଁ ଚେଷ୍ଟା କରନ୍ତି ନାହିଁ । ବୋଉଙ୍କର ସେହି ପୁରୁଣା ଗୁଣ - ପରିଧାନରେ ନାଲିକସ୍ତା କିମ୍ବା ପାଞ୍ଚହାତ ଧୋତି ଖଣ୍ଡେ । ବାଲେଶ୍ୱରୀ ଦୋକତା ଓ ନାସ ସେବନ । ଅତୀତର ନୂଆଣିଆ ଚାଳର ସଂସାର ଏବେ କୋଠାଘରରେ ସୁଶୋଭିତ । ଅଥଚ ସୁମିତ୍ରା ଦେଈ ତାଙ୍କ ପୁରୁଣା ଅଭ୍ୟାସରୁ ନିକିଳି ପାରନ୍ତି ନାହିଁ । ପୁଅ ବୋହୂ ସିନେମା ଦେଖି ଫେରିବା ବେଳକୁ ତାଙ୍କ ସଂଭାଷଣର ଭାଷା କିପରି ହୁଏ ତାହା ଶୁଣନ୍ତୁ - "କ'ଣ ବାବୁ- ବାବୁଆଣୀଙ୍କର ସିନେମା ଦେଖା ସଇଲା ? ହଇରେ ନୀଳ ! କୁଳବୋହୂ,

ଗୋଡ଼କାଢ଼ି ଦାଣ୍ଡରେ ଠିଆ ହେବ - ଏଇଆ କ'ଣ ତୋ ପାଠର ଦୀକ୍ଷା ? ସିନେମା ଦାଣ୍ଡରୁ ଘର- ରାସ୍ତାର ବିଜୁଳି ଆଲୁଅ ତଳେ କେତେ ଆଖି; କେତେ କଥା; ଖାଲି ଦେହ ଛୁଇଁ ଲେଉଟି ଯାଉଥିବ, ବୃଦ୍ଧ ବଅସରେ ମୋତେ ଏଇଆ ଦେଖାଇଲୁ"; ପୁରୁଣା କାଳିଆ ରୀତିକୁ ଛାଡ଼ିପାରୁ ନଥିବା ଗାଉଁଲି ନାରୀର ସ୍ୱାଭାବିକ ଭାଷା ବ୍ୟବହାରରେ ଗାଳ୍ପିକଙ୍କ ଦକ୍ଷତା ପ୍ରଶଂସାର୍ହ । ଗଳ୍ପର ଉପସଂହାରରେ ଗାଳ୍ପିକଙ୍କ ସମାଲୋଚନାମୂଳକ ଅଭିବ୍ୟକ୍ତି ଓ ଶିକ୍ଷିତା ମମତାଙ୍କ ନିର୍ବାକ୍ ଭଙ୍ଗୀ ଓଡ଼ିଆ କ୍ଷୁଦ୍ରଗଳ୍ପ କାରିଗରିରେ ତତ୍କାଳୀନ ଅଭିନବ ସଂଯୋଜନ କୁହାଯାଇପାରେ । ପ୍ରଗତି ପଲ୍ଲୀର ମଞ୍ଚରେ ସୁମିତ୍ରା ଦେଈଙ୍କ ଭଳି ଚରିତ୍ରମାନେ ପୁରୋଧା ହେବାକୁ ଗାଳ୍ପିକ ବ୍ୟଞ୍ଜନାତ୍ମକ ଭାଷାରେ ତାତ୍ସଲ୍ୟ କରନ୍ତି; 'କାଲି ହୁଏତ ମାଟି ଦାଣ୍ଡରେ ପଙ୍କର ଲହଡ଼ି ଖେଳୁଥିଲା; କିନ୍ତୁ ଆଜି ସେଠି ସିମେଣ୍ଟ ଓ କଂକ୍ରିଟର ଶେଯ ପରା ହୋଇଛି । ମାଟିର କାଦୁଅ ରୂପକୁ କଂକ୍ରିଟ୍ ଦେଇ ଲୁଚେଇ ଦିଆଯାଇଛି । ମାତ୍ର ମଣିଷର ମନ ? ପରଦା ଦେଇ ଘୋଡ଼େଇ ହେଉନି, କଂକ୍ରିଟ୍ ଢାଳି ଚିକ୍କଣ ବି କରି ହଉନି ।' ଠିକ୍ ସେତିକିବେଳେ 'ମମତା ମୁଣ୍ଡ ନୁଆଇଁ ଧୂଳି ଗଣୁଥାଏ । ଧୂଳି ଧୂଆଁଳିଆ ପ୍ରଗତି ପଲ୍ଲୀର ଚଟାଣ ଉପରେ ସେ ଗୋଟିଏ ନିଃସଙ୍ଗ ଦୀପ । ଜଳନ୍ତା ଶିଖା ଅଛି, ମାତ୍ର ଅମାନିଆଁ ପବନର ଧକ୍କାରେ ଲିଭିଯାଉଛି ।' ଆଲୋଚ୍ୟ ଗଳ୍ପର ଭାବଧର୍ମ ସତେଯେପରି ପ୍ରାକ୍-ସ୍ୱାଧୀନତାକାଳୀନ ଗ୍ରାମୀଣ ପରମ୍ପରା ଓ ସ୍ୱାଧୀନତା ପରବର୍ତ୍ତୀ କାଳର ପ୍ରଗତିକୈନ୍ଦ୍ରିକ ଗ୍ରାମୀଣ ଚଳଣି ମଧ୍ୟରେ ସୃଷ୍ଟ ଅନ୍ତଃଦ୍ୱନ୍ଦ୍ୱ ଉପରେ ପ୍ରତିଷ୍ଠିତ । କିନ୍ତୁ ଶିଳ୍ପ-ପ୍ରକରଣରେ ପାରଂପରିକତା ଓ ଆଧୁନିକତାର ସମନ୍ୱୟ ସାଧିତ ହୋଇଥିବା ଉପଲବ୍ଧ ହେଉଥିଲେ ହେଁ ତାହା ଗାଳ୍ପିକ ଶ୍ରୀ ନାୟକଙ୍କ ନିଜସ୍ୱ ନିର୍ମାଣ ବୋଲି ବୁଝିବାକୁ ହେବ ।

ଓଡ଼ିଆ ସାହିତ୍ୟର ଇତିହାସରେ ୧୯୬୦ ମସିହା ପରବର୍ତ୍ତୀ ସମୟ ଖୁବ୍‌ବେଶୀ ଗୁରୁତ୍ୱପୂର୍ଣ୍ଣ ବିବେଚିତ ହୁଏ । କାହିଁକି ନା ଓଡ଼ିଆ ଯୁବଲେଖକ ସମ୍ମେଳନଠାରୁ ଆରମ୍ଭ କରି ଅନାମ ଆନ୍ଦୋଳନ ପର୍ଯ୍ୟନ୍ତ ସେତେବେଳେ ସାହିତ୍ୟରେ ପରୀକ୍ଷା-ନିରୀକ୍ଷା ଚଳାଇଥିଲେ । ସେମାନଙ୍କ ମଧ୍ୟରେ କ୍ଷେତ୍ରବାସୀ ଅନ୍ୟତମ । କ୍ଷୟିଷ୍ଣୁ ସାମନ୍ତବାଦର ଚିତ୍ର ଉପସ୍ଥାପନରେ ଗାଳ୍ପିକ ସୁରେନ୍ଦ୍ର ମହାନ୍ତିଙ୍କ ଗଳ୍ପ-କଳାର ପାରଦର୍ଶିତା ଅବିସମ୍ବାଦିତଭାବେ ସର୍ବତ୍ର ପ୍ରଶଂସିତ ହୋଇଥାଏ । ଗାଳ୍ପିକ କ୍ଷେତ୍ରବାସୀ ସେଭଳି ଏକ କଥାବସ୍ତୁ ଆଧାରରେ 'ଅଙ୍ଗାର' ଗଳ୍ପ ଲେଖିଛନ୍ତି । ଅଙ୍ଗାରର ପ୍ରତୀକାର୍ଥ ବହୁପ୍ରସାରୀ । ଯେପରି; ସ୍ୱଭାବ ଅପରିବର୍ତ୍ତିତ ରହିବା, ଏକଦା ଦାହିକା ଶକ୍ତିଥିଲା, ଆବଶ୍ୟକ ହେଲେ ପୁଣିଥରେ ଦାହିକା ଶକ୍ତି ଧାରଣ ପାଇଁ ସମର୍ଥ ଥିବା ଇତ୍ୟାଦି ଇତ୍ୟାଦି । ଏହି ଗଳ୍ପର ନାୟକ ଶଶିକାନ୍ତ ରାୟ; ବିରାଟ ଜମିଦାରୀର ସ୍ୱାଧୀନତା ପରବର୍ତ୍ତୀକାଳୀନ ଉତ୍ତରାଧିକାରୀ । ରାଜ୍ୟରେ ଗଣତନ୍ତ୍ରର

ନିଶାଣ । ଶଶିକାନ୍ତଙ୍କ ପୂର୍ବତନ ବନ୍ଧୁ ଅନୁରଞ୍ଜନ ଦାସ ରାଜ୍ୟର ଶିଳ୍ପ ମନ୍ତ୍ରୀ । ଲୋନ ମଞ୍ଜୁରୀ ପାଇଁ ମନ୍ତ୍ରୀଙ୍କ ଦ୍ୱାରସ୍ଥ ଶଶିକାନ୍ତ ବନ୍ଧୁଙ୍କ ନାସ୍ତିବାଣୀରେ ଆହତ ହୋଇ ଫେରନ୍ତି । ସ୍ୱାଧୀନତା ପରବର୍ତ୍ତୀ କାଳରେ ଜମିଦାରୀ ଉପଭୋକ୍ତା ସାମନ୍ତବର୍ଗର ପ୍ରତିନିଧିମାନେ ବହୁ ହିନସ୍ତାର ଶିକାର ହୋଇଛନ୍ତି । ଯେଉଁମାନେ ରାଜନୀତି ଆଡ଼କୁ ଢଳି କ୍ଷମତାର ଅଳିନ୍ଦରେ ଘୂରିଛନ୍ତି ସେମାନଙ୍କ କଥା ଭିନ୍ନ । କିନ୍ତୁ ଶଶିକାନ୍ତଙ୍କ ଭଳି ଚରିତ୍ରମାନେ ଜମିଦାରୀରୁ ପ୍ରାପ୍ତ ଅର୍ଥରେ ପତ୍ନୀଙ୍କ ରୋଗର ବି ଚିକିତ୍ସା କରାଇ ପାରିନାହାନ୍ତି । ଏପରିକି ବନ୍ଧୁ ଡାକ୍ତର ବିମଳ ଏସ.ଡ଼ି.ଓଙ୍କ କଲ୍ ଆଟେଣ୍ଡ କରିବାକୁ ଗଲେ ଅଥଚ ଶଶିକାନ୍ତଙ୍କ ଚାକର କର୍ତ୍ତୃକ ଡାକରା ନାମଞ୍ଜୁର ହେଲା । ପତ୍ନୀ ସୁକାନ୍ତି ପଟ୍ଟନାୟକ କ୍ଲିନିକ୍‌ରେ ଆଖି ବୁଜିଲେ । ପୁଣି ରଞ୍ଜନର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତି ସମ୍ବାଦ ଦେଖି ହସ ଆସୁଥିଲେ ବି ହସି ପାରିଲେନି ଶକ୍ତିକାନ୍ତ । ମନେ ପଡ଼ିଗଲା; ଏକା ସମୟରେ ଉଭୟ ଗପଲେଖା ଆରମ୍ଭ କରିଥିଲେ ।

ସୁରେନ୍ଦ୍ରଙ୍କ ଗଳ୍ପରେ ଅଙ୍କିତ ହୋଇଥିବା ବିଲୟମୁଖୀ ସାମନ୍ତବାଦର ଚିତ୍ର ଇତିହାସର ସାହିତ୍ୟିକ ସ୍କେଚ । କିନ୍ତୁ କ୍ଷେତ୍ରବାସୀଙ୍କ ଅଙ୍ଗାର ଗଳ୍ପରେ ଜମିଦାର ପରିବାରର କୁଳାଙ୍କୁର ଦାହିକାଶକ୍ତି ଶୂନ୍ୟ ଅଙ୍ଗାର ଖଣ୍ଡେ ମାତ୍ର । ସେ ରିକ୍ତ ହସ୍ତ, ସାଂପ୍ରତିକ କାଳର ଚାକିରିଆ, ରାଜନୀତି ବେଉସା କରୁଥିବା ବନ୍ଧୁମାନଙ୍କ ଦ୍ୱାରା ଉପେକ୍ଷିତ, ସତେଯେପରି ସେ ପ୍ରତିଭା ବିବର୍ଜିତ ଅଜ୍ଞାତ ସାମାଜିକ ଚରିତ୍ରଟିଏ । ସୁରେନ୍ଦ୍ରଙ୍କ ଭଳି ବର୍ଣ୍ଣନାରେ ନାଟକୀୟତା ବା ଓଜସ୍ୱିନୀ ଭାଷାର ପ୍ରୟୋଗ ଅଙ୍ଗାର ଗଳ୍ପଶୈଳୀରେ ପରିଦୃଷ୍ଟ ହୁଏ ନାହିଁ । ଅଥଚ ଗଳ୍ପନାୟକର ମାନସିକ ଦ୍ୱନ୍ଦ୍ୱକୁ ସହଜ ଭାଷାରେ ଗତିଶୀଳ କରାଇବା ପୂର୍ବକ ଗାଳ୍ପିକ ଗଳ୍ପର ଉପସଂହାରକୁ ପ୍ରତୀକାର୍ଥରେ ଭାବ ବ୍ୟଞ୍ଜନାରେ ଖୁବ୍ ପ୍ରଭାବଶାଳୀ କରିପାରିଛନ୍ତି; ଯାହା ଯେକୌଣସି ପାଠକକୁ କ୍ଲାନ୍ତିହୀନ ପାଠର ସୁଯୋଗ ଦେବାରେ ସମର୍ଥ ରହିଛି । ଏହି ଦୃଷ୍ଟିରୁ ଗଳ୍ପଟିର ସାର୍ଥକତା ବାରିହୋଇ ପଡ଼ିଛି ।

ଆଲୋଚନାଧୀନ ସଂକଳନରେ ସ୍ଥାନପାଇଥିବା 'କ୍ଷଣପ୍ରଭା', 'ଦୁଇଟି କାହାଣୀ', 'ସୀମାନ୍ତ', 'ସମ୍ଭୁଜା ସଖାୟା' ଗଳ୍ପଗୁଡ଼ିକ ସ୍ୱତନ୍ତ୍ର ରୀତିର । କ୍ଷଣପ୍ରଭାରେ ପ୍ରେମ-ବିଫଳ ଆବିଷ୍କାରର ମନୋଦଶା ବିବିଧ ପାରିବେଶିକ ଚିତ୍ର ଓ ତଦଜନିତ ପ୍ରଭାବ-ପ୍ରକ୍ରିୟାରୁ ଉଦ୍ଭୂତ ଆତ୍ମସଂଳାପ ଜରିଆରେ ବ୍ୟକ୍ତ କରାଯାଇଛି । ଗଳ୍ପରେ କାହାଣୀ ନାହିଁ, ଅଥଚ ଗଳ୍ପନାୟକର ଆଭାସିତ ଚେତନାରୁ କାହାଣୀ ପରିକଳ୍ପନା କରିଦେଉଛି ; 'ଦୁଇଟି କାହାଣୀ' ମଧ୍ୟରେ 'ସୃଷ୍ଟି' ଓ 'ସୌନ୍ଦର୍ଯ୍ୟ' ଶୀର୍ଷକରେ ଦୁଇଟି ଗଦ୍ୟକୃତି ସ୍ଥାନିତ । ଉପଭୋଗ ଆସ୍ପୃହ ଆଧୁନିକ ମଣିଷ ସୌନ୍ଦର୍ଯ୍ୟାକାଂକ୍ଷୀ । ସୃଷ୍ଟି ତା ପାଇଁ ଅବାଞ୍ଛିତ । କିନ୍ତୁ

ଗୋଡ଼କାଢ଼ି ଦାଣ୍ଡରେ ଠିଆ ହେବ - ଏଇଆ କ'ଣ ତୋ ପାଠର ଦୀକ୍ଷା ? ସିନେମା ଦାଣ୍ଡରୁ ଘର- ରାସ୍ତାର ବିଜୁଳି ଆଲୁଅ ତଳେ କେତେ ଆଖି; କେତେ କଥା; ଖାଲି ଦେହ ଛୁଇଁ ଲେଉଟି ଯାଉଥିବ, ବୃଦ୍ଧ ବଅସରେ ମୋତେ ଏଇଆ ଦେଖାଇଲୁ"; ପୁରୁଣା କାଳିଆ ରୀତିକୁ ଛାଡ଼ିପାରୁ ନଥିବା ଗାଉଁଲି ନାରୀର ସ୍ୱାଭାବିକ ଭାଷା ବ୍ୟବହାରରେ ଗାଳ୍ପିକଙ୍କ ଦକ୍ଷତା ପ୍ରଶଂସାର୍ହ । ଗଳ୍ପର ଉପସଂହାରରେ ଗାଳ୍ପିକଙ୍କ ସମାଲୋଚନାମୂଳକ ଅଭିବ୍ୟକ୍ତି ଓ ଶିକ୍ଷିତା ମମତାଙ୍କ ନିର୍ବାକ୍ ଭଙ୍ଗୀ ଓଡ଼ିଆ କ୍ଷୁଦ୍ରଗଳ୍ପ କାରିଗରିରେ ତତ୍‌କାଳୀନ ଅଭିନବ ସଂଯୋଜନ କୁହାଯାଇପାରେ । ପ୍ରଗତି ପଲ୍ଲୀର ମଞ୍ଚରେ ସୁମିତ୍ରା ଦେଈଙ୍କ ଭଳି ଚରିତ୍ରମାନେ ପୁରୋଧା ହେବାକୁ ଗାଳ୍ପିକ ବ୍ୟଞ୍ଜନାତ୍ମକ ଭାଷାରେ ତାଗିଦ୍ଲ୍ୟ କରନ୍ତି; 'କାଲି ହୁଏତ ମାଟି ଦାଣ୍ଡରେ ପଙ୍କର ଲହଡ଼ି ଖେଳୁଥିଲା; କିନ୍ତୁ ଆଜି ସେଠି ସିମେଣ୍ଟ ଓ କଂକ୍ରିଟର ଶେଯ ପରା ହୋଇଛି । ମାଟିର କାଦୁଅ ରୂପକୁ କଂକ୍ରିଟ୍ ଦେଇ ଲୁଚେଇ ଦିଆଯାଇଛି । ମାତ୍ର ମଣିଷର ମନ ? ପରଦା ଦେଇ ଘୋଡ଼େଇ ହେଉନି, କଂକ୍ରିଟ୍ ଢାଳି ଚିକ୍‌କଣ ବି କରି ହଉନି ।' ଠିକ୍ ସେତିକିବେଳେ 'ମମତା ମୁଣ୍ଡ ନୁଆଇଁ ଧୂଳି ଗଣୁଥାଏ । ଧୂଳି ଧୂଆଁଳିଆ ପ୍ରଗତି ପଲ୍ଲୀର ଚଟାଣ ଉପରେ ସେ ଗୋଟିଏ ନିଃସଙ୍ଗ ଦୀପ । ଜଳନ୍ତା ଶିଖା ଅଛି, ମାତ୍ର ଅମାନିଆଁ ପବନର ଧକ୍‌କାରେ ଲିଭିଯାଉଛି ।' ଆଲୋଚ୍ୟ ଗଳ୍ପର ଭାବଧର୍ମ ସତେଯେପରି ପ୍ରାକ୍-ସ୍ୱାଧୀନତାକାଳୀନ ଗ୍ରାମୀଣ ପରମ୍ପରା ଓ ସ୍ୱାଧୀନତା ପରବର୍ତ୍ତୀ କାଳର ପ୍ରଗତିକେନ୍ଦ୍ରିକ ଗ୍ରାମୀଣ ଚଳଣି ମଧ୍ୟରେ ସୃଷ୍ଟ ଅନ୍ତଃଦ୍ୱନ୍ଦ୍ୱ ଉପରେ ପ୍ରତିଷ୍ଠିତ । କିନ୍ତୁ ଶିଳ୍ପ-ପ୍ରକରଣରେ ପାରଂପରିକତା ଓ ଆଧୁନିକତାର ସମନ୍ୱୟ ସାଧିତ ହୋଇଥିବା ଉପଲବ୍ଧ ହେଉଥିଲେ ହେଁ ତାହା ଗାଳ୍ପିକ ଶ୍ରୀ ନାୟକଙ୍କ ନିଜସ୍ୱ ନିର୍ମାଣ ବୋଲି ବୁଝିବାକୁ ହେବ ।

ଓଡ଼ିଆ ସାହିତ୍ୟର ଇତିହାସରେ ୧୯୬୦ ମସିହା ପରବର୍ତ୍ତୀ ସମୟ ଖୁବ୍‌ବେଶୀ ଗୁରୁତ୍ୱପୂର୍ଣ୍ଣ ବିବେଚିତ ହୁଏ । କାହିଁକି ନା ଓଡ଼ିଆ ଯୁବଲେଖକ ସମ୍ମେଳନଠାରୁ ଆରମ୍ଭ କରି ଅନାମ ଆନ୍ଦୋଳନ ପର୍ଯ୍ୟନ୍ତ ସେତେବେଳେ ସାହିତ୍ୟରେ ପରୀକ୍ଷା-ନିରୀକ୍ଷା ଚଳାଇଥିଲେ । ସେମାନଙ୍କ ମଧ୍ୟରେ କ୍ଷେତ୍ରବାସୀ ଅନ୍ୟତମ । କ୍ଷୟିଷ୍ଣୁ ସାମନ୍ତବାଦର ଚିତ୍ର ଉପସ୍ଥାପନରେ ଗାଳ୍ପିକ ସୁରେନ୍ଦ୍ର ମହାନ୍ତିଙ୍କ ଗଳ୍ପ-କଳାର ପାରଦର୍ଶିତା ଅବିସମ୍ବାଦିତଭାବେ ସର୍ବତ୍ର ପ୍ରଶଂସିତ ହୋଇଥାଏ । ଗାଳ୍ପିକ କ୍ଷେତ୍ରବାସୀ ସେଭଳି ଏକ କଥାବସ୍ତୁ ଆଧାରରେ 'ଅଙ୍ଗାର' ଗଳ୍ପ ଲେଖିଛନ୍ତି । ଅଙ୍ଗାରର ପ୍ରତୀକାର୍ଥ ବହୁପ୍ରସାରୀ । ଯେପରି; ସ୍ୱଭାବ ଅପରିବର୍ତ୍ତିତ ରହିବା, ଏକଦା ଦାହିକା ଶକ୍ତିଥିଲା, ଆବଶ୍ୟକ ହେଲେ ପୁଣିଥରେ ଦାହିକା ଶକ୍ତି ଧାରଣ ପାଇଁ ସମର୍ଥ ଥିବା ଇତ୍ୟାଦି ଇତ୍ୟାଦି । ଏହି ଗଳ୍ପର ନାୟକ ଶଶିକାନ୍ତ ରାୟ; ବିରାଟ ଜମିଦାରୀର ସ୍ୱାଧୀନତା ପରବର୍ତ୍ତୀକାଳୀନ ଉତ୍ତରାଧିକାରୀ । ରାଜ୍ୟରେ ଗଣତନ୍ତ୍ରର

ନିଶାଣ । ଶଶିକାନ୍ତଙ୍କ ପୂର୍ବତନ ବନ୍ଧୁ ଅନୁରଞ୍ଜନ ଦାସ ରାଜ୍ୟର ଶିଳ୍ପ ମନ୍ତ୍ରୀ । ଲୋନ ମଞ୍ଜୁରୀ ପାଇଁ ମନ୍ତ୍ରୀଙ୍କ ଦ୍ୱାରସ୍ଥ ଶଶିକାନ୍ତ ବନ୍ଧୁଙ୍କ ନାସ୍ତିବାଣୀରେ ଆହତ ହୋଇ ଫେରନ୍ତି । ସ୍ୱାଧୀନତା ପରବର୍ତ୍ତୀ କାଳରେ ଜମିଦାରୀ ଉପଭୋକ୍ତା ସାମନ୍ତବର୍ଗର ପ୍ରତିନିଧିମାନେ ବନ୍ଧୁ ହିନସ୍ତାର ଶିକାର ହୋଇଛନ୍ତି । ଯେଉଁମାନେ ରାଜନୀତି ଆଡ଼କୁ ଢଳି କ୍ଷମତାର ଅଳିନ୍ଦରେ ଘୂରିଛନ୍ତି ସେମାନଙ୍କ କଥା ଭିନ୍ନ । କିନ୍ତୁ ଶଶିକାନ୍ତଙ୍କ ଭଳି ଚରିତ୍ରମାନେ ଜମିଦାରୀରୁ ପ୍ରାପ୍ତ ଅର୍ଥରେ ପତ୍ନୀଙ୍କ ରୋଗର ବି ଚିକିତ୍ସା କରାଇ ପାରିନାହାନ୍ତି । ଏପରିକି ବନ୍ଧୁ ଡାକ୍ତର ବିମଳ ଏସ.ଡ଼ି.ଓଙ୍କ କଲ୍ ଆଟେଣ୍ଡ କରିବାକୁ ଗଲେ ଅଥଚ ଶଶିକାନ୍ତଙ୍କ ଚାକର କର୍ତ୍ତୃକ ଡାକରା ନାମଞ୍ଜୁର ହେଲା । ପତ୍ନୀ ସୁକାନ୍ତି ପଟ୍ଟନାୟକ କ୍ଲିନିକ୍‌ରେ ଆଖି ବୁଜିଲେ । ପୁଣି ରଞ୍ଜନର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତି ସମ୍ବାଦ ଦେଖି ହସ ଆସୁଥିଲେ ବି ହସି ପାରିଲେନି ଶକ୍ତିକାନ୍ତ । ମନେ ପଡ଼ିଗଲା; ଏକା ସମୟରେ ଉଭୟ ଗପଲେଖା ଆରମ୍ଭ କରିଥିଲେ ।

ସୁରେନ୍ଦ୍ରଙ୍କ ଗଳ୍ପରେ ଅଙ୍କିତ ହୋଇଥିବା ବିଲୟମୁଖୀ ସାମନ୍ତବାଦର ଚିତ୍ର ଇତିହାସର ସାହିତ୍ୟିକ ସ୍କେଚ । କିନ୍ତୁ କ୍ଷେତ୍ରବାସୀଙ୍କ ଅଙ୍ଗାର ଗଳ୍ପରେ ଜମିଦାର ପରିବାରର କୁଳାଙ୍କୁର ଦାହିକାଶକ୍ତି ଶୂନ୍ୟ ଅଙ୍ଗାର ଖଣ୍ଡେ ମାତ୍ର । ସେ ରିକ୍ତ ହସ୍ତ, ସାଂପ୍ରତିକ କାଳର ଚାକିରିଆ, ରାଜନୀତି ବେଉସା କରୁଥିବା ବନ୍ଧୁମାନଙ୍କ ଦ୍ୱାରା ଉପେକ୍ଷିତ, ସତେଯେପରି ସେ ପ୍ରତିଭା ବିବର୍ଜିତ ଅଜ୍ଞାତ ସାମାଜିକ ଚରିତ୍ରଟିଏ । ସୁରେନ୍ଦ୍ରଙ୍କ ଭଳି ବର୍ଣ୍ଣନାରେ ନାଟକୀୟତା ବା ଓଜସ୍ୱିନୀ ଭାଷାର ପ୍ରୟୋଗ ଅଙ୍ଗାର ଗଳ୍ପଶୈଳୀରେ ପରିଦୃଷ୍ଟ ହୁଏ ନାହିଁ । ଅଥଚ ଗଳ୍ପନାୟକର ମାନସିକ ଦ୍ୱନ୍ଦ୍ୱକୁ ସହଜ ଭାଷାରେ ଗତିଶୀଳ କରାଇବା ପୂର୍ବକ ଗାଳ୍ପିକ ଗଳ୍ପର ଉପସଂହାରକୁ ପ୍ରତୀକାର୍ଥର ଭାବ ବ୍ୟଞ୍ଜନାରେ ଖୁବ୍ ପ୍ରଭାବଶାଳୀ କରିପାରିଛନ୍ତି; ଯାହା ଯେକୌଣସି ପାଠକକୁ କ୍ଳାନ୍ତିହୀନ ପାଠର ସୁଯୋଗ ଦେବାରେ ସମର୍ଥ ରହିଛି । ଏହି ଦୃଷ୍ଟିରୁ ଗଳ୍ପଟିର ସାର୍ଥକତା ବାରିହୋଇ ପଡ଼ିଛି ।

ଆଲୋଚନାଧୀନ ସଂକଳନରେ ସ୍ଥାନପାଇଥିବା 'କ୍ଷଣପ୍ରଭା', 'ଦୁଇଟି କାହାଣୀ', 'ସୀମାନ୍ତ', 'ସଯୁକ୍ତା ସଖାୟା' ଗଳ୍ପଗୁଡ଼ିକ ସ୍ୱତନ୍ତ୍ର ରୀତିର । କ୍ଷଣପ୍ରଭାରେ ପ୍ରେମ-ବିଫଳ ଆବିଷ୍କାରର ମନୋଦଶା ବିବିଧ ପାରିବେଶିକ ଚିତ୍ର ଓ ତଦଜନିତ ପ୍ରଭାବ-ପ୍ରକ୍ରିୟାରୁ ଉଦ୍ଭୁତ ଆତ୍ମସଂଳାପ ଜରିଆରେ ବ୍ୟକ୍ତ କରାଯାଇଛି । ଗଳ୍ପରେ କାହାଣୀ ନାହିଁ, ଅଥଚ ଗଳ୍ପନାୟକର ଆଭାସିତ ଚେତନାରୁ କାହାଣୀ ପରିକଳ୍ପନା କରିଦେଉଛି ; 'ଦୁଇଟି କାହାଣୀ' ମଧ୍ୟରେ 'ସୃଷ୍ଟି' ଓ 'ସୌନ୍ଦର୍ଯ୍ୟ' ଶୀର୍ଷକରେ ଦୁଇଟି ଗଦ୍ୟକୃତି ସ୍ଥାନିତ । ଉପଭୋଗ ଆସ୍ପୃହ ଆଧୁନିକ ମଣିଷ ସୌନ୍ଦର୍ଯ୍ୟାକାଙ୍କ୍ଷୀ । ସୃଷ୍ଟି ତା ପାଇଁ ଅବାଞ୍ଛିତ । କିନ୍ତୁ

ସୃଷ୍ଟିର ବିକାଶରେ ସୌନ୍ଦର୍ଯ୍ୟ ପରିସ୍ଫୁଟିତ ହୁଏ - ଏହି ନିର୍ଯ୍ୟାସ ହିଁ ସୃଷ୍ଟି ଓ ସୌନ୍ଦର୍ଯ୍ୟ ରଚନା ଦୁଇଟିରେ ପ୍ରତିପାଦିତ । ଶୈଳୀ ଦୃଷ୍ଟିରୁ ରଚନା ଦୁଇଟି ନାଟ୍ୟଶୈଳୀ ଓ ମନ୍ମୟ ରଚନାରୀତିର ସମନ୍ୱିତ ଏକକ ଧାରାରେ ପ୍ରକାଶିତ । ମୁହୂର୍ତ୍ତକର ଆତ୍ମଚିନ୍ତନ ଜୀବନଦର୍ଶନର ବାର୍ତ୍ତା-ଅଭିପ୍ରେତ ନ ହୋଇ ଜୀବନସ୍ଥିତିରେ ସମାଧାନର ପଥ ଲୋଡ଼ିଥିବାରୁ ସୃଷ୍ଟି ଦୁଇଟିକୁ ଗଳ୍ପ କହିବାରେ ଅସୁବିଧା ନାହିଁ । 'ସୀମାନ୍ତ' ଗଳ୍ପରେ କଣ୍ଠଶିଳ୍ପୀ ସଂଗ୍ରାମର ଆତ୍ମ-ଅନ୍ୱେଷଣ ବିଭିନ୍ନ ଚିତ୍ରାତ୍ମକ ତଥା ହୃଦୟସ୍ପର୍ଶୀ ବର୍ଣ୍ଣନା ଦେଇ ଅଭିବ୍ୟକ୍ତ କରାଯାଇଅଛି । ଏକଦା ଗାନଦ୍ୱାରା ଜନମନଘେନା ହୋଇଥିବା ସଂଗ୍ରାମ ନୀରବି ଯାଇଛି । ସ୍ୱର ବିୟୋଗ ଘଟିଛି । ସମାଜରେ ଅପୃଚ୍ଛା ଅପଚରା ହୋଇ ପଡ଼ିଥିବା ସଂଗ୍ରାମ ଜୀବନର ଅର୍ଥକୁ ନିଜ ଦେଇ ଖୋଜି ବସିଛି । ଖାଇବା ପତ୍ରରେ ଶ୍ୱାନଦ୍ୱୟଙ୍କ କଳିରୁ ଗୋଟେ ହଡ଼ି ଆସି ଲୁହ ଗଡ଼ାଉଛି । ତେଜୋମୟ ଅତୀତକୁ ସ୍ମରଣ କରୁଛି । ଶ୍ମଶାନର ଶବାଧାରରେ ସିମନ୍ତିନୀକୁ ବି ଶୂନ୍ୟହସ୍ତ ଓ ଆଭରଣହୀନ ଅଙ୍ଗନେଇ ଯିବାକୁ ପଡ଼ୁଛି । ଏଇ ତ ଜୀବନ ! ଅତୀତର ମୋହମୁଗ୍ଧ ସ୍ମୃତି ଖୋଜାପ୍ରତି ବ୍ୟାକୁଳ ହେବାର ମାନେ ବା କ'ଣ ? ଚରିତ୍ରର ଚିନ୍ତାକୁ ଯୁକ୍ତିଯୁକ୍ତ ଭାଷା ଜରିଆରେ ଘାଟଣିକ ଚିତ୍ର ଓ କଥା ଦେଇ ମୂର୍ତ୍ତ କରାଯିବାର ପରୀକ୍ଷା ସୀମାନ୍ତ ଗଳ୍ପ ପରିପ୍ରେକ୍ଷୀରେ ସାର୍ଥକ ହୋଇଛି ।

୧୯୬୦ ମସିହା ପରେ ଓଡ଼ିଆ କ୍ଷୁଦ୍ରଗଳ୍ପ ରଚନାକୁ ଘେନି ଯେଉଁଭଳି ପରୀକ୍ଷା ନିରୀକ୍ଷା ଆରମ୍ଭ ହୋଇଥିଲା ତହିଁର ସତ୍ୟ-ସାକ୍ଷୀ ହେଉଛି କ୍ଷେତ୍ରବାସୀଙ୍କ 'ଫୁଲର କବର ଓ ଅନ୍ୟାନ୍ୟ ଗଳ୍ପ' ପୁସ୍ତକ । ଗାଳ୍ପିକ ଶ୍ରୀନାୟକ ପ୍ରାଣଧର୍ମରେ ବେଶ୍ ରୋମାଣ୍ଟିକ୍ ଓ ଜୀବନଦୃଷ୍ଟିରେ ବାସ୍ତବବାଦୀ ଥିବା ତାଙ୍କ କୃତିସମୂହରୁ ଉପଲବଧ ହୁଏ । ଓଡ଼ିଆ କ୍ଷୁଦ୍ରଗଳ୍ପ ଧାରାରେ ସେ ଅଦ୍ୟାବଧି ସବିଶେଷ ଆଲୋଚିତ ନ ହେବା ଓଡ଼ିଆ ଭାଷା-ସାହିତ୍ୟ ଗବେଷଣାର ସାଧୁତା ପ୍ରତି ଇଙ୍ଗିତ ସୃଷ୍ଟି କରୁଛି । 'ଫୁଲର କବର ଓ ଅନ୍ୟାନ୍ୟ ଗଳ୍ପ' ପୁସ୍ତକ ପଢ଼ିବାବେଳେ ମନେ ହୋଇଛି, ସାହିତ୍ୟର ଯେ କୌଣସି ବିଭାଗରେ କଲମ ଚଳେଇଥିବା ଅଧ୍ୟାପକ କ୍ଷେତ୍ରବାସୀ ନାୟକ ନିଜର ଶୈଳୀଗତ ବାଆଁରପଣ ପାଇଁ ବାରି ହୋଇ ପଡ଼ିବା ଭଳି; ଏଥିରେ ବି ପ୍ରତିପନ୍ନ କରୁଛନ୍ତି ନିଜର ଗୋଠ-ଖଣ୍ଡିଆ ପଣ । ଓଡ଼ିଆ କ୍ଷୁଦ୍ରଗଳ୍ପର ଭାବଧର୍ମ ଓ ଶିଳ୍ପପ୍ରକରଣରେ ଭିନ୍ନତା ଆଣିବା ପାଇଁ ସଚେଷ୍ଟ ଥିବା ସ୍ରଷ୍ଟାଙ୍କ ମଧ୍ୟରେ ଅଧ୍ୟାପକ ନାୟକଙ୍କ ନାମ ଅନୁଚ୍ଚାରିତ ରହିଥିଲେ ହେଁ ତହିଁରେ ପରୀକ୍ଷା-ନିରୀକ୍ଷାଗତ ନିଷ୍ପନତାଦୃଷ୍ଟେ ନିଆରାତ୍ୱ ପ୍ରତିପନ୍ନ କରିବା ଥିଲା ତାଙ୍କର ନିୟତି; ଏ କଥା ଯେ କେହି ସ୍ୱୀକାର କରିବେ ।



# ପ୍ରେମ ଓ ମୃତ୍ୟୁର ଆବର୍ତ୍ତରେ ଜୀବନ

ଡକ୍ଟର ହରେକୃଷ୍ଣ ପାତ୍ର

'ଫୁଲର କବର' ଡକ୍ଟର କ୍ଷେତ୍ରବାସୀ ନାୟକଙ୍କର ପ୍ରଥମ ଓ ଶେଷ ଗଳ୍ପ ସଙ୍କଳନ । ୧୯୬୭ ମସିହାରେ ସଂସ୍କୃତି ସମୃଦ୍ଧ ବଲାଙ୍ଗୀରର 'ଆତ୍ମପ୍ରକାଶନୀ' ସାହିତ୍ୟ ସଂସ୍ଥା ଦ୍ୱାରା ଏହା ପ୍ରକାଶିତ । ଏହାପରେ ସ୍ରଷ୍ଟା କ୍ଷେତ୍ରବାସୀଙ୍କ ସୃଜନଶୀଳତା ଦିଗ ବଦଳାଇଛି । ପରିଣାମରେ ଓଡ଼ିଆ ସାହିତ୍ୟ ପାଇଛି ଅନେକ ଉଚ୍ଚକୋଟୀର ସମୀକ୍ଷାତ୍ମକ ପ୍ରବନ୍ଧ । ମାତ୍ର ଜୀବନୋଲ୍ଲାସର ଫୁଲପେନ୍ଥା ଯାହା ଆହୁରି ଆହୁରି ବିକଶିତ ହୋଇପାରିଥାନ୍ତା, ତାହା ବୋଧହୁଏ ଏହିଠାରେ ହିଁ କବର ପାଇଛି, ପୂର୍ଣ୍ଣ ବିକଶିତ ହୋଇ ସୌରଭ ବିତରଣ କରିବା ଆଗରୁ । କ୍ଷେତ୍ରବାସୀ ଏହି ସଙ୍କଳନ ମାଧମରେ ଓଡ଼ିଆ କଥା ସାହିତ୍ୟକୁ ଦେଇଛନ୍ତି ମାତ୍ର ଷୋହଳଟି ଗପ ।

କ୍ଷେତ୍ରବାସୀଙ୍କ ଗଳ୍ପସବୁ ଜୀବନବାଦୀ । ପ୍ରାୟ ସବୁ ଗଳ୍ପର କଥାନକ ଜୀବନ ପାଇଁ ଆତୁର, ଜୀବନୋତ୍ତର କୌଣସି କଳ୍ପନା ପାଇଁ ବ୍ୟାକୁଳ ନୁହେଁ । ଏପରିକି ଉପନିଷଦୀୟ ଚିନ୍ତାଧାରାକୁ ପାଥେୟ କରି ପରିକଳ୍ପିତ ଗଳ୍ପ 'ସଯୁଜାସଖାୟା' ଖାଲି ନିଛକ ଦର୍ଶନକୁ ନେଇ ବଞ୍ଚିପାରି ନାହିଁ । ସ୍ରଷ୍ଟାପୁରୁଷର ଭୂମିମୋହ ଏଥିରେ ସ୍ପଷ୍ଟ । ସେ ଅନୁଭବ କରୁଛି - " ନିଦ୍ରିତ ଭଗବାନ ଯେଉଁ ଜଗତ ସୃଷ୍ଟି କରିଥିଲେ ସେ ଜଗତ କେତେ ମାଇଲ ଲମ୍ବ, ତା' ମୁଁ ଅନୁମାନ କରିପାରୁନି । ମୁଁ ଆଜି ଗୋଟିଏ ଜଗତର; ଶୂନ୍ୟ ନୁହେଁ ପରିପୂର୍ଣ୍ଣ ଏକ ଜଗତ । ଅସ୍ଥି, ରକ୍ତ, ସ୍ୱେଦ, ଚିର ଓ ବିରର ଏକ ଜଗତ, ଯେଉଁଠି ଅଛି ପଞ୍ଚଭୂତ- ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ ଆଦି ଅନେକ ଇନ୍ଦ୍ରିୟାନୁଭୂତି । ସେଇ ଜଗତକୁ ମୁଁ ଦେଖିଛି ଉନ୍ମୀଳିତ ନୟନରେ, ବିମୁଗ୍ଧ ଭାବରେ, ଆସକ୍ତ ଅକ୍ଷାଂଶ ଭିତରେ ।" ସେହି ଆସକ୍ତି ତାଙ୍କୁ ଆଣିଦେବାକୁ ସକ୍ଷମ ହୋଇଛି - "କିଛି ଜ୍ୟୋତ୍ସ୍ନା- ପୁଞ୍ଜାଏ ଫୁଲ, ସାମାନ୍ୟ ଟିକିଏ ଚନ୍ଦନ- ପୁଳାଏ ଅଗୁରୁ - କିଞ୍ଚିତ କର୍ପୂର" ର ସ୍ୱର୍ଗୀୟ ଚେତନା । ମାଟି ତାଙ୍କୁ ଭୂମାର ସ୍ପର୍ଶ ଆଣିଦେଉଛି ଯେତେବେଳେ ସେ ଜୀବନକୁ ଭଲପାଇ ବସିଛନ୍ତି । ତାଙ୍କ ଅନୁଭବ - "ମୋ ଜୀବନର ବିସ୍ତୀର୍ଣ୍ଣ ପ୍ରାନ୍ତରର କୌଣସି ଏକ କୋଣରେ ଯିଏ ଆସି ମୋ ସହିତ ଠିଆ ହେଇଚି ସେ ମୋର କନ୍ୟା ଲିପି । ସେ ହସୁଚି- ତା ହସରୁ ଝରି ପଡୁଛି ଅବାରିତ ସୁଧାଝର ।" ଆତ୍ମଚୈତନ୍ୟ ଓ ଆତ୍ମ-ମଗ୍ନତା ତାଙ୍କୁ ବାରମ୍ବାର ଜୀବନୋତ୍ତର ଏକ ଦିବ୍ୟାନୁଭୂତି ଆଣିଦେଉଥିଲେ ମଧ ତାଙ୍କ ପାଇଁ ସତ୍ୟୋପଲବ୍ଧି ହେଉଛି ଜୀବନ, ଏ ମାଟିରେ ଗଢ଼ା କଣ୍ଢେଇ- "ମୁଁ ମୋର ପ୍ରାଣପ୍ରିୟା ପ୍ରୀତିଲତାକୁ

ପ୍ରଶ୍ନିଳ ଦୃଷ୍ଟିରେ ଚାହିଁରହେ । ସେ ମୋତେ ବଢ଼େଇ ଦିଏ ଗୋଟିଏ ବସ୍ତୁ - ନିହାତି ନରମ, ଚିପିଦେଲେ ଚାପି ହୋଇଯିବ- ଭାଙ୍ଗିଦେଲେ ଭାଙ୍ଗିଯିବ, ଛୁଇଁଦେଲେ ଲାଜକୁଳି ଲତା ପରି ଲୁଚିଯିବ - ହସିଦେଲେ ଗୋଲାପ ଗଛଭଳି ହସୁଥିବ, ଡାକିଲେ ଡରିବନି ଡେଇଁପଡ଼ିବ- ସେ ମୋର ଲିପି ।"

ଏଭଳି ଜୀବନସ୍ପର୍ଶ ଯୋଗୁଁ କ୍ଷେତ୍ରବାସୀଙ୍କ ଅଧିକାଂଶ ଗଳ୍ପର ଯଥାର୍ଥ ବିଷୟବସ୍ତୁ ହୋଇଛି ପ୍ରେମ । ପୃଥିବୀର ଅଧିକାଂଶ ସଫଳ ଗଳ୍ପର କଥା ବୀଜ ତ ପ୍ରେମ । ଗାଳ୍ପିକଙ୍କର ଏ ପ୍ରେମର ପଟଭୂମି ସାଧାରଣ ଦୃଷ୍ଟିରେ ବିସ୍ତୃତ ବା ଉଦାର ନୁହେଁ, ଅତ୍ୟନ୍ତ ସଂକୀର୍ଣ୍ଣ, ତେଣୁ ଅକ୍ଷମ  ଓ ଅଚରିତାର୍ଥ ବୋଧହୁଏ । ଏ ପ୍ରେମ ଦେହକୁ ନେଇ ଆବର୍ତ୍ତିତ । ଦେହାତୀତ ହେବାର ସୌଭାଗ୍ୟ ଆସିନାହିଁ ତା'ର । ପ୍ରେମ ଅବଶ୍ୟ ଦେହକୁ ନେଇଗଠିଉଠେ । ମାତ୍ର ଦେହୋତ୍ତର ଅନୁଭୂତିକୁ ହିଁ ପ୍ରେମର ସଫଳତା ବୋଲି ବିଚାର କରାଯାଏ । ଏ ଉତ୍ତରିତ ପ୍ରେମଚେତନା କ୍ଷେତ୍ରବାସୀଙ୍କ ଗଳ୍ପରେ ଅନୁପଲବ୍ଧ । ସର୍ବତ୍ର ଦେହର ଦେହଳି ମଧ୍ୟରେ ପ୍ରେମ ବନ୍ଦୀ । ଦେହଗନ୍ଧର ପ୍ରଲୁବ୍ଧତା ମଧ୍ୟରେ ପ୍ରେମ ଅନ୍ଧ ଓ ପାଗଳ । ବ୍ୟତିକ୍ରମ ମଧ୍ୟ କିଛି ରହିଛି । 'ସଙ୍କେତ' ଗଳ୍ପକୁ ବିଚାରକୁ  ନିଆଯାଉ । ଦେହର ପରିଧି ବାହାରେ ଲତିକା ଓ ପ୍ରଧାନଙ୍କ ପ୍ରେମ କଳ୍ପନା କିଞ୍ଚିତ ବ୍ୟତିକ୍ରମ ବୋଲି ମନେ ହୁଏ । କ୍ଷେତ୍ରବାସୀଙ୍କ ଗଳ୍ପ ସାହିତ୍ୟର ପ୍ରଥମ ସମାଲୋଚିକା ଡକ୍ଟର ଲାବଣ୍ୟ ନାୟକ ଯାହାକୁ ଆଦର୍ଶ ଓ ବାସ୍ତବବୋଧର ସମନ୍ୱୟରେ ସ୍ୱକୀୟ ପ୍ରତିଭାର ପରିଚୟ ବୋଲି ମନେ କରିଛନ୍ତି । (ପୃଷ୍ଠବନ୍ଧ ପୃ-୮୮) । ଦେହର ଗନ୍ଧ ଠାରୁ ମନର ଗନ୍ଧକୁ ଗୁରୁତ୍ୱ ଦେଇଛି ଲତିକା, ଆଉ ମାନିନେଇଛନ୍ତି  ଶ୍ରୀ ପ୍ରଧାନ ।' କିନ୍ତୁ ଏ ବ୍ୟତିକ୍ରମ କେତେ ବା ସଫଳ ହୋଇଛି ? ସମାଲୋଚିକା ଡକ୍ଟର ନାୟକ ଠିକ୍ ପରେ ପରେ ଅନୁଭବ କରିଛନ୍ତି 'ମନର ଗନ୍ଧଠାରୁ କେତେ ବଳଶାଳୀ ଦେହର ଗନ୍ଧ ସତେ !' ସେଥିପାଇଁ ଅଚେତନ ମନରେ ସ୍ପର୍ଶ ପିପାସା ଜାଗିଛି ଶ୍ରୀ ପ୍ରଧାନଙ୍କର, ଯଦିଓ ପୂର୍ଣ୍ଣ ହୋଇପାରିନାହିଁ ସେ କାମନା । ଲତିକା ମଧ୍ୟ ନିର୍ଲିପ୍ତା ନୁହନ୍ତି । ଥୁଣ୍ଟା ଶାଖାଟି ଉପରେ ପାଖକୁ ପାଖ ଲାଗି ବସିଥିବା ପକ୍ଷୀ ଦୁଇଟିର ଚିତ୍ରକୁ ସେ ମଧ୍ୟ ନିର୍ବାକ ନିସ୍ପନ୍ଦ ଭାବେ ଚାହିଁ ରହିଛନ୍ତି । ଗାଳ୍ପିକଙ୍କର ନେତିବାଦୀ-ନୀତିବାଦୀ ଦୃଷ୍ଟିଭଙ୍ଗୀ ଏକ ବ୍ୟର୍ଥ ସୂଚନା ମଧ୍ୟରେ ଦୁଇଟି ଫୁଲଫୁଟା ସ୍ୱପ୍ନକୁ କବର ଦେଇଛି ।

ପ୍ରେମର ଏ ବ୍ୟର୍ଥରାଗିଣୀ ଅନ୍ୟ ଗଳ୍ପମାନଙ୍କରେ ଭିନ୍ନ ରୂପରେ ପ୍ରକାଶ ପାଇଛି । ଦେହର ଯୁଗଳବନ୍ଦୀ ଗାନକରୁକରୁ ପ୍ରେମ ବିକାଶ ଅକାଳରେ ଶେଷ ହୋଇଛି । ପ୍ରେମର ଏ ଅକାଳ ମୃତ୍ୟୁ ପାଇଁ କ'ଣ ସ୍ରଷ୍ଟାଙ୍କ ମନୋଭୂମିକୁ ଦାୟୀ କରାଯିବ ? କ୍ଷେତ୍ରବାସୀଙ୍କ

ପ୍ରେମଗଳ୍ପର ନାୟକ ନାୟିକାମାନେ ଭିନ୍ନଭିନ୍ନ ପ୍ରତୀୟମାନ ହେଉଥିଲେ ମଧ୍ୟ ବାସ୍ତବିକ ଗୋଟିଏ ଚରିତ୍ର ବୋଲି ବିଚାରିବାକୁ ହେବ । ସେ ଚରିତ୍ରଟି ହେଉଛି ମଣିଷ-ସ୍ରଷ୍ଟାର ଦୃଷ୍ଟିବନ୍ଧ ମଣିଷ । ସ୍ରଷ୍ଟାମଣିଷର ରୂପାନ୍ତର ବୋଲି କୁହାଯାଇପାରେ । ଏ ସ୍ରଷ୍ଟାମଣିଷ ଜୀବନ ନାଟକରେ କେତେବେଳେ ନଟ ସାଜେ ତ ଆଉ କେତେବେଳେ ନଟୀ । ଏ ସ୍ରଷ୍ଟା ମଣିଷ ଦିନେ ଦେଶକାଳାତୀତ ଥିଲା । ମାତ୍ର ବିଶ୍ୱଯୁଦ୍ଧୋତ୍ତର ପୃଥିବୀରେ ଯେତେବେଳେ ମଣିଷର ସାଧାରଣ ଗତି ବ୍ୟାପ୍ତି ଘଟୁଛି, ସେତେବେଳେ ଅତ୍ୟନ୍ତ ମାରାତ୍ମକ ଭାବେ ସ୍ରଷ୍ଟା ମଣିଷର ଚେତନା କ୍ରମଶଃ ସଙ୍କୁଚିତ ହୋଇପଡୁଛି । ତା' ଚାରିପଟେ ଖାଲି ଶୂନ୍ୟତାର ରାଜୁତି । ଏ ବିଶ୍ୱୀକରଣ ସମୟରେ ସେ ଗତିରୁଦ୍ଧତାରେ ଅଣନିଶ୍ୱାସୀ, ଅବିଶ୍ୱାସର ଭାରାବର୍ତ୍ତରେ ଆତୁର, ନିରାଶାଜର୍ଜରିତ । ତେଣୁ ମୃତ୍ୟୁକାତରତା ମଧ୍ୟରେ ସେ ବନ୍ଦୀ, ଗତିହୀନ । ତା'ର ଜୀବନଧାରା ସ୍ଥବିର । ପ୍ରେମ ପରିଣତିବିହୀନ, ତେଣୁ ପ୍ରେମ କେବଳ ଦେହମିଳନରେ ପରିସମାପ୍ତ ହେବାକୁ ବାଧ୍ୟ, ଦେହୋତ୍ତର ହେବାରେ, ପ୍ରେମୋତ୍ତର ହେବାରେ ତା'ର ଶକ୍ତି କାହିଁ ? ପ୍ରେମ ତେଣୁ ଏଠି କେବଳ ଜାନ୍ତବ । ଅଥଚ ଶାଶ୍ୱତ ହେବା ପାଇଁ, ମୃତ୍ୟୁଞ୍ଜୟ ହେବା ପାଇଁ ତା' ଭିତରେ ବି କମ୍ ଅଭୀପ୍ସା ନାହିଁ । ପ୍ରେମ ତେଣୁ ମୃତ୍ୟୁର ଏତେ ନିକଟବର୍ତ୍ତୀ ହୋଇ ମଧ୍ୟ ଜୀବନର ନାନ୍ଦୀମୁଖ ଗାଏ, କବରସ୍ଥ ହେଉଁ ହେଉଁ ଫୁଲ ତଥାପି ଫଳର ସ୍ୱପ୍ନରେ ବିଭୋରିତ ହୁଏ ।

କୌଣସି ସୃଷ୍ଟି ମଧ୍ୟରେ ଯେଉଁ କାହାଣୀ ବିଦ୍ୟମାନ ଥାଏ, ତାହା କେବଳ ଶେଷ କଥା ନୁହେଁ, ନୂତନ କିଛି ବି ନୁହେଁ । କଥାବସ୍ତୁ ଚର୍ବିତଚର୍ବଣ ମାତ୍ର । କେବଳ କାହାଣୀର ମୂଲ୍ୟାଙ୍କନ ଦ୍ୱାରା ସର୍ଜନଶୀଳତାର ଗୁରୁତ୍ୱ ଅନୁଭବ କରି ହୁଏ ନାହିଁ । କାହାଣୀର ଅନ୍ତର୍ନିହିତ ଭାବ ତାତ୍ପର୍ଯ୍ୟ ହିଁ ବଡ଼କଥା । କେବଳ ତାତ୍ପର୍ଯ୍ୟଟିକୁ ଅଭିବ୍ୟଞ୍ଜିତ କରିବାରେ ଗାଳ୍ପିକର ବାସ୍ତବ ସଫଳତା । କ୍ଷେତ୍ରବାସୀଙ୍କ ପ୍ରେମ ଗଳ୍ପର ଅଭିବ୍ୟଞ୍ଜନା କ'ଣ ? ଏ ଗଳ୍ପଗୁଡ଼ିକରେ ପ୍ରେମ ଦେହକୁ ନେଇ ଆବର୍ତ୍ତିତ । ଉତ୍ତରଣର ସ୍ପର୍ଶ ଏଠି ଅନୁପଲବ୍ଧ । ତେଣୁ ଏ ପ୍ରେମରେ ଅମୃତାକାଂକ୍ଷାର ଏଭଳି ଅନୁପଲବ୍ଧି ସ୍ୱାଭାବିକ । ଅମୃତର ଅଭାବ ହିଁ ମୃତ୍ୟୁର ସଙ୍କେତ । ସମ୍ଭାବନାହୀନତାର ଏ ମୃତ୍ୟୁ ସଙ୍କେତ ପାଇଁ କ'ଣ ସ୍ରଷ୍ଟାଙ୍କ ମନୋଭୂମି ଦାୟୀ ? ହଁ କହିଦେଲେ ତାଙ୍କର ସର୍ଜନଶୀଳତା ପ୍ରତି ଅନ୍ୟାୟ ହେବ । ପ୍ରତ୍ୟେକ ସ୍ରଷ୍ଟାତ ଅମୃତ ପରିବେଷଣ ନିମନ୍ତେ ଆତୁର । ତେବେ ଗଳ୍ପଗୁଡ଼ିକର ପ୍ରେମ ଚେତନା ଅକାଳରେ ଝରିଯିବାର କାରଣ କ'ଣ ହୋଇପାରେ ? ସମକାଳୀନ ଜୀବନର ଅପୂର୍ଣ୍ଣତା ସ୍ରଷ୍ଟାଙ୍କ ମନୋଭୂମିକୁ ପ୍ରଭାବିତ କରିଛି ବୋଲି ବିନା ସଙ୍କୋଚରେ କହିହେବ । ଦ୍ୱିତୀୟ ବିଶ୍ୱଯୁଦ୍ଧୋତ୍ତର ପୃଥିବୀରେ ମଣିଷର ନିଃସଙ୍ଗତ୍ୱ ପ୍ରେମର ବ୍ୟାପକ ଅନୁଭୂତିକୁ ଅବାସ୍ତବ

ଓ ନିରର୍ଥକ କରିଦେଉଛି । ପ୍ରେମ ଯେଉଁ ଜୀବନକୁ ନେଇ ଗଠିଉଠୁଛି, ସେ ଜୀବନ ଆଜି ଶୂନ୍ୟଗର୍ଭ । ତାହାପୁଣି ନିରର୍ଥକ, ଉଦ୍ଦେଶ୍ୟହୀନ ଓ ଗତାନୁଗତିକ । ଜନ୍ମ ଓ ମୃତ୍ୟୁ ହେଉଛନ୍ତି ଶୂନ୍ୟଗର୍ଭ ଏହି ଜୀବନର ଦୁଇଟି ଆବର୍ତ୍ତିତ ବିନ୍ଦୁ । ସାମ୍ପ୍ରତିକ ଜୀବନକୁ ଛୁଇଁଲାବେଳେ ମୃତ୍ୟୁ ସ୍ପର୍ଶ ହିଁ ଅନିବାର୍ଯ୍ୟ ।

ଜୀବନ ହେଉଛି ମହାକାଳର ଏକ ଅଂଶ । କାଳ ତ ସଂହାରକ, ମୃତ୍ୟୁର ଏକ ରୂପମାତ୍ର । "କାଳୋସ୍ମି ଲୋକକ୍ଷୟକୃତ୍ ପ୍ରବୃଦ୍ଧୋ·ଲୋକାନ୍ ସମାହର୍ତ୍ତୁମିହ ପ୍ରବୃତ୍ତ ।" ମହାକାଳ ସତତ ମୃତ୍ୟୁ ମୁଖକୁ ଧାବିତ । ବୈଜ୍ଞାନିକମାନେ ଯେଉଁ Black Hole ବା 'କୃଷ୍ଣବିବର'ର ସତ୍ୟତା ଉପଲବ୍ଧ କରିଛନ୍ତି, କେତେବାର ମହାକାଳ ଏହି ବିବରରେ ନିଶ୍ଚିହ୍ନ ହୋଇଛି, ପୁଣି ସ୍ୱାଭାବିକ ଭାବେ ଜନ୍ମନେଇ ବିକଶିତ ହୋଇଛି, ତା'ର ଇୟତ୍ତା ନାହିଁ । ଉଭୟ ବ୍ୟକ୍ତିଗତ ଜୀବନକାଳ ଓ ବିଶ୍ୱଗତ ମହାକାଳ ତେଣୁ ମୃତ୍ୟୁର ବିବର୍ତ୍ତରୁ ବାରମ୍ବାର ଉଦ୍‌ଗାରିତ, ବାରମ୍ବାର ନିପତିତ । 'ପୁନରପି ଜନନଂ ପୁନରପି ମରଣମ୍' ତାହା ହେଲେ ଫୁଲର କବର କାହିଁକି ? ଫଳ ଫଳିବାର ସମ୍ଭାବନା କାହିଁକି ନାହିଁ ?

ଜନ୍ମ ଓ ମୃତ୍ୟୁ ଯଦି ଜୀବନର ଦୁଇଟି ବିନ୍ଦୁ ହୁଅନ୍ତି, ପ୍ରେମ ସେହି ବିନ୍ଦୁ ଦୁଇଟିର ସଂଯୋଜକ ପୁଣି ବିଭାଜିକା ରେଖା । ବୋଧହୁଏ, ପରିସ୍ଥିତିରେ ପଡ଼ି ପ୍ରେମ ଉଭୟ କାର୍ଯ୍ୟନିର୍ବାହ କରେ । ଜୀବନ ଯେତେବେଳେ ସମ୍ଭାବନାହୀନ ସୃଷ୍ଟିଅକ୍ଷମ ହୋଇପଡ଼େ, ସେତେବେଳେ ପ୍ରେମ ଏକ ବିଭାଜିକା ରେଖା ପାଲଟିଯାଏ । ଆଉ ଯେତେବେଳେ ପ୍ରେମ ସଂଯୋଜକ ରେଖାର ଭୂମିକା ତୁଲାଏ ଜୀବନ ସେତେବେଳେ ଅପୌରୁଷେୟ ପାଲଟିଯାଏ । ଯୁଦ୍ଧୋତ୍ତର ପୃଥିବୀରେ ଜୀବନର ଗତି ନାହିଁ କି ଗତିଶୀଳତା ନାହିଁ । ଜୀବନଟା ଖାଲି ଉଦ୍ଦେଶ୍ୟହୀନ ଭାବେ ଗଡ଼ିଚାଲିଛି । ସଂକୀର୍ଣ୍ଣ ପଥଟିର ଉପାନ୍ତରେ "ଚାରିହାତ ଦୀର୍ଘ, ଚାରିହାତ ପ୍ରସ୍ଥ କେରପାଲ ଖଣ୍ଡକ" ହେଉଛି ତା'ର ସୀମା । "ବାଁ ପାଖରେ ଛିଣ୍ଡା ଦଉଡ଼ି ବନ୍ଧା ଯୋତାହଳକ, ଆଗରେ ଫିତା ଲଗା ତାଲଡା ଟିଣଟିଏ । ଭିତରେ କେତୋଟି ନୂଆ ଓ ପୁରୁଣା ପଇସା । ସେଇ ତା'ର ସମ୍ବଳ ।" (ମରୁ ବଲ୍ଲରୀର ପୁଲକ) । ଏହି ରୁଗ୍ଣ ଜୀବନର ତେଣୁ ଘର ନାହିଁ, ସହାୟକ ନାହିଁ । ସେ ଅସହାୟ ଓ ନିଃସଙ୍ଗ ହେବ ହିଁ ହେବ । "ନୀଳ ଆକାଶ ଓ ମେଘସବୁ ଗଲା ଅଚାନକ ଜଳି / ଖେଳସ୍ମିତ ସ୍ୱପ୍ନ ସବୁ ଅପଘାତେ ମରିଗଲା / ଆକାଶେ ଉଠିଲା ଜଳି ଅଗ୍ନିର କୁଣ୍ଡଳୀ" (ସ୍ତନନ୍ଧୟର ଉପକଥା : ସୀତାକାନ୍ତ ମହାପାତ୍ର) – ଏହିତ ସାମ୍ପ୍ରତିକ ମଣିଷର ଜୀବନଚିତ୍ର । କିନ୍ତୁ ସୀତାକାନ୍ତୀୟ ଏ ମୃତ୍ୟୁ ଉପଲବ୍ଧି ଗାଳ୍ପିକ କ୍ଷେତ୍ରବାସୀଙ୍କୁ କବଳିତ କରିପାରି ନାହିଁ । ମେଘସବୁ ଜଳକଣିକାବିହୀନ ହୋଇପାରନ୍ତି, ଜୀବନର ମରୁଝଡ଼ ଆକାଶର ନୀଳିମାକୁ

ଘୋଡ଼ାଇ ପକାଇ ଥାଇପାରେ, ସମସ୍ତ ଅପଘାତ ସତ୍ତ୍ୱେ ଜୀବନ କିନ୍ତୁ ସ୍ୱପ୍ନ ଦେଖେ । ଗୋବରୀ ସାମ୍ନାର ସେହି ନବବଧୂଟି ଭଳି ସେ ସ୍ୱପ୍ନ। 'କପାଳରେ ସିନ୍ଦୁର, ହାତରେ କଙ୍କଣ ।' ଶତ ଦୁରାଶା ମଧ୍ୟରେ ବେଳେବେଳେ ସମ୍ଭାବନାର ସ୍ୱପ୍ନ ଉଙ୍କିମାରେ ଗୋବରୀର ଚିନ୍ତାଭଳି - 'ସତରେ ସେ କ'ଣ ତା' ଜୀବନରେ ପତିର ପତ୍ନୀ ହୋଇପାରିବନି ? ଏ କପାଳ ଏମିତି ଶୂନ୍ୟ ପଡ଼ିଥିବ ?' (ତତ୍ରୈବ)। ଅଥଚ ସେ ଅପାରଗ, ରୋଗଗ୍ରସ୍ତ । "ଗୋଡ଼ ପାପୁଲିରୁ ଆଣ୍ଠୁଯାଏ ଧଳା ପଡ଼ିଯାଇଛି । ଆଙ୍ଗୁଳିଗୁଡ଼ିକ ବି ଛୋଟ ହୋଇଗଲାଣି - କେତୋଟି ପ୍ରାୟ ନିଶ୍ଚିହ୍ନ ହେବାକୁ ବସିଲାଣି ।" ଜୀବନ ପତମାନ, କ୍ଷୟିଷ୍ଣୁ, ସମ୍ଭାବନା ଦୂର, ସୁଦୂର ପରାହତ । ତଥାପି 'ଜଲିଲ୍'ର ସମ୍ବେଦନଶୀଳତାକୁ ତ ଅସ୍ୱୀକାର କରିହେବ ନାହିଁ । ମରୁଭୂମି ଯେମିତି ସତ୍ୟ, ଓଏସିସ୍ ମଧ୍ୟ ସେତିକି ବାସ୍ତବ । ଗୋବରୀ ଜାଣେ " ଜଲିଲ୍ ତାକୁ ଭଲପାଏ । ସେ ମଧ୍ୟ ଜଲିଲ୍‌କୁ ଭଲପାଏ ।" ଜୀବନ ଆକାଶ ଆଉ ଧୂସର ନୁହେଁ । ଅଦିନିଆ ହେଲେ ବି ଆକାଶରେ ବଉଦ ଭେଳା ତାକୁ ଗାଢ଼ କଳା କରିଦିଏ । ଜୀବନ ପୂର୍ଣ୍ଣଗର୍ଭା ହୋଇଯାଏ । ବର୍ଷାଭିଜା ଶୀତୁଆ ପବନ ଗୋବରୀକୁ ଥରାଏ, ଜଲିଲ୍‌କୁ ବି । "ଚାରୋଟି ବାହୁବନ୍ଧନ ଭିତରେ ଦୁଇଟି ଆତ୍ମା- ଦୁଇଟି ଖର ନିଶ୍ୱାସ; ଗୋଟିଏ ଉଷ୍ଣ ଆନନ୍ଦ" ହେଉବା ସବୁ ନୀତିବାଦିତା ସବୁ ଉଚ୍ଚ ଆଦର୍ଶବାଦର ମୃତ୍ୟୁ, ଏ ମୃତ୍ୟୁ କିନ୍ତୁ କାମ୍ୟ, ଅନ୍ତତଃ ଜୀବନ ପାଇଁ !

ଆଉ ଯେତେବେଳେ ଗୋଟିଏ ମନ ଆଉ ଗୋଟିଏ ମନର ଅବାଙ୍କ ଖୋଜି ଜବାବ ପାଏନା, ସେତେବେଳେ ଜୀବନଟା ସଂପୂର୍ଣ୍ଣ ଏକ ପ୍ରଶ୍ନବାଚୀ ହୋଇପଡ଼େ । ଧୀରାର କି ଦୋଷ ଥିଲା ? ଇନ୍ଦ୍ରଧନୁ ହୋଇ ନପାରିବାର, ବୈଚିତ୍ର୍ୟହୀନ ହେବାରେ, ଶୈକ୍ଷିକ ବିକାଶ ଅଭାବରୁ ଚିତ୍ରଟିଏ ହୋଇ ନ ପାରିବାରେ ତା'ର ବା ଦୋଷ କ'ଣ ? କାହିଁକି ସେ ବିକୃତ, ଅସ୍ୱୀକୃତ ଅସ୍ତିତ୍ୱଟିଏ ? ସେ ବି ତ ସ୍ୱପ୍ନ ଦେଖିଜାଣେ । "ଆଖି ଆଗରେ ଗୋରାତକତକ ଗୋଲାପ କଅଁଳ ଯୁବକଟିଏ । ଗୁଲୁଗୁଲୁ କେତେ ହସ । କଳକଳ କେତେ କାହାଣୀ । ମନ ଚାହିଁଲା ଜୀବଟିଏ । କ୍ଷୁଧା ମେଣ୍ଟାଇଲା ଚିଜଟିଏ । ଖୁବ୍ ପାଖେଇ ଆସୁଛି ପ୍ରତିଶ୍ରୁତିର ଅସଂଖ୍ୟ କାହାଣୀ ଶୁଣାଇ । x x ଚାରିବାହୁର ବେଷ୍ଟନୀ ମଧ୍ୟରେ ବାନ୍ଧି ହୋଇ ଯାଉଛନ୍ତି । ଆହା କି ଆରାମ୍ ।" (ଅପୂର୍ଣ୍ଣାର ଆତ୍ମଗୀତି) । ଏ ଆରାମ୍ କ'ଣ ସତ୍ୟ ନୁହେଁ ? ନୀତିବୋଧର ମୃତ୍ୟୁ ଆଶଙ୍କାରେ ଜୀବନକୁ କ'ଣ ଫାଙ୍କି ଦେଇ ହେବ ?

ଜୀବନର ସଫଳତା କେଉଁଠି ? ପାଇବାରେ ନା ହରାଇବାରେ ? 'ସୁକେଶୀ କନ୍ୟା ଉର୍ବଶୀ । ତା'ରି ପାଇଁ ବାପା ସର୍ବୁକିଛି ସମ୍ଭୋଗର ଉପଚାର ଯୋଗାଇ ଦେଇଥିଲେ

- ଅଭାବର ଅନୁଭୂତି ତା'ର କେବେବି ଆସିନି - ଦେହକୁ ବର୍ଣ୍ଣିଳ କରିଛି, ମନକୁ ସ୍ୱପ୍ନରେ ସବୁଜ କରିଛି - ବିଳାସହିଁ ତା' ଜୀବନର ସତ୍ୟ ।" କିନ୍ତୁ ଜୀବନର ଏ ପ୍ରାଚୁର୍ଯ୍ୟ ସତ୍ୟ ନା ନିଜକୁ ରିକ୍ତ କରିବାରେ, ସମର୍ପି ଦେବାରେ, ନିଃଶେଷ କରିଦେବାରେ ଯେଉଁ ଆନନ୍ଦ ସେଇଟା ସତ୍ୟ ? ଅବଶ୍ୟ ଏ ପ୍ରଶ୍ନର ଉତ୍ତର ଉର୍ବଶୀ ପାଇଛି - "ଚାରିଆଡ଼େ ନିରନ୍ଧ୍ର ଅନ୍ଧାର- ତା' ଜୀବନର ଅନ୍ଧାରିତ ମରୁସ୍ୱପ୍ନକୁ ଉଦ୍ଭାସିତ କରି କିଏ ଯେପରି ଚେତେଇ ଦେଉଛି - ଜୀବନ କି ଖାଲି ନିରାଶାର ବାଲି ମରୁ ମରୀଚିକା ସେନେହ ପ୍ରୀତି ?" (ମରୁ ଓ ମୌସୁମୀ) । ପ୍ରେମ ନଥାଇ ଜୀବନ ମୃତ୍ୟୁର ଅନ୍ୟନାମ ।

ପ୍ରେମ ଯେ ମୃତ୍ୟୁକୁ ଅମୃତ କରିଦିଏ ତାହାହିଁ ତ ପ୍ରମାଣିତ ହୋଇଛି 'ଅଙ୍ଗାର' ଗଳ୍ପରେ । ନିଃସ୍ୱ ଓ ରିକ୍ତ ଶଶୀବାବୁ ଶ୍ରୀମତୀ ରାୟଙ୍କ ମୃତ୍ୟୁଶଯ୍ୟାରେ ଯେଉଁ ପ୍ରେମ ସ୍ପର୍ଶ ପାଇଛନ୍ତି - ମୃତ୍ୟୁମୁଖୀ ସୁକାନ୍ତିଙ୍କ ନିଷ୍ପ୍ରଭ ନରମ ଓଠ ଦୁଇଟିରେ ସରୁ ଚୁମ୍ବନଟିଏ ଆଙ୍କିଦେବା ସହିତ ଟୋପାଏ ଅଶ୍ରୁରେ ସେ ମୃତ୍ୟୁ ଉପରେ ବିଜୟବାନା ଉଡ଼ାଇଛନ୍ତି - ସେହି ମୃତ୍ୟୁ, ଯାହା ଆସିଥିଲା ତାଙ୍କ ଅସହାୟତାର ସୁଯୋଗ ନେଇ, ନି ପାରିଲା ପଣିଆର ହାତଧରି, ବନ୍ଧୁର କୃତଘ୍ନତାକୁ ଅନୁଭବ କରି । ସୂର୍ଯ୍ୟ ଲୁଚିଯିବାର, କିରଣ ଲିଭିଯିବାର ପ୍ରେକ୍ଷାପଟରେ "ନୈରାଶ୍ୟର ଛପିଲା ଅନ୍ଧାର ଟିକକ ପୋଛି ନେଇ", "ସ୍ୱପ୍ନିଳ ଆଶା" ର ବର୍ଣ୍ଣବିଭା ମଧ୍ୟରେ ଏ ଯେଉଁ ନବଜନ୍ମ ସେଠାରେ ମୃତ୍ୟୁକୁ ସ୍ୱାଗତ ନ କରି ରହିହେବ କି ? 'ମରୁ ଓ ମୌସୁମୀ'ର ଏକ ସଫଳ କଣ୍ଟ୍ରାଷ୍ଟ ଭାବେ 'ଅଙ୍ଗାର'ର ଜୟଜୟକାର କେତେ ସଫଳ ହୋଇଛି ସତେ !

ଜୀବନର ସତ୍ୟ କ'ଣ - କାମନା ନା କାମନାହୀନତା - ଏ ପ୍ରଶ୍ନ ଚିରଦିନର । ଫେନାୟିତ ସୁରାପାତ୍ର ନା ସ୍ୱାଦହୀନ ଗଙ୍ଗାଜଳ- କିଏ ଜୀବନକୁ ଅଧିକ ସାର୍ଥକ କରେ । ଏ ପ୍ରଶ୍ନ କେବଳ ସେହି ପୁରାଣ ଯୁଗର ଲକ୍ଷ୍ୟହୀରାର ନୁହେଁ, ଏ ପ୍ରଶ୍ନ ଚିରକାଳର, ସବୁ ଜୀବନର । ଗଳ୍ପ ନାୟକର ତୃଷା ନିବାରଣ ପାଇଁ ଲାଲ ଦ୍ରାକ୍ଷାରସର ସିରାପ୍ ପରଶି ଦେଲାବେଳେ, 'ମେଘୀରଙ୍ଗର ଖସରା ଶାଢ଼ୀ ଖଣ୍ଡେ ପିନ୍ଧି' ତାଙ୍କ 'ପାଖକୁ ଲାଗି ଆସି ଚାପା ଗଳାରେ - କଣ ଭଲ ଦିଶୁନି' - ପଚାରିଲାବେଳେ 'ଫୁଲର କବର' ଗଳ୍ପର ନାୟିକା ଅଧିକ ବାସ୍ତବ, ଅଧିକ ଜୀବନ୍ତ ହୋଇଛି ନା 'ତା ଦେହରେ ଦେହରେ ରକ୍ତବର୍ଣ୍ଣର ମାଂସପେଶୀ, ସ୍ଫୀତ ବକ୍ଷଚୋଳ, ସୁନ୍ଦର ସେମାନଙ୍କର ସ୍ଫୀତି, ଆଚ୍ଛାଦିତ ବୁକୁରେ ଦୁଇମୁଠା ସ୍ତନ x x x ମାଂସଳ ନିତମ୍ବର ପରିଧି x x x ଖୁନ୍ଦିଲା ଆଭାମୟୀ ଯୌବନର ସ୍ପଷ୍ଟାଙ୍କ, ଅଧରେ ଅଧରେ ରୋମାଞ୍ଚର ଢେଉ, ସତେ ଯେମିତି ସେ ଚାହୁଁଛି ପୁରୁଷୋଚିତ ହାତର ସ୍ପର୍ଶ, ମନ୍ମଥର ବାହୁ ବନ୍ଧନ'ର ଅନୁଭୂତି ସତ୍ତ୍ୱେ 'ସେ ନାରୀ, ଅନୂଢ଼ା ଓ ଅବିବାହିତା-

ଫୁଲ କଅଁଳ ତା'ର ବୟସ, ଲୁଣ୍ଠନର କାମ୍ୟ ନୁହେଁ, ସଂରକ୍ଷଣ ହିଁ ବିଧେୟ' ଭଳି ଅନାସକ୍ତ ବିଚାର କେଉଁଟି ଅଧିକ ଛଳନାପୂର୍ଣ୍ଣ । ସବୁ ଛଳନା ତ ସତ୍ୟର ଅପଳାପ, ଜୀବନର ମୃତ୍ୟୁ ଡେଙ୍ଗୁରା । 'ଅତୀତ, ବର୍ତ୍ତମାନ, ଭବିଷ୍ୟତ' ଗଳ୍ପର ସାମାଦ୍ରି, 'ସେ ଏକ ଅସ୍ଥିର ବିନ୍ଦୁ' ଗଳ୍ପର ବନାନୀ, 'ଦୁଇଟି କାହାଣୀ' ଗଳ୍ପର ଅନୀତା ଏମାନେ ସମସ୍ତେ ଜୀବନ ସତ୍ୟକୁ ଉପେକ୍ଷା କରିଛନ୍ତି ।

ଯୁଗେ ଯୁଗେ ଲେଖକ, କବି, ଚିତ୍ରକର, ଶିଳ୍ପୀ ଜୀବନର ସ୍ୱାଭାବିକ ଆଶା, ଆକାଂକ୍ଷା, କାମନା, ବାସନାକୁ ସତ୍ୟ ବୋଲି ଗ୍ରହଣ କରି ଆସିଥିଲେ । ଇଲିଆଡ୍, ଓଡେଶୀ ହେଉ ବା ରାମାୟଣ, ମହାଭାରତ ହେଉ ପୃଥିବୀର ସବୁ ଚିରନ୍ତନୀ ସାହିତ୍ୟ-ଜୀବନ ବାସ୍ତବ ସତ୍ୟର ଜୟଗାନ କରିଆସିଛି । ଏ ସତ୍ୟର ମୂଳ ହେଉଛି ପ୍ରେମ, ଦେହକୁ ନେଇ ଯାହାର ସୃଷ୍ଟି, ସ୍ଥିତି ଓ ବିଲୟ । ଏରିକ୍ ଫ୍ରୋମ୍ ପ୍ରେମର ଏ ସ୍ୱରୂପ ଉଦ୍‌ଘାଟନ କରିଛନ୍ତି - "Love is the over coming of human separateness, as the fulfilment of the longing for union. But above the universal, existential need for union arise, a more specific biological one; the desire for union between the masculine and feminine poles" ( Erich Fromm - The Art of Loving) ନାରୀ-ପୁରୁଷର ଏ ଦୁର୍ବାର ମିଳନେଚ୍ଛା, ସମ୍ଭୋଗ କାମନାର ହେତୁ କ'ଣ ? ଗୋଟିଏ ପାଶ୍ଚାତ୍ୟ ମିଥ୍ ଅନୁସାରେ - ମୂଳରୁ ନାରୀପୁରୁଷ ଗୋଟିଏ ଶରୀରର ଦୁଇପାର୍ଶ୍ୱ ଥିଲେ । ହୁଏତ ଆକାଶ ଓ ପୃଥିବୀ ରୂପରେ । ସୃଷ୍ଟିକର୍ତ୍ତାଙ୍କର ଖେଳିବାର କୁତୂହଳ ହେଲା । ଦାଆ (Sickle) ଟିଏ ନେଇ ସେ ତାକୁ ଦୁଇ ଭାଗ କରିଦେଲେ । ସିକଲ୍‌ରୁ ସେକ୍‌ସ ଶବ୍ଦ ଆସିଲା । ଗୋଟିଏ ଶରୀର ଦୁଇଟି ସେକ୍‌ସ ବିଶିଷ୍ଟ ଖଣ୍ଡିତାଂଶରେ ବିଭକ୍ତ ହେଲେ । ସେହିଦିନଠୁ ପୁରୁଷ ଓ ସ୍ତ୍ରୀ ଉଭୟ ସେକ୍‌ସ ନିଜର ହୃତ ଅଂଶ ସହିତ ମିଳିତ ହେବା ପାଇଁ ପରସ୍ପରକୁ ଖୋଜି ଚାଲିଛନ୍ତି । ଏ ଅନ୍ୱେଷଣ ସରୁନାହିଁ । କଦବା କ୍ୱଚିତ ସାମୟିକ ମିଳନ ଘଟୁଛି, ଯାହା ପୃଥିବୀର ଦୁର୍ନିବାର ଆକାଂକ୍ଷା, ସର୍ବଶ୍ରେଷ୍ଠ ଆନନ୍ଦ ବୋଲି ପ୍ରତୀୟମାନ ହେଉଛି । ମାତ୍ର ଏ ମିଳନ ଶାଶ୍ୱତ ହେଉନାହିଁ । ବାରମ୍ବାର ସେମାନେ ଅଲଗା ହେଉଛନ୍ତି, ମିଳନ ପାଇଁ ପାଗଳ ହେଉଛନ୍ତି । (O.A. Wall - Sex and Sex worship) । ଜୀବ-ବିଜ୍ଞାନୀମାନେ ରଜ-ବୀର୍ଯ୍ୟର ଜୈବ ମିଳନରୁ ମଣିଷ ଜନ୍ମ ବୋଲି ସିଦ୍ଧାନ୍ତ ଦିଅନ୍ତି । ମନସ୍ତତ୍ତ୍ୱବିଦ୍‌ମାନେ କିନ୍ତୁ ଆଉଟିକେ ଆଗେଇ ଯାଇ କହନ୍ତି - "... in the love between man and woman, each of them is re-born." (Charles waldemar - The mystery of sex)

କ୍ଷେତ୍ରବାସୀଙ୍କ ଗଳ୍ପର ଚରିତ୍ରମାନଙ୍କ ମଧ୍ୟରେ ଏହି ପୁନର୍ଜନ୍ମର ଜିଜ୍ଞାସା ଅଧିକ, ସେଥିପାଇଁ ତାଙ୍କ ପ୍ରେମର ସଫଳତମ ଶେଷ ପରିଣତି ହେଉଛି ଦେହମିଳନ, ଯାହା ମୃତ୍ୟୁର ଏକ ରୂପାନ୍ତର ମାତ୍ର । ଜୀବନର ଏକଇ ଅର୍ଥ- ଜନ୍ମ, ପ୍ରଜନନ କ୍ରିୟା ଓ ମୃତ୍ୟୁ । ଏଲିଅଟ ଏଠି ମନେପଡ଼ନ୍ତି - 'That's all the facts when you come to brass tracks / Birth and copulation, and death' । ପ୍ରଜନନ କ୍ରିୟାପାଇଁ ପ୍ରେମର ଆବଶ୍ୟକତା । କିନ୍ତୁ ପ୍ରଜନନ କ୍ରିୟା ହିଁ ମୃତ୍ୟୁର ପ୍ରବେଶପଥ । ମୃତ୍ୟୁର ରୂପାନ୍ତର ହେଉଛି ଜନ୍ମ । ପୁଣି ଏଲିଅଟଙ୍କ ଉକ୍ତିକୁ ସ୍ମରଣ କରାଯାଉ 'Death is life and life is death' । ତେଣୁ କ୍ଷେତ୍ରବାସୀଙ୍କ ଗଳ୍ପର ଦେହମିଳନକୁ ଜୀବନର ଖଣ୍ଡିତ ବିଚାର ରୂପେ ଗ୍ରହଣ କରାନଯାଉ । ପୂର୍ବରୁ ଉଲ୍ଲେଖ କରାଯାଇଛି, ଜୀବ ବିଜ୍ଞାନୀଙ୍କ ମତରେ ପ୍ରତ୍ୟେକ ଦେହମିଳନ ମୃତ୍ୟୁର ଏକ ଏକ ପର୍ଯ୍ୟାୟ । ଅନେକ ପ୍ରାଣୀ ପ୍ରଜାତିର ପୁରୁଷ ଥରକର ଦେହମିଳନ ପରେ ମୃତ୍ୟୁ ମୁଖରେ ପଡ଼େ । ବୁଢ଼ିଆଣୀ ଭଳି କେତେକ ପ୍ରଜାତି ରହିଛି ଯେଉଁଠି ସଂଭୋଗ ପରେ ନାରୀ ପୁରୁଷକୁ ହିଁ ଖାଇଯାଏ ।

ଏଲିଜାବେଥ ଯୁଗୀୟ ଚେତନାରେ ତେଣୁ 'to die' (ମରିଯାଏଁ) ଶବ୍ଦର ପ୍ରକୃତ ଅବବୋଧ ଥିଲା 'ସଂଭୋଗ ଆନନ୍ଦ' । ବିପରୀତ କ୍ରମେ ସଂଭୋଗ ଆନନ୍ଦ ହିଁ ମୃତ୍ୟୁରୂପୀ ମଧୁର ଆନନ୍ଦ ବୋଲି ବିଚାର କରାଯାଉଥିଲା । ସୋପେନ ଆୱାର ସଂଭୋଗ ମଧ୍ୟରେ 'ଗର୍ଭ ଓ ମୃତ୍ୟୁ' (Womb and death) ପ୍ରତୀକ ଖୋଜିଛନ୍ତି (Schopenhauer - Metaphysics of Love) । ପ୍ରତ୍ୟେକ ପୁରୁଷ ନିଜମାତୃଗର୍ଭକୁ ସବୁଠାରୁ ବେଶି ଭଲ ପାଏ । କୌଣସି ନାରୀ ସହିତ ମିଳିତ ହେଲାବେଳେ ସେ ନିଜର ମୃତ୍ୟୁ କାମନା କରୁଥାଏ ପୁଣି ମାଆଗର୍ଭକୁ ଫେରିଯିବାର ଲୋଭରେ । କ୍ଷେତ୍ରବାସୀଙ୍କ ଗଳ୍ପର ଜଲିଲ (ମରୁବଲ୍ଲୀର ପୁଲକ), ରତନ (ଅପୂର୍ଣ୍ଣାର ଆତ୍ମଗୀତି), ଭବାନୀ, ବିକାଶ, ଅବନୀ (ସେ ଏକ ଅସ୍ଥିର ବିନ୍ଦୁ) ଓ ଶ୍ରୀପ୍ରଧାନ (ସଙ୍କେତ) ସମସ୍ତେ ଏ ମଧୁର ମୃତ୍ୟୁର ଆକର୍ଷଣରେ ବିଭୋର । 'ଫୁଲର କବର' ଗଳ୍ପର ନାୟକ ପରୋକ୍ଷରେ ମଧ୍ୟ ଏହି ଆନନ୍ଦ କଳ୍ପନାରେ ଆହ୍ଲାଦିତ । 'ନିଦ' ଗଳ୍ପର 'ସୁଶାନ୍ତ'ର ଆତ୍ମହତ୍ୟା ପଛରେ ମଧ୍ୟ ମୃତ୍ୟୁ ସଂବାହୀ 'ଥାନାଟୋସ୍' ରସର ବିଦ୍ୟମାନତା । 'ଇରସ୍' ଓ 'ଥାନାଟୋସ୍' ରସ ତ ପରସ୍ପର ପ୍ରତିଦ୍ୱନ୍ଦ୍ୱୀ ପୁଣି ପରିପୂରକ । ମୃତ୍ୟୁ ଓ ପ୍ରେମ ସଦାସର୍ବଦା ହାତ ଧରାଧରି ହୋଇ ଚାଲିଛନ୍ତି ।

ତେଣୁ କ୍ଷେତ୍ରବାସୀଙ୍କ ଗଳ୍ପରେ ପ୍ରେମ ଅଧୁରା ନୁହେଁ, ଜୀବନ ଖଣ୍ଡିତ ନୁହେଁ । ପ୍ରେମର ପ୍ରତ୍ୟକ୍ଷ ବିକାଶ ଘଟିନାହିଁ ସତ୍ୟ । ଏକ ବୃହତ୍ତର ସତ୍ୟ ପୁନର୍ଜନ୍ମର ଇଙ୍ଗିତ ଦେଇ ଏଠି ଜୀବନ ପ୍ରେମ ଓ ମୃତ୍ୟୁର ଆବର୍ତ୍ତକୁ ଅତିକ୍ରମ କରିଛି ବୋଲି କୁହାଯାଇପାରେ ।



# 'ଫୁଲର କବର'ର ପୃଷ୍ଠବନ୍ଧ

ଡଃ ଲାବଣ୍ୟ ନାୟକ

ସମାଜ ସ୍ଥାଣୁ ନୁହେଁ କିମ୍ବା ସମାଜ କଟିରେ ଗ୍ରଥିତ ଅଗଣିତ ଜୀବନ ଅଥର୍ବ ନୁହନ୍ତି । ଯେଉଁ ନଦୀରେ ସ୍ରୋତ ନ ଥାଏ ଶିଉଳି ଜମେ ସେଇଠି ବେଶୀ । କମ୍ପନ ନ ଥିଲେ ଉଚ୍ଚାରଣର ଉଦ୍‌ଗମ ଅସମ୍ଭବ । ସାହିତ୍ୟ ଜୀବନର ଉଚ୍ଚାରଣ ମାତ୍ର । ଜୀବନର ତୀର୍ଥ ଧୂଳି ଦିନୁଦିନୁ ରାଗରଞ୍ଜିତ ଓ ବର୍ଣ୍ଣ ବିଭାସିତ ବିବର୍ତ୍ତନର ଚିତ୍ର ତୂଳିକାରେ । ଏଇ ପରିବର୍ତ୍ତନର ସ୍ରୋତ ଯଦି ନ ଥାନ୍ତା ତା' ହେଲେ ହୁଏତ ମଣିଷ ନିଜ ପାଇଁ କିମ୍ବା ଅନ୍ୟମାନଙ୍କ ପାଇଁ ପ୍ରଗତିର ସ୍ୱପ୍ନ ଦେଖୁ ନ ଥାନ୍ତା । ପରିବର୍ତ୍ତନର ଅନ୍ତର୍ଲିପି ବୋଧହୁଏ ପ୍ରଗତି ।

ମଣିଷ ପ୍ରଗତି ଚାହେଁ । କାରଣ ବିଧାତାର ସୃଷ୍ଟି ବହୁ ତ୍ରୁଟିଯୁକ୍ତ ଓ ଅପୂର୍ଣ୍ଣ । ସେଇ ଦତ୍ତ ବସ୍ତୁକୁ ପରିପୂର୍ଣ୍ଣ ରୂପ ଦେବାହିଁ ତାର ଲକ୍ଷ୍ୟ । ଏଇ ଲକ୍ଷ୍ୟ ସାଧନ ପାଇଁ ସାହିତ୍ୟର ସୃଷ୍ଟି ଓ ସାହିତ୍ୟିକ ସେ ଦୃଷ୍ଟିରୁ ଦ୍ୱିତୀୟ ସ୍ରଷ୍ଟା । ସେ ସୃଷ୍ଟି କରେ ନିଜପାଇଁ ନୁହେଁ, ଅନ୍ୟମାନଙ୍କ ପାଇଁ । କାରଣ ତାର ସ୍ଥିତି ସମ୍ପୂର୍ଣ୍ଣ ରୂପେ ଅପର ପାଇଁ । ଯେପରି ତଟିନୀର ସ୍ରୋତ, ତରୁର ଫଳ, ଲତାର ପୁଷ୍ପ ଓ ସୂର୍ଯ୍ୟର ରଶ୍ମି ସେମାନଙ୍କ ପାଇଁ ନୁହେଁ ଠିକ୍ ସେହିପରି ସାହିତ୍ୟିକର ସୃଷ୍ଟି ସହୃଦୟ ପାଇଁ । ସାହିତ୍ୟିକ ଜୀବନର ଭାଷ୍ୟକାର । ଯେଉଁ ସାହିତ୍ୟ କରେ ଗଣର ଆରାଧନା ସେଇଠି ସମ୍ଭବ ହୁଏ କଳାର ନିପୁଣ ନିର୍ଣ୍ଣୟ । ପ୍ରଗତିର ଛନ୍ଦ ପାତରେ ଓ ପରମ୍ପରାର ଅଣୁ ନାଦରେ ସୃଷ୍ଟି ହୋଇଥିବା କ୍ଷୁଦ୍ରଗଳ୍ପ ଏକ ଗଣତାନ୍ତ୍ରିକ ସାହିତ୍ୟ ବିଭାବ, ଯନ୍ତ୍ରଣାର ଫସଲ । ଆଧୁନିକ ମାନବ ସମାଜର ଆର୍ତ୍ତନାଦରୁ ଏହାର ଜନ୍ମ । ଜୀବନର ପ୍ରାଚୀନ ମୂଲ୍ୟବୋଧ ଯେତେବେଳେ ଅଚଳ ଦୋଓଣିରେ ପରିଣତ, ବ୍ୟକ୍ତି ଚେତନା ସହିତ ଯେତେବେଳେ ସମାଜ ଚେତନାର ସଂଘର୍ଷ ଉପସ୍ଥିତ, ସେତେବେଳେ ମଣିଷ ତା' ମନର ଚିନ୍ତାଧାରାର ଭାରକେନ୍ଦ୍ର ରକ୍ଷାକରି ନ ପାରି ପରିସ୍ଥିତି ସହିତ ସଂଘର୍ଷ କରିଛି । ମୁହୂର୍ତ୍ତ ତାହାକୁ ଯେପରି ପ୍ରଭାବିତ କରିଛି ତା'ରି ପ୍ରତୀତି ଦେବାକୁ ଚେଷ୍ଟା କରିଛି ଗଳ୍ପ ମାଧମରେ । ବହମାନ ଜୀବନରୁ ସଂଗୃହୀତ ଏକ ଏକ ପ୍ରତୀତି ବ୍ୟାପକ ଜୀବନ ସତ୍ତାର ପ୍ରତିରୂପ ଆଙ୍କି ଯାଇଛି । ଯେପରି କ୍ଷୁଦ୍ର ଶିଶିର ବିନ୍ଦୁ ଗର୍ଭରେ ସୂର୍ଯ୍ୟ ସତ୍ତାର ପ୍ରତିବିମ୍ବନ, ଚତୁଷ୍କୋଣୀ ପୁଷ୍କରିଣୀରେ ଯେପରି ଚନ୍ଦ୍ରବିମ୍ବର ସାମଗ୍ରିକ ପ୍ରତିଫଳନ କିମ୍ବା ଦ୍ୱିତୀୟା ଚାନ୍ଦର ଏକ ଖଣ୍ଡିତ ଭଗ୍ନାଂଶ ମଧରେ ଯେପରି ପୂର୍ଣ୍ଣମୀ ଚନ୍ଦ୍ରର ଏକ ଉଜ୍ଜ୍ୱଳ ସମ୍ଭାବନା, ଠିକ୍ ସେହିପରି ମୁହୂର୍ତ୍ତର ଏକ ଚଳନ୍ତି ଚେତନାରେ ସତେ ଯେମିତି ଏକ ସାମଗ୍ରିକ ଜୀବନର ପ୍ରତୀତି ପରିସ୍ଫୁଟିତ ଗଳ୍ପ ରୂପରେ ।

"ଗଳ୍ପ ଗାଳ୍ପିକର ପ୍ରେମିକା । ଅଙ୍ଗର ରୂପରାଗ ଯେପରି ଅଙ୍ଗନାର ସୌଷ୍ଠବ ବୃଦ୍ଧି କରେ, ଗଳ୍ପାଙ୍ଗର ବିକଚ ବିଳାସ ସେଇପରି ପାଠକର ହୃଦୟ ହରଣ କରେ ଆତ୍ମିକ ପରିବେଷଣ ଖୁବ୍ ରୁଚିକର ହୋଇ ଉଠେ ଆଙ୍ଗିକ ସତ୍ତାର ପ୍ରୟୋଗ ପରୀକ୍ଷାରେ ।" ଏଇ ମତର ପୃଷ୍ଠପୋଷକ, ଗଳ୍ପ ସୃଷ୍ଟିରେ ପରୀକ୍ଷାରତ ଏବଂ ଗଳ୍ପ ବିଭବର ଏକ ସୌଷ୍ଠବାନ୍ୱିତ ପରମ୍ପରା ସୃଷ୍ଟିକାମୀ ଗାଳ୍ପିକ ଅଧ୍ୟାପକ ଶ୍ରୀ କ୍ଷେତ୍ରବାସୀ ନାୟକ ପ୍ରତୀକଧର୍ମୀ ଗଳ୍ପ ପୁସ୍ତକ 'ଫୁଲର କବର' ସମ୍ପର୍କରେ ସାମାନ୍ୟ ସୂଚନା, ଅବଶ୍ୟ ସମୀକ୍ଷା ଛଳରେ ପ୍ରଦାନ କରିବାକୁ ମତେ ଅନୁରୋଧ କରିଛନ୍ତି । ଜଣେ ବିଦଗ୍ଧ ପାଠକ ଓ ସମାଲୋଚକ ହିସାବରେ ତାଙ୍କ କୃତି ଓ ତ୍ରୁଟି ପରୀକ୍ଷା କରିବାର ଗୁରୁଦାୟିତ୍ୱ ମତେ ଦିଆଯାଇଛି ।

ସୃଷ୍ଟି ସମୀକ୍ଷକର ଦାୟିତ୍ୱ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଜଗତ ଓ ଜୀବନର ପ୍ରାଣ ସ୍ପନ୍ଦନ ଅନୁଭବ କରେ ଶିଳ୍ପୀ, ପ୍ରକାଶ କରେ ତାକୁ ତା'ର ଅନୁକୂଳ ଭଙ୍ଗୀରେ । ମାତ୍ର ଶିଳ୍ପୀ ବ ସାହିତ୍ୟିକର ପ୍ରାଣସତ୍ତାକୁ ଅନୁଭବ କରି ବ୍ୟକ୍ତ କରେ ସମାଲୋଚକ । ସେ ଦୃଷ୍ଟିରୁ ସମାଲୋଚକ ସୃଷ୍ଟିର ସହାୟତା କରେ, ନିଜେ ବି ସୃଷ୍ଟି କରେ । ଉଚ୍ଚ ଶ୍ରେଣୀର ସମାଲୋଚକ ଯାହା ବ୍ୟକ୍ତ କରନ୍ତି ତାହା ବେଳେବେଳେ ସମାଲୋଚିତ ବସ୍ତୁ ଅପେକ୍ଷା ଏକ ମହତ୍ତର କୃତିରେ ପରିଣତ ହୁଏ । ଦୃଷ୍ଟାନ୍ତ ସ୍ୱରୂପ, ଭିକ୍‌ଟୋର ହ୍ୟୁଗୋଙ୍କର ଅମ୍ଳାନ ସୃଷ୍ଟି ସେକ୍‌ସପିଅର ସମ୍ପର୍କୀୟ ସମାଲୋଚନାକୁ ନିଆଯାଇପାରେ । ଜଣେ ସାହିତ୍ୟିକ ଅନ୍ୟ ଜଣେ ସାହିତ୍ୟିକଙ୍କର ପ୍ରତିଭାକୁ ବିଚାର କରିଥିଲେ ଏବଂ ସେଇଥିରେ ହିଁ ଦୁଇ କଳାକାରଙ୍କର ପ୍ରତିଭା ପ୍ରତିବିମ୍ବିତ ହୋଇପାରିଥିଲା ।

ଏସବୁ ଦୃଷ୍ଟିରୁ ମୋର ଆଲୋଚନା ଗାଳ୍ପିକ ଶ୍ରୀ ନାୟକଙ୍କର ଗଳ୍ପ ସମ୍ପର୍କରେ ଯେ ଅନ୍ୟତମ ସୃଷ୍ଟିରେ ପରିଣତ ହେବ, ସେ ପ୍ରକାର ଅବାଞ୍ଛିତ ମନୋବୃତ୍ତି ମୋର ନାହିଁ । କିମ୍ବା ମୁଁ ଜଣେ ଉଚ୍ଚ ପର୍ଯ୍ୟାୟର ସାହିତ୍ୟିକ ନୁହେଁ, କେବଳ ଜଣେ ସାହିତ୍ୟପ୍ରେମୀ ମାତ୍ର ଏବଂ ସାହିତ୍ୟ ଅଧ୍ୟୟନ ଓ ଅଧ୍ୟାପନା ମୋର କର୍ମ । ତେଣୁ ଏଇ ସୁଯୋଗର ସଦ୍‌ବ୍ୟବହାର ପାଇଁ ଲାଳାୟିତ ହୋଇ ଶ୍ରୀ ନାୟକ ମୋତେ ଅନୁରୋଧ କରିଛନ୍ତି ତାଙ୍କ ଗଳ୍ପ ସମ୍ପର୍କରେ ଆଲୋଚନା କରିବା ପାଇଁ । କିନ୍ତୁ ପତ୍ନୀ ଯଦି ପତିର ସାହିତ୍ୟିକ କୃତିର ସମାଲୋଚକ ହୁଏ ସେଥିରେ ନିରପେକ୍ଷତା ଥିଲେ ବି ଅନେକତ୍ର ସମୀକ୍ଷକ ସମାଲୋଚନାର ଶରବ୍ୟ ହୁଏ । କାରଣ ସନ୍ଦେହ ନ ଥାଇ ବି ଅନେକ ଭାବିଥାନ୍ତି ସ୍ତ୍ରୀ ସ୍ୱାମୀକୁ ଅଯଥା ଗୌରବରେ ବିମଣ୍ଡିତ କରିବାକୁ ଚେଷ୍ଟା କରିଛନ୍ତି । ଏ ସମ୍ପର୍କରେ ସଚେତନ ଥାଇ ମୁଁ ମୋ କାର୍ଯ୍ୟରେ ହାତ ଦେଇଛି । ଗ୍ରହୀତାର ରୁଚି ଓ ଉପଲବ୍ଧି ଉପରେ ହିଁ ମୋର ଯୁକ୍ତିର ସାର୍ଥକତା ନିର୍ଭର କରେ ।

'ଫୁଲର କବର' ଏବର ଶତାବ୍ଦୀର ପ୍ରାଣ ସ୍ପନ୍ଦନ ଦ୍ୱାରା ଅନୁପ୍ରାଣିତ ତରୁଣ ଲେଖକଙ୍କର ଏକ ଗଳ୍ପ ସଂକଳନ । ମାନବର ବ୍ୟାପକ ଜୀବନବୋଧର ଆଂଶିକ ପ୍ରକାଶ ହିଁ ଆଧୁନିକ କ୍ଷୁଦ୍ର ଗଳ୍ପର ପ୍ରାଣଧାରା । ଏଇ ଆଂଶିକ ଜୀବନସତ୍ତା ବା ଖଣ୍ଡିତ ଭାବ ଜୀବନର ଏକ ରସଘନ ମୁହୂର୍ତ୍ତରୁ ଜନ୍ମ ଲଭି ସୀମିତ ଓ ସୁସଂଘତ କଳେବର ମଧ୍ୟରେ କୌଣସି ନିର୍ଦ୍ଦିଷ୍ଟ ମର୍ମ୍ମଧ୍ୱନିର କଳାକୁଶଳ ଓ ସୂଚନାତ୍ମକ ଅଭିବ୍ୟକ୍ତିରେ ପରିଣତ ହୁଏ ।

ଏ ଦୃଷ୍ଟିରୁ ବିଚାର କଲେ 'ଫୁଲର କବର'ସ୍ଥ ପ୍ରତ୍ୟେକ ଗଳ୍ପ ବିଶେଷ ଏକ ମୁହୂର୍ତ୍ତ ବା ଘଟଣାର ଚିତ୍ର ପ୍ରଦାନ କରିଛି ଏବଂ ମୁହୂର୍ତ୍ତାନ୍ତିକ ମାନସିକତାର ପ୍ରତିକ୍ରିୟା ସୂଚିତ କରିଛି ଭାବକେନ୍ଦ୍ରିକ ଏକ ମର୍ମ୍ମଧ୍ୱନିର ଗୁଞ୍ଜରଣ ଲକ୍ଷ୍ୟରେ । 'ଫୁଲର କବର' ଗଳ୍ପର ନାୟକ, ଅନ୍ଧକାରର ତରଙ୍ଗ କାଟି ଯାଇଁ ଯାଇଁ ନିହାତି ଗୋଟିଏ ମାମୁଲି ଘରେ ସାଧାରଣ ଏକ ରୂପଜୀବୀ ତରୁଣୀ ଓ ତଦନୁରୂପ ରହସ୍ୟାଚ୍ଛନ୍ନ ପରିବେଶର ସମ୍ମୁଖୀନ ହୋଇଛନ୍ତି । ତରୁଣୀଠାରୁ ପ୍ରଥମେ କିଛି ଆଶା ବା ଆଶଂକା କରିନାହାନ୍ତି ସେ । କିନ୍ତୁ ଦେହର ମୂଲ, ଫୁଲର ସଉଦା ମନରେ ପ୍ରଶ୍ନବାଚୀ ସୃଷ୍ଟି କରିଛି । ତା'ପରେ ଆସିଛି ଗୋଟିଏ ମୁହୂର୍ତ୍ତ.... ମେଘରଙ୍ଗ ଶାଢ଼ୀ ଭିତରେ ତାନିର ଭଙ୍ଗୀ ଓ ଉକ୍ତି । ଆଉ ତାନିକୁ ନିହାତି ତଳକୁ ଓହ୍ଲେଇ ଦେଲା ପରି ଲେଖକଙ୍କର କେଇପଦ କଥା । ବାସ୍ ସେତିକି । ସେଇଠି ଗଳ୍ପର ଚରମ ଆବେଗ ଓ ସମାପ୍ତି ।

ଏଇ ମୁହୂର୍ତ୍ତ-ଆଶ୍ରିତ ଚିନ୍ତାଧାରାର ଏକ ଆବେଗ ଗଭୀର ଓ ଚେତନ ନିର୍ଦ୍ଦିଷ୍ଟ ଅଭିବ୍ୟକ୍ତିରେ ସେଇ ଗୋଟିକ ଗଳ୍ପ ନୁହେଁ; 'ମରୁ ବଲ୍ଲରୀର ପୁଲକ' 'ଅପୂର୍ଣ୍ଣାର ଆତ୍ମଗୀତି', 'କ୍ଷଣପ୍ରଭା' ଇତ୍ୟାଦି ଗୋଟିଏ ଗୋଟିଏ ବିଶିଷ୍ଟ ମୁହୂର୍ତ୍ତର ମୂଲ୍ୟବୋଧରେ ସମୁଜ୍ଜ୍ୱଳ । ଗୋବରୀ ପ୍ରତି କ୍ଷେତ୍ରରେ ନିଜକୁ ସଂଯତ କରିଥିଲେ ବି ସେଇମାତ୍ର ଗୋଟିଏ ମୁହୂର୍ତ୍ତ ଯେତେବେଳେ କି ସେ ହୋଇଛି ପରିବେଶର ଶିକାର । ପ୍ରାୟ ସେଇଆ ଘଟିଛି ଧୀରା ଜୀବନରେ, ସମୟ ପାଖରେ ବିବେକ ହାର ମାନିଛି । ସେଇ ସମୟ ମୁହୂର୍ତ୍ତର ନାମାନ୍ତର ମାତ୍ର ।

ଏବର କ୍ଷୁଦ୍ର ଗଳ୍ପ ବହିର୍ମୁଖୀ ନୁହେଁ - ଅନ୍ତର୍ମୁଖୀ । ସେଇଥିପାଇଁ ବୋଧହୁଏ ଗଳ୍ପଗୁଡ଼ିକରୁ କ୍ରମେ କ୍ରମେ ଗଳ୍ପାଂଶ ବିଦାୟ ନେବାକୁ ବସିଲାଣି । କେବଳ ମନଗହନର କୌଣସି ଗୋଟିଏ ଚରମ ସ୍ପନ୍ଦନ ପ୍ରକାଶ କରି ପାରିଲେ ସେଇ ଯଥେଷ୍ଟ । ଗଳ୍ପ ପାଇଁ ଆଉ ଅଧିକ କିଛି ଲୋଡ଼ା ନାହିଁ । ଏ ଦୃଷ୍ଟିରୁ ଦେଖିଲେ ସଂକଳନର ଗଳ୍ପଗୁଡ଼ିକରେ ଗଳ୍ପାଂଶ ପ୍ରତି ଗୁରୁତ୍ୱ ଦିଆଯାଇନି । 'ସଯୁକ୍ତା ସଖାୟା' ଏଇ ପ୍ରକାର ଏକ ଗଳ୍ପର ସୁନ୍ଦର ଉଦାହରଣ । ଗଳ୍ପାଂଶ କିଛି ନାଇଁ କହିଲେ ଚଳେ । ଅଛି କେବଳ ମନସ୍ତତ୍ତ୍ୱର ଚିତ୍ରଟିଏ ।

ଆଶା- ଆକାଶରେ ଗୁଡ଼ି ଉଡ଼ା ଭିତରେ ସ୍ୱପ୍ନ ଚେଇଁ ଉଠିଛି - ଜାଗା, ଘର, ଗାଡ଼ି । ଏଇ ବିଷୟାସକ୍ତି ପ୍ରଶ୍ନ କରିଛି, ନବାନ୍ନ ପାଇଁ ଚାକରାଣୀର ଲୁଗା ଓ ଗଣେଶ ଚତୁର୍ଥୀ ପାଇଁ ମଠା ଶାଢ଼ି- ସେମାନଙ୍କର ସ୍ୱାଭାବିକ ଦାବୀ ଉପସ୍ଥାପିତ କରିଛନ୍ତି ସୂଚନାରେ । ଅଗଣିତ ସମସ୍ୟା, ମାତ୍ର ସମାଧାନ ସେଇ କଅଁଳ ପୁତୁ ପୁତୁ ଚିଢ଼ଟି ଦ୍ୱାରା ଯାହାକି ସମସ୍ତଙ୍କ କାମ୍ୟ, ଯିଏ କି ସବୁପ୍ରକାର ଅଶାନ୍ତି ଅଭାବ ଓ ସମସ୍ୟାର ତାଡ଼ନାକୁ ଭୁଲେଇ ଦେଇ ପାରେ; ପ୍ରକାଶ ପାଇଛି ତା'ରି ଇଙ୍ଗିତ ।

'କ୍ଷଣପ୍ରଭା', 'ସୀମାନ୍ତ' ଓ 'ଦୁଇଟି କାହାଣୀ' ଏମିତି କେତୋଟି ଗଳ୍ପରେ ଗଳ୍ପାଂଶ ନାହିଁ ପୁଣି ଅଛି । ବାହ୍ୟତଃ ସେ କେତୋଟି ଆଭାସ ଚିତ୍ର ମାତ୍ର ଗଳ୍ପାଂଶ ଅନ୍ତଃ ସ୍ଥଳରେ ପ୍ରଚ୍ଛନ୍ନ ଭାବେ ସଂରକ୍ଷିତ । ଏଇ ଗଳ୍ପ ସମୂହ ବ୍ୟଞ୍ଜନାଧର୍ମୀ ତେଣୁ ଅଳ୍ପ ମଧ୍ୟରେ ବହୁକଥା ପ୍ରକାଶିତ ହୋଇଛି ଯାହାକି ଆଧୁନିକ କ୍ଷୁଦ୍ର ଗଳ୍ପର ଏକ ବୈଶିଷ୍ଟ୍ୟ । 'କ୍ଷଣପ୍ରଭା' ରେ ଶୁଭ୍ରତା ହଜିଯାଇଛି ଅପରର ବାହୁଛାୟା ତଳେ, ସେତିକି ହିଁ ସମୁଦାୟ ଗୋଟିଏ ଗଳ୍ପ ରସର ଆସ୍ୱାଦନ ଆଣି ପାରିଛି । 'ସୃଷ୍ଟି ଓ ସୌନ୍ଦର୍ଯ୍ୟ' ଏ ମଧ୍ୟ କେବଳ ଗୋଟିଏ ଚିତ୍ର । କିନ୍ତୁ ସୁନ୍ଦରଭାବେ ପ୍ରକାଶିତ । କେବଳ ସୌନ୍ଦର୍ଯ୍ୟର ଆରାଧନା କରୁଥିଲେ ଅନୀତା ଓ ତାଙ୍କର ସ୍ୱାମୀ; ତେଣୁ ନିର୍ମମଭାବେ ସୃଷ୍ଟି ପଥରୋଧ କରାଯାଇଛି; ପାଟି ବନ୍ଦ କରି ଦିଆଯାଇଛି । ସୃଷ୍ଟିର ସୀମା ମଧ୍ୟରେ ସୌନ୍ଦର୍ଯ୍ୟ କିମ୍ବା ସୌନ୍ଦର୍ଯ୍ୟର ସୀମା ମଧ୍ୟରେ ସୃଷ୍ଟିର ପ୍ରବେଶ ନାହିଁ । ଶେଷରେ ଗୋଲାପକୁ ଦେଖି ଅନୀତାର ପ୍ରଶ୍ନ, ଯାହା ସୂଚେଇ ଦିଏ ମନର କିଛି ଅବଶୋଷ । 'ସୀମାନ୍ତ'ରେ ମଧ୍ୟ ସେମିତି ଆକାଶର ଅଗଣିତ ତାରକା ମଧ୍ୟରେ ଗୋଟିଏ ମାତ୍ର ପରିଦୃଷ୍ଟ ତାରା - ତାହା ତାରକା ନୁହେଁ ଗୋଟିଏ ସତ୍ୟ । ଦୁର୍ବଳ ସମୟରେ ସବଳ ଅତୀତକୁ ମନେ ପକାଇବାରେ ଆନନ୍ଦ ଅଛି । ତାହାହିଁ ଘଟିଛି ସଂଗ୍ରାମ କ୍ଷେତ୍ରରେ 'ସୀମାନ୍ତ' ଗଳ୍ପରେ । ଏ ପ୍ରକାର ବ୍ୟଞ୍ଜନାଧର୍ମୀ ଗଳ୍ପ ଖୁବ୍ କମ୍ ଆଖିରେ ପଡ଼େ ।

ଏଇ ଦିଗରୁ 'ଫୁଲର କବର' ଗାଳ୍ପିକଙ୍କର ଏକ ନୂତନ ପରୀକ୍ଷା କହିଲେ ଚଳେ । ଏଇ କେତୋଟି ବ୍ୟଞ୍ଜନାଧର୍ମୀ ଗଳ୍ପକୁ ବାଦ ଦେଲେ ଅନ୍ୟାନ୍ୟ ଗଳ୍ପରେ ମଧ୍ୟ ସୂଚନାତ୍ମିକତାର ପ୍ରକାଶ ଘଟିଛି ଯାହାକି ଗଳ୍ପର ଅସାଧାରଣ ମୂଲ୍ୟ ବୃଦ୍ଧି କରିପାରିଛି ।

'ନିଦ'ରେ ଗୋଟିଏ ସାଧାରଣ ଘଟଣା - ଖାଲି ଗୋଟିଏ ପରିବେଶର ବର୍ଣ୍ଣନା ମାତ୍ର । ଅଧ୍ୟାପକଙ୍କ ଅନ୍ୟ ବନ୍ଧୁମାନଙ୍କ ସହିତ ନିଭୃତ ଅନ୍ଧକାର ଗୃହକୁ ପ୍ରବେଶ, ସେଠି ପ୍ରିୟ ଛାତ୍ରର ଶବ ଓ ଟେବୁଲ ଉପରେ ଶୁଭପରିଣୟର ପତ୍ରଟିଏ ଯାହାକି ପାଠକ ପାଠିକାମାନଙ୍କୁ ଭାବନାର ଖୋରାକ ଯୋଗାଇଛି । ଗଳ୍ପର ପରିଣତିରେ ଆସିଛି,

ଆକସ୍ମିକତା ଏବଂ ଗଳ୍ପଟି ସମାପ୍ତିରେ - ଚରମ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଢାତ କରିଛି ଅନେକ ପ୍ରଶ୍ନବାଚୀ । କୌଣସି ବର୍ଣ୍ଣନା ନ ଥିଲେ ବି ସୂଚେଇ ଦେଉଛି ଯେ ସେ ନିମନ୍ତ୍ରଣପତ୍ର ତା' ପ୍ରଣୟିନୀର ଅପର ଯୁବକ ସହିତ ବିବାହର ସଂକେତ, ଯାହା ପାଇଁ ସେ ଅସହ୍ୟ ବେଦନାରେ ଆତ୍ମହତ୍ୟା କରିଛି ଛାତ କଡ଼ିରେ ।

'ସଯୁକ୍ତା ସଖାୟା'ରେ ସେଇ ଯେଉଁ ବର୍ଣ୍ଣନା- "କିଛି ଜ୍ୟୋସ୍ନା, ପୁଞ୍ଜାଏ ଫୁଲ, ସମାନ୍ୟ ଟିକେ ଚନ୍ଦନ" ଇତ୍ୟାଦି କଣ ସୂଚେଇ ଦେଉ ନାହିଁକି ସେ ସବୁ ପ୍ରକୃତରେ ଜ୍ୟୋସ୍ନା ଫୁଲ ଚନ୍ଦନ କର୍ପୂର ନୁହେଁ - ସେ ହେଉଛି ପାରିବାରିକ ଶାନ୍ତି, ସୌଭାଗ୍ୟ, ପ୍ରାଚୁର୍ଯ୍ୟ, ପୂର୍ଣ୍ଣତା ଓ ସାଫଲ୍ୟ ।

ଗଳ୍ପଗୁଡ଼ିକରେ ଆରମ୍ଭ, ଅଭିବୃଦ୍ଧି ଓ ପରିସମାପ୍ତିକୁ ଅନ୍ତତଃ ଚରମ ଆବେଗ ଦୃଷ୍ଟିରୁ ଦେଖିଲେ ବୋଧହୁଏ, ଆରମ୍ଭ ଓ ପରିସମାପ୍ତି ପ୍ରାୟ ଅଚାନକ ଓ ଆକସ୍ମିକ । ଚିରାଚରିତ ପ୍ରଥାନୁସାରେ ଆରମ୍ଭ କରି କୌଣସି ଗଳ୍ପକୁ କାହାଣୀ ଦୋଷରେ ଅଭିଶପ୍ତ କରି ନାହାଁନ୍ତି ଗାଳ୍ପିକ । ହୁଏତ ପ୍ରାସଙ୍ଗିକ ଭାବେ କୁହାଯାଇପାରେ; ରବୀନ୍ଦ୍ରନାଥ କ୍ଷୁଦ୍ରଗଳ୍ପ ସମ୍ପର୍କରେ ଯାହା କହିଥିଲେ; "ଅନ୍ତରେ ଅତୃପ୍ତି ରବେ ସାଙ୍ଗ କରି ମନେ ହବେ ଶେଷ ହୟ ହଇଲନା ଶେଷ" ଏକଥା ଯଥାର୍ଥରେ ଗଳ୍ପଗୁଡ଼ିକର ପରିସମାପ୍ତିରେ ଦେଖିବାକୁ ମିଳେ ।

କେତେକ ଆକସ୍ମିକ ତ କେତେକ ଜିଜ୍ଞାସାମୂଳକ । 'ଫୁଲର କବର', 'ସେ ଏକ ଅସ୍ଥିର ବିନ୍ଦୁ' ଓ 'ଅତୀତ, ବର୍ତ୍ତମାନ, ଭବିଷ୍ୟତ', ଆଦି ଗଳ୍ପର ପରିସମାପ୍ତିରେ ପ୍ରଶ୍ନମୂଳକତା ନିଶ୍ଚିତ ଭାବେ ସଂରକ୍ଷିତ । ପାଠ୍ୟକ ମନରେ ପ୍ରଶ୍ନ ଆସେ, ତାନି କଣ କହିବ ବୋଲି ଚଞ୍ଚଳ ହୋଇ ଉଠୁଥିଲା ? ନିଶ୍ଚୟ ତା ମତ ଭିତରକୁ ଟାଣି ନେବା ପରି କିଛି କଥା - କିନ୍ତୁ ତା' ପରେ ? କିମ୍ବା ନିଜକୁ ଯେତେବେଳେ ସାନ ମନେ କଲାପରି ବୋଧ କରୁଥିଲା ସେତେବେଳେ ସୁନ୍ଦରୀ ଓ ଉଭମାରୁ ସ୍ୱାର୍ଥାର୍ଥୀକୁ ଆଉ ପରିବର୍ତ୍ତିତ ହୋଇଗଲା କି ? ଏହିପରି ଅସଂଖ୍ୟ କଥା... ଅସଂଖ୍ୟ ପ୍ରଶ୍ନ । ସେମିତି 'ସେ ଏକ ଅସ୍ଥିର ବିନ୍ଦୁ'ଟି ପଢ଼ି ସାରିଲା ପରେ ବହୁତ କିଛି ଭାବିବାର ଉପାଦାନ ମିଳେ । ବନାନୀ ଅବନୀର ମୁହଁ ଉପରେ ରୋକଠୋକ କଥା କହି ତାକୁ ତ ପ୍ରତ୍ୟାଖ୍ୟାନ କଲା । ତା'ପରେ ଆସିଛି ବିକାଶର ସ୍ମୃତି ମନକୁ । ବିକାଶ ଶୁଣିଲେ କେମିତି ହୋଇଥାନ୍ତା ? ବିକାଶ କିନ୍ତୁ ଶୁଣିନି ଶୁଣିଛି ତା'ର ଫଟୋ । ଫଟୋ ମାଧମରେ ବିକାଶ ଶୁଣିଛି ଧରି ନିଆଗଲେ ବି ପ୍ରଶ୍ନ ଉଠେ ବିକାଶ ମନରୁ ବିଗତ ଅବିଶ୍ୱାସର ପ୍ରାଚୀର ନଇଁଛି କି ନାହିଁ । ହୁଏତ ଅବନୀ ସହିତ ସମ୍ପର୍କର ସନ୍ଦେହ ଘୁଞ୍ଚିଛି, କିନ୍ତୁ ଭବାନୀ ? ଯଦି ସନ୍ଦେହ ତୁଟି ନ ଥାଏ ତେବେ

ବିକାଶର ବିବାହ ପ୍ରଶ୍ନ କାହିଁ ? ହିମାଦ୍ରି ଓ ସୀମାଦ୍ରି କେବଳ ହସୁଥିଲେ । କିନ୍ତୁ ହିମାଦ୍ରିଙ୍କୁ କେମିତି ଭାବରେ ଚଳେଇବାକୁ ଦିଆଗଲା ତ ଜାଣି ହେଲାନି ? ପାଠକ ଉପରେ ତା' ଛାଡ଼ି ଦିଆଯାଇଛି । ହସ ଆନନ୍ଦର ସୂଚକ । ଉଭୟ ଯେତେବେଳେ ହସୁଥିଲେ ତେଣୁ ଆଉ କିଛି ସେମାନଙ୍କ ମଧ୍ୟରେ ପ୍ରଭେଦ ନଥିବ ବୋଧ ହୁଏ । ସୀମାଦ୍ରି ମାନି ନେଉଥିବ ପିତା ଓ ସ୍ୱାମୀଙ୍କ ଚଳଣିକୁ ।

ଏଇ ଗଳ୍ପଗୁଡ଼ିକ ବିଚାର କଲାବେଳେ ଗୋଟିଏ ଧାରଣା ମନକୁ ଆସେ । ସାଧାରଣ ପାଠକ କହନ୍ତି କ୍ଷୁଦ୍ର ଗଳ୍ପ କ୍ଷୁଦ୍ର ହେବା ଉଚିତ । ଅବଶ୍ୟ ଏହାର କିଛି ଅର୍ଥ ନାହିଁ । ତଥାପି ଏପରି ଭାବନାର ସୁଯୋଗ ଲେଖକ ଦେଇ ନାହାଁନ୍ତି ତାଙ୍କ ଗଳ୍ପ ଗ୍ରନ୍ଥରେ । କ୍ଷୁଦ୍ର କଳେବର ମଧ୍ୟରେ ସେମାନେ ସୀମିତ ଓ ପାଠକ ମନରେ ଉଦ୍‌ବେଗର ବାଧ ଜନ୍ମିଲା ଭଳି ଅବସର ବି ନାହିଁ ।

କ୍ଷୁଦ୍ରଗଳ୍ପର ପାରମ୍ପରିକ ସାହିତ୍ୟର ବୈଶିଷ୍ଟ୍ୟରେ ଗୋଟିଏ ସିଦ୍ଧାନ୍ତ ହେଉଛି; ଯଦି ଏକାଧିକ ଘଟଣା ପରିବେଷିତ ହୋଇ ସଂହତି ରକ୍ଷା କରିବାରେ ବ୍ୟର୍ଥ ହୁଅନ୍ତି ଅର୍ଥାତ୍ ଘଟଣାବଳୀ ଯଦି ଲକ୍ଷ୍ୟ ଦିଗରେ ଏକମୁଖୀ ନ ହୁଅନ୍ତି ତା' ହେଲେ ଗଳ୍ପ ପରିଣତିରେ ଚରମ ଆବେଗ ଓ ମାର୍ମିକ ଭାବ ସଂରକ୍ଷା ଧ୍ୱଂସ ହୁଏ । ସଂକଳନଟିରେ ଅଧିକ ଘଟଣାସଂପନ୍ନ ଗଳ୍ପ ଥିଲା ପରି ମନେ ହେଉନି । ତଥାପି ଗୋଟିଏ ଗଳ୍ପ ମନକୁ ଆସୁଛି, ସେ ହେଉଛି - 'ମରୁ ବଲ୍ଲରୀର ପୁଲକ' । ଗୋଟିଏ ଘଟଣା- କୁଳବଧୂଟିର ଶଙ୍ଖା ପିନ୍ଧା ହାତରେ ପଇସା ଦାନ, ଗୋବରୀର ସୀମନ୍ତିନୀ ହେବା'ର ସୁପ୍ତ ଆଶାକୁ ଜାଗ୍ରତ କରିଛି । ଦ୍ୱିତୀୟ ଘଟଣା କଅଁଳିଆ ଶିଶୁଟିର ଖିଲି ଖିଲି ଚାଲି ତା' ମା' ପାଖକୁ ଗୋବରୀର ସେଇ ଚେତନାକୁ ଉଦ୍ଦୀପ୍ତ କରିଛି । ତୃତୀୟ ଘଟଣା ପାଇଁ ଦାୟୀ ସେ ଦିନର ପରିବେଶ । ମେଘୁଆ ରାତିର ଶୀତୁଆ ପବନ ତାକୁ ଅତିଷ୍ଠ କରିଛି । ସେ ଅନିଚ୍ଛା ସତ୍ତ୍ୱେ ଆବେଗର ଘନ ପ୍ରହରଣରେ ଜଡ଼ିତ ହେଇଛି, ଝାସ ଦେଇଛି ଜଲିଲ୍‌ର ତନୁତୀର୍ଥରେ । ତେଣୁ ଭାବ ସଂହତିରେ ଆଘାତ ଘଟିନି; ଲକ୍ଷ୍ୟରେ ବିଚ୍ୟୁତି ଆସିନି ।

ଏସବୁ ଥାଉ 'ଫୁଲର କବର' ସଂକଳନର ଗାଳ୍ପିକଙ୍କର ମୌଳିକତା ଓ ସ୍ୱାତନ୍ତ୍ର୍ୟ କେଉଁଠି ଭାବିଲେ - ଦୁଇଟି ଉତ୍ତର ମନକୁ ଆସେ । ସେ ହେଉଛି; ଶୈଳୀର ବ୍ୟଞ୍ଜନାମ୍ନିକତା ଓ ଭାଷା ବିନ୍ୟାସର ଗୀତିମୟତା । ଭାଷାର ସାଞ୍ଚୁ ଭିତରେ ରକ୍ଷିତ ଗଳ୍ପଗୁଡ଼ିକ କୌଣସି ବିପଦର ପଦାନତ ହୋଇନାହାନ୍ତି । 'ଫୁଲର କବର' ଗଳ୍ପ ଗ୍ରନ୍ଥ, କବିତା ନୁହେଁ । ମାତ୍ର ତାର ଭାଷା ଛନ୍ଦାୟିତ ଗୀତି କବିତାର ଗୌରବରେ ବିମଣ୍ଡିତ । ଏ ସଂପର୍କରେ ଅନେକ କିଛି କହିବାର ଇଚ୍ଛା ନାହିଁ । କାରଣ ପଢ଼ିଲାମାତ୍ରେ ପାଠକ ତାହା

ନିଜେ ହିଁ ଅନୁଭବ କରି ପାରିବ । "ମୁଁ ଅନେକ ଧ୍ୱନି ଶୁଣିଛି, କୀର୍ତ୍ତନ, ସଂକୀର୍ତ୍ତନ, ଗୁଞ୍ଜରଣ, ସମ୍ବୋଧନ, ରୋଦନ ଓ ବିଳପନ । ମୁଁ ପହଁରିଛି ସେଇ ଧ୍ୱନିରେ, ଉଡ଼ିଛି ଆକାଶରେ, ଭାସିଛି ଆଗାମୀର ସ୍ୱପ୍ନ ଜଗତରେ ।"ଏହା କେଉଁ ପାଠକକୁ କେମିତି ଲାଗିବ କେଜାଣି ମୁଁ ଯେତେବେଳେ 'ସଯୁଜା ସଖାୟା' ର ଏଇ କେଇଧାଡ଼ି ପଢ଼ିଲି ମୋର ମନେ ହେଲା ମୁଁ ସତେ ଯେମିତି ଭଞ୍ଜ କବିଙ୍କର "ଦେଖି ନବ କାଳିକା ବକାଳିକା ମାଳିକା ଆଳି କାଳିକା କାନ୍ତସ୍ମରେ " ସଦୃଶ କିଛି ସମ୍ବେଦନୀ ଓ ସଙ୍ଗୀତ ପରିପୂର୍ଣ୍ଣ ଧ୍ୱନିର ତାଳେ ତାଳେ ମୁଗ୍ଧ ଚିତ୍ତରେ ରସାସ୍ୱାଦନ କରୁଛି ଓ କିଛି ଅନୁପ୍ରାସ ବା ଯମକ ଅଳଙ୍କାରର ଚମତ୍କାରିତା ଅନୁଭବ କରୁଛି ।

ଶେଷରେ ଗୋଟିଏ କଥା କହିବାକୁ ଇଚ୍ଛା କରୁଛି; ଆମେ ବୋଧକରୁଁ ସାହିତ୍ୟ ଅନୁଭୂତିର ଅଭିବ୍ୟକ୍ତି । କିନ୍ତୁ ଯାହା ପ୍ରକାଶିତ ତାହା ବ୍ୟକ୍ତିଗତ ଅନୁଭୂତି କିମ୍ବା ଅଭିଜ୍ଞତା ନୁହେଁ । ଏକଥା ଯଦି ବିକଳ୍ପ ସତ୍ୟ ହୋଇଥାନ୍ତା ତେବେ ମୁଁ କହନ୍ତି ଲେଖକଙ୍କର ଅଧିକାଂଶ ଗଳ୍ପରେ ବାସ୍ତବତାହିଁ ପ୍ରଧାନ୍ୟ ଲାଭ କରିଛି କାହିଁକି ? ଆଦର୍ଶ କାହିଁ ? ଯାହାଙ୍କଠାରେ ବା ଆଦର୍ଶ ଦେଖାଦେଇଛି ସେ ହେଉଛନ୍ତି ସମସ୍ତେ ପୁରୁଷ ଚରିତ୍ର । ଏତେ ବଡ଼ ଜଗତରେ ଲେଖକ କେବଳ ତାନି ଗୋବରୀ, ଧୀରା, ମିନି ପରି କ'ଣ କେତୋଟି ମାତ୍ର ବାସ୍ତବବାଦୀ ନାରୀଙ୍କୁ ହିଁ ଭେଟିଛନ୍ତି । ଲେଖକଙ୍କର ଚିତ୍ରଣରେ କେଉଁଠି ସେମାନେ ନିର୍ବିକାର ଭାବରେ ବାସ୍ତବତାର ଅତଳ ସମୁଦ୍ରରେ ଝାସ ଦେଇଛନ୍ତି ତ କେଉଁଠି ବିବେକର ଦଂଶନ ସହିଥିଲେ ବି ଆଦର୍ଶର ପରାଜୟ ସ୍ୱୀକାର କରିଛନ୍ତି । ଧୀରା, ମିନି- ଏମାନଙ୍କ କଥା ଛାଡ଼ନ୍ତୁ; ଧନ ପାଇଁ ମିନି, ଦେହ ପାଇଁ ଧୀରା, ବହୁତ ତଳକୁ ଖସିଯାଇ ପାରିଲେ । ଆଉ ତାନି ! ସେତ ସମାଜଛଡ଼ା । ତା' ପାଖରେ ପାପ ହିଁ ପୁଣ୍ୟ, କଳଙ୍କ ହିଁ ସୁବର୍ଣ୍ଣ କଙ୍କଣ । ତଥାପି ସନ୍ଦେହ ଆସିଛି; ଲେଖକ ଯେତେବେଳେ ଆଦର୍ଶବାଣୀ ଶୁଣାଇଛନ୍ତି ତାନିକୁ । ପାଣି ଗିଲାସେ ମାଗିଲାପରେ ଦ୍ରାକ୍ଷାରସ ଦେବା ଓ ବିନା ଆପତ୍ତିରେ ଆକଣ୍ଠ ପାନ କରିବା ପରେ ସୁସଜିତା କଅଁଳ ଫୁଲ ବଅସର ଯୁବତୀକୁ ନୀତିବାକ୍ୟ ଶୁଣାଇବା କେତେଦୂର ସ୍ୱାଭାବିକ, ଚିନ୍ତା କରିବାର କଥା । ତା'ପୂର୍ବରୁ ପୁଣି ବିଲ୍ୱମଙ୍ଗଳ କଥା ଉଚ୍ଚାରିତ ହୋଇଛି କାହିଁକି ? ପାଖ କୋଠରୀରୁ ଶାଢ଼ି ପରିବର୍ତ୍ତନ କରି ଆସିବା ପର୍ଯ୍ୟନ୍ତ ଫେରି ନ ଆସି ଅପେକ୍ଷା କରି ବସି ରହିବାରେ କି ତୃଷ୍ଣା ଥିଲା ? ସମାପ୍ତିରେ କୌଣସି ନିର୍ଦ୍ଦିଷ୍ଟ ପରିଣତିର ସୂଚନା ମିଳୁନି । ତଥାପି ମନେ ହେଉଛି, ପୁରୁଷ ଚରିତ୍ରଟିକୁ ଆଦର୍ଶମୁଖୀ କରିବାର ଚେଷ୍ଟା କରିଥିଲେ ବି ଅନ୍ୟାନ୍ୟ ଗଳ୍ପପରି ଲେଖକ ବାସ୍ତବତାର ଶିକାର ହୋଇଥିବେ ।

ଅନ୍ୟତ୍ର 'ଗୋବରୀ' ସାଧାରଣ ଗୋଟିଏ ଝିଅ ହେଲେ ବି ନିଜର ରୁଗ୍ଣାବସ୍ଥାକୁ ଉପଲବ୍ଧ କରିଛି । ସେଥିପାଇଁ ବାରମ୍ବାର ସତର୍କ ହୋଇଛି - ଦ୍ୱିତୀୟର ଆଗମନ ନ

ହେଉ, ସବୁଦିନ ପାଇଁ ତାର ନାରୀତ୍ୱ ଅସଂପୂର୍ଣ୍ଣ ରହୁ ପଛକେ । ଶେଷରେ ଗୋଟିଏ ମୁହୂର୍ତ୍ତରେ ସବୁ ଆଦର୍ଶ ପାଣି ଫୋଟକା ପରି ମିଳେଇ ଯାଇଛି । ମୁଁ ଗାଳିକ ନୁହେଁ – ଯଦି ଲେଖୁଥାନ୍ତି, ତା' ହେଲେ ଗୋବରୀକୁ ଶୀତଦିନର କାଲୁଆ ଅଦିନ ବର୍ଷା ପାଣିରେ ବୁଡ଼େଇ ବୁଡ଼େଇ ତା' ଦେହର ଉଷ୍ଣତାକୁ ଶୀତଳ କରି ଦେଇଥାନ୍ତି ବରଂ, ଏତେଦିନର ସଯତ୍ନ ପାଳିତ ଆଦର୍ଶକୁ ତଣ୍ଟିଚିପି ହତ୍ୟାକରି ନ ଥାନ୍ତି । ମୋ ମନ୍ତବ୍ୟ ଶୁଣି କେହି ହୁଏତ ଭାବୁଥିବେ; ମୋତେ ଆଦର୍ଶର ଶୁଚିବାଇ ରୋଗ ହେଲାଣି । ଯୁକ୍ତି କରି ପାରନ୍ତି ସାହିତ୍ୟ ଯଦି କେବଳ ଆଦର୍ଶର ପ୍ରଚାରକ ହୁଏ ତା' ହେଲେ ଗୀତା ଭାଗବତକୁ ସାହିତ୍ୟ ନ କହି ଧର୍ମଗ୍ରନ୍ଥ ରୂପେ ଆଖ୍ୟାୟିତ କରିବା କାହିଁକି ? ମୁଁ କହେ ସାହିତ୍ୟ ଯଦି ନିଛକ ବାସ୍ତବତାର ଅବିକଳ ଅନୁକୃତି ହୁଏ ତେବେ ଭଞ୍ଜଙ୍କର ନାରୀ ରୂପ ବର୍ଣ୍ଣନା ନ ପଢ଼ି କିମ୍ବା ଏକ ନଗ୍ନନଟୀର ସର୍ବାଙ୍ଗ ରୂପ ନ ଆଙ୍କି; ଆନାଟୋମି ହଲ ବୁଲି ଆସିବା ଭଲ । ଅବଶ୍ୟ କହି ରଖୁଛି ଏ ବହିରେ ଏମିତି ନଗ୍ନ ବାସ୍ତବତା ସ୍ଥାନ ପାଇନି । ପାଇଛି ତାରି ଏକ ରୂପାନ୍ତରିତ ରୂପଶ୍ରୀ । ମୋର କହିବାର କଥା ଆଦର୍ଶ ଓ ବାସ୍ତବତାର ମଣିକାଞ୍ଚନ ସଂଯୋଗ ହୋଇନି ଅନେକ ଗଳ୍ପରେ ।

ମୁଁ ଭାବୁଛି, ବୋଧହୁଏ ଏ ପ୍ରକାର ସମାଲୋଚନା ହେବ ବୋଲି, ଲେଖକ ପୂର୍ବରୁ ଜାଣିପାରିଥିଲେ । ତେଣୁ ତ୍ରୁଟିରୁ ରକ୍ଷା ପାଇବା ପାଇଁ ଗୋଟିଏ ମାତ୍ର ଗଳ୍ପ ଏ ବହିରେ ସନ୍ନିବେଶିତ କରିଛନ୍ତି । ତା' ହେଉଛି, 'ସଂକେତ' ଯାହାକି ଆଦର୍ଶ ଓ ବାସ୍ତବବୋଧର ସମନ୍ୱୟରେ ସ୍ୱକୀୟ ପ୍ରତିଭାର ପରିଚୟ ପ୍ରଦାନ କରିଛି । ଦେହର ଗନ୍ଧଠାରୁ ମନର ଗନ୍ଧକୁ ଗୁରୁତ୍ୱ ଦେଇଛି ଲତିକା; ଆଉ ମାନି ନେଇଛନ୍ତି ଶ୍ରୀ ପ୍ରଧାନ । କିନ୍ତୁ ଚରିତ୍ର ଦୁଇଟି ଅତି-ବାସ୍ତବ ନୁହନ୍ତି; ବାସ୍ତବ । ସେଥିପାଇଁ ସ୍ୱର୍ଣ୍ଣ ପିପାସା ଜାଗିଛି ଶ୍ରୀ ପ୍ରଧାନଙ୍କ ମନରେ, କିନ୍ତୁ ପୂର୍ଣ୍ଣ ହୋଇନି । ସେଥିପାଇଁ ନଗ୍ନ ନର୍ତ୍ତକୀର କଳାଶ୍ରୀ ଉପଭୋଗ କରି ହସିଛି ଲତିକା । କିନ୍ତୁ ଖୁବ୍ ଚାପା ହସ । ଏଇଠି ହିଁ ଲେଖକଙ୍କର ରହିଛି ବାହାଦୂରୀ । ଅବଶ୍ୟ ଅନ୍ୟ ଗଳ୍ପଗୁଡ଼ିକ ଯେ ସୁନ୍ଦର ନ ହୋଇଛି ତା' ନୁହେଁ ମାତ୍ର 'ସଂକେତ'ରେ ଆଦର୍ଶର ଅଙ୍ଗଟି ସଂରକ୍ଷିତ ଓ ନାରୀ ଚରିତ୍ରର ଗୁରୁତ୍ୱ ପ୍ରତିପାଦିତ । ଅନ୍ୟାନ୍ୟ ଗଳ୍ପରେ ନାରୀ ଚରିତ୍ରଗୁଡ଼ିକ ତ୍ରୁଟିଯୁକ୍ତ । ଚରିତ୍ର ଚିତ୍ରଣରେ ତ୍ରୁଟି ନାହିଁ, ଚରିତ୍ରରେ ତ୍ରୁଟି ।

ମରୁ ମୌସୁମୀରେ ଉର୍ବଶୀ ସ୍ୱେଚ୍ଛାଚାରୀ ହେଇ ନିଜ ଅହଂରେ ନିମଜ୍ଜିତା । ସେଥିପାଇଁ ପରେ ଆସିଛି ଅନୁତାପ । 'ଅତୀତ, ବର୍ତ୍ତମାନ, ଭବିଷ୍ୟତ'ରେ ଲେଖକ ସାମାଜିକ ମନୋବୃତ୍ତିକୁ ପରିବର୍ତ୍ତନ କରିଛନ୍ତି । ମୁଁ ପଚାରେ, ସେଇ ଗଳ୍ପରେ ଅଧାପକ ଓ ତାଙ୍କ ପିତୃଦେବଙ୍କ ଚଳଣିରେ ପରିବର୍ତ୍ତନ ହୋଇଥିଲେ କ'ଣ ଏମିତି କିଛି ଅସୁନ୍ଦର

ଘଟିଥାନ୍ତା । ସୀମାଦ୍ରି, ହିମାଦ୍ରୀଙ୍କର ପ୍ରଗତିରେ ବାଧା ସୃଷ୍ଟି କରି ନାହାନ୍ତି ତ । ପାଠ ପଢ଼ାଇବାରେ ଅନିଚ୍ଛା ପ୍ରକାଶ ପାଇନି ତ, କେବଳ ସଂଯତ ଭାବେ ଚଳିବାର ଇଙ୍ଗିତ ରହିଛି । ସେ'ତ ଆଉ ରେବତୀର ଆଈ ମା' ପରି ନିଆଁ ଚୁଲି କହି ବାଧା ଦେଇନି । ସନ୍ଧ୍ୟାବେଳେ କଲେଜରୁ ଫେରିବା, ପୁଅମାନଙ୍କଠାରୁ ନୋଟ ଆଣିବା କିମ୍ବା କସ୍ତୁରିକା ପରି ଗପଟି ହାତରୁ ଟାଣିନେବାର ସୁଯୋଗ ଦେବା ଇତ୍ୟାଦିରେ ବିପଦର ସମ୍ଭାବନା ଯଥେଷ୍ଟ । ସୀମାଦ୍ରି ନାରୀ, ନାରୀମାନଙ୍କ ଆଖିରେ ତ ଏସବୁ ବେଶୀ ପଡ଼େ । ଏହା ଖୁବ୍ ସ୍ୱାଭାବିକ । ତେବେ ଏଇ ବାସ୍ତବ ଚରିତ୍ରଟିର ପରିବର୍ତ୍ତନ କରାଇଲେ କାହିଁକି ଲେଖକ ? ଜଣ ନାରୀ ଚରିତ୍ର ପ୍ରତି ବିଦ୍ୱେଷୀ ଓ ବୀତଶ୍ରଦ୍ଧ ହୋଇ ?

କେବଳ ଏଇଠି ଗାଳ୍ପିକ ଯେ ନାରୀ ଚରିତ୍ର ପ୍ରତି ଅବିଚାରୀ ତା' ନୁହେଁ । ସମଗ୍ର ଭାରତୀୟ ସାହିତ୍ୟ ଓ ସଂସ୍କୃତିରେ ପୁରୁଷ ଲେଖକ ନାରୀଚରିତ୍ର ଚିତ୍ରଣରେ ଅକ୍ଷମଣୀୟ ଦୁର୍ବିଚାର କରିଥିବା ମନେ ହୁଏ । ନାରୀ ଅସତୀ ଓ ବ୍ୟଭିଚାରିଣୀ- ଏତାଦୃଶ ଧାରଣା ଆମର ଏଇ ମାତୃ-ଉପାସକ ଦେଶରେ ଖୁବ୍ ପ୍ରତିଷ୍ଠିତ । ବାସ୍ତବ କ୍ଷେତ୍ରରେ ସାମାନ୍ୟ ଅନୁଶୀଳନ କଲେ ଜଣାଯାଏ ସମାଜର ସୀମାରେଖା ଭିତରେ ଯେତେ ଦୁଷ୍ଚରିତ୍ର, ଅତ୍ୟାଚାରୀ ଓ ପରସ୍ୱ-ଲୁଣ୍ଠନକାରୀ ପୁରୁଷ ବାହାରିବେ ତାହାର ଶତକରୁ ଏକକ ନାରୀ ହୁଏତ ଦୃଷ୍ଟ ହେବେନି । ଲିପିକାର, କାବ୍ୟକାର ଓ ସଂସ୍କୃତିପ୍ରେମୀ ପ୍ରତ୍ୟେକଙ୍କ ଦୃଷ୍ଟିରେ ପୁରୁଷ ହିଁ ହୁଏତ ଆଦର୍ଶ ଓ ଦେବସୁଲଭ । କିନ୍ତୁ ନାରୀ କୁଳଟା, ବହୁଭୋଗ୍ୟା, ଜାରଜ କନ୍ୟା ଓ କାମାୟନୀ ଇତ୍ୟାଦି । ଏଇ ନାରୀମାନଙ୍କ ହେତୁ ସମାଜ ଭ୍ରଷ୍ଟ ଓ ନଷ୍ଟ । ଲଙ୍କାପୁରୀ ଧ୍ୱସ୍ତ; କୌରବ ସାମ୍ରାଜ୍ୟ ନିପତିତ ଓ ଅଯୋଧ୍ୟା ହତକାନ୍ତି, - ଏହାର କାରଣ ନାରୀ । କିନ୍ତୁ ବାସ୍ତବରେ ଯଦି ବିଶ୍ଳେଷଣ କରି ଦେଖାଯାଏ ତା' ହେଲେ ମନେହୁଏ ପୁରୁଷର ଅସଂଯତ ଓ ଅସଂଗତ କାମ ପ୍ରବୃତ୍ତି ହିଁ ଏଇ ଧ୍ୱଂସର ପ୍ରଧାନ ହେତୁ - ନାରୀ ନୁହେଁ ।

ଏ ସବୁର କାରଣ କୌଣସି ପୁରୁଷ ଅନ୍ୱେଷଣ କରିନି, ନାରୀକୁ ବିକୃତ ଓ ବିକଳାଙ୍ଗ କରି ଗଢ଼ିଛି । ଖୁବ୍ ଚରମପନ୍ଥୀ ହୋଇ ନାରୀ ଚରିତ୍ରର ବିଚାର କରିଛି । ଦେବୀ କିମ୍ବା ଦାନବୀ ଦୃଷ୍ଟିରେ ଦେଖି ନାରୀ ପ୍ରତି ପୁରୁଷ ଅବିରତ ତା'ର ମନୋଭାବ ପ୍ରକାଶ କରିଯାଇଛି । ସେ ଅନୁଭବ କରିଛି, ନାରୀ ଦୋଷବର୍ଦ୍ଧିତା ଦାନବୀ କିମ୍ବା ଗୁଣସଜ୍ଜିତା ଦେବୀ । ଏଠି ଦୋଷଗୁଣ ସମନ୍ୱିତା ମାନବୀର ଅବତାରଣା କାହିଁ ? ଭାରତୀୟ ଚେତନାରେ ନାରୀ ହୁଏତ ଅଯୋନିସମ୍ଭୂତା ସୀତା, ଜାରଜ କନ୍ୟା ଶକୁନ୍ତଳା, କାମପ୍ରମତ୍ତା ସୂର୍ପଣଖା, ବହୁଦାର ଦ୍ରୌପଦୀ, ବ୍ୟଭିଚାରିଣୀ ଅହଲ୍ୟା, ବହୁଭୋଗ୍ୟା କୁନ୍ତୀ କିମ୍ବା କୁଳଟା ରାଧା - ଏମିତି ଅନେକ ବିକୃତ ଓ ବିରୂପର ଚିତ୍ରଣ ନାରୀକୁ ନେଇ । ଯାହା କଥାରେ କହନ୍ତି -

'ରମା ଟେରୀ, ଉମା କାଂଝ, ରତି ରାଣ୍ଡ, ଶଚୀ ଦାରୀ ।' - ଏପରି ଭାବିଲେ ମନେ ହୁଏ ନାରୀମାନଙ୍କ ପ୍ରତି ଏମିତି ଅବିଚାର କାହିଁକି ?

ନାରୀ କ'ଣ ଦୋଷଗୁଣ ସମନ୍ୱିତା ମାନବୀ ହୋଇପାରେନା ? ତା'ର ତ ପୁଣି ପୁରୁଷ ପରି କ୍ଷୁଧା, ତୃଷା, ଦୟା, କ୍ଷମା, ପ୍ରେମ, ଆଶା, ଅକାଂକ୍ଷା, ଉତ୍ଥାନ ପତନ ଆଦି ବିଭିନ୍ନ ପ୍ରବୃତ୍ତି ଓ ପରିସ୍ଥିତି କାର୍ଯ୍ୟ କରୁଛି । ସମ୍ଭାବନା ଥାଇ ସୁଦ୍ଧା ଚରମପନ୍ଥୀର ଦୃଷ୍ଟିକୋଣ ନାରୀ ସମାଜ ପ୍ରତି ପ୍ରଯୁକ୍ତ ହୋଇଛି । କାବ୍ୟ, ସାହିତ୍ୟ, ସ୍ଥାପତ୍ୟ, ଧର୍ମ ପ୍ରତ୍ୟେକ ସ୍ଥଳରେ ନାରୀ ପୁରୁଷଠାରୁ ନ୍ୟାୟ ଓ ବିଚାର ପାଇ ପାରିନି ଯୁଗେ ଯୁଗେ; ପୁରୁଷ ନାରୀ ପ୍ରତି ବିକୃତ ଓ ଅନୁଦାର ମତ ପୋଷଣ କରିଛି । କିନ୍ତୁ ସେଇମାନଙ୍କୁ ସୁଯୋଗ ଦେଖି ନିଜର ଗୌରବ ଓ ଦୀପ୍ତି ପାଇଁ ବ୍ୟବହାର କରିଛି ପୁରୁଷ । କାରଣ ନାରୀ ହାତର ସ୍ପର୍ଶ ଓ ମନର ଦାନ ବ୍ୟତୀତ ଜାତୀୟ ଆଦର୍ଶ ପ୍ରଭୃତି ମିଶ୍ରବସ୍ତୁ ପୂର୍ଣ୍ଣାଙ୍ଗ ନୁହେଁ , ଏକତରଫା ।

ଏଇ ଏକତରଫା ବିଚାର କରିଛନ୍ତି କେତେକ ଗଳ୍ପରେ ଗାଳ୍ପିକ ଶ୍ରୀ ନାୟକ ନାରୀ ଚରିତ୍ର ଚିତ୍ରଣ ପର୍ଯ୍ୟାୟରେ । ନାରୀ ତାଙ୍କ ହାତରେ ପୂର୍ଣ୍ଣତା ପାଇପାରିନି; ବାସ୍ତବ ଓ ଆଦର୍ଶର ସମନ୍ୱୟ ସଂସ୍ଥାପିତ ହୋଇନି । ମନେ ହେଉଛି ନାରୀ ଚରିତ୍ର ସଂପର୍କରେ ଜାଣିବାର ଅନେକ କିଛି ଅଭାବ ଅଛି ଶ୍ରୀ ନାୟକଙ୍କର । ଏ ପ୍ରକାର ଏକ ତ୍ରୁଟି ଭିନ୍ନ ତାଙ୍କର ଗ୍ରନ୍ଥସ୍ଥ 'ଅଙ୍ଗାର' ଗଳ୍ପ 'ବକ ମଧ୍ୟେ କାକ ଯଥା' ଗୌରବରେ ବିଭୂଷିତ ।

ସେ ସବୁ ଯାହା ହେଉ ଗଳ୍ପ ଓ ଗାଳ୍ପିକଙ୍କର ସମାଲୋଚନା ଅନେକ ହେଲାଣି । ମୁଁ ସର୍ବଶେଷରେ ଏତିକି ଅନୁଭବ କରୁଛି; ଅନ୍ତତଃ ଜଣେ ବିଦଗ୍ଧ ପାଠକ ହିସାବରେ - ଗଳ୍ପଗୁଡ଼ିକରେ ଅପଯଶ ଅପେକ୍ଷା ଯଶର ମାତ୍ରା ବେଶୀ । ସଂକ୍ଷେପରେ କହିଲେ ଗଳ୍ପଗୁଡ଼ିକ ଖୁବ୍ ଉନ୍ନତ ଧରଣର; ଏହାର ସପକ୍ଷଯୁକ୍ତି ତୁଳନାରେ ବିପକ୍ଷ ଯୁକ୍ତି ଖୁବ୍ ସାମାନ୍ୟ । କାରଣ ଗୁଣର ସାମଗ୍ରିକ ରୂପ ଭିତରେ ଦୋଷର ଆଂଶିକତା ବିଲୀନ ହୋଇଥାଏ । ଯେପରି କାଳିଦାସଙ୍କ ଉକ୍ତିରେ -

"ଅନନ୍ତ-ରତ୍ନ-ପ୍ରଭବସ୍ୟ ଯସ୍ୟ
ହିମଂ ନ ସୌଭାଗ୍ୟ ବିଲୋପି ଜାତମ୍
ଏକୋ ହି ଦୋଷୋ ଗୁଣ ସନ୍ନିପାତେ
ନିମଜ୍ଜତୀନ୍ଦୋଃ କିରଣେଷ୍ୱିବାଂ କଃ ।"



# ଫୁଲର କବର : ଏକ ସମୀକ୍ଷା

ଶ୍ରୀ ହୃଦମଣି ପ୍ରଧାନ

'ଫୁଲର କବର' ଏକ କ୍ଷୁଦ୍ରଗଳ୍ପର ନାମ ଓ ସେହି କ୍ଷୁଦ୍ର ଗଳ୍ପ ଥିବା ପୁସ୍ତକର ନାମ ମଧ୍ୟ । ହୁଏତ ଏହା ଲେଖକଙ୍କୁ ବେଶୀ ଭଲ ଲାଗିଥିବ କିନ୍ତୁ ଏହାର ବିଷୟବସ୍ତୁ ଅତ୍ୟନ୍ତ ସାଧାରଣ ଏବଂ ଶୈଳୀରେ ମଧ୍ୟ ଏହି ପୁସ୍ତକର ଅନ୍ୟାନ୍ୟ କ୍ଷୁଦ୍ରଗଳ୍ପମାନଙ୍କ ଶୈଳୀରୁ ମୋଟେ ଭିନ୍ନ ନୁହେଁ । ଏହି ପୁସ୍ତକର କ୍ଷୁଦ୍ରଗଳ୍ପମାନଙ୍କ ବିଷୟରେ କହିବା ଆଗରୁ ଏହାର ଅନ୍ୟ ଏକ ସ୍ୱାତନ୍ତ୍ର୍ୟ "ପୃଷ୍ଠବନ୍ଧ" ସମ୍ପର୍କରେ କିଞ୍ଚିତ ସୂଚନା ଦେଲେ ମୋ ପରି ଅନ୍ୟାନ୍ୟ ପାଠକମାନଙ୍କ ପାଇଁ ସୁବିଧାଜନକ ହେବ ବୋଲି ମନେ ହୁଏ ।

'ମରୁ ବଲ୍ଲରୀର ପୁଲକ' ଇତ୍ୟାଦି ୧୬ ଟି ଗଳ୍ପ ପଢ଼ିଲାପରେ ପାଠକ ଯେତେବେଳେ ଏହାର 'ପୃଷ୍ଠବନ୍ଧ' ପଢ଼େ - ଯାହାକୁ ଏକ ମନୋଜ୍ଞ ସମୀକ୍ଷା ବୋଲି କୁହାଯାଇପାରେ - ଏ ସବୁ କି ପ୍ରକାରର କ୍ଷୁଦ୍ରଗଳ୍ପ ସେ ଅନେକ ପରିମାଣରେ ଜାଣିଯାଏ । ଶ୍ରୀମତୀ ଲାବଣ୍ୟ ଦେବୀ ଯାହା କହିଛନ୍ତି ଯେ କ୍ଷୁଦ୍ରଗଳ୍ପମାନଙ୍କରେ ନାରୀ ଚରିତ୍ରମାନଙ୍କ ପ୍ରତି ଅବିଚାର ହୋଇଛି, ତାହା ସତ । ଗୋବରୀ ଓ ଜଲିଲ୍ ଜୀବନରେ ଯେଉଁ ସଂଘର୍ଷ ରୂପ ନେଲା ତାହା ବିଫଳତାରେ ହିଁ ଶେଷ ହେଲା । ସଫଳ ହୋଇଥାନ୍ତା ଯଦି ପ୍ରବୃତ୍ତିର ତାଡ଼ନାକୁ ସହ୍ୟ କରି ଗୋବରୀ ଓ ଜଲିଲର ହୃଦୟ ଓ ମନ ଜଳି ପୋଡ଼ି ପାଉଁଶ ହୋଇଥାନ୍ତା । ମଣିଷ ଭିତରେ ପଶୁର ବିଜୟ ଅବଶ୍ୟ ବାସ୍ତବ - କିନ୍ତୁ ସେହି ମଣିଷ ଭିତରେ ମଣିଷ ଓ ଦେବତ୍ୱର ସନ୍ଧାନ ଦେବା ହେଲା ସକଳ ପ୍ରକାରର କଳାର ଲକ୍ଷ୍ୟ । ସୃଷ୍ଟି ବାସ୍ତବଧର୍ମୀ ହେଉ ଏବଂ ସଙ୍ଗେ ସଙ୍ଗେ ଆଦର୍ଶର ସୂଚନା ଦେଉ ।

ଏଠାରେ ଆଉ ଗୋଟିଏ କଥା ପାଠକର ମନକୁ ହଠାତ୍ ଆସେ ଯେ ଲେଖକ ମଣିଷର ଯନ୍ତ୍ରଣାକୁ ରୂପ ଦେବାକୁ ଯାଇ ଅନେକ ପରିମାଣରେ ବିଫଳ ହୋଇଛନ୍ତି । ହୁଏତ ସେ ଯନ୍ତ୍ରଣାକୁ ରୂପ ଦେବାକୁ ଚାହାନ୍ତି ନାହିଁ । 'ଅପର୍ଣ୍ଣାର ଆତ୍ମଗୀତି' ଇତ୍ୟାଦି ପଢ଼ିଲେ ତାହାହିଁ ମନେ ହୁଏ । କିନ୍ତୁ 'ସଂକେତ' ପରି ଗୋଟିଏ ଦୁଇଟି ଗଳ୍ପରେ ମଣିଷର ମନ ଓ ହୃଦୟର ଦହନ, ଅଳ୍ପପରିମାଣରେ ହେଲେ ବି ପ୍ରକାଶିତ ହୋଇପାରୁଥିବାରୁ ତାହା ପାଠକର ଅତିପ୍ରିୟ ହୋଇ ଗଭୀର ରେଖାପାତ କରେ ।

ପ୍ରାୟ ପ୍ରତ୍ୟେକ ଗଳ୍ପର ବିଷୟବସ୍ତୁ ପ୍ରେମ ଉପରେ ପର୍ଯ୍ୟବସିତ କିମ୍ବା ଯୌନଭୋଗ ଲିପ୍ସାର ବିଭିନ୍ନ ରୂପାନ୍ତରକୁ ନେଇ ରଚିତ । ସ୍ନେହରେ ଘୃଣା ଓ ସନ୍ଦେହ ଇତ୍ୟାଦି ମିଶିଲେ ସ୍ନେହର ଜଟିଳତା ପ୍ରକାଶିତ ହୁଏ କିନ୍ତୁ ତା ପାଇଁ ମଧ୍ୟ ଏକ ଜଟିଳ ପ୍ରକାଶ ଭଙ୍ଗୀର ସାହାଯ୍ୟ ନେବାକୁ ପଡ଼ିଥାଏ । ଯଦିଓ ସେପରି ଏକ ଶୈଳୀର ଅବତାରଣା ଏଠାରେ ଅନେକ ପରିମାଣରେ ସଫଳ ହୋଇଛି, ତଦନୁପାତୀ ଜଟିଳ ଚିନ୍ତା ଓ ଆବେଗ ମିଳୁ ନଥିବାରୁ ଅନେକ ସ୍ଥାନରେ ନିଷ୍ପ୍ରାଣ ହେବାକୁ ପଡ଼େ ।

ପୁଣି ଟିକିଏ 'ପୃଷ୍ଠବନ୍ଧକୁ' ଫେରି ଆସିଲେ ଦେଖିବାକୁ ପାଇବା ଯେ ଶ୍ରୀମତୀ ନାୟକ ଠିକ୍ ଭାବରେ ଦେଖିବାକୁ ପାଇଛନ୍ତି, ଏ ଗଳ୍ପଗୁଡ଼ିକ 'ବ୍ୟଞ୍ଜନାଧର୍ମୀ', 'ସୂଚନାତ୍ମକ' ଓ ଆଭାସଚିତ୍ର' ମୟ । କବିତା ଯେତେବେଳେ Verse libre ଓ prose-poetry ରେ ପରିଣତ ହେଲା, ଛନ୍ଦହୀନ ପ୍ରକାଶଭଙ୍ଗୀରେ ଗୁମ୍ଫିତ ହେଲା ସେତେବେଳେ ପ୍ରଶ୍ନ ଆସେ, ଶ୍ରୀଯୁକ୍ତ ନାୟକଙ୍କ ଚିତ୍ରକଳ୍ପ ଓ ରୂପକଳ୍ପର ସମନ୍ୱୟରେ ଗଢ଼ି ଉଠିଥିବା ବ୍ୟଞ୍ଜନାତ୍ମକ ଗଳ୍ପଗୁଡ଼ିକୁ ଯଦି ଗଦ୍ୟକବିତା ବୋଲି କୁହାଯାଏ, ତେବେ ଠିକ୍ ହେବତ ?

Wordsworth ତାଙ୍କ Preface ରେ କହନ୍ତି ଗଦ୍ୟ ଓ ପଦ୍ୟର ଭାଷାରେ କୌଣସି ପ୍ରଭେଦ ନାହିଁ - ଅଛି କେବଳ ଛନ୍ଦରେ । କିନ୍ତୁ କବିତା ଯଦି ଛନ୍ଦହୀନ ହୁଏ ? ବିଷୟବସ୍ତୁ ଓ ରସ ସୃଷ୍ଟି ସମ୍ପର୍କରେ ମଧ୍ୟ କବିତା ଓ ଗଦ୍ୟରେ କୌଣସି ପାର୍ଥକ୍ୟ ଥିଲାପରି ମନେ ହୁଏ ନାହିଁ- ଅବଶ୍ୟ ଏଇଟା ବିଚାରସାପେକ୍ଷ ।

ଉପରୋକ୍ତ କେତୋଟି ପ୍ରଶ୍ନର ବିବେଚନାପରେ ପାଠକ ଦେଖିବାକୁ ପାଇବେ ଯେ ଗାଳ୍ପିକକୁ ସଫଳତା ଆଣିଦେବ ତାର ଗୀତିମୟ ପ୍ରକାଶଭଙ୍ଗୀ ଓ କବିର ସଫଳତା ନିର୍ଭର କରେ ସେ ଯଦି ନିଜ ଶିଳ୍ପରେ ଗଦ୍ୟଶୈଳୀର ସମସ୍ତ ଶକ୍ତି ପ୍ରୟୋଗ କରିପାରେ । ସେଇଠି ଦେଖିବା କ୍ଷୁଦ୍ରଗଳ୍ପ ଓ କ୍ଷୁଦ୍ରକବିତା (ଯାହା ଏ ଯୁଗର ଜନପ୍ରିୟ ସାହିତ୍ୟିକ ରୂପ) କିପରି ଏକତ୍ର ଅବସ୍ଥାନ କରନ୍ତି ଓ ସେମାନଙ୍କ ଭିତରେ ଥିବା ବାହ୍ୟପାର୍ଥକ୍ୟ କେତେ କ୍ଷୀଣ । ଏବେ ଗାଳ୍ପିକକୁ କିଛିତ କବି ଓ କବିକୁ କିଛିତ ଗାଳ୍ପିକ ହେବାକୁ ପଡ଼ିବ, ନତୁବା ସେମାନଙ୍କ ପ୍ରକାଶଭଙ୍ଗୀ ଦୁର୍ବଳ ହୋଇପଡ଼ିବ । 'କ୍ଷଣପ୍ରଭା' ଓ 'ଦୁଇଟି କାହାଣୀ'କୁ ଅନ୍ତତଃ ଗଳ୍ପ ନ କହି ଗଦ୍ୟକବିତା କହିଲେ ବେଶୀ ଯୁକ୍ତିଯୁକ୍ତ ହେବ ବୋଲି ମୋର ମନେ ହୁଏ ।

ଏ ପ୍ରକାର ପ୍ରକାଶଭଙ୍ଗୀ ପ୍ରଥମେ ବହୁଳ ଭାବରେ ବ୍ୟବହାର କଲେ ଭାରତୀୟ ସାହିତ୍ୟରେ ରବୀନ୍ଦ୍ରନାଥ ଠାକୁର ତାଙ୍କ କ୍ଷୁଦ୍ରଗଳ୍ପମାନଙ୍କରେ । ଅନେକ କହନ୍ତି, ଠାକୁରଙ୍କ କ୍ଷୁଦ୍ରଗଳ୍ପ ସବୁ ମଧ୍ୟ କାବ୍ୟିକ ଗୁଣାବଳୀରେ ପୁଷ୍ଟ ଏବଂ ଖୁବ୍ ସମ୍ଭବ ତାହାହିଁ ସେମାନଙ୍କୁ ଚିରନ୍ତନ ମୂଲ୍ୟ ପ୍ରଦାନ କରିଥାଏ । କିନ୍ତୁ କଥା ହେଲା, ଆପଣଙ୍କୁ ଗୋଟାଏ ଥାଳିଆ ରସଗୋଲା ଖାଇବାକୁ ଦେଲେ ହୁଏତ ଆପଣ ଲୋଭ ସମ୍ବରଣ ନ କରି ଯାହା ପାରିବେ ଖାଇବେ । ବାକିତକ ଆରଦିନ ଓ ଅବଶିଷ୍ଟ ତା' ପର ଦିନ ଖାଇବେ । ମନେ କରନ୍ତୁ ଆପଣ ଯଦି ପ୍ରତିଦିନ ନୂତନ ତିଆରି ଟଟକା ରସଗୋଲା ପାଇଲେ ବୋଧହୁଏ ଆପଣ ଦ୍ୱିତୀୟ ପ୍ରକାର ବିଳାସକୁ ବେଶୀ ପସନ୍ଦ କରିବେ । ଠିକ୍ ସେହିପରି ଠାକୁରଙ୍କ ଅତିଶୟ ଦୀର୍ଘ ଗଳ୍ପଗୁଡ଼ିକ ଗୋଟିଏ ଥାଳିଆ ରସଗୋଲା ପରି; ଅନ୍ୟ ପକ୍ଷରେ ପାଞ୍ଚ ସାତମିନିଟରେ ପଢ଼ି ଶେଷ କରି ହେଉଥିବା ଗୀତିମୟ କ୍ଷୁଦ୍ରଗଳ୍ପଗୁଡ଼ିକ ଯାହା ଶ୍ରୀ ନାୟକଙ୍କ କ୍ଷୁଦ୍ରଗଳ୍ପ ଗୁଡ଼ିକର ଅନ୍ୟତମ ଗୁଣ, ପ୍ରତିଦିନ ତିଆରି ହୋଇଆସୁଥିବା ଟଟକା ରସଗୋଲାର ସ୍ୱାଦପରି ମନେହୁଏ । ଅତ୍ୟନ୍ତ ଗତିଶୀଳ ଜୀବନରେ ଏକ ପ୍ରକାର କଳାର ପ୍ରୟୋଜନ ଯେ କେତେ ତାହା ସମସ୍ତ ସୁଧୀ ପାଠକ ଅନୁଭବ କରିସାରିଛନ୍ତି - ଶିଳ୍ପ ଓ ଶିଳ୍ପୀ ଚିରାୟୁ ହୁଅନ୍ତୁ ।



# କର୍ମ ଏକା ତୁମ ଜୀବନର ମାନଦଣ୍ଡ

ଡକ୍ଟର କୁଞ୍ଜବିହାରୀ ଦାଶ

"ନେତ୍ର ପଥୁ ଗଲା ପରେ
କେଉଁ କ୍ଷେତ୍ରେ ବାସ
କରିଅଛ କ୍ଷେତ୍ରବାସୀ ?
କିଶୋରୀ 'ଏଷଣା'
ଯେତେ ଗବେଷଣା
ପଡ଼ଇ କି ମନେ
ବିଳପନ୍ତି ଯେଉଁମାନେ ନିଜ ନିକେତନେ ?"

ମୃତ୍ୟୁ ଦୁଃଖଦାୟୀ, ଅକାଳ ମୃତ୍ୟୁ ମର୍ମଦାହୀ । ଭଗବାନ୍ ଭଲ ପାଉଥିବା ଲୋକଙ୍କୁ ଶୀଘ୍ର ସଂସାରରୁ ଘେନିଯା'ନ୍ତି । ଏ କଥା କ'ଣ ସତ ?

କାହିଁକି ଏପରି କୁହାଯାଏ ? ସଂସାରକୁ ଆଶ୍ୱାସନା ଦେବା ଲାଗି ?

ରୋଜଗାରୀ ସ୍ୱାମୀ, ଗୃହଲକ୍ଷ୍ମୀ ସ୍ତ୍ରୀ, ହସ ଖୁସିରେ ସଂସାରକୁ ଭସଉଥିବା ବାଳୁତ, ଆକ୍‌ସିଡେଣ୍ଟରେ, ବାତ୍ୟା, ବନ୍ୟା, ଦୁର୍ବିପାକରେ, ରୋଗ ବ୍ୟାଧିରେ ଯେତେ ଶିଶୁ କିଶୋର ଯୁବକ-ଯବତୀ ଜୀବନ ହରାନ୍ତି, ସେମାନେ ସ୍ୱର୍ଗରେ ଭିଡ଼ ଜମାନ୍ତେ, ସ୍ୱୟଂ ଭିଡାକ୍ରାନ୍ତ ଭଗବାନ୍ ସ୍ୱର୍ଗ ଛାଡ଼ି ପଳାଇଯା'ନ୍ତେ । ଭିଡ଼କୁ ଦେବତା, ମଣିଷ, ପଶୁପକ୍ଷୀ କିଏ ଭଲ ପାଏ କି ?

ସ୍ୱପ୍ନ ଦେଖେଇ ପରିବାରରେ ଜବରଦସ୍ତି ସ୍ଥାନ ମାଡ଼ି ବସିଥିବା ଜଗନ୍ନାଥଙ୍କ ଅର୍ଚ୍ଚନା, ସାହିତ୍ୟ ଗବେଷଣା ଥିଲା କ୍ଷେତ୍ରବାସୀ ଜୀବନରେ ଦୁଇଟି ବ୍ରତ । ହେ ଜଗନ୍ନାଥ, ଅର୍ଚ୍ଚନା ତ ତୁମେ ପାଇଲ, ଏ ଯୁଗର ନବୀନ ବିଶ୍ୱାବସୁ କ୍ଷେତ୍ରବାସୀ ହାତରୁ ନ ହେଲେ ବି ଲାବଣ୍ୟ ହାତରୁ; ଜଳରେ ନ ହେଲେ ବି ଅଶ୍ରୁରେ ତୁମ ସ୍ନାନ ଓ ପୂଜା ବିଧି ବଢ଼ିଲା, ତାଙ୍କ 'ଗବେଷଣା ପରିଷଦ' ବା 'ଏଷଣା' ର ଲାଳନା କରିବ କିଏ ?

କ୍ଷେତ୍ରବାସୀ ଜୀବନ ମହତ ମହୀୟାନ୍‌ର ଜୀବନ; କର୍ମ ତା'ର ମାନଦଣ୍ଡ । ସେହି ଭାବରେ ସେ କଳ୍ପଜୀବୀ ।



# ଅମୃତଲୋକ ସନ୍ଧାନୀ

ଡକ୍ଟର ନରେନ୍ଦ୍ରନାଥ ମିଶ୍ର

ଶ୍ରଦ୍ଧେୟ କ୍ଷେତ୍ରବାସୀ ପରିବର୍ତ୍ତେ ସ୍ୱର୍ଗତଃ କ୍ଷେତ୍ରବାସୀ ଲେଖିବା ଅତ୍ୟନ୍ତ ପୀଡ଼ା ଦାୟକ । ମାତ୍ର ବ୍ୟଥା ହିଁ ସତ୍ୟ-ଉପଲବ୍ଧିର ପ୍ରଥମ ସୋପାନ । ମୃତ୍ୟୁ ବାସ୍ତବ । ଏହା ନିଜର ହେଉ ବା ପ୍ରିୟଜନଙ୍କର ହେଉ । ମୃତ୍ୟୁ ବେଦନାର ପ୍ରତିକାର ନାହିଁ । ତଥାପି ମନୁଷ୍ୟ ନିରନ୍ତର ଏହି ପ୍ରତିକାର ଲୋଡ଼େ । ବିନାଶକୁ ବିକାଶର ସୋପାନ ରୂପେ ଗଢ଼ିବାକୁ ଚାହେଁ । ମଣିଷ ଯେତେଦିନ ପୃଥିବୀରେ ଅଛି, ତାକୁ ଏହି ସତ୍ୟ ସ୍ୱୀକାର କରିବାକୁ ପଡ଼ିବ । ଏହାକୁ କେହି ଦୁଃଖ କହିପାରେ, କେହି କହିପାରେ ଭାଗ୍ୟର ପରିହାସ । ଅବା କେହି କହିପାରେ ଏକ ଦୁର୍ଜ୍ଞେୟ ରହସ୍ୟ । ତେବେ ମୃତ୍ୟୁ ଆମକୁ ସଚେତନ କରିଦିଏ - ଆମେ ପୃଥିବୀରେ ଏକା ନୋହୁଁ । ପ୍ରେମ, ସ୍ନେହ, ମମତା, କର୍ତ୍ତବ୍ୟବୋଧ ଆଦି ଅଜସ୍ର ବନ୍ଧନରେ ଆମର ବ୍ୟକ୍ତିଗତ ଜୀବନ, ସମଷ୍ଟିଗତ ଜୀବନ ସଙ୍ଗେ ନାନା ସୂତ୍ରରେ ଗ୍ରଥିତ । ଏହି ବନ୍ଧନର ସୂତ୍ର ମଧ୍ୟରେ ହିଁ ବ୍ୟକ୍ତିତ୍ୱ ସୂକ୍ଷ୍ମ ରୂପେ ବିସ୍ତାର ଲାଭ କରେ । ଗଭୀର ନୈରାଶ୍ୟ ମଧ୍ୟରେ ଆଶାର ଆଲୋକ ଦେଖାଯାଏ । କ୍ଷେତ୍ରବାସୀଙ୍କ ମର୍ମାନ୍ତିକ ବିୟୋଗ ଘଟିଣାଟି ଯେତିକି ଅତୀତ ହେଉଛି, ସେତିକି ଐତିହାସିକ ଗୁରୁତ୍ୱ ଲାଭ କରୁଛି । ତାଙ୍କର ସ୍ମୃତି ବିସ୍ମୃତିର ଅନ୍ଧକାର ଭିତରେ ଆମ୍ଳାନ ନ ହୋଇ ଅଧିକ ଉଜ୍ଜ୍ୱଳ ହୋଇଉଠୁଛି ।

ଠିକ୍ ସନ ତାରିଖ ମନେ ନାହିଁ । ତେବେ ମୋର ବିଶ୍ୱାସ, ମୁଁ ଯେତେବେଳେ କ୍ଷେତ୍ରବାସୀଙ୍କୁ ପ୍ରଥମେ ଦେଖିଥିଲି, ସେ ଥିଲେ ଭଦ୍ରକ କଲେଜର ଛାତ୍ର । ଦେଖା ହୋଇଥିଲା ଅଧ୍ୟାପକ ବନ୍ଧୁ କୃଷ୍ଣଚରଣ ବେହେରାଙ୍କ ଘରେ । ଭଦ୍ରକ "ଭାଗବତ ଭବନ" ନିକଟରେ କୌଣସି ଏକ ଭଡ଼ା ଘରେ ସେତେବେଳେ ଅଧ୍ୟାପକ ବେହେରା ରହୁଥିଲେ । ସଲଜ, ସପ୍ରତିଭ କ୍ଷେତ୍ରବାସୀଙ୍କଠାରେ ଯେ ଏତେ ବେଶୀ ସମ୍ଭାବନା ଥିଲା, ତାହା ସେତେବେଳେ ଧରା ନ ପଡ଼ିବା ସ୍ୱାଭାବିକ । କେଉଁ ପ୍ରସଙ୍ଗରେ କେଜାଣି, ସେଦିନ କଥା ହେଉଥିଲା ସଂସ୍କାର-କୁସଂସ୍କାର ଘେନି । କ୍ଷେତ୍ରବାସୀ ଗଳାରେ ଟିକିଏ ସିନ୍ଦୂର ଲଗାଇଥାନ୍ତି । କୌଣସି ଦେବୀଙ୍କ ସିନ୍ଦୂର ନିଶ୍ଚୟ । ଅଧ୍ୟାପକ ବେହେରାଙ୍କ ଭଳି ମୁଁ ମଧ୍ୟ ଥିଲି ହେତୁବାଦୀ, ମାନବ ସତ୍ୟର ସନ୍ଧାନୀ । ବିଶ୍ୱାସ ହିଁ ବିନାଶର ପଥ ଦେଖାଏ । ଅନ୍ଧକାରରୁ ଆଲୋକକୁ ଆସିବାର ଏକମାତ୍ର ପଥ ବିଶ୍ୱାସ-ଅବିଶ୍ୱାସ ଊର୍ଦ୍ଧ୍ୱରେ ସଜ୍ଞାନ ଅବବୋଧ । ଠିକ୍ ଆମମାନଙ୍କ କଥାର ପ୍ରତିବାଦ କରିବା ଅବସ୍ଥାରେ ସେଦିନ କ୍ଷେତ୍ରବାସୀ ନ ଥିଲେ । କିନ୍ତୁ ବିଶ୍ୱାସ ମାର୍ଗରୁ ଯେ କେବେ ଟଳିବେ ନାହିଁ, ତା'ର ଇଙ୍ଗିତ ସେ ଦେଇଥିଲେ । ବିଶ୍ୱାସ ବଳରେ ହେଉ ବା ଗଭୀର ସାଧନା ବଳରେ ହେଉ, କ୍ଷେତ୍ରବାସୀ

ଭଲ ପଡ଼ିଲେ । ଲାବଣ୍ୟଙ୍କ ଭଳି ଜଣେ ଉଦାର, ଆଦର୍ଶବାଦିନୀ ଶିକ୍ଷିତା ମହିଳାଙ୍କୁ ବିବାହ କଲେ । ଜଣେ ପ୍ରତିଷ୍ଠିତ ଅଧ୍ୟାପକ ହେଲେ ।

କ୍ଷେତ୍ରବାସୀଙ୍କ ଗବେଷଣାର ବିଷୟ ଥିଲା – ଓଡ଼ିଆ କବିତା ଉପରେ ପାଶ୍ଚାତ୍ୟ ପ୍ରଭାବ । ବିଷୟଟି ଆଧୁନିକ ସାହିତ୍ୟ ପରିସରଭୁକ୍ତ । ବହୁ ଦିନରୁ ମୁଁ ଅବଶ୍ୟ ପ୍ରାଚୀନ ଓଡ଼ିଆ ସାହିତ୍ୟକୁ ମୋ ଗବେଷଣାର ବିଷୟ ରୂପେ ବାଛି ଥିଲି । କିନ୍ତୁ ପରବର୍ତ୍ତୀ କାଳରେ ମୋ ଗବେଷଣାର ବିଷୟ ହୋଇଥିଲା, ଆଧୁନିକ ସାହିତ୍ୟ; ବିଶେଷ କରି ଆଧୁନିକ କବିତା । ଏହି ଭାବରେ କ୍ଷେତ୍ରବାସୀ ଓ ମୁଁ ଯେପରିକି ଏକ ଅଦୃଶ୍ୟ ଆତ୍ମୀୟତା ବନ୍ଧନରେ ଆବଦ୍ଧ ହୋଇପଡ଼ିଥିଲୁ ସମାନଧର୍ମା ରୂପେ । ମୁଁ ବରାବର ଓଡ଼ିଶା ବାହାରେ ରହୁ ଥିବାରୁ କ୍ଷେତ୍ରବାସୀଙ୍କ ସଙ୍ଗେ ସାକ୍ଷାତାଳାପର ସୁଯୋଗ ଥିଲା ସୀମାବଦ୍ଧ । ତେବେ ପତ୍ରାଳାପ ସାମୟିକ ଭାବେ ଚାଲିଥିଲା । ସେ ବ୍ରହ୍ମପୁରରେ ଦୀର୍ଘଦିନ ଥିଲେ । ଆଧୁନିକ ସାହିତ୍ୟର ଅନେକ ବଡ଼ ବଡ଼ ଗ୍ରନ୍ଥ ସଂପାଦନା ସଙ୍ଗେ ସଙ୍ଗେ ବିଶିଷ୍ଟ କବି ଓ ସାହିତ୍ୟିକଙ୍କ ବିଷୟରେ ମନୋଗ୍ରାଫ୍ ରଚନା କରିଥିଲେ । ଯେତେବେଳେ ସୁଯୋଗ ଆସୁଥିଲା, ତାଙ୍କ ବହିସବୁ ସେ ମୋତେ ଉପାହାର ଦେବାକୁ ଅତ୍ୟନ୍ତ ସୁଖକର ମଣୁଥିଲେ । ପ୍ରତି ନବ ବର୍ଷ ଉପଲକ୍ଷେ ସେ ପ୍ରାୟ ଶୁଭେଚ୍ଛାମୂଳକ ପତ୍ର ଲେଖୁଥିଲେ । ତାଙ୍କ ସହିତ ବ୍ୟକ୍ତିଗତ ଓ ଔପଚାରିକ ତଥା ଅନୁଷ୍ଠାନିକ ପରିଚୟ ମୋର ଯେତିକି ନିବିଡ଼ ହେଉଥିଲା, ତାଙ୍କ ବ୍ୟକ୍ତିତ୍ୱ ସମ୍ବନ୍ଧରେ କିପରି ଏକ ବିରୋଧାଭାସ ମୋ ମନରେ ସେତିକି ଦୃଢ଼ ହେଉଥିଲା । ସେ ଯେତିକି ଭାବପ୍ରବଣ, ସେତିକି ବାସ୍ତବବାଦୀ । ଯେତିକି କଳ୍ପନାପ୍ରବଣ, ସେତିକି କର୍ମନିଷ୍ଠ । ସେ ଯେତିକି ହେତୁବାଦୀ, ସେତିକି ଅଧ୍ୟାତ୍ମବାଦୀ; ଧର୍ମବିଶ୍ୱାସୀ ।

ଏଠାରେ ମୁଁ ଗୋଟିଏ ଦୃଷ୍ଟାନ୍ତ ଦେଉଛି । ଓଡ଼ିଆ ଭାଷା ଓ ସାହିତ୍ୟର ଉଚ୍ଚକୋଟୀର ଗବେଷଣା ପାଇଁ Centre of Advanced Study ପ୍ରତିଷ୍ଠା ପାଇଁ ମୁଁ ବହୁତ ଦିନରୁ କଳ୍ପନା କରି ଆସୁଛି । ୧୯୬୪ ରେ ଏହି ସଂକ୍ରାନ୍ତରେ ମୋର ଏକ ପ୍ରବନ୍ଧ ପ୍ରଥମେ 'ସମାଜ'ରେ ବାହାରିଥିଲା । ୧୯୭୧ ରେ 'ନବରବି'ର ପୂଜା ସଂଖ୍ୟାରେ ଏ ସଂକ୍ରାନ୍ତରେ ମଧ୍ୟ ମୋର ଅନ୍ୟ ଏକ ଲେଖା ପ୍ରକାଶ ପାଇଥିଲା । ଏସବୁ ବେଳେବେଳେ କେହି କେହି ବୁଦ୍ଧିଜୀବୀଙ୍କ ମନକୁ ଆଲୋଡ଼ିତ କରୁଥିଲା । ୧୯୭୧ରେ ବାଣୀବିହାରରୁ ଜଣେ ଦର୍ଶନ ଅଧ୍ୟାପକ ଲେଖିଥିଲେ, "ମୁଁ ବାଣୀବିହାରରେ ଦର୍ଶନ ବିଭାଗର ପ୍ରାଧ୍ୟାପକ । ଓଡ଼ିଆରେ ଏକ Advanced Study Centre ହେଉ, ଏହିପରି ଏକ ମତ ଦେଇଥିବାରୁ ମୁଁ ଆପଣଙ୍କୁ ଧନ୍ୟବାଦ ଜଣାଉଛି । Advanced Centre ହେଲେ ହୁଏତ ସାହିତ୍ୟର ଚର୍ଚ୍ଚା ପାଇଁ ଅବକାଶ ଆସିବ, ଅଧ୍ୟାପକମାନେ ଆଗ୍ରହୀ ହେବେ । x

x x ଓଡ଼ିଶାରେ ଏ ଅଭାବ ଅଛି ବୋଲି ଅନୁଭବ କରି ଆପଣଙ୍କ ପାଖକୁ ଲେଖୁଛି ।" ୧୯୭୬ ରେ ଯେତେବେଳେ ମୁଁ ସତରେ ଏକ Institute of Oriya Studies' ର ଚିଠା ସମ୍ବିଧାନଟିଏ ପାଇଲି, ସେତେବେଳେ ବିସ୍ମିତ ହୋଇଗଲି । ଅଧାପକ ଡଃ କୃଷ୍ଣଚରଣ ବେହେରା ଓ କ୍ଷେତ୍ରବାସୀଙ୍କ ଭଳି ପ୍ରବୀଣ ଓ ତରୁଣଙ୍କର ଏହା ଥିଲା କଳ୍ପନା-ପ୍ରସୂତ । ଏ ଭିତରେ ଅନୁଷ୍ଠାନ ମାଧ୍ୟମରେ କ୍ଷେତ୍ରବାସୀଙ୍କ ବ୍ୟକ୍ତିତ୍ୱ, ସଂଗଠନ କ୍ଷମତା ବହୁ ଦୂର ପ୍ରସାରିତ ହୋଇଛି । ସେ ଏକ ବ୍ୟକ୍ତି ନୁହନ୍ତି; ବହୁ ତରୁଣ ଓ ପ୍ରବୀଣଙ୍କଠାରେ ଏକ ଅନୁଷ୍ଠାନ ଭାବରେ ଖ୍ୟାତିଲାଭ କରିଛନ୍ତି । ପରିଷଦର କାର୍ଯ୍ୟ ଓ ଭବିଷ୍ୟତ୍ ଯୋଜନା ବିଷୟରେ ବ୍ୟକ୍ତିଗତ ଭାବେ ସେ ସମସ୍ତଙ୍କୁ ବହୁ ଚିଠି ଲେଖୁଥିଲେ । ଏଥିରୁ ଗବେଷଣା ପରିଷଦ ପ୍ରତି ତାଙ୍କର ଆନ୍ତରିକତା ଓ ନିଷ୍ଠା ହିଁ ପ୍ରକାଶିତ ହୋଇଥାଏ । ହାତ ପାଖରେ ଥିବା ତାଙ୍କର ଗୋଟିଏ ଚିଠିରୁ ମୁଁ କିଛି ଅଂଶ ଉଦ୍ଧାର କରୁଛି -

"ସାରସ୍ୱତ ନିଳୟ

ଛତ୍ରବଜାର, କଟକ - ୧୨

୧୪-୯-୮୨

ମାନନୀୟେଷୁ, ପ୍ରଣତି ।

ଆପଣଙ୍କଠାରୁ ଅନେକ ଦିନ ହେଲା କିଛି ସମ୍ବାଦ ପାଇ ନାହିଁ । ପରିଷଦର ଚିଠି ପତ୍ର ଆପଣଙ୍କୁ ନିୟମିତ ମିଳୁଥିବ । 'ସାହିତ୍ୟ କୋଷ' ପାଇଁ କେତୋଟି ପ୍ରବନ୍ଧ ଲେଖିବା ପାଇଁ ଅନୁରୋଧ ପତ୍ର ଓ ବିବରଣୀ ପୁସ୍ତିକା ପଠା ଯାଇଥିଲା । ଆଶା କରୁଛି, ଆପଣ ତାହା ଲେଖି ସାରିବେଣି; କେବେ ଆମକୁ ସେଇ ଲେଖାତକ ମିଳିବ ଜଣାଇବେ । ଆଗାମୀ ବାର୍ଷିକ ଉତ୍ସବରେ 'ତୁଳନାତ୍ମକ ସାହିତ୍ୟ' ବିଷୟରେ ପରିଷଦ ପକ୍ଷରୁ ଗୋଟିଏ ସେମିନାର ହେବ । ପ୍ରାୟ ଅକ୍ଟୋବର ଶେଷ କିମ୍ବା ନଭେମ୍ବର ବେଳକୁ । ଆପଣ ଏଇ ସେମିନାରରେ ଗୋଟିଏ ପ୍ରବନ୍ଧ ପାଠ କରିବା ସ୍ଥିର ହୋଇଛି । ପ୍ରବନ୍ଧର ବିଷୟ ଓ ଅନ୍ୟାନ୍ୟ ପ୍ରସଙ୍ଗ ଦିନେ ଦୁଇ ଦିନ ଭିତରେ ଆଉ ଏକ ଚିଠିରେ ଜଣାଇବି । ଦୟାକରି ଚିଠି ପାଇଲା ପରେ ସମ୍ମତି ଜଣାଇବେ । ତାହାଦ୍ୱାରା ଆମେ ଅନ୍ୟାନ୍ୟ କାର୍ଯ୍ୟକ୍ରମ କରିବା ଲାଗି ପ୍ରସ୍ତୁତ ହୋଇପାରିବୁ । x x x

ଇତି

କ୍ଷେତ୍ରବାସୀ ନାୟକ"

୧୯୮୪ ମସିହା ଫେବୃଆରୀ ମାସରେ ଶେଷଥର ପାଇଁ କ୍ଷେତ୍ରବାସୀ ଓ ଲାବଣ୍ୟ

ଶାନ୍ତିନିକେତନ ଆସିଥିଲେ । ବିଶ୍ୱଭାରତୀ ଓଡ଼ିଆ ବିଭାଗରେ ମୋ ଟେବୁଲରେ ବସି କଥା ପ୍ରସଙ୍ଗରେ ଗବେଷଣା ପରିଷଦର ଜର୍ଣ୍ଣାଲ୍ 'ଏଷଣା'ରେ ମୁଁ ଅନେକ ଦିନ ହେଲା କାହିଁକି ଲେଖିନାହିଁ ବୋଲି ସେ ଅଭିଯୋଗ କରୁଥିଲେ । ସେ ସମୟରେ ମୁଁ 'ସବୁଜତ୍ରୟୀ' ବୋଲି ଏକ ପ୍ରବନ୍ଧର ପରିକଳ୍ପନା କରି ଅନ୍ନଦାଶଙ୍କର ଓ କାଳିନ୍ଦୀ ଚରଣଙ୍କ ଉପରେ କିଛି ଲେଖିଥିଲି । ବସ୍ତୁତଃ ମୁଁ ମୁଖେ ମୁଖେ ଡାକିଥିବା ଏହି ପ୍ରବନ୍ଧକୁ ଜଣେ ଗବେଷକ ଛାତ୍ର ଲେଖି ନେଇଥିଲେ । କ୍ଷେତ୍ରବାସୀଙ୍କ ହାତରେ ସେ ଖାତାଟି ପଡ଼ିବା ପରେ ତାହା ଆଉ ମୁଁ ଫେରାଇ ନେଇ ପାରିଲି ନାହିଁ । ସେ ନିଜେ ଏହି ଲେଖାର ସ୍ୱହସ୍ତାକ୍ଷର ନକଲ କରି 'ଏଷଣା'ରେ ଛାପିବା ପାଇଁ ନେଇ ଯାଇଥିଲେ ଓ ଅନ୍ନଦାଶଙ୍କରଙ୍କ ପ୍ରସଙ୍ଗରେ ମୋର ଲେଖାଟିଏ ଛାପିଥିଲେ । ପ୍ରାୟ ନିର୍ଭୁଲ୍ ଛାପା ଦେଖି ମୁଁ ବଡ଼ ଖୁସି ହୋଇଥିଲି । କଥା ପ୍ରସଙ୍ଗରେ ସେଦିନ ଶ୍ରୀମତୀ ନାୟକଙ୍କ ମୁହଁରୁ ଶୁଣିଲି, କୁଆଡ଼େ ଥରେ ଖରା ଦିନେ ଆମାଶୟ ଭୋଗୁଥିବା ବେଳେ କ୍ଷେତ୍ରବାସୀ ଯଥୋଚିତ ଭାବେ ଔଷଧ ନ ଖାଇ ନିଜ ଆରାଧ୍ୟ ଦେବତା ଜଗନ୍ନାଥଙ୍କୁ ଦୃଢ଼ କରି ଧରୁଥିଲେ । ଆଧୁନିକ ଯୁଗରେ ଜଣେ ଆଧୁନିକମନା ଅଧ୍ୟାପକ ବୁଦ୍ଧିଜୀବୀଙ୍କ ପକ୍ଷରେ ଏହା ନିଶ୍ଚୟ ବିଷଦୃଶ ବିଷୟ । ତେବେ ଆଧୁନିକ ଯୁଗର ଦ୍ୱିଧାଗ୍ରସ୍ତ ମଣିଷ ଆଗରେ, କ୍ଷେତ୍ରବାସୀ ଥିଲେ ଏକନିଷ୍ଠ, ଏକାଗ୍ର ବିଶ୍ୱାସ ଜଗତର ଏକ ବିରଳ ପ୍ରତିନିଧି । ଯେଉଁ କ୍ଷେତ୍ରବାସୀ 'ଓଡ଼ିଆ ଗବେଷଣା ପରିଷଦ'ର ମୁଖପାତ୍ର ରୂପେ ଲେଖୁଥିଲେ - "ଆମର ଧ୍ୟେୟ- ଜାତିର ଭାଷା, ସାହିତ୍ୟ ଓ ସଂସ୍କୃତିର ସ୍ୱାଧୀନ ଗବେଷଣା । ଶଙ୍କିତ ଓ ସଙ୍କୁଚିତ ମନରେ ଆମେ ଆମର ମହାନ୍ ପରମ୍ପରା ଓ ପ୍ରବହମାନ ସୃଷ୍ଟି-ସମ୍ପଦକୁ କଳିବୁ ନାହିଁ । ଯତ୍ କିଞ୍ଚିତ୍ କାର୍ଯ୍ୟ ସମାଧାନ କରିବା ଆମର ପଣ ନୁହେଁ, ବୃତ୍ତି ପାଇଁ ପ୍ରବୃତ୍ତିର ବ୍ୟବସାୟିକ ବିନିଯୋଗ ମଧ୍ୟ ଆମର ଧର୍ମ ନୁହେଁ । ଏକତ୍ୱ (Integrity) ସଂରକ୍ଷା ପ୍ରତି ଗଭୀର ନିଷ୍ଠା ହିଁ ଗବେଷକର ରକ୍ଷା-କବଚ, ନଚେତ୍ ମୃତ୍ୟୁ । ସଂଖ୍ୟାରେ ଆମର ପ୍ରୀତି ନାହିଁ, ବିସ୍ତାର ପ୍ରତି ଆମେ ବିମୁଖ, ଗୁଣ ଓ ଗଭୀରତା ହିଁ ଆମର କାମ୍ୟ ।"

ସେହି କ୍ଷେତ୍ରବାସୀ ପୁଣି ଲେଖୁଥିଲେ -
"ମୋ ଜାତିର ଇଷ୍ଟଦେବ ପ୍ରଭୁ ଜଗନ୍ନାଥ !
ତୁମରି କୃପାର ଶକ୍ତି ଚରଣେ ଆଶ୍ରିତ-
ଆମେ ଯେ ପତିତ ଦଳ, ତବ କରୁଣା ପିପାସୀ
ଚାତକ ପରାଏ ଲୋଡୁ ତୁମ ଶକ୍ତିର ଝଲକ ।
ତୁମରି ଶକ୍ତିର ଫୁଲ ଫଳ ଧରେ ଏଠି
ମଣିଷର ଶକ୍ତି କାହିଁ ସାଇତିବ ଅକ୍ଷୟ କୀରତି ?"

କ୍ଷେତ୍ରବାସୀ ଥିଲେ ଉଦ୍ୟମ ଓ ଉତ୍ସାହର ମୂର୍ତ୍ତ ପ୍ରତୀକ, ଚିର ତାରୁଣ୍ୟର ଦିଶାରୀ । ଯେକୌଣସି ଭଲ କାମ, ବିଶେଷତଃ ସାଂସ୍କୃତିକ କାର୍ଯ୍ୟ ପାଇଁ ସେ ବ୍ୟଗ୍ରତା ପ୍ରକାଶ କରୁଥିଲେ । ହାତେ ମାପି ଚାଖଣ୍ଡେ ଚାଲିବା ନୀତିରେ ପ୍ରକୃତ କାର୍ଯ୍ୟରେ ଯେ ଆଦୌ ଟିପ ବସେ ନାହିଁ --ଏହା ତାଙ୍କର ଦୃଢ଼ ବିଶ୍ୱାସ ଥିଲା । କୌଣସି ପରିସ୍ଥିତିରେ ସେ ବିଚଳିତ ହେଉ ନ ଥିଲେ । ଓଡ଼ିଶାର ସାଂସ୍କୃତିକ ରାଜଧାନୀ କଟକରେ ନିଜେ ଏକ ସାଧାରଣ ବାସଗୃହ ନିର୍ମାଣ କରି, ପରିଷଦର ସ୍ଥାୟୀ କାର୍ଯ୍ୟାଳୟ ପାଇଁ ତାକୁ ବ୍ୟବହାର କରିଥିଲେ । ଏହା ତାଙ୍କର ଦୃଢ଼ତା ଓ ଦୂରଦୃଷ୍ଟିର ପରିଚାୟକ । ନିଜ ବାସଗୃହ ଫଳକରେ ସେ ଆଙ୍କିଥିଲେ ତାଙ୍କର ସ୍ୱପ୍ନ -

"ଆଶାର ବୋଇତ ବାହି ଅତିକ୍ରମି ସମୟ ସାଗର

ଶ୍ରଦ୍ଧାରେ ରଚିବା ଆମେ ନୂଆ ଘର ସୁନ୍ଦର ସଂସାର ।"

ସ୍ୱପ୍ନ ଦେଖିବା, ନୂତନ ଓ ସୁନ୍ଦରର ଆବାହନ କରିବା ତରୁଣର ଧର୍ମ । କ୍ଷେତ୍ରବାସୀଙ୍କ ସ୍ୱପ୍ନ ଥିଲା ସୁଦୂରପ୍ରସାରୀ, ତାକୁ ସଫଳ କରିବା ପାଇଁ ଥିଲା ତାଙ୍କର ନିଷ୍ଠା, ଅତନ୍ଦ୍ର ଉଦ୍ୟମ । ସେ ପଳିତ ପତ୍ର ପରି ଝରି ଯାଇ ନାହାନ୍ତି । ସେ ଚିର ସବୁଜ ଦୂର୍ବା । ତା'ର ଆକସ୍ମିକ କାଳାନ୍ତର, ହୁଏ ତ ସ୍ଥାନାନ୍ତର ଘଟିଛି ମାତ୍ର । ତାହା ଯେଉଁଠି ଥାଉ, ତାହା ଥିବ ଚିର ସବୁଜ । ସେଇ ଭଳି ସୌଭାଗ୍ୟବନ୍ତ, ଅମୃତ ଲୋକ ସନ୍ଧାନୀ ଦୂରନ୍ତ ଆତ୍ମାର ଉଦ୍ଦେଶ୍ୟରେ କବି କହିଛନ୍ତି -

They are alive and well somewhere,

The smallest sprout shows there is really no death.

\+ + +

And to die is different from what any one supposed, and luckiery.

\- Walt Whitman



# ଭିନ୍ନ ଏକ ନାୟକ : ଅନ୍ୟ ଏକ ଠିକଣା

ଡକ୍ଟର ଗଗନେନ୍ଦ୍ରନାଥ ଦାଶ

**କ୍ଷେ**ତ୍ରାବାସୀ ବାବୁ କେବଳ ନିଶାଖୋର ଲୋକ ଥିଲେ ବୋଲି କହିବା ସମ୍ପୂର୍ଣ୍ଣ ଠିକ୍ ହେବ ନାହିଁ । ନିଶା ତାଙ୍କୁ ସମ୍ପୂର୍ଣ୍ଣ ଭାବରେ ଗ୍ରାସ କରି ସାରିଥିଲା ବୋଲି କହିବା ବରଂ ଉଚିତ ହେବ । ଆଉ ସେ ମତେ ତାଙ୍କ ଖଟିରେ ବସାଇ ଅଜାଅଜି ନିଶାଖୋର କରି ଦେଇ ଗଲେ । ତେଣୁ ତାଙ୍କୁ ଭୁଲିବା ମୋ ପକ୍ଷରେ ଆଉ ସମ୍ଭବ ନୁହେଁ । ମୋର ଆଗରୁ ବି ନିଶା ଅଭ୍ୟାସ ଥିଲା, ତେବେ ସେ ଅନ୍ୟ ପ୍ରକାରର ନିଶା ଓଡ଼ିଆରେ ଲେଖିବାର ନିଶା ମୋର ନ ଥିଲା କହିଲେ ଚଳେ, ଯଦିଚ ସେ ନିଶା । ଆଗରୁ ଥରେ ଅଧେ ଚାଖିଥିଲି । ତେବେ କ୍ଷେତ୍ରବାସୀ ବାବୁଙ୍କ ସହ ପ୍ରଥମ ଥର ପାଇଁ ଦେଖା ହେବା ବେଳକୁ ସେ ନିଶା ପ୍ରତି ଆଉ ମୋର ଆଗ୍ରହ ନ ଥିଲା ।

ତାଙ୍କ ସହ ମୋର ପ୍ରଥମ ସାକ୍ଷାତ୍ ହୁଏ ୧୯୭୬ର ଗ୍ରୀଷ୍ମାବକାଶରେ । ସେ ଲାବଣ୍ୟ ଦେବୀଙ୍କ ସହ ଶାନ୍ତିନିକେତନ ଯାଉଥାନ୍ତି ସେଠାର ପାଠାଗାର ମଧ୍ୟରୁ ତାଙ୍କ ନିଶାର ମାଲମସଲା ସଂଗ୍ରହ କରିବାକୁ । ସେଇଠି ଉଭୟଙ୍କ ସହ ପ୍ରଥମ ପରିଚୟ ହେଲା । ମନେ ପଡୁଚି ଏକା ଟ୍ରେନ୍‌ରେ, ଏକା କମ୍ପାର୍ଟମେଣ୍ଟରେ ବସି ସାଥୀ ହୋଇ କଲିକତା ପର୍ଯ୍ୟନ୍ତ ଆସିଲୁ । ସେଠାରେ ସେ ରହିଲେ ବିଭିନ୍ନ  ପାଠାଗାରରୁ, ବିଶେଷ ଭାବରେ ନ୍ୟାସନାଲ ଲାଇବ୍ରେରୀରୁ ତାଙ୍କ ନିଶାର ମାଲମସଲା ସଂଗ୍ରହ କରିବା ପାଇଁ । ଆଉ ମୁଁ ଓଡ଼ିଶା  ଫେରିଲି । ସେଇ ଦିନଠାରୁ କ୍ଷେତ୍ରବାସୀବାବୁ ମତେ ନିଶା ଧରାଇବାର ଉଦ୍ୟମ କଲେ । ମୁଁ ସେଇ ୧୯୭୬ ଶେଷ ଆଡ଼କୁ ଶାନ୍ତିନିକେତନ ଛାଡ଼ି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଯୋଗ ଦେଲି । ସେତେବେଳକୁ କ୍ଷେତ୍ରବାସୀବାବୁ ବ୍ରହ୍ମପୁରର ଖଲ୍ଲିକୋଟ ମହାବିଦ୍ୟାଳୟରେ ଅଧ୍ୟାପନା କରୁଥାଆନ୍ତି । ମୁଁ ବ୍ରହ୍ମପୁରରେ ରହିଲି - କ୍ଷେତ୍ରବାସୀବାବୁଙ୍କ ଘରଠାରୁ ବିଶେଷ ଦୂରରେ ନୁହେଁ ।

ମୁଁ ସବୁବେଳେ କାହା ସହ ଏତେ ମିଶେ ନାହିଁ; ମିଶି ପାରେ ନାହିଁ । କିନ୍ତୁ କ୍ଷେତ୍ରବାସୀବାବୁଙ୍କ ଆଗ୍ରହରେ ତାଙ୍କ ଖଟିରେ ବେଳେବେଳେ ବସେ । ସେ ଥିଲେ ଧର୍ମାତ୍ମା ଲୋକ, ଭକ୍ତ ଲୋକ । ମୁଁ ନାସ୍ତିକ ସ୍ୱଭାବର, ଠାକୁର ଦେବତା, ବିଧି, ବିଧାନ, ପ୍ରଥା ଆଦି ମାନେ ନାହିଁ । ମୁଁ ଜାଣେ ଭକ୍ତମାନେ ଅଧିକାଂଶ ସମୟରେ ଏକେଶ୍ୱରବାଦରେ ତନ୍ମୟ ହୋଇ ଶେଷକୁ ଅସହିଷ୍ଣୁ ହୁଅନ୍ତି; ଅଭକ୍ତମାନଙ୍କୁ ନିମ୍ନ ସ୍ତରର ଲୋକ ବୋଲି ଧରି ନେଇ ଉପରେ ପଡ଼ି ଉପଦେଶ ଦିଅନ୍ତ; ଗୁରୁଗିରି କରନ୍ତି । ତେଣୁ ମୁଁ ପ୍ରାୟ ଭକ୍ତମାନଙ୍କ-

ଠାରୁ ଦୂରରେ ଦୂରରେ ରହେ । ତେବେ କ୍ଷେତ୍ରବାସୀବାବୁଙ୍କଠାରେ ମୁଁ କେବେ ଅସହିଷ୍ଣୁତା ଦେଖି ନାହିଁ । ସେ କେବେ ମୋ ଉପରେ ଗୁରୁଗିରି କରିବା ପାଇଁ ଚେଷ୍ଟା କରିନାହାନ୍ତି । ତା'ର ସାମାନ୍ୟ ସୂଚନା ପାଇଥିଲେ ମୁଁ ବୋଧେ, ତାଙ୍କଠାରୁ ଦୂରେଇ ଦୂରେଇ ରହିଥାନ୍ତି । ତେଣୁ ସେ ଯେତେବେଳେ ମତେ ତାଙ୍କ ଖଟିରେ ବସାଇ ଆସ୍ତେ ଆସ୍ତେ ନିଶା ଧରାଇଲେ, ମୁଁ କିଛିଟା ଭିଡ଼ି ମୋଡ଼ି ହୋଇ ନାହିଁ ନାହିଁ କରି ଆସ୍ତେ ଆସ୍ତେ ନିଶା ଧରିଲି । ଏହାର ଫଳ ମୋ 'ଜନଶ୍ରୁତି କାଞ୍ଚି କାବେରୀ" ଓ "ଓଡ଼ିଆ ଭାଷା-ଚର୍ଚ୍ଚାର ପରମ୍ପରା" ବହି ଦୁଇଟି । କ୍ଷେତ୍ରବାସୀ ବାବୁ ମତେ ନିଶା ନଧରାଇଥିଲେ ଏହି ବହି ଦୁଇଟି ଲେଖା ହୋଇଥା'ନ୍ତା କି ନାହିଁ କହି ହେଉ ନାହିଁ । ଏ ବହି ଦୁଇଟି ଲେଖିବା ମୂଳରେ ତାଙ୍କରି ପ୍ରତ୍ୟକ୍ଷ ପ୍ରେରଣା, ଉତ୍ସାହ, ଉଦ୍ଦୀପନା, ଏପରିକି ଜୋର୍ ଜବରଦସ୍ତି ମଧ ରହିଛି । ମୁଁ ବେଳେବେଳେ ରାଗି ତାଙ୍କୁ ଗାଳି ଦେଇଛି; ତାଙ୍କ ଉପରେ ଚିଡ଼ିଛି । ସେସବୁ ସେ କେବେ ଧରି ନାହାନ୍ତି । ଦେଖା ହେଲେ ସବୁବେଳେ ସେଇ ହସ ହସ ମୁହଁ ।

ତାଙ୍କରି ସାଙ୍ଗରେ ପଡ଼ି ମୁଁ ନିଶା ଧରିଲି । ମୋ ପରି ଅନେକଙ୍କୁ ସେ ଖଟିରେ ବସାଇ ନିଶାଗ୍ରସ୍ତ କରାଇବା ପାଇଁ ମୁଁ ଜାଣେ । ସେ କିନ୍ତୁ ଆମ ସମସ୍ତଙ୍କୁ ଫାଙ୍କି ଦେଇ ଚାଲିଗଲେ । ମୋ ସ୍ତ୍ରୀ ଜାଣନ୍ତି କ୍ଷେତ୍ରବାସୀବାବୁଙ୍କର ମତେ ନିଶା ଧରାଇବା ଉଦ୍ୟମ । କାରଣ କ୍ଷେତ୍ରବାସୀବାବୁଙ୍କ ପ୍ରତ୍ୟକ୍ଷ ପରାମର୍ଶରେ ସେ ମଧ ମୁଁ ନିଶା ଧରିବାରେ ସାହାଯ୍ୟରେ କରିଥିଲେ । ତେଣୁ ଯେଉଁ ଦିନ ଶୁଣିଲୁ କ୍ଷେତ୍ରବାସୀବାବୁ ଆଉ ନାହାଁନ୍ତି, ସେ ବହୁତ କାନ୍ଦିଲେ । ତାଙ୍କରି ସହି ମିଶି ମତେ ନିଶା ଧରାଇବାର ଷଡ଼ଯନ୍ତ୍ର କରିଥିଲେ ତ ।

ମୁଁ ଅଳସୁଆ ଲୋକ, ବସି ବସି ଶୂନ୍ୟକୁ ଚାହିଁ, ଖୁସ୍ ଗପ କରି ମୁଁ ସମୟର ସଦୁପଯୋଗ କରେ । ଏବେ ନିଶା ଅଭ୍ୟାସ ହେତୁ ସମୟ ବହୁତ ନଷ୍ଟ କରୁଚି । ତେବେ କ୍ଷେତ୍ରବାସୀବାବୁଙ୍କର ସମସ୍ତ ପାରିବାର ପଣ ସତ୍ତ୍ୱେ ନିଶା ମତେ ଗ୍ରାସ କରିପାରି ନାହିଁ - ଯେପରି ତାଙ୍କୁ କରିଥିଲା । ମୋର ତ ଆଉ ତାଙ୍କ ପରି ସାହିତ୍ୟ ପାଇଁ, ଜାତି ପାଇଁ ପ୍ରାଣ କାନ୍ଦୁ ନାହିଁ, କି ସେପରି ଐକାନ୍ତିକତା ନାହିଁ ! ମୋର ତ ଲେଖାଲେଖି ପ୍ରୀତି ସମ୍ପୂର୍ଣ୍ଣ ଭାବରେ ଅହେତୁକୀ ନୁହେଁ । ଜଣେ ସାଧାରଣ, ସ୍ୱାର୍ଥପର ମଣଷ ମାତ୍ର । କିନ୍ତୁ ଯେ ମତେ ନିଶା ଧରାଇ ଥିଲେ, ତାଙ୍କୁ କ'ଣ ଭୁଲିବା ମୋ ପକ୍ଷରେ ସମ୍ଭବ । ବିଶେଷ ଭାବରେ 'ଜନଶ୍ରୁତି କାଞ୍ଚି କାବେରୀ' ଓ 'ଓଡ଼ିଆ ଭାଷାଚର୍ଚ୍ଚାର ପରମ୍ପରା' ବହି ଦୁଇ ଖଣ୍ଡ ଯେତେବେଳେ ମୋ ଆଖି ଆଗରେ ପଡୁଥିବ, ସେତେବେଳେ ତାଙ୍କ କଥା ମନେ ପଡୁଥିବ ।



# ଅଭୁଲା ସ୍ମୃତି

ଡଃ ବାସୁଦେବ ସାହୁ

ଅନେକ କଥା ମନେ ପଡ଼ିଯାଏ । ସ୍ମୃତିର ଢେଉ ମାଡ଼ିଆସେ । ହୃଦୟ ବେଳାଭୂମି ଆର୍ଦ୍ର ହୋଇଉଠେ ଶ୍ରଦ୍ଧାରେ । ଅତୀତ ମୁଖରିତ ହୁଏ । ସମୟ ବହି ଚାଲିଲେ ପ୍ରତ୍ୟକ୍ଷ ସଂପର୍କର ଯୁଗ ଅବସାନ ହେଲେ, ଦାୟାଦମାନଙ୍କ ନିକଟରେ ଇତିହାସର ବସ୍ତୁ ହୋଇଯାଏ ଏଇ ବ୍ୟକିତ୍ୱ । ଯେଉଁ ଯୁଗରେ "ପାନ ଦୋକାନ ଆଗରେ ଦେଶର ଭବିଷ୍ୟତମାନେ ଠିଆ ହୋଇ ଶିହ୍ରାଞ୍ଚଳ ଆଡ଼କୁ ଅନାଇଥା'ନ୍ତି, ଅଶୋକ ଓ ଖାରବେଳ ଆଉ ମନେପଡନ୍ତି ନାହିଁ," ସେ ଯୁଗରେ କେତେ ଜଣ ଶ୍ରଦ୍ଧେୟ ଛାତ୍ର ବା ପାଠକ ମନେ ପକାଇବେ, କ୍ଷେତ୍ରବାସୀଙ୍କୁ ତା'ର ଐକାନ୍ତିକ ସାରସ୍ୱତ ସାଧନାକୁ ?

ସମୟ ପାହାଚରେ ପାଦ ପକାଇ ଆମେ ଆଗେଇ ଚାଲିଛୁ, କିଏ କେତେ ପାହାଚ ଡେଇଁ ଚାଲିବ, କେଉଁଠାକୁ ଜଣା ନାହିଁ । ମାତ୍ର "ଗମନରୁ ଆଗମନ, ପ୍ରସ୍ଥାନରୁ ମହାପ୍ରସ୍ଥାନକୁ, ଜଠରରୁ ସ୍ୱର୍ଗଦ୍ୱାର ଏବଂ ପାଦପୀଠର ଉଚ୍ଛୃଙ୍ଖଳତାରୁ ଶୀର୍ଷବିନ୍ଦୁର ସଂଯମକୁ" ଗତି ସମସ୍ତଙ୍କର । କିଏ କେତେ ଶୀଘ୍ର ଏବଂ କେଉଁ ଶୀର୍ଷବିନ୍ଦୁରେ ପହଞ୍ଚିଲା ତାହାହିଁ ଇତିହାସ ହେବ । ଜୀବନ-ମହାଜୀବନର ଅଂଶ ବିଶେଷ ହୋଇଯାଏ- ପ୍ରସ୍ତରୀଭୂତ ଆକାଂକ୍ଷା ଏବଂ ଅପ୍ରାପ୍ତିର ଅନ୍ତହୀନ ବୃତ୍ତର ମୂକସାକ୍ଷୀ ରୂପେ ସମୟ ବହିଚାଲେ ।

ଏହି ଘରକୁ ଆସିଲାବେଳେ ମନେ ପଡ଼ିଯାଏ 'ଚିହ୍ନା ଚିହ୍ନା ମୁହଁ' - ଯେଉଁମାନେ ଅଟକିଗଲେ ଚିତ୍ରିତ ଦିନମାନଙ୍କର ସମ୍ମୋହନରେ । "ରିକ୍‌ସାରୁ ଉଡୁଥିବା ପଣତରେ ବାନ୍ଧିହୋଇ ରହିଯାଏ ପଛରେ ଛାଡ଼ିଦେଇ ଆସିଥିବା ରଙ୍ଗବେରଙ୍ଗ ଅନୁଭବସବୁ ।" ନିର୍ବିକାର ବସି ରହିଥାଏ ଏଇ କଟକ ସହର, ଇତିହାସ ବଦଳି ବଦଳିଯାଏ ।

ମୃତ୍ୟୁ ତ ଆସିବ, ଏକ ଅନ୍ଧ କରି ଦେଉଥିବା ଆଲୋକ ଆସିବ । ସେ ଆଲୋକର କଣିକାଏ ଝଲସି ପଡ଼ିବ ଅନ୍ୟମାନଙ୍କ ପାଇଁ; ସେଇ ଆଲୋକ କ୍ଷେତ୍ରବାସୀର କର୍ମସାଧନା, ସେ ଆଲୋକରେ କିଞ୍ଚିତ ଅବଗାହିତ ଆମେ, ମୋ ଭଳି ଜଣେ ବର୍ଷୀୟାନ ବନ୍ଧୁ । ଯେତେବେଳେ ଜରାର କୁଞ୍ଚିତରେଖା ମୁହଁ ଉପରେ ଟାଣି ପ୍ରସାଧନର ଆସକ୍ତ ମୁହୂର୍ତ୍ତର ଭୟ ଆସୁଥିବାର ଦେଖେ, ସେତେବେଳେ ମନେ ପଡ଼ିଯାଏ, କେତେ ଔତ୍ସୁକ୍ୟରେ ଲାବଣ୍ୟର ଡି ଲିଟ୍ ସନ୍ଦର୍ଭ ଦେଖାଉଥିଲା କ୍ଷେତ୍ରବାସୀ, ଆସନ୍ନ ମୃତ୍ୟୁକୁ ଭ୍ରୂକ୍ଷେପ ନ କରି । ଭୟ ବୋଧହୁଏ ତା' ପାଖରେ ଥିଲା 'ସଂବନ୍ଧର ସୂକ୍ଷ୍ମତା, ମନୋମାଳିନ୍ୟର ପ୍ରାତ୍ୟହିକତାରେ ଝୁଲୁଥିବା ସଂବନ୍ଧ ଛିନ୍ନ ହୋଇଯିବାର ଆଶଙ୍କା,' ଯାହାର ସମ୍ଭାବନାକୁ ସେ ସ୍ୱପ୍ନରେ ମଧ୍ୟ ସ୍ଥାନ ଦେଇ ନ ଥିଲା ।

ସାହିତ୍ୟର ଇତିହାସରେ ଲିପିବଦ୍ଧ ହୋଇରହିବ, କ୍ଷେତ୍ରବାସୀର କୃତି । ରାଜା ବାଦସାହା, ଦୁର୍ଗମିନାର ଚାଲିଯାନ୍ତି । "କାନ୍ଥ ନଇଁଯାଏ ସମୟର ଶୋଭାଯାତ୍ରାକୁ ସ୍ୱାଗତ ଜଣାଇ ପଥର ଫାଟିଯାଏ ଅନ୍ୟାୟର ପ୍ରତିବାଦ କରି ।" କ୍ଷେତ୍ରବାସୀର ବିଦଗ୍ଧ ପାଠକମାନଙ୍କ ନିକଟରେ ତା'ର ଲେଖାଗୁଡ଼ିକ "ବନ୍ଧ୍ୟା ଆକାଶର ବିରକ୍ତ ଅପରାହ୍ଣରେ ସବୁଜ ସ୍ମୃତିର ସ୍ମାରକ ହୋଇ, ମନର ନିଭୃତତମ ଏକାନ୍ତରେ ଗଭୀର ଅଚେତମାନଙ୍କୁ ସାକାର କରି ଭୁଲିଯାଇଥିବା ସଙ୍ଗୀତର ପ୍ରତିଧ୍ୱନି ଉଠାଇ ଆସିବ" ଯେମିତି ଆସିଛି ଆଜି, ମୋ ସ୍ମୃତିରେ କ୍ଷେତ୍ରବାସୀର ସାହିତ୍ୟ ସାଧନା, କଳାପ୍ରେମ ଓ ଆନ୍ତରିକ ଉତ୍ସାହ ।

କ୍ଷେତ୍ରବାସୀ ଚାଲିଯାଇଛି । ମାତ୍ର ତା'ର ସ୍ମିତହାସ ରହିଯାଇଛି ସୂର୍ଯ୍ୟାସ୍ତରେ; ତା'ର ଉଦାର ଦୃଷ୍ଟି ରହିଯାଇଛି କାକର ଟୋପରେ, ତା'ର ଛାଇ ଜଳଧାରରେ । ଉବେଙ୍ଗ୍ ଛିଙ୍ଗ୍‌ଙ୍କ ଭାଷାରେ ଆମେ କହିବା "You are gone having not said where, Leaving behind a row of shadows, which linger in the Streams" ସୂର୍ଯ୍ୟାସ୍ତ ଥିବ, କାକର ଥିବ, ଝର ବହିଯାଉଥିବ, ସବୁଥିରେ ସବୁଦିନେ କ୍ଷେତ୍ରବାସୀର ବ୍ୟକ୍ତିତ୍ୱ ଉପଲବ୍ଧ ହେଉଥିବ । ତା'ର ବନ୍ଧୁ ପ୍ରିୟଜନ ଅନୁଭବ କରୁଥିବେ; "You are gone, but you have left your self behind."

କ୍ଷେତ୍ରବାସୀର ଜୀବନ ଦର୍ଶନ କ'ଣ ଥିଲା, ମୁଁ ବିଶଦଭାବେ କହିପାରିବିନି । ମାତ୍ର ତା'ର ଜୀବନଯାପନ ଢଙ୍ଗ, କର୍ମରେ ଆସକ୍ତି, ଦୈନନ୍ଦିନ ଜୀବନରେ ନିର୍ମଳ ଆନନ୍ଦର ଅନ୍ୱେଷଣ, କାହା ମନରେ ଦୁଃଖ ନ ଦେବାର ସାବଧାନତା, ସୂଚାଇ ଦିଏ ଚୀନ୍ ଦେଶର ପ୍ରସିଦ୍ଧ କବି ଝୁଛି ଚୈନ୍‌ଙ୍କ ଚେତାବନୀ The past is but an empty dream, greatmen have died and twined to clay. Then strive no more for rank or fame. But take your pleasure while you may.

ଭାଗ୍ୟ ଉପରେ ବିଶ୍ୱାସ କ୍ଷେତ୍ରବାସୀକୁ ଈଶ୍ୱରବିଶ୍ୱାସୀ କରିଥିଲା । ଜଗନ୍ନାଥଙ୍କୁ ନିଜର ଏକ ଆତ୍ମୀୟରୂପେ ଭଲ ପାଇବା ଏବଂ ସମସ୍ତେ ଈଶ୍ୱରଙ୍କ ସନ୍ତାନ, ତେଣୁ ସମସ୍ତେ ନିବିଡ଼ ପ୍ରେମ ଡୋରିରେ ବନ୍ଧା, ଏଇ ନେଇ ସମସ୍ତଙ୍କୁ ନିଜର ମଣିବା, ତା'ର ଚଳଣିରେ ଫୁଟି ଉଠୁଥିଲା ।

ଭାଗ୍ୟବାଦୀ ହୋଇ ବି କିନ୍ତୁ ସେ କର୍ମବିମୁଖ ନ ଥିଲା । ଅଧ୍ୟାପନା ମାଧ୍ୟମରେ ଜୀବନର ଉତ୍କର୍ଷ ସାଧନ କରି ସେ ପାଉଥିଲା ଚରମ ଆନନ୍ଦ ଉଲ୍ଲାସ । ନିଜର ସୃଜନଶୀଳ ଶକ୍ତିକୁ ଅନ୍ୟମାନଙ୍କ ମଧ୍ୟରେ ବାଣ୍ଟିଦେବାକୁ ସେ ଥିଲା ସର୍ବଦା ତତ୍ପର । ଯୌଥ ଉଦ୍ୟମରେ ସାରସ୍ୱତ ସାଧନାର ସୁଫଳ ବ୍ୟାପ୍ତ କରି ଚାଲିଥିଲା ସେ ଅହରହ । ବ୍ୟକ୍ତିର ପ୍ରଚେଷ୍ଟା ସମଷ୍ଟିର ମାଧ୍ୟମରେ ଶକ୍ତିଶାଳୀ, ଦୀର୍ଘସ୍ଥାୟୀ ଓ ବ୍ୟାପକ ହୁଏ ବୋଲି ବୋଧହୁଏ ତାର ଦୃଢ଼ ବିଶ୍ୱାସ ଥିଲା । 'ଓଡ଼ିଆ ଗବେଷଣା ପରିଷଦ' ଏଇ ବିଶ୍ୱାସରୁ ଜନ୍ମ ।

କ୍ଷେତ୍ରବାସୀ ଯେ କେବଳ ମୋର ଜଣେ ପ୍ରିୟ ଛାତ୍ର ଥିଲା, ସେତିକି ନୁହେଁ; ସେ ଥିଲା ମୋ ସାହିତ୍ୟ ସାଧନାର ପ୍ରୋତ୍ସାହକ । ଦୁର୍ଭାଗ୍ୟ, ସେ ସୃଷ୍ଟିର ପ୍ରକୃଷ୍ଟ ବୟସରେ ଇହଧାମ ଛାଡ଼ି ଚାଲିଗଲା । ଜାଗତିକ ଅର୍ଥରେ ଭାଗ୍ୟ କ୍ଷେତ୍ରବାସୀ ପ୍ରତି ସୁପ୍ରସନ୍ନ ନ ଥିଲା । ମୃତ୍ୟୁ ତାକୁ ଟାଣିନେଲା ଏ ପୃଥିବୀରୁ, ଆମ ଗହଣରୁ । ମାତ୍ର ସେ ଯିବା ପୂର୍ବରୁ ଉତ୍ତରଦାୟାଦଙ୍କ ପାଇଁ ଦେଇଗଲା ଏକ ମହାର୍ଘ ଦ୍ରବ୍ୟ, ଏକ ମହାସମ୍ଭାବନାପୂର୍ଣ୍ଣ ଅନୁଷ୍ଠାନ ଏବଂ କେତୋଟି ଶାଶ୍ୱତ ଗ୍ରନ୍ଥ । ଚୀନ ଦେଶର ଅଷ୍ଟମ ଶତାବ୍ଦୀର ପ୍ରସିଦ୍ଧ କବି ଏବଂ ମହାମନ୍ତ୍ରୀ ବାଇଜୁଇ ଲଙ୍ଗମେନ୍ ସଂକୀର୍ଣ୍ଣ ପଥର ସଂପ୍ରସାରଣ ଘଟାଇ ଗର୍ବ ଉଲ୍ଲାସରେ କହିଲା ପରି କ୍ଷେତ୍ରବାସୀ ସତେ ଯେପରି ଭାବିଥିଲା - "ମୁଁ ଏ ପୃଥିବୀରୁ ବିଦାୟ ନେଲାପରେ ଏହି କ୍ଷୁଦ୍ର ଅବଦାନଟି ଯେଉଁ ଉତ୍ତର ପୁରୁଷଙ୍କୁ ଦେଇଗଲି, ସେହିମାନଙ୍କ ନିକଟରେ ମୋର ହୃଦୟ ରହିଥିବ ।" ବାସ୍ତବରେ ତା'ର ହୃଦୟ ରହିଛି ଏକ ଅନୁଷ୍ଠାନ ରୂପରେ ଆମ ସମସ୍ତଙ୍କ ହୃଦୟରେ ।

କାମ କରୁ କରୁ ଶୋଇ ପଡ଼ିଲା କ୍ଷେତ୍ରବାସୀ "ଏଇ ଜନ୍ମଭୂମିର ମୃଦୁ ମାଟିରେ ନିଦ୍ରିତ ଶିଶୁଭଳି ଶାନ୍ତିରେ ।" ଆମମାନଙ୍କ ପାଇଁ ରଖିଗଲା ତା' ଗୀତ, ତା'ର ସ୍ୱପ୍ନ, ତା'ର ହୃଦୟ । ଆମେ ଖାଲି ମନେ ପକାଇବା ତା'ର ଅନ୍ତରଙ୍ଗ ଇଚ୍ଛାକୁ, ତାର ସାହିତ୍ୟ ପ୍ରୀତିକୁ, କେମିତି ସେଇ ପ୍ରେମରେ ଉବୁଟୁବୁ ହେଉଥିଲା ଅହରହ । କବିତା ଫୁଲର ପାଖୁଡ଼ାରେ, ଗପର ହିଲ୍ଲୋଳରେ, ପ୍ରବନ୍ଧ ଅନୁଶୀଳନୀର ପ୍ରଚଣ୍ଡ ପବନରେ ମିଶି ରହିଛି କ୍ଷେତ୍ରବାସୀର ଆତ୍ମା । ବସନ୍ତର ଉଷ୍ମ ସ୍ପର୍ଶରେ ସହସ୍ର ଫୁଲ ଫୁଟିଲେ, ଆମେ ଦେଖିବାକୁ ପାଇବୁ ତା'ର ଅମ୍ଳାନ ହସ । ସେ ହସରେ ହସ ମିଳାଇ ଆସ ଗାଇଯିବା କବିତାର ଅନବଦ୍ୟ ଛନ୍ଦ, ଆସ ସତ୍ୟର ପବନରେ ଉଡ଼ିଯିବା ମହାସତ୍ୟର ଶିଖରକୁ; ବସନ୍ତର ଉଦ୍ଦାମ ଆବେଗରେ ଅନୁଭବିବା, କେତେ କ୍ଷେତ୍ରବାସୀ, ବସନ୍ତ ମୁଦୁଲି । ଅନୁସନ୍ଧିତ୍ସୁର ତୀକ୍ଷ୍ଣ ଦୃଷ୍ଟିରେ ଆବିଷ୍କାର କରିବା ମଣିଷ ମନର ଗଭୀରତମ ଅନ୍ଧାର ଭିତରେ ଅଲିଭା ଜ୍ୟୋତି, ସମାଜ ଓ ଅର୍ଥନୀତିର ଦ୍ୱନ୍ଦ୍ୱ ଭିତରେ ସମନ୍ୱୟ ଓ ସହାବସ୍ଥାନର ପ୍ରଚ୍ଛନ୍ନ ଆଗ୍ରହ ଓ ଅବ୍ୟର୍ଥ ସୂତ୍ର ।

ହେ ପରଗତ ଆତ୍ମା, ବନ୍ଧୁ, ସୋଦର ! ସାଙ୍ଗ ହୋଇ ଉପଭୋଗ କରୁଥିବା ସୁଖ, ସୋହାଗ ଓ ଗୌରବ ଛଡ଼ାଇ ନେଇଛ; ମାତ୍ର ନେଇ ପାରିନା ଆଲୁଅ- ଅନ୍ଧାର ।

ଆଲୁଅରେ ରଙ୍ଗ ଉଜ୍ଜ୍ୱଳି ଉଠିବ, ଅନ୍ଧାର ସାଙ୍ଗରେ ଧରି ଚାଲିଥିବା ଦୀପଟି ଆଲୁଅ ବିଞ୍ଚିଯିବ । ସେହି ଅତୁଟ ଅମ୍ଳାନ ସାହିତ୍ୟ ପ୍ରେମ ନେଇ ଆସ ଧରିଚାଲିବା କ୍ଷେତ୍ରବାସୀ ଛାଡ଼ିଯାଇଥିବା ଦୀପଟି

(୧୯ -୧-୯୨ ତାରିଖରେ ଡଃ କ୍ଷେତ୍ରବାସୀ ନାୟକ ସ୍ମୃତି ସଭାରେ ପଠିତ)



# 'ଶ୍ରୀନାଥ'ଙ୍କ ଶେଷ ଯାତ୍ରା

ଶ୍ରୀ ଯୁଗଳକିଶୋର ପଟ୍ଟନାୟକ

**କ୍ଷେ**ତ୍ରବାସୀ ଚାଲିଗଲା !

କଟକ-ପାରାଦୀପ ରେଳରାସ୍ତା କଡ଼ରେ ଥିବା ନୂତନ କଲୋନୀର ନବନିର୍ମିତ 'ସାରସ୍ୱତ ନିଳୟ'ର ବାରଣ୍ଡାରେ ଗୋଟିଏ ଖଟିଆ ଉପରେ ପଡ଼ି ରହିଥିଲା ତା'ର ନିର୍ଜୀବ ଶରୀରଟା, ପାଖରେ ତା'ର ଶୋକାକୁଳ ପରିବାର ଓ ଅନ୍ତରଙ୍ଗ ବନ୍ଧୁଗଣ । ଭୁବନେଶ୍ୱରରୁ ଖବର ପାଇ ଯାଇ ପହଞ୍ଚିଲି । ମୁହଁରେ ଫୁଟି ଉଠୁଥିଲା ତା'ର ସେଇ ଚଳଚଞ୍ଚଳ ହସ । ସତେ ଯେପରି ସେ ଆଦୌ ବିଚଳିତ ନୁହେଁ । ଆମ ସମସ୍ତଙ୍କୁ ଯେପରି ସେ ଧୈର୍ଯ୍ୟହରା ନ ହୋଇ ପରିସ୍ଥିତିର ମୁକାବିଲା କରିବାକୁ ଇଙ୍ଗିତ ଦେଉଥିଲା । ପାଖରେ ତା'ର କ୍ରନ୍ଦନରତା ପତ୍ନୀ, ସନ୍ତାନଗଣ ଆଉ ଆମେ ସବୁ । ସବୁଦିନ ପରି ଆଜି ବି ସେ ଯେପରି ଅବିଚଳିତ !

ହେଇ କାଲି ଭଳି ଲାଗୁଛି ୧୯୫୬ ମସିହା କଥା । ସେ ଭଦ୍ରକ ହାଇସ୍କୁଲରୁ ମେଟ୍ରିକ୍ ପାଶ୍ କରି ଭଦ୍ରକ କଲେଜରେ ନାମ ଲେଖାଇ ଥାଏ । ମୁଁ ବି.ଏମ୍. ବାଗୁରାଇ ହାଇସ୍କୁଲରୁ ପାଶ୍ କରି, ବନ୍ଧୁ ରତ୍ନାକର ବାରିକ ନାରାୟଣଚନ୍ଦ୍ର ହାଇସ୍କୁଲରୁ ପାଶ୍ କରି ଭଦ୍ରକ କଲେଜରେ ନାମ ଲେଖାଇ ଥାଉ । ଆମେ ଉତ୍କଳ ବିଶ୍ୱବିଦ୍ୟାଳୟର ଶେଷ ବର୍ଷର ମାଟ୍ରିକ ପରୀକ୍ଷାର୍ଥୀ, ତାପରେ ସେକେଣ୍ଡାରୀ ବୋର୍ଡ଼ ପରୀକ୍ଷା ହେଲା । କାହିଁକି କେଜାଣି ଆମେ ତିନି ଜଣ ପରସ୍ପର ପ୍ରତି ଅତି ମାତ୍ରାରେ ବନ୍ଧୁତା ସୂତ୍ରରେ ଆକୃଷ୍ଟ ହୋଇପଡ଼ିଥିଲୁ । ସେତେବେଳେ ଓଡ଼ିଶାରେ ମାତ୍ର ୨ଟି ଛାତ୍ର ସଂଗଠନ ଥାଏ । ଗୋଟିଏ ନିଖିଳ ଉତ୍କଳ ଛାତ୍ର ଫେଡେରେସନ୍ ଓ ଅନ୍ୟଟି ନିଖିଳ ଉତ୍କଳ ଛାତ୍ର ୟୁନିୟନ୍ । ଆମେ ତିନିହେଁ ଉତ୍କଳ ଛାତ୍ର ୟୁନିୟନର ସମର୍ଥକ ଥାଉ ଓ ଭଦ୍ରକ କଲେଜରେ ଉକ୍ତ ଛାତ୍ର ସଂଗଠନକୁ ସୁଦୃଢ଼ କରିବାକୁ ଆପ୍ରାଣ ଚେଷ୍ଟା କରିଥାଉ । ଛାତ୍ର ମହଲରେ ଆମ ତିନିଙ୍କୁ କୁ କେନ୍ଦ୍ରକରି ଛାତ୍ର ୟୁନିୟନ ଆଗେଇ ଚାଲିଥିଲା ଓ ଆମକୁ ସମସ୍ତେ 'ତ୍ରିନାଥ' ଆଖ୍ୟା ଦେଇଥାନ୍ତି । ଯେଉଁଠାକୁ ଯାଉଁ, ଆମେ ତିନିହେଁ ଏକାଠି ହୋଇ ଯାଉ ଓ ସବୁଠାରେ ଆମେ ଛାତ୍ରବନ୍ଧୁ ଓ ଅଧ୍ୟାପକମାନଙ୍କ ମଧ୍ୟରେ ଅଧିକ ପ୍ରିୟ ହୋଇଉଠିଥିଲୁ । ଛାତ୍ର ସଂଗଠନ କାର୍ଯ୍ୟରେ ଆମକୁ ପ୍ରଥମେ ଭଦ୍ରକ ସବ୍‌ଡ଼ିଭିଜନ ଓ ପରେ ବାଲେଶ୍ୱର ଜିଲ୍ଲା ଓ ଓଡ଼ିଶାର ବିଭିନ୍ନ ଶିକ୍ଷାନୁଷ୍ଠାନକୁ ଯିବାକୁ ପଡୁଥିଲା । ଅଧିକାଂଶ କ୍ଷେତ୍ରରେ ଆମେ ସାଇକେଲ ଓ ରେଳଗାଡ଼ି ଓ ବସ୍ ଯୋଗେ ଯାଇ ଛାତ୍ର ୟୁନିୟନ କାର୍ଯ୍ୟ କରୁଥିଲୁ ।

ଛାତ୍ର ସଂଗଠନ କାର୍ଯ୍ୟକୁ ବାଦ୍‌ଦେଲେ ପାଠପଢ଼ା ସହିତ ବିଭିନ୍ନ ପ୍ରକାର ସମାଜ

ସେବା, ଲେଖାଲେଖି କାର୍ଯ୍ୟ ଓ ସାଂସ୍କୃତିକ କାର୍ଯ୍ୟକ୍ରମରେ ଆମେ ସମସ୍ତେ ଜଡ଼ିତ ରହିଥିଲୁ । ପରସ୍ପର ପରସ୍ପର ପ୍ରତି ଆମେ ଏତେଦୂର ଆସକ୍ତ ଥିଲୁ ଯେ ସାମାଜିକ ବାଧା ବନ୍ଧନ ଆମ କାହାରିକୁ ଆଦୌ ସ୍ପର୍ଶ କରି ପାରି ନ ଥିଲା । ଫଳରେ ଭଦ୍ରକ ହାଇସ୍କୁଲ ପଛରେ ଥିବା କ୍ଷେତ୍ରବାସୀର ଘର, ପୁରୁଣା ବଜାରଠାରେ ଥିବା ରତ୍ନାକରର ଘର ଓ ରାହିଆ ହାଟଠାରେ ଥିବା ମୋର ଆବାସ-ସ୍ଥଳୀ ଓ ଭଦ୍ରକ କଲେଜ ପରିସର ଆମ ତିନିଙ୍କର କର୍ମସ୍ଥଳୀ ଥିଲା । ଆମେ ତିନିହେଁ କିଏ କେଉଁଠି କେତେବେଳେ ଥାଉଁ, ସେକଥା ସହଜେ ଜାଣିବା କଷ୍ଟକର ହେଉଥିଲା ।

ଆମେ ଉତ୍କଳ ବିଶ୍ୱବିଦ୍ୟାଳୟର ଶେଷବର୍ଷ ଆଇ.ଏ ଶ୍ରେଣୀର ଛାତ୍ର ଥିଲୁ । ଆମ ପରେ ପରେ ପ୍ରିୟୁନିଭରସିଟି ପାଠ୍ୟକ୍ରମ ପ୍ରଚଳିତ ହୋଇଥିଲା । ଆଇ.ଏ. ଶ୍ରେଣୀରେ ପଢ଼ିଲାବେଳେ ନିଖିଳ ଉତ୍କଳ ଛାତ୍ର ୟୁନିୟନର ବାର୍ଷିକ ସମ୍ମିଳନୀ ଭଦ୍ରକର ନାରାୟଣ ଚନ୍ଦ୍ର ହାଇସ୍କୁଲରେ ଅନୁଷ୍ଠିତ ହୋଇଥିଲା ଏବଂ ସେଥିରେ ପ୍ରଥମ ଥର ପାଇଁ ମୁଁ ଉତ୍କଳ ଛାତ୍ର ୟୁନିୟନର ଉପ-ସଭାପତି ନିର୍ବାଚିତ ହୋଇଥିଲି । ସଂଗଠନ ଦାୟିତ୍ୱରେ ମୁଁ ରହିବାରୁ ମୁଖପତ୍ର 'ରଶ୍ମି' ବହୁ ଦିନର ବ୍ୟବଧାନ ପରେ ଭଦ୍ରକ ଶ୍ରୀପ୍ରେସ୍‌ରୁ ପ୍ରକାଶିତ ହୋଇଥିଲା । ଏଥିରେ ବନ୍ଧୁ କ୍ଷେତ୍ରବାସୀ ସମସ୍ତ ପ୍ରକାର ସଂପାଦନା କାର୍ଯ୍ୟ କରିଥିଲା । ଠିକ୍ ଏହି ସମୟରେ ଭଦ୍ରକ ହାଇସ୍କୁଲଠାରେ ଜିଲ୍ଲାସ୍ତରୀୟ ଲେଖକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ଏବଂ ବାଗୁରାଇ ହାଇସ୍କୁଲଠାରେ ଯୁବ ଲେଖକ ସମ୍ମିଳନୀର ବାର୍ଷିକ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ସେତେବେଳେ ବନ୍ଧୁ କୈଳାସ ଲେଙ୍କା ଏହାର ସଂପାଦକ ଓ ଶ୍ରୀଯୁକ୍ତ ରାମନାଥ ପଣ୍ଡା ଏହାର ସଭାପତି ଥିଲେ । କ୍ଷେତ୍ରବାସୀର ପ୍ରେରଣାରୁ ମୋତେ ଏ ସମ୍ମିଳନୀର ଅଭ୍ୟର୍ଥନା ସମିତିର ସଂପାଦକ ଭଳି ଏକ ଗୁରୁ ଦାୟିତ୍ୱ ବହନ କରିବାକୁ ପଡ଼ିଥିଲା ।

ଭଦ୍ରକରେ ଥିଲାବେଳେ ସ୍ଥାନୀୟ ମନମୋହନ ସଙ୍ଗୀତ ପରିଷଦ ଆନୁକୂଲ୍ୟରେ ଭଦ୍ରକ ହାଇସ୍କୁଲଠାରେ ରାଜ୍ୟସ୍ତରୀୟ ସଙ୍ଗୀତ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏଥିରେ କ୍ଷେତ୍ରବାସୀ ପୁରାପୁରି ଅଂଶ ଗ୍ରହଣ କରି ଏହାକୁ ସଫଳ କରାଇବାରେ ସାହାଯ୍ୟ କରିଥିଲା ।

ଉତ୍କଳ ବିଶ୍ୱବିଦ୍ୟାଳୟ ଯାହା କି ବାଣୀବିହାରରେ ଆଜି ସ୍ଥାପନ କରାଯାଇଛି, ତା' ପୂର୍ବରୁ ଏହା କଟକର ମେଡ଼ିକାଲ ହତା ପାଖରେ ଚାଲିଥାଏ ଓ ଏ ବିଶ୍ୱବିଦ୍ୟାଳୟରୁ ଯେଉଁମାନେ ଡିଗ୍ରୀ ପାଇଥାନ୍ତି, ସେମାନେ ରେଭେନ୍‌ସା କଲେଜ ପରିସର ମଧ୍ୟରେ ସମାବର୍ତ୍ତନ ଉତ୍ସବରେ ଡିଗ୍ରୀ ନେଇଥାନ୍ତି । ଆମେ ଥିଲୁ ୧୯୬୦ ମସିହାରେ ଡିଗ୍ରୀଧାରୀ ଛାତ୍ର ଏବଂ ରେଭେନ୍‌ସା କଲେଜଠାରେ ଆମେ ଶେଷଥର ପାଇଁ ଡିଗ୍ରୀ ଗ୍ରହଣ କରିଥିଲୁ ।

ବି.ଏ ପରେ ମୁଁ କଟକର ମଧୁସୂଦନ ଆଇନ କଲେଜରେ ଆଇନ ଅଧ୍ୟୟନ

କଲି । କ୍ଷେତ୍ରବାସୀ ଓଡ଼ିଆ ଏମ୍. ଏ. ପଢ଼ିଲା, ଆଉ ରତ୍ନାକର ବି.ଏଡ୍. ଟ୍ରେନିଂ ପାଇ ତାଲିମ ପ୍ରାପ୍ତ ଶିକ୍ଷକ ହେବାର ଗୌରବ ଲାଭ କଲା ।

କଟକରେ ଅବସ୍ଥାନ କାଳରେ ବନ୍ଧୁ କ୍ଷେତ୍ରବାସୀ ଅଧ୍ୟୟନ ସହିତ ସାହିତ୍ୟ ଚର୍ଚ୍ଚାରେ ଅଧିକ ମନ ଦେଲା । ଅବଶ୍ୟ ଭଦ୍ରକରେ ସେ ଲେଖାଲେଖି ପ୍ରତି ବିଶେଷ ଯତ୍ନ ନେଉଥିଲା । ଭଦ୍ରକର ଚିନ୍ତାମଣି ସାହିତ୍ୟ ପରିଷଦ, କାନ୍ତ ସାହିତ୍ୟ ପରିଷଦ ଓ କଟକର ରବିବାସରୀୟ ସାହିତ୍ୟ ସଂସଦର ସେ ଜଣେ ସକ୍ରିୟ ସଭ୍ୟ ଭାବେ ବିଶେଷ ଖ୍ୟାତି ଅର୍ଜନ କରିଥିଲା । ଭଦ୍ରକ କଲେଜର ମୁଖପତ୍ର 'ପଲ୍ଲୀଭାରତୀ' ଓ ଓଡ଼ିଆ ସାହିତ୍ୟ ସମାଜର ମୁଖପତ୍ର 'ଅର୍ଘ୍ୟ', ଛାତ୍ର ୟୁନିୟନର ମୁଖପତ୍ର 'ରଶ୍ମି' ଓ ତା' ନିଜଦ୍ୱାରା ସଂପାଦିତ 'ଶତରୂପା' ଆଦିରେ ତା'ର ଲେଖମାନ ବିଶେଷ ଆଦୃତ ହେଉଥିଲା । ତା' ଛଡ଼ା ଛାତ୍ରାବସ୍ଥାରୁ 'ରବିବାର ପ୍ରଜାତନ୍ତ୍ର'ର ସାହିତ୍ୟ ବିଭାଗ ଓ ସେ ସମୟରେ ପ୍ରକାଶ ପାଉଥିବା 'କଳିଙ୍ଗ' ଆଦି ଖବର କାଗଜରେ ସାହିତ୍ୟ ବିଭାଗରେ ତା'ର ଲେଖାମାନ ପ୍ରକାଶିତ ହେଉଥିଲା ।

ସେ ଦିନର ସେଇ କ୍ଷେତ୍ରବାସୀ ଆଜି ଅଧ୍ୟାପକ ହୋଇଛି ଓ ଜଣେ ସାହିତ୍ୟିକ, ସମାଲୋଚକ, କବି ଲେଖକ ଓ ସଂଗଠକ ରୂପେ ଖ୍ୟାତିଲାଭ କରିଛି । କଟକରେ ରହଣି କାଳରେ ବନ୍ଧୁ କ୍ଷେତ୍ରବାସୀର ପରିସର ଯଥେଷ୍ଟ ପରିମାଣରେ ଅଭିବୃଦ୍ଧି ଘଟିଥିଲା । ସେ ସମୟରେ ତା'ର ସହପାଠିନୀ ଲାବଣ୍ୟ ସହିତ ସାକ୍ଷାତ୍ ହୋଇ ପ୍ରଥମେ ଘନିଷ୍ଠତା ଓ ପରେ ପରିଣୟ ସୂତ୍ରରେ ବନ୍ଧା ହୋଇ ଦାମ୍ପତ୍ୟ ସୁଖ ଲାଭ କରିଥିଲା ।

୧୯୬୪ ମସିହା ଆମ ତିନି ବନ୍ଧୁଙ୍କର ଥିଲା ବିବାହ କାଳ । ଫେବୃଆରୀ ୬ ତାରିଖରେ ମୋର ବିବାହ ଭଦ୍ରକରେ, କ୍ଷେତ୍ରବାସୀର ବିବାହ ଜୁଲାଇ ୪ ତାରିଖରେ କଟକ ଜିଲ୍ଲା ଅଡ଼ଙ୍ଗ-ନାଇଲୋ ଗ୍ରାମରେ ଓ ସେହି ବର୍ଷ ରତ୍ନାକରର ବିବାହ ବାରିପଦାରେ ଅନୁଷ୍ଠିତ ହୋଇଥିଲା । ସେହି ଦିନରୁ ଆମେ ସବୁ ତିନିରୁ ଛଅ ଓ ସେଥିରୁ ଅନେକ ସଂଖ୍ୟାରେ ପରିଣତ ହୋଇଥିଲୁ ।

ତିନିକୁ ତିନିହେଁ ଆମେ ଚେଷ୍ଟା କରିଛୁ ନିଜ ଗୋଡ଼ରେ ନିଜେ ଠିଆ ହେବାକୁ ଏବଂ ସେଥିରେ ମଧ୍ୟ ସଫଳକାମ ହୋଇଛୁ । କ୍ଷେତ୍ରବାସୀ ହେଲା ଅଧ୍ୟାପକ, ରତ୍ନାକର ଚଣ୍ଡିଗାଁ ହାଇସ୍କୁଲର ପ୍ରଧାନ ଶିକ୍ଷକ, ଆଉ ମୁଁ ହେଲି ଜଣେ ଆଇନ ବ୍ୟବସାୟୀ । ଘଟଣାଚକ୍ରରେ ଆଜି ମୁଁ ଶାସନ କ୍ଷେତ୍ରରେ, ଆଉ କ୍ଷେତ୍ରବାସୀ ଓ ରତ୍ନାକର ଶିକ୍ଷାଦାନରେ ବ୍ରତୀ ହୋଇଛନ୍ତି ।

ଆବାଲ୍ୟ ମୁଁ କ୍ଷେତ୍ରବାସୀର ସହନଶୀଳତାକୁ ପସନ୍ଦ କରେ । ଯେକୌଣସି ପରିସ୍ଥିତି ଆସୁ, ତାକୁ ଧୈର୍ଯ୍ୟର ସହିତ ସମ୍ମୁଖୀନ ହେବା ଥିଲା ତା' ପକ୍ଷରେ ଏକ ବିଶେଷତ୍ୱ । ସେଦିନର କଥା ମନେ ପଡୁଛି, ରେଭେନ୍ସା କଲେଜରୁ ତା'ର ବଦଳି ଢେଙ୍କାନାଳ କଲେଜକୁ ହୋଇଥାଏ । ରାଜ୍ୟର ଜଣେ ମନ୍ତ୍ରୀ ତା'ର ବନ୍ଧୁ ହୋଇଥିବାରୁ ସେ ମତେ କଟକରେ ରଖାଇବାକୁ ଅନୁରୋଧ କରିବା ସ୍ୱାଭାବିକ । ମୁଁ ବି ତା' ପାଇଁ ଚେଷ୍ଟା କରୁଥାଏଁ । ହଠାତ୍ ମୋତେ ଶିକ୍ଷା ବିଭାଗ ଦାୟିତ୍ୱ ମିଳିଲା । ତେଣୁ ପୂର୍ବରୁ ଚାଲିଥିବା ଚେଷ୍ଟା ଫଳବତୀ ହେଲା । ସେ ପୁଣି କଟକକୁ ବଦଳି ହୋଇଆସିଲା । କିନ୍ତୁ ତାଠୁଁ ଗୋଟିଏ ଶିଖିବାର କଥା ହେଉଛି ସେ ସବୁବେଳେ ମୋତେ ଅନୁରୋଧ କରୁଥାଏ, ଯେଉଁ ଅଧ୍ୟାପକ ବନ୍ଧୁ ତାକୁ ବଦଳି କରାଇ ରେଭେନ୍ସାକୁ ଆସିଛନ୍ତି, ତାଙ୍କର ଯେପରି ବଦଳି ନ ହୁଏ । ଠିକ୍ ସେଇଆ ହେଲା । ଅନ୍ୟ ଏକ ଶୂନ୍ୟ ସ୍ଥାନରେ ସେ କଟକରେ ଯୋଗ ଦେଲା । ୧୯୮୫ ମସିହାର ଶେଷଭାଗ, ହଠାତ୍ ଦିନେ ତା' ଠାରୁ ଚିଠିଟିଏ ପାଇଲି । ଆଶ୍ଚର୍ଯ୍ୟ ହେଲି । ସେ ଲେଖିଥିଲା ସେ ରୋଗଗ୍ରସ୍ତ, ମୁଁ ନିଜକୁ ନିଜେ ବିଶ୍ୱାସ କରି ପାରିଲିନି, କାରଣ ଗଲା ସେପେଟେମ୍ବର ମାସ ପହିଲା ତାରିଖରେ ମୁଁ ଏକ ଦାରୁଣ ମୋଟର ଦୁର୍ଘଟଣାର ସମ୍ମୁଖୀନ ହୋଇ ମରୁ ମରୁ ବଞ୍ଚିଗଲି । ପ୍ରଥମେ ସମ୍ବଲପୁର, ବୁର୍ଲା ଓ ପରେ କଟକ ମେଡ଼ିକାଲରେ ପ୍ରାୟ ଏକ ମାସରୁ ଊର୍ଦ୍ଧ୍ୱକାଳ ରହି ଚିକିତ୍ସିତ ହେଲି । ସେ ସମୟରେ କ୍ଷେତ୍ରବାସୀ ଡାକ୍ତରଖାନାରେ ସସ୍ତ୍ରୀକ ଆସି ମୋର ସେବାକରି ଯତ୍ନ ନେଉଥିଲା । ସେ ପୁଣି କିପରି ରୋଗଗ୍ରସ୍ତ ହେଲା ? ଚିଠି ପାଇ ସେ ରହୁଥିବା ମଙ୍ଗଳାବାଗର ଘରୋଇ କ୍ଲିନିକକୁ ଯାଇ ତାକୁ ସାକ୍ଷାତ୍ କଲି । ତାକୁ ପଚାରି ବୁଝିଲି, ଚିକିତ୍ସାରତ ଡାକ୍ତରଙ୍କୁ ପଚାରି ବୁଝିଲି, ତାକୁ ଚିକିତ୍ସା ପାଇଁ ଦିଲ୍ଲୀ ଯିବାକୁ ହେବ । ଯେହେତୁ ରୋଗ ନିରୂପଣରେ ଏଠାକାର ଡାକ୍ତରମାନେ ସଂଦୀହାନ ।

ସେ ଗଲା । ଦିଲ୍ଲୀରେ କିଛି ଦିନ ରହି କଟକ ଫେରି ଆସିଲା । ହଠାତ୍ ଦିନେ ଖବର ପାଇଲି ସେ ଏକ ଦୁରାରୋଗ୍ୟ ରୋଗର ଶୀକାର ହୋଇଛି । ତା'କୁ କର୍କଟ ରୋଗ ଗ୍ରାସ କରିଛି । ଚିନ୍ତା କରି ହେଲାନି କ'ଣ କରାଯିବ, ସେ ଶେଷରେ କଟକରେ ତା'ର ସାରସ୍ୱତ ନିଳୟରେ ରହି ଚିକିତ୍ସିତ ହେଲା ।

ଦିଲ୍ଲୀରୁ ଫେରି ହଠାତ୍ ଦିନେ ଖବର ପାଇଲି କ୍ଷେତ୍ରବାସୀ ଅବସ୍ଥା ଅତି ଶୋଚନୀୟ । ସେ କାଳେ ମତେ ଖୋଜୁଛି । ହଠାତ୍ ସସ୍ତ୍ରୀକ ଯାଇ ଡାକ୍ତରଖାନାର ମେଡ଼ିସିନ୍ ୱାର୍ଡ଼ରେ ପହଞ୍ଚିଲି । ସେତେବେଳେକୁ ସେ ପୁରାପୁରି ବେହୋସ ଅବସ୍ଥାରେ ଥାଏ । ଡାକ୍ତରମାନେ ସମସ୍ତେ ନିରାଶ ହୋଇଥିଲେ । ଆଉ ତା'ର ହୋସ୍ ଫେରିବନି

ବୋଲି ସୂଚନା ପାଇ ଘରକୁ ଫେରିଲି । ତା'ର ଅବସ୍ଥା ସେହଭଳି ଅପରିବର୍ତ୍ତନୀୟ ରହିଲା । ଦିନକ ପରେ ମୁଁ ପୁଣି ଟେଲିଫୋନ୍‌ରେ ଖବର ପାଇଲି ଯେ କ୍ଷେତ୍ରବାସୀର ହୋସ ଆସିଛି । ସେ ମତେ ଖୋଜୁଛି । ମୁଁ ଯାଇ ପହଞ୍ଚିଲି । ସେ ଆମକୁ ଦେଖି ତା'ର ଦୁର୍ବଳ ହାତ ଦୁଇଟି ଉପରକୁ ଉଠାଇ ନମସ୍କାର କଲା । ତା'ର ଅବସ୍ଥା ଦେଖି ଆଖିରେ ଲୁହ ଆସିଗଲା । କ୍ଷୀଣ ସ୍ୱରରେ ସେ ମତେ ତା'ର ସମସ୍ତ ଅବସ୍ଥା କହିଲା । କହୁ କହୁ କହିଲା – ତୁ ଭାଇ ବଞ୍ଚିଗଲୁ, ମୁଁ କିନ୍ତୁ ପାରିଲିନି । ମୋ ପରେ ଲାବଣ୍ୟ ଓଗେରଙ୍କ ପ୍ରତି ଯତ୍ନ ନେବୁ । ମୁଁ କୋହକୁ ସମ୍ଭାଳି ନେଇ କେବଳ ତାକୁ ଆଶ୍ୱାସନା ଦେଲି । ସେ ଦିନ ତା' ସହିତ ଦୁଇଥର ଦେଖା ହୋଇଛି । ହସ ହସ ମୁହଁରେ ସେ ଆମ ସହିତ ଆଳାପ କରିଛି । ଜଗନ୍ନାଥଙ୍କର ପରମ ଭକ୍ତ ସେ । ଭାବିଲି ସେ ବିପଦମୁକ୍ତ ହେଲା ।

୨୫ ଜାନୁୟାରୀ ଉଣେଇଶ ଛୟାସୀ । ହଠାତ୍ ଦିପହର ଖବର ପାଇଲି କ୍ଷେତ୍ରବାସୀ ଆଉ ନାହିଁ । ସମସ୍ତଙ୍କୁ ଶୋକ ସାଗରରେ ଭସାଇ ସେ ଶେଷ ନିଦ୍ରା ଯାଇଛି ।

ମନେ ହେଲା ଯେପରି ମତେ ସେ ତା'ର ଶେଷ ଅନୁରୋଧ ଜଣାଇବାକୁ ହୋସ୍ ପାଇଥିଲା ।

ସାରସ୍ୱତ ନିଳୟ । ଅସଂଖ୍ୟ ଜନ ସମାଗମ । କ୍ଷେତ୍ରବାସୀର ମର ଶରୀରକୁ ସଂସ୍କାର କରିବାକୁ ଏକ ଟ୍ରକ୍ ଉପରେ ଥୋଇ 'ରାମ ନାମ ସତ୍ୟ ହୈ, ହରି ନାମ ସତ୍ୟ ହୈ ଧ୍ୱନି ଦେଇ ଶୋଭାଯାତ୍ରା ସାରସ୍ୱତ ନିଳୟ ଛାଡ଼ି ସତୀ ଚଉଁରା ଅଭିମୁଖେ ଚାଲିଲା ।

ପ୍ରଭୁ ଜଗନ୍ନାଥଙ୍କର ସେ ଆଶ୍ରିତ । ପ୍ରଭୁ ବି ତା' ଘରେ ତାକୁ ଆଶ୍ରା କରି ପୂଜା ପାଉଛନ୍ତି । ସେ ଯେତେ ଫାଙ୍କିଲେ ବି ପ୍ରଭୁ ଆପେ ଆପେ ଆସି ତା' ଘରେ ବିରାଜମାନ ହୋଇଛନ୍ତି । ଅତି ନିଷ୍ଠାରେ ଦୁଇ ପ୍ରାଣୀ ପ୍ରଭୁଙ୍କର ପୂଜାର୍ଚ୍ଚନା କରିଥାନ୍ତି । ବର୍ଷରେ ଥରେ ବିଗ୍ରହ ପ୍ରତିଷ୍ଠା ଉତ୍ସବ ଆଡ଼ମ୍ବର ଭାବେ ଭକ୍ତ ମେଳରେ ସମାହିତ ହୁଏ । ପୂଜା ଶେଷରେ ପ୍ରସାଦ ସେବନ କରାଯାଏ । ପ୍ରଭୁ ଶେଷରେ ତା'ର ଡାକ ଶୁଣିଲେ । ସେ ତା'କୁ ଶେଷରେ ପାଖକୁ ନେଇଗଲେ ।

ଆମେ ଥିଲୁ ତ୍ରିନାଥ ।

କ୍ଷେତ୍ରବାସୀ, ଯୁଗଳ ଓ ରତ୍ନାକର । ତ୍ରିନାଥ ମଧ୍ୟରେ ସେ ଥିଲା ଶ୍ରୀନାଥ । ଶ୍ରୀନାଥ, ଶ୍ରୀକ୍ଷେତ୍ରର ନାଥଙ୍କ ଡାକରରେ ଆମେ ଦୁହିଁଙ୍କୁ ଛାଡ଼ି ଆଗେ ଚାଲିଗଲା ।

ଶବାଧାର ଆଗେଇ ଚାଲିଥିଲା ।

'ରାମ ନାମ ସତ୍ୟ ହୈ' ଶବ୍ଦ କ୍ରମେ ଅସ୍ପଷ୍ଟ ହେଉଥିଲା ।

ଆମେ ସବୁ ପଛରେ ପଡ଼ିଥିଲୁ ।



# ଏଇମିତି ଆସୁଥାଉ ଆପଣଙ୍କ ସ୍ମୃତି !

ଡଃ ମନୀନ୍ଦ୍ର ମହାନ୍ତି

ଭଦ୍ରକ ହାଇସ୍କୁଲର ଉତ୍ତର ପାଖ ପଟାପୋଲ ପାଖରେ ଆମ ସହର-ଘରଟା ତ' ଆପଣ ଜାଣିଥିବେ । ସେଇଠି ମୁଁ ଯେତେବେଳେ ହାଇସ୍କୁଲରେ ପଢୁଥାଏ, ସେତେବେଳେ ଆମ ଘର ଆଗ ନାଲିଗୋଡ଼ି ରାସ୍ତାରେ ସର୍‌ସର୍ କରି ଜଣେ ଅତି ସ୍ମାର୍ଟ କଲେଜ ଟୋକା ସାଇକେଲରେ ପେଡ଼ାଲ ମାରି ତୀର ବେଗରେ ଚାଲିଯାଉଥାଏ । ଦେହରେ ସବୁବେଳେ ଧଳା ପୋଷାକ ବୋଧହୁଏ । ଏହି ତୀର ବେଗରେ ସାଇକେଲ୍ ଚଲାରୁ ଆପଣଙ୍କୁ ସେଦିନ ଚିହ୍ନିଲି ।

ଆପଣଙ୍କର ମନେ ପଡୁଛି ତ, ଥରେ ଆପଣଙ୍କର ସେହି ନୂଆଣିଆଁ ଚାଳଘରକୁ ମୋତେ ଡାକିଥିଲେ ଆପଣଙ୍କ ପଡୋସୀ ତଥା ମୋର ସହପାଠୀ ବନ୍ଧୁ ପ୍ରଫୁଲ୍ଲ ହାତରେ । କଅଣ କଥାବାର୍ତ୍ତା ହେଲେ, ମୋର ମନେ ନାହିଁ ।

ତା' ପରେ ମୁଁ ଭଦ୍ରକ କଲେଜରେ ପଢ଼ିଲାବେଳେ ଶୁଣିଲି ଯେ ଆମ ଭଦ୍ରକ ହାଇସ୍କୁଲରେ ଭଦ୍ରକ ଲେଖକ ସମ୍ମେଳନ ହେଉଛି । ଆପଣ ଥିଲେ ସେଥିରେ ମୁଖ୍ୟ କାର୍‌ପଟଦାର । ସ୍ମରଣିକାଟିଏ ପ୍ରକାଶ ପାଇଥିଲା । ସେହି ସ୍‌ମ୍ମେଳନ ବେଳେ ଅପଣଙ୍କୁ ମୁଁ ଅନେକଥର ଧାଁଧପଡ଼ କରିବାର ଦେଖିଛି । ଗୀତା ପାଠରୁ ଯୋତା ସିଲାଇ ପର୍ଯ୍ୟନ୍ତ ଯେଉଁଠି ଦେଖିବ ତ ଆପଣ ! ସେତେବେଳକୁ ଆପଣ ଓଡ଼ିଆରେ ଏମ୍.ଏ. ବୋଧହୁଏ ପାଶ୍ କରି ସାରିଥିଲେ ।

ଆପଣ ବଲାଙ୍ଗିରରେ ଥିଲାବେଳେ ବିଭିନ୍ନ ଲେଖକ ସମ୍ମିଳନୀ ଓ ସାହିତ୍ୟ ଅନୁଷ୍ଠାନ (ଆମ୍ର ପ୍ରକାଶନୀ) ପ୍ରସଙ୍ଗରେ ଆପଣଙ୍କ କଥା ମୋ ଦୃଷ୍ଟିପଥକୁ ଆସିଛି । କିନ୍ତୁ, ତାହା ଦୂର ପାହାଡ଼ ପରି । କିଛି ସ୍ପଷ୍ଟ । କିଛି ଅସ୍ପଷ୍ଟ ।

ତା' ପରେ ମୁଁ ଯେତେବେଳେ ସମ୍ବଲପୁର ଜ୍ୟୋତି ବିହାରରେ 'ଓଡ଼ିଆ ଶିଶୁ ସାହିତ୍ୟର ଉନ୍ମେଷ ଓ ବିକାଶ' ଶୀର୍ଷକରେ ଗବେଷଣା କରୁଥାଏ, ସେତେବେଳେ ଆପଣଙ୍କଠାରୁ ଚିଠି ପାଇଲି ଯେ ଆପଣ ଜ୍ୟୋତି ବିହାରକୁ ଆସିବେ ଓ ମୋ ରୁମ୍‌ରେ ରହିବେ । ସତରେ, ସେତେବେଳେ ମୁଁ ଭାରି ଗୋଟାଏ ଖୁସି ହୋଇଯାଇଥିଲି । କାରଣ, ଏହା ମୋ ପାଇଁ ଗୋଟେ ଅପୂର୍ବ ସୁଯୋଗ ଥିଲା । ଅପୂର୍ବ ସତ୍‌ସଙ୍ଗ । ଆପଣଙ୍କ ଆସିବାର କାରଣ ହେଲା – ଆପଣ ପିଏଚ୍. ଡି. ଡିଗ୍ରୀ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ପାଇବେ ।

ଆପଣ ଜ୍ୟୋତି ବିହାରରେ ପହଞ୍ଚିଲେ । ପ୍ରଥମ ପୁରୁଷ-ଛାତ୍ରାବାସର ୯୪ ନମ୍ବର ରୁମ୍‌ରେ ଆପଣ ରହିଲେ । ଦୁହେଁ ଆମେ ସାଙ୍ଗ ହୋଇ ୟୁନିଭରସିଟି ଅଫିସ୍ ଗଲେ । ଗାଉନ୍ ଆଦି ଆଣିଲେ ।

ଆପଣଙ୍କ ଅନୁସନ୍ଧିତ୍ସୁ ମନ ହଠାତ୍ ମୋର ଏମ୍.ଏ. ପରୀକ୍ଷାର ପ୍ରବନ୍ଧ 'ଗାଳ୍ପିକ ସୁରେନ୍ଦ୍ର ମହାନ୍ତି" ପାଣ୍ଡୁଲିପି ଉପରେ ପଡ଼ିଗଲା । ଆପଣ ପଢ଼ିଲେ ଓ କହିଲେ - "ଏ ପର୍ଯ୍ୟନ୍ତ କାହିଁକି ଛପାଉ ନାହିଁ ?" ମୁଁ ଏହାକୁ ନେଇଯାଉଛି । ମୁଁ ମନା କରି ପାରିଲି ନାହିଁ । ସେ ତାକୁ ଆଟେଚିରେ ପୂରାଇଲେ । ସେତେବେଳକୁ ସେ ବ୍ରହ୍ମପୁରରେ ଥାଆନ୍ତି । ଅବସର ସମୟରେ ମୋ ଗବେଷଣା କାର୍ଯ୍ୟର ଅବସ୍ଥା ତନଖି ନେଲେ । ଉତ୍ସାହ ଦେଲେ । ସେଇଠି ଆପଣଙ୍କୁ ମୁଁ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ଜଣେ ବିଦଗ୍ଧ ଭକ୍ତ ଭାବରେ ପ୍ରଥମେ ଦେଖିଲି । ଗାଧୋଇ ସାରି ବେକରେ ଧଣ୍ଡା ପକାଇଲେ । କୋଥଳି ଖୋଲି ସେବା କଲେ । ନିର୍ମାଲ୍ୟ ପାଇଲେ ।

ସେଇଠି ସବୁବେଳେ ଗୋଟିଏ କଥା ବାରମ୍ବାର ଆଲୋଚିତ ହେଲା - ଓଡ଼ିଆ ଭାଷା ଓ ସାହିତ୍ୟର ଗବେଷକମାନେ ନିଜର ଗବେଷଣାଲବ୍ଧ ଲେଖାକୁ ପ୍ରକାଶ ପାଇଁ କୌଣସି ଜର୍ଣ୍ଣାଲ୍ ନାହିଁ । ସେ ସବୁବେଳେ କହୁଥାନ୍ତି - "ଠିକ୍ ଅଛି, ତୁମେ ସବୁ ଆସି ଏକାଠି ହୁଅ, ଆମେ ଓଡ଼ିଶାରେ ଗବେଷଣା, ସଂସ୍ଥାଟିଏ ଆରମ୍ଭ କରିବା । ମୁଁ ଆବଶ୍ୟକୀୟ ନିୟମାବଳୀ ଲେଖି ସାରିଛି । ମୁଁ ଟିକେ କଟକ ଆସିଯାଏ, ଆରମ୍ଭ କରିଦେବା ।"

ସମୟ ଗଡ଼ି ଚାଲିଲା । ଆପଣ ବ୍ରହ୍ମପୁରରୁ କଟକ ବଦଳି ଆସିଲେ । ମୋ ପାଖକୁ ହାତଲେଖା ଚିଠାଟିଏ ପଠାଇଲେ । ସେଥିରେ ସ୍ଥୂଳତଃ ଗବେଷଣା ସଂସ୍ଥାର ସ୍ୱରୂପ ଓ କାର୍ଯ୍ୟକ୍ଷେତ୍ର ପ୍ରକାଶ ପାଇଥିଲା । ହେଲେ, ଅନୁଷ୍ଠାନର ନାମ କ'ଣ ହେବ ? ଆପଣ ଏହାର ନାମକରଣ କରିଥିଲେ- 'ଓଡ଼ିଆ ଗବେଷଣା ପରିଷଦ' ଇଂରାଜୀରେ Institute of Oriya Studies, ମାତ୍ର ସାର୍ (ଡକ୍ଟର କୃଷ୍ଣଚନ୍ଦ୍ର ବେହେରା) କହୁଥାନ୍ତି, 'ନା- କେବଳ 'ଗବେଷଣା ପରିଷଦ' ଏହାର ନାମ ରହୁ ! ଏହାକୁ କେବଳ 'ଓଡ଼ିଆ' ବା 'ଓଡ଼ିଶା' ଭିତରେ କାହିଁକି ସୀମାବଦ୍ଧ କରି ରଖିବା ? ପ୍ରଥମଥର ପାଇଁ ମୁଁ ଆପଣଙ୍କ କଟକସ୍ଥ ଛତ୍ରବଜାର ଫଗୁ ଖୁଣ୍ଟିଆ ଲେନ୍‌ର ବାସଭବନକୁ ଯାଇଥାଏ, ଆପଣ କହିଲେ - "ତୁମେ ସାର୍‌ଙ୍କୁ ଟିକେ ବୁଝାଅ, କୁହ- ସେ 'ଓଡ଼ିଆ' ନାମଟିକୁ ଗ୍ରହଣ କରନ୍ତୁ ।" ମୁଁ କହିଥିଲି - "ସାର୍‌ଙ୍କୁ ଏ କଥା କହିବି ।" ଆଉ ସତକୁ ସତ, ଆପଣ ସେତେବେଳେ 'ଓଡ଼ିଆ ଗବେଷଣା ପରିଷଦ' - ଅକ୍ଷରର ବ୍ଲକ ତିଆରି କରି ସାରିଥିଲେ । ସାର୍‌ଙ୍କୁ କହିଲି ପରିଷଦ ସାଙ୍ଗରେ 'ଓଡ଼ିଆ' ନାମ ଯୋଡ଼ିବା କଥା । ପରେ ଏହା ଗୃହୀତ ହେଲା ।

ସେହି ଛତ୍ରବଜାର ଭଡ଼ାଘରେ ପ୍ରଥମେ ଲାବଣ୍ୟ ଭାଉଜ ଓ ପିଲାମାନଙ୍କୁ ଦେଖିଲି । ପରିଚିତ ହେଲି ।

ତା'ପରେ 'ଓଡ଼ିଆ ଗବେଷଣା ପରିଷଦ'ର Crest ଟିଏ ପ୍ରସ୍ତୁତ କରିବାକୁ ଦାୟିତ୍ୱ ମୋ ଉପରେ ପଡ଼ିଲା । ମୁଁ ପରେ ଯେଉଁ Crest ଟି ଦେଲି, ତାକୁ ସାର୍ ଓ ଆପଣ ନିର୍ବିଘ୍ନରେ ଗ୍ରହଣ କରିନେଲେ । ପଦ୍ମ ଫୁଲ । ତା' ସମ୍ମୁଖ ଭାଗରେ ଦ୍ୱୀପଟିଏ ଶିଖା ମେଲେଇ ଜଳୁଛି । ଏହି ଶିଖା ଓ ପଦ୍ମଫୁଲର ମଝି ପାଖୁଡ଼ା ପ୍ରାୟ ଏକ ହୋଇଯାଇଛି, ଏହି ଶିଖା ଓ ପାଖୁଡ଼ା ଏକ ଦୃଷ୍ଟିପାତ୍ର ଭୂମିକା ନେଇ ତୃତୀୟ ନୟନର ଆଭାସ ଦେଉଛି । ପଦ୍ମଫୁଲ-ସାହିତ୍ୟର ପ୍ରତୀକ । ଦୀପ-ଜ୍ଞାନ ଓ ଆଲୋକର ପ୍ରତୀକ, ପୁଣି ତୃତୀୟ ନୟନ ଅନୁସନ୍ଧିତ୍ସୁ ଦୃଷ୍ଟିକୋଣର ପ୍ରତୀକ ।

ଯେଉଁଦିନ ଗବେଷଣା ପରିଷଦ ଏକ୍ଟୁଡ଼ିଶାଳରେ ଜନ୍ମ ନେଲା, ତା'ର ଦିନକ ପୂର୍ବରୁ କଟକରେ ସାର୍‌ଙ୍କ ପ୍ରଫେସରପଡ଼ା ଭଡ଼ା ଘରେ ପହଞ୍ଚିଲି । କଥା ହେଲା - ଆପଣଙ୍କ ଛତ୍ରବଜାରସ୍ଥ ବାସଭବନରେ ଗବେଷଣା ପରିଷଦର ଜନ୍ମକାଳୀନ ଉତ୍ସବ ନିରାଡ଼ମ୍ବର ସହକାରେ ପାଳିତ ହେବ । ଅତି କ୍ଷୁଦ୍ର ଏବଂ ପାରିବାରିକ ତଥା ଆନ୍ତରିକ ପରିବେଶ ମଧ୍ୟରେ ଏହି ଅନୁଷ୍ଠାନ ଜନ୍ମ ନେବ । ତାହା ବି ହେଲା ।

୧୯୮୦ମସିହା ଅକ୍ଟୋବର ୨୫ ତାରିଖ । ସେହି ଦିନ ସକାଳେ ଆପଣ ଓ ମୁଁ ଦୁହେଁ ସ୍କୁଟରରେ ଚଢ଼ି ବାହାରିଲେ ଧୂପ, ନଡ଼ିଆ, ଫୁଲମାଳ ଆଦି ସଂଗ୍ରହ କରିବା ପାଇଁ । ସେ ଦିନ କି ଉତ୍‌କୂଳ- ଉତ୍‌କୂଳ ଭାବ ! ସବୁବେଳେ ଆପଣ କହୁଥାନ୍ତି - "ମନୀନ୍ଦ୍ର, ଆଉ କ'ଣ ବାକି ରହିଲା ? ମନେ ପକାଅ । କିଛି ଯେମିତି ଅଭାବ ରହି ନ ଯାଏ ।" ତାଙ୍କ ଛତ୍ରବଜାରସ୍ଥିତ ସାରସ୍ୱତ ନିଳୟର ଭିତର ପାଖ ବାରଣ୍ଡାରେ ସତରଞ୍ଜି ପଡ଼ିଲା । ନିମନ୍ତ୍ରିତ ସଦସ୍ୟମାନେ ଜଣଙ୍କ ପରେ ଜଣେ ପହଞ୍ଚିଲେ । ଆପଣଙ୍କ ଘରର ସମସ୍ତେ ତ ତତ୍ପର ହୋଇ ଉଠିଲେ । ଲାବଣ୍ୟ ଭାଉଜ, ଆପଣଙ୍କ ଝିଅ ଲିପି, କୁନିମାମା ଓ ପୁଅ ବାବୁନୁ ସମସ୍ତେ । ମୁଁ ଅନୁଭବ କଲି, ସତରେ ସେହି ପରିବାରରେ ଯେମିତି ଆଜି ଗୋଟେ ଏକୋଇଶିଆ ପର୍ବ ! କିଏ ଫୁଲ ଆଣୁଛି ! କିଏ ସଳିତା ତିଆରି କରୁଛି ! କିଏ କଳସ ବସାଉଛି ! ଇତ୍ୟାଦି ଇତ୍ୟାଦି ।

ଲୋକରତ୍ନ ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ଆଶୀର୍ବାଦ ବାଣୀ, ଆନ୍ତରିକତା, ଉତ୍ସାହ, ଆମକୁ ଆଉ ପାଦେ ଆଗକୁ ଠେଲି ନେଇଥିଲା । ଶେଷକୁ ସେହି ନିଜେ ବି ଏହି ଅନୁଷ୍ଠାନର ଶୁଭାରମ୍ଭ କଲେ । ପ୍ରଥମେ ଲିପି, ବେଦ ପାଠ କଲା । ସେ କି ଅପୂର୍ବ ମୁହୂର୍ତ୍ତ ! ଆପଣଙ୍କ ମନେ ପଡୁଛି ତ ? ମୋର ମନେ ପଡୁଛି । ଦୁହାଇ ତୁହାଇ ମନେ

ପଡୁଛି । ମୁଁ ତ ସ୍ଥିର ହୋଇ ବସି ପାରିଲି ନାହିଁ । ଖାଲି ଘଡ଼ିକ ପରେ ବାହାରକୁ ଯାଇ ଦାଣ ଦୁଆରରେ ଦେଖି ଆସୁଥିଲି । ଆଉ କିଏ ଆସୁଛନ୍ତି, ତାଙ୍କୁ ପାଛୋଟି ଆଣିବା ପାଇଁ।

ମୋର ମନେ ପଡୁଛି, ସଦସ୍ୟମାନଙ୍କ ମନ୍ତବ୍ୟ ପ୍ରକାଶରେ ମୁଁ କହିଥିଲି - "ଓଡ଼ିଆ ସାହିତ୍ୟରେ ଗୋଟିଏ ଅଭାବ ଏପର୍ଯ୍ୟନ୍ତ ରହିଛି । ତାହା ହେଲା - 'ସାହିତ୍ୟ କୋଷ' । ଆମେ ସେହି କାମ ଆଗ ସଂପନ୍ନ କରିବା, ଈଶ୍ୱରଙ୍କ କୃପାରୁ ଏହା କ୍ରମେ ଫଳବତୀ ହେଉଛି । ଏବେ ଏହା ପ୍ରସ୍ତୁତି ପଥେ । କିନ୍ତୁ ହାୟ, ଏହା ଅଧା ରହିଗଲା । ଆପଣ ଚାଲିଗଲେ ।

ଓଡ଼ିଆ ଗବେଷଣା ପରିଷଦର ମଞ୍ଜି ପୋତାଗଲା । ଗଛ ବାହାରିଲା । ପତ୍ର କଅଁଳିଲା । ଡାଳ ମେଲିଲା । ଫୁଲ ଫୁଟିଲା । ଥରେ ମୁଁ କହିଥିଲି ନା- ଆମ ଗବେଷଣା କ୍ଷେତ୍ରରେ ଆମ ଗବେଷକ ବନ୍ଧୁମାନେ ବାରଓଳି ଡେର ପିଣ୍ଡା ହେଉଛନ୍ତି । ସେମାନେ ରାହା ଖୋଜି ପାଉ ନାହାନ୍ତି । ଆମେ ସେମାନଙ୍କୁ ଭରସା ଦେବା । ଏଥିପାଇଁ ଲାଇବ୍ରେରୀଟାଏର ଆବଶ୍ୟକତା ରହିଛି । ଆଉ ଯିଏ କିଛି ସାହାଯ୍ୟ ଚାହିଁବ, ଆମେ ତାଙ୍କୁ ତାଙ୍କର ପାଖେ ପାଖେ ରହି ସାହାଯ୍ୟ କରିବା । ଆପଣ ହଁ ଭରିଥିଲେ । ପ୍ରତିଶ୍ରୁତି ଦେଇଥିଲେ - ପାଠାଗାରଟାଏ କରିବା। ଏଥିରେ ଆମ ଗବେଷକମାନେ ଗବେଷଣା କରିବେ । ଆମେ ସେମାନଙ୍କର ସହାୟକ ହୋଇ ପାରିବା । କେବଳ ସେତିକି ନୁହେଁ, ଗୋଟେ ପ୍ରେସ୍ ପକାଇବା, ଏହି ପ୍ରେସଟି କଲେ ଆମ ଗବେଷଣା ସଂସ୍ଥାର କାମ ସାଙ୍ଗକୁ ସଦସ୍ୟମାନଙ୍କ ପୁସ୍ତକ ପ୍ରକାଶ ପାଇବ । ସେଥିପାଇଁ ସ୍ୱତନ୍ତ୍ର ଭାବରେ ହୋଲ୍‌ଟାଇମ୍ ଷ୍ଟାଫ୍ ରହିବେ । ଏହାରି ପାଖକୁ ଲାଗି ଲାଇବ୍ରେରୀଟାଏ ଗବେଷକମାନଙ୍କ ପାଇଁ ରହିବ । ଅଫିସ୍ ରହିବ । ଏହିପରି କେତେ ସ୍ୱପ୍ନ, କେତେ ଯୋଜନା, କେତେ ପରିକଳ୍ପନା ।

ଆଉ ଦିନେ ମୁଁ ଆପଣଙ୍କୁ କହିଥିଲି, ବର୍ଷକୁ ଆମେ ଯଦି ୨/୩ ଟି ଗବେଷକ ସୃଷ୍ଟି କରନ୍ତି, ତେବେ ୧୦/୧୨ ବର୍ଷ ଭିତରେ ଓଡ଼ିଶାରେ ଗବେଷଣାର ଏକ ନୂତନ ପରଂପରା ସୃଷ୍ଟି ହୋଇପାରନ୍ତା । ଆପଣ ତ ଏହାକୁ ପୂର୍ଣ୍ଣତଃ ସମର୍ଥନ କରିଥିଲେ । ମୋ ମନକୁ ଯେତେବେଳେ ନୂଆ କଥାଟିଏ ଢୁକେ ସେତେବେଳେ, ଆପଣଙ୍କୁ ଚିଠି ଲେଖି ଜଣାଇ ଦିଏ । ଆପଣ ସବୁଥିରେ 'ହଁ' ଭରିଛନ୍ତି ।

ମୁଁ ସହସଂପାଦକ ଥିଲି । ମାତ୍ର ଦୂରରେ ଥିବାରୁ ତ କିଛି କରିପାରିଲି ନାହିଁ । ଏଥିପାଇଁ ଭାରି ମାନସିକ ଯନ୍ତ୍ରଣା ।

ଦିନେ ମୁଁ ରେଭେନ୍‌ସା କଲେଜକୁ କଲେଜ ପରୀକ୍ଷା ଖାତା ଦେଖିବାକୁ ଯାଇଥିଲି । ଆପଣ ବି ଥିଲେ ମୋର ମୁଖ୍ୟ ପରୀକ୍ଷକ । ଆପଣ ନିମନ୍ତ୍ରଣ ଜଣାଇଥିଲେ ଆପଣଙ୍କ ନୂଆ ଘର (ଶ୍ରୀ ଅରବିନ୍ଦ ନଗର) କୁ ଯିବାକୁ । ମୁଁ ଗଲି । ଫାଟକ ଖୋଲିଲି । ପାହାଚରେ ଉଠିଲି । ବାମ ପାଖର ଶିଳାଲିପିର ପଦଟି ପଢ଼ିଲି -

"ଆଶାର ବୋଇତ ବାହି ଅତିକ୍ରମି ସମୟ-ସାଗର

ଶ୍ରଦ୍ଧାରେ ରଚିବା ଆମେ ନୂଆ ଘର ସୁନ୍ଦର ସଂସାର ।"

କଲିଂ ବେଲ୍ ଟିପିବା ପୂର୍ବରୁ ପୁଣି ଥରେ ସେହି ପଦଟିକୁ ମନେ ମନେ ଗୁଣି ହେଲି । ଏ ତ ସାରସ୍ୱତ ନିଳୟ ନୁହେଁ ! ଏ ଗୋଟେ ମନ୍ଦିର । ପୁଷ୍ପ ଉଦ୍ୟାନର କାବ୍ୟିକ ପରିବେଶ ମଧ୍ୟରେ ସେଦିନ ମୁଁ ଭାସିଯାଇଥିଲି କିଛି କ୍ଷଣ ।

ସେଠାକୁ ତ ମୁଁ ଅନେକ ଥର ଯାଇଛି । ଗବେଷଣା ପରିଷଦ କାମରେ ଓ ନିଜ କାମରେ । ଯେତେବେଳେ କଟକ ବା ଭୁବନେଶ୍ୱର ଆସେ, ସେତେବେଳେ ଟିକେ ସେଆଡ଼େ ଗଡ଼ି ପଡ଼େ । ଦାଣ୍ଡ ଦୁଆର ସୋଫା ଉପରେ ବସି ଆଲୋଚନା କରିଛି । କାମ କରିଛି । ଡାଇନିଂରେ ବସି ଖାଇଛି ।

ଆପଣଙ୍କଠାରୁ ମୁଁ ବଡ଼ ଭାଇର ଆଦର ପାଇଛି । ମୁଁ ଉତ୍ତେଜିତ ହୋଇଗଲେ ବା ମନ କଷ୍ଟ କଲେ, ଆପଣ ସାନ୍ତ୍ୱନା ଦିଅନ୍ତି । ଉଦାହରଣ ଦେଇ ବୁଝାନ୍ତି । ଧୈର୍ଯ୍ୟ ଦିଅନ୍ତି ।

ଥରେ ଆମ କଲେଜର ଜଣେ ଅଧ୍ୟାପକଙ୍କ ଗବେଷଣା ସଂକ୍ରାନ୍ତରେ ଆପଣଙ୍କ ପାଖକୁ ମୁଁ ଯାଇଥିଲି । ଆପଣ ଅସୁସ୍ଥ ଥିଲେ । ତଥାପି ଘଣ୍ଟାଏ କାଳ ଆମ ଆଲୋଚନାରେ ଭାଗ ନେଲେ । ତାଙ୍କର ତତ୍ତ୍ୱାବଧାରକ ହେବାକୁ ସମ୍ମତ ହେଲେ । ମୁଁ ଯେତେବେଳେ ଯାହା ଚାହିଁଛି, ତାହା ପୂରଣ କରିବାକୁ ଆପଣ ପ୍ରସ୍ତୁତ ଥିଲେ ।

ଆପଣଙ୍କର ଗୋଟେ ବଡ଼ ବୈଶିଷ୍ଟ୍ୟ ହେଲା - ଖାଲି ଭାବନା ନୁହେଁ । ଚିନ୍ତା ନୁହେଁ । ସେହି ଭାବନା କେମିତି ବାସ୍ତବ ରୂପ ନେବ, ତାକୁଇ ସମ୍ଭବ କରିବା ଆପଣଙ୍କ କାମ । ସେଇଟିକୁ ମୁଁ ଏ ପର୍ଯ୍ୟନ୍ତ ବି ଶିଖି ପାରିଲି ନାହିଁ ।

ସେହି ଅଧ୍ୟାପକଙ୍କୁ ନେଇ ଆପଣଙ୍କୁ ସାକ୍ଷାତ କରିବା ଥିଲା ମୋ ପାଇଁ ଶେଷ ଦର୍ଶନ । ଶେଷ କଥୋପକଥନ । ଜାନୁୟାରୀ ୨୫ ତାରିଖ ସମ୍ବାଦପତ୍ରରେ ଆପଣଙ୍କ ଅସୁସ୍ଥତା ସମ୍ବାଦ ପଢ଼ି ମୁଁ ବାହାରିଛି କଟକ ଯିବାକୁ । କିନ୍ତୁ ଏକ ଶିଶୁମେଳାରେ ପୌରୋହିତ୍ୟ କରିବାର ଦାୟିତ୍ୱ ଥିବାରୁ ମୁଁ ତା' ପରଦିନ କଟକରେ ଆସି ସାର୍ ଙ୍କର

ବେହେରାଙ୍କ ଘରେ ପହଞ୍ଚିଲା ବେଳକୁ ସବୁ କାମ ସରିଯାଇଥିଲା । ବିଶ୍ୱାସ ତ କରି ହେଲା ନାହିଁ । ବରଂ ଚାରିଆଡ଼େ ଗୋଟେ ଘନ ଅନ୍ଧକାର, ବିରାଟ ଶୂନ୍ୟତା ମାଡ଼ିଗଲା । ଲାବଣ୍ୟ ଭାଉଜଙ୍କୁ ସାକ୍ଷାତ କରିବାର ମନୋଭାବ ମଧ୍ୟ ହରାଇ ବସିଥିଲି । ଆପଣତ ପୂର୍ବ ଦିନରୁ ସତୀଚଉଁରାଠାରେ ନିଦେଇ ଯାଇଥିଲେ, ପ୍ରଣାମଟିଏ ଜଣାଇ ଭରମ ଫେରିଗଲି । ସପ୍ତାହକ ପର୍ଯ୍ୟନ୍ତ ଆପଣଙ୍କ ଦେହାନ୍ତକୁ ମୁଁ ତିଳେ ସୁଦ୍ଧା ବିଶ୍ୱାସ କରି ପାରିଲି ନାହିଁ । ପଞ୍ଚମ ବାର୍ଷିକ ସଂପାନ ଓ ବାର୍ଷିକ ଉତ୍ସବରେ କେତେ ଥର ଯେ ଆପଣ ମୋ ସ୍ମୃତି ପଥକୁ ଆସିଛନ୍ତି, ତାହା କହି ହେବ ନାହିଁ ।

ଲାବଣ୍ୟ ଭାଉଜ ଆପଣଙ୍କ ସ୍ଥାନ ପୂରଣ କରିଛନ୍ତି, ଆପଣଙ୍କ ସନ୍ତାନର ମାତା ଆପଣଙ୍କ ମାନସ ସନ୍ତାନର ପାଳନକର୍ତ୍ତୀ ହୋଇପାରିବେ ବୋଲି ଆଶା ଅଛି । ଆପଣ ଏହି ସଂସ୍ଥା ଓ ସାହିତ୍ୟକୃତି ମଧ୍ୟରେ ହିଁ ତ ବଞ୍ଚି ରହିବେ । ପ୍ରତିକୂଳ ପରିବେଶରେ ବଢ଼ିଥିବା ବନ୍ଧୁ ବ୍ୟକ୍ତିଙ୍କ ପାଇଁ ଆପଣ ପ୍ରେରଣାର ଉତ୍ସ ହୋଇରହିବେ । ଆପଣ ତ ନିଜ ଜୀବନରେ ପ୍ରମାଣ କରି ଯାଇଛନ୍ତି - ନିଷ୍ଠା, ପରିଶ୍ରମ, ଆନ୍ତରିକତା, ଦୃଢ଼ ମନୋବଳ, ଏକାଗ୍ରତା ନିକଟରେ ପ୍ରତିକୂଳ ପରିବେଶ କିଛି ଆମର ଅନିଷ୍ଟ କରି ପାରେନା ।

ଆପଣ ତ ଆଉ ଆସିବେ ନାହିଁ ।

ଆପଣଙ୍କ ସ୍ମୃତି ଏମିତି ଆସୁଥାଉ ।

ନୂଆବଜାର, ଭଦ୍ରକ



# ସ୍ମୃତି ସନ୍ତକ

ଡଃ ଅଜୟକୁମାର ପଟ୍ଟନାୟକ

ଖଲ୍ଲିକୋଟ କଲେଜର ଏକ ରଙ୍ଗୀନ ସନ୍ଧ୍ୟା । ସାଂସ୍କୃତିକ କାର୍ଯ୍ୟକ୍ରମ ହେତୁ ଉଲ୍ଲସିତ ପରିବେଶ । ଚତୁର୍ଦ୍ଦିଗ ଉତ୍ସବ ମୁଖର । ମୋ ଛାତ୍ର ଜୀବନ ପୁଣି ଥରେ ଜୀବନ୍ତ ହୋଇଉଠିଲା । ଏଇ ପରିବେଶରେ ମୋର ଚାରିବର୍ଷ ବିତିଛି - ୧୯୬୬ ଠାରୁ ୧୯୬୯ । ବର୍ଷକ ପାଇଁ ଛାତ୍ର ସଂସଦର ସାଂସ୍କୃତିକ କାର୍ଯ୍ୟକ୍ରମ ସଚିବ ଭାବେ ନିର୍ବାଚିତ ହୋଇ ଏହିଭଳି ଅନେକ କାର୍ଯ୍ୟକ୍ରମର ଆୟୋଜନ କରିଛି । ଆଜି ଅପ୍ରତ୍ୟାଶିତ ଭାବେ ସେହିଭଳି ଗୋଟିଏ କାର୍ଯ୍ୟକ୍ରମ ସମୟରେ ପହଞ୍ଚିଯାଇଛି ଯେତେବେଳେ ଅତୀତ ଓ ବର୍ତ୍ତମାନ ଉଭୟକୁ ମନ ଭରି ଉପଭୋଗ କରିବା କଥା । କିନ୍ତୁ ମୋ ଉଦ୍ଦେଶ୍ୟ ଅଲଗା ।

କୌଣସି ବ୍ୟକ୍ତିଗତ କାମରେ ମୁଁ ବ୍ରହ୍ମପୁର ଆସିଥାଏ । ଡକ୍ଟର କୃଷ୍ଣଚରଣ ବେହେରାଙ୍କର କୌଣସି ଗୋଟିଏ ବହି ପ୍ରକାଶନ ସମ୍ବନ୍ଧୀ ଖବର ବୁଝିବାକୁ ହେବ ତାଙ୍କ ପ୍ରିୟ ଶିଷ୍ୟ ଡଃ କ୍ଷେତ୍ରବାସୀ ନାୟକଙ୍କ ଠାରୁ । ଚାକିରୀ ଜୀବନର ନିଅଁ ପଡ଼ିଲା ବେଳକୁ ଏମ.ପି.ସି. କଲେଜ, ବାରିପଦା ଠାରେ ଡଃ ନାୟକଙ୍କ ସମ୍ପର୍କରେ ଅନେକ କଥା ଶୁଣିଛି ଡଃ ବେହେରାଙ୍କ ଠାରୁ । ଏଣୁ ଲୋଭ ଥାଏ ସେହି ଉତ୍ସାହୀ ସାହିତ୍ୟ-ସ୍ରଷ୍ଟା, ସଙ୍ଗଠକଙ୍କୁ ଭେଟି କିଛି ପ୍ରେରଣା ଗ୍ରହଣ କରିବି । ମୋର ଛାତ୍ର ବେଳର ଜଣେ ଅଧ୍ୟାପକ ଡଃ ଅନ୍ନଦା ଚରଣ ମିଶ୍ରଙ୍କ ସହ ଦେଖାହେଲା । ସେ କ୍ଷେତ୍ରବାସୀ ସାର୍‌ଙ୍କୁ ଡାକି ଦେଲେ । ମୁଁ ଯେହେତୁ ତାଙ୍କୁ ଆଗରୁ କେବେ ଦେଖି ନ ଥିଲି, ଅନ୍ନଦା ସାର୍ ମୋତେ ଚିହ୍ନେଇ ଦେଲେ । ତା'ପରେ କାର୍ଯ୍ୟକ୍ରମ ଛାଡ଼ି କ୍ଷେତ୍ରବାସୀ ସାର୍ ମୋ ସହିତ କଲେଜ ବାହାରକୁ ଚାଲି ଆସିଲେ । ମନେ ହେଉଥାଏ ସତେ ଯେମିତି ମୋର ବହୁ କାଳର ପରିଚିତ । ଆମେ ଦୁହେଁ କଥାଭାଷା କରି ଚାଲିଚାଲି ଯାଇ ପହଞ୍ଚିଲୁ ହାତୀବନ୍ଧ ସାହିରେ ସେ ରହୁଥିବା ଘରେ ।

ଏକ ଲମ୍ବା ବ୍ୟବଧାନ ପରେ ପୁଣି କ୍ଷେତ୍ରବାସୀ ସାର୍‌ଙ୍କ ସହ ଦେଖା ହେଲା ରେଭେନ୍‌ସା କଲେଜରେ । ସାଙ୍ଗରେ ଡଃ ବେହେରା ବି ଥାଆନ୍ତି ସେଇ କଲେଜରେ । ବହୁବାର ବିଭିନ୍ନ ସାହିତ୍ୟିକ କାର୍ଯ୍ୟକ୍ରମରେ ଦେଖା ହୁଏ । ପୁଣି କେତେବେଳେ ଇନ୍‌ଭିଜିଲେଶନ୍ କଲାବେଳେ ତ କେତେବେଳେ ଡଃ ବେହେରାଙ୍କ ଘରେ । କଥା ଭାଷାର କେନ୍ଦ୍ରରେ ସାହିତ୍ୟ । ବିଶେଷ କରି ଛାତ୍ରଛାତ୍ରୀଙ୍କ ମଧ୍ୟରେ ସାହିତ୍ୟିକ ରୁଚି ଜାଗ୍ରତ କରିବା ପାଇଁ କ୍ଷେତ୍ରବାସୀ ସାର୍‌ଙ୍କ ଅହରହ ଉଦ୍ୟମ ବାସ୍ତବିକ ମୋତେ ଅଭିଭୂତ କରିଦେଉଥାଏ । ନିଜର ମାନସ-ସନ୍ତାନ 'ଓଡ଼ିଆ ଗବେଷଣା ପରିଷଦ' ର ରୂପରେଖ ଓ

କାର୍ଯ୍ୟକ୍ରମର ପରିକଳ୍ପନାକୁ ନେଇ ସେ ଅନେକ ସମୟରେ ଷ୍ଟାଫ୍ କମନରୁମ୍‌ରେ କିମ୍ବା ହିନ୍ଦୀ-ଓଡ଼ିଆ ବିଭାଗ ପାଖ କରିଡ଼ରରେ ଆମର ଆଲୋଚନା ହୁଏ । ଚିର ଭାଇଙ୍କ ପରାମର୍ଶରେ ମୋତେ 'ଓଡ଼ିଆ ଗବେଷଣା ପରିଷଦ' ର ସଭ୍ୟ ଭାବରେ ଗ୍ରହଣ କରାଗଲା ବେଳକୁ ମୁଁ ପରିଷଦ ସମ୍ପର୍କରେ ବିଶେଷ କିଛି ଜାଣି ନ ଥାଏ । ଥରେ 'କବିତାର ଉପପାଦ୍ୟ' ନାମକ ନିଜର ଚଟି ବହିଟିଏ ମୋତେ ଉପହାର ଦେଇ କହିଲେ, "ବଡ଼ବଡ଼ ବହି ଲେଖିବା ଅପେକ୍ଷା ଏହିଭଳି ଛୋଟ ଛୋଟ ପୁସ୍ତିକା ମାଧ୍ୟମରେ ସାହିତ୍ୟର ଅଧିକ ପ୍ରସାର କରାଯାଇ ପାରିବ । ବହୁ ସଂଖ୍ୟକ ପାଠକ ଏହାକୁ କିଣି ପାରିବେ ଏବଂ କମ୍ ସମୟରେ ପଢ଼ି ବି ପାରିବେ । ବଡ଼ ବଡ଼ ସଭା ସମିତି ଅପେକ୍ଷା ଛୋଟ ଛୋଟ ବୈଠକ ହିଁ ସାହିତ୍ୟ-ଚର୍ଚ୍ଚା ପାଇଁ ପ୍ରକୃଷ୍ଟ ମାଧ୍ୟମ ।" ପରବର୍ତ୍ତୀ ସମୟରେ ମୁଁ ଲକ୍ଷ୍ୟ କରିଛି ଓଡ଼ିଆ ଗବେଷଣା ପରିଷଦ ଠିକ୍ ସେଇ ବାଟରେ ହିଁ ଆଗେଇଛି । ଭାଷଣର ତୁମ୍ବିତୋଫାନ ଅପେକ୍ଷା ବିଷୟକେନ୍ଦ୍ରିତ ଲିଖିତ ଭାଷଣ ଉପରେ ଅଧିକ ଗୁରୁତ୍ୱ ଦିଆଯାଏ । ଫଳରେ ଯେକୌଣସି ପାଠକ ଯେକୌଣସି ସମୟରେ ତା'ର ଉପଯୋଗ କରି ପାରିବ ।

ଆଉ ଦିନକର କଥା । ସେ କାଳର 'କାଠଘୋଡ଼ା' ନାମରେ ବ୍ୟଙ୍ଗ୍ୟ କରାଯାଇଥିବା ହିନ୍ଦୀ ବିଭାଗରେ ମୁଁ ଏବଂ ବିଭାଗ-ମୁଖ୍ୟ ଡଃ ତାରିଣୀ ଚରଣ ଦାସ ବସିଥାଉ । କ୍ଷେତ୍ରବାସୀ ସାର୍ ତାରିଣୀ ସାର୍‌ଙ୍କୁ ପ୍ରଣାମ ଜଣାଇବା ସାଙ୍ଗେ ସାଙ୍ଗେ ମୋତେ ବାହାରକୁ ଡାକିନେଲେ । କହିଲେ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ପାଠଚକ୍ରଟିଏ କରିବା ପାଇଁ ମୋର ଇଚ୍ଛା । ଡଃ ପୂର୍ଣ୍ଣଚନ୍ଦ୍ର ମିଶ୍ର ଆୟୋଜନର ଦାୟିତ୍ୱ ନେବେ । ଆମେ ଏଠୁ ଯେଝା ଖର୍ଚ୍ଚରେ ଟ୍ରେନରେ ଯିବା । ଆପଣ ନିଶ୍ଚୟ ଯିବେ । ମୁଁ ସାଙ୍ଗେ ସାଙ୍ଗେ ସମ୍ମତି ଜଣାଇଲି । ମୋ ପୁରୁଣା ଜାଗାରେ ଏଭଳି ଏକ ସମାବେଶରେ ବନ୍ଧୁମାନଙ୍କୁ ଭେଟିବାର ଉତ୍କଣ୍ଠା ମୋ ମନରେ ଲହଡ଼ି ଭାଙ୍ଗୁଥାଏ । ହଠାତ୍ ଖବର ପାଇଲି, ଅସୁସ୍ଥତା ହେତୁ କ୍ଷେତ୍ରବାସୀ ସାର୍ କିଛି ଦିନ ହେଲା କଲେଜ ଆସୁନାହାନ୍ତି । ଡଃ ବେହେରାଙ୍କ ସାଙ୍ଗରେ ଆମେ କେତେଜଣ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ହସ୍‌ପିଟାଲ ଗଲୁ । କ୍ଷେତ୍ରବାସୀ ସାର୍‌ଙ୍କ କ୍ଷୀଣକାୟ ଶରୀର ଦେଖି ମର୍ମାହତ ହେଲୁ । ତଥାପି ଆଶାର କ୍ଷୀଣ ଦୀପଶିଖାଟିଏ ଜଳୁଥିଲା । ବିଳମ୍ବରେ ହେଲେ ବି ସାର୍ ସୁସ୍ଥ ହୋଇ ଫେରିବେ ।

ବିଧିର ବିଧାନ ବିଚିତ୍ର । ସାର୍ ରୋଗଜର୍ଜ୍ଜର ନଶ୍ୱର ଶରୀର ତ୍ୟାଗକରି ଅମଳିନ ଦୀପଶିଖାଟିଏ ହୋଇ ଫେରିଲେ ଅଗଣିତ ଆଲୋଚକ, ଗବେଷକଙ୍କର ମନ-ମନ୍ଦିରକୁ । ସାରସ୍ୱତ ସାଧକଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇ ଏହି ଆଲୋକ-ବର୍ତ୍ତିକା ଉଦ୍‌ଭାସିତ ହେଉ- ଏତିକି କାମନା ।

ପ୍ଲଟ ନଂ ୧୦୩୨ / ୨୪୦୨, ପ୍ରଗତିନଗର,
ୟୁନିଟ୍ - ୮, ଭୁବନେଶ୍ୱର - ୩



# ଭକତ ଉଦନ୍ତ

ଶ୍ରୀ ରବୀନ୍ଦ୍ର ନାରାୟଣ ମିଶ୍ର

**ବି**ଡ଼ ଡାକ୍ତରଖାନାର ଖଟିଆ ଉପରକୁ ଝୁଙ୍କିପଡ଼ି ତାଙ୍କର ଅସ୍ପଷ୍ଟ କଥା ଶୁଣିବାକୁ ମୁଁ ଚେଷ୍ଟା କଲି ସେଦିନ । କାରଣ, ତାଙ୍କଠାରେ ସେତେବେଳେ କଥା କହିବାର ଶକ୍ତି ନ ଥିଲା । କେତେ ମାସ ବିଛଣାଲାଗି ହୋଇ ରହିବା ଫଳରେ ଓ ଦୁରାରୋଗ୍ୟ ରୋଗର ଛାଇ ତାଙ୍କୁ ସମ୍ପୂର୍ଣ୍ଣ ଗ୍ରାସ କରିଥିବାବେଳେ ତାଙ୍କର ଜୀବନୀଶକ୍ତି କ୍ରମଶଃ ନିଃଶେଷ ହୋଇଯାଉଥିଲା । ମୋ କାନଟିକୁ ମୁଁ ପ୍ରାୟ୍ ତାଙ୍କ ମୁହଁ ପାଖକୁ ନେଇ ଲଗାଇଦେଲି । ସେ ଯାହା କହିଲେ ଶୁଣି ସାରିବା ପରେ ମୋ ପାଟିରୁ ହଠାତ୍ ବାହାରି ପଡ଼ିଲା, 'ସତେ !'

- 'ହଁ', ସେ କହିଲେ । "ଏଇ ଦିନେ ଦି' ଦିନ ଭିତରେ ସେ କହିଥିଲେ, ଜଗନ୍ନାଥଙ୍କ ଜିନିଷ ନେଇ ଜଣେ ତୁମ ପାଖରେ ପହଞ୍ଚିବେ ।"

ତାଙ୍କ ମୁହଁ ଉଜ୍ଜ୍ୱଳ ହୋଇଉଠୁଥିଲା । ରୋଗର ଶୁଷ୍କ ମରୁଭୂମିରେ ଆଶାର କ୍ଷୀଣ ଜଳଧାରାଟିଏ ସ୍ପଷ୍ଟ ବାରି ହୋଇପଡୁଥିଲା । ମୋତେ ଜଣାପଡ଼ିଲା ସେ ଯେମିତି ବହୁତ କଥା ବଖାଣି ଯିବାକୁ ଚାହାଁନ୍ତି; ମାତ୍ର ଦୁର୍ବଳତା ତାଙ୍କୁ ବାଧା ଦେଉଛି । ତାଙ୍କ ଆଖି ଦୁଇଟି କିନ୍ତୁ ମୋତେ ବହୁତ କଥା କହିଯାଉଥିଲା । ଯେମିତି ସେ ମୋତେ ପାଇ କୋଟିନିଧି ପାଇଛନ୍ତି ।

ସେଦିନ ଥିଲା ୧୯୮୬ ମସିହା ଜାନୁଆରୀ ମାସ ତେଇଶ ତାରିଖ ।

ମୁଁ ସେତେବେଳକୁ ସାଙ୍ଗରେ ନେଇଥିବା ଦୁର୍ଲଭ ପଦାର୍ଥ ତାଙ୍କ ବଢ଼ଝିଅ ଲିପି ହାତକୁ ବଢ଼େଇ ଦେଇ କହିଥିଲି, ମୁଣ୍ଡ ତଳେ ପବିତ୍ରତାର ସହ ରଖିଦେବାକୁ ।

ସେଇ ଦୁର୍ଲଭ ପଦାର୍ଥଟିକୁ ମୁଁ ବହୁତ ଦିନ ତଳୁ ସାଇତି ରଖିଥିଲି । ସାଇତି ରଖିବାର ଦିନଟି ଥିଲା ତିନିବର୍ଷ ତଳର ସ୍ନାନପୂର୍ଣ୍ଣମୀ ରାତି । ସେ ଦୁର୍ଲଭ ପଦାର୍ଥ ହେଲା ମହାପ୍ରଭୁଙ୍କ ରାହୁରେଖା ବାହାର କରିବାବେଳେ ସନ୍ତର୍ପଣରେ ଶ୍ରୀମୁଖରୁ ସଂଗ୍ରହ କରିଥିବା ଓଷୁଅ, ଯାହାର ଅଠାରେ ରାହୁରେଖା ମହାପ୍ରଭୁଙ୍କ ଶ୍ରୀମୁଖରେ ବସାଇ ଦିଆଯାଇଥାଏ ।

ଭାଗ୍ୟରେ ମିଳିଥିଲା ପ୍ରଭୁ ସେବା । ସ୍ନାନପୂର୍ଣ୍ଣମୀରେ ହାତୀବେଶ ସାରି ପ୍ରଭୁ ବିଜେ କରିଥା'ନ୍ତି ଗୋଟିପହଣ୍ଡିରେ ଅଣସର ଘରକୁ । ସର୍ବମୋଟ ବର୍ଷକ ଭିତରେ ମହାପ୍ରଭୁ ଭାଇ-ଭଉଣୀ-ସୁଦର୍ଶନ-ମଦନମୋହନଙ୍କ ସମେତ ଛଅଥର ପହଣ୍ଡି ବିଜେ କରିଥାଆନ୍ତି । ପ୍ରଥମେ ପ୍ରଥମେ କୋଉଟା ଧାଡ଼ିପହଣ୍ଡି ଆଉ କୋଉଟା ଗୋଟିପହଣ୍ଡି

ମନେ ରଖିବାକୁ ଆୟାସ କରିବାକୁ ହେଉଥିଲା । ପରେ ମହାପ୍ରଭୁ ଯେମିତି ନିଜେ ଦୟାକରି ସୂତ୍ରଟି ବତେଇ ଦେଲେ, "ଦେଖ, ଯେତେବେଳେ ଆମେ ସମସ୍ତେ ଭକ୍ତମାନଙ୍କ ପାଖକୁ ବିଜେ କରୁ, ଆମ ତର ସହେନି । ବଡ଼ଦେଉଳର ରତ୍ନସିଂହାସନ ଚକା ଉପରୁ ଆମେ ସବୁ ଧାଡ଼ି ଧାଡ଼ି ହୋଇ ବାହାରିପଡୁ । ଜଣେ ସ୍ନାନବେଦୀ ବା ରଥ ଉପରେ ନ ପହଞ୍ଚୁଣୁ ଆଉ ଜଣେ ପାଦ ବଢ଼େଇ ଦିଏ ଭକତଭୋଳା ହୋଇ । ଏଇଟା ଧାଡ଼ି ପହଣ୍ଡି, ଧାଡ଼ି ଧାଡ଼ି ଆମେ ଚାଲିଯାଉ ଉଦ୍‌ଗ୍ରୀବ ହୋଇ ରହିଥିବା ଲକ୍ଷ ଲକ୍ଷ ଆଶ୍ରିତ, ଦଳିତ, ପତିତ ଓ ନିଷ୍ପେଷିତଙ୍କ ପାଇଁ । ଆଉ ଗୋଟି ପହଣ୍ଡି ? ଯେତେଥର ସେଇ ପ୍ରାଣର ପ୍ରାଣ ଭକ୍ତମାନଙ୍କ ପାଖରୁ ଫେରୁ ମନ୍ଦିର ଭିତରେ ନିଜ ଆସ୍ଥାନକୁ ବା ବାହୁଡ଼ା ସମୟରେ ରଥ ଉପରକୁ, ସେତେଥର କୁଣ୍ଠିତ ଚିତ୍ତରେ ଭକ୍ତମାନଙ୍କୁ ଛାଡ଼ି ଫେରୁ । ସ୍ନାନବେଦୀ ବା ରଥ ଉପକୁ ଜଣେ ବାହରି ମନ୍ଦିର ଭିତର ରତ୍ନସିଂହାସନ ବା ଅଣସର ଘରେ ରୁନ୍ଧା ହେବା ପରେ ଆମ ଭିତରୁ ଆଉ ଜଣେ ବାହାରନ୍ତି । ଭକତଙ୍କୁ ଛାଡ଼ି କୁଣ୍ଠିତ ହୃଦୟରେ ଗୋଟି ଗୋଟି କରି କୁନ୍ଥେଇ କୁନ୍ଥେଇ ଆସୁଥିବାରୁ ଏହାକୁ କହନ୍ତି ଗୋଟିପହଣ୍ଡି ।"

ସେଇ ଦୁଇତିନିବର୍ଷ ତଳେ ଗୋଟି ପହଣ୍ଡିରେ ଆସି ତିନିଠାକୁର ଅଣସରଘରେ ବିଜେ କରିବା ପରେ ଦଇତାମାନେ ଯେତେବେଳେ ତିନିଦିଅଁଙ୍କର ଶ୍ରୀମୁଖରୁ ରାହୁରେଖା ଉଲାଗିକରି ଭଣ୍ଡାରମେକାପଙ୍କୁ ମୋ ଉପସ୍ଥିତିରେ ମଣତି ଦେଉଥିଲେ, ରାହୁରେଖାରୁ ଝଡ଼ିପଡୁଥିବା ଓଷୁଅ ଗୋଟଉ ଗୋଟଉ ପଚାରିଥିଲି, 'ଯେ ଓଷୁଅ କୋଉଥିରେ ଲାଗିବ ?'

ଆନନ୍ଦ ଗଦ୍‌ଗଦ ହୋଇ ବୁଢ଼ା ଦଇତା ସେଦିନ କହିଥିଲା, "ବାବୁ, କେଉଁଥିରେ ନ ଲାଗିବ ଏ ଦୁର୍ଲଭ ପଦାର୍ଥ ? ହାତରେ ଡେଉଁରିଆ କରି ପିନ୍ଧ; ରୋଗବାଧିକିରେ ବାଟିକରି ତୁଣ୍ଡରେ ଦିଅ; ଫଳ ଦେଖିବ, ଆଉ ପ୍ରଭୁ କୃପା ଜାଣିବ ।"

ଫଳ ଦେଖିଥିଲି ଆଉ ପ୍ରଭୁ କୃପା ବି ଜାଣିଥିଲି ଅଳ୍ପ କେତେଦିନ ପରେ । ପଡ଼ିଶାଘର ଓଭରସିଅରଙ୍କ ଅନ୍ତୁଡ଼ିଉଠା ପୁଅଟି ସେଦିନ ବିଛଣାରେ ମିଶିଯାଇଥିଲା ଜ୍ୱର ଓ ଝାଡ଼ା ପ୍ରକୋପରେ । ସବୁ ଔଷଧ ସେତେବେଳକୁ ହାର ମାନି ଯାଇଥିଲା, ବିକଳ ହୋଇ ସ୍ତ୍ରୀ ଆସି ଜଣାଇଲା, "... କହୁଥିଲ ପରା ପ୍ରଭୁଙ୍କ ମସ୍ତକରୁ ଝଡ଼ିପଡ଼ିଥିବା ଓଷୁଅ ଅଛି... ପିଲାଟି ବଡ଼ କଷ୍ଟ ପାଉଛି ... ଘରେ କାନ୍ଦବୋବାଳି.. ଦିଅନ୍ତ ନି ?"

ବୁଢ଼ା ଦଇତା କଥା ମନେପଡ଼ିଲା । ଓଷୁଅ ବଢ଼େଇ ଦେଇ ବାଟିକରି ପିଲା ପାଟିରେ ଦେବାକୁ କହିଲି । ମହାପ୍ରଭୁଙ୍କ କୃପାରୁ ପିଲାଟି ମୁହଁରେ ପୁଣି ହସଫୁଲ ସେଦିନ ଫୁଟି ଉଠିଥିଲା । ସବୁରି କଣ୍ଠରେ ସେଦିନ ପ୍ରଭୁର ପ୍ରଶଂସା ଶୁଣି ମୋ ମନ କୁଣ୍ଢେମୋଟ ହୋଇଯାଇଥିଲା । ମୋ ପ୍ରଭୁ ସତରେ କେତେ ବଡ଼ !

ସେଇ ଓଷଅ ଓ ପ୍ରଭୁ ଶ୍ରୀଅଙ୍ଗରୁ ବାହାରିଥିବା କେତେକ ପଦାର୍ଥ ସେଦିନ ବଢ଼େଇ ଦେଇଥିଲି ଲିପି ହାତରେ କଟକ ବଡ଼ ଡାକ୍ତରଖାନାର ଭେଷଜ ୱାର୍ଡ଼ରେ ।

ଆମେ ସେଦିନ ଯେତେକ୍ଷଣ ଯାଇଥିଲୁ, ଅଳ୍ପ ସମୟ ପରେ ବିଦାୟ ନେଲୁ, କାରଣ ରୋଗୀଙ୍କ ଆଖିପତା ମୁଦି ହୋଇ ଆସୁଥିଲା, ଆମେ ଚାହୁଁଥିଲୁ ସେ ବିଶ୍ରାମ ନିଅନ୍ତୁ, ଶୀଘ୍ର ସୁସ୍ଥ ହୋଇଉଠନ୍ତୁ ।

ଆଶ୍ଚର୍ଯ୍ୟର କଥା, ଆମେ ପହଞ୍ଚିବାର ଦିନେ ଦି'ଦିନ ଆଗରୁ ଜଣେ କହିଥିଲେ, "...ଜଗନ୍ନାଥଙ୍କ ଅଙ୍ଗଲାଗି ଜିନିଷ ନେଇ ଜଣେ ପହଞ୍ଚିବେ ଏଇ ଦି'ଦିନ ଭିତରେ । ତା' ପରେ ଆପଣ ଭଲ ହୋଇଯିବେ ।"

ଲାବଣ୍ୟ ଦେବୀ ବିକଳ ହୋଇ ସ୍ମୃତିଚାରଣ କରି କହିଲେ, "କ'ଣ ଭଲ ହେଲେ ଆଉ ? ଆରପାରିକୁ ତ ଚାଲିଗଲେ ।"

ତାଙ୍କ ଚାଲିଯିବାର କେତେଦିନ ପରେ ମୁଁ ଯାଇଥିଲି ତାଙ୍କ 'ସାରସ୍ୱତ ନିଳୟ'କୁ । ଏଇ କେତେପଦ କଥା କହି ଚୁପ ହେବା ଅବସରରେ ମୁଁ ଲକ୍ଷ୍ୟ କଲି ଲାବଣ୍ୟଦେବୀଙ୍କୁ ତାଙ୍କ ଅଲକ୍ଷ୍ୟରେ । ଲାବଣ୍ୟଙ୍କ ମୁହଁରୁ କିଏ ଯେମିତି ସବୁ ଲାବଣ୍ୟତକ ପୋଛି ନେଇଛି । ମୁଣ୍ଡର ସିନ୍ଦୂର ଆଉ ଜଳିଉଠୁନି । ମୁହଁରେ କଳା ଛାଇ ବାରି ହୋଇପଡୁଛି । ଏଇ ଦିନ କେଇଟା ଭିତରେ ମୁଣ୍ଡର ବାଳଗୁଡ଼ିକ ବେଶ୍ ହତଶିରୀ ହୋଇ ଧଳା ହୋଇଗଲାଣି । ସଂସାର-ଆକାଶରେ ତାଙ୍କର ମଲାଜହ୍ନର ମୁହଁଟିକୁ ଆଉ ଚାହିଁ ହେଉନି । ସେ ମଉଳି ପଡ଼ିଛନ୍ତି । କିନ୍ତୁ ପର ଲାଗି ନ ଥିବା ଦି' ଝିଅ ଆଉ ପୁଅଟିକି ତ ପୁଣି ପରଲଗା କରାଇବେ । ତେଣୁ ସବୁ ଦୁଃଖ, ସବୁ ଯନ୍ତ୍ରଣା, ସବୁ କଷ୍ଟକୁ ଭିତରେ ଭିତରେ ଚାପିଦେଇ ସେ ଚେଷ୍ଟା ଚଳେଇଛନ୍ତି, ସେମାନଙ୍କୁ ନିଜ ନିଜ ଆହାର ଖୋଜିବାର ଶକ୍ତି ଦେଇ ବସାରୁ ଉଡ଼ାଇଦେବାକୁ । ମନରୁ ତାଙ୍କ ପ୍ରାଣସାଥୀ କଥା ପୋଛି ହେଉନି । ସେ ମୁରୁଛି ପାରୁ ନାହାନ୍ତି ତାଙ୍କର ସ୍ମୃତି । ମୁରୁଛି ପାରୁ ନାହାନ୍ତି ତାଙ୍କ ପ୍ରାଣର ପ୍ରାଣ, ଜନ୍ମଜନ୍ମାନ୍ତରର ସାଥୀ ତାଙ୍କର ହୃଦୟ ଦେବତା ଡକ୍ଟର କ୍ଷେତ୍ରବାସୀ ନାୟକଙ୍କୁ ।

ମହାପ୍ରଭୁଙ୍କର ଏ ପରିବାର ସହିତ ସମ୍ପର୍କ ଯେମିତି ଏ ଯୁଗର ଅବିଶ୍ୱାସ କରିବା ଭଳି କାହାଣୀଟିଏ । ବଖାଣି ବସିଲେ ପୋଥିଟିଏ ହେବ, ନ ବଖାଣିଲେ ପ୍ରଭୁମହିମା ଲୋକଲୋଚନ ବାହାରେ ରହିଯିବ । କଳିକାଳରେ ଏମିତି କ'ଣ ଲୀଳାଖେଳା ଲୀଳାମୟ କରନ୍ତି ? ଏମିତି କ'ଣ ଭକ୍ତ ଏ କଳିରେ ଅଛନ୍ତି ? ସବୁର ସଂକ୍ଷିପ୍ତ ଉତ୍ତର 'ହଁ' । ଆଶ୍ରିତ ଭକ୍ତର ଆଦର ଭିତରେ ସେ ବନ୍ଧା ହୋଇପଡ଼ି ରହନ୍ତି । ସ୍ନେହର ଶାଗ ଖାଇବାକୁ ବିଦୁର ଘରକୁ ତରତର ହୋଇ ପାଦ ପକେଇ ଯାଉ ଯାଉ ଦାମ୍ଭିକ ଦୁର୍ଯ୍ୟୋଧନକୁ କହନ୍ତି,

"ନା ଦୁର୍ଯ୍ୟୋଧନ, ଆଜି ତୁମ ପ୍ରାସାଦରେ ମଣୋହି ହୋଇପାରିବନି । ବିଦୁର ଚାହିଁଛି ... ବିକଳ ହୋଇ ସ୍ୱାମୀ ସ୍ତ୍ରୀ ଦୁହେଁ ମୋ' ପଥ ଚାହିଁଛନ୍ତି ନିଜଛାଳି ହୋଇ .. ତା' କୁଡ଼ିଆ ମୋତେ ବାଇଆ କରି ପକାଇଲାଣି ... ତୁମ ନଅରରେ ଆଉ ଦିନେ ।"

କ୍ଷେତ୍ରବାସୀଙ୍କ ବ୍ରହ୍ମପୁର କୁଡ଼ିଆ ସେଦିନ ପୂରି ଉଠିଥିଲା, ଯେଉଁଦିନ ପୁରୀର ପୁଷ୍ପାଳକ ସେବକ ଶ୍ରୀ କାଶୀନାଥ ସିଂହାରୀ ପହଞ୍ଚିଯାଇଥିଲେ ସାଙ୍ଗରେ ଚକାନୟନଙ୍କୁ ଧରି । ସେ ମସିହା ଥିଲା ୧୯୭୩ ମସିହା । ତା' ପୂର୍ବରୁ ସିଂହାରୀଏ ବହୁତଥର କହିଥିଲେ, "ଘରେ ତୁମ ପ୍ରାଣଦେବତା ଚକାନୟନଙ୍କୁ ରଖ, ପୂଜା କର ।" ଆଢ଼େଇ ଦେଉଥିଲେ ସ୍ୱାମୀସ୍ତ୍ରୀ, "ପାରିବୁନି.. ତାଙ୍କ ନୀତି ବଡ଼ ଛିଟିକୁଟିଆ... ସେବାରେ ତ୍ରୁଟି ହୋଇଯିବ ...ଅପରାଧ ହବ .. କ୍ଷମା କରନ୍ତୁ ।" ଏମିତି କଥାବାର୍ତ୍ତା ହୋଇଥିଲା ପୁରୀରେ । ତା' ଆଗରୁ ଦୁଇ ତିନିବର୍ଷ ତଳେ ସିଂହାରୀଏ ଆଣି ଦେଖାଇଥିଲେ ମହାପ୍ରଭୁଙ୍କ ଗୋଟିଏ ବିଗ୍ରହକୁ । ଗ୍ରହଣ କରିବାକୁ କିନ୍ତୁ ମନା କରିଥିଲେ ସ୍ୱାମୀ-ସ୍ତ୍ରୀ । ବିଗ୍ରହ ବି ମନପସନ୍ଦ ହୋଇ ନ ଥିଲେ । ଭାବଗ୍ରାହୀଙ୍କ ମୂର୍ତ୍ତି ଭାବରେ ବୁଡ଼େଇ ଦେଇପାରୁ ନ ଥିଲା । ତେଣୁ ସେତିକିରେ ମହାପ୍ରଭୁଙ୍କ ଭକ୍ତଘର ବିଜେ ଅଧ୍ୟାୟ ସରିଗଲା ବୋଲି କ୍ଷେତ୍ରବାସୀ ଓ ଲାବଣ୍ୟ ଭାବିଲେ ।

କିନ୍ତୁ ସେ କ'ଣ ଛାଡ଼ିବା ଲୋକ ? ଯାହା ଘରେ ବିଜେ କରିବାକୁ ମନ କରିବେ, କେହି ବାଧା ଦେଇପାରିବନି ତାଙ୍କୁ । ଅଧିକାଂଶ ବେଳେ ସେ ଭକ୍ତଙ୍କୁ ଡୋରିରେ ଟାଣନ୍ତିନି । ଭକ୍ତ ତାଙ୍କୁ ଭକ୍ତିଡୋରିରେ ଟାଣେ । ଅଣଆୟତ ହୋଇ ସେ ଦଉଡ଼ନ୍ତି ଭକ୍ତ ପାଖକୁ । ସେଇ ୧୯୭୩ ମସିହା ଅଗଷ୍ଟ ମାସରେ ଦିନେ ବ୍ରହ୍ମପୁରରେ କ୍ଷେତ୍ରବାସୀ ହଠାତ୍ ସିଂହାରୀଙ୍କ ଚିଠି ପାଇଲେ, "ବିଗ୍ରହ ନେଇ ଆସନ୍ତାକାଲି ଦିନ ଦଶଟା ଏଗାରଟା ବେଳେ ପହଞ୍ଚିବି ।"

ସ୍ୱାମୀସ୍ତ୍ରୀ ଦୁହେଁ ଅଧ୍ୟାପକ-ଅଧ୍ୟାପିକା ଓଡ଼ିଆ ବିଭାଗରେ । କଲେଜରୁ ଛୁଟି ନେଲେ ବାଧ ହୋଇ । ଠାକୁର ଆସିବେ । ନୂଆଲୁଗା ଖଟୁଲି ପ୍ରସ୍ତୁତ କରି ରଖିଲେ । ମାତ୍ର କାହିଁ ? ସେ ତ ଆସିଲେନି ? ଦୁହେଁ ଭାବିଲେ, ଅନ୍ତରରେ ତ ଇଚ୍ଛା ନାହିଁ ତାଙ୍କୁ ପାଛୋଟି ଆଣିବାକୁ; ତେଣୁ ସେ କାହିଁକି ଆସିବେ ? ଏଗାରଟା ବେଳେ ସିଂହାରୀଙ୍କ ଚିଠି ପହଞ୍ଚିଲା... "ଅସୁବିଧା ଅଛି ... ଯାଇପାରିବିନି ।"

ସ୍ୱାମୀସ୍ତ୍ରୀ କଲେଜ ଚାଲିଲେ, ଆଉ ଛୁଟି ରଦ୍ଦ କରି କର୍ମକ୍ଷେତ୍ରରେ କର୍ମାରମ୍ଭ କଲେ । ଆଗରୁ କହିଛି, ଦୁହେଁ ଥିଲେ ଅଧ୍ୟାପକ-ଅଧ୍ୟାପିକା, ସାରସ୍ୱତ ମନ୍ଦିରରେ ଅଧିଷ୍ଠାତ୍ରୀ ଭାରତୀଙ୍କ ସେବକସେବିକା ।

କଳାଠାକୁରଙ୍କ ଲୀଳା ବିଚିତ୍ର । ସେତେବେଳେ କ୍ଷେତ୍ରବାସୀଙ୍କ ପାଖରେ ତାଙ୍କ ଶାଶୁ ଥାଆନ୍ତି । ତାଙ୍କ ବୟସ ସେତେବେଳକୁ ସତୁରି ପାର ହୋଇଯାଇଥାଏ । ଏ ସେଇ ୧୯୭୩ ର ଘଟଣା । ଠାକୁରଙ୍କ ପ୍ରଥମ ପ୍ରସ୍ତାବିତ ଆଗମନର ବାଇଶିଦିନ ପର କଥା । ସେଦିନ ରାତିରେ କ୍ଷେତ୍ରବାସୀ, ଲାବଣ୍ୟଦେବୀ ଓ କ୍ଷେତ୍ରବାସୀଙ୍କ ଶାଶୁ ତିନିଜଣଯାକ ସ୍ୱପ୍ନ ଦେଖିଲେ, ଠାକୁର ଆସିଯାଇଛନ୍ତି ଘରକୁ । ଶାଶୁ ଥିଲେ ଅନନ୍ୟ ଧର୍ମପରାୟଣା । ପ୍ରଭୁଙ୍କ ଦର୍ଶନ ବହୁଥର ହୋଇଛି ତାଙ୍କ ଜୀବନରେ । ଏ ଦୁହିଁଙ୍କ ଧର୍ମବିଶ୍ୱାସ ତ ନ କହିଲେ ଚଳେ । ତିନିଜଣଯାକ ଚିନ୍ତା କଲେ ଏମିତି ଏକା ସ୍ୱପ୍ନ କାହିଁକି ଦେଖିଲେ । ସତରେ କ'ଣ ସେ ଆସିଯିବେ ! କ୍ଷେତ୍ରବାସୀ ସ୍ନାନାଦି ସାରି ଦଉଡ଼ିଗଲେ ଜଣଙ୍କ ଘରକୁ – ଯାହା ଘରକୁ ଶ୍ରୀ କାଶୀନାଥ ସିଂହାରୀ ମଝିରେ ମଝିରେ ଆସନ୍ତି । ସେହି ଘରର ଘରଣୀ ଜଣେ ଧର୍ମପରାୟଣା ମହିଳା । କ୍ଷେତ୍ରବାସୀଙ୍କ ଧାରଣା, କାଳେ ସିଂହାରୀଏ ସେଠାକୁ ଆସିଥିବେ । ତାଙ୍କ ଘରେ ପହଞ୍ଚି ସେ ହତଚକିତ ହୋଇଗଲେ । ସିଂହାରୀଏ ପୂର୍ବରାତ୍ରିରୁ ଆସିଛନ୍ତି । ସାଙ୍ଗରେ ନେଇ ଆସିଛନ୍ତି ନବକଳେବର ଦାରୁରେ ତିଆରି ମହାପ୍ରଭୁଙ୍କ ବିଗ୍ରହ । କ୍ଷେତ୍ରବାସୀ ଭାବବିହ୍ୱଳରେ ଘରକୁ ଫେରି ମନପ୍ରାଣ ଦେଇ ମହାପ୍ରଭୁଙ୍କୁ ନେଇ ବିଜେ କରାଇଲେ । ସେହିଦିନ ମହାପ୍ରଭୁ ସେ ପରିବାରର ହୋଇଗଲେ ।

ଲାବଣ୍ୟ ଦେବୀ ଏଥର ମୋତେ ଓ ମୋର ସହଯାତ୍ରୀ ବନ୍ଧୁଙ୍କୁ ଚା' ଯାଚିଲେ । ମୁଁ ମନା କଲି, ଚା' ପିଏନି । ବନ୍ଧୁଙ୍କ ପାଇଁ ଆଣିବାକୁ କହିଲି । ମନ ବୁଝିଲାନି ତାଙ୍କର । ସ୍ନେହଶୀଳ ଚାଲିରେ ଭିତରକୁ ଯାଇ ଅଣସର ଘରେ ରହିଥିବା ଠାକୁରଙ୍କ ଭୋଗ ହାତରେ ଧରି ହାଜର । ଆହା, କି ସ୍ନେହ ! କି ଆନ୍ତରିକତା ! ପ୍ରଭୁର ପ୍ରସାଦ ଆଗରେ ଥୁଆ ହେଲାବେଳେ ମୋତେ ଲାଗୁଥାଏ, କ୍ଷେତ୍ରବାସୀ ଯେମିତି କହୁଛନ୍ତି, "ନିଅନ୍ତୁ, ଆଗ ପ୍ରସାଦ ପାଇଦିଅନ୍ତୁ ।"

ଲାବଣ୍ୟଦେବୀ ବସିଲେ ଆସି ଡ୍ରଇଂରୁମ୍‌ରେ । ସାଧାରଣ ବଖରାଟିଏ । କଣରେ ନୂଆ କିଣା ହୋଇ ପ୍ଲାଷ୍ଟିକ ଘୋଡ଼ଣୀର ଓଢ଼ଣୀ ଭିତରେ ରହିଥାଏ ସୂର୍ଯ୍ୟ ଟେଲିଭିଜନ ସୁନ୍ଦରୀ । ତା' ରୂପଛଟା ଦେଖିବାରେ ମନରେ ଆଗ୍ରହ ନ ଥାଏ ମୋର । ତା' ତୁଳନାରେ ପ୍ରଭୁ ଉପାଖ୍ୟାନ କେତେ ସୁନ୍ଦର – କେତେ ପ୍ରାଣର, କେତେ ଆବେଗର !

ମୋ' ପ୍ରଶ୍ନର ସହଜ ସରଳ ଉତ୍ତର ଦେଲେ, "ହଁ, ତା'ପରେ ବହୁତ କଥା ଘଟିଛି । ତେବେ ... ।"

ସେ ରହିଗଲେ । ମୁଁ କହିଲି ମନେ ପକାଇବାକୁ । ମୋ' ଅନୁରୋଧରେ ଯୋଡ଼ିଏ ଉଦ୍ଦେଶ୍ୟ ଥିଲା । ପ୍ରଥମ, ସେ କଥା ପ୍ରସଙ୍ଗରେ କ୍ଷେତ୍ରବାସୀଙ୍କ କଥା ନ

କହନ୍ତୁ । ତାଙ୍କୁ ମନେ ପକାଇ ମୋ' ଆଗରେ ଭାଙ୍ଗିପଡ଼ି ଆଖିରୁ ଦି'ଧାର ଲୁହ ଝରେଇ ନ ଦିଅନ୍ତୁ । ଦ୍ୱିତୀୟ ଉଦ୍ଦେଶ୍ୟ, ପ୍ରଭୁ କଥା ବଖାଣନ୍ତୁ । କାରଣ, ତାଙ୍କ କଥା ପଡ଼ିଲେ ସେ କୁଆଡ଼େ ବୈକୁଣ୍ଠ, ଯୋଗୀ ହୃଦୟ ଛାଡ଼ି ଯେଉଁଠି ତାଙ୍କ କଥା ପଡୁଥାଏ, ସେଇଠି ବିଜେ କରନ୍ତି । ସେଇଠି ଆସି ଆସନ ପାତି ଦିଅନ୍ତି ।

ଘରେ ମଣିମା ବିଜେ କରିବା ଦିନଠୁଁ ଚାଲିଲା ତାଙ୍କର ନୀତି । ଅନ୍ନ ଭୋଗଠାରୁ ଆରମ୍ଭ କରି ସାତଦିନେ ସାତରଙ୍ଗର ଲୁଗା ବେଶ ହେବାର ବ୍ୟବସ୍ଥା ହେଲା । ଘରର ଏକ ନମ୍ବରରେ ଥିବା କ୍ଷେତ୍ରବାସୀ ଠାକୁରେ ବିଜେ କରିବା ଦିନଠୁଁ ଦୁଇ ନମ୍ବର ହୋଇଗଲେ । ଠାକୁର ହୋଇଗଲେ ଘରର କର୍ତ୍ତା ।

୧୯୭୪ ମସିହା କଥା । କ୍ଷେତ୍ରବାସୀଙ୍କର ସବୁବେଳେ ଇଚ୍ଛା, ମଣିମା ବିଭିନ୍ନ ପ୍ରକାର ବିଭିନ୍ନ ରଙ୍ଗର ପଲିଷ୍ଟର ଲୁଗା ପଛେ ପିନ୍ଧନ୍ତୁ, ସବୁବେଳେ ଟିକ୍ ଟିକ୍ ହୁଅନ୍ତୁ । ଲାବଣ୍ୟ ଦେବୀ ବାଧା ଦିଅନ୍ତି, "ଦେଖ, ପଲିଷ୍ଟର ପିନ୍ଧିଲେ ଆମକୁ ଗରମ ହେଉଛି, ତାଙ୍କୁ ହେବନି ?"

କ୍ଷେତ୍ରବାସୀ ଶୁଣନ୍ତିନି । ସେଦିନ ଶୁକ୍ରବାର । ରସିକନାଗର ଧବଳଟଗର ପଲିଷ୍ଟର ପୋଷାକ ବଡ଼ସିଂହାର ବେଶରେ ପିନ୍ଧିଥାଆନ୍ତି । ତହିଁ ଆରଦିନ ଶନିବାର କଳାରଙ୍ଗ ପୋଷାକରେ ବସିବେ । ଲାବଣ୍ୟ ଦେବୀ କ'ଣ ଲେଖାଲେଖି କରୁଥାନ୍ତି । ହଠାତ୍ ପ୍ରାୟ ମଧ୍ୟରାତ୍ରିରେ ଆଖିପତା ପଡ଼ିଗଲା, ଠାକୁର ବ୍ୟସ୍ତ ହୋଇ କହୁଛନ୍ତି, "ଓଃ, କି ଗରମ !" ଏହା କହି ସିଂହାସନରୁ ଓହ୍ଲେଇ ପଡ଼ି ପୂର୍ବଦିଗକୁ ମୁହଁ କରି ବସିଲେ । ଲାବଣ୍ୟଦେବୀ ଚମକିପଡ଼ି ଦୌଡ଼ିଗଲେ, "ନା, ସେମିତି ସିଂହାସନରେ ବସିଛନ୍ତି ।"

ଠିକ୍ ହେଲା ଆଉ ପଲିଷ୍ଟର ପିନ୍ଧା ହେବନି, ମାତ୍ର ଗୋଟିଏ କଥାର ସମାଧାନ ହୋଇ ପାରିଲା ନି । ଭଡ଼ାଘର ଯୋଗୁଁ ଠାକୁରଙ୍କୁ ଠିକ୍‌ଭାବେ ପୂର୍ବମୁଖା କରି ବସାଇ ହେଉନି, ସେ ଉତ୍ତରମୁଖା ହୋଇ ବସିଲେ । ପୂର୍ବମୁଖା ହେବାର ଉପାୟ ନାହିଁ । ପୂର୍ବମୁଖା ବସିଲେ ଜଣେ ବସି ପୂଜା କରିପାରିବନି, ଲାବଣ୍ୟଦେବୀ ଓ କ୍ଷେତ୍ରବାସୀ ବସିବାର ଦିଗ ବଦଳାଇ ପାରିଲେନି ।

ସେଇ ୭୩ ମସିହାରେ ବ୍ରହ୍ମପୁରରେ ଲୀଳା କଲେ ଲୀଳାମୟ । ଲାବଣ୍ୟଦେବୀ ସବୁଦିନେ ପହୁଡ଼ ନୀତିରେ ପଲଙ୍କ ସଜାଡ଼ି ଶ୍ରୀଅଙ୍ଗରୁ ଫୁଲଟିଏ ଆଣି ପଲଙ୍କରେ ଥୋଇ ପହଡ଼ କରିଦିଅନ୍ତି । ମଶାରି ଖୋଷି ଦିଅନ୍ତି । ପୁଣି ସକାଳ ହେଲେ ମଶାରି ଖୋଲି ପଲଙ୍କ ଉଠେଇ ଦିଅନ୍ତି । କେତେଦିନୁ ସେଇ ଲୀଳା ଚାଲିଥିଲା କେଜାଣି ଲାବଣ୍ୟଦେବୀ ଲକ୍ଷ୍ୟ କରି ନ ଥିଲେ । ହଠାତ୍ ଦିନେ ସେ ସଚେତନ ହେଲେ, "ଏ କ'ଣ, ମୁଁ ଯେଉଁ

ଫୁଲଟିଏ ଶ୍ରୀଅଙ୍ଗରୁ ଆଣି ରତ୍ନପଲଙ୍କ ଉପରେ ଥୋଉଛି, ସେ ଫୁଲ କୁଆଡ଼େ ଯାଉଛି, କିଏ ନେଇ ଯାଉଛି ।" ମନ ସମାଧାନ କରିଦେଲା, "କୁଆଡ଼େ ଚାଲିଯାଉଥିବ ଏତେଟିକେ ଫୁଲ, ମୂଷା ନେଇ ଯାଉଥିବ, ଉଡ଼ି ଯାଉଥିବ" ଇତ୍ୟାଦି – ଇତ୍ୟାଦି । ମାତ୍ର ଲାବଣ୍ୟଦେବୀ ସତର୍କ ରହିଲେ । ଦୁଇ ତିନି ରାତି ଫୁଲ ଆଣି ଭଲଭାବେ ପଲଙ୍କରେ ରଖି ମଶାରି ଖୁବ୍ ଭଲଭାବେ ଖୋଷି ଦେଲେ ପଲଙ୍କ ଚାରିପଟେ । ମାତ୍ର ଯେଉଁ କଥାକୁ ସେଇ କଥା, ଫୁଲ ପୁଣି ଉଭେଇ ଯାଉଛି । ଲାବଣ୍ୟ ଦେବୀ ପାଖଆଖ ଲୋକଙ୍କୁ ପଚାରିଲେ । ଏ ଦିଗର ଲୋକ ଜଣେ ତାଙ୍କୁ ବୁଝାଇ ଦେଲେ, "ରସିକନାଗର ସେ । ଲକ୍ଷ୍ମୀ ତ ନାହାନ୍ତି ତାଙ୍କ ପାଖରେ । ପ୍ରଭୁ ଲକ୍ଷ୍ମୀଙ୍କ ପାଖକୁ ବିଜେ କରି ଯାଉଛନ୍ତି ।"

ଲାବଣ୍ୟ ଦେବୀ ନିଜେ ନିଜେ ସମାଧାନ କରି ବସିଲେ । ଗୁରୁବାର ଦିନ ଫରୁଆଟିଏ ରହି ମାଣ ବସେ ଲକ୍ଷ୍ମୀଙ୍କ ପାଖରେ ଓ ସେ ପୂଜା ହୁଅନ୍ତି । ମାଣ ତ ଲକ୍ଷ୍ମୀ । ଲାବଣ୍ୟଦେବୀ ନେଇ ଠାକୁରଙ୍କ ପାଦ ତଳେ ବାମ ପାଖରେ ମାଣ ବସେଇ ଦେଲେ, "ଏଥର ହେଲା, ମା' ବସିଲେ ପାଦ ତଳେ । ଆଉ ଯିବନି ତ ପଳେଇ ରାତିରେ ?"

ଫୁଲ ଥୋଇଲେ ସେଦିନ ରାତିରେ ଶ୍ରୀଅଙ୍ଗରୁ ଆଣି ପଲଙ୍କ ଉପରେ । ଆଉ ନାଗରବର କୁଆଡ଼େ ନ ଚଳନ୍ତି । ଫୁଲ ଆଉ ଉଭେଇ ଗଲାନି । ବଡ଼ଦେଉଳ ମାଜଣା ମଣ୍ଡପର ଗୀତଟିଏ ଲାବଣ୍ୟଦେବୀ କହୁଥିଲା ବେଳେ ମୋର ମନେପଡ଼ିଗଲା, "ଜଗବନ୍ଧୁ ଅଙ୍କେ ରତନ ପଲଙ୍କେ ପହୁଡ଼ିଲେ ସିନ୍ଧୁ ଜେମାଦେଈ..."

ବ୍ରହ୍ମପୁରରୁ କଟକ ବଦଳି ହେଲା ଉଭୟଙ୍କର ୧୯୭୮ ମସିହାରେ । ସେଇ ବର୍ଷ ମେ ମାସ ୨୬ ବା ୨୭ ତାରିଖର ଏ ଲୀଳା । କଟକ ଆସି ଘର ଖୋଜି ଠିକ୍ କରିବାକୁ ସ୍ୱାମୀ ସ୍ତ୍ରୀ ସ୍ଥିର କଲେ । ପୁଅ ରହିବ ଠାକୁରଙ୍କ ଦାୟିତ୍ୱରେ । ଯେଉଁଦିନ ଭୋର ଚାରିଟାରୁ ସେମାନେ ମଟରରେ କଟକଯିବାକୁ ସ୍ଥିର କଲେ, ତା' ପୂର୍ବ ରାତିରେ ଠାକୁରଙ୍କ ପହୁଡ଼ ହେବାକୁ ଡେରି ହେଲା । ରାତି ତିନିଟାରୁ ସ୍ୱାମୀସ୍ତ୍ରୀ ଉଠି ନିତ୍ୟକର୍ମ ସାରିଲେ । କ୍ଷେତ୍ରବାସୀ ମହାପ୍ରଭୁଙ୍କୁ ମୁଣ୍ଡିଆ ମାରିବାକୁ ଯାଇ ଦୁଆର ଖୋଲିବାକୁ ଚେଷ୍ଟା କଲେ, ମାତ୍ର ଏ କ'ଣ ! କବାଟ ଭିତରୁ ବନ୍ଦ ଅଛି ! ଯେତେ ଖୋଲିଲେ ଫିଟୁ ନାହିଁ ! ଲାବଣ୍ୟଦେବୀ ନିଜେ ଆସି ଚେଷ୍ଟା କଲେ, ଯେତେ ଖୋଲିଲେ କବାଟ ଖୋଲୁନି । ମନେ ପଡ଼ିଲା ଭିତରର ଛିଟିକିଣିଟା ବୋଧେ ପଡ଼ିଗଲା । କ୍ଷେତ୍ରବାସୀ ବ୍ୟସ୍ତ । ବସ୍‌ବେଳ ହୋଇଯିବ । ଟିକିଏ ଦର୍ଶନ ନ କରି ଯିବେ କେମିତି ? ଲାବଣ୍ୟଦେବୀଙ୍କ ମୁଣ୍ଡରେ ବୁଦ୍ଧି ଜୁଟିଲା । ମନେ ପଡ଼ିଲା, ଡେରିରେ ଗଲା ରାତିରେ ପହୁଡ଼ ହୋଇଛି । ତେଣୁ କବାଟରେ ହାତ ଦେଇ ଧୀରେ କହିଲେ, "ଓ ତା' ହେଲେ ଡେରିରେ ଶୋଇଛ ନା, ନିଦ ଭାଙ୍ଗୁନି ! ଉଠ, କବାଟ ଖୋଲ, ଆମେ ପରା କଟକ ଯିବୁ ମଣିମା, ଉଠ !" ଏଥର କବାଟରେ

ହାତ ଥୋଇ ଥୋଇ କବାଟ ଖୋଲିଗଲା । ଦୁହେଁ ମୁଣ୍ଡ ନୁଆଁଇଲେ ଲୀଳାମୟଙ୍କ ପାଦ ତଳେ ।

୧୯୭୯ ରେ କଟକରେ ଦୁଇ ତିନୋଟି ଲୀଳା ଦେଖାଇଥିଲେ ଚକାନୟନ । ଥରେ ଘରେ ବହୁତ କୁଣିଆ, ରୋଷେଇବାସ ଭିଡ଼ । ଲାବଣ୍ୟଦେବୀ ଆଉ ଠାକୁରଙ୍କ ପାଇଁ ଭଲ ଭାବେ ଭୋଗ ତିଆରି କରିପାରୁ ନ ଥାନ୍ତି । ସିଂହାରୀ ଶିଖାଇ ଦେବା ମତେ ଆଳୁସାରୁ ମିଶାଇ ଖେଚିଡ଼ି ଟିକେ କରି ଭୋଗ ଲଗାଇ ଦେଉଥାନ୍ତି । ଚାରିଦିନ ପରେ ମନକୁ ମନ ଭୋଗ ଲଗାଉ ଲଗାଉ କହିଲେ, "ସବୁଦିନେ ଏ ଖେଚେଡ଼ି ଆମକୁ ତ ଭଲ ଲାଗଡାନି । ତୁମକୁ ବି ଲାଗୁ ନ ଥିବ । ହେଲେ ମୁଁ କ'ଣ କରିବି ? ମୋର ଉପାୟ ନାହିଁ । ଘରେ ଏତେ କୁଣିଆ, ଚଳେଇଦିଅ ।"

ଠିକ୍ ସେଇଦିନ କାଶୀ ସିଂହାରୀ ଘରେ ଆସି ହାଜର । ଲାବଣ୍ୟଦେବୀ ପଚାରିଲେ "ହଠାତ୍ କ'ଣ ଆସିଲେ ? ବ୍ରହ୍ମପୁରରୁ ଫେରନ୍ତା ବାଟରେ ?"

– "ନା, ଆଜି ମୋତେ କହିଲେ ରତ୍ନସିଂହାସନ ଉପରୁ, 'ତୁ କାହିଁକି କଟକ ଆସୁନୁ । ତୁ ଆସିଲେ ଭଲ ଖାଇବା ପିଇବା ମୋର ହୁଏ । ତୁ ଥରେ ଆ, ବହୁତ ଦିନ ହେଲା ଆସିନୁ ।' ତେଣୁ ଚାଲିଆସିଲି ।"

ପ୍ରକୃତରେ ପୁରୀରୁ ସିଂହାରୀ ଆସିଲେ ଲାବଣ୍ୟଦେବୀ ଛ' ତିଅଣ ନଅ ଭଜା କରି ଠାକୁରଙ୍କୁ ଦିଅନ୍ତି ଓ ସମସ୍ତେ ତାକୁ ଖାଆନ୍ତି । ଖେଚେଡ଼ି ଖାଇ ଖାଇ ବିରକ୍ତ ହୋଇ ସିଂହାରୀଙ୍କୁ ପୁରୀରୁ ଡକାଇ ଆଣି ଲାବଣ୍ୟଦେବୀଙ୍କ ହାତରେ ପୁଣି ସିଠିମିଠି ଖାଇଲେ ପୁରୁଷୋତ୍ତମ ମହାରାଜ ।

ଅଶୀ ମସିହାର କଥା । କ୍ଷେତ୍ରବାସୀ କଟକ ଅରବିନ୍ଦ ନଗରରେ ଘର କରିବାକୁ ଜାଗାଟିଏ କିଣିଥାଆନ୍ତି ସିନା, ମାତ୍ର ଜାଗା ତାଙ୍କ ମନକୁ ପାଉ ନଥାଏ । ନିହାତି ନିକାଞ୍ଚନିଆ ଜାଗାଟା ଅରବିନ୍ଦ ନଗର । ତେଣୁ ଗୋଟିଏ ତିଆରିଘର କିଣିବାକୁ ସେ ଖୋଜୁଥିଲେ । ମାତ୍ର ଘରର କର୍ତ୍ତା ତ ଯେଉଁଠି ଚାହିଁବେ ଘର ସେଇଠି ହେବ । ଦିନକର କଥା, ଭଡ଼ାଘରେ ପୂଜା କରୁଛନ୍ତି ସକାଳୁ ସକାଳୁ କ୍ଷେତ୍ରବାସୀ ଜଗନ୍ନାଥଙ୍କୁ । ପ୍ରଭୁଙ୍କ ସ୍ପଷ୍ଟ ନିର୍ଦ୍ଦେଶ କାନରେ ପଡ଼ିଲା, "ଏତେଆଡ଼େ ମୁଣ୍ଡ ନ ପୂରେଇ ସେଇ ଅରବିନ୍ଦ ନଗରରେ ଘର କର ।" କ୍ଷେତ୍ରବାସୀ ନିର୍ଦ୍ଦେଶ ମାନିଲେ । ଗଢ଼ିଉଠିଲା 'ସାରସ୍ୱତ ନିଳୟ' ପ୍ରଭୁଙ୍କ କୃପାରୁ । ସେଇ ଘରର ଉପର ମହଲାରେ ପ୍ରଭୁ ବିଜେ କଲେ ମାଣବସା ଲକ୍ଷ୍ମୀ ମା'ଙ୍କୁ ଧରି ।

ଏମିତି ପ୍ରଭୁଙ୍କ ଲୀଳାଖେଳା ଚାଲିଲା ସାରା ପରିବାରରେ । ଲାବଣ୍ୟଦେବୀ ହଠାତ୍ କହି ଉଠିଲେ, "ଗୋଟିଏ ଦିନର ଅନୁଭବ ମୋର କିଛୁ ଭୁଲିବାର ନୁହେଁ । ସାନ

ଝିଅ କୁନି ମାମା ପେଟରେ ଥାଏ । ଦିନେ ସନ୍ଧ୍ୟାବେଳେ ଆଳତି କରିବା ବେଳେ ସ୍ପଷ୍ଟ ଦେଖିଲି, ଜଗନ୍ନାଥଙ୍କ ବାମ ଆଖିରୁ ଟର୍ଚ୍ଚ ଲାଇଟ୍ ଭଳି ଗୋଟିଏ ଆଲୋକ ସୁଅ ଆସି ମୋ ଦେହରେ ମିଶିଗଲା । ମୁଁ ଶିହରି ଉଠିଲି । ଏକ ଅପୂର୍ବ ଅଭିଜ୍ଞତା ତାଙ୍କୁ ଚହଲାଇ ଦେଲା । ସେ ଅଭିଜ୍ଞତା ପାଇବାକୁ ମୁଁ ପୁଣି ଥରେ ଆଳତିକୁ ବୁଲାଇଲି ବିଭିନ୍ନ ଦିଗରେ ଓ ବିଭିନ୍ନ ଢଙ୍ଗରେ । କାଳେ ପୁଣି ଆଲୋକର ପ୍ରତିଫଳନ ହେତୁ ସେଇ ଦୃଶ୍ୟ ଆଉଥରେ ଦେଖିହେବ । ମାତ୍ର ଫେରିଲାନି ସେ ଦୃଶ୍ୟ । ଆଜିଯାଏ ମୁଁ ଚେଷ୍ଟାକରି ସେ ଅଭିଜ୍ଞତା ଲାଭ କରିପାରିନି ।"

ଏତେ କଥା କହିବା ବେଳେ ଲକ୍ଷ୍ୟ କଲି, ତାଙ୍କ ଆଖିରେ ଲୁହ ନାହିଁ । ସେ କେମିତି ନିର୍ବେଦ ଓ ନିର୍ଲିପ୍ତ ହୋଇଉଠିଛନ୍ତି । ଦୁଇଟି କାରଣରୁ ଏହା ହୋଇପାରେ ବୋଲି ଭାବିଲି । ଗୋଟିଏ ହେଲା, ଲୁହର ଉତ୍ସ ହୁଏତ ଶୁଖିଯାଇଛି । ଅନ୍ୟଟି ହେଲା, ଦି' ଝିଅ ଲିପି ଓ 'କୁନି ମାମା' ଓ ପୁଅ 'ବବୁନି'କୁ ତାଙ୍କ ଜୀବନତରୀରେ ବସାଇ ତାଙ୍କ ଦେହରେ ପର ଲଗାଇବାକୁ ହେବ । ତେଣୁ ଆଉ ଭାଙ୍ଗିପଡ଼ିଲେ ଚଳିବନି । ଦି'ଟାଯାକ କାରଣ ବି ସତ ହୋଇପାରେ ।

ବଡ଼ଝିଅ 'ଲିପି' ପହଞ୍ଚିଲା । ତାକୁ ପଚାରିଲି ତା' ଅଭିଜ୍ଞତାରୁ ପଦେ କହିବାକୁ । ବାପାଙ୍କ ଅଭିଜ୍ଞତା ଯଦି ସେ କିଛି ଜାଣିଥିବ । ଲିପି ଆଖିରୁ ଲୁହର ଧାର ଛୁଟିଲା । ଆମକୁ ଲୁଚେଇ ଲୁଚେଇ ସେ ତା' ଆଖିରୁ ଝରିପଡୁଥିବା ଗୋଟିଏ ଧାର ପରେ ଆଉ ଗୋଟିଏ ଧାର ପୋଛି ପକାଉଥାଏ । ବୋଉକୁ କହିଲା, "କହିନୁ ବାସନା କଥା ?"

- କ'ଣ ବାସେ ? ମୁଁ ପଚାରିଲି ।

ଲାବଣ୍ୟଦେବୀ କହିଲେ, "ଶେଷ ଅବସ୍ଥାରେ ଆଉ ତ ପୂଜା କି ଦର୍ଶନ କରିବାକୁ ସେ ଉପରକୁ ଯାଇପାରିଲେନି, ହେଲେ ତାଙ୍କରି ଶେଯ ପାଖରେ ଆମେ ସବୁ ବସିଲାବେଳେ ମହାପ୍ରସାଦ, ଧୂପ ଓ ବିଭିନ୍ନ ଫୁଲର ମହକ ଆମକୁ ଜଣାପଡ଼େ । ଏପରିକି ସେ ଦିନେ କହିଲେ, "ଓଃ, କି ସୁନ୍ଦର ତୁଳସୀ ବାସନା । ଜାଣିପାରୁଛ । ଠାକୁରଙ୍କ ଦେହର ତୁଳସୀ ମହକୁଛି ।"

ଲିପି କହିଲା ଯେ, ସେ ଦେଖିଛି ଦେହ ଖରାପବେଳେ ଠାକୁରେ ହଳଦିଆ ଲୁଗା ପିନ୍ଧି ସବୁ ଘରୁ ବୁଲୁଛନ୍ତି । ଥରେ ତାକୁ ସ୍ୱପ୍ନରେ କହିଲେ, "ଦେଖ, ତୋ ପାଇଁ ମୋ ରତ୍ନସିଂହାସନ ପାଖରେ ଜାଗା ରଖିଛି ।"

ସେ ଜାଗା ପ୍ରକୃତରେ ତା' ପାଇଁ ନ ଥିଲା । ଥିଲା କ୍ଷେତ୍ରବାସୀଙ୍କ ପାଇଁ । ସେଥିପାଇଁ ଲିପି କହିଲା, "ଏଇ ଅଳ୍ପଦିନ ତଳେ ସ୍ୱପ୍ନ ଦେଖିଲି, ବାପା ହଳଦିଆ ଲୁଗା

ପକ୍ଷି କେମିତି ଗୋଟାଏ ବାବାଜୀ ବେଶରେ ଜଗନ୍ନାଥଙ୍କ ପାଖରେ ଅଛନ୍ତି ଆଉ କହୁଛନ୍ତି, "ଏମିତି କାହିଁକି ବ୍ୟସ୍ତ ହେଉଛ ? ସେତେବେଳେ ମୁଁ ତୁମ୍ଭମାନଙ୍କ ପାଖରେ ଥାଇ ଠାକୁରଙ୍କୁ ଜଣାଉଥିଲି ତୁମ ସମସ୍ତଙ୍କ ପାଇଁ, ବର୍ତ୍ତମାନ ତ ମୁଁ ଠାକୁରଙ୍କ ଖୁବ୍ ପାଖରେ ଅଛି ।"

କହିଚାଲିଲା ଲିପି, "ସବୁବେଳେ ମୋତେ ବାପା ଏବେ 'ବାବାଜୀ' 'ବାବାଜୀ' ଲାଗୁଛନ୍ତି ।"

ମୋତେ କିନ୍ତୁ ଏ ପରିବେଶରେ ଲାଗୁଥାଏ କ୍ଷେତ୍ରବାସୀ ସତେ ଯେମିତି ଘର ଭିତରେ ଅଛନ୍ତି । ଏଇ ଚାଲି ଆସିବେ, ପୂର୍ବଭଳି ପ୍ରଭୁଙ୍କ ଲୀଳା କହିବାକୁ ଅନୁନୟ କରିବେ । ବେଶି ଶୁଣିବେ ଆଉ କମ୍ କହିବେ ।

ଲକ୍ଷ୍ୟ କଲି 'ଲିପି' ପୁଣି ଲୁହ ପୋଛିଲା ଆଖିରୁ । ଲାବଣ୍ୟଦେବୀ ସ୍ଥିର, ନିଶ୍ଚଳ ଦୃଷ୍ଟି ଢାଳିଥା'ନ୍ତି ତାକୁ ଚାହିଁ । ପାରାଦୀପଗାମୀ ରେଳଗାଡ଼ିର ଶବ୍ଦ 'ସାରସ୍ୱତ ନିଳୟ'ର ଶାନ୍ତ ପରିବେଶକୁ ହଠାତ୍ ଅଶାନ୍ତ କରିଦେଲା ।

ପୁଅ ବାବୁନି ପହଞ୍ଚିଗଲା । କ୍ଷେତ୍ରବାସୀଙ୍କ ପନ୍ଦର ଷୋଳବର୍ଷର ଆତ୍ମଜ । ମୁହଁରେ କ୍ଷେତ୍ରବାସୀଙ୍କ ବିଭା ଫୁଟିଉଠୁଥାଏ । ଏଣୁ ତେଣୁ ଦି' ପଦ କଥାବାର୍ତ୍ତା ହେଲା ।

ସେଦିନ ଉପରକୁ ଗଲିନି ଦର୍ଶନ କରିବାକୁ ଅଣସରରେ ଥିବା ଅଣାକାର ପୁରୁଷଙ୍କୁ । ଲିପି, କୁନି ମାମା, ବାବୁନି, ଲାବଣ୍ୟଦେବୀ ବିଦାୟ ଦେଲେ । ବାହାରେ ଲତାଲୁଚା ଫାଟକ ପାଖରେ ରହିଥିବା ସ୍କୁଟରଯାଏ । ସେଦିନ କିନ୍ତୁ କ୍ଷେତ୍ରବାସୀ ମତେ ବଳେଇଦେବାକୁ ଆସି ନ ଥିଲେ ।

ଲାବଣ୍ୟଦେବୀଙ୍କ ଅନ୍ତରଛୁଆଁ ଅନୁରୋଧ ମୋ କାନରେ ସ୍ପଷ୍ଟ ହୋଇ ଗୁଞ୍ଜରି ଉଠୁଥାଏ, "ଆସିବେ, ଭଲ ଲାଗେ ଆପଣ ଆସିଲେ । ଠାକୁରଙ୍କ କଥା ଟିକେ ପଡ଼େ ତ ।"

ମୋ ମନ ଆକାଶରେ ଗୋଟିଏ ଦୃଶ୍ୟ ଫେରନ୍ତା ବାଟରେ ସ୍ୱଚ୍ଛ ସଜୀବ ହୋଇ ଉଠୁଥାଏ । ଆଜକୁ ସତଚାଳିଶ ବର୍ଷ ତଳେ ଭଦ୍ରକର ହାଇସ୍କୁଲ ପଛପଟ ନୁଆଁଣିଆ ଚାଳଘରେ ଜନ୍ମ ନେଇଥିବା ଭାଗ୍ୟବାନ ଶିଶୁଟି ଆଜି ସେପୁରରେ ମହାପ୍ରଭୁଙ୍କ ଅତି ନିକଟରେ ସ୍ଥାନ ପାଇଛି ।

ବାଟରେ ମନକୁ ଆସୁଥାଏ, ଲାବଣ୍ୟଦେବୀ ବୋଧହୁଏ ଠାକୁରଙ୍କୁ ଭୋଗ ଲଗାଇବାକୁ ପ୍ରସ୍ତୁତ ହେଉଥିବେ । କୁନିମାମା ଆଉ ବାବୁନି ବୋଧେ ବହି ଧରି ବସିଥିବେ ପଢ଼ା ଟେବୁଲ ପାଖରେ । ଲିପି ବୋଧେ ଆକାଶରେ ପ୍ରତ୍ୟେକ ତାରାକୁ ଖିନ୍‌ଭିନ୍ କରି ବାପାଙ୍କୁ ତା'ର ଖୋଜୁଥିବ, ଆଉ ଥରକୁ ଥର ଆଖିରୁ ଲୁହ ପୋଛିଦେଉଥିବ ।



# ଆଉ ଏକ କାବ୍ୟପୁରୁଷ ପ୍ରସଙ୍ଗ

ଡଃ ଶରତଚନ୍ଦ୍ର ପ୍ରଧାନ

ଆମ ସାଥୀ ଆଜି ସ୍ୱାତୀ କହିଯାଇଛନ୍ତି । ତାଙ୍କୁ ଖୋଜୁ ଖୋଜୁ ରାଜଶେଖର ମୋ ଦୃଷ୍ଟି ପଥରେ ପଡ଼ିଲେ । ରାଜଶେଖରଙ୍କ କାବ୍ୟ ମୀମାଂସାର କାବ୍ୟ ପୁରୁଷ ଓ ସାହିତ୍ୟ ବିଦ୍ୟା-ବଧୂ ପ୍ରସଙ୍ଗ ପଢୁଥିଲି । ସ୍ମୃତି-ବିସ୍ମୃତିର ଦୋଛକିରେ ଭେଟିଲି ଗୋଟେ ସମକାଳର ଦମ୍ପତିର ଇଚ୍ଛାବୃତ୍ତକୁ । ଜଣେ ଦିଶିଲେ କାବ୍ୟପୁରୁଷ ପରି କାବ୍ୟମନା ସରାଟିଏ । ଆଉ ଜଣେ ସାହିତ୍ୟବିଦ୍ୟାପରି କାବ୍ୟପୁରୁଷର ଅନୁରକ୍ତା ସାରସ୍ୱତ ସେବିକା ଦୁହେଁ ଛଅ / ସାତ ରୋଲ୍ କଲ କଲା ବେଳେ ସାତ ନମ୍ବରରେ ଏକତ୍ର ଠିଆ ହେଉଥିଲେ । ସେତେବେଳେ ଥିଲା ଥମ ଥମ ମନ; ଦମଦମ୍ ହୃଦୟ । ଅଲକ୍ଷିତରେ ନୀଡ଼ ରଚିବାର ଅନ୍ତର୍ନିହିତ ଅଭିଳାଷ । ନୀଡ଼ରେ ସମୟକ୍ରମେ ପକ୍ଷୀ ପକ୍ଷିଣୀ ମିଳିଲେ । ଶାବକ ତିନୋଟିବି ହେଲେ, କିନ୍ତୁ ଆଜି ପକ୍ଷୀଟି ଉଡ଼ି ଚାଲି ଯାଇଛି । ପକ୍ଷିଣୀଟିର ବିଳାପ-" ଦୁଇ ଜଣଙ୍କ ମଧ୍ୟରୁ ଯିଏ ଆଗ ଯିବ । ସେ ଯାଇ ପାରିବନି ।" କିନ୍ତୁ ଆଜି ଭାଗ୍ୟର ବିଡ଼ମ୍ବନାରେ ପକ୍ଷୀଟି ବନାମ କାବ୍ୟ ପୁରୁଷଟି ଉଭାନ । ସେ ଯାଇ ଚନ୍ଦ୍ର ଲୋକରେ । ହୁଏତ ଆକାଶର ତାରା ବନିଯାଇଛି । ଆମେ ସେଇ ତାରା କଳ୍ପ ସାରସ୍ୱତସେବୀ ପୁରୁଷଟିକୁ ଆଉ ଭେଟୁନି । ପକ୍ଷୀ ତୁ ଫେରି ଆସେ କହି ପକ୍ଷିଣୀଟି ଡାକିଲେବି, ସେହି ମଣିଷଟି ଆଉ ଆସୁନାହିଁ। କିନ୍ତୁ ମନ ଭିତରେ ଅବତାର ନେଉଛି ତା'ର ସାରସ୍ୱତ ନିଳୟ, ତା'ର ଗବେଷଣା ପରିଷଦର ଚୌହୁଦୀ ଭିତରେ କୁହୁର କୁହୁର ଧ୍ୱନିରେ ନିଥର ବେଳାରେ କୁଳାୟ ରହିଛି ।

କ୍ଷେତ୍ରବାସୀ ନାୟକ ଥିଲେ ଆମ ସମୟରେ ସମର୍ପିତ ସାରସ୍ୱତ ପୁରୁଷ । ସେ ସାରସ୍ୱତ କ୍ଷେତ୍ରରେ ନିଜର ସ୍ଥିତିକୁ ଦୃଢ଼ କରିବାକୁ ଚାହୁଁଥିଲେ । "ବଡ଼ କୁର କାଳ ବଡ଼ ଅବିଶ୍ୱାସୀ / ହାବୁଡ଼ି ଯିବ ସେ ନିମିଷକେ ଆସି" - କବି ବାଣୀଟି ମିଥ୍ୟା ନୁହେଁ । କାଳ ହଠାତ୍ ଆମ ଗହଣରୁ କ୍ଷେତ୍ରବାସୀଙ୍କୁ ଛଡ଼ାଇ ନେଲା । ଚନ୍ଦ୍ରଲୋକକୁ ପଠାଇ ଦେଲା । ହିନ୍ଦୁ ପୁରାଣ କହନ୍ତି - ପିତୃଲୋକର ନାମାନ୍ତର ଚନ୍ଦ୍ରଲୋକ, ମଣିଷ ପରଲୋକ ଗମନ ପରେ ତା'ର ଆତ୍ମା କୋଆଡ଼େ ଚନ୍ଦ୍ରଲୋକରେ କାଳକାଳ ଧରି ରହେ । ତା'ର ଜାଗତିକ ଆକାଂକ୍ଷା ପୂର୍ଣ୍ଣ ନ ହେଲେ ଅବତାର ନେଉଥାଏ । କ୍ଷେତ୍ରବାସୀଙ୍କ ଜୀବନର ଲକ୍ଷ୍ୟ ଥିଲା - ସାରସ୍ୱତ ମାର୍ଗଟିଏ ଗଢ଼ିବେ । ଗବେଷଣାର ମନ୍ଦିରଟିଏ ତୋଳିବେ । ତା'ର ଫଳଶ୍ରୁତି ସ୍ୱରୂପ ତ ଗବେଷଣା ପରିଷଦ ଓ ଏଷଣା ଗଢ଼ି ଉଠିଛି । ସେତ ଏହାର ମୂଳଦୁଆ ଓ ଗାନ୍ଥୁଣି ଗଢ଼ିଯାଇଛନ୍ତି ଓ ମନ୍ଦିରକୁ ବି ଠିଆ କରାଇଛନ୍ତି ।

ଯେତେବେଳେ ଗବେଷଣା ପରିଷଦ ଗଢ଼ାହେଲା, ସେତେବେଳେ ରେଭେନ୍ସାରେ ମୁଁ ବି ଥିଲି ଅଧ୍ୟାପନାରତ ଅଧ୍ୟାପକଟିଏ । ଅଧ୍ୟାପକ କ୍ଷେତ୍ରବାସୀ ନାୟକ ମୋର ସମଧର୍ମା । ଆମେ ଦେଖୁଥିଲୁ - ସ୍କୁଟରରେ ଦୁଇ ମୂର୍ତ୍ତିକୁ । ଆମ ଭିତରେ ଚୁପ୍‌ଚାପ୍ ହେଉଥିଲା । ଏ କୃଷ୍ଣ ଅର୍ଜୁନଙ୍କର ନନ୍ଦିଘୋଷ କୋଆଡ଼େ ଛୁଟିଛି; ଦେଖାଯାଉ । ପୁରାଣରେ ସିନା କୃଷ୍ଣ ଅର୍ଜୁନଙ୍କର ସାରଥି ଥିଲେ । ଆମ କାଳରେ ଅର୍ଜୁନକଳ୍ପ କ୍ଷେତ୍ରବାସୀ ହିଁ କୃଷ୍ଣଙ୍କୁ ସ୍କୁଟରରେ ବୁଲାଇ ସାରସ୍ୱତ ପଥ ଓ ଗବେଷଣା ରଥ ଚାଲୁଥିଲେ । କୃଷ୍ଣଚରଣ ଥିଲେ ଶ୍ରୀକୃଷ୍ଣଙ୍କ ପରି ମାର୍ଗଦ୍ରଷ୍ଟା । ଆଜି କୃଷ୍ଣ ଅଛନ୍ତି, ଅଥଚ ଅର୍ଜୁନକଳ୍ପ ରଥୀଟି ନାହିଁ । ସବୁଠି ଖାଁ ଖାଁଇଆଁ ପରିବେଶ । ଆମେ ଅଗ୍ରଜମାନେ ଅନୁଜର ସ୍ମୃତିତର୍ପଣ କରି ଚାଲିଛୁଁ । ଆଜି କିନ୍ତୁ ସୁଧାର ସୌନ୍ଦର୍ଯ୍ୟପ୍ରେମୀ ବନ୍ଧୁଟି ନାହିଁ, କିନ୍ତୁ ସାରସ୍ୱତ ସନ୍ତାନ ସନ୍ତତି ତାଙ୍କର ସ୍ମିତିକୁ ଜାହିର କରୁଛନ୍ତି ଓ କରୁଥିବେ ।

ସେ କବିତା ଲେଖିଛନ୍ତି, ଗଳ୍ପରେ ହାତ ଦେଇଛନ୍ତି, ଗବେଷଣା କରିଛନ୍ତି । ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବକୁ ଲୋଡ଼ିଛନ୍ତି । ସଂପାଦନା ଓ ସଂକଳନରେ ପରାକାଷ୍ଠା ଫୁଟାଇଛନ୍ତି । ତାଙ୍କର ସିଦ୍ଧି ଓ ସାଧନା ସଂପର୍କରେ ଚବିଶ ବର୍ଷ ଧରି ଚର୍ଚ୍ଚା ଚାଲିଛି । ଅଧିକାଂଶ ସମୟରେ- ସେହି ସାରସ୍ୱତ ପୁରୁଷଙ୍କର କୃତି ଓ କୃତିତ୍ୱର ରୋମନ୍ଥନ କରାଯାଇଛି । କ୍ଷେତ୍ରବାସୀଙ୍କ ସାରସ୍ୱତ ସିଦ୍ଧିର ଔଜ୍ଜଲ୍ୟ ଦେଖାଇବାକୁ ଯଥେଷ୍ଟ ଅବକାଶ ମୁଁ ପାଇନାହିଁ । ତେବେ ମୋ ମନରେ ଧାରଣା ରହିଛି- କ୍ଷେତ୍ରବାସୀ ଥିଲେ ଚିନ୍ତା ଚେତନାର କବି ମଣଷଟିଏ । ସେ ବିଜ୍ଞାନୀର ମନ, କବିର ହୃଦୟ ଓ ଚିତ୍ରକରର ଆଖି ନେଇ ସାରସ୍ୱତ କୃତିଗୁଡ଼ିକର ଆକଳନ କରୁଥିଲେ । ତାଙ୍କ ସମୀକ୍ଷା ପାଠକଲା ବେଳେ ନନ୍ଦକିଶୋରଙ୍କ କାବ୍ୟବାଣୀ ମନରେ ଉଜ୍ଜୀବିତ ହୋଇ ଉଠେ ।

"ଗ୍ରନ୍ଥାକାରଠାରୁ ସଦାବଦ୍ଧ ଆଲୋଚକ
ଦୁର୍ଲ୍ଲଭ ମାତ୍ରକ ଦେଶେ ଗ୍ରନ୍ଥର ପାଠକ
କରିବାକୁ ଗ୍ରନ୍ଥକାର ସ୍ଥାନ ନିରୂପଣ
ସମଗ୍ର ଗ୍ରନ୍ଥ ତାହାର କର ଅଧୟନ ।"

ଗ୍ରନ୍ଥକାର ଓ ସମାଲୋଚକ ଯେତେବେଳେ କ୍ଷେତ୍ରବାସୀଙ୍କ ସମାଲୋଚନା ପଢ଼େ ସେତେବେଳେ ଏହି କବିବାଣୀଟିକୁ ସେ ସ୍ମରଣ କରିଥିବା ପରି ମନେ ହୁଅନ୍ତି ।

ଏଇଠି ପୁଣି କହିରଖେ କ୍ଷେତ୍ରବାସୀ ମୁଖ୍ୟତଃ ଥିଲେ ସାହିତ୍ୟଶାସ୍ତ୍ର ଓ କାବ୍ୟକବିତାର ମୁଗ୍ଧ ପାଠକ । ତାଙ୍କର ଆଲୋଚନାମାନ ମୁଖ୍ୟତଃ କବି, କବିତା ଓ ସାହିତ୍ୟତତ୍ତ୍ୱ ଭିତ୍ତିକ । ତାଙ୍କର ଏବଂବିଧ କୃତି ସପର୍କରେ ଦୀର୍ଘ ତେଇଶ ବର୍ଷ ଧରି

ଆଲୋଚନା ହୋଇ ଆସିଛି । ବିଭିନ୍ନ ବିଦ୍ୱାନ କ୍ଷେତ୍ରବାସୀଙ୍କ ସାରସ୍ୱତ କୃତିର ଅନୁଶୀଳନ କରିଛନ୍ତି, ମୁଁ ବା କାବ୍ୟପୁରୁଷ କଛ କ୍ଷେତ୍ରବାସୀଙ୍କୁ କିପରି ବା କଳିବି । ତାଙ୍କ ଆଲୋଚନାରେ ମୁଁ ସତତ ଦେଖିଥାଏ ମା' ମନଟିଏ । ମା' ମନ ନେଇ ଯେକୌଣସି କୃତିର ବିଚାର କଲେ ଆଲୋଚ୍ୟ କୃତିଟି ହେୟ ମନେ ହୁଏନା । ବସ୍ତୁତଃ କ୍ଷେତ୍ରବାସୀଙ୍କ ବିଚାରରେ ଅଖ୍ୟାତ ସ୍ରଷ୍ଟାଠାରୁ ପ୍ରଖ୍ୟାତ ସ୍ରଷ୍ଟାଯାଏ ସମସ୍ତେ ସ୍ନେହ ଶ୍ରଦ୍ଧା ଲଭିଛନ୍ତି । ଏଣୁ ନାରୀକବି ଅନ୍ନପୂର୍ଣ୍ଣା ରଚନାଶ୍ରୀ ସଂପାଦିତ ହେବାସହ କବି ଚରିତ ରାଧାନାଥ ସହ ଗ୍ରନ୍ଥାବଳୀ ବି ସଂପାଦିତ ହୁଏ । ନାରୀକବି ଅନ୍ନପୂର୍ଣ୍ଣା : କବି ଚରିତ ଓ କାବ୍ୟ ଚର୍ଚ୍ଚା ପ୍ରକାଶ ପାଇଲା ପରେ ରେଡ଼ିଓ ବା ଦୂରଭାଷ ତରଫରୁ ଏ କୃତିଟିର ସମୀକ୍ଷା କରିବାକୁ ମୋତେ କୁହାଯାଇଥିଲା । ସେତେବେଳେ ମୁଁ ଦେଖିଥିଲି ମା' ମନ। କ୍ଷେତ୍ରବାସୀଙ୍କର ଅଖ୍ୟାତ କବୟିତ୍ରୀକୁ ପରିଚିତ କରାଇବା ପ୍ରଚେଷ୍ଟା । ସବୁଠି ସ୍ନେହ ପଖଳା ଯଶୋଦାର ମନ । ଅନ୍ନପୂର୍ଣ୍ଣାକୁ କବିଖ୍ୟାତି ଦେବାର ପ୍ରଚେଷ୍ଟା ପୁଣି କ୍ଷେତ୍ରବାସୀଙ୍କ ସଂପାଦନାରେ ଶ୍ରୀ ଜଗନ୍ନାଥ ପଦ୍ୟାବଳୀର ଚାରୋଟି ଭାଗ ପ୍ରକାଶପାଏ । ତାଙ୍କରି ସଂପାଦନାରେ ଗବେଷଣା ପରିଷଦର ପାଞ୍ଚଟି ଗ୍ରନ୍ଥ ପ୍ରକାଶ ପାଏ । କବି ବଳରାମ ଦାସଙ୍କ ବିରଚିତ ଶ୍ରୀରୋଢ଼ା ବା ରୁକ୍ମଣୀ ବିବାହ ଲେଖନ, ସର୍ଜନାତ୍ମକ ସାହିତ୍ୟ ସମୀକ୍ଷା, ଆଧୁନିକ ଆବବୋଧ, ଓଡ଼ିଆ ଭାଷା ଚର୍ଚ୍ଚାର ପରମ୍ପରା ଓ ତୁଳନାତ୍ମକ ସାହିତ୍ୟପରି ଗ୍ରନ୍ଥମାନ କ୍ଷେତ୍ରବାସୀଙ୍କ ଦ୍ୱାରା ସମ୍ପାଦିତ ।

କ୍ଷେତ୍ରବାସୀଙ୍କ ତିରୋଧାନ ପରେ 'କାବ୍ୟପୁରୁଷ କଥା' ଓ ଅନ୍ୟାନ୍ୟ ପ୍ରବନ୍ଧ ଶୀର୍ଷକ କୃତିଟି ପ୍ରକାଶ ପାଇଛି । ତାଙ୍କ ସାରସ୍ୱତ ସମୀକ୍ଷା ଭିତରେ ଏ କୃତିଟିରେ ଡକ୍ଟର ନାୟକଙ୍କ ଚିର ଚେତନାର ଅନୁପମ ପରିପ୍ରକାଶ ଘଟିଛି ।

ତେବେ ମୋଟାମୋଟି ଭାବରେ କହିବାକୁ ଗଲେ ମହାଭାରତ ବର୍ଣ୍ଣିତ ମାହିଷ୍ମତୀ ରାଜ୍ୟର ରାଜ କୁମାରୀପରି ଅଗ୍ନିହୋତ୍ର ଯଜ୍ଞର ଅନୁଷ୍ଠାନକାରୀ ଅଗ୍ନିସଂଚାରୀ ସତ୍ତା ଥିଲେ ସୁହୃଦ କ୍ଷେତ୍ରବାସୀ । ରାଜସୂୟ ଯଜ୍ଞାନୁଷ୍ଠାନ ବେଳେ ପାଣ୍ଡବ ଚାରିଭାଇ ଚାରିଦିଗକୁ ଦିଗ୍‌ବିଜୟରେ ଗଲେ । ସହଦେବ ଦକ୍ଷିଣ ଦିଗ ବିଜୟରେ ବାହାରିଲେ । ମାହିଷ୍ମତୀ ରାଜ୍ୟ ପଡ଼ିଲା । ଏଠାରେ ରାଜା ଥିଲେ ନୀଳ, ସେ ଅଗ୍ନିହୋତ୍ର ଯଜ୍ଞକରି ଅଗ୍ନିକୁ ସନ୍ତୁଷ୍ଟ କରିବା ସମର୍ଥ ହୋଇଥିଲେ । ତାଙ୍କର ତନୟା ଏ ଯଜ୍ଞରେ ଅଗ୍ନି ଆବାହନର ହେତୁ ଥିଲେ । ଋଷିମାନେ ଅଗ୍ନାୟ ସ୍ୱାହା ଅଗ୍ନି କହି ଯେତେ ମନ୍ତ୍ର ପାଠ କଲେ ମଧ ଅଗ୍ନି ସଂଚାର ହେଲା ନାହିଁ । ଶେଷରେ ରାଜକେମା ସୁନ୍ଦର ଓଷ୍ଠ ପୁଟରେ ଫୁଙ୍କି ଦେବାରୁ ଅଗ୍ନିସଂଚାର ହୋଇଥିଲା । ଏଥିରେ ସମବେତ ଯଜ୍ଞସ୍ରଷ୍ଟା ଓ ଦ୍ରଷ୍ଟା ବିସ୍ମିତ ହୋଇଥିଲେ ଓ ରାଜତନୟାକୁ ଏତାଦୃଶ ଅଗ୍ନିସଂଚାରର ହେତୁଟି କ'ଣ ବୋଲି ପ୍ରଶ୍ନ କଲେ ।

ତା'ରି ଉତ୍ତରରେ ରାଜଜେମାଙ୍କ ଓଠରେ ଧୀରେ ହସ ଫୁଟୁଥିଲା । ତାଙ୍କରି ମୁହଁରେ ଇନ୍ଦ୍ରଧନୁରେ ଆଭା । ସେ କହିଥିଲେ ସେ ଥିଲେ ପିଲାଦିନରୁ ଅଗ୍ନି ସୁହାଗିନୀ, ନିଆଁ ପାଖରେ ବସିବା, ଧୂଳିଖେଳରେ ବି ଏଠି ନିଆଁ ସେଠି ନିଆଁ କହି ପୋଇ ପୋଇ ଖେଳୁଥିଲେ । ପୋଇଲି ପରିବାରୀଏ କିମିତି ନିଆଁ ଜାଳି ମଣୋହି ପ୍ରସ୍ତୁତ କରୁଥିଲେ, ତାକୁ ନିରେଖିବା ହେତୁ ଅଗ୍ନିଦେବଙ୍କୁ ଅହେତୁକ ଭାବେ ଭଲପାଇ ବସିଥିଲେ । ଅଗ୍ନିଦେବ ବି ସେଇ ରାଜକୁମାରୀର ପ୍ରେମରେ ପଡ଼ିଯାଇଥିଲେ । ଅଗ୍ନି ହୋଇ ଯାଇଥିଲେ ତାଙ୍କର ପ୍ରେମମୁଗ୍ଧ । ଅନ୍ୟ କଥାରେ ନିରଳସ ସାଧନା ଓ ଅନ୍ୱେଷାହିଁ ତାଙ୍କୁ ଅଗ୍ନିର ସଂଚାରିକା କରି ପାରିଥିଲା । ଫଳରେ ସେ ମାହିଷ୍ମତୀ ରାଜ୍ୟର ଆକ୍ରମଣକାଳରେ ଅଗ୍ନିବଳୟ ରଚନା କରି ପାରୁଥିଲେ ।

ଆଜି ଆମର ସାରସ୍ୱତ ସେବୀଏ ଗଭୀର ନିଷ୍ଠାବାନ, ନିଖୁଣ ଅନୁଭୂତି ସମ୍ପନ୍ନ ନ ହେଲେ ଭଲ ସାହିତ୍ୟ ସର୍ଜନା କରିବା ସମ୍ଭବ ନୁହେଁ । କ୍ଷେତ୍ରବାସୀ ଧୀଷଣା ବଳରେ ସାରସ୍ୱତ ସେବୀର କା' ନେଇ ପୂରାଦମ୍‌ରେ ସାଧନା ଆରମ୍ଭକଲା ବେଳକୁ ଅଗ୍ନି ସଂବାହୀ ରାଜକୁମାରୀର କା'ନେଲାବେଳକୁ ଆମ ପାଖରୁ ବିଦାୟ ନେଲେ । ଓଡ଼ିଆ ସାରସ୍ୱତ ଜଗତ ଦୀପ୍ତିମାନ ସାରସ୍ୱତ ପୁରୁଷଟିଏ ବାଟକାଟି ପିତୃଲୋକକୁ ଚାଲିଗଲା । ଆମେ ସମସାମୟିକ ମଣିଷ ଓ ଉତ୍ତର ପୁରୁଷମାନେ କୁହୁରି କୁହରି ବିଳାପ କରୁଛୁଁ ସିନା, ଲାବଣ୍ୟଙ୍କ ମୁହଁରୁ ଲାବଣ୍ୟ କାଳକାଳ ପାଇଁ ହଜିଯାଇଛି । ବନ୍ଧୁବର୍ଗ ପଚାରୁଛନ୍ତି କହି ପାରିବ ସେହି କାବ୍ୟ ପୁରୁଷଟି କେଉଁ କ୍ଷେତ୍ରରେ ବାସ କରିଛି - ଚନ୍ଦ୍ରଲୋକରେ ନା ସ୍ମୃତିର ତଳାତଳ ମନ ଗହନରେ ?

ଆତ୍ମୀୟ ସ୍ୱଜନ ଓ ବନ୍ଧୁବର୍ଗ ତ କହୁଛନ୍ତି - 'ସ୍ମୃତିତ କଦାପି ନୁହେଁ ଫିଙ୍ଗିବାର, ପାରିଲେ ଫିଙ୍ଗି ସେ ଲଭନ୍ତା ନିସ୍ତାର' - ରାଧାନାଥ ଆତ୍ମୀୟ ସ୍ୱଜନଙ୍କ ସହ ସାରସ୍ୱତ ସେବୀଏ ସତତ କହୁଥିବେ - ହେ ସାରସ୍ୱତ ପୁରୁଷ ତୁମେ କେଉଁଠି ? ତୁମର ସ୍ନେହ ସୋହାଗ ବୋଳା ସାରସ୍ୱତ ନିଳୟ ଏବେ ତ ସାରସ୍ୱତ ପୀଠ ବନିଯାଇଛି । ତୁମେ ତ ମାହିଷ୍ମତୀପୁରର ରାଜଜେମା ପରି ଅଧର ପୁଟରେ ସାରସ୍ୱତ ଅଗ୍ନି ବଳୟ ରଚିଛ ! ଆମରି ସହଦେବ ମନ ତାକୁ ଅତିକ୍ରମ କରିବ କେମିତି ? କୁହ ବନ୍ଧୁ କୁହ - ତୁମ ଶ୍ରାଦ୍ଧ ବାସରରେ ଆମର ଶ୍ରଦ୍ଧା ଓ ସମ୍ମାନ ନିଅ ବନ୍ଧୁ ନିଅ ।

ଯୋବ୍ରା, ମଝିସାହି, କଟକ-୩



# କିଛି ସ୍ମୃତି : କିଛି ଦିବ୍ୟାନୁଭୂତି

ଶ୍ରୀ ଶ୍ରୀନିବାସ ଉଦ୍‌ଗାତା

**ସେ**ଭଳି ଗୋଟାଏ ଅଭିନବ କାଳର ମାଧୁରୀ-ଦର୍ଶନର ସୌଭାଗ୍ୟ ସତରେ ଆସିଛି ଆପଣଙ୍କର; ବା ତା'ର ରୋମାଞ୍ଚକର ଅନୁଭୂତିର ଦିବ୍ୟତା, ଅଲୌକିକ ଅକଳ୍ପନୀୟତା, ମନୋହାରିତା, ମଧୁମୟ ଏକାତ୍ମତା, ଅପ୍ରତିମ ଅନ୍ତରଙ୍ଗ ଭାବ... ଯେଉଁ ଉପଲବ୍ଧିରେ ସବୁ ଋତୁର ଫୁଲ ଏକା ସାଙ୍ଗରେ ଫୁଟେ, ଏକ ସମ୍ମିଳିତ ସୁବାସରେ ଅନ୍ତଃସ୍ଥଳ ଭରିଉଠେ, ଯେମିତି ଶ୍ରୀମନ୍ଦିର ଭିତରେ ପ୍ରଭୁର ସୂର୍ଯ୍ୟସମ ଆଭାବନ୍ତ ଶୀତଳ ସ୍ନେହପୂରିତ, ଆଶୀର୍ବାଦରେ ଉଛୁଳି ଉଠିଥିବା ବିଶାଳ ନେତ୍ରକୁ ଅପଲକ ଅନେଇ ରହିଥିବାବେଳେ ଚନ୍ଦନ-କର୍ପୂର-ଦୟଣା-ଧୂପର ସୁଗନ୍ଧରେ ଆମୋଦିତ ହୋଇଉଠେ ଚିତ୍ତ, ସେଭଳି ଗୋଟାଏ କାଳ, ଦୃଶ୍ୟରେ ହେଉ ବା ଅଦୃଶ୍ୟରେ ଠୁଳ ହୋଇ, ସାଜ-ଶୃଙ୍ଗାରରେ ସତେ ଆପଣଙ୍କ ଆଗରେ ଉଦେ ଓ ବିରାଜିତ ହୋଇଛି ?

କବିତାର ମନୋରମ ଆବୃତ୍ତିରେ ଗ୍ରୀଷ୍ମ ବି ବସନ୍ତାୟିତ ହୋଇଉଠେ; କବିମାନେ ଏକାତ୍ମତାରେ ଏକତ୍ରିତ ହୋଇ ରହିଥିଲେ ଆକାଶ ପଥରେ ଅଂଶୁମାଳୀ ଲୋଭ ସମ୍ବରଣ କରି ନ ପାରି ଦେଖିବା ଲାଗି, ପଲକ ସକାଶେ ହେଉ ପଛକେ ରହିଯାଆନ୍ତି, ସପ୍ତାଶ୍ୱଯୋଚିତ ସ୍ୟନ୍ଦନ ସ୍ଥିର ହୋଇଯାଏ, ସୂର୍ଯ୍ୟ-ଚନ୍ଦ୍ର ଯା'ର ନେତ୍ର, ତାକୁ ମଣ୍ଡି ଦେବାକୁ ଅସୀମ ଅନନ୍ତ ଆକାଶରେ ଅଗଣିତ ତାରାଫୁଲ କବିମାନେ ଫୁଟେଇ ଦିଅନ୍ତି ବୋଲି, ସେଇ କବିମାନେ ହିଁ ଘୋଷଣା କରିଛନ୍ତି ...ଆପଣ କିନ୍ତୁ ଆଦୌ ବିଶ୍ୱାସ କରି ପାରିବେ ନାହିଁ । ମୁଁ ଯଦି କହିବି ଯେ ଆମେ ସେଭଳି ଗୋଟାଏ କାଳ ବଞ୍ଚିଛୁ, ଦେଖିଛୁଁ, ଉପଭୋଗ କରିଛୁଁ ? ଜୀବେମ ଶରଦ ଶତମ୍, ଶୃଣୟାମ ଶରଦ ଶତମ୍ ବୋଲି ପ୍ରାର୍ଥନା କରିଥାଏ ମଣିଷ, ମାତ୍ର ଶତ-ଶରତର । ଆମ ଭିତରେ ବି ସେଭଳି ଏକ ନୀରବ ପ୍ରାର୍ଥନା ଥିଲା । ସେମିତି ଗୋଟାଏ ସମ୍ମିଳିତ ଶତ-ଶରତକାଳର । ପ୍ରଭୁ ଶୁଣି ନାହାଁ ।ସେଇ ଦାତା, ଯୋଗ୍ୟ-ଅଯୋଗ୍ୟର, ସମୀଚୀନ-ଅସମୀଚୀନର..

ଆମ ଲାଗି ହୁଏତ, ତା'ରି ଇଚ୍ଛାରେ ଏ ସମସ୍ତ ମଧୁମୟତାକୁ ଏକାଠି କରେଇ ଦେଇଥିବା ଅପୂର୍ବ କବି-ଚିତ୍ତର ଅଧିକାରୀ ପୁରୁଷଟି ହେଉଛନ୍ତି ଆମର ପରମପ୍ରିୟ କ୍ଷେତ୍ରବାସୀ ନାୟକ । ଦୃଶ୍ୟରେ ବିଦ୍ୟମାନ ହୋଇ ରହି ନଥିଲେ ହେଁ, ଚିତ୍ତ-ଫଳକରେ ଚିତ୍ରିତ ହୋଇ ରହିଛନ୍ତି, ରହିଥିବେ, ଆମେ ଥିବା ଯାଏଁ ।

ଶ୍ୟାମଳ ସୌମ୍ୟକାନ୍ତ, ତୃଷା-କ୍ଷୁଧାରେ ଆତୁର, ରମଣାତୁର, ଚୌର୍ଯ୍ୟକ୍ରିୟା ପଟୁ, ସ୍ମୟମାନ ଅଧର ଓ ସ୍ୱଚ୍ଛ-ନିର୍ମଳ-ପ୍ରେମପୂରିତ ଚିତ୍ତର ଅଧିକାରୀ ପ୍ରେମପାଗଳ ମଣିଷଟିଏ ଥିଲେ କ୍ଷେତ୍ରବାସୀ । ଯେତେ ବିଚିତ୍ର ଭଳି ମନେ ହେଉଥିବା ଅକଳ୍ପନୀୟ କଳ୍ପନା ଏବଂ ସେ କଳ୍ପନାର ସ୍ୱପ୍ନ ଅବଶ୍ୟ ସାକାର ରୂପବନ୍ତ ହେବ ବୋଲି ପ୍ରଗାଢ଼ ଆସ୍ଥା, ବିଶ୍ୱାସ, ଅଦମନୀୟ ଦମ୍ଭର ଗୋଟାଏ ମୂର୍ତ୍ତିମନ୍ତ ରୂପ ହେବେ କ୍ଷେତ୍ରବାସୀ । କେବେହେଲେ ତାଙ୍କର ଆଶା ଓ କଳ୍ପନାର କ୍ଷୁଧା-ତୃଷା ଶାନ୍ତ ହୁଏ ନାହିଁ, ସେ କଳ୍ପନାର ରମ୍ୟଭାବ ଏତେ ଅଧିକ ଯେ, ସମ୍ଭବ-ଅସମ୍ଭବର ସମ୍ଭାବନା ସଚେତନ ନ ହୋଇ ସେ ଚିତ୍ତରମଣର କଥାରେ, ନିଜକୁ, ଶୁଣିବାବେଳେ ଭୁଲିସାରିଥିବ ଶ୍ରୋତା; ଦୃଶ୍ୟ ହେଉଥିବା ବସ୍ତୁକୁ ସିନା ମଣିଷ ନାନା ଅକଳ୍ପନୀୟ ରୀତି ବା କୌଶଳରେ ଚୋରି କରେ, ସେ କିନ୍ତୁ ଜଣେ ଅପୂର୍ବ କୁଶଳୀ ଚୋର ଥିଲେ ଯେ, ଗୋପନରେ ରହିଥିବା ମନ, ଯା'ର ଅବସ୍ଥିତି ସମ୍ବନ୍ଧରେ, ତାକୁ ଧାରଣ କରିଥିବା ବ୍ୟକ୍ତି ବି ଜାଣେ ନାହିଁ, ଅଥଚ ସେ 'ମନ' ଟି ବାରମ୍ବାର ଭଲ ଥାଏ, ବିଗିଡ଼ି ଯାଉଥାଏ; ସେଇ ଗୁପ୍ତ ଧନକୁ ଅକ୍ଲେଶରେ ଚୋରି କରି ନେବାର ବିଚକ୍ଷଣ ସାମର୍ଥ୍ୟ ଥିଲା କ୍ଷେତ୍ରବାସୀଙ୍କର ।

'ଆତ୍ମପ୍ରକାଶନୀ' ଆମର ପ୍ରିୟତମା ସଂସ୍ଥା । ଏକାନ୍ତ ଆମର । ତାହା କ୍ଷେତ୍ରବାସୀଙ୍କର ମାନସପୁତ୍ରୀ । ସେ ହିଁ ତା'ର ସୂତ୍ରଧର ମଙ୍ଗୁଆଳ ସବୁ କିଛି । ଆମର ଅନ୍ତରାତ୍ମାରେ ଏହି ଅନୁଷ୍ଠାନ ବିଜୟା ଦଶମୀ ୧୯୬୭ ଦିନ ପ୍ରତିଷ୍ଠିତ ହେଲା । ଦଶହରା ଛୁଟି ଆରମ୍ଭ ହେବାର ଠିକ୍ ପୂର୍ବ ଦିନ । ଆମେ ଦୁହେଁ ତାମ୍ବୁଲ ପ୍ରିୟ, ସାଙ୍ଗରେ ସାନଭାଇ ଅଧ୍ୟାପକ ରାଜକିଶୋର ମିଶ୍ର, ସେ ବି । ମୁଁ ପାନ ଦୋକାନ ଠେଇଁ ଥାଏ ସେମାନେ ଦୁହେଁ ଆସି ସାଇକେଲରୁ ଓହ୍ଲେଇ ପଡ଼ିଲେ । ମୋ ଆଗକୁ ଆସି ପ୍ରଣାମ କଲେ । ସେ ଦୁହିଁଙ୍କ ସହିତ ମୋର ଆଦୌ ପରିଚୟ ନଥାଏ । କ୍ଷେତ୍ରବାସୀ ବାବୁ ଆଗ ଆସି ପରିଚୟ ଦେଲେ ଓ ବିନା କୌଣସି ଭୂମିକାରେ କହିଲେ - ' ଆମେ ଗୋଟାଏ ସଂସ୍ଥା କରିବା ।' ମୁଁ ତାଙ୍କୁ ଅନେଇଲି । ତାଙ୍କର ଭାବମୁଦ୍ରାରେ କି ଅପୂର୍ବ ଆକର୍ଷଣ ଥିଲା କେଜାଣି ମୁଁ ମଧ୍ୟ କିଛି ନ କହି କହିଲି - 'ହଁ' । କାହିଁକି କରିବା, କି ସଂସ୍ଥା, କେମିତି କରିବା ଆଦି କୌଣସି କଥାର ବିଚାର ନ କରି, କଥାଟି ପ୍ରାୟ ଯେମିତି ଆଗେଇଲା, କହୁଛି । ସେ କହିଲେ - 'ଏଇ ବିଜୟା ଦଶମୀ ଦିନ ତା'ର ଅନୁକୂଳ ହେବ । ଗୋଟାଏ ଛୋଟ ବହି ଛାପିବା । ମୁଁ ତାଙ୍କୁ ବିସ୍ମିତ ଆଖିରେ ଅନେଇ ପଚାରିଲି - ସେ କ'ଣ ସମ୍ଭବ ଆଜି ଓ ଦଶମୀ ଦିନକୁ ଛାଡ଼ିଲେ ମଝିରେ ମାତ୍ର ତିନୋଟି ଦିନ । ବଲାଙ୍ଗିର ଭଳି ଜାଗାରେ ଏତେ ଅଳ୍ପ ସମୟରେ, ପାଣ୍ଡୁଲିପି ବି ଯେତେବେଳେ ପ୍ରସ୍ତୁତ ହୋଇନାହିଁ, ବହିଟିଏ ଛାପି ଦେବା କ'ଣ ସମ୍ଭବ !

"ମୁଁ କେଢ଼େ ବହି କଥା କହୁଛି ଯେ ! ପ୍ରାୟ ଅଠଚାଳିଶ ପୃଷ୍ଠାର କବିତା ବହି ।"

ମୁଁ କ'ଣ କହିବି ଭାବୁଛି, ସେତେବେଳେ ସ୍ୱର୍ଗତ ପ୍ରକାଶ ରାଓ କେତେବେଳୁଁ ଆସି ସେଇଠି ଥିଲେ, ଆମର କଥା ଶୁଣୁଥିଲେ । ଅଦ୍ଭୁତ ମଣିଷ ରାଓ ବାବୁ, ଏକ ପରିପୂର୍ଣ୍ଣ କବି ମନର ଅଧିକାରୀ । ପ୍ରସାଦ ପ୍ରିଣ୍ଟର୍ସ ତାଙ୍କର ଛୋଟ ପ୍ରେସ । ଲେଟର ପ୍ରେସ । କମ୍ପୋଜିସନ୍, ଡିଷ୍ଟ୍ରିବ୍ୟୁସନ ବେଳକୁ ହାତ ତାଙ୍କର ଏମିତି ଚାଲୁଥିବ ଯେ ଆଙ୍ଗୁଠି ଦେଖିବା ସହଜ ନୁହେଁ । ତାହା ପୁଣି ଆପାତତଃ ପ୍ରମାଦରହିତ । ସେ ଆମର ଅନ୍ୟତମ ଆତ୍ମୀୟ ମିତ୍ର ପାଲଟିଗଲେ ପରବର୍ତ୍ତୀ କାଳରେ । ଗୋଟାଏ ମଜା କଥା, ରାଜକିଶୋରକୁ ସେ ଏମିତି କଲେ ଯେ ସେ ଇଂରାଜୀରେ କମ୍ପୋଜ କରିବା ଶିଖିଗଲା । ଖାଲି ଶିଖିଗଲା ନୁହେଁ ମୋର 'ପୂରବୀ' ସନେଟ ସଂକଳନର ଇଂରାଜୀ ଅନୁବାଦ ଚାଲିଲା । ଲେଖାରେ ନୁହେଁ, ସେଇ କମ୍ପୋଜିସନ ଟେବୁଲରେ ଆଉ ତା'ର ବାର ପୃଷ୍ଠା ପର୍ଯ୍ୟନ୍ତ ଛପା ବି ହୋଇଗଲା । ସେଇ ରାଓ ବାବୁ ବିଡ଼ି ନେବାକୁ ଆସି ସେଇଠି ଥିଲେ, କହିଲେ - 'କାହିଁ ହେବ ନାହିଁ ଆଜ୍ଞା, ଆପଣ କାଲି ସେ କବିତା ନେଇ ଆସନ୍ତୁ, ବାସ୍ତରୀ ଘଣ୍ଟାରେ ଅଠଚାଳିଶ ପୃଷ୍ଠା କରି ଦେଇ ପାରିବା ନାହିଁ ନା ?... ଆମେ ଏକା ସାଙ୍ଗରେ ଅବାକ୍ ହୋଇ ତାଙ୍କୁ ଅନେଇଲୁଁ । ... ସେ ପୁଣି କହିଲେ.... 'ଦେଖନ୍ତୁ, ଆପଣମାନେ ସେଇଠି ମୋ ପାଖରେ ଥିବେ, ପ୍ରୁଫ୍ ଦେଖି ଦେଉଥିବେ, ଚାରି ଚାରି ପୃଷ୍ଠା ହୋଇ ଛପା ହେବ ତ । ମୋ ଘର ଆଉ ପ୍ରେସ ତ ଗୋଟେ, ମଝିରେ ମଝିରେ କଫି କି ଟିକିଏ କ'ଣ ଚାଲିଥିବ । ... କାମ ହୋଇଯିବ ।'

ସେଇ 'ଆତ୍ମପ୍ରକାଶନୀ' ର ପ୍ରକାଶିତ ଆଦ୍ୟଗ୍ରନ୍ଥ; 'ମୁକ୍ତଦଶକ' । ଦଶ ଜଣ କବିଙ୍କର କବିତା ନେଇ ଗୋଟାଏ ଛୋଟ ଶାଳୀନ ପୁସ୍ତକ । ଶ୍ୟାମଭାଇଙ୍କୁ ଛାଡ଼ି ଦେଲେ ବାକି ସମସ୍ତେ ବଲାଙ୍ଗୀରରେ ଥିଲେ । ତାଙ୍କର କବିତା ଖାତା ମୋ ପାଖରେ ଥିଲା । 'ମୁକ୍ତଦଶକ' ରେ ରହିଛି, ଶ୍ରୀମତୀ ଆଶାଲତା ଉଦ୍‌ଗାତା, ଶ୍ରୀ ଚିନ୍ତାମଣି ବେହେରା, ଶ୍ରୀ ନିତ୍ୟାନନ୍ଦ ଆଚାର୍ଯ୍ୟ, ଶ୍ରୀମତୀ ରାଜେଶ୍ୱରୀ ପୁରୋହିତ, ଶ୍ରୀ ରାମପ୍ରସାଦ ପୁରୋହିତ, ଶ୍ରୀ ରାମକୁମାର ଅଗ୍ରୱାଲା, ଶ୍ରୀମତୀ ଲାବଣ୍ୟ ନାୟକ, ଶ୍ରୀ ଶ୍ୟାମସୁନ୍ଦର ଦାସ, ଶ୍ରୀ ଶ୍ରୀନିବାସ ଉଦ୍‌ଗାତା ଓ କ୍ଷେତ୍ରବାସୀ ନାୟକଙ୍କର କବିତା । ଯୋଗାଯୋଗ କରି କବିତାଗୁଡ଼ିକ ଆଣି ରାଜକିଶୋର ସହିତ ଆସି ମୋତେ ସାଙ୍ଗରେ ନେଇ ପ୍ରେସକୁ ଯାଇ କାମ ଆରମ୍ଭ କରେଇବା ଯାଏଁ ଏ ସମଗ୍ର ଜଗତ ଯେମିତି କ୍ଷେତ୍ରବାସୀ ବାବୁଙ୍କ ଲାଗି ଅବିଦ୍ୟମାନ ହୋଇ ରହିଥିଲା । ସେଦିନ ସେଇ ସାଙ୍ଗେ ସାଙ୍ଗେ କ୍ଷେତ୍ରବାସୀବାବୁ ଯାଇ ମିଠା ଆଣି

ଖୁଏଇବା, ପ୍ରକାଶବାବୁ ଘରେ ଇଡ୍‌ଲି, ଚଟଣୀ ଓ କଫି ଖୁଏଇବା ଏବଂ ତାଙ୍କ ସମେତ ଆମେ ଚାରି ଜଣ ନିର୍ବିବାଦରେ କ୍ଷେତ୍ରବାସୀ ବାବୁଙ୍କର ପ୍ରସ୍ତାବିତ ନାମ 'ଆତ୍ମପ୍ରକାଶନୀ'କୁ ସ୍ୱୀକାର କରି ନେବା, ଏଇନେ ବି ଦିଶି ଆସୁଛି । ଦଶହରା ଦିନ ଆମେ ଏକାଠି ହୋଇଥିଲୁ କ୍ଷେତ୍ରବାସୀ ବାବୁଙ୍କର ଗୁଗୁଡ଼ିପଡ଼ା ଭଡ଼ାଘରେ । ସେଇ ପାଖରେ ମୋର ଠିକ୍ ମନେ ପଡୁନାହିଁ । ଏକ ବାରଣ୍ଡାରେ ଚାଦର ଟଣା ହୋଇ ସମସ୍ତେ ସମବେତ ହୋଇଥିଲେ । କବିମାନଙ୍କ ବ୍ୟତୀତ ସେ ଆହୁରି କୋଡ଼ିଏ ପଚିଶ ଜଣଙ୍କୁ ଆମନ୍ତ୍ରିତ କରି ଥାଆନ୍ତି । ଶ୍ରୀମତୀ ନାୟକ ସବୁ ଆପ୍ୟାୟନର ବ୍ୟବସ୍ଥା କରିଥା'ନ୍ତି ନିଜେ । ରାଜକିଶୋର ପଣ୍ଡିତ । ଗୋଟାଏ ଘଟରେ ଆବାହିତା ଶ୍ରୀ ଦୁର୍ଗାଙ୍କର ପୂଜାର୍ଚ୍ଚନା ପରେ ତାଙ୍କରି ପାଦପଦ୍ମରେ ସମର୍ପିତ ସିନ୍ଦୂରାର୍ଚ୍ଚିତ 'ମୁକ୍ତଦଶକ' ର ଉନ୍ମୋଚନ .... ସେ ଆନନ୍ଦ ଓ ଉନ୍ମାଦନା ଅକଳ୍ପନୀୟ ।

ତା'ପରେ ଏମିତି ହେଲା ଯେ ଆମେ ତିନି ଜଣ ଦିନ ଭିତରେ ଅନ୍ତତଃ ଥରେ କୋଉଠି ହେଲେ ପରସ୍ପରକୁ ନ ଭେଟିଲେ କେଜାଣି କି ଅମୂଲ୍ୟ ରତ୍ନ କୋଉଠି ହଜେଇ ଦେଲାପରି ଅସ୍ଥିର ଅଶାନ୍ତ ହେବାକୁ ଲାଗିଲୁ । ତାହା ବୋଧହୁଏ 'ସାହିତ୍ୟ'ର ଧର୍ମ, 'ସହିତତା' ।

ସେହି ଭେଟାଭେଟି ଅର୍ଥହୀନ ନଥିଲା । ତା'ରି ଭିତରେ ନିରତ ଏକ ସର୍ଜନଶୀଳ କ୍ରମ ରହିଥିଲା । ତାହା କ୍ଷେତ୍ରବାସୀ ବାବୁଙ୍କର ଅଭିନବ କଳ୍ପନା ଓ ସେଇ ବିଚିତ୍ର ଚିତ୍ର-ରଚନାର ପୁନରାବୃତ୍ତି ଓଡ଼ିଆରେ ଅନ୍ତତଃ ହୋଇନାହିଁ । ଯୋଜନା ହେଲା, ଯେଉଁ କେତେ ଜଣ ଏକାଠି ହେବେ, ସେମାନଙ୍କ ଭିତରୁ ଜଣେ କେହି ତାଙ୍କର ମନକୁ କବିତାର ଗୋଟିଏ ଧାଡ଼ି କହିବେ ଓ ତାହା ଲିପିବଦ୍ଧ ହେବ, ତାଙ୍କ ପାଖରେ ଥିବା ଜଣକ ସେଇ ଧାଡ଼ିର ପାଦପୂରଣ କରି ଆଉ ଧାଡ଼ିଏ ମାତ୍ର କହିବେ ଓ ସେଇ କ୍ରମରେ କବିତାର ରଚନା ହେବ । କୋଉ ଦିନ ମୋ ଘରେ, କୋଉ ଦିନ ଏପରି କି ପାର୍କ ଘାସ ଉପରେ କିନ୍ତୁ ବେଶୀ ଥର କ୍ଷେତ୍ରବାସୀ ବାବୁଙ୍କ ଘରେ ଆମେ ସମସ୍ତେ ଏକାଠି ହୋଇ ତେଇଶଟି ସାନ୍ଧ୍ୟ ବୈଠକରେ ସେହି କବିତାଗୁଡ଼ିକ ଲେଖିଥିଲୁ । ଯେଉଁମାନେ ପ୍ରାୟ ନିୟମିତ ଭାଗ ନେଇଛନ୍ତି ସେମାନେ ହେଲେ ଶ୍ରୀ ଅକ୍ଷୟକୁମାର ନନ୍ଦ, ଶ୍ରୀ ରାଜ କିଶୋର ମିଶ୍ର, ଶ୍ରୀ ରାମକୁମାର ଅଗ୍ରୱାଲ, ମୁଁ ଏବଂ କ୍ଷେତ୍ରବାସୀ । ସବୁ କବିତାରେ କବିମାନଙ୍କର ପୂରା ନାଆଁ ଦେବା ସୁବିଧାଜନକ ନୁହେଁ ବୋଲି ଅ.ନ. - ରା.ମି. - ରା. ଅ. - ଶ୍ରୀ.ଉ.- କ୍ଷେ.ନା ରେ ସୂଚନା ଦେଇ ରଚନା ତିଥିର ଉଲ୍ଲେଖ କରି ପୁସ୍ତିକାଟି ସେଇ ୧୯୬୮ ସ୍ୱାଧୀନତା ଦିବସରେ ପ୍ରକାଶିତ ହୋଇଥିଲା । କେଉଁ କେଉଁ ଆସରରେ ହୁଏତ ପାଞ୍ଚ

ଜଣ ଏକାଠି ହେବା ସମ୍ଭବ ହୋଇନାହିଁ, ଅଥଚ ଆମ ସହିତ ଆସି ମିଳିତ ହୋଇଛନ୍ତି ଡକ୍ଟର ପ୍ରସନ୍ନ କୁମାର ମିଶ୍ର ଓ ଭାଇ ଶ୍ରୀ ସରୋଜ ରଞ୍ଜନ ମହାନ୍ତି। ସେହି ଅଭିନବ ପ୍ରୟାସର ପ୍ରଶଂସା ସେତେବେଳେ ପ୍ରବୁଦ୍ଧ ପାଠକମାନେ ମୁକ୍ତ କଣ୍ଠରେ କରିଥିଲେ । ଯୌଥ କବିତା ନାମରେ ସର୍ବପ୍ରଥମେ ସେହି ସଙ୍କଳନର 'ସୌମିତ୍ରୀର ତୃଷା' ଶୀର୍ଷକ କବିତାଟି ଶ୍ରୀ ରଜନୀକାନ୍ତ ଦାସ ତାଙ୍କର ସମ୍ପାଦିତ 'ନବପତ୍ର' ରେ ପ୍ରକାଶିତ କରିଥିଲେ; ପରେ ପରେ ସଂକଳନ ପ୍ରକାଶିତ ହେବା ପୂର୍ବରୁ, ସେଥିରୁ କିଛି 'ଝଙ୍କାର' ଆଦିରେ ବି ପ୍ରକାଶିତ ହୋଇଛି । ତେବେ ସେ ପୁସ୍ତକଟି ଏତେ ମୁଦ୍ରଣ-ପ୍ରମାଦପୂର୍ଣ୍ଣ ହୋଇ ପ୍ରକାଶିତ ହେଲା ଯେ, ଆମେ ତା' ଉପରେ ବିଶେଷ କିଛି ଚର୍ଚ୍ଚା-ଆଲୋଚନାଦିର ସାରସ୍ୱତ ପ୍ରୟାସ କରିବାକୁ କୁଣ୍ଠିତ ହେଲୁ । ବହିଟି ପ୍ରାୟ ବାଣ୍ଟି ଦେଇଛୁ । କୋଡ଼ିଏ ପଚିଶ ଖଣ୍ଡ ହୁଏତ ଆତ୍ମପ୍ରକାଶନୀ ସଂଗ୍ରହରେ ରହିଛି । ମୁଁ ଭାଇ ସରୋଜ ସାଙ୍ଗରେ ତା'ର ଏକ ଶୁଦ୍ଧ ସଂସ୍କରଣ ବିଷୟରେ କଥା ହୋଇଛି । ଏବେ ମୋର ଇଚ୍ଛା ସେଇ କବିତାଗୁଡ଼ିକର ଭାବାତ୍ମକ ଓ ରଚନାତ୍ମକ ମୂଲ୍ୟାଙ୍କନ ହେଉ । ସେହି ସଂକଳନର ଭୂମିକାରେ ତାହା ସଂଯୋଜିତ ହେଉ ।

ମୁଁ ଏଠାରେ ସେହି ଯୌଥ କବିତା ସଂକଳନର ପ୍ରାଗ୍‌ଭାଷ ଭାବରେ ଯାହା ଦେଇଥିଲୁଁ ତାକୁ ଉଦ୍ଧାର କରୁଛି । ତା'ର ଛନ୍ଦ ଓ ଭାବ-ଲାଳିତ୍ୟର ଆକଳନ ଯେ କୌଣସି ବିଜ୍ଞପାଠକ କରିପାରିବ ଓ ସେଇ ରଚନା-ପ୍ରକ୍ରିୟାରେ, ପ୍ରତି ଧାଡ଼ି ସ୍ୱତନ୍ତ୍ର କବିର ରଚନା ହୋଇଥିଲେହେଁ ଆତ୍ମୀୟ ଏକାତ୍ମତାର ସୁଗନ୍ଧ ଆପେ ଆପଣାଛାଏଁ ମୋହିତ କରିବ ବୋଲି ବିଶ୍ୱାସ କରୁଛି ।

.... "ଜଡ଼ର ଦେହେ ଜୀବନ ଦେଇ -<br>
ନିର୍ଜୀବନେ ପୁଲକ ଦେଇ<br>
ଅହଲ୍ୟା ଯେ ଗଢ଼ିଗଲି ମୁଁ,<br>
ବ୍ରହ୍ମା ମୁହିଁ, ମାଧୁରୀ ଦେଇ, ଚାତୁରୀ ଦେଇ<br>
ସରସ ରସେ ରସାଳ କରି ଆଙ୍କିଗଲି<br>
ପରାଣ ଭରି ଭରାଇ ଦେଲି<br>
ଆକାଶପରି ଛବି ତା'<br>
ଗୌତମ ହେ ସାଦରେ ଘେନ...<br>
କାନ୍ତ ଦାନେ<br>
ନମ୍ର ଏଇ ବନିତା" ....

ଏହି କବିତା ସଙ୍କଳନର ନାମକରଣ କରିଥିଲେ ପ୍ରଖ୍ୟାତ କବି, ଆଲୋଚକ, ବାଗ୍ମୀ ଅଧ୍ୟାପକ ଶ୍ରୀ ଚିନ୍ତାମଣି ବେହେରା 'ବିଫଳତା ସପକ୍ଷରେ', ଯାହା ଚିତ୍ରିତ ଠାଣିରେ ଏକ ସଫଳ ପ୍ରୟାସ ।

ଆତ୍ମପ୍ରକାଶନୀ କର୍ତ୍ତୃକ ଆୟୋଜିତ, ସମଗ୍ର ଭାରତବର୍ଷରେ ସାରସ୍ୱତ ସମାରୋହର ଅଗ୍ରଣୀ ସ୍ୱର ଯୁବ ଲେଖକ ସମ୍ମେଳନ (ପଞ୍ଚମ ଅଧିବେଶନ - ୧୯୬୯) ର ଅଲୌକିକ ଆୟୋଜନ ଲାଗି ତାଙ୍କର ଅପ୍ରତିଦ୍ୱନ୍ଦ୍ୱୀ ନିଷ୍ଠାପର ସମର୍ପିତ ଭୂମିକା ସମ୍ବନ୍ଧରେ ଏହି ସ୍ମୃତିଚାରଣରେ କିଛି ହେଲେ କହିବି ନାହିଁ । କାରଣ ତାହା ଏକ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ପର୍ଯ୍ୟାୟ । ତା' ଉପରେ ଏକ ସ୍ୱତନ୍ତ୍ର ଲେଖା ପ୍ରସ୍ତୁତ କରିବି ଭାବୁଛି, ଆଗାମୀ ପ୍ରକାଶନ ନିମନ୍ତେ । ତାହା ସହିତ ଏହି ସ୍ମୃତିଚାରଣରେ ମୁଁ ତାଙ୍କର ସାରସ୍ୱତ ସର୍ଜ୍ଜନାର ମୂଲ୍ୟାଙ୍କନ ବି କରିବାକୁ ଯାଉନାହିଁ । କାରଣ ତାହା ମଧ୍ୟ ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ । ଆଲୋଚନା କରି ବସିଲେ, ତା'ର ଭାବ-କଳ୍ପ, ଉତ୍ତରିତ ସମର୍ପଣ ଓ ବିଲକ୍ଷଣ ଉପମା-ବିନ୍ୟାସ ଭିତରେ ସେହି ଈର୍ଷା, ଅସୂୟାରହିତ, ତଦ୍‌ଗତପ୍ରାଣ, ନିରଳସ ଦିବ୍ୟ କାବ୍ୟ-ପୁରୁଷର କୃତି ଓ କୃତିତ୍ୱ ସହିତ ପ୍ରଭାବନ୍ତ ବ୍ୟକ୍ତିତ୍ୱ ପ୍ରତି ହୁଏତ ପ୍ରଗଲ୍‌ଭ ନ ହୋଇ ନ୍ୟାୟ ଦେଇ ପାରିବି ନାହିଁ ।

ତେବେ ଗୋଟିଏ କଥା, କ୍ଷେତ୍ରବାସୀ ବାବୁ ଜଣେ ବୈରାଗୀ ପୁରୁଷ । ସାଧାରଣତଃ ଆମେ ସେଇ ମଣିଷକୁ ବୈରାଗୀ ବୋଲି କହିଥାଉଁ ଯେ ଆପଣାର ମାୟା ମୋହରୁ ଦୂରରେ ରହି ସେହି ପରମପୁରୁଷ ଲାଗି ପାଗଳ ହୋଇ ରହିଥାଏ । ସତ୍ୟ ବ୍ରହ୍ମଦର୍ଶନର ଅନୁରାଗରେ ଆତୁର ହୋଇ ରହିଥାଏ । କେବେହେଲେ ସୀମାର ସଂକୋଚ ଭିତରେ ଆବଦ୍ଧ ହୋଇ ରହିବାକୁ ନ ଚାହିଁ ଅସୀମ-ଅନନ୍ତକୁ ଲୋଡ଼ିଥାଏ । ଆପଣାର ଚିନ୍ତା ଛାଡ଼ି ଜଗତ ଲାଗି ବାୟା ହେବାକୁ ମନ କରେ । ବିପୁଳ ଓ ବିରାଟ ତା'ର ଅତି ପ୍ରିୟ । ଏ ସବୁକୁ ନେଇ ବିଚାର କଲେ ଜଣେ ସଂସାରୀ ଅନୁରାଗୀ ମଣିଷଠାରୁ ସେ ଅଧିକ ଅନୁରାଗୀ । କାରଣ ଆମ ଆଖିରେ ଅନୁରାଗୀର ଅନୁରାଗ ଯେତେବେଳେ ଦିଶେ ତାହା ଜଣା ଅଧିକେ ସମ୍ଭବ ହେବାର ସମ୍ଭାବନା ରହିଛି । ମାତ୍ର ବୈରାଗୀର ଅନୁରାଗ ପୂର୍ତ୍ତି କେବେ ହେଲେ ହୋଇ ନାହିଁ... ଶେଷ ଇଚ୍ଛାଟି ତା'ର କେବେହେଲେ ଫୁଲ ହୋଇ ଫୁଟେ ନାହିଁ; ବାକି ରହିଯାଏ । ସେଇ ଅପର ପ୍ରଜାପତିର ଦିବ୍ୟ ଆତ୍ମା ସେଇ ଆନନ୍ଦ ଓ ପରମପ୍ରିୟର ସନ୍ନିଧିଲାଗି ଆଉ ଏକ ମହନୀୟ ସାଧୁ ଜୀବନ ଅବଶ୍ୟ ପ୍ରାପତ ହୋଇଥାଏ ।

ମୋର ଏହା କହିବାର ଅଭିପ୍ରାୟ ହେଲା, ସେହି ପ୍ରଚଣ୍ଡ ପ୍ରତିଭାଧାରୀ ସାରସ୍ୱତ

ପୁରୁଷଟି, ଆପଣା ଲାଗି ଯେତେଯାହା କରିଗଲା, ତା'ଠାରୁ ବହୁ ଗୁଣରେ ସେ ଅନ୍ୟଲାଗି କରିଗଲା । ଆପଣାର ସ୍ୱାର୍ଥରେ ବୁଡ଼ି ନ ଯାଇ ସେ ବୃହତ୍ତମ ସାରସ୍ୱତ ସ୍ୱାର୍ଥ ନିମନ୍ତେ ଅଧିକ ସାଧନା କଲା, ତପସ୍ୟା କଲା ।

ସେହି ଅନାସକ୍ତିରେ ଆସକ୍ତ ଯୋଗୀର ଜୀବିକା ତ ଗୋଟାଏ ସାଧାରଣ କଥା । ପାଠ ପଢ଼ିବା, ପ୍ରତିଷ୍ଠିତ ହେବା, ପଢ଼ିବା ପଢ଼େଇବା ସେଇ ଜୀବିକାର କଥା । ମାତ୍ର କ୍ଷେତ୍ରବାସୀଙ୍କର ଜୀବନ ଗୋଟାଏ ଅଲଗା କଥା । ଅତ୍ୟନ୍ତ ସ୍ନେହୀ, ବିନୟୀ । ସେହି କାରଣରୁ ତାଙ୍କର ସାଙ୍ଗଠନିକ ଭୂମିକା ଅନବଦ୍ୟ । ଆପଣା ସର୍ଜନଶୀଳ ରଚନା ଭିତରେ ବଲାଙ୍ଗୀରରେ ଥିବାବେଳେ ପ୍ରକାଶିତ ଗଳ୍ପ ସଂକଳନ 'ଫୁଲର କବର' ୧୯୬୭ ଓ କବିତା ସଂକଳନ 'ଉଚ୍ଚାରଣ' - ୧୯୬୯ ପରେ ସେ ଯାହା କିଛି ବି ଲେଖିଛନ୍ତି ତାହା ପ୍ରବନ୍ଧ - ଆଲୋଚନା ଓ ତତ୍ତ୍ୱ-ବ୍ୟାଖ୍ୟାନ । ସେହି ପର୍ଯ୍ୟାୟରେ ବଲାଙ୍ଗୀରରେ ଅବସ୍ଥାନ କାଳରେ ରଚିତ ଓ ପ୍ରକାଶିତ 'ଅଳଙ୍କାର ଓ ଅଳଙ୍କାର ତତ୍ତ୍ୱ' (୧୯୬୮), 'ସାହିତ୍ୟର ସାମାନ୍ୟ କଥନ' (୧୯୭୦), 'ସାହିତ୍ୟିକ ବୀକ୍ଷା ଓ ନିରୀକ୍ଷା' (୧୯୭୦), 'କବି ନୀଳକଣ୍ଠ' (୧୯୭୨), 'କବି ଚରିତ : ରାଧାନାଥ' (୧୯୭୯) ପାଇଁ ପ୍ରାସଙ୍ଗିକ ସୂଚନା ଦେବା ନିଷ୍ପ୍ରୟୋଜନ । ଛାତ୍ର ଜୀବନରେ 'ରଶ୍ମି' ନାମକ ଏକ ସାହିତ୍ୟ ପତ୍ରିକାର ସମ୍ପାଦନା ଏବଂ ପରେ ୧୯୬୩ ରେ 'ଶତରୂପା' ସମ୍ପାଦନା ଉଲ୍ଲେଖନୀୟ । ସେହି ସମୟରେ ସେ ଭଦ୍ରଖ ଲେଖକ ସମ୍ମେଳନର ଆୟୋଜନ କରିବାରେ ପ୍ରତିଷ୍ଠାତା ସମ୍ପାଦକ ଭାବରେ ସଫଳତାର ସହିତ କାର୍ଯ୍ୟ ନିର୍ବାହ କରିଥିଲେ ।

ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ସେ ତାଙ୍କର ଗବେଷଣା ନିବନ୍ଧ 'ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ' ନିମନ୍ତେ ଡକ୍ଟରେଟ୍ ଉପାଧି, -ଭୂଷିତ ହୋଇଥିଲେ । ଏହି ଗବେଷଣା କାର୍ଯ୍ୟ ସେ ତାଙ୍କର ଶିକ୍ଷାଗୁରୁ, ପ୍ରବୀଣ ସାହିତ୍ୟିକ ଡକ୍ଟର କୃଷ୍ଣଚରଣ ବେହେରାଙ୍କର ତତ୍ତ୍ୱାବଧାନରେ କରିଥିଲେ ଯାହା ଉଚ୍ଚପ୍ରଶଂସିତ ହୋଇଥିଲା । ଏହା ଗ୍ରନ୍ଥାକାରରେ ପ୍ରକାଶିତ ହୋଇସାରିଛି । ଏତଦ୍‌ବ୍ୟତୀତ, ପ୍ରକାଶିତ ସମୀକ୍ଷା ବିଶ୍ଳେଷଣ, ମନୋଗ୍ରାଫ୍, ସଂପାଦନା ସଂକଳନ କାର୍ଯ୍ୟରେ ତାଙ୍କର ମନନଶୀଳ ଅଧ୍ୟୟନ, ତାର୍କିକତା, ଶାଣିତ ଦୃଷ୍ଟିକୋଣ, ପାଣ୍ଡିତ୍ୟ, ଅଧ୍ୟବସାୟ ଆଦିର ନିଦର୍ଶନ ସ୍ୱରୂପ ପ୍ରକାଶିତ 'ଭାରତୀୟ କାବ୍ୟତତ୍ତ୍ୱ' (ସାହିତ୍ୟ ତତ୍ତ୍ୱ), 'କବି ଅର୍ଜୁନ ଦାସ' (ମନୋଗ୍ରାଫ୍), ଆଲୋଚନା ପତ୍ର', 'କବି ଓ କାମିନୀ' (ସମୀକ୍ଷାତ୍ମକ ଆଲୋଚନା), 'ନାରୀକବି ଅନ୍ନପୂର୍ଣ୍ଣା' (ମନୋଗ୍ରାଫ୍), 'ଫକୀରମୋହନ କଥାସାହିତ୍ୟ', ଅନ୍ନପୂର୍ଣ୍ଣା ରଚନାଶ୍ରୀ', 'ସାଂପ୍ରତିକ ସାହିତ୍ୟ ସମ୍ପର୍କରେ', 'ପ୍ରବନ୍ଧ ଓ ପ୍ରାବନ୍ଧିକ', 'ପ୍ରବନ୍ଧ ବିଚିତ୍ରା', 'କାବ୍ୟ ଓ କବିତା' ତଥା ଚାରିଭାଗରେ

'ଜଗନ୍ନାଥ ପଦ୍ୟାବଳୀ' ର ସମ୍ପାଦନା ଉଲ୍ଲେଖନୀୟ । ମୋର ଜାଣିବାରେ ପଦ୍ୟାବଳୀର ଆଉ ଦୁଇ ଭାଗର ସମ୍ପାଦନା କାର୍ଯ୍ୟ ବି ସେ କରିଥିଲେ । ସମକାଳୀନ ରଚନାର କିଛି ଉଲ୍ଲେଖନୀୟ ଉଦାହରଣ ନେବାର ଅଭିପ୍ରାୟ ଥିଲା । ସେ ଗ୍ରନ୍ଥର ସ୍ଥିତି ସମ୍ବନ୍ଧରେ ମୁଁ ଅନଭିଜ୍ଞ ।

ଅନେକ ପରିଶୋଧନ ଓ ସମୀକ୍ଷାତ୍ମକ ବିଶ୍ଳେଷଣର ସଂଯୋଜନାରେ ସେ ସଂକଳିତ କରିଥିବା ବୃହଦାକାର 'ରାଧାନାଥ ଗ୍ରନ୍ଥାବଳୀ' ୧୯୭୫ ରେ ପ୍ରକାଶିତ ହୋଇଥିଲା । ଏହାଛଡ଼ା, ସେ ଅନେକ ଆଲୋଚନାଚକ୍ର, ସଂପାନ, ସାରସ୍ୱତ ସମାରୋହରେ ଅଂଶଗ୍ରହଣ କରି ବହୁବିଧ ସାରସ୍ୱତ ଗୂଢ଼ ପ୍ରସଙ୍ଗ ଉପରେ ଜ୍ଞାନୋଦ୍ଦୀପ୍ତ ଆଲୋଚନା କରିଛନ୍ତି । ତାଙ୍କର ବହୁ ପ୍ରବନ୍ଧ 'ଡଗର', 'ସପ୍ତର୍ଷି', 'ନବରବି' ପ୍ରଭୃତି ସଂଭ୍ରାନ୍ତ ସାରସ୍ୱତ ପତ୍ରିକାମାନଙ୍କରେ ପ୍ରକାଶିତ ହୋଇଛି । ସବୁ କିଛିକୁ ଅନୁଶାସିତ ଓ ଶୃଙ୍ଖଳିତ ରୀତିରେ, ପ୍ରତି କଥାକୁ ଲିପିବଦ୍ଧ କରି ରଖିବାର ଅଭିପ୍ରାୟରେ ତଥା ତତ୍ତ୍ୱଦର୍ଶୀ ଆଲୋଚନାର କ୍ରମ ଅତୁଟ ରଖିବା ଇଚ୍ଛାରେ ସେ ବହୁ ତତ୍ତ୍ୱବିଦ ବନ୍ଧୁଙ୍କୁ ଏକାଠି କରି ପ୍ରତିଷ୍ଠା କରିଥିବା 'ଓଡ଼ିଆ ଗବେଷଣା ପରିଷଦ' ତଥା 'ଏଷଣା' ସାରସ୍ୱତ ମୁଖପତ୍ରର ପ୍ରକାଶନ ଆଦି ଜିଜ୍ଞାସୁ, ଗବେଷକ, ଛାତ୍ରମାନଙ୍କ ଲାଗି ଉପାଦେୟ ଓ ଆଦରଣୀୟ ସାମଗ୍ରୀ ହୋଇ ରହିଥିବ । ମାତ୍ର ଜଣେ ବିଦ୍ୱାନ ଭିତରେ ପ୍ରାଚୀନ ଓ ଅର୍ବାଚୀନ ତଥ୍ୟ ଓ ତତ୍ତ୍ୱର ଏକ ସମୃଦ୍ଧ ଗନ୍ତାଘର ରହିଥିଲା, ତାହା ବିସ୍ମୟାଭିଭୂତ କରିଥାଏ ।

କ୍ଷେତ୍ରବାସୀ ବାବୁଙ୍କର ପରମାରାଧ୍ୟ ଶ୍ରୀ ଜଗନ୍ନାଥ । ନିଖିଳ ଜଗତର ଅଧୀଶ୍ୱର । କରୁଣାବରୁଣାଳୟ ପ୍ରଭୁ । କେଡ଼େ ଦାତା, କେଡ଼େ ପ୍ରୀତି କାଙ୍ଗାଳ ନୁହେଁ ସେ । ତା' ପ୍ରତି ପ୍ରକୃତରେ ଆସ୍ଥାବନ୍ତ ମଣିଷ ଜଗତକୁ ଛାତିରେ ଭିଡ଼ି ଧରିବାକୁ ଆତୁର ନ ହୋଇ କରିବ ବା କ'ଣ ?

ନିତାନ୍ତ ସରଳ ମଣିଷଟିଏ କ୍ଷେତ୍ରବାସୀ ବାବୁ । ଅନୁରୂପା ସହଧର୍ମିଣୀ । ଆମେ ଏ ଦୁହିଙ୍କୁ ଅନେକ ପ୍ରକାର ହଇରାଣ ହରକତ କରିଛୁଁ । ବେଳ ଅବେଳରେ କିଛି ଭୋଜନର ବ୍ୟବସ୍ଥା କରେଇବା, ଆଗାମୀ ଯୋଜନାର ବରାଦ ଦେଇ ଯିବା ଏକ ସାଧାରଣ କଥା । ଆମମାନଙ୍କ ଭିତରେ ସେତେବେଳେ ମୁଁ ଏବଂ କ୍ଷେତ୍ରବାସୀ ବାବୁ ହିଁ ବିବାହିତ । ଆମ ଘରେ ବା ତାଙ୍କ ଘରେ ମଝିରେ ମଝିରେ କିଛି ନା କିଛି ଅବଶ୍ୟ ଚାଲିଥିବ । ପ୍ରଚୁର ଲାଭ ମିଳିଥାଏ ଏ ଅପୂର୍ବ ପ୍ରୀତିରୁ । ରାଜକିଶୋରକୁ ଆପାତତଃ ଶ୍ରୀମତୀ ଆମରି ଆବାସରେ ଭୋଜନଲାଗି ବାଧ୍ୟ କରେଇଥିଲେ । ପ୍ରତିଦିନ ଅବଶ୍ୟ ଭେଟ ହେବ । ରାଜକିଶୋର କଟକ କି ଆଉ କୁଆଡ଼େ ଯାଇଥିବ । ସେ ଅନୁପସ୍ଥିତ

ବୋଲି ଜାଣିଥିଲେ ହେଁ, ଭୁଲି ଯାଇ ଶ୍ରୀମତୀ ବିଳମ୍ବିତ ରାତି ଯାଏଁ ଅପେକ୍ଷା କରି ରହିଥିବେ । ଆଜି ପଇଁତିରିଶ ବର୍ଷ ପରେ ମଧ୍ୟ ଆମର ଗୋଟାଏ ପରିବାର । ମୁଁ ଓ ଶ୍ରୀମତୀ ସେ ଘରେ ବଡ଼ ଭାଇନା-ଭାଉଜର ସମ୍ମାନ ଓ କର୍ତ୍ତୃତ୍ୱର ଅଧିକାରୀ । ଅନୁରୂପ କନିଷ୍ଠବର୍ଗର । ଚିନ୍ତା କରନ୍ତୁ ସାରା ଜଗତ ସେଭଳି ଏକ ସ୍ନେହ ସୋଦରପଣ କପଟହୀନ ଭାବର ଅମୃତ ବର୍ଷାରେ ଆର୍ଦ୍ର ହୋଇଗଲେ ?... ଆଉ କୋଉ ଲାଭ ସତରେ ଜୀବନକୁ ପରିପୂର୍ଣ୍ଣତାରେ ଭରି ଦେବ, କୃତାର୍ଥ କରି ହେବ ? ଏଇନେ ପରିଣତ ବୟସରେ ଚିନ୍ତା କଲେ ସେଇ ମହନୀୟାମାନେ କେମିତି ସତରେ ଆମଭଳି ଭାବଭୋଳା ମଣିଷମାନଙ୍କୁ ହସିହସି କାବୁ କରି ରଖିଥିଲେ ଓ ଆନନ୍ଦଲାଭ କରୁଥିଲେ ? ସେ ପ୍ରଶ୍ନ ଅନୁତ୍ତରିତ ହୋଇ ରହିଥିବ, ଅଥଚ ସ୍ମୃତି ତା'ର ବିଭୋର କରି ରଖିଥିବ ।

ମାତ୍ର ଗୋଟିଏ ଦୁଇଟି ଘଟଣା କହିବି । ଆମ ସହିତ ପ୍ରବୀଣ ନାଟ୍ୟକର୍ମୀ, ନିର୍ଦ୍ଦେଶକ ଶ୍ରୀକାନ୍ତ ମହାନ୍ତି, ରାଜ କିଶୋର ମିଶ୍ର, ସେମାନେ ନିଜେ ଅନ୍ୟମାନଙ୍କର ସ୍ୱାକ୍ଷର କରି କ୍ଷେତ୍ରବାସୀ ବାବୁଙ୍କ ପାଖକୁ ଗୋଟାଏ ଚିଠି ଦେଇଥିଲେ । ଲେଖାଥିଲା, ଆଗାମୀ କାଲି ଆମେ ନିମ୍ନ ସ୍ୱାକ୍ଷରକାରୀ ଭଦ୍ରପୁରୁଷ, ଆପଣଙ୍କ ଆବାସରେ ଉପସ୍ଥିତ ହୋଇ ସ୍ୱରୁଚି ଭୋଜନ କରି ଆପଣଙ୍କୁ ଆପ୍ୟାୟିତ କରିବାକୁ ମନସ୍ଥ କରିଛୁଁ । ଆପଣ ପ୍ରସ୍ତୁତ ହୋଇ ରହିବେ ବୋଲି ଏହା ପୂର୍ବ-ସୂଚନା... ବା ସେମିତି କିଛି ଗୋଟାଏ ମେଲୋଡ୍ରାମାର ସଂଳାପ ପରି । ଚିଠିଟି ପୋଷ୍ଟମ୍ୟାନକୁ ଜଗି ନିଶ୍ଚିତ ଭାବରେ ତାହା କ୍ଷେତ୍ରବାସୀଙ୍କୁ ଦେବାର ବ୍ୟବସ୍ଥା ହୋଇଥିଲା । ସେମାନଙ୍କୁ ଦେଖିବା ମାତ୍ରକେ କ୍ଷେତ୍ରବାସୀ ବାବୁ ହସିହସି କହିଲେ - 'ମୁଁ ଆପଣମାନଙ୍କର ଚିଠି ପାଇ ନାହିଁ ।' ସେଦିନ ଶନିବାର । ତା'ପର ଦିନ ରବିବାର, ବଲାଙ୍ଗୀରର ସାପ୍ତାହିକ ହାଟ ପାଳି । ଗୁଡ଼ୁଗୁଡ଼ିପଡ଼ା ଭଡ଼ାଘର ଛାଡ଼ି ସେତେବେଳକୁ ସହରର କେନ୍ଦ୍ରସ୍ଥ ସରକାରୀ ଆବାସରେ ସେ ରହିଥା'ନ୍ତି । କଥାଟି ସେଇଠି ରହିଗଲା ନାହିଁ । ତା' ପର ଦିନ ବଡ଼ି ଭୋରରୁ ସେମାନେ ଯାଇ କ୍ଷେତ୍ରବାସୀ ବାବୁଙ୍କ ବାରଣ୍ଡାରେ ଉପସ୍ଥିତ । ଦୁଆର ଫିଟି ନ ଥାଏ । ଭୋରରୁ କ୍ଷେତ୍ରବାସୀବାବୁ କବାଟ ଫିଟେଇ ବାହାରିଲାବେଳକୁ ବାରଣ୍ଡାରେ ଚକାପାରି ବସିଥିବା ଏମାନଙ୍କୁ ଦେଖି କେଡ଼େ ଖୁସିରେ ମନଖୋଲି ହସିଲେ । ସେଇଠି ସେଇ 'ସ୍ୱରୁଚି' ର ବ୍ୟାଖ୍ୟା ହେଲା, ଅର୍ଥାତ୍ ସେମାନେ କ୍ଷେତ୍ରବାସୀବାବୁଙ୍କୁ ଧରି ସକାଳୁଆ ହାଟକୁ ଯିବେ, ସେ ପଇସା ଦେବେ ଓ ଏମାନେ ଆପଣା ରୁଚି ଅନୁସାରେ ପରିବାପତ୍ର ନେଇ ଆସିବେ । ତେଣେ ଶ୍ରୀମତୀ ନାୟକ, ଏମାନଙ୍କୁ ପ୍ରଭାତୀ ଅଭ୍ୟର୍ଥନା ଲାଗି ଚା' ପ୍ରସ୍ତୁତ କରିବାରେ ତିଳେ ମାତ୍ର କୁଣ୍ଠା କରି ନଥିଲେ । ସବୁ ବ୍ୟବସ୍ଥା ହେଲା, ଆଉ ସେମାନେ ଆସିଲେ,

ରାଜକିଶୋର ଓ ଶ୍ରୀମତୀ ନାୟକ ପ୍ରସ୍ତୁତିରେ ନିୟୋଜିତ ହୋଇ ରହିଲେ । ରାଜଙ ବିଚିତ୍ର ପାକ-ଯୋଜନାର ସମୀଚୀନ ସଂଶୋଧନ କରି ଯାହା ହେଲା, ତହିଁରୁ ପ୍ରାପ୍ତ ଆନନ୍ଦ ଅବର୍ଣ୍ଣନୀୟ ଅବଶ୍ୟ ।

ଆଉ ଏକ ଭିନ୍ନ ଘଟଣା । ଆମର ପ୍ରତିଦିନ ଭେଟ ତ ଅବଶ୍ୟ ହେବ । ତାହା ଉଣା ହେବ ନାହିଁ । ରାଜର ବିଳମ୍ବ ହେବା ଦେଖି ମୁଁ ଓ କ୍ଷେତ୍ରବାସୀ ବାବୁ ବାହାରି ଚାଲିଗଲୁ ତା'ର ଗୁଗୁଡ଼ିପଡ଼ା ଭଡ଼ା ଘରକୁ । ସେ କିନ୍ତୁ ପୂର୍ବରୁ ବାହାରି ଆସିଥିଲା । ଆମେ ଆସି ଘରେ ପହଞ୍ଚିଲା ବେଳକୁ ଏକ ବିଚିତ୍ର ଅଭାବିତ ସ୍ଥିତି । ଏକ ଭିନ୍ନ ବାଟରେ ଆମ ଯାଇଛୁ । ଆଉ ଏକ ବାଟରେ ସେ ଆସିଛି । ଦୁର୍ଯୋଗକୁ ଭେଟ ହେଇନାହିଁ । ଆମେ ଆସି ଦେଖିଲା ବେଳକୁ ଗୋଟାଏ ମଶିଣା ପଡ଼ିଛି । ମଶିଣା ବାହାରେ ଗୋଟାଏ କିରାସିନ ଭରା ପରାତ ଭିତରେ ଏଣୁ ତେଣୁ ଗୁଡାଏ ଫ୍ୟାନ୍‌ର ପାର୍ଟସ ଖୋଲା ହୋଇ ରହିଛି, ମଝିରେ ଲଙ୍ଗଳା ଫ୍ୟାନଟି ଥୁଆ ହୋଇ ରହିଛି । ସେ ପଙ୍ଖାଟି ଖରାପ ହୋଇଥିଲା, ସିଲିଂ ପଙ୍ଖା ଥିଲା ବୋଲି ହେଳାରେ ତାହା ମରାମତି ଲାଗି ଦିଆ ହୋଇ ନଥିଲା । ରାଜକିଶୋର ପହଞ୍ଚି ଚାଲୁ ନଥିବା ପଙ୍ଖାଟି ଦେଖି ପଚାରିଲା - 'ଯାକୁ ମରାମତି କରଉନ ଅପା '?

- 'ସେ କାହାକୁ ଦେଲେ ତ ?'

- 'ସେ କୋଉ ଗୋଟାଏ ବଡ଼ କାମ ! ମୁଁ କରି ଦେଇ ପାରିବି । ତୁ ଗୋଟାଏ ପରାତରେ କିରାସିନି ଆଣ । ମୁଁ ଯାଇ ସରଂଜାମ ନେଇ ଆସିବି ।' କହି ଦେଇ ରାଜ ବାହାରିଗଲା । ସାମନାରେ ଗୋଟାଏ ପିପଳ ଗଛ । ତା'ରି ଛାଇରେ ଜଣେ ସାଇକେଲ ମେକାନିକର ଉଠାଦୋକାନ । ତା'ଠାରୁ ଗୋଟିଏ ପ୍ଲାୟର ଓ ପେଂଚକସ୍ ମାଗି ଆଣି ରାଜ ପହଞ୍ଚିଲା ବେଳକୁ ଶ୍ରୀମତୀ ନାୟକ ଆଜ୍ଞାକାରିଣୀ ଭଉଣୀ ଭଳି ପରାତ ଓ ଛୋଟ କିରୋସିନି ଟିଣଟି ଆଣି, ମଶିଣା ପାରି ଅପେକ୍ଷା କରିଥାନ୍ତି । ରାଜ ଆସି, ପରାତରେ କିରୋସିନି ଢାଳି, ଗୋଟିଗୋଟି କରି ଯେତେ ଖୋଲି ହେଲା ଖୋଲି ସେଇ କିରାସିନିରେ ବୁଡ଼େଇ ବୁଡ଼େଇ ତଉ୍ ବୁଝେଇ ଦେଇଥାଏ ଯେ, ଫ୍ୟାନ୍‌ରେ ଏଣୁ ତେଣୁ ମଇଳା ଥାଏ । କିରୋସିନିରେ ପଡ଼ିଲେ ତାହା ସଫା ହେଇଯାଏ । ବାହାର ଜିନିଷକୁ କନାରେ ଭଲ କରି ପୋଛି ଦେଲେ ସେ ସଫା ହୋଇଯିବ । ତା'ପରେ ପୋଛା ପୋଛି କରି ଇଗେଇ ତେଲ ଦେଲେ ଫ୍ୟାନ୍ ଚାଲିଲା । 'ବୁଝିଲୁ ନା ଅପା, ମୋ ଫ୍ୟାନ୍ ସେମିତି ଖରାପ ଥିଲା ଯେ, ମୁଁ ଜଣକୁ ଡାକି ନେଇଥିଲି । ସେ ଯାହା ଯାହା କରି ସଜାଡ଼ି ଦେଲା ମୋର ସବୁ ମନେ ଅଛି ।'

ସେମାନେ ଦୁହେଁ ଶୁକ ପରୀକ୍ଷିତ ଭଳି ତନ୍ମୟ ମୁଦ୍ରାରେ ଆମନାସାମନା ବସିଥା'ନ୍ତି ।

କଥାଟି ସେଇଠି ସ୍ଥିର ହୋଇ ରହିଯାଇଥାଏ । ଯେତେବେଳେ ରାଜ ପଚାରିଲା – 'ମୁଁ, ଯୋଉଠୁ ଯାହା ଖୋଲିଲି, ସବୁ ତୋର ମନେ ଅଛି ନା ଅପା ।'

କଳ୍ପନା କରନ୍ତୁ ଶ୍ରୀମତୀ ନାୟକଙ୍କ ଅବସ୍ଥା କ'ଣ ହୋଇଥିବ  ସେ ପ୍ରାୟ କାନ୍ଦୁଣୁ ମାନ୍ଦୁଣୁ ହୋଇ କହି ଥା'ନ୍ତି – ମୁଁ କ'ଣ ଜାଣେ ଯେ ମନେ ରଖି ପାରିବି !'

'ତେବେ ଇଏ ପୁଣି ଖଣ୍ଡା କେମିତି ହେବ ଯେ ! ମୁଁ ତ ମୋ କାମରେ ବ୍ୟସ୍ତ ଥିଲି । ତୁ ଗୋଟେ ଏମ୍.ଏ. ପଢ଼ିଛୁ । ଅଧ୍ୟାପିକା । କବିତା ଲେଖୁଛୁ, ପ୍ରବନ୍ଧ ଲେଖୁଛୁ, କେତେ କଥା କରୁଛୁ, କେତେ କଥା ମନେ ରଖି ପିଲାଙ୍କୁ ପଢ଼ଉଛୁ । ଏତିକି ମନେ ରଖିବୁ ନାଇଁ ତ, ମୁଁ ଆଉ କ'ଣ କରି ପାରିବି !'

କଥାଟି ସେଇଠି ଥାଏ । ଦୁହେଁ ତା' ଉପରେ ସତରେ ଯେମିତି ଗୋଟାଏ ତୂରୀୟ ଅବସ୍ଥାରେ ପହଞ୍ଚି, ମୌନ ସ୍ଥିର, ତନ୍ମୟ ଅନ୍ତର୍ଲୀନ ସ୍ଥିତିରେ ରହିଥାନ୍ତି ।

ସେଭଳି ଭାବ ତନ୍ମୟତା ସତରେ ସବୁରି କ'ଣ ଭାଗ୍ୟରେ ଥାଏ ...

... କେତେ କଥା ରହିଛି ସ୍ମରଣରେ... ସେଇ ଫୁଲଗୁଡ଼ିକ  ମଉଳି  ନାହାନ୍ତି, ମଉଳିବେ ନାହିଁ । ସୁଗନ୍ଧ ବିଲୀନ ହୋଇଯିବ ନାହିଁ । ଶାଶ୍ୱତ ବୋଲି କିଛି ନାହିଁ । ଅନ୍ତତଃ ପରମାୟୁର ଶେଷ ମୁହୂର୍ତ୍ତ ଯାଏଁ ସେଇ ଉପଲବ୍ଧିର ଦିବ୍ୟତା ଆମୋଦିତ କରୁଥିବ ଚିତ୍ତକୁ ...



# ସାହିତ୍ୟ-ପ୍ରାଣ କ୍ଷେତ୍ରବାସୀ ନାୟକ

ଡକ୍ଟର ପ୍ରସନ୍ନ କୁମାର ମିଶ୍ର

ବିଶ୍ୱଭାରତୀର ଅସ୍ଥାୟୀ ଅଧ୍ୟାପକ ପଦରୁ ନିଷ୍କ୍ରାନ୍ତ ହେବା ପରେ ମୋତେ ଶାନ୍ତିନିକେତନ ଛାଡ଼ିବାକୁ ପଡ଼ିଲା । ଓଡ଼ିଶା ସରକାରଙ୍କ ନିର୍ଦ୍ଦେଶକ୍ରମେ ସୁଦୂର ବଲାଙ୍ଗୀରର ରାଜେନ୍ଦ୍ର କଲେଜରେ ଯୋଗ ଦେଲି, ୧୯୬୭ ମସିହା ନଭେମ୍ବର ମାସରେ । ସେଇଠି ଅଧ୍ୟାପକ କ୍ଷେତ୍ରବାସୀ ନାୟକଙ୍କ ସହିତ ମୋର ପ୍ରଥମ ସାକ୍ଷାତ ।

ଆମେ ଏକା ବିଭାଗର ଅଧ୍ୟାପକ । ମୁଁ କନିଷ୍ଠତମ, ମୋ' ଉପରକୁ ସେ ଓ ସମସ୍ତଙ୍କ ଉପରେ ଥିଲେ କବି ଓ ସମୀକ୍ଷକ ଚିନ୍ତାମଣି ବେହେରା । ସେଇ ଦୃଷ୍ଟିରୁ କ୍ଷେତ୍ରବାସୀଙ୍କ ସହିତ ନିରନ୍ତର କଥାବାର୍ତ୍ତା, ହସ-ଖୁସି ଓ ସାହଯ୍ୟ-ସହଯୋଗ । ଉଭୟଙ୍କ ମଧ୍ୟରେ ଅଙ୍କୁରିତ ହେଲା ବନ୍ଧୁତା, କ୍ରମେ ତାହା ପଲ୍ଲବିତ ହୋଇ ପୁଷ୍ପିତ ହେଲା । ପାକଳ ହୋଇଗଲା ସଂପର୍କର ଖିଅ । ଏଠାରେ କହି ରଖିବା ଉଚିତ ଯେ ମୋ' ସାହିତ୍ୟିକ ଜୀବନରେ ବଲାଙ୍ଗୀର ଏକ ଅଧ୍ୟାୟ । ସେଇ ଅଧ୍ୟାୟରେ ଆଉ ଅନେକ ନାମ ସହିତ ସାହିତ୍ୟ-ପ୍ରାଣ କ୍ଷେତ୍ରବାସୀଙ୍କ ନାମ ଅଲିଭା ଅକ୍ଷରରେ ଲେଖା ହୋଇ ରହିବ ।

ପ୍ରାଣରେ ଶାନ୍ତିନିକେତନର ସଂସ୍କୃତି ଧରି ମୁଁ ବଲାଙ୍ଗୀରରେ ପହଞ୍ଚିଲି, ଯାହାର ମୁଖ୍ୟ ଆବେଦନ ଥିଲା ବନ୍ଧୁତା ଓ ଭାଇପଣ, (ଭାଇର୍ ସଙ୍ଗେ ଭାଇକେ ସେ ଯେ କରେଛେ ଏକ୍ ମନ୍, ଆମାଦେର୍ ଶାନ୍ତିନିକେତନ...) ଏବଂ ସାହିତ୍ୟ ଓ ଜୀବନ ପ୍ରତି ଅଫୁରନ୍ତ ସମାଦର ଭାବ । ଯେଉଁଠି ଓ ଯାହାଙ୍କ ଭିତରେ ତା'ର କଣିକାଏ ଥିବା ଅନୁଭବ କରୁଥିଲି ତାଙ୍କୁ ଆଦରି ଯାଉଥିଲି । ମୋର ସୌଭାଗ୍ୟ ଯେ ବଣ-ପାହାଡ଼ ଘେରା ବଲାଙ୍ଗୀର ଭିତରେ ମୋତେ କ୍ଷେତ୍ରବାସୀ ନାୟକଙ୍କ ରୂପରେ ମିଳିଯାଇଥିଲା ବନ୍ଧୁଟିଏ ଓ ଭାଇଟିଏ ଯାହାଙ୍କ ଭିତରେ ସାହିତ୍ୟ-ସମାଦର ଭାବ ପରିପୂର୍ଣ୍ଣ ହୋଇ ରହିଥିଲା ।

ପ୍ରଥମ ସାକ୍ଷାତରୁ ଜାଣିନେଇଥିଲି ଯେ କ୍ଷେତ୍ରବାସୀ ସାହିତ୍ୟ ଜଗତରେ ଅଛନ୍ତି । ତାଙ୍କ ଭିତରେ ସୃଷ୍ଟିର ଆବେଗ ଢେଉ ଭାଙ୍ଗୁଥିଲା, ଯାହା ତାଙ୍କୁ ସମସାମୟିକ ସୃଷ୍ଟିଧାରା ସହିତ ସମ୍ବନ୍ଧିତ କରିରଖିଥିଲା । ଏଠାରେ ଉଲ୍ଲେଖ କରିବା ଅପ୍ରାସଙ୍ଗିକ ହେବ ନାହିଁ ଯେ ସପ୍ତମ ଦଶକରେ ଖୁବ୍ କମ୍ ଅଧ୍ୟାପକ ସମସାମୟିକ ସୃଷ୍ଟିର ଖବର ରଖୁଥିଲେ । ପ୍ରଥମ କଥା ପତ୍ର-ପତ୍ରିକାର ସଂଖ୍ୟା ଥିଲା ସୀମାବଦ୍ଧ । ଝଙ୍କାର, ସମାବେଶ, ଆସନ୍ତାକାଲି ଭଳି ଅଳ୍ପ କେଇଖଣ୍ଡ ପତ୍ରିକା । 'ଆସନ୍ତାକାଲି'ର ମୃତ୍ୟୁ ମଧ୍ୟ ସେଇ ସପ୍ତମ ଦଶକରେ ଘଟିଲା । ଢୋକେ-ପି-ଦଣ୍ଡେ ଜୀ ଅବସ୍ଥାରେ ବଞ୍ଚିଥିବା 'ଡଗର' ସେତେବେଳେ କୋରାମିନ୍

ନେଉଥିଲା । ସେତେବେଳେ ଯେଉଁ ଦୈନିକ-ସମ୍ବାଦପତ୍ର ଛପା ଯାଉଥିଲା ସେସବୁରେ ଆଜି ଭଳି ସୁଶୋଭିତ ସାହିତ୍ୟ ପୃଷ୍ଠାର ନିୟମିତ ପ୍ରକାଶ ନଥିଲା । ସମସାମୟିକ ନବୀନ ସ୍ରଷ୍ଟାଙ୍କ ଖବର କିଏ ବା କେମିତି ରଖନ୍ତେ, ସ୍ୱତନ୍ତ୍ର ଅନ୍ତର୍ଭୁକ୍ତି ନଥିଲା । ଆରମ୍ଭରୁ କ୍ଷେତ୍ରବାସୀଙ୍କର ସାହିତ୍ୟ-ସୃଷ୍ଟି ସହିତ ଆବେଗଗତ ସଂପର୍କ ଥିଲା । ସେ ସମସାମୟିକ ପତ୍ର-ପତ୍ରିକାରୁ ମୋ' ଗଳ୍ପ, ଉପନ୍ୟାସ, କବିତା ସହିତ ପରିଚିତ ଥିଲେ, ଏପରିକି 'ଆସନ୍ତାକାଲି' ପୃଷ୍ଠାରୁ ମୋର ଧାରାବାହିକ ଉପନ୍ୟାସ 'ଅସୁର' ର ଅନେକାଂଶ ପଢ଼ିଥିଲେ । ସମସାମୟିକ କଳା-କଳ୍ପନା, ଲେଖା-ରେଖା ସହିତ ତାଙ୍କର ନିବିଡ଼ ସଂପର୍କ ଥିବାରୁ ଆମ ଦୁହିଁଙ୍କ ମଧ୍ୟରେ ଆତ୍ମୀୟତା ବଢ଼ିଲା ।

ସପ୍ତମ ଦଶକରେ ଓଡ଼ିଆ ସାହିତ୍ୟ ଏକ ମୋଡ଼ ନେଉଥିଲା । ବହୁ ପରୀକ୍ଷା ଓ ପ୍ରୟୋଗରେ ସାହିତ୍ୟର ବାତାବରଣ ଥିଲା ମୁଖର । କିନ୍ତୁ ସାଧାରଣ ଓଡ଼ିଆ ପାଠ୍ୟକ୍ରମ ରହିଥିଲା ଅପରିବର୍ତ୍ତିତ । ଆଧୁନିକ ସାହିତ୍ୟ ପାଇଁ କଲେଜୀୟ ପରିସରରେ ଥିଲା ଏକ ପ୍ରତିକୂଳ ମନୋଭାବ । ଯୁବଗୋଷ୍ଠୀର କାମ ଥିଲା ଏଇ ସ୍ଥିତାବସ୍ଥାକୁ ଭାଙ୍ଗିବା, ନେଗେସନ୍‌କୁ ଦୂର କରିବା ଓ ସମସାମୟିକ ସୃଷ୍ଟି ପ୍ରତି ଏକ 'ସମାଦର ଭାବ' ସୃଷ୍ଟି କରିବା । ଏଇ ଦୃଷ୍ଟିରୁ ବଲାଙ୍ଗୀରରେ ଓଡ଼ିଆ ବିଭାଗରେ ଆମେ ଯେଉଁ କେଇଜଣ ତରୁଣ ଥିଲୁ, ଆମର କର୍ତ୍ତବ୍ୟ ଥିଲା ସ୍ଥିତାବସ୍ଥାକୁ ଦୋହଲେଇ ଦୋହଲେଇ ନୂତନ ପରିବେଶ ଓ ପୀଠ ପ୍ରସ୍ତୁତ କରିବା । ସମଧର୍ମା କ୍ଷେତ୍ରବାସୀଙ୍କ ମଧ୍ୟରେ ସେ ପ୍ରକାର ସାହିତ୍ୟିକ କର୍ତ୍ତବ୍ୟବୋଧ ରହିଥିବାରୁ କଲେଜ ପରିସରରେ କବିତା ଆବୃତ୍ତିର ଉତ୍ସବ, ସଂପାନ ଓ ସାହିତ୍ୟିକ କାର୍ଯ୍ୟକ୍ରମମାନ ରୂପାୟିତ କରିବାରେ ଆମକୁ ବହୁତ ସୁବିଧା ହୋଇଥିଲା ।

ପ୍ରଥମ ପରିଚୟବେଳେ କ୍ଷେତ୍ରବାସୀ ଭଦ୍ରକ କଲେଜ ନାଁ କହିଥିଲେ । ସେଥିରୁ ମୁଁ ଅନୁମାନ କରିନେଲି ଯେ, କ୍ଷେତ୍ରବାସୀଙ୍କଠାରେ ଫୁଟିଦିଶୁଥିବା ସାହିତ୍ୟ-ସମାଦର ଭାବଟା କିଛି ଆକସ୍ମିକ ନୁହେଁ । ଏହା ସେ ଭଦ୍ରକ କଲେଜରୁ ପାଇଛନ୍ତି । ସେତେବେଳେ ଓଡ଼ିଶାର ଯେଉଁ ଦୁଇଟି କଲେଜର ଓଡ଼ିଆ ବିଭାଗ ଛାତ୍ରଙ୍କ ପ୍ରାଣରେ ସାହିତ୍ୟ-ସମାଦର ଭାବ ସୃଷ୍ଟି କରିବା ଦିଗରେ ପ୍ରୟାସୀ ଥିଲେ ତନ୍ମଧ୍ୟରୁ ଗୋଟିଏ ଭଦ୍ରକ କଲେଜ ଓ ଅନ୍ୟଟି ଖ୍ରୀଷ୍ଟ କଲେଜ। ସେଇ କଲେଜର ଅନର୍ସ ଶ୍ରେଣୀର ଛାତ୍ରମାନେ ପାଠ୍ୟକ୍ରମର ବନ୍ଧନୀ ବାହାରେ ବହିଚାଲିଥିବା ସାହିତ୍ୟର ଅମୃତଧାରା ସହିତ ସଂପର୍କ ରଖିପାରୁଥିଲେ । ସେମାନଙ୍କ ପଛରେ ଥିଲା ବିଭାଗୀୟ ଅଧ୍ୟାପକଙ୍କ ପ୍ରେରଣା । ମୁଁ ତାକୁ ବିଭାଗୀୟ ସଂସ୍କୃତି ନାଁରେ ନାମିତ କରିବି, ଯାହା ଏକାନ୍ତ ଅନ୍ୟମନସ୍କ ଛାତ୍ରଟିକୁ ମଧ୍ୟ ପ୍ରଭାବିତ କରୁଥିଲା ଏବଂ କିଛିଟା ସାହିତ୍ୟ କର୍ମରେ ପ୍ରଣୋଦିତ କରୁଥିଲା ମଧ୍ୟ । ବିଶ୍ୱଭାରତୀର ପ୍ରାକ୍ତନ ଛାତ୍ର

ଅଧାପକ କୃଷ୍ଣଚରଣ ବେହେରାଙ୍କ ପ୍ରେରଣାରେ ଭଦ୍ରକ କଲେଜର ପରିସରରେ ସୃଜନ କଳାର ଆଦର ଥିଲା । କହିବା ବାହୁଲ୍ୟ କବି କମଳାକାନ୍ତ ଲେଙ୍କାଙ୍କଠାରୁ ଆରମ୍ଭ କରି କବି ଗିରିବାଳା ମହାନ୍ତି, ମନୋରମା ବିଶ୍ୱାଳ ମହାପାତ୍ର ଓ ପବିତ୍ର ପାଣିଗ୍ରାହୀଙ୍କ ପର୍ଯ୍ୟନ୍ତ ଅନେକାନେକ ସ୍ରଷ୍ଟାଙ୍କର ତା'ଥିଲା ଏକ୍ସ୍ପ୍ରିଶାଳ । ପ୍ରକୃତରେ ସପ୍ତମ ଦଶକରେ ଭଦ୍ରକ କଲେଜ ଏକ ବାଣୀ-ପୀଠର ସମ୍ମାନ ଅର୍ଜନ କରିପାରିଥିଲା । କ୍ଷେତ୍ରବାସୀ ଥିଲେ ସେଇ ସଂସ୍କୃତିର ବାହକ ଓ ଉତ୍ତରସାଧକ । ଓଡ଼ିଆ ସାହିତ୍ୟର ଛାତ୍ର ଓ ଅଧାପକ ହୋଇଥିବାରୁ ତାଙ୍କ ଭିତରେ କୌଣସି ଗୌଣ ମନୋଭାବ ନ ଥିଲା । ସେଥିପାଇଁ ତାଙ୍କ ସହିତ ମୋର ମନ ମେଳ ଘଟିଥିଲା । ତାଙ୍କର ହସହସ କାନ୍ତି ଭିତରେ ପୂରିରହିଥିଲା ସ୍ୱାଭିମାନ ।

କ୍ଷେତ୍ରବାସୀ ତାଙ୍କର ଅଧାପକ ଜୀବନ କିପରି ଆରମ୍ଭ କରିଥିଲେ ତାହା ମୋ' ଅନୁଭବ ଭିତରେ ନାହିଁ । କିନ୍ତୁ ରାଜେନ୍ଦ୍ର କଲେଜରେ ସେ ଜଣେ ନିଷ୍ଠାବାନ୍ ଅଧାପକ ରୂପେ ସୁନାମ ଅର୍ଜନ କରିଥିଲେ । କଲେଜର ମୁଖପତ୍ରର ଅନ୍ୟତମ ସଂପାଦକ ରୂପେ ସେ ଅତି ଯତ୍ନର ସହିତ ପରିଚାଳନା କରିଥିଲେ । କିଏ କେଉଁ ବିଷୟ ପଢ଼େଇବେ ତା' ସେ ସ୍ଥିର କରୁଥିଲେ ପ୍ରାୟ । ସେଥିରେ ଆମର କାହାରି ଆପତ୍ତି ନ ଥିଲା । କ୍ଷେତ୍ରବାସୀଙ୍କ ଉଦ୍ୟମରେ ନାନାବିଧ ବିଭାଗୀୟ କାର୍ଯ୍ୟକ୍ରମ କଲେଜ ପରିସରରେ ନିୟମିତ ଅନୁଷ୍ଠିତ ହେଉଥିବାରୁ ଓଡ଼ିଆ ବିଭାଗ ଛାତ୍ର-ଛାତ୍ରୀଙ୍କର ପ୍ରିୟ ହୋଇଉଠିଥିଲେ ।

ସାହିତ୍ୟ କ'ଣ କଲେଜୀୟ ପରିସରରେ ବା ବିଭାଗୀୟ ପ୍ରକୋଷ୍ଠରେ ସୀମାବଦ୍ଧ ରହିପାରେ ? ଅନ୍ୟ ବିଭାଗର ସାହିତ୍ୟପ୍ରାଣ ବନ୍ଧୁମାନଙ୍କୁ ଏକାଠି କରି ଓଡ଼ିଆ ବିଭାଗ ତା'ର ପଦଯାତ୍ରା ଆରମ୍ଭ କଲା ବଲାଙ୍ଗୀର ସହର ଭିତରକୁ । ଆମକୁ ସାଙ୍ଗ-ସୁଖ ଦେଲେ ସହରନିବାସୀ ପ୍ରତିଷ୍ଠିତ ଲେଖକ ଶ୍ରୀନିବାସ ଉଦ୍‌ଗାତା । ପାନ-ଚା' ଦିଆନିଆରୁ ଆରମ୍ଭ ହେଲା ସାହିତ୍ୟ । ସାହିତ୍ୟରୁ ଆଜୀବନ ନିବିଡ଼ତା । ଆଜିଯାଏଁ ସଂପର୍କ ଅତୁଟ ରହିଛି, ନିବିଡ଼ତାରେ ଆଞ୍ଚ ଆସିନାହିଁ ।

କ୍ଷେତ୍ରବାସୀ ନାୟକ ପ୍ରଥମେ ଯେଉଁ ବସାରେ ରହୁଥିଲେ ତା' ଏତେ ବେଶୀ ମିଳନୀୟ ନଥିଲା । ପରେ ସେ ବସା ବଦଳେଇ ଆସିଲେ ବଜାର ଛକକୁ । ତା' ଫଳରେ ସାହିତ୍ୟ ବଜାର ଛକକୁ ପଶିଲା, କଣିକିଆ ରହି ମୁହଁ ଲୁଚେଇବା ଅବସ୍ଥା ତୁଟିଗଲା । ୬୭-୬୯ ସମୟରେ ବଲାଙ୍ଗୀରରେ ଜିଲ୍ଲାପାଳ ଥାନ୍ତି ଅବୋଧ ନାରାୟଣ ତିୱାରୀ । ସେ ବି ଜଣେ ସାହିତ୍ୟ ପ୍ରେମୀ ବ୍ୟକ୍ତି ଥିଲେ । ଅଗଷ୍ଟ ପନ୍ଦର ପାଳନ ଅବସରରେ ସେ ଏକ କବିତା ପାଠୋତ୍ସବ କରାଉଥିଲେ । ସେଇ ସଭାକୁ ତରୁଣମାନଙ୍କୁ ମଧ୍ୟ ନିମନ୍ତ୍ରଣ କରାଯାଉଥିଲା । ଆମକୁ ସ୍ୱରଚିତ କବିତା ପଢ଼ିବାର ସୁଯୋଗ ଦେଇ ଶ୍ରୀଯୁକ୍ତ

ତିୱାରୀ ନବ-କବିତା ପାଇଁ ଏକ ସ୍ୱୀକୃତିର ବାତାବରଣ ପ୍ରସ୍ତୁତ କରିଥିଲେ ବୋଲି କୁହାଯାଇପାରେ, ଯାହା ଫଳରେ ବଲାଙ୍ଗୀରରେ ସାହିତ୍ୟିକ 'ଅଭ୍ୟୁଦୟ' ପାଇଁ ଏକ ଅନୁକୂଳ ଅବସ୍ଥା ସୃଷ୍ଟି ହୋଇପାରିଥିଲା । ସ୍ୱୀକାର କରିବାକୁ ହେବ, ଯେ, ବଲାଙ୍ଗୀରର ସାଂସ୍କୃତିକ ଓ ସାହିତ୍ୟିକ 'ଅଭ୍ୟୁଦୟ' ରେ – ଆମ ଯୁବ ସାହିତ୍ୟକଙ୍କ ଭୂମିକା ଥିଲା ସର୍ବପ୍ରଧାନ । ସେହି ସାହିତ୍ୟିକଙ୍କ ମଧ୍ୟରେ ଥିଲେ କ୍ଷେତ୍ରବାସୀ ନାୟକ, ଶ୍ରୀନିବାସ ଉଦ୍‌ଗାତା ଓ ରାଜକିଶୋର ମିଶ୍ର । ଉଦ୍‌ଗାତାଙ୍କୀ ଟିକିଏ ବଡ଼, ରାଜକିଶୋର ସାହେବ ଟିକିଏ ସାନ । ଆମ ସଂଘରେ ଯୋଗ ଦେଇଥିଲା ଆମର ଜଣେ ପ୍ରିୟ ଛାତ୍ର ରାମକୁମାର ଅଗ୍ରୱାଲ୍ । ଓଡ଼ିଆ ଯୁବଲେଖକ ଶିରୋନାମାରେ ଜ୍ଞାନପୀଠ ତରଫରୁ ପ୍ରକାଶିତ ସେବର ହିନ୍ଦୀ ପତ୍ରିକା ଜ୍ଞାନୋଦୟରେ ମୋର ଗୋଟିଏ କବିତାର ଅନୁବାଦ ସେତେବେଳେ ପ୍ରକାଶ ପାଇଥିଲା, ସ୍ଥାନାନ୍ତର କାରଣରୁ ବୋଧେ ମୁଁ ମୋ ପତ୍ରିକାଟି ପାଇ ନଥିଲି (ରାମକୁମାର ୬୭ ମସିହାରେ ସେଇ ଖଣ୍ଡିକ ମୋତେ ଯୋଗାଡ଼ କରି ଆଣି ଦେଇଥିଲା । ସେଥିରୁ ଜାଣିଲି, ସେ ପାଠକ ହେଲାଣି, ଖାଲି ଛାତ୍ର ନୁହେଁ । ତାର ପାଠକୀୟତା ଓ ସୃଜନଶୀଳତା କାରଣରୁ ରାମକୁମାର ଆମ ସହିତ ମିଶିଯାଇଥିଲା । ସେଇ ବର୍ଷ (୬୮) ମୁଁ 'ବସନ୍ତର ସ୍କେଚ' ଛପାଇବାକୁ ଚାହିଁଲି । ଶ୍ରୀନିବାସ ବାବୁ ଓ କ୍ଷେତ୍ରବାସୀଙ୍କ ସହାୟତାରେ ପ୍ରସାଦ ପ୍ରିଣ୍ଟର୍ସକୁ (ଛାପାଖାନା) କୁ ଗଲି । ଜୀର୍ଣ୍ଣ ରାଜଘର ଭିତରେ ଭାବ-ପ୍ରବଣ ତେଲେଙ୍ଗା ଲୋକଟିଏ ଓଡ଼ିଆ ପ୍ରେସ୍ କରିଥାଏ । 'ବସନ୍ତର ସ୍କେଚ୍'ର ମୁଦ୍ରଣ ସେଇଠି ହେଲା । ତା'ଠାରୁ ଅଧିକ ଭଲ ଛାପାଖାନା ବଲାଙ୍ଗୀରରେ ନଥିଲା ସେତେବେଳେ । (ସେଇ କାରଣରୁ କ୍ଷେତ୍ରବାସୀ ତାଙ୍କର ଫୁଲର କବର- କଣ୍ଟାବାଂଜିରୁ ମୁଦ୍ରିତ କରି ଆଣିଥିଲେ ।) ୧୯୬୮ ମାର୍ଚ୍ଚ ମାସରେ ବସନ୍ତ ସ୍କେଚ୍‌ର ଉନ୍ମୋଚନ ମୋ ପାଣିଗ୍ରାହୀ କଲୋନି ବସା ଘରେ ହେଲା । ତା'ପରେ ଚାଲିଲା ଆସର ପରେ ଆସର । କ୍ଷେତ୍ରବାସୀଙ୍କ ଡ୍ରଇଁରୁମ୍ ତାର ପ୍ରକୃଷ୍ଟ କ୍ଷେତ୍ର ରୂପେ ବିବେଚିତ ହେଲା । ମୁଖ୍ୟତଃ ସାୟଂକାଳୀନ ଆସରଗୁଡ଼ିକ ସେଠି ବସୁଥିଲା । ଠିକ୍ ବଜାର ଉପରେ ବସା, ତେଣୁ ତାଙ୍କ ଡ୍ରଇଂ ରୁମ୍‌ରେ ଏକାଠି ହେବାଟା ସବୁଠୁ ସୁବିଧାଜନକ ଥିଲା । ତା'ଛଡ଼ା, ବୃତ୍ତିଗତ କାର୍ଯ୍ୟ ସମାପନ ପରେ ସଂଜ ସଂଜ ବେଳକୁ ଶ୍ରୀନିବାସ ବାବୁ ମଧ୍ୟ ସେଠିକୁ ଆସିପାରୁ ଥିଲେ । ଆସର ବସିଲେ ଶ୍ରୀମତୀ ନାୟକଙ୍କ ଦାୟିତ୍ୱ ବଢ଼ିଯାଉଥିଲା । ସାହିତ୍ୟ ପାଗଳ ସ୍ୱାମୀଟିର ଆଡ଼ପାଗଳା ବନ୍ଧୁମାନଙ୍କୁ ଚା-ପକୋଡ଼ିରେ ଆପ୍ୟାୟିତ କରିବାକୁ ସେ ଏକରକମ ବାଧ୍ୟ ହେଉଥିଲେ ସେତେବେଳେ । ଆସର ବସୁଥିଲା ସବୁଠି – କେତେବେଳେ ପାର୍କ୍‌ରେ ତ କେତେବେଳେ କଲେଜର ପ୍ରକୋଷ୍ଠରେ- ପୁଣି କେତେବେଳେ ମୋ ବସାରେ କି କ୍ଷେତ୍ରବାସୀଙ୍କ ବସାରେ । ରାଜୁ ମିଶ୍ରେ ସେତେବେଳେ ହାତକୁ ଦୁଇହାତ ହୋଇ ନଥିବାରୁ

ଟା ପର୍ବ ଜମାଇବାକୁ ଆମେ ସେ ସ୍ଥାନଟିକୁ ଆସରିକ ବୋଲି ମନେ କରୁ ନ ଥିଲୁ । ମିଶ୍ରେ ବିବାହ କରିବା ପରେ ପରେ ଆମକୁ ଛାଡ଼ି ଭୁବନେଶ୍ୱରଗାମୀ ହେବାରୁ ତଦୀୟ ପତ୍ନୀ 'ଆସର ସେବା' ର ଉପକାରିତା - ଅପକାରିତା ବିଷୟରେ ଲାବଣ୍ୟ ଦେବୀଙ୍କ ସଦୃଶ ସିଧାସଳଖ ଜ୍ଞାନ ଅର୍ଜି ପାରି ନ ଥିବେ । ଦିନେ ଦିନେ ମଧରାତ୍ରି କବିତା ଆସର ପାଇଁ ମୁଁ ବନ୍ଧୁମାନଙ୍କୁ ନିମନ୍ତ୍ରଣ କରୁଥିଲି । ମୋ ସ୍ତ୍ରୀ ପୁରୀ ଓ ତର୍କାରୀର ଆୟୋଜନ କରୁଥିଲେ । ରାତିର ବିଳମ୍ବ ପ୍ରହର ପର୍ଯ୍ୟନ୍ତ ମୁଁ ମୋର ପୁରୁଣା ପ୍ରେମକବିତା ଶୁଣାଉଥିଲି, ଯେଉଁଗୁଡ଼ିକୁ ମୁଁ କେବେ କେଉଁଠି ପ୍ରକାଶ କରିପାରିନି । ସମସ୍ତ ଆସରରେ କ୍ଷେତ୍ରବାସୀ ଉପସ୍ଥିତ ରହୁଥିଲେ । ଶ୍ରୀନି-କ୍ଷେତ୍ରବାସୀ - ରାଜୁ ମିଶ୍ର ଏଇ ତ୍ରୟୀଙ୍କ ମଧରୁ ଜଣେ ନ ଆସିଲେ ଫାଙ୍କା ଫାଙ୍କା ଲାଗୁଥିଲା । ସପ୍ତାହରେ ଅତିକମ୍‌ରେ ତିନିଟି ସନ୍ଧ୍ୟା 'ଆସରିତ' ହେଉଥିଲା ।

କୌଣସି କାରଣରୁ ଅନୁପସ୍ଥିତ ରହିଲେ - ପରଦିନ କ୍ଷେତ୍ରବାସୀ ନ ଆସିବାର କାରଣ ପଚାରି ବୁଝୁଥିଲେ । ମୁଁ ହିଁ ବେଶୀ ଅନୁପସ୍ଥିତ ରହୁଥିଲି କାରଣ ମୋ' ବସା ଓ ସେମାନଙ୍କ ବସା ମଧରେ ଦୂରତ୍ୱ ଥିଲା ଅଧିକ । ବଜାରରୁ ପଦବ୍ରଜରେ ଏକା ଏକା ପାଣିଗ୍ରାହୀ ପଡ଼ା (କନ୍ଦପାଲି) କୁ ରାତିରେ ଫେରିବା ଫାଁ-ଗିଲା ପରିଲାଗୁ ନଥିଲା, ରାତି ଆଠଟା ପରେ ସଡ଼କ ପ୍ରାୟ ନିର୍ଜନ ହୋଇଯାଉଥିଲା ସେତେବେଳେ । ଆଜି ଭଳି ରାସ୍ତାର ଦୁଇ ପାର୍ଶ୍ୱରେ ଏତେ ଘରଦ୍ୱାର ହୋଇ ନଥିଲା କଲେଜ ରାସ୍ତାରେ । ସେତେବେଳେ ମୋର ସାଇକେଲ୍ ନ ଥିଲା । ଡାକ୍ତର କିଶୋର ପୁରୋହିତଙ୍କ ସହାୟତାରେ ଶହେ ଟଙ୍କା ପଇଠ କରି ତିନିଶହ ଟଙ୍କିଆ ସାଇକେଲଟିଏ କିଣିବା ପରେ ବେଶୀ ରାତି ଯାଏ ଆସର କରିବା ସଉକ ବଢ଼ିଯାଇଥିଲା ।

ଆସର ଭିତରୁ ଜନ୍ମନେଲା - ଅନେକ କଥା । ପ୍ରଥମତଃ ମିଳିତ କବିତା ସୃଷ୍ଟି - "ବିଫଳତାର ସପକ୍ଷରେ ।" ତହିଁ ମଧରୁ କ୍ଷେତ୍ରବାସୀଙ୍କ ସାଙ୍ଗଠନିକ ପ୍ରତିଭାର ପରିଚୟ ମିଳିଲା । ୧୯୬୮ ସମ୍ବଲପୁରରେ ଯୁବଲେଖକ ସମ୍ମେଳନର ଅଧିବେଶନରେ ସ୍ଥିର ହୋଇପାରିଲା ନାହିଁ କେଉଁଠି ପରବର୍ତ୍ତୀ ଅଧିବେଶନ ହେବ । ତେବେ ସେଇ ଅଧିବେଶନରେ ରଜନୀକାନ୍ତ ଦାସ ଓ ତରୁଣ କବି ପ୍ରଫୁଲ୍ଲ ତ୍ରିପାଠୀ ଯଥାକ୍ରମେ ସଭାପତି ଓ ସଂପାଦକ ଦାୟିତ୍ୱ ନେବା ପରେ ବଲାଙ୍ଗୀର କଥା ଚିନ୍ତା କଲେ । ବସ୍ତୁତ, ସମ୍ମେଳନ ଆୟୋଜନର ଦାୟିତ୍ୱ ପଡ଼ିଲା ବଲାଙ୍ଗୀରର ତରୁଣ ଲେଖକ ଗୋଷ୍ଠୀ ଉପରେ ଏବଂ ତରୁଣ ଦଳକହିଲେ ସେତେବେଳେ ଆମ କେଇଜଣଙ୍କୁ ହିଁ ବୁଝାଉଥିଲା । କ୍ଷେତ୍ରବାସୀଙ୍କ ବସାରେ କୌଣସି ଏକ ସନ୍ଧ୍ୟା ଆସରରେ ହିଁ ଠିକ୍ ହେଲା - ଯୁବଲେଖକ ସମ୍ମେଳନ

ବଲାଙ୍ଗୀରରେ ହେବ । ଦାୟିତ୍ୱ ନେବ ଆମରି 'ଆସର' । ଆୟୋଜନର ନେତୃତ୍ୱ ନେବେ ଶ୍ରୀନିବାସ ଉଦ୍‌ଗାତା ଓ କ୍ଷେତ୍ରବାସୀ ନାୟକ । କ୍ଷେତ୍ରବାସୀ ବିନା ପ୍ରତିରୋଧରେ ରାଜି ହେଲେ । ତତ୍‌କାଳୀନ କଲେକ୍ଟର ଓ ବି.ସ.ସ ଶ୍ରୀ ମିଶ୍ରଙ୍କୁ ନେଇ ଅଭ୍ୟର୍ଥନା କମିଟି ଗଠିତ ହେଲା, ତା'ର ସାଧାରଣ ସଂପାଦକ ରହିଲେ କ୍ଷେତ୍ରବାସୀ ନାୟକ । କହିରଖିବା ଭଲ ଯେ, ବଲାଙ୍ଗୀରରେ ଆମ 'ଆସର' ବାହାରେ ସାହିତ୍ୟିକ ବାତାବରଣ ସେତେବେଳେ କିଛିହେଲେ ଉତ୍ସାହଜନକ ନଥିଲା । ଆସର ମାଧ୍ୟମରେ ହେଉଥିବା ଅନୁଷ୍ଠାନ ଜରିଆରେ କେତେକ ଛାତ୍ର ଓ ଅଣଛାତ୍ରଙ୍କ ହୃଦୟରେ 'ସାହିତ୍ୟ' ଜାଗିଉଠୁଥିଲା । କିନ୍ତୁ ସେମାନଙ୍କ ସଂଖ୍ୟା ଥିଲା ସୀମାବଦ୍ଧ । ଏପରି ଏକ ପରିସ୍ଥିତିରେ - ଏକ ବିଶାଳ ରାଜ୍ୟସ୍ତରୀୟ ସମ୍ମେଳନ ଠିଆ କରିବାର ପ୍ରତିଶ୍ରୁତି ଦେଇଥିବାରୁ ପ୍ରକୃତରେ ଆମକୁ ନାନା ଭାବରେ ବହୁତ ପରିଶ୍ରମ କରିବାକୁ ପଡ଼ିଥିଲା । ଏ ଦିଗରେ କ୍ଷେତ୍ରବାସୀଙ୍କ ପରିଶ୍ରମ ଓ ନିଷ୍ଠା ଭୁଲି ହେବନି । ସେ ଅତି ଆନ୍ତରିକତା ସହିତ ପରିଚାଳନା କରିଥିବାରୁ ବଲାଙ୍ଗୀର ସମ୍ମେଳନ ସଫଳ ହୋଇଥିଲା ଓ ସେଭଳି ସଫଳତା ସୁଲେଖକଙ୍କୁ ଆଉ କେଉଁଠି ମିଳିନି ବୋଲି ପ୍ରକୃତରେ ଅନେକ ଯାହା କହନ୍ତି ତାହା ଠିକ୍ ।

ଉପରୋକ୍ତ ସମ୍ମେଳନରେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ଯୁବ ଓ ପ୍ରତିଷ୍ଠିତ ଲେଖକଙ୍କ ସମେତ ଓଡ଼ିଶା ବାହାରୁ କମଲେଶ୍ୱର ଆଦି ବିଶିଷ୍ଟ କଥାକାର ଓ କବିଗଣ ଯୋଗ ଦେଇଥିଲେ । ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ, ଡକ୍ଟର ହରେକୃଷ୍ଣ ମହତାବଙ୍କ ସଦୃଶ ନେତୃବର୍ଗ ମଧ୍ୟ ସେଇ ସଭାରେ ଉଦ୍‌ବୋଧନ ଦେଇଥିବା ମୋର ମନେଅଛି । ସାଫଲ୍ୟର ସମସ୍ତ ପୁଣ୍ୟ ଯେ କ୍ଷେତ୍ରବାସୀଙ୍କର ପ୍ରାପ୍ୟ - ଏଥିରେ ସନ୍ଦେହ ନାହିଁ । ସହରର ବିଭିନ୍ନ ଯୁବଗୋଷ୍ଠୀ (ପ୍ରଶାସନିକ, ଇଂଜିନିୟର, ଜନସେବୀ) ଙ୍କୁ ଏକାଠି କରି ସେମାନଙ୍କ ମଧ୍ୟରେ ସୁପ୍ତ ଜାତୀୟତାବୋଧ ଓ ଓଡ଼ିଆବୋଧ ସୃଷ୍ଟି କରି ସେମାନଙ୍କ ସହଯୋଗ ଓ ସାହଚର୍ଯ୍ୟ ହାସଲ କରି ସେ ଏହି ସ୍ମରଣୀୟ କାର୍ଯ୍ୟଟି ସଂପାଦନ କରିପାରିଥିଲେ । ଏହି ସଫଳତା ତାଙ୍କ ବ୍ୟକ୍ତିତ୍ୱର ପରିସ୍ଫୁଟନରେ ସହାୟକ ହୋଇଥିଲା ।

ବିଧିବଦ୍ଧ ଭାବରେ ଗବେଷଣା କରିବାର ମୂଳ ପ୍ରେରଣା ସେ 'ଆସର'ରୁ ହିଁ ପାଇଥିଲେ । ଯେଉଁ ବିଦେଶୀ କାବ୍ୟ-କବିତା ରାଧାନାଥଙ୍କୁ ପ୍ରଭାବିତ କରିଛି ବୋଲି ସମାଲୋଚନା ସାହିତ୍ୟରେ ଉଦ୍ଧାର କରାଯାଇଥିଲା, ତା'ର ମୂଳ ରୂପ ସେ ନିଜେ ଦେଖିବାକୁ ଚାହୁଁଥିଲେ । ତାହା ହିଁ ତ ଗବେଷକର ପ୍ରକୃତି ଓ ଧର୍ମ । ସେ ପ୍ରସ୍ତୁତ କରିଥିବା ଗବେଷଣା-ନିବନ୍ଧରେ ସେଇ ଧର୍ମ ସୁରକ୍ଷିତ ରହିଛି । କହିବା ବାହୁଲ୍ୟ - ସେତେବେଳକୁ ସାହିତ୍ୟ-ଗବେଷଣା ଭିତରକୁ ଚତୁରତା ଓ ପଲ୍ଲବଗ୍ରାହିତା ଅବତରି ନ ଥିଲା । ଗବେଷକଙ୍କ

କାମରେ ନିଷ୍ଠା ଥିଲା, ତତ୍ତ୍ୱାବଧାରକମାନେ ମଧ ତନ୍ନ ତନ୍ନ କରି ଦେଖୁଥିଲେ ଓ ପରୀକ୍ଷକମାନେ ନିବନ୍ଧର 'ଯୋଗ୍ୟତା' ଘେନି ସୁନୀତିର ପୋଷଣ କରୁଥିଲେ । ଏସବୁରେ ଆନ୍ତରିକତା ଓ ଏକାଗ୍ରତା ରହୁଥିବାରୁ ଗବେଷଣା କାମ ଏକ ଅମୂଲ୍ୟ ଅନୁଭୂତିରେ ପରିଣତ ହୋଇପାରୁ ଥିଲା । ଗବେଷଣାର ସେଇ ଯେଉଁ ଅମୂଲ୍ୟ ଅନୁଭୂତି କ୍ଷେତ୍ରବାସୀଙ୍କୁ ପ୍ରାପ୍ତ ହୋଇଥିଲା ତା' ତାଙ୍କୁ ମାର୍ଜିତ କରିରଖିଥିଲା ଶେଷ ପର୍ଯ୍ୟନ୍ତ ।

ପ୍ରାଥମିକ ପର୍ଯ୍ୟାୟରେ ଅଳଙ୍କାର ସଂପର୍କରେ ସେ ଗୋଟିଏ କ୍ଷୁଦ୍ର ଛାତ୍ରୋପଯୋଗୀ ପୁସ୍ତକ ପ୍ରକାଶ କରିଥିଲେ । ତା' ଥିଲା ତାଙ୍କର ପୁସ୍ତକ ରଚନା କ୍ଷେତ୍ରରେ ହାତ ପରୀକ୍ଷା ଭଳି । ଆସରରେ ରାଧାନାଥଙ୍କ ବଙ୍ଗବାସିନୀ ପ୍ରେମିକା ନଗେନ୍ଦ୍ରବାଳାଙ୍କ ବିଷୟରେ ସେ ଆମକୁ ସବୁ ପ୍ରଶ୍ନ କରୁଥିଲେ । ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ପ୍ରସ୍ତୁତ 'କବିଲିପି' ତାଙ୍କୁ ଘାରିଥିଲା । ବାସ୍ତବିକ, ରାଧାନାଥଙ୍କ ଜୀବନୀ ଓ କାବ୍ୟକବିତା ତାଙ୍କୁ ଆଲୋଡ଼ିତ କରି ରଖିଥିଲା । ଏକ ସମୟରେ ତାଙ୍କ ଚିନ୍ତା-ଜଗତ ଯୋର ଥିଲା । ତାଙ୍କ ଦେହରେ ତ ପୁଳେ ହେଲେ ଚର୍ବି ନ ଥିଲା । ମୁଁ ତାଙ୍କୁ କହୁଥିଲି - "ବନ୍ଧୁ ! ତୁମେ ନିଶ ଝୁଲେଇ ଆଣ୍ଠୁ ମାଡ଼ି ବସିଲେ ରାଧାନାଥ ହୋଇଯିବ ।"

କ୍ଷେତ୍ରବାସୀଙ୍କ ଭିତରେ ପ୍ରଚୁର ରୋମାଣ୍ଟିସିଜିମ୍ ଭରି ରହିଥିଲା । ସେସବୁର ସଂଯତ ପ୍ରକାଶ ଯେତେ ଘଟିଛି 'ଉଚ୍ଚାରଣ' ଓ 'ଫୁଲର କବର'ରେ ତାଠୁ ବେଶୀ ତାଙ୍କ ସଂପାନ - ସୃଷ୍ଟିରେ । 'ସେମିନାର' ପ୍ରସ୍ତୁତ କରିବା ଓ ସେ ଦିଗରେ ଏକ ଭାବ-ଗମ୍ଭୀର ବିଷୟବସ୍ତୁର ଆଲୋଚନା କରିବା, ଲିଖିତ ପ୍ରବନ୍ଧ ଆହ୍ୱାନ କରିବା- ଜଣେ ଭାଷାପ୍ରେମୀର ଆବେଗାନ୍ୱିତ କର୍ମଧାରା ନୁହେଁ କି ?

ଆମେ ସବୁ ଭାଷଣ -ସଂଭାଷଣ ଯୁଗରେ ଜନ୍ମିଥିଲୁ । କିନ୍ତୁ କ୍ୱଚିତ୍ ବୁଦ୍ଧିଜୀବୀ ଆବେଗାନ୍ୱିତ ଭାଷଣକୁ କଲମ ଧରି ଲେଖାରେ ରୂପାୟିତ କରିବାକୁ ସକ୍ଷମ ହେଉଥିଲେ । ଲିପିବଦ୍ଧ ନ ହେବାରୁ ଅନେକ ବୌଦ୍ଧିକ ଭାଷଣ ପବନରେ ମିଳେଇ ଯାଇନି କି ? ଲିଖିତ ପ୍ରବନ୍ଧ ପାଠର ପରମ୍ପରା ନ ଥିବାରୁ ଆଲୋଚନାଚକ୍ରରେ କେତେକ ଅଣ-ବୌଦ୍ଧିକ ଅପାଠକ ମଧ ସମ୍ମାନିତ ହେଉଥିଲେ, କିନ୍ତୁ ଓଡ଼ିଆ ଆଲୋଚନା ସାହିତ୍ୟ ଋଦ୍ଧିମନ୍ତ ହୋଇପାରୁନ ଥିଲା । କ୍ଷେତ୍ରବାସୀ ଅନୁଭବ କରିଥିଲେ - ଓଡ଼ିଆ ସମାଲୋଚନା ସାହିତ୍ୟର କ୍ଷୀଣାବସ୍ଥା । ଗୋଟାଏ ସାହିତ୍ୟ ବଞ୍ଚିବା ପାଇଁ ଯେତିକି ଆଲୋଚନା ନିହାତି ଆବଶ୍ୟକ, ଏକଦା ତାଠାରୁ ଢେର୍ ଢେର୍ କମ୍ ଥିଲା ଓଡ଼ିଆ ସାହିତ୍ୟରେ । କି ପ୍ରାଚୀନ କି ଆଧୁନିକ, ଅଧିକାଂଶ ବିଷୟରେ ମାତ୍ର ଖଣ୍ଡେ ଦୁଇଖଣ୍ଡ ନିର୍ଭରଯୋଗ୍ୟ ପୁସ୍ତକକୁ ସମ୍ବଳ କରି ଅଧାପକଙ୍କୁ କ୍ଲାସ୍‌କୁ ଯିବାକୁ ହେଉଥିଲା ଓ ସ୍ନାତକୋତ୍ତର ଛାତ୍ରଙ୍କୁ ପରୀକ୍ଷା ଦେବାକୁ

ପଢୁଥିଲା । (ଏବର ପରି ନୋଟ୍ ବହିର ଯୁଗ ସେତେବେଳେ ଆରମ୍ଭ ହୋଇ ନ ଥିଲା, ଅନର୍ସ୍ ଓ ଏମ୍.ଏ ଶ୍ରେଣୀ ପାଇଁ) । ଏଇ ଅଭାବ ସମସ୍ତ ଲେଖକ ଓ ଅଧ୍ୟାପକ ଅନୁଭବ କରୁଥିଲେ । ପତ୍ର-ପତ୍ରିକାର ପୃଷ୍ଠାରେ ଯେତିକି ସାହିତ୍ୟାଲୋଚନାର ପ୍ରକାଶ ଘଟୁଥିଲା ତା' ଯଥେଷ୍ଟ ନ ଥିଲା । ପୁଣି ସେସବୁ ନିଷ୍କର୍ଷଧର୍ମୀ ନ ଥିଲା, ଥିଲା ବ୍ୟକ୍ତିବିଶେଷଙ୍କ ରୁଚି ଓ ମୂଲ୍ୟବୋଧ ଅନୁସାରୀ । ଏଇ ଅବସ୍ଥାର ପରିବର୍ତ୍ତନ ଯେ 'ସଂପାନ' ଦ୍ୱାରା ହୋଇପାରିବ - ଏହା କ୍ଷେତ୍ରବାସୀ ସ୍ୱୀୟ ଅଭିଜ୍ଞତାରୁ ଜାଣିଥିଲେ । ଏଇ ଅଭାବ ମେଣ୍ଟାଇବା ପାଇଁ ତାଙ୍କ ଭିତରେ ଯେଉଁ ପ୍ରଚ୍ଛନ୍ନ ପିପାସା ରହିଥିଲା, ତା'ର ଏକ ପରିପ୍ରକାଶକ 'ଓଡ଼ିଆ ଗବେଷଣା ପରିଷଦ' । ମୋତେ ତ ଏହି ସଂପୂର୍ଣ୍ଣ କାମଟି ଏକ ରୋମାଣ୍ଟିକ୍ ମନର ପରିପ୍ରକାଶ ପରି ଲାଗେ । କ୍ଷେତ୍ରବାସୀ ଯେତେବେଳେ ସାହିତ୍ୟକୁ ସଫା ଧୋତି ଓ ସିଲ୍କ ପଞ୍ଜାବୀ ପିନ୍ଧି ଆସୁଥିଲେ ବେଶ୍ ରୋମାଣ୍ଟିକ୍ ଦିଶୁଥିଲେ ସେଇ ପୋଷାକରେ । ଆମର ପୋଷାକରୁ ସେ ଯାଏଁ ପିଲାଳିଆ ଢଙ୍ଗ ଓହ୍ଲେଇ ନ ଥିଲା । ମୋ ବେକରେ ତ ଟାଇ ଝୁଲୁଥିଲା । କିନ୍ତୁ କ୍ଷେତ୍ରବାସୀଙ୍କ ପୋଷାକ ଭିତରେ ଏକ 'ସଂସ୍କୃତି' ଥିଲା, ଏକ ସ୍ୱାଭିମାନ ଥିଲା ବୋଲି ମୁଁ ଭାବୁଚି । ତାଙ୍କର ସଦାପ୍ରସନ୍ନ ମୁଖ ଓ ଚଷମାତଳେ ପ୍ରେମୋଜ୍ଜ୍ୱଳ ଆଖିଦୁଇଟି ମୋତେ ଏବେବି ଦିଶିଯାଏ । ବୋଧହୁଏ ୧୯୬୯-୭୦ ଶିକ୍ଷାବର୍ଷ ହେବ । ସହରର ମ୍ୟୁନିସିପାଲିଟି ହଲ୍‌ରେ ଆମମାନଙ୍କ ତରଫରୁ କ୍ଷେତ୍ରବାସୀଙ୍କ ପ୍ରତ୍ୟକ୍ଷ ସହଯୋଗରେ ଫକୀରମୋହନ ଜୟନ୍ତୀ ପାଳିତ ହୋଇଥିଲା ପ୍ରଥମଥର ପାଇଁ । ତା' ସହିତ ମୋ' ଅନୁରୋଧରେ ଯୋଡ଼ା ହୋଇଥିଲା କବିତା ପାଠ -ତା'ର ଶିରୋନାମା ଥିଲା 'ମନୋରମ କବିତା ପାଠୋତ୍ସବ' । ସେଇବର୍ଷରୁ ତା' ଏକ ପରମ୍ପରାରେ ପରିଣତ ହୋଇଗଲା । ଜାନୁୟାରୀ ୧୪ ତାରିଖର ଶୀତ-କାକର । ପୁଣି ବଲାଙ୍ଗୀରରେ ତାର ପ୍ରକୋପ ଥିଲା ଆଉରି ଅଧିକ । ତା' ସତ୍ତ୍ୱେ ଶ୍ରୋତାଙ୍କ ସଂଖ୍ୟା ଉତ୍ସାହଜନକ ଥିଲା । ଓଡ଼ିଆ କବିତାକୁ ଲୋକପ୍ରିୟ କରିବା ପାଇଁ ତା' ଥିଲା ଆମ ଆସରର ଅଙ୍ଗୀକାର । କ୍ଷେତ୍ରବାସୀ ଓ ଆମ ଆସରର ଅନ୍ୟାନ୍ୟ ବନ୍ଧୁମାନଙ୍କ ଶ୍ରଦ୍ଧା କାରଣରୁ ମୁଁ କବିତା ଲେଖାରେ ବେଶ୍ ଉତ୍ସାହ ଅନୁଭବ କରୁଥିଲି । 'ହଳଦୀ ବସନ୍ତ' ଭଳି କେତେକ କବିତାର ପ୍ରଥମ ଶ୍ରୋତା ଓ ପାଠକ ଥିଲେ କ୍ଷେତ୍ରବାସୀ । ପରୀକ୍ଷା ଓ ପ୍ରୟୋଗ ପାଇଁ ଯେଉଁ ସାହଚର୍ଯ୍ୟ ଓ ସମ୍ବେଦନଶୀଳତା ଆବଶ୍ୟକ୍ ଶ୍ରଦ୍ଧାଶୀଳ କ୍ଷେତ୍ରବାସୀଙ୍କ (ଡ୍ରଇଁ ରୁମ୍‌ରେ) ବସାର ବୈଠକ ଘରେ ତା' ମୋତେ ବିଶେଷଭାବେ ମିଳିଯାଉଥିଲା ।

ଥରେ ଏମିତି ବି ହେଲା, ସମ୍ଭବତଃ ଶ୍ରୀନିବାସ ଉଦ୍‌ଗାତା ଓ କ୍ଷେତ୍ରବାସୀ ନାୟକଙ୍କ ଅନୁପ୍ରେରଣାରେ ୧୯୭୦ ରେ ଗବେଷଣା କାର୍ଯ୍ୟରେ ମୋର ସିଦ୍ଧି ନିମନ୍ତେ ମୋତେ ବଲାଙ୍ଗୀରର ପୌରସଭା ତରଫରୁ ସେଇ ପୌରସଭାଗୃହରେ ଏକ ନାଗରିକ

ସମ୍ବର୍ଦ୍ଧନା ଦିଆଗଲା । ତା' କ'ଣ ଭୁଲି ହେବ ! ସେଇ ସଭାରେ ବନ୍ଧୁ କ୍ଷେତ୍ରବାସୀ ମୋତେ ପ୍ରଶଂସା କରି ଯେଉଁ ଦି-ପଦ କହିଥିଲେ - ତା' ମୋର ମନେ ଅଛି । କହିଥିଲେ - 'ମୁଁ ଆଶା କରେ ଡିଗ୍ରୀଟା ତୁମ କବିତ୍ୱକୁ ବାନ୍ଧି ନ ପକଉ।" ବନ୍ଧୁ ବଂଚିଥିଲେ ଶୁଣି ଖୁସି ହୋଇଥାନ୍ତେ - ଯେ ଗତ ୨୮ଟି ବର୍ଷ ଭିତରେ ଡିଗ୍ରୀର ବନ୍ଧନରେ ମୁଁ ଆଦୌ ପଡ଼ିନାହିଁ, ସଦାସର୍ବଦା ମୁଁ ମୋର କାବ୍ୟ- ଅଭିବ୍ୟକ୍ତି ପ୍ରତି ସଜାଗ ରହିଆସିଛି ।

୬୯-୭୦ ବେଳକୁ ଓଡ଼ିଆରେ ମିନି ସାହିତ୍ୟ ମୁଣ୍ଡଟେକିଲା । ୭୦-୭୧ ରେ ତା' ବ୍ୟାପକ ଆନ୍ଦୋଳନରେ ପରିଣତ ହେଲା । ଆମ ବଲାଙ୍ଗୀର ଆସର କ'ଣ ନିଷ୍କ୍ରିୟ ରହିପାରେ ? କ୍ଷେତ୍ରବାସୀଙ୍କ ବସାରେ ଆସର ବସିଲା, ସ୍ଥିର ହେଲା ଏକ ମିନି ପତ୍ରିକା ବାହାରିବ । ମୋର ପରାମର୍ଶରେ ନାମ ରହିଲା - ଉତ୍ତେଜନା । ନୂଆହୋଇ ରାଜେନ୍ଦ୍ର କଲେଜରେ ଅଧ୍ୟାପକ ରୂପେ ସେଇ ବର୍ଷ ଯୋଗ ଦେଇଥିଲେ ନାଟ୍ୟକାର ରତ୍ନାକର ଚଇନି । ସେ ଛପା-ଛପିର ଦାୟିତ୍ୱ ନେଲେ । ସେଇଠି ଗଢ଼ାଗଲା - 'ଆତ୍ମପ୍ରକାଶନୀ' । ଉତ୍ତେଜନାର ସଂପାଦକ ଦାୟିତ୍ୱ ମୋତେ ଦିଆଗଲା । କହିବା ବାହୁଲ୍ୟ - ମାତ୍ର ୪ଟି ସଂଖ୍ୟା ପ୍ରକାଶିତ ହୋଇଥିଲେ ହେଁ ଓଡ଼ିଆ ମିନି ସାହିତ୍ୟର ଆନ୍ଦୋଳନରେ 'ଉତ୍ତେଜନା'ର ଭୂମିକାକୁ ସ୍ୱୀକାର କରିବାକୁ ପଡ଼ିବ ।

କେବଳ ସେତିକି ନୁହେଁ - କୌଣସି ଏକ ସନ୍ଧ୍ୟାରେ ସମ୍ଭବତଃ ମୁଁ ଆସରରେ ଅନୁପସ୍ଥିତ ଥିଲି । ପରଦିନ କଲେଜରେ ସାକ୍ଷାତ ହେବାମାତ୍ରେ କ୍ଷେତ୍ରବାସୀ କହିଲେ - ମିନି କବିତାଟେ ଦେବ । ପଚାରିଲି - କେଉଁଥିପାଇଁ । କହିଲେ - ଗୋଟାଏ ପୋଷ୍ଟର କବିତା କାଢ଼ିବା । ତା'ର ଦୁଇ ଚାରିଦିନ ପରେ ଦେଖାଗଲା ବଲାଙ୍ଗୀର କାନ୍ଥବାଡ଼ରେ ନାଲି, ନୀଳ, ସବୁଜ କାଗଜରେ ମୁଦ୍ରିତ କବିତା ପୋଷ୍ଟର୍ ମରାଯାଇଛି । ଲୋକଙ୍କ ଆଖି ପଡ଼ିବା ଭଳି ସ୍ଥାନରେ କବିତାର ପୋଷ୍ଟର୍,କବିତାକୁ ଜନପ୍ରିୟ କରିବାପାଇଁ କ୍ଷେତ୍ରବାସୀଙ୍କ ସେଭଳି ଉଦ୍ୟମ ବାସ୍ତବିକ ସ୍ମରଣୀୟ । ତାଙ୍କ ପୂର୍ବରୁ ଆଉ କିଏ କେଉଁଠି ପୋଷ୍ଟର- କବିତା ଆରମ୍ଭ କରିଥିଲେ କି ନାହିଁ ମୁଁ ଜାଣେନା, କିନ୍ତୁ ଓଡ଼ିଆ ଭାଷାରେ ତା' ଥିଲା ସର୍ବପ୍ରଥମ (ସମ୍ଭବତଃ ସର୍ବଶେଷ) ।

ବଲାଙ୍ଗୀର ଛାଡ଼ିବା ପରେ କ୍ଷେତ୍ରବାସୀ ଏକ ବୃହତ୍ତର ପରିବେଶ ପାଇଲେ ବ୍ରହ୍ମପୁରରେ । ପ୍ରକାଶ ଚାହୁଁଥିବା ତାଙ୍କ ଉଦ୍‌ବେଳିତ ଆତ୍ମା ଲୋଡୁଥିଲା ପ୍ରକାଶକଙ୍କ ସାହାଯ୍ୟ ସହଯୋଗ । ବ୍ରହ୍ମପୁରରେ ତା' ସେ ଲାଭ କଲେ । ସଂପାଦନା, ସମାଲୋଚନା, ସଂପାନ ଓ ପ୍ରକାଶନରେ ସେ ବୁଡ଼ିରହିଲେ । ମୁଁ ବିଚ୍ଛିନ୍ନ ହୋଇଗଲେ ହେଁ - କ୍ଷେତ୍ରବାସୀ ଓ ଅନ୍ୟମାନେ (ଆତ୍ମପ୍ରକାଶନୀ)ମୋର କବିତା ବହି ଛାପିଲେ - ଅଦୃଶ୍ୟ ସଙ୍ଗମ ।

କେତେଜଣ ବନ୍ଧୁ ଏଭଳି ସହୃଦୟତା ଦେଖେଇଛନ୍ତି ଇତିହାସରେ । ବାସ୍ତବିକ ତାଙ୍କ ଋଣ ସ୍ୱୀକାର କରିବାକୁ ମୋ' ନିକଟରେ ଭାଷା ନାହିଁ । ଭବିଷ୍ୟର ସ୍ରଷ୍ଟାମାନେ ତାଙ୍କଭଳି ଉଦାର ଚରିତଙ୍କଠାରୁ ଶ୍ରଦ୍ଧା-ସଂପର୍କର ଉଚିତ ଅର୍ଥ କ'ଣ ତା' ସହଜରେ ବୁଝିପାରିବେ ।

ତାଙ୍କଠାରେ ନିହିତ କାବ୍ୟ-ବ୍ୟକ୍ତିର ପରିପ୍ରକାଶ 'ଉଚ୍ଚାରଣ' । ସେଇ ଉଚ୍ଚାରଣ କବିତା ପରେ ପରେ ସ୍ତିମିତ ହୋଇଗଲା; କିନ୍ତୁ ଗବେଷକ ଓ ସମାଲୋଚକ କ୍ଷେତ୍ରବାସୀଙ୍କର ଅଭ୍ୟୁଦୟ ଘଟିଲା ।

'ଆଧୁନିକ ଓଡ଼ିଆ କବିତାରେ ପାଶ୍ଚାତ୍ୟ ପ୍ରଭାବ' ବିଷୟରେ ସନ୍ଦର୍ଭ ରଚନା କରି ସେ ପିଏଚ୍.ଡି. ଡିଗ୍ରୀ ହାସଲ କରିବାଟା ତାଙ୍କ ପାଇଁ ବଡ଼ କଥା ନୁହେଁ । ଗବେଷଣା ପାଇଁ କ୍ଷେତ୍ର ପ୍ରସ୍ତୁତି ଓ ଉତ୍ସାହ ସୃଷ୍ଟି ତାଙ୍କର ବହୁମୂଲ୍ୟ ଅବଦାନ । ଏ ଦିଗରେ ସେ ଆମରଣ ନିରନ୍ତର ସଜାଗ ଥିଲେ ଏବଂ କୌଣସି ଅବସ୍ଥାରେ ଗବେଷଣାତ୍ମକ କାର୍ଯ୍ୟକ୍ରମରୁ ନିଜକୁ ଓହରେଇ ଦେଇ ନ ଥିଲେ ।

କ୍ଷେତ୍ରବାସୀ ପ୍ରଣୀତ ଆଲୋଚନା ଗ୍ରନ୍ଥଗୁଡ଼ିକ ମଧ୍ୟରୁ - 'କବିଚରିତ ରାଧାନାଥ', 'ସାହିତ୍ୟିକ ବୀକ୍ଷା ଓ ନିରୀକ୍ଷା,' 'ଭାରତୀୟ କାବ୍ୟ-ତତ୍ତ୍ୱ' ଓ 'ସାହିତ୍ୟର ସାମାନ୍ୟ କଥନ' ଉଲ୍ଲେଖଯୋଗ୍ୟ ।

ସାହିତ୍ୟ ଆଲୋଚନା ନିମନ୍ତେ ଓଡ଼ିଆ ଭାଷାକୁ ସମର୍ଥ ଓ ଶକ୍ତିଶାଳୀ କରିବା ଥିଲା ତାଙ୍କର ଅଭିପ୍ରାୟ । ତେଣୁ ସେ ଶବ୍ଦଗୁଡ଼ିକର 'ମୂଲ୍ୟଭିତ୍ତିକ' ଆଲୋଚନା ଚାହୁଁଥିଲେ । ଆଧୁନିକ ସମାଲୋଚନା ସାହିତ୍ୟରେ ବ୍ୟବହୃତ ଓ ପ୍ରଚଳିତ ଅବଧାରଣା (Concept) ଓ ଧାରଣା (Idea) ଗୁଡ଼ିକର ଯଥାଯଥ ଅର୍ଥବୋଧ ପାଇଁ ସେ କ୍ଷେତ୍ରପ୍ରସ୍ତୁତ କରିବାରେ ବିଶ୍ୱାସୀ ଥିଲେ । ତଦନୁସାରେ ସେ ବିଭିନ୍ନ ସଂସ୍ଥାନର ଆୟୋଜନ କରୁଥିଲେ ଏବଂ ଆଲୋଚକମାନଙ୍କୁ ଲିଖିତ ପ୍ରବନ୍ଧ ପାଠ କରିବାକୁ ଅନୁରୋଧ କରୁଥିଲେ ।

କ୍ଷେତ୍ରବାସୀଙ୍କ ସଦୃଶ ଜଣେ ସାହିତ୍ୟ-ପ୍ରାଣ ଅଧ୍ୟାପକଙ୍କୁ ମୁଁ ବନ୍ଧୁଭାବେ ପାଇଥିବାରୁ ଏବଂ ତାଙ୍କ ଗହଣରେ କେଇଟି ବର୍ଷ କଟାଇବାର ସୁଯୋଗ ପାଇଥିବାରୁ ନିଜକୁ ଧନ୍ୟ ମନେ କରୁଛି ।



# କ୍ଷେତ୍ରବାସୀଙ୍କ ସାହିତ୍ୟକ୍ଷେତ୍ର

ରାୟଶ୍ରୀ ଉପେନ୍ଦ୍ର ପ୍ରସାଦ ନାୟକ

ଜିଣେ ଇଂରେଜ ପ୍ରାବନ୍ଧିକଙ୍କ ଉକ୍ତି ମନେପଡୁଛି । ସେ କହିଥିଲେ, କୌଣସି ସମାଧିରେ ଏତେ ତାରିଖରେ ଜନ୍ମ ଓ ଏତେ ତାରିଖରେ ମୃତ୍ୟୁ ହୋଇଗଲା, ଏଭଳି ଉଲ୍ଲେଖ ମୂଲ୍ୟହୀନ । ଜୀବନରେ ସେ କାହିଁକି ପାଞ୍ଚଜଣରେ ପରିଚିତ ହେବାର ସୌଭାଗ୍ୟ ପାଇଲେ, ତାହାହିଁ ଜଣେ ମୃତବ୍ୟକ୍ତିଙ୍କ ସମାଧିରେ ସଂକ୍ଷିପ୍ତରେ ଉଲ୍ଲେଖ କରାଯିବା ଆବଶ୍ୟକ । ତାହା ହେଲେ ତାଙ୍କ ସ୍ମୃତିକୁ ଯଥାର୍ଥ ସମ୍ମାନ ଦିଆଯାଇପାରିବ ।

କିନ୍ତୁ ହାୟ, ଏ ପୃଥିବୀର ଅଧିକାଂଶ ଲୋକଙ୍କର ଏ ପରିଚିତି ନଥାଏ । ସେମାନେ ପୃଥିବୀରେ ଦିନେ ଜନ୍ମ ହୁଅନ୍ତି, ଦିନେ ବିଦାୟ ନିଅନ୍ତି । ଏ ପୃଥିବୀରେ ଯେଉଁ କେତେଦିନ କାଟନ୍ତି, ନିଜ କଥା ଚିନ୍ତା କରି କରି ତାଙ୍କ ଦିନ ବିତିଯାଏ, ସେମାନେ ନିଜକୁ ପୃଥିବୀଟିଏ ଭାବି, ନିଜ ସୁଖ ଦୁଃଖର ପରିଧି ଭିତରେ ଘୂରି ବୁଲନ୍ତି । ନିଜ ଚାରିପଟେ ଥିବା ଏ ବିଶାଳ ପୃଥିବୀ ତାଙ୍କ ଦୃଷ୍ଟିର ପରିଧି ଭିତରକୁ ଆସିପାରେ ନାହିଁ । ସେଥିପାଇଁ ସେମାନଙ୍କ ପାଇଁ ପୃଥିବୀରେ ମାତ୍ର ଦୁଇଟି ଦିନର ପରିଚିତି ଥାଏ, ତାହା ଜନ୍ମ ଓ ମୃତ୍ୟୁ । ତାଙ୍କ ସମାଧିରେ ଲେଖାହେଲା ଭଳି ଆଉକିଛି ନଥାଏ ।

ସ୍ୱର୍ଗତ କ୍ଷେତ୍ରବାସୀ ନାୟକ ଜନ୍ମ ହୋଇଥିଲେ ୧୯୩୯ ମସିହା ଅକ୍ଟୋବର ୪ ତାରିଖରେ ଆଉ ପରଲୋକ ଗମନ କଲେ ୧୯୮୬ ଜାନୁୟାରୀ ୨୫ ତାରିଖରେ । ତାଙ୍କର ଏହି ଛୟାଳିଶ ବର୍ଷ ତିନିମାସ ଏକୋଇଶ ଦିନର ଜୀବନ କାଳ କେତେ ସ୍ମରଣୀୟ ଘଟଣାରେ ପରିପୂର୍ଣ୍ଣ ଏକଥା ଭାବି ବସିଲା ବେଳକୁ କେବଳ ବିସ୍ମୟବୋଧରେ ହୃଦୟ ପୂରିଯାଏ । ବେକନଙ୍କ ନିର୍ଦ୍ଦେଶମତେ ତାଙ୍କ କୃତି ଲେଖିବା ପାଇଁ ପରିମିତ ସମାଧିର ସ୍ଥାନ ଅକୁଳାଣ ହୁଏ । ତେଣୁ ତାଙ୍କ ଜୀବନର ଉଲ୍ଲେଖନୀୟ କାର୍ଯ୍ୟର ଉଲ୍ଲେଖ ପାଇଁ ସମସ୍ତ ଅଭୀପ୍ସା ସତ୍ତ୍ୱେ, ସମାଧିରେ କେବଳ ସେହି ଦୁଇଟି ଦିନ ଜନ୍ମ ଓ ମୃତ୍ୟୁର ତାରିଖ ବ୍ୟତୀତ ଆଉ କ'ଣ ଲେଖା ହୁଅନ୍ତା ଯେ ।

କ୍ଷେତ୍ରବାସୀଙ୍କ ଜୀବନର ଯେତେ କଥା, ସମାଧିରେ ଲେଖା ହୋଇପାରିଲା ନାହିଁ, ସେଗୁଡ଼ିକ ତାଙ୍କ ଗୁଣମୁଗ୍ଧ ବନ୍ଧୁ, ସ୍ନେହାସ୍ପଦ ଛାତ୍ରଛାତ୍ରୀଙ୍କ ମନ ଭିତରେ ଲେଖା ହୋଇଯାଇଛି । ତାଙ୍କୁ ଉଖୁରେଇ ଦେଖିବା ତା' ରେକର୍ଡ଼କୁ ବଜାଇ ଶୁଣିବା ପାଇଁ ଆମ ମନ ଭିତରେ ଯେଉଁ ଅଭୀପ୍ସା କାର୍ଯ୍ୟ କରୁଛି, ତାହାର ଫଳଶ୍ରୁତି ହେଉଛି ଏହି ପୁସ୍ତକ । ଆଜି ସର୍ବସମକ୍ଷରେ କ୍ଷେତ୍ରବାସୀଙ୍କ ସମ୍ପର୍କିତ ସ୍ମୃତିଚାରଣ ପାଇଁ ମୋତେ ସୁଯୋଗ ମିଳିଛି,

ସେଥିପାଇଁ ମୁଁ ଅନୁଷ୍ଠାନର କର୍ମକର୍ତ୍ତା ବିଶେଷତଃ ଅନୁଷ୍ଠାନର ସଭାପତି ଡକ୍ଟର କୃଷ୍ଣ ଚରଣ ବେହେରା, ସମ୍ପାଦିକା ଡକ୍ଟର ଲାବଣ୍ୟ ନାୟକ ଓ ମୋର ଅନୁଜ ପ୍ରତିମ ଡକ୍ଟର ହରେକୃଷ୍ଣ ପାତ୍ରଙ୍କୁ ଧନ୍ୟବାଦ ଜଣାଉଛି ।

କେଉଁଠୁ ଆରମ୍ଭ କରିବି ସ୍ମୃତିର ସେ ସର୍ବଗ୍ରାସୀ ସତ୍ତାକୁ । କେତେବେଳେ ଝାପ୍‌ସା, କେତେବେଳେ ସ୍ପଷ୍ଟ ସେ ଦୂର ଅତୀତର ସ୍ମୃତି । ଗୋଟିଏ ଖୋଜି ବସିଲେ, ଆଉ ଗୋଟିଏ ଖିଅ ହାତ ପାଆନ୍ତାରେ ମିଳିଯାଏ । ଏଇଠୁ ଆରମ୍ଭ କରିବି ବୋଲି ମନ ଉଲ୍ଲସି ଉଠିଲା ବେଳକୁ ପୁନଶ୍ଚ ଆଉ ଗୋଟିଏ ଖିଅ ବାହାରି ପଡ଼ି ମନକୁ ଉତ୍ତେଜିତ କରେ ।

ଗୋଟିଏ ଖିଅରୁତ ଆରମ୍ଭ କରିବାକୁ ପଡ଼ିବ । ବଲାଙ୍ଗୀର ଯୁବ ଲେଖକ ସମ୍ମେଳନରୁ ଆରମ୍ଭ ହେଉ । ୧୯୬୩ ରେ ଭଦ୍ରକ ଲେଖକ ସମ୍ମେଳନ ଅବସରରେ ସଂଗଠକ କ୍ଷେତ୍ରବାସୀଙ୍କୁ ମୁଁ ଯେଉଁଭଳି ଭାବେ ଦେଖିଥିଲି, ପ୍ରାୟ ଛଅବର୍ଷପରେ ବଲାଙ୍ଗୀରରେ ସାହିତ୍ୟ ସଂଗଠନର ଅଗ୍ରଣୀ ସଙ୍ଗଠକ ଭାବେ ଭେଟିଲାବେଳକୁ ତାଙ୍କ ବ୍ୟକ୍ତିତ୍ୱର ବହୁ ବିକାଶ ଘଟିସାରିଥିଲା ।

ଭଦ୍ରକ ଲେଖକ ସମ୍ମେଳନ ବେଳକୁ ସେ ଥିଲେ ଜଣେ ସଦ୍ୟ କଲେଜ ପାସ୍‌କରା କଅଁଳ ବୟସର ଯୁବକ । ବଲାଙ୍ଗୀର ଯୁବ ଲେଖକ ସମ୍ମେଳନ ବେଳକୁ ଜଣେ ପ୍ରତିଷ୍ଠିତ ଅଧ୍ୟାପକ । ମାତ୍ର ଛଅ ବର୍ଷ ତଳର ସେ କଅଁଳ ଛନ ଛନ ମନ ତେବେ ବି ସେମିତି ଢଳ ଢଳ ଛଳ ଛଳ ହେଉଥାଏ, ତାଙ୍କ ଅନ୍ତର ଭିତରେ । କବି ମନଟିଏ, ବାହାରର ବୟସ ଯେତେ ବଢ଼ିଲେବି, ଭିତରର ବୟସ ସେମିତି ରହିଥାଏ । କ୍ଷେତ୍ରବାସୀଙ୍କ ସାରାଜୀବନରେ ସେହି କବି ଭାବ, ମୁଗ୍ଧ ସୁନ୍ଦର ମାନବିକ ଦୃଷ୍ଟିକୋଣ, ସ୍ନେହ ଆଦରବୋଳା କଥାବାର୍ତ୍ତା ଖାଲି ଭଦ୍ରକ କିମ୍ବା ବଲାଙ୍ଗୀର ନୁହେଁ ଜୀବନରେ ଯେତେ ଥରରେ ଭେଟ ହୋଇଛନ୍ତି ସବୁଠି ତାଙ୍କ ପାଇଁ ମୋ ମନରେ ଗଭୀର ପ୍ରଣୟବୋଧ ସୃଷ୍ଟି କରିଛି । ହଁ, ବଲାଙ୍ଗୀର କଥା କହୁଥିଲି । ସମ୍ମେଳନର ସେହି କେତେଦିନ ମୁଁ ଭାବୁଥିଲି ସେ ମୋର ଥିଲେ ଅନ୍ତରଙ୍ଗ, କେବଳ ମୋହରି ଯତ୍ନ ନେଉଥିଲେ । କିନ୍ତୁ ନା, ସମସ୍ତଙ୍କ ସହିତ ବ୍ୟକ୍ତିଗତ ଭାବେ ସେ ନିବିଡ଼ ସମ୍ପର୍କ ରଖୁଥିଲେ, ସମସ୍ତଙ୍କ ଯତ୍ନ ନେଉଥିଲେ ଆତ୍ମୀୟତା ସହକାରେ । ସେଭଳି ସୁଦୂର ସ୍ଥାନରେ କ୍ଷେତ୍ରବାସୀ ଖାଲି ଜଣେ ନିରୁତା ସଂଗଠକର ଭୂମିକା ନିର୍ବାହ କରୁନଥିଲେ, ଆନ୍ତରିକ ପ୍ରୀତି ଓ ସହୃଦୟତାରେ ସେ ଉପସ୍ଥିତ ସମସ୍ତ ସାହିତ୍ୟପ୍ରେମୀଙ୍କ ମନ ଛୁଉଁଥିଲେ ।

ଆମର ଆତ୍ମୀୟତା ବଢ଼ିଥିଲା, ପ୍ରଗାଢ଼ ବି ହୋଇଗଲା । ସାହିତ୍ୟ କ୍ଷେତ୍ରର

ସତୀର୍ଥ ଜୀବନରୁ ଆମେ ବନ୍ଧୁ ହୋଇଥିଲୁ, ଅନ୍ତରଙ୍ଗ ବନ୍ଧୁ । ସେ ବନ୍ଧୁତା ତାଙ୍କର ଶେଷ ଜୀବନ ପର୍ଯ୍ୟନ୍ତ ଆମ ଭିତରେ ଅକ୍ଷୁଣ୍ଣ ହୋଇ ରହିଗଲା । ଆଜି ବି ଅକ୍ଷୁଣ୍ଣ ହୋଇ ରହିଛି । ତାଙ୍କର ବନ୍ଧୁତାର ଭଣ୍ଡାର ସତେ ଯେମିତି ଥିଲା ଦ୍ରୌପଦୀଙ୍କର ଅକ୍ଷୟ ଥାଳି । କେହି ବନ୍ଧୁ ତାଙ୍କ ଠାରୁ ନିରାଶ ହୋଇ ଫେରିନାହାନ୍ତି, ଯେତେ ଅଜଣା ହୋଇଥିଲେ ବି କ୍ଷେତ୍ରବାସୀଙ୍କ ସାନ୍ନିଧ ଲାଭକଲାପରେ ବନ୍ଧୁତାର କୈବଲ୍ୟ କଣିକା ବାଣ୍ଟି କ୍ଷେତ୍ରବାସୀ ସେମାନଙ୍କର ଉଦର ପୂରଣ କରିଛନ୍ତି । "କାହିଁ ବନ୍ଧୁତା କାହିଁ ପ୍ରେମ ସୁନ୍ଦର, ଯା'ର ପ୍ରାପତି ଲାଗି ଦେବତା ନର" । କ୍ଷେତ୍ରବାସୀଙ୍କ ଭଳି ବନ୍ଧୁଙ୍କର ବନ୍ଧୁତା ଓ ପ୍ରେମ ଲାଭ କରିବା ପାଇଁ ବାରମ୍ବାର ଏ ପୃଥିବୀରେ ଜନ୍ମ ହେବାକୁ ପ୍ରଲୋଭନ ସୃଷ୍ଟି ହୁଏ । ବଲାଙ୍ଗୀର ଯୁବଲେଖକ ସମ୍ମେଳନ ପରେ ଆମ ଭିତରେ ଯେଉଁ ବନ୍ଧୁତ୍ୱର ନବୀକରଣ ଘଟିଥିଲା, ତାହା କ୍ରମେ ସୁଦୃଢ଼ ରୂପ ନେଇଥିଲା ।

'ଉତ୍ତର ଓଡ଼ିଶା ସାହିତ୍ୟ ସଂସ୍କୃତି ସମ୍ମେଳନ' ଭଳି ଅନୁଷ୍ଠାନ ଗଢ଼ାଗଲା ପରେ, ସେ ମୋତେ ଚିଠିଲେଖି ଏଭଳି କାର୍ଯ୍ୟପାଇଁ ଧନ୍ୟବାଦ ଜଣାଇଥିଲେ, ଉତ୍ସାହିତ କରିଥିଲେ । ଏଭଳି ଅନୁଷ୍ଠାନ ଆଞ୍ଚଳିକତାକୁ ପ୍ରଶ୍ରୟ ଦେବ ବୋଲି ଆଶଙ୍କା କରି କେତେକ ଶୁଚି ବଂକାରଗ୍ରସ୍ତ ସାହିତ୍ୟିକ ନାସିକା କୁଞ୍ଚନ କରିବା ସହିତ ଏହା ବିରୁଦ୍ଧରେ ବହୁ ଅପପ୍ରଚାର କରିଥିଲେ । ମାତ୍ର ମୋ ମନର ଭାବନାକୁ ଡକ୍ଟର କୃଷ୍ଣଚରଣ ବେହେରା ଓ ଡକ୍ଟର କ୍ଷେତ୍ରବାସୀ ନାୟକଙ୍କ ଭଳି ସୁଧୀଗଣ ଠିକ୍ ବୁଝିଥିଲେ । କେନ୍ଦ୍ରୀୟ ସାହିତ୍ୟ ସଙ୍ଗଠନ ଯେଉଁ ନବସୃଷ୍ଟିକୁ ଆଲୋକକୁ ଆଣିପାରେ ନାହିଁ, କ୍ଷେତ୍ରୀୟ ସଂଗଠନ ସେମାନଙ୍କୁ ଉପରକୁ ଉଠିବା ପାଇଁ ହାତ ଧରି ଆଗେଇ ଆଣେ । ସାହିତ୍ୟ ବିଚ୍ଛିନ୍ନତାକୁ ପ୍ରୋତ୍ସାହିତ କରେନା । କାରଣ ଏକ ଐକିକ କେନ୍ଦ୍ରୀୟପ୍ରବଣତା ହେଉଛି ସାହିତ୍ୟର ପ୍ରକୃତ ସ୍ୱରୂପ, ମନକୁ ମନ ମିଳାଇଦେବା, ଅଜଣାକୁ ଜଣାଇଦେବା, ଅଚିହ୍ନାକୁ ଚିହ୍ନାଇଦେବା ହେଉଛି ସାହିତ୍ୟର କାର୍ଯ୍ୟ । ଏଠି ସଂକୀର୍ଣ୍ଣ ଆଞ୍ଚଳିକତାର ପ୍ରଶ୍ନ ଆସୁଛି କେଉଁଠି ? ଏକଥା ମୋଭଳି ଠିକ୍ ଭାବେ ବୁଝିଥିଲେ କ୍ଷେତ୍ରବାସୀ ବାବୁ । ସେଥିପାଇଁ ସେ ଯେଉଁଠିକୁ ଯାଇଛନ୍ତି, ଚାକିରି ପାଇଁ ସମ୍ବଲପୁର, ବଲାଙ୍ଗୀର କି ବ୍ରହ୍ମପୁର ହେଉ ବା ସାହିତ୍ୟ ପାଇଁ କୋରାପୁଟ, ଫୁଲବାଣୀ କି ମୟୂରଭଞ୍ଜ ହେଉ, ସବୁଠି ସେ ଆଞ୍ଚଳିକ ସାହିତ୍ୟ ଅନୁଷ୍ଠାନକୁ ଖୋଜିଛନ୍ତି, ସେ ଅଞ୍ଚଳର ତଥାପି ବଣମଲ୍ଲୀ ହୋଇପଡ଼ି ରହିଥିବା ପ୍ରତିଭାମାନଙ୍କ ଭିତରର ଜଡ଼ତା ଭାଙ୍ଗିବାକୁ ସେମାନଙ୍କୁ ପ୍ରୋତ୍ସାହିତ କରିଛନ୍ତି । ସେଥିପାଇଁ ଆମ ଭିତରେ ଏତେ ବନ୍ଧୁତା, ଏତେ ଆନ୍ତରିକ ଭାବ-ସାମ୍ୟତା । 'ଉତ୍ତର ଓଡ଼ିଶା ସାହିତ୍ୟ ସଂସ୍କୃତି ସମ୍ମେଳନ'ର ରାଇରଙ୍ଗପୁର ଅଧିବେଶନରେ ଆମ ନିମନ୍ତ୍ରଣ ରକ୍ଷାକରି ସେ

ଯୋଗଦେଇଥିଲେ ଏବଂ ଏକ ଚିନ୍ତାଗର୍ଭିକ ପ୍ରବନ୍ଧ ପାଠ କରିଥିଲେ । ଅନେକ ତ ଆସିଥିଲେ, ପ୍ରବନ୍ଧ ପାଠ କରି ତାଙ୍କର ପାଣ୍ଡିତ୍ୟ ପ୍ରଦର୍ଶନ ପାଇଁ, କିନ୍ତୁ ମୁଁ ଦେଖିଛି କ୍ଷେତ୍ରବାସୀ ବାବୁ ଯୁବ ପିଢ଼ିର ସାହିତ୍ୟିକମାନଙ୍କ ସହିତ ମିଶିଲାବେଳେ କେମିତି ଆତ୍ମହରା ହୋଇପଡୁଥିଲେ । ସତେ ଯେମିତି ସେ ଚାହୁଁଥିଲେ ସମସ୍ତେ ଜଣେ ଜଣେ ସାହିତ୍ୟିକ ହୋଇଯାଆନ୍ତୁ, ନିଜ ନିଜର ଭାବ ପସରା ମେଲିଦେଇ ଏ ପୃଥିବୀକୁ କାବ୍ୟମୟ କରିଦିଅନ୍ତୁ । ଦୁଃଖ, ଯନ୍ତ୍ରଣା, ନିରାଶା, ହତାଶା, ଅଭାବବୋଧ, ନାରଖାର ମୃତ୍ୟୁଭୟ ଯେହେତୁ ସାହିତ୍ୟିକକୁ ସ୍ପର୍ଶ କରିପାରେନା, ସେଥିପାଇଁ ସେ ପ୍ରତ୍ୟେକଙ୍କୁ ଏହି ମହାମୃତ୍ୟୁଞ୍ଜୟ ମନ୍ତ୍ରରେ ଅଭିମନ୍ତ୍ରିତ କରିବାକୁ ଚାହୁଁଥିଲେ, ନିଜର ସାଂସାରିକ ତାଡ଼ନାକୁ ଆଢ଼େଇ ଦେଇ ସେ ଏକ ସୁନ୍ଦର ମଧୁମୟ ପୃଥିବୀ ଗଠନ ପାଇଁ ସତେ ଯେମିତି ଆକୁଳ ହୋଇଉଠୁଥିଲେ ।

ପରା ମୃତ୍ୟୁ ଏଭଳି ଜୀବନର ପୂର୍ଣ୍ଣଚ୍ଛେଦ ଟାଣିପାରେନା, କ୍ଷେତ୍ରବାସୀଙ୍କର ମୃତ୍ୟୁ ହୋଇନାହିଁ, ଯେଉଁ ଦେହରେ ଆମେ ତାଙ୍କୁ ଦେଖିଥିଲେ, ଜୀର୍ଣ୍ଣବାସ ପରିତ୍ୟାଗ ପରି, ସେ ଦେହକୁ ପରିତ୍ୟାଗ କରିଛନ୍ତି ସତ, ଓଡ଼ିଶାର ପ୍ରବୀଣ ତରୁଣ ଓ ଅନାଗତ ସମସ୍ତ ସାହିତ୍ୟପ୍ରେମୀଙ୍କ ଭିତରେ ଥିବା ସ୍ଫୁରଣ ଓ ଚେତନା ଭିତରେ କ୍ଷେତ୍ରବାସୀଙ୍କୁ ଖୋଜାଯାଇପାରିବ । କାରଣ ସ୍ୱପ୍ନ ହିଁ ତାଙ୍କ ଜୀବନ । ସାହିତ୍ୟ ତ ତାଙ୍କ ପ୍ରାଣ । ବନ୍ଧୁତା ହିଁ ମୃତ୍ୟୁପରର କ୍ଷେତ୍ରବାସୀଙ୍କୁ ଆଲିଙ୍ଗନ କରିବାର ଏକ କାଉଁରୀ କାଠି ।



# କ୍ଷେତ୍ରବାସୀଙ୍କ ସ୍ମୃତିରେ

ମୂଳଲେଖା - ସି.ଏସ.ପି. ମହାପାତ୍ର

ଅନୁବାଦ - ଡଃ ବନମାଳୀ ବାରିକ

ଆଜି କ୍ଷେତ୍ରବାସୀଙ୍କ କଥା ଚିନ୍ତାକରି ପଛକୁ ଫେରି ଚାହିଁବା ବେଳେ ଏକ ବିରାଟ ଶୂନ୍ୟତା ଅନୁଭବ କରୁଛି । ସତ କହିଲେ ତାଙ୍କଭଳି କୌଣସି ବ୍ୟକ୍ତିଙ୍କୁ ମୁଁ ଆଜି ପର୍ଯ୍ୟନ୍ତ ଆଉ କେଉଁଠି ଭେଟିନାହିଁ । ତାଙ୍କ ସାହିତ୍ୟ ଚର୍ଚ୍ଚାରେ ଏବଂ ସାଙ୍ଗଠନିକ ତତ୍ପରତାରେ ଯୌବନର ଉଚ୍ଛଳତା ଲକ୍ଷ୍ୟ କରାଯାଇପାରେ । ସେହିଭଳି ଓଡ଼ିଆ ସାହିତ୍ୟର ବିକାଶ ଓ ପ୍ରକାଶନ ଜରିଆରେ ଜ୍ଞାନର ବିତରଣ ପାଇଁ ତାଙ୍କର ଅକୁଣ୍ଠିତ ଆଗ୍ରହ ମୁଁ ଅନୁଭବ କରିଛି । ୧୯୬୦ ବେଳର କଥା । ସେ ବଲାଙ୍ଗୀର କଲେଜର ଜଣେ ଯୁବ ଅଧ୍ୟାପକ । କେନ୍ଦ୍ର ଓଡ଼ିଶାଠାରୁ ଦୂରରେ ଥାଇ ଏକ ଉପାନ୍ତ ଅଞ୍ଚଳ ବଲାଙ୍ଗୀରରେ ଆରମ୍ଭ ହେଲା ସାହିତ୍ୟିକ ଉଦ୍‌ବେଳନ । କେନ୍ଦ୍ର ହେଲା 'ଆତ୍ମପ୍ରକାଶିନୀ' । ସହଯୋଗୀ ହେଲେ ଶ୍ରୀନିବାସ ଉଦ୍‌ଗାତା, ନିତ୍ୟାନନ୍ଦ ଆଚାର୍ଯ୍ୟ ଓ ରାଜକିଶୋର ମିଶ୍ର । ସମସ୍ତେ ବର୍ତ୍ତମାନ ଓଡ଼ିଆ ସାହିତ୍ୟରେ ନିଜ ନିଜ କ୍ଷେତ୍ରରେ ସୁପ୍ରତିଷ୍ଠିତ । ବଲାଙ୍ଗୀରରେ ଅନୁଷ୍ଠିତ ଓଡ଼ିଆ ଯୁବ ବାର୍ଷିକ ଅଧିବେଶନ ଓ ସଫଳତାର କାହାଣୀ ଆଜି ବି ମୋ ସ୍ମୃତିପଟ୍ଟରେ ଉଦ୍‌ଭାସିତ ।

ଦେହାନ୍ତରର କିଛିଦିନ ପୂର୍ବରୁ ଭୁବନେଶ୍ୱରରେ ଥରେ ଦେଖାହୋଇଥିଲା । ମୁଣ୍ଡର ଗହଳ ବାଳ କିୟଦଂଶ ପାଚି ଯାଇଛି । ସେଦିନ ସେ ସାହିତ୍ୟର କଥା କହିଲେ ନାହିଁ । ଚର୍ଚ୍ଚା ହେଲା ତାଙ୍କ ଘରେ ଜଗନ୍ନାଥଙ୍କ କଥା, ପୂଜାପାଠ କଥା । ଠାକୁରଙ୍କ ମହିମା କଥା ।

ଦୁଇଟିଯାକ ସାକ୍ଷାତରେ ମୋର ମନେ ହେଲା ସେ ତାଙ୍କ ବୟସ ତୁଳନାରେ ବହୁ ଅଧିକ କାର୍ଯ୍ୟରେ ନିଜକୁ ଜଡ଼ିତ ରଖିଥିଲେ । ସମୟଠାରୁ ଅଧିକ ଦ୍ରୁତ ଗତିରେ ଦୌଡ଼ିବାକୁ ପ୍ରସ୍ତୁତ ଥିଲେ । ବୋଧହୁଏ ଅସତର୍କ ଭାବରେ କାଳର ନିର୍ଦ୍ଦେଶରେ ସେ ଚାଲୁଥିଲେ - ବହୁକାମ ସାରିବାକୁ ହେବ ଯେ ! ଅଳସ ହେଲେ ଚଳିବ ନାହିଁ ।

ଡକ୍ଟର (ଶ୍ରୀମତୀ ନାୟକ) ସେଦିନ ମୋ ହାତକୁ ବଢ଼ାଇ ଦେଲେ ତାଙ୍କ 'ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ପାଶ୍ଚାତ୍ୟ ପ୍ରଭାବ' ଶୀର୍ଷକ ପ୍ରକାଶିତ ଗବେଷଣା ସନ୍ଦର୍ଭ । ମୁଁ ଅତି ଆଗ୍ରହରେ ସେଇଟିକୁ ପଢ଼ିଲି । ମୁଁ ଜାଣେ ଓଡ଼ିଆ ସାହିତ୍ୟ ସଂପର୍କରେ ମୋର ଜ୍ଞାନ ସୀମିତ । ସାହିତ୍ୟ କ୍ଷେତ୍ରରେ ଅଧ୍ୟାପନା କ୍ଷେତ୍ରରେ ମୁଁ ପ୍ରାୟ ୨୫ ରୁ ଅଧିକ ବର୍ଷ କାଳ କଟାଇଛି । ମାତ୍ର ଜଣେ ବନ୍ଧୁ ହିସାବରେ, ଜଣେ ଉତ୍ସୁକ ପାଠକ ହିସାବରେ

ବହିଟିକୁ ଯେତେ ପଢ଼ିଲି ସେତେ ନୂଆ ନୂଆ ଲାଗିଲା । ଦେଖିଲି ଜଣେ ସନ୍ତରଣକାରୀ ପାଣିରେ ବୁଡୁଛି ଉଠୁଛି, ବୁଡୁଛି ଉଠୁଛି - ଖୋଜିବାରେ ଲାଗିଛି ଏବଂ ଲାଗିଛି - ଯେପରି ଅନେକ ଜିନିଷ ଖୋଜି ବାହାର କରିବାକୁ ହେବ । ଆଜିକାଲି ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ (U.G.C) ଗବେଷଣାର ବିଧି ଉପରେ ଅଧିକ ଗୁରୁତ୍ୱ ଦେଉଛି । କିନ୍ତୁ ନିର୍ଯାସ ଉପରେ ଗୁରୁତ୍ୱ ନାହିଁ । ସେହି ଦୃଷ୍ଟିରୁ ସନ୍ଦର୍ଭଟି ନିଖୁଣ । କିନ୍ତୁ (Substance) ଯୁକ୍ତିତ୍ରୟ ସୂତ୍ର ଅନୁସାରେ ପ୍ରସ୍ତାବନା - ବିତର୍କ - ଉପସଂହାର (QED) ନଥିବାରୁ ସତୁରି ଓ ଅଶୀଦଶକର ଅଧିକାଂଶ ଗବେଷଣା ନ୍ୟୁନମାନର (Substandard) ବା ଜ୍ଞାନାର୍ଜନର ବାଧକ (Obscuranti) ।

କେତୋଟି ଦଶକ ତଳେ କ୍ଷେତ୍ରବାସୀଙ୍କର ଗୋଟିଏ ଗଳ୍ପ "ମରୁ ବଲ୍ଲରୀରେ ପୁଲକ" ପଢ଼ିଥିଲି । କେଉଁ ଏକ ଅଖ୍ୟାତ ପତ୍ରିକାରେ ତାହା ପ୍ରକାଶ ପାଇଥିଲା । ତାଙ୍କର ଲେଖା ସହ ଏହା ମୋର ପ୍ରଥମ ପରିଚିତି । ସେଇଟି ମୋତେ ଖୁବ୍ ଛୁଇଁଥିଲା । କାରଣ କୁଷ୍ଠ ରୋଗାକ୍ରାନ୍ତ ପ୍ରେମୀଯୁଗଳଙ୍କର ଦୟନୀୟ ଅବସ୍ଥା ଭିତରେ ଫୁଟିଥିଲା ସେମାନଙ୍କ ପ୍ରୀତିର ସାନ୍ଦ୍ରତା । ସମାଜର ସୁଖ ଓ ସୌଭାଗ୍ୟ ଭିତରେ ଅନେକଙ୍କୁ ଏପରି କ୍ୱଚିତ ଦେଖିବାକୁ ମିଳେ । ସବୁକଥା ମୋର ଠିକ୍ ମନେନାହିଁ । ଯେତିକି ମନେଅଛି - ତାହା ହେଲା କାହାଣୀଟିର କଳାତ୍ମକ ପରୀକ୍ଷା ନିରୀକ୍ଷା ଭିତରେ ରହିଛି ଜଣେ ଲେଖକର Negative capability ଓ ତାଙ୍କର ଅଙ୍ଗୀକାର ନିଜର ଚିନ୍ତା ଓ ଅନୁଭବକୁ ବସ୍ତୁରୂପ ଦେବାର ସାମର୍ଥ୍ୟ । ବିଷୟ ଦୃଷ୍ଟିରୁ ଏଥିରେ ଜୀବନର ଜୟଗାନ କରାଯାଇଛି (Thematically it celebrated the truism of 'life')

ପୂର୍ବବର୍ତ୍ତୀ ଅଧ୍ୟାୟ ଦିବଂଗତ ବନ୍ଧୁଙ୍କ ପ୍ରଶଂସା ପାଇଁ ଉଦ୍ଦିଷ୍ଟ ନୁହେଁ । ବରଂ ଏହା ଗବେଷଣା ସନ୍ଦର୍ଭ ବିଷୟରେ ମୋର ପ୍ରତିକ୍ରିୟା ମାତ୍ର । ମୋତେ ମନେହେଲା ଏହା ସେଇ ଦୌଡ଼ିବାର ଫଳଶ୍ରୁତି, ଖୋଜିବାର ନିଶା । ୧୯୨୦ ମସିହା ପର୍ଯ୍ୟନ୍ତ ଆଧୁନିକ ଓଡ଼ିଆ ସାହିତ୍ୟର ବିଶିଷ୍ଟ କବିମାନଙ୍କ ଉପରେ ଇଂରେଜ କବିମାନଙ୍କ ପ୍ରଭାବ ସଂପର୍କରେ ଏହା ଏକ ଉଚ୍ଚକୋଟୀର ଐତିହାସିକ ସମୀକ୍ଷା । ନିଜର ସିଦ୍ଧାନ୍ତକୁ ପ୍ରମାଣ କରିବା ପାଇଁ ସେ ବହୁତ ଇଂରେଜ କବିଙ୍କ କବିତାରୁ ଉଦ୍ଧୃତିମାନ ଉପସ୍ଥାପନ କରିଛନ୍ତି । ଆଧୁନିକ ଯୁଗ ନିର୍ମାଣରେ ୧୯୫୦ ପରବର୍ତ୍ତୀ ବହୁ ପତ୍ର ପତ୍ରିକାର ଅବଦାନକୁ ଏଠାରେ ସ୍ୱୀକାର କରାଯାଇଛି । ସେମାନଙ୍କ ଆବିର୍ଭାବ, କବିମାନଙ୍କର ଆଧୁନିକତା ପ୍ରତି ଆଗ୍ରହ, ସାହିତ୍ୟରେ ବିଷୟଗତ ଓ ଶୈଳୀଗତ ପରିବର୍ତ୍ତନ ସେସବୁ ଏଠି ଦେଖାଇ ଦିଆଯାଇଛି । ୟୁରୋପୀୟ ପ୍ରଭାବ ଫଳରେ ଭାରତ ଉପନିବେଶରେ ସାମାଜିକ

ସାଂସ୍କୃତିକ ପରିବର୍ତ୍ତନ ସହ ତାଳ ଦେଇ ସାହିତ୍ୟ ମଧ୍ୟ ଆଗେଇ ଚାଲିଥିଲା । ପ୍ରଭାବ, ଅନୁକରଣ, ଅନୁସରଣ ଫଳରେ ସୃଜନଶୀଳ ସାହିତ୍ୟ ଦେଶୀୟ ପରିବେଷରେ ଏକ ନୂତନ ଆକର୍ଷଣୀୟ ରୂପ ଧାରଣ କଲା । ବିଶିଷ୍ଟ କବିମାନଙ୍କ କୃତିରେ ପ୍ରକାଶିତ ହେଲା ଅନନ୍ୟ ନାନ୍ଦନିକ ଆବେଦନ ।

୧୮୦୩ ରୁ ୧୯୨୦ ମଧ୍ୟରେ ଓଡ଼ିଆ କବିତାର ଧାରା (trend) ଗତିଶୀଳତା (continunity) ବିବର୍ତ୍ତନ (evolution) ର ନିଖୁଣ ଚିତ୍ର ସନ୍ଦର୍ଭଟିରେ ଉପସ୍ଥାପିତ । ଏଥିରେ ଓଡ଼ିଆ ସାହିତ୍ୟର ଆଗାମୀ ଗବେଷକମାନଙ୍କ ପାଇଁ ଯଥେଷ୍ଟ ଭିତ୍ତିଭୂମି ଯୋଗାଇ ଦିଆଯାଇଛି । ସମସ୍ତେ ତାଙ୍କର ସବୁ ଉପସଂହାର ସହ ସହମତ ହୋଇ ନ ପାରନ୍ତି । ଏହା ସତ୍ତ୍ୱେ ଗ୍ରନ୍ଥଟି ନିଶ୍ଚିତ ପାଠ୍ୟ । କେତେକ ସ୍ଥଳରେ ପୁନରାବୃତ୍ତି ରହିଛି । ମାତ୍ର ଅଧିକତର ଗବେଷଣା ପାଇଁ ଏଥିରେ ଅଛି ଅନେକ ଦିଗଦର୍ଶନ ।

୧୯୨୦ ପରବର୍ତ୍ତୀ ଓଡ଼ିଆ କବିତାର ଧାରା ଓ ତା ଉପରେ ବିଭିନ୍ନ ପ୍ରଭାବ ସଂପର୍କରେ ବ୍ୟାପକ ଗବେଷଣା ହେବା ଉଚିତ । ବିଶ୍ୱଯୁଦ୍ଧ ଓ ସ୍ୱାଧୀନତା ପରେ ପରେ ସାହିତ୍ୟରେ ନୂଆ ନୂଆ ଧାରାର ଉଦ୍ଭବ ହୋଇଛି । ଆଧୁନିକତାବାଦ ଓ ଉତ୍ତର ଆଧୁନିକତାବାଦ ସଂପର୍କରେ ଏବେ ବ୍ୟାପକ ଚର୍ଚ୍ଚା ଆରମ୍ଭ ହୋଇଛି । ଆଧୁନିକ ଓଡ଼ିଆ ସାହିତ୍ୟରେ ଅନେକ ଯଶସ୍ୱୀ / ଆର୍ନ୍ତଜାତିକ ଖ୍ୟାତିସଂପନ୍ନ ଲେଖକଙ୍କ ଆବିର୍ଭାବ ଘଟିଛି । ନୂଆଧାରାରେ ଚର୍ଚ୍ଚା ହେଲେ ଓଡ଼ିଆ ସମାଲୋଚନାର ପ୍ରଭୂତ ଉନ୍ନତି ହେବ ଏବଂ ତାହାହିଁ ହେବ ସ୍ୱର୍ଗତ ଆତ୍ମାପ୍ରତି ଯଥାର୍ଥ ସମ୍ମାନ ।

ପ୍ରିୟ କ୍ଷେତ୍ରବାସୀଙ୍କ ଆତ୍ମା ପରମ ଶାନ୍ତିରେ ଥାଉ ।



# କ୍ଷେତ୍ରବାସୀ : ସ୍ମୃତି, ଶୋକ, ଶ୍ରଦ୍ଧାଞ୍ଜଳି

ଡଃ ବିଭୂତି ପଟ୍ଟନାୟକ

କ୍ଷେତ୍ରବାସୀଙ୍କ ସହ ମୋର ପ୍ରଥମ ଦେଖା ୧୯୫୭ ମସିହାରେ । ମୁଁ ସେତେବେଳେ ଥାଏ ଖ୍ରୀଷ୍ଟ କଲେଜ ୟୁନିୟନର ସଭାପତି ଏବଂ ନିଖିଳ ଉତ୍କଳ ଛାତ୍ର ୟୁନିୟନର ସାଧାରଣ ସଂପାଦକ । ଐତିହାସିକ ସୀମା ଆନ୍ଦୋଳନରେ ନେତୃତ୍ୱ ନେଇଥିବା ଯୋଗୁଁ ମୋର ଖ୍ୟାତି ଓ ପରିଚିତି ସେତେବେଳେ ସାରା ଓଡ଼ିଶାରେ ବ୍ୟାପି ଯାଇଥାଏ । ସେଥିପାଇଁ ଛାତ୍ର ୟୁନିୟନର ସଭାପତି ସନ୍ତୋଷ କୁମାର ସାହୁ ମତେ ସୀମା ଆନ୍ଦୋଳନ ପରେ ସାରା ଓଡ଼ିଶାର କଲେଜଗୁଡ଼ିକ ବୁଲି ଛାତ୍ର ୟୁନିୟନ ସଂଗଠନ କରିବା ଦାୟିତ୍ୱ ଦେଇଥିଲେ । ସେତେବେଳେ ଭଦ୍ରକ ଅଲଗା ଜିଲ୍ଲା ହୋଇ ନଥିଲା, ଥିଲା ବାଲେଶ୍ୱର ଜିଲ୍ଲାର ଏକ ସବ୍‌ଡ଼ିଭିଜନ୍ । ଭଦ୍ରକରେ ଆମ ୟୁନିୟନର ଏକ ଶାଖା ଥାଏ । ଆଡ୍‌ଭୋକେଟ୍ କରୁଣାକର ଦାସଙ୍କ ସାନ ଭାଇ ଜଣେ କର୍ମକର୍ତ୍ତା ଥାଆନ୍ତି । ମୁଁ ଭଦ୍ରକ ଗଲେ ତାଙ୍କ ଘରେ ରହେ ଏବଂ କଲେଜ ୟୁନିୟନ ନିର୍ବାଚନରେ କିପରି ଆମ ସଂଗଠନର ପ୍ରାର୍ଥୀ ଅଧିକ ସଂଖ୍ୟାରେ ଜୟଯୁକ୍ତ ହେବେ, ସେ ସଂପର୍କରେ ବିଚାର ବିମର୍ଶ କରେ । ଦରକାର ହେଲେ ୟୁନିୟନ ସଭ୍ୟମାନଙ୍କୁ ଭାଷଣ ଦିଏ ।

ଥରେ ଭଦ୍ରକ କଲେଜରେ ଆମ ୟୁନିଅନ ପ୍ରାର୍ଥୀଙ୍କୁ ଜିତାଇବା ପାଇଁ ମୋ ଲାଗି ଧୁସୁରି ପଡ଼ିଆରେ ଏକ ଛାତ୍ରସଭାର ଆୟୋଜନ କରାଯାଇଥିଲା । ଉଦ୍ୟୋକ୍ତା ଥିଲେ ଆଇ.ଏ. ଶ୍ରେଣୀର ଛାତ୍ର ଯୁଗଳ କିଶୋର ପଟ୍ଟନାୟକ । ମନେ ଅଛି, ସଭାରେ ମତେ ସେ ଆମ ୟୁନିୟନରେ ଦୁଇଜଣ ବିଶିଷ୍ଟ ସଭ୍ୟଙ୍କୁ ପରିଚୟ କରାଇ ଦେଇଥିଲେ । ଜଣେ ରତ୍ନାକର ବାରିକ ଏବଂ ଅନ୍ୟଜଣକ କ୍ଷେତ୍ରବାସୀ ।

ଧଳା ଫୁଲପ୍ୟାଣ୍ଟ ଏବଂ ଧଳା ହାୱାଇନ୍ ସାର୍ଟ ପିନ୍ଧି ଶାନ୍ତ ଶିଷ୍ଟ ଭାବରେ ଠିଆ ହୋଇଥିଲେ କ୍ଷେତ୍ରବାସୀ । ଛାତ୍ରନେତାମାନଙ୍କ ଠାରେ ସାଧାରଣତଃ ଯେଉଁସବୁ ଉଦ୍ଦାମତା ଥାଏ, ତାହା ତାଙ୍କଠାରେ ଅନୁପସ୍ଥିତ ଥିଲା ।

ମୁଁ ପଚାରିଲି - ସେ କ'ଣ ୟୁନିୟନ ତରଫରୁ ପ୍ରାର୍ଥୀ ହୋଇଛନ୍ତି; ଯୁଗଳ ଉତ୍ତର ଦେଲେ - ନା, ସେ ଜଣେ କବି, ଲେଖାଲେଖି କରନ୍ତି । ୟୁନିୟନର୍ ଜଣେ ନୀରବ କର୍ମୀ ।

ସେଇ ନୀରବ କର୍ମୀ ଶବ୍ଦଟା ଅନେକ ଦିନ ପର୍ଯ୍ୟନ୍ତ ମୋର ମନେ ରହିଯାଇଥିଲା ।

ତା ଆରବର୍ଷ ବୋଧହୁଏ ଭଦ୍ରକରେ ହେଲା ନିଖିଳ ଉତ୍କଳ ଛାତ୍ର ୟୁନିୟନର ବାର୍ଷିକ ସମ୍ମିଳନୀ । ସେଇ ସମ୍ମିଳନୀରେ ସନ୍ତୋଷ ସାହୁଙ୍କ ସ୍ଥାନରେ ମୁଁ ୟୁନିୟନର ସଭାପତି ନିର୍ବାଚିତ ହେଲି । ଭଦ୍ରକ କଲେଜ ୟୁନିୟନ ସଭାପତି ଥିଲେ ସେତେବେଳେ ସନାତନ ଦେଓ । ସେ ନିଖିଳ ଉତ୍କଳ ଛାତ୍ର ୟୁନିୟନର ସାଧାରଣ ସଂପାଦକ ଏବଂ ଯୁଗଳ କିଶୋର ପଟ୍ଟନାୟକ ଉପସଭାପତି ଭାବରେ ନିର୍ବାଚିତ ହୋଇଥିଲେ ।

ସେହି ସମ୍ମିଳନୀକୁ ମୁଖ୍ୟ ଅତିଥି ହୋଇ ଯାଇଥିଲେ ବାରିଷ୍ଟର ଗୋବିନ୍ଦ ଦାସ । ସେତେବେଳକୁ ତାଙ୍କ 'ଅମାବାସ୍ୟାର ଚନ୍ଦ୍ର' କିମ୍ବା 'ଦେଶେ ଦେଶେ' ଭ୍ରମଣ କାହାଣୀ ପୁସ୍ତକ ଆକାରରେ ଛପା ହୋଇନଥିଲା । କିନ୍ତୁ ସାହିତ୍ୟିକ, ବୁଦ୍ଧିଜୀବୀ ଭାବରେ ସେ ଛାତ୍ରଛାତ୍ରୀମାନଙ୍କର ଆକର୍ଷଣର କେନ୍ଦ୍ରବିନ୍ଦୁ ହୋଇ ରହିଥିଲେ । ଭଦ୍ରକ କଲେଜ ସେତେବେଳେ ଥିଲା ଉତ୍କଳ ଛାତ୍ର ୟୁନିୟନର ସଂଗଠିତ ଦୁର୍ଗ । ସତ୍ୟଜିତ, ଯୁଗଳ, କ୍ଷେତ୍ରବାସୀ, ରତ୍ନାକର, ଅଳକା ସିହ୍ନା, ତୃପ୍ତି ଦେ ପ୍ରମୁଖ ବନ୍ଧୁ ଆଦର୍ଶବାଦୀ, କଳା-ସାହିତ୍ୟପ୍ରେମୀ ଛାତ୍ରଛାତ୍ରୀ ୟୁନିୟନ ପତାକାତଳେ ସଂଘବଦ୍ଧ ହୋଇଥିଲେ ।

ପୂର୍ବରୁ ଉତ୍କଳ ଛାତ୍ର ୟୁନିୟନର ସାଂସ୍କୃତିକ ମୁଖପତ୍ର, ଉଦୟଚନ୍ଦ୍ର ମହାପାତ୍ର, ଗୌରୀଶଙ୍କର ମହାପାତ୍ର ଓ ପ୍ରସନ୍ନ ଦାସଙ୍କ ଉଦ୍ୟମରେ ବ୍ରହ୍ମପୁରରୁ ପ୍ରକାଶିତ ହେଉଥିଲା । ଏହି 'ରଶ୍ମି' ହିଁ ସାରା ଓଡ଼ିଶାର ଛାତ୍ର ୟୁନିୟନ ସଭ୍ୟ-ସମର୍ଥକମାନଙ୍କ ମଧ୍ୟରେ ସେତୁବନ୍ଧନ କରିଥିଲା । ସ୍ନାତକୋତ୍ତର ଶିକ୍ଷା ପାଇଁ ଉଦୟ ବାବୁ ପ୍ରମୁଖ ବ୍ରହ୍ମପୁର ଛାଡ଼ି ଚାଲି ଆସିଲା ପରେ 'ରଶ୍ମି' ପ୍ରକାଶନ ବନ୍ଦ ରହିଥିଲା । ମୁଁ ୟୁନିୟନ ସଭାପତି ଦାୟିତ୍ୱ ଗ୍ରହଣ କଲାପରେ 'ରଶ୍ମି' ଭଦ୍ରକରୁ ପ୍ରକାଶ ପାଇବା ସ୍ଥିର ହେଲା । ଯୁଗଳ ଓ କ୍ଷେତ୍ରବାସୀ ତାର ପ୍ରକାଶନ ଓ ସଂପାଦନା ଦାୟିତ୍ୱ ଗ୍ରହଣ କଲେ ।

ନିର୍ବାଚନ ରାଜନୀତି ପ୍ରତି ବିମୁଖ, ନିରବକର୍ମୀ କ୍ଷେତ୍ରବାସୀ 'ରଶ୍ମି' ସଂପାଦନାରେ ନିଜର ମୌଳିକ ଚିନ୍ତା, ସାହିତ୍ୟିକ ପ୍ରତିଭା ଏବଂ ସଂଗଠନ ଶକ୍ତିର ପରିଚୟ ଦେଇଥିଲେ । ତାଙ୍କ ସଂପାଦିତ 'ରଶ୍ମି'ର ସେହି ସଂଖ୍ୟାଗୁଡ଼ିକ ପରିଛନ୍ନ ଓ ସଂଗ୍ରହଣୀୟ ହୋଇପାରିଥିଲା ।

ଛାତ୍ର ଜୀବନର ଅବସାନ ପରେ କ୍ଷେତ୍ରବାସୀଙ୍କ ସହ ମୋର ପ୍ରତ୍ୟକ୍ଷ ସଂପର୍କ ଛିନ୍ନ ହୋଇଯାଇଥିଲା । ଲାବଣ୍ୟଙ୍କ ସହ ତାଙ୍କର ବିବାହର ସଂପୂର୍ଣ୍ଣ ବିବରଣୀ ଯୁଗଳ ବାବୁଙ୍କ ଠାରୁ ଶୁଣିଥିଲି । କ୍ଷେତ୍ରବାସୀ ଓଡ଼ିଆ ଭାଷା ସାହିତ୍ୟ ବିଭାଗୀୟ ଅଧ୍ୟାପକ, ରତ୍ନାକର ହାଇସ୍କୁଲ ଶିକ୍ଷକ, ଯୁଗଳ ପ୍ରଥମେ ଓକିଲ ଓ ପରେ ଏମ୍.ଏଲ୍.ଏ. ଏବଂ କ୍ୟାବିନେଟ୍ ପାହ୍ୟାର ମନ୍ତ୍ରୀ ହୋଇଥିଲେ । ସେ ମୋର ବିଜେବି ନଗରର ପ୍ରତିବେଶୀ । ପ୍ରାତଃ ଭ୍ରମଣ କାଳରେ ପ୍ରାୟ ଦେଖା ହୁଏ । ତାଙ୍କରି ପାଖରୁ କ୍ଷେତ୍ରବାସୀଙ୍କ ଖବର ପାଇଯାଏ ।

ଜଣେ କବି, ପ୍ରାବନ୍ଧିକ ଓ ଗାଳ୍ପିକ ଭାବରେ ସେ ଯେପରି ସୁନାମ ଅର୍ଜନ କରିଥିଲେ, ଶୁଣିଛି ଜଣେ ଛାତ୍ରବତ୍ସଳ ଓଡ଼ିଆ ଅଧ୍ୟାପକ ଭାବରେ ମଧ୍ୟ ସେ ସେହିଭଳି ଖ୍ୟାତିମାନ୍ ଥିଲେ । ମୁଁ କଟକ-ଭୁବନେଶ୍ୱରରେ ଥିଲାବେଳେ ସେ ସମ୍ବଲପୁର, ବଲାଙ୍ଗୀର ଏବଂ ବ୍ରହ୍ମପୁରରେ ଅଧ୍ୟାପନା କରୁଥିଲେ । ତେଣୁ ତାଙ୍କ ସହିତ ମୋର ଚାକ୍ଷୁସ ସାକ୍ଷାତକାର କ୍ୱଚିତ ହେଉଥିଲା ।

ତାଙ୍କର ଅନେକ ବହିର ପ୍ରକାଶକ ଥିଲେ ବ୍ରହ୍ମପୁରର ପୁସ୍ତକ ଭଣ୍ଡାର । ତାଙ୍କ ବହି ଦୋକାନର ଏକ ଶାଖା ଦୋକାନ ଥିଲା ବାଙ୍କାବଜାର ଧର୍ମଶାଳା ପରିସରରେ । ମଝିରେ ମଝିରେ କ୍ଷେତ୍ରବାସୀଙ୍କ ସହିତ ସେହି ଦୋକାନରେ ଦେଖା ହେଉଥିଲା । ତାଙ୍କ ସଂପାଦନରେ ପ୍ରକାଶିତ ରାଧାନାଥ ଗ୍ରନ୍ଥାବଳୀର ଭୂମିକା ପଢ଼ି ମତାମତ ଜଣାଇବା ପାଇଁ ସେ ମତେ କହିଥିଲେ; କିପରି ଭାବରେ ଗଳ୍ପ, ଉପନ୍ୟାସ, କବିତା ଛାଡ଼ି ସେ ପ୍ରବନ୍ଧ ରଚନା ଏବଂ ପୁସ୍ତକ ସଂପାଦନାରେ ନିଜକୁ ମନୋନିବେଶ କରିଛନ୍ତି ସେ କଥା ମତେ ବୁଝାଇଥିଲେ ।

ମୁଁ ତାଙ୍କୁ କହିଥିଲି - ମୌଳିକ ରଚନା ଛାଡ଼ ନାହିଁ, କିନ୍ତୁ ସାହିତ୍ୟ-ସମାଲୋଚନାକୁ ସେଥିପାଇଁ ଅବହେଳା କର ନାହିଁ ।

କ୍ଷେତ୍ରବାସୀ ଥିଲେ ଖୁବ୍ ଲଜ୍ଜାଶୀଳ ବ୍ୟକ୍ତି । ନିଜ ଲେଖାର ବଡ଼ିମା ପ୍ରଦର୍ଶନ କରିବା ତାଙ୍କର ସ୍ୱଭାବ-ବିରୁଦ୍ଧ ଥିଲା । ତାଙ୍କୁ ଦେଖିଲେ ଜଣେ ପ୍ରେମିକ କବିର ଭାବମୂର୍ତ୍ତି ଆଖି ଆଗରେ ଭାସିଉଠୁଥିଲା । ସେ' ଯେ ଜଣେ ପ୍ରାଜ୍ଞ ଗବେଷକ; ତାଙ୍କ "ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ" ସନ୍ଦର୍ଭ ଏକ ଅନନ୍ୟ ସୃଷ୍ଟି; ଏକଥା କହିଲାବେଳେ ସେ ଖୁବ୍ ଅପ୍ରତିଭ ହୋଇ ପଡୁଥିଲେ ।

ମୋର ବ୍ୟକ୍ତିଗତ ସଂଗ୍ରହରେ ଯେଉଁ କେତୋଟି ସନ୍ଦର୍ଭ ଅଛି, କ୍ଷେତ୍ରବାସୀଙ୍କ ଗବେଷଣା ସନ୍ଦର୍ଭ ତା ମଧ୍ୟରୁ ଅନ୍ୟତମ । ପାଶ୍ଚାତ୍ୟ ସାହିତ୍ୟ ହେଉଛି ଆଧୁନିକ ଓଡ଼ିଆ ସାହିତ୍ୟକୁ ବୁଝିବା ଲାଗି ଅସଲ ଚାବିକାଠି । ସଂସ୍କୃତ, ପ୍ରାକୃତ, ପାଲି ଭାଷା ସାହିତ୍ୟ ସଂପର୍କରେ ସମ୍ୟକ ଧାରଣା ନଥିଲେ ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟକୁ ସଠିକ୍ ଭାବରେ ବୁଝିବା ସହଜ ନୁହେଁ; ପାଶ୍ଚାତ୍ୟ ସାହିତ୍ୟ ସଂପର୍କରେ ସେଇପରି ସମୁଚିତ ବୁଝାମଣା ନଥିଲେ ଆଧୁନିକ ଗଳ୍ପ ଉପନ୍ୟାସ, କାବ୍ୟ, ନାଟକର ତାତ୍ପର୍ଯ୍ୟ ବୁଝିବା ସେହିପରି ଅସମ୍ଭବ । ଆମ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଏମ୍.ଏ, ପାଠ୍ୟକ୍ରମରେ ସଂସ୍କୃତ, ପାଲି, ପ୍ରାକୃତ ସାହିତ୍ୟ ଅନ୍ତର୍ଭୁକ୍ତ ହୋଇଥିଲେ ବି ଇଂରେଜୀ, ଫରାସୀ କିମ୍ବା ଅନ୍ୟ ୟୁରୋପୀୟ ଭାଷା ସାହିତ୍ୟ ସଂପର୍କରେ କୌଣସି ବହି ପାଠ କରିବାକୁ ସୁଯୋଗ ନାହିଁ । ସେଥିପାଇଁ

ଓଡ଼ିଆ ଅଧ୍ୟାପକମାନେ ଆଧୁନିକ ଓଡ଼ିଆ ସାହିତ୍ୟକୁ ପ୍ରାଚୀନ-ମଧ୍ୟଯୁଗୀୟ ସାହିତ୍ୟ ଭଳି ଯଥାଯଥ ଭାବରେ ଉପସ୍ଥାପନ କଲାବେଳେ ବାରମ୍ବାର ଢୋକ ଗିଳନ୍ତି । ଆଧୁନିକ ଓଡ଼ିଆ ସାହିତ୍ୟର ମୂଲ୍ୟାୟନ ଇଂରେଜୀ ଭାଷାର ଅଧ୍ୟାପକମାନେ ହିଁ କରିଥାଆନ୍ତି ।

କ୍ଷେତ୍ରବାସୀ ଆଧୁନିକ ଓଡ଼ିଆ କାବ୍ୟ କିପରି ପାଶ୍ଚାତ୍ୟ ସାହିତ୍ୟ ଦ୍ୱାରା ପ୍ରଭାବିତ ଓ ଅନୁପ୍ରାଣିତ, ସେ ସଂପର୍କରେ ସନ୍ଦର୍ଭ ରଚନା କରି ଓଡ଼ିଆ ସମାଲୋଚନା କ୍ଷେତ୍ରରେ ଏକ ପଥିକୃତ ଉଦ୍ୟମ କରିଥିଲେ । ତାଙ୍କର ଏହି ଆଲୋଚନା ଉପରଠାଉରିଆ ନୁହେଁ, ପ୍ରଭାବିତ ହୋଇଥିବା ଓଡ଼ିଆ କାବ୍ୟ ଓ କବିତା ଏବଂ ପ୍ରଭାବିତ କରିଥିବା ୟୁରୋପୀୟ, ବିଶେଷତଃ ଇଂରେଜୀ କବି ଓ କାବ୍ୟ ସଂପର୍କରେ ତାଙ୍କର ପ୍ରାଞ୍ଜଳ ପରିଚ୍ଛନ୍ନ ଅବବୋଧ ଏ ଗବେଷଣା ନିବନ୍ଧକୁ ଏକ ଅବଶ୍ୟ ପାଠ୍ୟ ଗ୍ରନ୍ଥରେ ପରିଣିତ କରିଛି । ଆଧୁନିକ ଓଡ଼ିଆ ସାହିତ୍ୟର କେବଳ ପ୍ରମୁଖ କବି ନୁହନ୍ତି, ବହୁ ସ୍ୱଳ୍ପଜ୍ଞାତ, ଅବହେଳିତ କବିଙ୍କର କାବ୍ୟକୃତି କିପରି ପାଶ୍ଚାତ୍ୟ ଭାବବସ୍ତୁ ଓ ଆଙ୍ଗିକ ଦ୍ୱାରା ପ୍ରଭାବିତ ହୋଇଛି, ତାହା ଏହି ଗ୍ରନ୍ଥରେ ଆଲୋଚନା କରି ସେମାନଙ୍କୁ ଆଲୋକକୁ ସେ ଆଣିପାରିଛନ୍ତି । ମଣିଚରଣ ମହାପାତ୍ର, ସାଧୁଚରଣ ରାୟ, ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ, ବଜ୍ର କୁମାର ବଳଭଦ୍ର ଦେବ ଓ ଅଜୟଚନ୍ଦ୍ର ଦାସ ଏହି ସ୍ୱଳ୍ପ-ପରିଚିଚିତ କବିମାନଙ୍କ ମଧ୍ୟରେ ଅନ୍ୟତମ । ସେହିଭଳି ଗୋପାଳବଲ୍ଲଭ, ଚନ୍ଦ୍ରମୋହନ ମହାରଣା, ତାରିଣୀଚରଣ ରଥ ଅନ୍ୟ ଭାବରେ ଓଡ଼ିଆ ସାହିତ୍ୟରେ ପରିଚିତ । କିନ୍ତୁ ସେମାନେ ପାଶ୍ଚାତ୍ୟ ଭାବଧାରା ଦ୍ୱାରା ଉଦ୍‌ବୁଦ୍ଧ ହୋଇ ସ୍ମରଣୀୟ କବିତା ମଧ୍ୟ ରଚନା କରିଥିଲେ । ତାହା କ୍ଷେତ୍ରବାସୀଙ୍କ ଏହି ଗବେଷଣା-ଗ୍ରନ୍ଥ ପାଠକରି ନଥିଲେ ମୋ ଭଳି ଅନେକ ଜାଣିପାରିନଥାନ୍ତେ ।

ମତେ ବେଶୀ ମୁଗ୍ଧ କରିଥିଲା ତାଙ୍କ ଗବେଷଣା-ସନ୍ଦର୍ଭର କାବ୍ୟଧର୍ମୀ ଭାଷା । ପଢ଼ିଲାବେଳେ କେଉଁଠି ଝୁଣ୍ଟିବାକୁ ହୋଇ ନ ଥିଲା । ଗହନ, ଗଭୀର କଥାକୁ ସେ ସହଜ ଓ ସରଳ ଭାବରେ କହି ଜାଣିଥିଲେ ।

ତାଙ୍କ ସହିତ ମୋର ଶେଷ ଦେଖା ହୋଇଥିଲା ଭୁବନେଶ୍ୱର ସଚିବାଳୟରେ ରାଇଚରଣ ଦାସଙ୍କ କୋଠରୀରେ । ରାଇଚରଣ ବାବୁ ସେତେବେଳେ ଶିକ୍ଷା ବିଭାଗର ଡେପୁଟି ସେକ୍ରେଟେରୀ ଥିଲେ । ତାଙ୍କ ସହିତ କେଉଁ ବିଷୟରେ ବୁଝାଶୁଝା କରିବାକୁ ସେ ଯାଇଥିଲେ ।

ମୋ ସହିତ ଦେଖା ହେବାମାତ୍ରେ ପଚାରିଲେ- ଆମ ୟୁ.ଜି.ସି. କଥା କ'ଣ ହେଲା ? ଆମକୁ ଏ ସରକାର ୟୁ.ଜି.ସି. ହାରରେ କେବେ ଦରମା ଦେବେ ?

ମୁଁ ତାଙ୍କୁ କୌଣସି ସଠିକ୍ ଉତ୍ତର ଦେଇପାରି ନଥିଲି । କାରଣ ସେ ସଂପର୍କରେ ମୋ ପାଖରେ କୌଣସି ତଥ୍ୟ ନଥିଲା କିମ୍ବା ଜାଣିବା ପାଇଁ ଖୁବ୍ ଆଗ୍ରହ ନଥିଲା ।

ସରକାର ତାପରେ ୟୁ.ଜି.ସି. ହାରରେ ଦରମା ଦେଲେ, କିନ୍ତୁ ସେହି ବର୍ଦ୍ଧିତ ଦରମା ପାଇବା ପାଇଁ କ୍ଷେତ୍ରବାସୀ ଅପେକ୍ଷା କରି ନଥିଲେ । ଅବେଳରେ, ଅସମୟରେ, ସେ ୧୯୮୬, ଜାନୁୟାରୀ, ୨୫ ରେ ଚାଲିଗଲେ । ଖବରଟା ଶୁଣି ମୁଁ ଆଦୌ ବିଶ୍ବାସ କରିପାରି ନ ଥିଲି ।

ସନ୍ଧ୍ୟା ହେବା ଆଗରୁ ସୂର୍ଯ୍ୟ ଅସ୍ତ ହୋଇଯାଇଛନ୍ତି ଏକଥା ଆଜି ବି ଭାବିଲେ ଆଖି ଲୁହରେ ରୁଦ୍ଧ ହୋଇଯାଏ ।



# କ୍ଷେତ୍ରବାସୀ ବାବୁଙ୍କ ସ୍ମରଣେ

ଡଃ ଧନେଶ୍ୱର ମହାପାତ୍ର

କନିଷ୍ଠଙ୍କର ସ୍ମୃତିଚାରଣ କରିବା ଜ୍ୟେଷ୍ଠଙ୍କ ପକ୍ଷେ ଅତ୍ୟନ୍ତ ଦୁଃଖଦାୟକ । କିନ୍ତୁ ବିଧାତାର କ୍ରୂର ବିଧାନରେ ସମୟେ ସମୟେ ଏପରି କରିବାକୁ ପଡ଼େ । "ସେହି କାଳଯମ ଏଡ଼େ ଦାରୁଣ ସେ ନ ଜଣାଇ ଦୁଃଖସୁଖ, ଘେନିଯାଏ କଞ୍ଚା ରଖିଣ ପାଚିଲା ଦିଅଇ ଦାରୁଣ ଦୁଃଖ ।" କ୍ଷେତ୍ରବାସୀ ବାବୁଙ୍କୁ ସେହି ନିଷ୍ଠୁର ବିଧାତା ଅକାଳରେ ନେଇଯାଇ ବନ୍ଧୁଜନଙ୍କୁ, ଆତ୍ମୀୟସ୍ୱଜନଙ୍କୁ, ପ୍ରିୟପରିଚିତଙ୍କୁ ଦାରୁଣ ଦୁଃଖ ଦେଇଛି । ଅନେକ ବର୍ଷ ବିତିଯାଇଥିଲେ ମଧ୍ୟ ସେହି ଦୁଃଖ ଦୂର ହୋଇନାହିଁ କି ହେବାର ନୁହେଁ ।

କ୍ଷେତ୍ରବାସୀ ବାବୁ ଥିଲେ ମୋଠାରୁ ଖୁବ୍ ସାନ, ସାନ ଭାଇ ଭଳି । ରେଭେନ୍ସା କଲେଜରେ ଆମେ ଓଡ଼ିଆ ବିଭାଗରେ ସହକର୍ମୀ ଭାବରେ କାମ କରିଥିଲୁଁ । ସେ ସମୟର ଅନେକ କଥା ତ ମୋର ସ୍ମୃତିପଥରୁ ହଜିଗଲାଣି, କିନ୍ତୁ କ୍ଷେତ୍ରବାସୀ ବାବୁଙ୍କର ମୁଖଟି ସେହିପରି ସତେଜ ରହିଛି । ସାନ ଭାଇ ଭଳି ନମ୍ର, ଭଦ୍ର ଆଚରଣ ଥିଲା ତାଙ୍କର । ମୁଁ ୧୧/୧୨ ବର୍ଷ କାଳ ଶିକ୍ଷକତା କଲା ପରେ ଅଧ୍ୟାପକ ହୋଇଥିଲି । ତେଣୁ କେତେକ ଅଧ୍ୟାପକ ମୋର ବୟସକୁ ସମ୍ମାନ ଦେଉ ନ ଥିବାର ମୁଁ ଲକ୍ଷ୍ୟ କରୁଥିଲି । କିନ୍ତୁ କ୍ଷେତ୍ରବାସୀ ବାବୁ ସେପରି ନ ଥିଲେ । ମୋତେ ଆଗେ ବୟସର ସମ୍ମାନ ଦେଉଥିଲେ ।

କ୍ଷେତ୍ରବାସୀ ବାବୁ ଥିଲେ କର୍ତ୍ତବ୍ୟନିଷ୍ଠ, ଦକ୍ଷ ଅଧ୍ୟାପକ । ଅଧ୍ୟାପନା ଥିଲା ତାଙ୍କର ଆନନ୍ଦ । ମୁଁ ଅତୀତ ପ୍ରତି କେବଳ ମୋହବଶତଃ କହୁନାହିଁ, ପ୍ରକୃତରେ ସେ ସମୟରେ ଅଧ୍ୟାପନା ଓ ଅଧ୍ୟୟନ ଥିଲା ଆନନ୍ଦମୟ । କ୍ଷେତ୍ରବାସୀ ବାବୁଙ୍କ ପୂର୍ବରୁ ତ ଏହା ଥିଲା ଆହୁରି ଆନନ୍ଦମୟ । ତାଙ୍କର ରେଭେନ୍ସା କଲେଜକୁ ଅଧ୍ୟାପକ ହୋଇ ଆସିବା ପୂର୍ବରୁ ମୁଁ ରେଭେନ୍ସାରେ ଓଡ଼ିଆ ସଂସ୍କୃତ ବିଭାଗରେ ଜୟକୃଷ୍ଣ ମିଶ୍ର, ଗୌରୀ କୁମାର ବ୍ରହ୍ମା, ନଟବର ସାମନ୍ତରାୟ, କୁଞ୍ଜବିହାରୀ ଦାଶ, କୁଞ୍ଜବିହାରୀ ତ୍ରିପାଠୀ, ଗୋଲୋକ ବିହାରୀ ଧଳ, ସିଦ୍ଧେଶ୍ୱର ହୋତା ପ୍ରମୁଖ ସ୍ୱନାମଧନ୍ୟ ଅଧ୍ୟାପକମାନଙ୍କ ସହକର୍ମୀ ଭାବେ କାମ କରିଥିଲି । କ୍ଷେତ୍ରବାସୀ ବାବୁ ହୁଏତ ଏମାନଙ୍କର ଛାତ୍ର ହୋଇଥିବେ । ଏମାନଙ୍କ ଗୁଣ ଓ ନିଷ୍ଠା ସେ ନିଶ୍ଚୟ ଗ୍ରହଣ କରିଥିବେ । ଏହାଛଡ଼ା, ଅଧ୍ୟାପକ ଡକ୍ଟର କୃଷ୍ଣଚରଣ ବେହେରାଙ୍କ ପ୍ରଭାବ ତାଙ୍କ ଉପରେ ପଡ଼ିଥିଲା । କାରଣ, କ୍ଷେତ୍ରବାସୀ ବାବୁ ଭଦ୍ରକ କଲେଜରେ ପଢୁଥିଲାବେଳେ ଡକ୍ଟର ବେହେରା ସେଠାରେ ଜଣେ ସ୍ୱନାମଧନ୍ୟ ଅଧ୍ୟାପକ

ଥିଲେ । ସତରେ କହିବାକୁ ଗଲେ ସେ କାଳରେ ଓଡ଼ିଆ ଓ ସଂସ୍କୃତ ପ୍ରତି ଗୋଟିଏ ସ୍ୱତନ୍ତ୍ର ଆକର୍ଷଣ ଥିଲା । ରେଭେନ୍‌ସା କଲେଜରେ ଜୟୀ ବାବୁ (ଜୟକୃଷ୍ଣ ମିଶ୍ର) ଙ୍କ କ୍ଲାସରେ ଅନ୍ୟାନ୍ୟ ବିଭାଗର ପିଲାମାନେ ମଧ୍ୟ ଆଗ୍ରହରେ ଆସି ବସୁଥିଲେ ।

କ୍ଷେତ୍ରବାସୀ ବାବୁ କେବଳ ଅଧ୍ୟାପକ ଭାବେ ନୁହନ୍ତି, ଓଡ଼ିଆ ସାହିତ୍ୟର ଲେଖକ, ବିଶେଷତଃ ଆଲୋଚକ-ସମାଲୋଚକ ଭାବେ ଖ୍ୟାତି ଅର୍ଜନ କରିଥିଲେ । ମୋର ଯାହା ମନେ ଅଛି, ସାହିତ୍ୟତତ୍ତ୍ୱ ବିଷୟରେ ତାଙ୍କର ବିଶେଷ ଅଭିରୁଚି ଥିଲା । ସେ ପ୍ରାଚ୍ୟ ଓ ପାଶ୍ଚାତ୍ୟ, ଉଭୟ ଧାରାର ସାହିତ୍ୟତତ୍ତ୍ୱ ବିଷୟରେ ଅନୁଶୀଳନ କରୁଥିଲେ ଏବଂ ଉଭୟ ବିଷୟରେ ଲେଖୁଥିଲେ । ମୁଁ ମୂଳତଃ ସଂସ୍କୃତଜ୍ଞ ଲୋକ ହୋଇଥିବାରୁ ସଂସ୍କୃତ ସାହିତ୍ୟର ସାହିତ୍ୟତତ୍ତ୍ୱ ବିଷୟରେ ସେ ମୋତେ ପଚାରୁଥିଲେ ଏବଂ ଅନେକ ସଂସ୍କୃତ ଶ୍ଳୋକର ଅର୍ଥ ବୁଝୁଥିଲେ । ସବୁଥିରେ ଥିଲା ତାଙ୍କର ଜିଜ୍ଞାସା ଓ ନମ୍ରତା ।

ଗୋଟିଏ ବିଷୟ ମୁଁ ଆଦୌ ଭୁଲିପାରୁନାହିଁ, ଯେଉଁଥିରେ କି କ୍ଷେତ୍ରବାସୀ ବାବୁଙ୍କର ଓ ମୋ ମଧ୍ୟରେ ଖୁବ୍ ଅମେଳ ଥିଲା । ଦିନେ ସେ ମୋତେ ଦେଖା ହେବାମାତ୍ରେ ନମସ୍କାରାନ୍ତେ କହିଲେ, "ଆଜି ମୋର ସବିନୟ ନିମନ୍ତ୍ରଣ, ଆମ ଘରେ ପଦାର୍ପଣ କରିବେ ।" କହି ନିମନ୍ତ୍ରଣ ପତ୍ରଟିଏ ମୋ ହାତକୁ ବଢ଼ାଇ ଦେଲେ । ମୁଁ ଦେଖିଲି ତାହା ଜଗନ୍ନାଥଙ୍କ ବିଗ୍ରହ ପ୍ରତିଷ୍ଠା ଉତ୍ସବ ଉପଲକ୍ଷେ ନିମନ୍ତ୍ରଣ । ପଚାରି ବୁଝିଲି, ସେ ନିଜ ଘରେ ଜଗନ୍ନାଥଙ୍କ ମୂର୍ତ୍ତି ରଖି ପୂଜା କରିବାକୁ ଯାଉଛନ୍ତି । ଏ ବିଷୟରେ ତାଙ୍କ ସହିତ ହୋଇଥିବା ଆଳାପ ଆଉ ବିଶେଷଭାବେ ମନେ ନାହିଁ । କିନ୍ତୁ ମୁଁ ନାସ୍ତିକ ପ୍ରକୃତିର ଲୋକ ହୋଇଥିବାରୁ ତାଙ୍କ ଜଗନ୍ନାଥ ପୂଜାକୁ ପସନ୍ଦ କରି ନ ଥିଲି ଏବଂ ଉତ୍ସବରେ ଯୋଗ ଦେଇ ନଥିଲି । ଏହି ମାନସିକ ଅମେଳ ସତ୍ତ୍ୱେ ସେ ମୋତେ କେବେ ଅସମ୍ମାନ କରି ନଥିଲେ କି ମୁଁ ତାଙ୍କୁ କେବେ ଅଶ୍ରଦ୍ଧା କରିନଥିଲି ।

ସମୟ ବିତିଯାଏ, କିନ୍ତୁ ସାହିତ୍ୟ ରହିଯାଏ । କ୍ଷେତ୍ରବାସୀ ବାବୁ ଚାଲିଯାଇଛନ୍ତି, କିନ୍ତୁ ତାଙ୍କର ସାହିତ୍ୟ, ଯେତିକି ଯାହା ରହିଛି, ସେ ରହିଥିଲେ ତ ଆହୁରି କେତେ ମୂଲ୍ୟବାନ ସାହିତ୍ୟ ସୃଷ୍ଟି କରିଥାଆନ୍ତେ, ସେତିକି ମଧ୍ୟ ତାଙ୍କୁ ଅମର କରି ରଖିବ । ମୁଁ ବଞ୍ଚିଥିବା ଯାଏଁ ତାଙ୍କର ନମ୍ରତା ଗୁଣକୁ ଝୁରି ହେଉଥିବି ।



# ଗବେଷକ ଡକ୍ଟର ନାୟକ

ଶ୍ରୀ ରମେଶ ଚନ୍ଦ୍ର ମଲ୍ଲିକ

ପ୍ରାୟ ପନ୍ଦର ବର୍ଷ ତଳେ ମୋର ସାକ୍ଷାତ ହୁଏ ଡକ୍ଟର ନାୟକଙ୍କ ଗବେଷଣା ନିବନ୍ଧ : "ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ (୧୮୦୩ - ୧୯୨୦)" ସହିତ । ମୁଁ ସେତେବେଳକୁ ବି.ଏ ଶେଷ ବର୍ଷର ଛାତ୍ର । ଆମ ଅନର୍ସରେ 'ସମାଲୋଚନା ଓ ଗବେଷଣା ଧାରା' ବିଷୟ ପଢ଼ାଇଲାବେଳେ ଡକ୍ଟର ଅବ୍‌ଦୁଲ ଓସିଦ୍ ଖାଁ ତାଙ୍କ ପ୍ରିୟ ଅଧ୍ୟାପକ ଡକ୍ଟର କ୍ଷେତ୍ରବାସୀ ନାୟକଙ୍କ ଗବେଷଣା ନିବନ୍ଧ ପଢ଼ିବା ପାଇଁ ପରାମର୍ଶ ଦେଉଥିଲେ । ପୁସ୍ତକଟି ବ୍ରହ୍ମପୁରରୁ ପ୍ରକାଶିତ ହୋଇଥିବାରୁ ନିମାପଡ଼ା ଭଳି ଛୋଟ ସହରରେ ମିଳିବା ଆମ ପାଇଁ ଦୁର୍ଲଭ ଥିଲା । କେହି କେହି ସାର୍‌ଙ୍କଠାରୁ ଏବଂ କେହି କେହି ଲାଇବ୍ରେରୀରେ ଥିବା ଦରଛିଣ୍ଡା ବହିଟି ସଂଗ୍ରହ କରି ପଢ଼ିଥିଲୁ । ସେତେବେଳେ ମୁଁ ଯେଉଁ ଭଳି ଡକ୍ଟର ନାୟକଙ୍କ ଗବେଷଣା ନିବନ୍ଧକୁ ପଢ଼ି ବୁଝିଥିଲି ତାର ଆଉ ଟିକିଏ ବିସ୍ତୃତୀକରଣ କରାଇବାରେ ସାହାଯ୍ୟ କରିଥିଲେ ଡକ୍ଟର କୃଷ୍ଣଚରଣ ବେହେରା (ଡକ୍ଟର ନାୟକଙ୍କ ଗବେଷଣା ପ୍ରକଳ୍ପର ତତ୍ତ୍ୱାବଧାୟକ) । ମୁଁ ଓଡ଼ିଆ ଗବେଷଣା ପରିଷଦର ସଭ୍ୟ ହେଲାପରେ କ୍ରମାଗତ ଭାବେ ଡକ୍ଟର ବେହେରାଙ୍କ ସହିତ ସାକ୍ଷାତ୍ ଏବଂ ଓଡ଼ିଆ ଗବେଷଣା ସାହିତ୍ୟ ବିଷୟରେ ଚର୍ଚ୍ଚା କଲାବେଳେ ସେ ଅନେକ ଥର ତାଙ୍କ ପ୍ରିୟ ଛାତ୍ର ଡକ୍ଟର ନାୟକଙ୍କ ଗବେଷଣା ନିଷ୍ଠା ବିଷୟରେ ଉଦାହରଣ ଦେଇ ଗବେଷଣା ପ୍ରତି ମୋର ଆଗ୍ରହକୁ ଦୃଢ଼ କରାଉଥିଲେ ।

ବର୍ତ୍ତମାନର ପ୍ରସଙ୍ଗଟି ହେଉଛି ମୋ ଗବେଷଣା ଓ ତହିଁରେ ଡକ୍ଟର ନାୟକଙ୍କ ଗବେଷଣା ନିବନ୍ଧର ସ୍ଥାନ । ମୁଁ ଯେତେବେଳେ ହାଇଦ୍ରାବାଦ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ଆସି ମୋ ଗବେଷଣା ଜୀବନ ଆରମ୍ଭ କଲି ସେତେବେଳେ ମୋର ପୂଜ୍ୟ ଗୁରୁ ପ୍ରଫେସର ପଞ୍ଚାନନ ମହାନ୍ତି, ଡକ୍ଟର ନାୟକଙ୍କ ଗବେଷଣା ନିବନ୍ଧ ପଢ଼ିବା ପାଇଁ ପରାମର୍ଶ ଦେଉଥିଲେ ଏବଂ ପ୍ରସଙ୍ଗ କ୍ରମେ ମୋର ଗବେଷଣାଜନିତ ଅନେକ ସମସ୍ୟାକୁ ସମାଧାନ କରି ଗବେଷଣା ପ୍ରତି ମୋ ଆଗ୍ରହକୁ ଅଧିକ ଦୃଢ଼ କରାଉଥିଲେ, ଯାହାଫଳରେ ମୋ ଗବେଷଣା ଜୀବନ ଅଧିକ ପରିପକ୍ୱ ହେବାକୁ ଲାଗିଲା । ଏମ୍.ଫିଲ୍ ପରେ 'ଓଡ଼ିଆ ଅନୁବାଦ ଧାରା (୧୮୦୮-୧୯୩୬)" ବିଷୟକୁ ନେଇ ପିଏଚ୍.ଡି. କାର୍ଯ୍ୟ ଆରମ୍ଭ କଲି । ବି.ଏ ପଢ଼ିବା ଠାରୁ ଆରମ୍ଭ କରି ଏ ଯାଏଁ ମୁଁ କେବେ ହେଲେ ଦୁଇଟି ଗବେଷଣା ନିବନ୍ଧକୁ ପାଖେ ପାଖେ ରଖିବା ପାଇଁ ଭୁଲିନି; ପ୍ରଥମଟି ସ୍ୱର୍ଗତ ଡକ୍ଟର ନଟବର ସାମନ୍ତରାୟଙ୍କ

ଗବେଷଣା ନିବନ୍ଧ "ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩ -୧୯୨୦)" ଏବଂ ଅନ୍ୟଟି ସ୍ୱର୍ଗତ ଡକ୍ଟର କ୍ଷେତ୍ରବାସୀ ନାୟକଙ୍କ ଗବେଷଣା ନିବନ୍ଧ "ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ (୧୮୦୩-୧୯୨୦)" । ଦୀର୍ଘ ୧୫ ବର୍ଷର ଅନ୍ତରଙ୍ଗ ଅନୁଭୂତି ଓ ଡକ୍ଟର ନାୟକଙ୍କ ଗବେଷଣା ସାଧନାକୁ କିପରି ବୁଝିଚି ଏବଂ ତାହା କେଉଁ ଭଳି ଭାବେ ମୋ ଗବେଷଣା ପାଇଁ ସାହାଯ୍ୟ କରିଚି ସେଇ ବିଷୟକୁ ନେଇ କେତୋଟି ପ୍ରସଙ୍ଗକୁ ଆଲୋକପାତ କରିବି ।)

ଗବେଷଣାର ଗୋଟିଏ ମହତ ଦିଗ ହେଉଛି ନିର୍ଦ୍ଦିଷ୍ଟ ସମୟ ପରିଧି ଭିତରେ ନିର୍ଦ୍ଦିଷ୍ଟ ବିଷୟ ନିର୍ବାଚନ କରି ଗବେଷଣା କାର୍ଯ୍ୟକରିବା । କାରଣ ସମୟର ଅଙ୍କୁଶ ରହିଲେ ଗବେଷଣା ପାଇଁ ଉପାଦାନ ସଂଗ୍ରହ କରିବା ସହିତ ଆଲୋଚନା ମଧ୍ୟ ପ୍ରାଞ୍ଜଳ ଓ ପରିପୁଷ୍ଟ ହୋଇଥାଏ । ସେଇ ସମୟର ସାମାଜିକ ଓ ସାଂସ୍କୃତିକ ସ୍ଥିତି ସାହିତ୍ୟ ଭିତରେ କେତେଦୂର ସ୍ଥାନ ପାଇଚି ଏବଂ ସାହିତ୍ୟ ରଚନା ପାଇଁ ସାହିତ୍ୟିକମାନେ କେଉଁ କେଉଁ ମାର୍ଗ ଅବଲମ୍ବନ କରିଛନ୍ତି ସେ ବିଷୟରେ ଜାଣିବା ସହଜ ହୋଇଥାଏ । ତାହାହିଁ କରିଛନ୍ତି ଡକ୍ଟର ନାୟକ । ସେ ଏକ ନିର୍ଦ୍ଦିଷ୍ଟ ସମୟସୀମା ଯଥା ୧୮୦୩ ରୁ ୧୯୨୦ ମଧ୍ୟରେ ପାଶ୍ଚାତ୍ୟ ଶିକ୍ଷା ବ୍ୟବସ୍ଥା ଓ ସଂସ୍କାର କିଭଳି ଆଧୁନିକ ଓଡ଼ିଆଭାଷା ସାହିତ୍ୟ ଯଥା କାବ୍ୟ - କବିତାର ପ୍ରଗତି ପଥରେ ପ୍ରେରଣାର ଉତ୍ସ ଭାବେ କାର୍ଯ୍ୟ କରିଚି ତାହାକୁ ଯଥାର୍ଥ ଭାବେ ବିଶ୍ଲେଷଣ କରିଛନ୍ତି । ଗବେଷଣା ନିବନ୍ଧକୁ ଅଧିକ ବଳିଷ୍ଠ ଓ ଯୁକ୍ତିଯୁକ୍ତ କରାଇବା ପାଇଁ ଡକ୍ଟର ନାୟକ ସମକାଳୀନ ଓଡ଼ିଆ ପତ୍ରପତ୍ରିକାର ଭୂମିକାକୁ ଗବେଷଣାର ଉତ୍ସ ଭାବେ ଗ୍ରହଣ କରିଛନ୍ତି । ସାହିତ୍ୟରେ ଆଦାନ ପ୍ରଦାନ ଏକ ସହଜାତ ପ୍ରକ୍ରିୟା । ନବଜାଗରଣ ବା ରେନାସାଁର ପ୍ରଭାବ କିଭଳି ଭାବେ ସାହିତ୍ୟକୁ ନୂତନ ଇନ୍ଦ୍ରିୟ ପ୍ରଦାନ କରିଛି ସେସବୁ ସଂପର୍କରେ ଡକ୍ଟର ନାୟକଙ୍କ ଆଲୋଚନାରେ ତାହାର ପ୍ରୟୋଗ ଓ ଓଡ଼ିଆ ଆଧୁନିକ କାବ୍ୟ - କବିତା ସଂପର୍କରେ କୌଶଳ ଆଲୋକପାତ କରିବା ସହିତ ଆଧୁନିକ ଓଡ଼ିଆ କାବ୍ୟ-କବିତାରେ ନବଜାଗରଣ ପ୍ରଭାବକୁ ଉଭୟ ଇଂରାଜୀ ଓ ଓଡ଼ିଆ ଭାଷାରୁ ଉଦାହରଣ ଦେଇ ଆଲୋଚନାଟିକୁ ପରିପୁଷ୍ଟ କରାଇଛନ୍ତି । ସେ ଆଧୁନିକ ଓଡ଼ିଆ କବିତାର ପ୍ରାଣଦାତା କବିବର ରାଧାନାଥ ରାୟଙ୍କ ଠାରୁ ଆରମ୍ଭ କରି କବି ଜଗମୋହନ ଲାଲ ରାମଶଙ୍କର ରାୟ, ଗୋବିନ୍ଦ ରଥ, ଫକୀର ମୋହନ ସେନାପତି, ନନ୍ଦକିଶୋର ବଳ, ମଧୁସୂଦନ ରାଓ, ବଜ୍ରକୁମାର ବଳଭଦ୍ର ଦେବ, ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, ପଦ୍ମଚରଣ ପଟ୍ଟନାୟକ, ଅକ୍ଷୟଚନ୍ଦ୍ର ଦାସ, ନାରାୟଣ ମୋହନ ଦେ, କାନ୍ତକବି ଲକ୍ଷ୍ମୀକାନ୍ତ ଓ ତାରିଣୀ ଚରଣ ରଥ ପ୍ରଭୃତି କବିମାନଙ୍କର କାବ୍ୟ -

କବିତାରେ ପାଶ୍ଚାତ୍ୟ ପ୍ରଭାବର ଧାରାକୁ ତୁଳନାତ୍ମକ ଦୃଷ୍ଟି ଭଙ୍ଗୀର ବିଶ୍ଳେଷଣ କରିଛନ୍ତି ଏବଂ କାବ୍ୟ -କବିତାର ଆଙ୍ଗିକ ଓ ଆତ୍ମିକ ପ୍ରବୃତିକୁ ଉଭୟ ଭାଷାର ଉଦାହରଣ ମାଧ୍ୟମରେ ଦର୍ଶାଇ ଆଲୋଚନାଟିକୁ ଅଧିକ ପ୍ରାଞ୍ଜଳ ଓ ଯୁକ୍ତିଯୁକ୍ତ କରାଇଛନ୍ତି । ଏଠି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟଟି ହେଉଛି ଡକ୍ଟର୍ ନାୟକଙ୍କ ଦ୍ୱାରା ପ୍ରସ୍ତାବିତ 'ପଶ୍ଚାତ୍ୟ ପ୍ରଭାବ ।' ସେଇ ପାଶ୍ଚାତ୍ୟ ପ୍ରଭାବ' ର ଧାରା ମୋ ଭଳି ଜଣେ ଭବିଷ୍ୟତ ପୀଢ଼ିର ଗବେଷକକୁ କି ଭଳି ପ୍ରଭାବିତ କରିଚି ତାହା ପରବର୍ତ୍ତୀ ପର୍ଯ୍ୟାୟର ଆଲୋଚ୍ୟ ବିଷୟ ।

ଆଲୋଚନାଟିର ମୁଖ୍ୟ ପ୍ରସଙ୍ଗ ହେଉଚି ମୋ ଗବେଷଣା ଓ ତହିଁରେ ଡକ୍ଟର ନାୟକଙ୍କ ଗବେଷଣା ନିବନ୍ଧର ପ୍ରଭାବ । ଏଇ ବିଷୟ ଉପରେ ଗୁରୁତ୍ୱ ଦେବା ପୂର୍ବରୁ ମୋ ଗବେଷଣା ବିଷୟ ସଂପର୍କରେ ସୂଚନା ଦେବା ପାଇଁ ଚାହିଁବି । ମୋ ଗବେଷଣା ବିଷୟଟି The Translation Strategies of Native and Non-Native Oriya Translators (1808-1936)" ମୁଁ ଯେତେବେଳେ ମୋ ଗବେଷଣା ବିଷୟକୁ ନେଇ ଉପାଦାନ ସଂଗ୍ରହ କରିବା ପାଇଁ କାର୍ଯ୍ୟ ଆରମ୍ଭ କଲି ସେଇ ପର୍ଯ୍ୟାୟରେ ଡକ୍ଟର ନାୟକଙ୍କ ଗବେଷଣା ନିବନ୍ଧ ମୋତେ ଅନେକ ସାହାଯ୍ୟ କରିଚି । ଡକ୍ଟର ନାୟକ ଯେଉଁ 'ପାଶ୍ଚାତ୍ୟ ପ୍ରଭାବ' ପ୍ରସଙ୍ଗକୁ ଗୁରୁତ୍ୱ ଦେଇ ତା'ର ମୂଳ ଅନ୍ୱେଷଣ କରିଛନ୍ତି ସେଇ ମୂଳକୁ ମୁଁ ଅନୁବାଦ ବିଜ୍ଞାନ (Translatology) ର ପରିସରଭୁକ୍ତ କରି ଆଲୋଚନା କରିଚି । ଇଂରାଜୀ ଭାଷା ସାହିତ୍ୟରୁ ଅନୁବାଦ, ଅନୁସୃଜନ ଓ ଅନୁକରଣ ହୋଇ ଓଡ଼ିଆ କାବ୍ୟ-କବିତା ଯେଉଁ ସାହିତ୍ୟିକ ପରମ୍ପରା ସୃଷ୍ଟି କରିଚି ବା ଅତୀତରେ କରିଥିଲା ତାହାର ଏକ ଐତିହାସିକ ଦସ୍ତାବିଜ୍ ହେଉଛି ଡକ୍ଟର ନାୟକଙ୍କ ଗବେଷଣା ନିବନ୍ଧ । ସେ ଦର୍ଶାଇଥିବା ଉଦାହରଣଗୁଡ଼ିକରୁ ମୁଁ ମୂଳପାଠକୁ ଖୋଜି ସଂଗ୍ରହ କରି ମୋ ଗବେଷଣା ପାଇଁ ବ୍ୟବହାର କରିଚି ।

ଇଂରାଜୀ ଶାସନ ପ୍ରଣାଳୀ ଓ ଶିକ୍ଷାନୀତି ଭାରତୀୟ ଭାଷା, ସାହିତ୍ୟ, ସଂସ୍କୃତିର ବିକାଶ ଦିଗରେ ଯେଉଁ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିଥିଲା ସେଇ ପରିବର୍ତ୍ତନ ଧାରାରେ । ଭାରତୀୟ ଭାଷା ଓ ସାହିତ୍ୟରେ ଇଂରାଜୀ ଶିକ୍ଷା, ସଂସ୍କୃତି ଓ ସାହିତ୍ୟର ଭାରତୀୟକରଣ ପାଇଁ ଅନୁବାଦ ପ୍ରକ୍ରିୟାକୁ ଗୁରୁତ୍ୱ ଦିଆଯାଇଥିଲା । ଓରିଏଣ୍ଟାଲିଜମ୍ (Orientalism) ର ବିବାଦରୁ ଜନ୍ମନେଇଥିବା ଭର୍ଣ୍ଣାକୁଲାର (Vernacular) ଶିକ୍ଷା ପ୍ରଣାଳୀକୁ ପ୍ରଚଳନ କରିବା ପାଇଁ ଅନୁବାଦ ପ୍ରଣାଳୀର ଭୂମିକା ଯେଉଁ ଅଭାବ ପୂରଣ କରିଥିଲା ତାହାର ଫଳଶ୍ରୁତି ରୂପକ ଫସଲ ହେଉଚି ଆଧୁନିକ ଭାରତୀୟ ଭର୍ଣ୍ଣାକୁଲାର ଅନୁବାଦ ସାହିତ୍ୟ । ସେଇ ନ୍ୟାୟରେ ଓଡ଼ିଆ ଅନୁବାଦ ସାହିତ୍ୟର କ୍ରମବିକାଶକୁ ବିଚାର କରାଯାଇପାରିବ ।

ମିଶନାରୀମାନଙ୍କ ଧର୍ମାନ୍ତରୀକରଣ ଓ ଭାଷା ସାହିତ୍ୟର ବିକାଶ ପାଇଁ ଅନୁବାଦ ପ୍ରକ୍ରିୟାକୁ ମାଧମଭାବେ ଗ୍ରହଣ କରି ଅନୁବାଦ ପରମ୍ପରା ପ୍ରସ୍ତୁତ କରିବା ବ୍ୟତୀତ ଆହୁରି ଅନେକ କାରଣ ରହିଛି ଯେଉଁଗୁଡ଼ିକ ଓଡ଼ିଆ ଅନୁବାଦ ସାହିତ୍ୟ ସୃଷ୍ଟି କରିବା ପାଇଁ ପ୍ରେରଣା ଯୋଗାଇଥିଲା । ସେଥିମଧ୍ୟରୁ ଓଡ଼ିଆ ଅନୁବାଦ ସାହିତ୍ୟ ବା ପରମ୍ପରା ପ୍ରତିଷ୍ଠା ଦିଗରେ ତିନୋଟି ମୁଖ୍ୟ କାରଣ ଥିଲା - (କ) ଓଡ଼ିଆ ପାଇକ ବିଦ୍ରୋହ (୧୮୧୭) (ଖ) ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନ (୧୮୬୮-୧୮୬୯) (ଗ) ଭର୍ଣ୍ଣାକୁଲାର ଭାଷାରେ ଶିକ୍ଷା ପ୍ରଚଳନ ଓ ତାର ବିକାଶ । ଏହା ବ୍ୟତୀତ ଆହୁରି ଅନେକ କାରଣ ରହିଛି ସେମାନେ ମୁଖ୍ୟ ନ ହେଲେ ମଧ୍ୟ ଗୌଣ କାରଣ ଭାବେ କାର୍ଯ୍ୟ କରିଥିଲେ ଯଥା ପାଠ୍ୟ ପୁସ୍ତକ ପ୍ରଣୟନ, ବିଦେଶୀ ଭାଷା ଶିକ୍ଷା ଓ ସାହିତ୍ୟିକ ଅନୁବାଦ କରି ଆଞ୍ଚଳିକ ସାହିତ୍ୟକୁ ସମୃଦ୍ଧ କରିବା ।

ତେଣୁ ଡକ୍ଟର ନାୟକ ଯାହାକୁ ପାଶ୍ଚାତ୍ୟ ପ୍ରଭାବ ବୋଲି ଦର୍ଶାଇଛନ୍ତି ମୋ ଦୃଷ୍ଟିରେ ମୁଁ ତାହାକୁ ଅନୁବାଦ, ଅନୁସୃଜନ ଏବଂ ଅନୁକରଣର ପ୍ରଭାବ ବ୍ୟତୀତ ଅନ୍ୟ କିଛି ନୁହେଁ ବୋଲି ବିଚାର କରିଛି । ଆଧୁନିକ ଓଡ଼ିଆ ସାହିତ୍ୟରେ ଅନୁପ୍ରରଣ ଓ ଅନୁକରଣର କେଉଁ ପ୍ରଭାବ ସାହିତ୍ୟ ରଚନାର କୌଶଳ ଭାବେ ପ୍ରତିଷ୍ଠିତ ହୋଇଥିଲା ଏ ବିଷୟରେ ଉତ୍କଳ ସାହିତ୍ୟର ସଂପାଦକ, ବାଗ୍ମୀ ବିଶ୍ୱନାଥ କରଙ୍କ ଦ୍ୱାରା ଲିଖିତ ଓ ଉତ୍କଳ ସାହିତ୍ୟର ୨୯ଶ ଭାଗ, ୭ମ ସଂଖ୍ୟା, କାର୍ତ୍ତିକ ୧୩୩୩ ସାଲରେ ପ୍ରକାଶିତ ସଂପାଦକୀୟକୁ ଏଠାରେ ଉଦ୍ଧାର କରାଯାଉଛି । "ମାନବ ଜୀବନ ଓ ମାନବ ସମାଜରେ ଅନୁକରଣଟା ଯେ ସର୍ବତ୍ର ଦୂଷଣୀୟ, ତାହା କୁହାଯାଇନପାରେ । ନାନା ଯୁଗରେ ନାନା ଦେଶରେ ବଡ଼ ବଡ଼ ପ୍ରତିଭାଶାଳୀ ବ୍ୟକ୍ତିମାନେ ବିଭିନ୍ନ ବିଷୟରେ ଗୋଟିଏ ଗୋଟିଏ ଆଦର୍ଶ ବା ରୀତି ପ୍ରବର୍ତ୍ତନ କରିଯାନ୍ତି । ଅପର ସାଧାରଣ ତାହାର ଅନୁକରଣ କରି ନିଜ ନିଜ ଶକ୍ତି ଅନୁସାରେ କେତେ କେତେ ନୂତନ ସୃଷ୍ଟି କରିଥାନ୍ତି ଏବଂ ସେଥିରେ ଜନ ସମାଜର ଶ୍ରୀ ସଂପଦ ବଢ଼ିଥାଏ । ପ୍ରକୃତ ପକ୍ଷେ ଯେ କୌଣସି ବିଷୟ ହେଉ ସେଥିରେ ଯେବେ ସ୍ରଷ୍ଟାର ନିଜସ୍ୱ ବା ବ୍ୟକ୍ତିତ୍ୱ କିଛି ନ ଥାଏ, ତେବେ ଅନୁକରଣ କଦାପି ଦୋଷାବହ ବିବେଚିତ ହୁଏ ନାହିଁ ।" ବିଶ୍ୱନାଥ କର ଅନୁକରଣ ଉପଯୋଗିତା ଓ ଆବଶ୍ୟକତାକୁ ଦର୍ଶାଇବା ସହିତ ଅନୁକରଣ ଓ ଅନୁସରଣ ମଧ୍ୟରେ ଥିବା ପାର୍ଥକ୍ୟ ଦର୍ଶାଇ କହନ୍ତି "ଅନୁସରଣ ଅନୁକରଣଠାରୁ ଆଉଟିକିଏ ଉଚ୍ଚ । ଏଥିରେ ଆଦର୍ଶଟା ନାମମାତ୍ର ଥାଏ । ସ୍ରଷ୍ଟାର ନିଜସ୍ୱ ବା ବ୍ୟକ୍ତିତ୍ୱର ମାତ୍ରା ଅନେକ ବେଶୀ । ସୁତରାଂ; ଏହା ଆଦୌ ଦୋଷାବହ ନୁହେଁ । ପ୍ରକୃତ କଥା କହିବାକୁ ଗଲେ ଅନୁସରଣ ବହୁସ୍ଥଳରେ ନୂତନ ସୃଷ୍ଟିର ସ୍ଥାନ ଅଧିକାର

କରିଥାଏ । ସ୍ଥୂଳ କଥା, ମାନବର ବ୍ୟକ୍ତିତ୍ୱଟିକୁ ଫୁଟାଇବା ପକ୍ଷରେ ଅନୁସରଣ ଓ ଅନୁକରଣ କଦାପି ଦୋଷାବହ ବିବେଚିତ ହୁଏ ନାହିଁ ।" ବିଶ୍ୱନାଥଙ୍କର ଅନୁକରଣର ଉଭୟର ପ୍ରୟୋଜନୀୟତା ଯଥେଷ୍ଟ ଅଛି । x x ଅନ୍ୟକଥା ଛାଡ଼ି ଦେଇ ସାହିତ୍ୟ କଥା ବିଚାର କରି ଦେଖିଲେ ସ୍ପଷ୍ଟ ହୋଇ ପଡ଼ିବ x x x । ଇଂରାଜୀ ସାହିତ୍ୟର ଅନୁସରଣ ବା କେତେକ ପରିମାଣରେ ଅନୁସରଣ କରି ନ ଥିଲେ ବଙ୍ଗଳା ସାହିତ୍ୟର ଆଜି ଏତେ ଶୋଭା ସଂପଦ ସମ୍ଭବ ହୋଇ ନ ଥାନ୍ତା । ବଡ଼ ବଡ଼ ପ୍ରତିଭାଶାଳୀ ବ୍ୟକ୍ତିମାନେ ଇଂରାଜୀ ଭାଷା ଓ ସାହିତ୍ୟକୁ ଆମ୍ରସ୍ଥ କରି ନିଜ ନିଜ ଶକ୍ତି ପ୍ରଭାବରେ ବଙ୍ଗଳାରେ ନୂତନ ସାହିତ୍ୟ ସୃଷ୍ଟି କରି ଯାଇଅଛନ୍ତି । ପରନ୍ତୁ, ନବ ନବ ଭାବନା ଅଭିବ୍ୟକ୍ତି ଓ ନୂତନ ଶବ୍ଦ ସଙ୍ଗଠନ ପକ୍ଷରେ ସଂସ୍କୃତ ସାହିତ୍ୟ ଓ ସଂସ୍କୃତ ଭାଷାର ରୀତି ସେମାନଙ୍କର ପରମ ସହାୟ ଓ ଶ୍ରେଷ୍ଠ ଅବଲମ୍ବନ ହୋଇଅଛି ।" ଅନୁକରଣ ଓ ଅନୁସରଣ ବିଷୟକୁ ଗୁରୁତ୍ୱ ଦେଇ ବିଶ୍ୱନାଥ କର ଯେଉଁ ସମ୍ପାଦକୀୟଟି ଦେଖିଯାଇଛନ୍ତି, ସେଥିରୁ ସ୍ପଷ୍ଟ ବାରି ହେଇପଡୁଚି ଯେ, ଆଧୁନିକ ଓଡ଼ିଆ ସାହିତ୍ୟ ସମୃଦ୍ଧି ଦିଗରେ ଅନୁକରଣ ଓ ଅନୁସରଣ ପ୍ରକ୍ରିୟା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ଏଇ ଗୁରୁତ୍ୱପୂର୍ଣ୍ଣ ମାଧମକୁ ଅବଲମ୍ବନ କରି ଆଧୁନିକ ଓଡ଼ିଆ ସାହିତ୍ୟିକମାନେ ଯେଉଁ କାବ୍ୟ କବିତା ରଚନା କରିଥିଲେ ତାହାହିଁ ଆମ ସାହିତ୍ୟ ଉପରେ ପାଶ୍ଚାତ୍ୟ ପ୍ରଭାବ । ସେହି ଦିଗକୁ ଉନ୍ମୋଚନ କରି ଡକ୍ଟର ନାୟକ ଯେଉଁ ଐତିହାସିକ ଧାରା ସମ୍ପର୍କରେ ତଥ୍ୟ ପ୍ରଦାନ କରିଯାଇଛନ୍ତି ତାହା ବହୁ ଗବେଷକଙ୍କୁ ପ୍ରେରଣା ଯୋଗାଇବ ।



# ବାପାଙ୍କୁ ଚିଠି

ଶ୍ରୀମତୀ ଲୋପାମୁଦ୍ରା ଦାସନାୟକ

ମୁଁ ଜାଣିଛି ଏ ଚିଠି ତମ ପାଖରେ ପହଞ୍ଚିବ ନାହିଁ, ତେଣୁ ଉତ୍ତର ମିଳିବାର ପ୍ରଶ୍ନ ନାହିଁ, ତଥାପି ଲେଖୁଛି । ସଭା ସମିତିରେ ଯୋଗ ଦେବାକୁ ବାହାରକୁ ଗଲେ କହି ଯାଉଥିବା ନିର୍ଦ୍ଦିଷ୍ଟ ଦିନରେ ଫେରିଆସ । କେହି ଅଧିକ ଗୋଟିଏ ଦିନ ରହିବାକୁ କହିଲେ କୁହ " ଘରେ ପିଲାମାନଙ୍କୁ ଏକା ଛାଡ଼ି ଆସିଛି ରହିପାରିବି ନାହିଁ ।" ଘରେ ତ ବୋଉ ଥାଏ ତଥାପି ଏକା ଛାଡ଼ିଛ ବୋଲି କୁହ। ଏବେ ସେଇ ବୋଉ ପାଖରେ ସବୁଦିନ ପାଇଁ ଛାଡ଼ି କେମିତି ରହି ପାରିଲ ? କିଏ କହେ ସମୟକ୍ରମେ ସ୍ମୃତି ଉପରେ ବିସ୍ମୃତିର ଚାଦରଟିଏ ଘୋଡ଼େଇ ହୋଇଯାଏ ? କିଏ କହେ ଦୁଃଖ ଯନ୍ତ୍ରଣାର ଘା' ବଳେ ଶୁଖିଯାଏ, ଚିହ୍ନ ଲିଭେ ନାହିଁ । ମୋ ମନର ଘା' ଆଜିବି ତ ଶୁଖି ନାହିଁ, ସେମିତି ମଝିରେ ଟକ୍ ଟକ୍ ହେଇ ବିନ୍ଧୁଛି । ତମକୁ ମନେ ପକେଇ ଦେଉଛି । ଆଜିବି ମତେ ଲାଗୁଛି ତମେ ଘରେ, ବାହାରେ, ଦାଣ୍ଡରେ, ବାଡ଼ିବଗିଚାରେ ଠାକୁରଘରେ ସବୁ ଦିଗରେ ରହିଛ । ଛାତ୍ରମାନଙ୍କ ସହିତ ବସି କେତେ ଆଲୋଚନା କରୁଛ । ବଗିଚାର ଗଛସବୁ ସେମିତି ଅଛନ୍ତି କିନ୍ତୁ ସେମାନଙ୍କ ଠାରେ ସେମିତି ସରସତା ନାହିଁ । ତମକୁ ହରାଇ ସେମାନେ ଗୋଟିଏ ଗୋଟିଏ ପତ୍ର ଝରାଉଛନ୍ତି । ପତ୍ର ନୁହେଁ ତ ଲୁହ ନିଗାଡୁଛନ୍ତି । କେବଳ ଗଛଲତା ନୁହେଁ ଏ ପରିବାରର ଲୋକଙ୍କ ସହିତ ବହିପତ୍ର, ଆସବାବ, ଘରଦ୍ୱାର ରାସ୍ତାଘାଟ ସମସ୍ତେ ଝୁରୁଛନ୍ତି ।

ତମେ ମତେ ଏତେ କାହିଁକି ଭଲ ପାଉଥିଲ, କ'ଣ ଛାଡ଼ି ଚାଲିଯିବ ବୋଲି ? ତମେ ମତେ କେବେ ଖାଲି 'ଲିପି' ଡାକୁ ନଥିଲ ? ଡାକୁଥିଲ ମା ଲିପି ନଚେତ୍ ଖାଲି ମା' । ସତରେ ତମ ଆଖିରେ ମୁଁ ତମର ମା, ତମେ ମୋର ପୁଅ । କେତେବେଳେ ମୁଣ୍ଡ ଚିପି ଦେବାକୁ, ମୁଣ୍ଡର ବାଳ ଟାଣି ଦେବାକୁ କିମ୍ବା ହାତ ପାଦର ଆଙ୍ଗୁଠିଗୁଡ଼ାକ ଫୁଟେଇ ଦେବାକୁ ଡାକୁଥିଲ । ଆଉ କେତେବେଳେ ଚା' କରିଦେବାକୁ ନଚେତ୍ ବହିରୁ ଧୂଳି ଝାଡ଼ିଦେବାକୁ କହୁଥିଲ । ଖୁସି ହୋଇ କହୁଥିଲ ମୋ ଝିଅ ହିଁ ମୋ ବହିର ଯତ୍ନ ନେବ । ସବୁବେଳେ ତମର ଲିପି ଲୋଡ଼ାପଡ଼େ । ଲିପି ନ ହେଲେ ଦଣ୍ଡେ ଚଳିବା ତମ ପାଇଁ କଷ୍ଟ । ବୋଉ କହେ ଶୁଆପରି କେତେ 'ଲିପି' ଲିପି' ହେଉଛ ? ଏବେ ତମର ସେଇ ଲିପି ବିନା ଚଳୁଛ କେମିତି ?

ତମେ ସିନା ମତେ ଭୁଲିଗଲ ମୁଁ କିନ୍ତୁ ତମକୁ ପ୍ରତି ମୁହୂର୍ତ୍ତରେ ଅନୁଭବ କରୁଛି । ସ୍ୱଦେହରେ ସିନା ତମକୁ ଦେଖୁ ନାହିଁ ଅନୁଭବ କରୁଛି ତମେ ମୋ ପାଖେ ପାଖେ ଅଛ ।

ଆଜିବି ମୋ ଆଖିରେ ନାଚି ଯାଉଛି ଶୁଦ୍ଧପୂତ ହୋଇ ମଠା ପିନ୍ଧି ଶ୍ରୀଜଗନ୍ନାଥଙ୍କୁ ପୂଜା କରୁଥିବାର ରୂପ । ନାକରେ ବାଜି ଯାଉଛି ତମ ଦେହରେ ନେସି ହୋଇ ଯାଉଥିବା ଅଗୁରୁ, ଚନ୍ଦନ, କର୍ପୂର ଓ ଧୂପର ବାସ୍ନା । ପୁଣି କେତେବେଳେ ମୁଁ ଅନୁଭବ କରିଛି ତମେ ପଢ଼ା ଚୌକି ଉପରେ ପଢୁଛ, ଲେଖୁଛ, ନହେଲେ ଦାଣ୍ଡଘରେ ଲେଖକ, ପ୍ରକାଶକ କିମ୍ବା ଛାତ୍ରମାନଙ୍କ ଗହଣରେ ସାହିତ୍ୟ ଆଲୋଚନା କରୁଛ । ସତରେ ସାହିତ୍ୟ ତୁମ ଜୀବନର ବ୍ରତ । ନିଜ ହାତ ତିଆରି ଏ ନୂଆ ଘରକୁ ଆସି ତମେ କହୁଥିଲ ଘର ବଦଳାଇବାର ସମସ୍ୟା ଆଉ ନାହିଁ । ଏଣିକି କେବଳ ସାହିତ୍ୟ କରାଯାଇପାରେ । ଅଥଚ ନୂଆଘରେ ବର୍ଷ ତିନିଟା ମଧ ରହିପାରିଲ ନାହିଁ ।

ସତରେ ତମେ ଜଗନ୍ନାଥଙ୍କୁ ଯେତିକି ଭକ୍ତି କରୁଥିଲ ସରସ୍ୱତୀଙ୍କୁ ମଧ ସେତିକି ଶ୍ରଦ୍ଧା କରୁଥିଲ । ଶ୍ରୀଜଗନ୍ନାଥ ଓ ମା ସରସ୍ୱତୀଙ୍କର ଦୁଇହାତକୁ ଧରି ତମେ ଚାଲିଥିଲ । ସାରସ୍ୱତ ସୃଷ୍ଟିପାଇଁ ଶ୍ରୀଜଗନ୍ନାଥଙ୍କ ପ୍ରେରଣା ତମକୁ ଉଦ୍‌ବୁଦ୍ଧ କରୁଥିଲା । ଓଡ଼ିଆ ସାହିତ୍ୟ ପ୍ରତି ପୂର୍ଣ୍ଣପ୍ରାଣରେ ଉତ୍ସର୍ଗୀକୃତ ତୁମ ଜୀବନର କଥା ଭାବିଲେ ବିସ୍ମିତ ହେବାକୁ ପଡ଼େ । ସାହିତ୍ୟ କର୍ମପାଇଁ ତମେ ଘରେ ସବୁବେଳେ ଅନ୍ୟମନସ୍କ ରହୁଥିଲ । ଗବେଷଣା ପରିଷଦ ପ୍ରତିଷ୍ଠା ପୂର୍ବରୁ ଏବଂ ପରେ ମଧ ଖାଇବା ଟେବୁଲ ଉପରେ ଅନେକ ସମୟ ପର୍ଯ୍ୟନ୍ତ ଅଇଁଠା ହାତରେ ଅନ୍ୟମନସ୍କ ହୋଇ ବସି ରୁହ । କେତେ ଡାକିଲେ ତମେ ପ୍ରକୃତିସ୍ଥ ହୁଅ । ମୁଁ ପଚାରେ ବାପା ତମେ କ'ଣ ଏତେ ବେଳଯାଏ ଭାବୁଛ ? ପରିଷଦର କଥା ନା ? ତମେ କୁହ ହଁ କେମିତି ପରିଷଦର କାମସବୁ ହେବ ସେଇ କଥା ଭାବୁଛି । ପୁଣି କିଛି ଲେଖା ଆରମ୍ଭ କରିବାଠାରୁ ତାର ସମାପ୍ତି ପର୍ଯ୍ୟନ୍ତ ତମେ ହୋଇଯାଅ ଭୀଷଣ ଭାବେ ଆନମନା । ଏବେ ମଧ ତୁମର ଛାତ୍ରଛାତ୍ରୀମାନେ ସେମାନଙ୍କ ପ୍ରତିଥିବା ଆନ୍ତରିକତା ଓ ଅଧ୍ୟାପନା ଶୈଳୀରେ ଥିବା ଅଦ୍‌ଭୁତ ବୈଶିଷ୍ଟ୍ୟର କଥା କହିଥାନ୍ତି । ଅଧ୍ୟୟନ ସହିତ ଅଧ୍ୟାପନା ମଧ ତମର ପ୍ରିୟ କାର୍ଯ୍ୟ । କ୍ଲାସ ରୁମ୍‌ରେ ପାଠ ପଢ଼ାଇବା ପରେ ରୁମ୍ ବାହାରେ, ବାଟରେ ଯେତେବେଳେ ଛାତ୍ରମାନେ ତୁମକୁ ଭେଟନ୍ତି, ସେଇଠି ଠିଆ ଠିଆ କେତେ ପାଠର ଆଲୋଚନା ଚାଲେ । ପିଲାମାନଙ୍କର ଯେତେବେଳେ ଯାହା ବୁଝିବା ଦରକାର ପଡ଼େ କିମ୍ବା କୌଣସି ବିଷୟରେ ସଠିକ୍ ଉତ୍ତର ଜାଣିବାକୁ ଚାହାଁନ୍ତି ସେମାନେ ଧାଇଁ ଆସନ୍ତି ତମ ପାଖକୁ । ସେମାନଙ୍କ ସହିତ ଆଲୋଚନା କରୁ କରୁ କେତେ ସମୟ ଅତିକ୍ରାନ୍ତ ହୋଇଯାଏ । ଘରକୁ ଫେରିଲା ବେଳକୁ ରାତି । ତମେ ଏତେ ବହିର ନାଁ, ଏତେ କଥା କେମିତି ମନେ ରଖିପାର ବାପା ! ମୋ ଆଖିରେ ତମେ ଜଣେ ବ୍ୟକ୍ତି ନୁହଁ ଗୋଟିଏ ଏନ୍‌ସାଇକ୍ଲୋପେଡ଼ିଆ । ଛାତ୍ରମାନଙ୍କୁ ନିର୍ଦ୍ଦେଶ ଦିଅ । ଏଇ ବ୍ୟକ୍ତିଙ୍କ ଲେଖା ଏଇ ବହିରେ

ଅଛି । ପିଲାଙ୍କୁ ଖୋଜିବାକୁ ପଡ଼େ ନାହିଁ, ବହି ନ ପାଇଲେ ନିଜ ଘରୁ ତ ଦିଅ, ଲାଇବ୍ରେରୀରୁ ମଧ୍ୟ ତମ ନାଁରେ ବହି ଆଣି ପିଲାଙ୍କୁ ଦିଅ । ଖାଲି କ'ଣ ସାହିତ୍ୟ ନାଁ ଓଡ଼ିଆ ବହି ? ଫିଜିକ୍ସ, କେମିଷ୍ଟ୍ରି, ବଟାନି,ଜୁଲୋଜିର ବହି ସବୁ ଲାଇବ୍ରେରୀରୁ ଆଣି ଛାତ୍ରମାନଙ୍କୁ ଦିଅ । ଏତେ ବହି ଦେଇଥିଲ ଯେ ବଦଳିବେଳେ ବୋଉ ସହସ୍ରାଧିକ ଟଙ୍କା ସେ ବାବଦରେ ଭରଣା କଲା । କି ଛାତ୍ରପ୍ରୀତି ସତରେ !

ବର୍ତ୍ତମାନ ଜଗତରେ ଯଦି ଖୁବ୍ କିଛିର ଅଭାବ ଥାଏ ତାହା ହେଉଛି 'ଭଲ ମଣିଷ' । ପ୍ରକୃତରେ ଭଲ ମଣିଷଟିଏ ପାଇବା ବଡ଼ କଷ୍ଟ । ସେହିପରି ଭଲ ମଣିଷଟିଏ ଥିଲ ତମେ । ସବୁ ମଣିଷକୁ ତମେ ଭଲ ପାଉଥିଲ । ତମର ବିକାର ଭାବ ଟିକେ ମାତ୍ର ନ ଥିଲା । ତେଣୁ କାହାରିକୁ ଘୃଣା କରୁ ନଥିଲ । କିନ୍ତୁ ପରିଷ୍କାର, ସୁନ୍ଦର ପରିବେଶକୁ ହିଁ ଭଲ ପାଉଥିଲ । ସମାଜର ସବୁ ସ୍ତରର ଲୋକଙ୍କୁ ତମେ ବିଶ୍ୱାସ କରୁଥିଲ । କଟକ ଛତ୍ରବଜାରର ଜୁଇଁ ବେପାରୀଠାରୁ ସୁନାଦୋକାନୀ ଆଉ ଜମି ମାଲିକ ପର୍ଯ୍ୟନ୍ତ ସମସ୍ତେ ତୁମ ପାଇଁ ବିଶ୍ୱାସୀ ମଣିଷ । ଖୁବ୍ ଅଳ୍ପ ସମୟ ଭିତରେ ପରକୁ ତମେ ଆପଣାର କରି ପାରୁଥିଲ । କାହା ବିରୁଦ୍ଧରେ କେବେ ଆଲୋଚନା କରିବା, କୌଣସି ଲୋକକୁ ଘୃଣା କରିବା ମୁଁ କେବେ ଦେଖିନାହିଁ । ରାଗିବାର କେବେ ମୁଁ ଦେଖିନାହିଁ । ଅଥଚ ନିଜ ସିଦ୍ଧାନ୍ତରେ ଅଟଳ । ଯାହା ଉଚିତ ବୋଲି ମନେ କର ସେ କାର୍ଯ୍ୟ ଯେ କୌଣସି ପ୍ରକାରେ କରାଇ ନିଅ । ଈଶ୍ୱର ପ୍ରୀତି, ମାନବ ପ୍ରୀତି, ସାହିତ୍ୟ ପ୍ରୀତି ତ୍ରିବେଣୀ ସଙ୍ଗମର ପବିତ୍ର ପୀଠ ଥିଲ ତମେ । କେତେ ଛାତ୍ରଛାତ୍ରୀଙ୍କୁ ତମେ ପାଠ ପଢ଼େଇଲ, ସେମାନେ ସତରେ ଭାଗ୍ୟବାନ । ମୋର ଇଚ୍ଛା କିନ୍ତୁ ପୂରଣ ହୋଇପାରିଲା ନାହିଁ । ମୁଁ ତମର ଛାତ୍ରୀ ଭାବରେ ପାଠ ପଢ଼ିବାର ଆଶା ଆଶାରେ ହିଁ ରହିଗଲା ।

ତମେ ଚାଲିଗଲ, ଆଜି ମଧ୍ୟ ଭୁଲି ନାହିଁ ତୁମକୁ । ସବୁ ସୁଖଦୁଃଖରେ ମନେ ପଡୁଛ ତମେ । ସୁଖ ବେଳେ ତମେ ଯଦି ପାଖରେ ଥାଆନ୍ତ ସେ ସୁଖ ଦ୍ୱିଗୁଣିତ ହୁଅନ୍ତା । ଆଉ କିଛି ସମସ୍ୟା କି ଦୁଃଖ ଆସିଲେ ଲାଗୁଛି ତମେଥିଲେ ବୋଧେ ଏତେ କଷ୍ଟ ଲାଗନ୍ତା ନାହିଁ । ମନେ ହେଉଛି ଜତୁଗୃହରେ ମୁଁ ଅହରହ ଦଗ୍ଧୀଭୂତ ହେଉଛି । ତମେ ଥିଲେ ସବୁ ଦୁଃଖ ସବୁ ସମସ୍ୟା ତମ କଥା ପଦକରେ ଲାଘବ ହୋଇଯାଆନ୍ତା । ଜୀବନ ଆଜି ବୋଝ ପରି ଲାଗନ୍ତା ନାହିଁ । ସମୟ ତ ନିଶ୍ଚୟ କଟିଛି, କଟିବ ମଧ୍ୟ । ଆଜି ଏତେ ବର୍ଷ ପରେ ଯେ ତମ କଥା ମନେ ପଡ଼ିଛି ସେ କଥା ନୁହେଁ । ସବୁ ମୁହୂର୍ତ୍ତରେ ତମେ ମନ ଭିତରେ ଅଛ । ତମେ ନାହଁ ଏକଥା ଭାବି ହୁଏ ନାହିଁ । ଏକଥା ସତ ତମକୁ ସଦେହରେ ଦେଖିହୁଏ ନାହିଁ ସିନା, କିନ୍ତୁ ପ୍ରତିମୁହୂର୍ତ୍ତରେ ଅନୁଭବ କରିହୁଏ । ହୃଦୟ ଭିତରେ ସବ

କ୍ଷଣରେ ତୁମର ଶାନ୍ତ ସୁନ୍ଦର ଚେହେରା ଦିଶିଯାଉଥାଏ । କଟକ ବଡ଼ ଡାକ୍ତରଖାନାର ମେଡ଼ିସିନ୍ ୱାର୍ଡ଼ର ଖଟିଆରେ ବାପା ତୁମର ସେ ନିସ୍ତେଜ ଶରୀର ଏବେ ମଧ୍ୟ ଭୁଲିବାର ନୁହେଁ । ସବୁକଥା ସବୁ ଦୃଶ୍ୟ ଏବେ ମଧ୍ୟ ଗୋଟି ଗୋଟି ହୋଇ ଦିଶିଯାଉଛି । ତମେ ଚାଲିଗଲ, ସେତେବେଳେ ତୁମ ସାଙ୍ଗ ସାଥି ସହକର୍ମୀ ବନ୍ଧୁ ସମସ୍ତେ କହିଲେ - ପିଲାମାନେ କେହି ମଣିଷ ହୋଇନାହାନ୍ତି । ଆଉ କିଛି ବର୍ଷ ବଞ୍ଚି ରହିଥିଲେ ତାଙ୍କର ସାଂସାରିକ କର୍ତ୍ତବ୍ୟ ସେ ସାରିପାରିଥାନ୍ତେ । କଥାଟା ସେତେବେଳେ ଭଲ ଲାଗି ନଥିଲା, ଆଜିବି ଲାଗୁ ନାହିଁ । ସତରେ କ'ଣ ତମେ ଆଉ କେତୁଟା ବର୍ଷ ପରେ ଚାଲିଯାଇଥିଲେ ତୁମକୁ ହରେଇବାର ଦୁଃଖ ଆମକୁ ଏତେ ବାଧୁ ନ ଥାନ୍ତା, ତମ ସ୍ମୃତି ଆମ ପରିବାର ଉପରେ କ'ଣ କିଛି ପ୍ରଭାବ ପକାଇନଥାନ୍ତା । ଆମେ ସମସ୍ତେ କୂଳରେ ଲାଗି ଯାଇଥିଲେ କ'ଣ ବାପା ନ ଥିବାର ଅଭାବ ପୂରଣ ହୋଇଯାଇଥାନ୍ତା । ପିତା ଆଉ ସନ୍ତାନର ସମ୍ପର୍କ କେବଳ କର୍ମ ଆଉ କର୍ତ୍ତବ୍ୟର ନୁହେଁ ଯେ କର୍ତ୍ତବ୍ୟ ସରିଗଲେ ସ୍ନେହ, ଶ୍ରଦ୍ଧା, ଭଲପାଇବା ସରିଯାଏ ।ଆୟୁଷ ସରିଯାଏ । ମଣିଷ ସିନା ସଂସାରରୁ ବିଦାୟ ନିଏ, କିନ୍ତୁ ଭଲପାଇବା କେବେ ସରେ ନାହିଁ । ଆମ ପ୍ରତି ତୁମର ଭଲପାଇବା ଯେମିତି ଆଶୀର୍ବାଦ ହୋଇ ଏବେ ମଧ୍ୟ ଝରିପଡୁଛି । ତମ ଦେହାବଶେଷ ଅଂଶ ଟିକିଏ ବାରିଆଡ଼େ ରଖାହେଇଛି । ସେଇ ଅସ୍ଥି ପାଖରେ ତମକୁ ଖାଇବାକୁ ଦେଲା ବେଳେ ତମେ ବେଶୀ ମନେ ପଡୁଛ ବାପା । କିନ୍ତୁ ହିନ୍ଦୁ ଧର୍ମର ଏ ପ୍ରଥା ପ୍ରତି ମନ ମୋର ଚିତ୍କାର କରିଉଠୁଛି । ଯିଏ ଟିକିଏ ହେଲେ ଅଳିଆ ଅସନା ଧୂଳି ସହ୍ୟ କରିପାରେ ନାହିଁ, ତାକୁ ବାରି ପଟେ ରଖିଦେବା କ'ଣ ଯଥାର୍ଥ ? ଏ ଘର ତମେ ତିଆରି କରିଥିଲ, ତମ ହାତ ତିଆରି ଘରେ ତମ ନିଜ ମଣିଷଙ୍କ ପାଖରେ ତମର ସ୍ଥାନ ନାହିଁ ?

ଆଜି ପର୍ଯ୍ୟନ୍ତ ମୁଁ ମନକୁ କେବଳ ବୁଝଉଛି । ତମେ ଯେଉଁଠି ଥାଅ ମୁଁ ଅନୁଭବ କରୁଛି, ତମେ ମୋ ମନ ଭିତରେ ସ୍ଥାୟୀ ଭାବରେ ରହିଛ । ସେଇ ମୋର ଆଶ୍ୱାସନା, ସେଇ ମୋର ଆତ୍ମବଳ । ମୁଁ ମଲା ପର୍ଯ୍ୟନ୍ତ ସେଇ ସ୍ମୃତି ହିଁ ହେବ ମୋର ସାଥି । ତୁମ ପରି ଯୋଗ୍ୟ ପିତାର ମୁଁ ଜଣେ ଅଯୋଗ୍ୟ ସନ୍ତାନ । ମତେ କ୍ଷମା କରିବ ବାପା ।



**ଡକ୍ଟର କୃଷ୍ଣଚରଣ ବେହେରା (୧୯୩୨) :** ବିଶିଷ୍ଟ କବି, କଥାକାର, ପ୍ରାବନ୍ଧିକ । ଓଡ଼ିଆ ଭାଷା ସାହିତ୍ୟର ପ୍ରାକ୍ତନ ଅଧ୍ୟାପକ । ଅର୍ଦ୍ଧଶତାଧିକ ଗ୍ରନ୍ଥର ରଚୟିତା । ଉଲ୍ଲେଖନୀୟ ପ୍ରକାଶନ- *କୃଷ୍ଣଚରଣ ବିଧିକା, ଓଡ଼ିଆ ଉପନ୍ୟାସ ; ପ୍ରସଙ୍ଗ : ନାଟକ ଏକାଙ୍କିକା, ଓଡ଼ିଆ ସାହିତ୍ୟରେ ଇସଲାମୀ ପ୍ରଭାବ* ଇତ୍ୟାଦି ।

**ଶ୍ରୀ ଅସିତ୍ ମହାନ୍ତି (୧୯୫୮) :** ସ୍ୱନାମଧନ୍ୟ ସାମ୍ବାଦିକ ଓ ଅନୁବାଦକ । ସଂପ୍ରତି 'ସମ୍ବାଦ' ପ୍ରତିଷ୍ଠାନର ବରିଷ୍ଠ କର୍ମଚାରୀ । ପ୍ରକାଶିତ ଗ୍ରନ୍ଥ - *ଅଧ୍ୟାୟ ଏକବିଂଶ, କହ୍ନେଇ କଥାଘର, ରେବତୀ ରେବତୀ* ।

**ଶ୍ର ପ୍ରଦୀପ୍ତ ଶ୍ରୀ ଚନ୍ଦନ (୧୯୫୬) :** ଆକାଶବାଣୀ, କଟକ କେନ୍ଦ୍ରର ସହକାରୀ ନିର୍ଦ୍ଦେଶକ । ପ୍ରକାଶିତ ଗ୍ରନ୍ଥ - *ସିଦ୍ଧାର୍ଥ* ।

**ଡକ୍ଟର ବୈଷ୍ଣବଚରଣ ସାମଲ (୧୯୩୯) :** ବିଶିଷ୍ଟ ପ୍ରାବନ୍ଧିକ ଓ ସାହିତ୍ୟ ସମୀକ୍ଷକ । ଶାନ୍ତିନିକେତନସ୍ଥ ବିଶ୍ୱଭାରତୀର ପ୍ରାକ୍ତନ ପ୍ରଫେସର । ପ୍ରକାଶିତ ଗ୍ରନ୍ଥ - *କ୍ଷୁଦ୍ରଗଳ୍ପ : ପ୍ରଷ୍ଟାମାନସ, ଓଡ଼ିଆ କ୍ଷୁଦ୍ରଗଳ୍ପର ଇତିହାସ, ଇନ୍ଦୁନ୍ତି ଦାମ୍ଭିକେ, କହିବାକୁ ଲାଜ* ପ୍ରଭୃତି ।

**ଡକ୍ଟର ଆଦିକନ୍ଦ ସାହୁ (୧୯୪୮) :** ବିଖ୍ୟାତ ସାହିତ୍ୟ ସମୀକ୍ଷକ । ସମ୍ବଲପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ଭାଷା - ସାହିତ୍ୟ ବିଭାଗର ପ୍ରାକ୍ତନ ପ୍ରଫେସର । ପ୍ରକାଶିତ ଗ୍ରନ୍ଥ - *ପଦ୍ୟ ଗୌରବ, ଗଦ୍ୟ ଗୌରବ, କଳା ଗୌରବ, ମୋ' ମନ ପସନ୍ଦର କବି ଓ ଅନ୍ୟାନ୍ୟ ନିବନ୍ଧ* ।

**ଡକ୍ଟର ବାସୁଦେବ ଦାସ (୧୯୪୭) :** କବି ଓ ପ୍ରାବନ୍ଧିକ । ଶିକ୍ଷକ ଶିକ୍ଷା-ପ୍ରଶିକ୍ଷଣ ପ୍ରତିଷ୍ଠାନର ଅଧ୍ୟାପକ ଭାବରେ ଅବସର ଗ୍ରହଣ । ପ୍ରକାଶିତ ଗ୍ରନ୍ଥ - *ସାହିତ୍ୟ ସହିତ, ସମାଲୋଚନା ପ୍ରସଙ୍ଗ, ଆମ ସଂସ୍କୃତି ଓ ଆମ ସ୍ୱୀକୃତି* ଇତ୍ୟାଦି ।

**ଶ୍ରୀ ରାଇଚରଣ ଦାସ (୧୯୩୨) :** ସୁପରିଚିତ ପ୍ରାବନ୍ଧିକ, ସମୀକ୍ଷକ ଓ ବିଜ୍ଞାନ ଭିତ୍ତିକ ସାହିତ୍ୟ ସ୍ରଷ୍ଟା । ଓଡ଼ିଶା ପ୍ରଶାସନିକ ସେବାରେ ପ୍ରାକ୍ତନ ସଦସ୍ୟ । ପ୍ରକାଶିତ ଗ୍ରନ୍ଥ - *ଆଧୁନିକ ଅବବୋଧ, ରୋମାଣ୍ଟିକ୍ ଅବବୋଧ, ଚେତନାର ଉନ୍ମେଷ ଓ ଉତ୍ତରଣ, ଏକବିଂଶ ଶତାବ୍ଦୀର ସାହିତ୍ୟ* ଇତ୍ୟାଦି ।

**ଡକ୍ଟର ବିଜୟ କୁମାର ଶତପଥୀ (୧୯୫୨) :** ବିଶିଷ୍ଟ ନାଟ୍ୟକାର ଓ ସାହିତ୍ୟ ସମୀକ୍ଷକ । ଉତ୍କଳ ବିଶ୍ୱବିଦ୍ୟାଳୟର ଓଡ଼ିଆ ଭାଷା ସାହିତ୍ୟ ବିଭାଗର ପ୍ରଫେସର । ପ୍ରକାଶିତ ଗ୍ରନ୍ଥ - *ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା, ପ୍ରଗତିବାଦୀ କାବ୍ୟଚେତନା, ଉତ୍ତର ସତୁରିର ଓଡ଼ିଆ ନାଟକ* ।

**ଡକ୍ଟର ପ୍ରକାଶ କୁମାର ପରିଡ଼ା (୧୯୫୯) :** ଓଡ଼ିଆ ଭାଷା ସାହିତ୍ୟର ଅଧ୍ୟାପକ, କଥାକାର ଓ ସମୀକ୍ଷକ । ପ୍ରକାଶିତ ସମାଲୋଚନା ଗ୍ରନ୍ଥ - *କଥା, କଥାଗ୍ରନ୍ଥ କଥାକାର, କଥାତତ୍ତ୍ୱ, କଥାରୂପ, ସୁରେନ୍ଦ୍ର ସମୀକ୍ଷଣ (ସଂ)* ଇତ୍ୟାଦି ।

**ଶ୍ରୀ ଶୈଳେନ୍ଦ୍ର ମହାପାତ୍ର (୧୯୪୨) :** ପୂର୍ବତନ ଇଂରାଜୀ ସାହିତ୍ୟ ଅଧ୍ୟାପକ, ଭଦ୍ରକ କଲେଜର ଭୂତପୂର୍ବ ଅଧ୍ୟକ୍ଷ, ସୁପରିଚିତ କଥାକାର । ପ୍ରକାଶିତ କଥାଗ୍ରନ୍ଥ - *ଏକ ଅଣ୍ଟାଳ ସନ୍ଧ୍ୟାର କାହାଣୀ, ପକ୍ଷୀରାଜ ଘୋଡ଼ାର ରାଜକୁମାର, ବସନ୍ତର ପ୍ରଥମ ପୁରସ୍କାର, ଆଗ୍ନେୟ ଗାନ୍ଧାର, ଦାକ୍ଷାୟଣୀ* ଇତ୍ୟାଦି ।

**ଡକ୍ଟର ଶରତ ଚନ୍ଦ୍ର ପ୍ରଧାନ (୧୯୩୪) :** ପ୍ରଖ୍ୟାତ କବି, ସାହିତ୍ୟ ସମୀକ୍ଷକ । ସମ୍ବଲପୁର ବିଶ୍ୱବିଦ୍ୟାଳୟର ପ୍ରାକ୍ତନ ପ୍ରଫେସର । ପ୍ରକାଶିତ ସମୀକ୍ଷା ଗ୍ରନ୍ଥ - *ମଧୁସୃଷ୍ଟି, ଅମୂର୍ତ୍ତ ଦୃଷ୍ଟି, ସାହିତ୍ୟ ସଂଗମ, ବାଙ୍ମୟ ପରିଧି, ସାଂପ୍ରତିକ କବିତାର କୂଳ ଓ ଶାଳ* ଇତ୍ୟାଦି ।

**ଶ୍ରୀ ଚନ୍ଦ୍ର କୁମାର ମହାନ୍ତି (୧୯୩୯) :** ବିଶିଷ୍ଟ କବି ଓ ଆଇନଜୀବୀ । ପ୍ରକାଶିତ କବିତା ଗ୍ରନ୍ଥ : *ଆଲୋକିତ ଅନ୍ଧକାର, ବିସ୍ମିତ ସକାଳ* ।

**ଡକ୍ଟର ଯଶୋବନ୍ତ ନାରାୟଣ ଧର (୧୯୫୭) :** ପରିଚିତ ସାହିତ୍ୟ ସମୀକ୍ଷକ । ଆକାଶବାଣୀ, କଟକ (ବିବିଧଭାରତୀ)ର କେନ୍ଦ୍ର ନିର୍ଦ୍ଦେଶକ । ପ୍ରକାଶିତ ଗ୍ରନ୍ଥ : *ଓଡ଼ିଶାର ସ୍ଥାନ ନାମ, କଟକ ନଗର: ଚାଉଳ ବଜାର ଚେପନଗଳି, ଓଡ଼ିଆ ସାହିତ୍ୟ ଓ ସଂସ୍କୃତି* ।

**ଡକ୍ଟର ପ୍ରହ୍ଲାଦ ଚରଣ ମହାନ୍ତି (୧୯୩୬) :** ଅବସର ପ୍ରାପ୍ତ ପ୍ରାଧାପକ । ପ୍ରକାଶିତ ଗ୍ରନ୍ଥ : *ଓଡ଼ିଆ ଯାତ୍ରା ଓ ଲୋକନାଟକ, କଥା ସମ୍ରାଟ ଫକୀରମୋହନ ସେନାପତି* ।

**ଡକ୍ଟର ବିଜୟାନନ୍ଦ ସିଂହ (୧୯୫୯) :** ସୁପରିଚିତ ସଂସ୍କୃତିପ୍ରେମୀ, ସମାଲୋଚକ, ସଂଗଠକ । ସଂପ୍ରତି ଓଡ଼ିଶା ସଂସ୍କୃତି ବିଭାଗର ଉପଶାସନ ସଚିବ । ପ୍ରକାଶିତ ସମୀକ୍ଷା ଗ୍ରନ୍ଥ - *ଫତୁରାନନ୍ଦଙ୍କ ଦୃଷ୍ଟିରେ ହାସ୍ୟ, ଆଚାର୍ଯ୍ୟ ପ୍ୟାରୀମୋହନ, ମୁଁ କାହିଁକି ଲେଖେ (ସଂ), ସାରସ୍ୱତ ସାକ୍ଷାତକାର (ସଂ)* ।

**ଶ୍ରୀମତୀ ବିଜୟିନୀ ସିଂହଦେଓ (୧୯୪୪) :** ସୁପରିଚିତା ଅନୁବାଦିକା, ଗାଳ୍ପିକା । କଟକସ୍ଥ ଶୈଳବାଳା ମହିଳା କଲେଜରୁ ପ୍ରାଧାପିକା ଭାବେ ଅବସର ନେଇ ସାହିତ୍ୟ ସେବାରେ ନିମଗ୍ନା ।

**ସୁଧୀର ଚନ୍ଦ୍ର ବେହୁରା (୧୯୫୪) :** ବିଶିଷ୍ଟ ପ୍ରାବନ୍ଧିକ ଓ ସାହିତ୍ୟ ସମୀକ୍ଷକ । ଏବେ ଓଡ଼ିଶା ସମବାୟ ବିଭାଗର ବରିଷ୍ଠ କର୍ମଚାରୀ । ପ୍ରକାଶିତ ଗ୍ରନ୍ଥ - *ଓଡ଼ିଆ ସାହିତ୍ୟରେ ଓଡ଼ିଆତ୍ୱ, ଓଡ଼ିଆ ସାହିତ୍ୟ କଥା, ଗଣକବି ଗୀତାବଳୀ (ସଂ)* ।

**ଡକ୍ଟର ବନମାଳୀ ବାରିକ (୧୯୪୭) :** ସୁପରିଚିତ ଓଡ଼ିଆ ଭାଷା ସାହିତ୍ୟର ଅଧ୍ୟାପକ, ସାହିତ୍ୟ ସମୀକ୍ଷକ । ପ୍ରକାଶିତ ଗ୍ରନ୍ଥ - *ସାହିତ୍ୟରେ ଶୃଙ୍ଗାରୀ ଚେତନା, ଜାତୀୟ କାବ୍ୟ ଚର୍ଚ୍ଚାର ନୂତନ ପରମ୍ପରା* ।

**ଡକ୍ଟର ସିପ୍ରା ମଲ୍ଲିକ (୧୯୬୨) :** ଲବ୍ଧାବସର ସଂସ୍କୃତ ଅଧ୍ୟାପିକା । କେନ୍ଦ୍ରାପଡ଼ା ବିଧାନସଭା ସଦସ୍ୟା । କବି, ସଂସ୍କୃତିପ୍ରେମୀ । ପ୍ରକାଶିତ କାବ୍ୟ ଗ୍ରନ୍ଥ - *ମୁହୂର୍ତ୍ତ ମୁଞ୍ଜରିତ* ।

**ଡକ୍ଟର ସଂଘମିତ୍ରା ମିଶ୍ର (୧୯୫୩) :** ଉତ୍କଳ ବିଶ୍ୱବିଦ୍ୟାଳୟର ଓଡ଼ିଆ ପ୍ରଫେସର । କବି, ସମୀକ୍ଷକ । ପ୍ରକାଶିତ ସମୀକ୍ଷା ଗ୍ରନ୍ଥ - *ନାଟକ, ନାଟ୍ୟକାର ନାଟ୍ୟ ସମୀକ୍ଷକ, ନାଟକ - ପରମ୍ପରା ଓ ପରିଭାଷା, ନାଟକର ନବ ମୂଲ୍ୟାୟନ, କବିତା ସ୍ମୃତି ଓ ବିସ୍ମୃତି* ।

**ଶ୍ରୀ ଶୈଳଜ ରବି (୧୯୪୨) :** ପ୍ରଥିତଯଶା କବି, ପ୍ରାବନ୍ଧିକ, ସାହିତ୍ୟ ସମୀକ୍ଷକ ଓ ରଚନାତ୍ମକ କର୍ମୀ । ଏକଦା ସଂପାଦକ - **Parents and Pedagogues**, ଲୋକଧର୍ମ । ପ୍ରକାଶିତ ଗ୍ରନ୍ଥ - *ମିଛୁଆ ଗାଉଥାଲ ଟୋକା ମଲା ପୂର୍ବରୁ ଗାଉଥିବା ଗୀତ, ପାଷଣ୍ଡ ସତୀ* ।

**ଶ୍ରୀ ଅପୂର୍ବ ରଞ୍ଜନ ରାୟ (୧୯୪୧) :** ସୁପରିଚିତ ସାହିତ୍ୟିକ, ସାମ୍ବାଦିକ, ସଂସ୍କୃତିପ୍ରେମୀ ସଂଗଠକ । ପ୍ରକାଶିତ ଗ୍ରନ୍ଥ - *ସାରସ୍ୱତ ପୁରୁଷ କାନ୍ତକବି ଲକ୍ଷ୍ମୀକାନ୍ତ, କବିତା ଚାଷ୍ଟା (ସଂ), ଆଧୁନିକ କବିତାର ଦିଗ୍‌ଦର୍ଶନ (ସଂ)* ।

**ଶ୍ରୀ ସନତ୍ ଦାସ ପଟ୍ଟନାୟକ (୧୯୪୫) :** ଅବସରପ୍ରାପ୍ତ ଇଂରାଜୀ ଅଧ୍ୟାପକ । ସ୍ୱନାମଧନ୍ୟ କବି । ପ୍ରକାଶିତ କବିତା ଗ୍ରନ୍ଥ - *ଚିତ୍ର ହଳଦୀ ବସନ୍ତ, ନିଜ ଛଟାଟଳେ ମଣିଷ* ଇତ୍ୟାଦି ।

**ଶ୍ରୀ ଚୈତନ୍ୟ ପ୍ରସାଦ ସେଠୀ (୧୯୪୨) :** ରେଭେନ୍ସାର ଦର୍ଶନ ପ୍ରାଧ୍ୟାପକ ପଦରୁ ଅବସର ନେଇ ସଂପ୍ରତି ସାହିତ୍ୟ ସାଧନାରତ । ପ୍ରକାଶିତ କବିତା ଗ୍ରନ୍ଥ- *ପଦ୍ମ ପଳାଶ, ରାସଶ୍ରୀ, କେତେ ଅଧ୍ୟାୟ ।*

**ଶ୍ରୀ ଚିତ୍ତରଞ୍ଜନ ବେହେରା (୧୯୬୭) :** କବି ଓ ସାମ୍ବାଦିକ । ସଂପ୍ରତି 'ସମ୍ବାଦ'ର ସଂପାଦକୀୟ ବିଭାଗରେ ଅବସ୍ଥାପିତ । ପ୍ରକାଶିତ ଗ୍ରନ୍ଥ - *ଚିଠି ଭେଳାର କବିତା, ସ୍ମୃତିର ମହଲ* ।

**ଶ୍ରୀ ଅଶ୍ୱିନୀ କୁମାର ମିଶ୍ର (୧୯୫୩) :** ସୁପରିଚିତ କବି, କଥାକାର । ପ୍ରକାଶିତ ଗ୍ରନ୍ଥ - *ନଖଦର୍ପଣ, ଅରଣ୍ୟ ସଙ୍ଗୀତ, ମହାବାତ୍ୟାର ଆଖି, ନେତ୍ରାତିଥି* ।

**ଡକ୍ଟର ମନ୍ଦାକିନୀ ଦାସ (୧୯୫୫) :** ଗାଳ୍ପିକା ଓ ସାହିତ୍ୟ ସମାଲୋଚିକା । ଏବେ ଢେଙ୍କାନାଳ କଲେଜର ଓଡ଼ିଆ ଭାଷା- ସାହିତ୍ୟ ବିଭାଗର ଅଧ୍ୟାପିକା । ପ୍ରକାଶିତ ଗବେଷଣା ଗ୍ରନ୍ଥ - *ଓଡ଼ିଶାରେ ସାନ୍ତାଳୀ ସଂସ୍କୃତି* ।

**ଡକ୍ଟର ବାବାଜୀ ଚରଣ ପଟ୍ଟନାୟକ (୧୯୫୨) :** ସୁପରିଚିତ ସାହିତ୍ୟ ସମୀକ୍ଷକ । ସଂପ୍ରତି ଭବାନୀପାଟଣା କଲେଜରେ ଭାଷା ସାହିତ୍ୟ ବିଭାଗ ମୁଖ୍ୟ । ପ୍ରକାଶିତ ସମୀକ୍ଷା ଗ୍ରନ୍ଥ - *ସର୍ଜନାର ଗର୍ଜନା, ଓଡ଼ିଆ କବିତାରେ ଚନ୍ଦ୍ର ପ୍ରସଙ୍ଗ* ।

**ଡକ୍ଟର ହରେକୃଷ୍ଣ ପାତ୍ର (୧୯୫୨) :** ସୁପରିଚିତ ଗବେଷକ ଓ ମଧ୍ୟଯୁଗୀୟ କାବ୍ୟ ସଂପାଦନା । ସଂପ୍ରତି ଓଡ଼ିଶା ସଂସ୍କୃତି ବିଭାଗର ବରିଷ୍ଠ କର୍ମଚାରୀ । ପ୍ରକାଶିତ ଗ୍ରନ୍ଥ - *ଗୀତକବି ଗଙ୍ଗାଧର, ମାଦଳାପାଞ୍ଜି, ଲୀଳାବତୀ (ସଂ), ଦମୟନ୍ତୀ ବିଳାସ (ସଂ), ରସମଞ୍ଜରୀ (ସଂ)* ଇତ୍ୟାଦି ।

**ଡକ୍ଟର ଲାବଣ୍ୟ ନାୟକ (୧୯୩୯) :** ବିଶିଷ୍ଟ ସମାଲୋଚିକା, ଗାଳ୍ପିକା ଓ ରମ୍ୟ- ରଚିକ । ସ୍ୱନାମଧନ୍ୟା ପ୍ରାଧ୍ୟାପିକା । ପ୍ରକାଶିତ ଗ୍ରନ୍ଥ - *ଓଡ଼ିଆ ଚରିତ ସାହିତ୍ୟ, ନାରୀ ଚରିତ୍ର, ଉପଳର ଉପକଥା, ନିସ୍ତବ୍ଧ କୋଳାହଳ* ।

**ଶ୍ରୀ ହୃଦମଣି ପ୍ରଧାନ (୧୯୪୦) :** ବରଗଡ଼ର ବାସିନ୍ଦା, ନାଟ୍ୟକାର ଓ ଅଭିନେତା ଭାବେ ପରିଚିତ, ଇଂରେଜୀ ଭାଷା ସାହିତ୍ୟର ଅଧ୍ୟାପକ ।

**ଡକ୍ଟର କୁଞ୍ଜବିହାରୀ ଦାଶ (୧୯୧୪- ୯୪) :** ଖ୍ୟାତନାମା କବି, ସମାଲୋଚକ, ଲୋକସାହିତ୍ୟ ସଂଗ୍ରାହକ । ଓଡ଼ିଆ ଭାଷା ସାହିତ୍ୟ ବିଭାଗର ପ୍ରାକ୍ତନ ପ୍ରଫେସର । ପ୍ରକାଶିତ ଗ୍ରନ୍ଥ - *ଜଙ୍ଗଲର ଲୁହ, ମାଟି ଓ ଲାଠି, ଓଡ଼ିଆ ଲୋକଗୀତ ଓ କାହାଣୀ, ମୋ କାହାଣୀ, ଓଡ଼ିଆ ଲୋକଗୀତି ଓ ଲୋକଗଳ୍ପ ସଞ୍ଚୟନ* ପ୍ରଭୃତି ।

**ଡକ୍ଟର ନରେନ୍ଦ୍ର ନାଥ ମିଶ୍ର (୧୯୨୯) :** ବିଶିଷ୍ଟ ସାହିତ୍ୟ ସମାଲୋଚକ, ଶାନ୍ତିନିକେତନସ୍ଥ ବିଶ୍ୱଭାରତୀର ପ୍ରାକ୍ତନ ପ୍ରଫେସର । ପ୍ରକାଶିତ ଗ୍ରନ୍ଥ - ବଳରାମ ଦାସ ଓ ଓଡ଼ିଆ ରାମାୟଣ, ଆଧୁନିକ ଓଡ଼ିଆ କାବ୍ୟଧାରା, ଆଧୁନିକତା ଓ ଆଧୁନିକ ସାହିତ୍ୟ, ମନସ୍ୱୀ ନୀଳକଣ୍ଠ ପ୍ରଭୃତି ।

**ଡକ୍ଟର ଗଗନେନ୍ଦ୍ରନାଥ ଦାଶ (୧୯୪୦) :** ସୁପରିଚିତ ପ୍ରାବନ୍ଧିକ ଓ ଗବେଷକ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଭାଷା ବିଜ୍ଞାନ ବିଭାଗର ପ୍ରାକ୍ତନ ପ୍ରଫେସର । ପ୍ରକାଶିତ ଗବେଷଣା ଗ୍ରନ୍ଥ - *ଓଡ଼ିଆ ଭାଷାଚର୍ଚ୍ଚାର ପରମ୍ପରା । ଜନଶ୍ରୁତି କାଞ୍ଚିକାବେରୀ, ଓଡ଼ିଆ ଭାଷା ଆନ୍ଦୋଳନ* ଇତ୍ୟାଦି ।

**ଡକ୍ଟର ବାସୁଦେବ ସାହୁ (୧୯୩୩) :** ସୁପରିଚିତ କବି, ଗାଳ୍ପିକ, ସାହିତ୍ୟ ସମୀକ୍ଷକ । ରେଭେନ୍ସା କଲେଜର ଅର୍ଥନୀତି ବିଭାଗର ପ୍ରାକ୍ତନ ପ୍ରଫେସର । ପ୍ରକାଶିତ ଗ୍ରନ୍ଥ - *କେତୋଟି ମୁହୂର୍ତ୍ତ, ସୂର୍ଯ୍ୟାବର୍ତ୍ତ, ସମାଜ ଜିଜ୍ଞାସା* ଇତ୍ୟାଦି ।

**ଶ୍ରୀ ଯୁଗଳ କିଶୋର ପଟ୍ଟନାୟକ (୧୯୩୯) :** ରାଜ୍ୟର ପ୍ରାକ୍ତନ ମନ୍ତ୍ରୀ, ସଂପ୍ରତି ଭଦ୍ରକର ଓଡ଼ିଶା ବିଧାନ ସଭା ସଦସ୍ୟ । ଛାତ୍ର ଆନ୍ଦୋଳନ ସହ ସଂପୃକ୍ତ, 'ରଶ୍ମି' ପତ୍ରିକାର ସମ୍ପାଦନା ।

**ଡକ୍ଟର ମନୀନ୍ଦ୍ର ମହାନ୍ତି (୧୯୪୭) :** ସୁପରିଚିତ ଶିଶୁ ସାହିତ୍ୟ ଗବେଷକ । ଓଡ଼ିଆ ଭାଷା-ସାହିତ୍ୟର ଅଧ୍ୟାପକ ଭାବରେ ଅବସର ଗ୍ରହଣ । ପ୍ରକାଶିତ ଗ୍ରନ୍ଥ -*ଓଡ଼ିଆ ଶିଶୁ ସାହିତ୍ୟର ଉନ୍ମେଷ ଓ ବିକାଶ, ଗାଳ୍ପିକ ସୁରେନ୍ଦ୍ର ମହାନ୍ତି* ପ୍ରଭୃତି ।

**ଡକ୍ଟର ଅଜୟ କୁମାର ପଟ୍ଟନାୟକ (୧୯୪୯) :** ପ୍ରତିଷ୍ଠିତ ସାହିତ୍ୟ ସମୀକ୍ଷକ । ଓଡ଼ିଆ-ହିନ୍ଦୀ ତୁଳନାତ୍ମକ ସାହିତ୍ୟ ଚର୍ଚ୍ଚାରେ ଅଗ୍ରଣୀ । ରେଭେନ୍ସା ହିନ୍ଦୀ ଭାଷା-ସାହିତ୍ୟ ବିଭାଗ ମୁଖ୍ୟ ଭାବରେ ଅବସର ଗ୍ରହଣ । ପ୍ରକାଶିତ ସମାଲୋଚନା ଗ୍ରନ୍ଥ - *ହିନ୍ଦୀ ସାହିତ୍ୟର ଇତିହାସ, ଓଡ଼ିଆ ସାହିତ୍ୟ : ଦିଶା ଔର ପରିବେଶ, ସମୀକ୍ଷା ସୌରଭ* ଇତ୍ୟାଦି ।

**ଶ୍ରୀ ରବୀନ୍ଦ୍ର ନାରାୟଣ ମିଶ୍ର (୧୯୩୬) :** ବିଶିଷ୍ଟ ଜଗନ୍ନାଥପ୍ରେମୀ, କଥାକାର, ପ୍ରାବନ୍ଧିକ । ଜଗନ୍ନାଥ ମନ୍ଦିର ପ୍ରଶାସକ ଭାବେ ଅବସର ଗ୍ରହଣ । ପ୍ରକାଶିତ ଗ୍ରନ୍ଥ - *ଆକାଶ ଦୀପ, କଥାନୁଭୂତିରେ ଶ୍ରୀ ଜଗନ୍ନାଥ* ଇତ୍ୟାଦି ।

**ଶ୍ରୀ ଶ୍ରୀନିବାସ ଉଦ୍‌ଗାତା (୧୯୩୬) :** ବିଶିଷ୍ଟ କବି, ଅନୁବାଦକ । ଶତାଧିକ ଗ୍ରନ୍ଥର ପ୍ରଣେତା । ଓଡ଼ିଆ ସାହିତ୍ୟ ଏକାଡ଼େମୀର ପ୍ରାକ୍ତନ ସଭାପତି । ପ୍ରକାଶିତ ଗ୍ରନ୍ଥ - *ଜନ୍ମପ୍ରିୟା, ବଂଶ ରକ୍ଷାମନ୍ତ୍ର, ଚିତ୍ରଲେଖା, ଚୈତ୍ରରଥ, ଋତମ୍* ଇତ୍ୟାଦି ।

**ଡକ୍ଟର ପ୍ରସନ୍ନ କୁମାର ମିଶ୍ର (୧୯୪୧) :** ବିଶିଷ୍ଟ କବି, ନାଟ୍ୟକାର, ଔପନ୍ୟାସିକ, ସମାଲୋଚକ । ଓଡ଼ିଆ ଭାଷା -ସାହିତ୍ୟ ବିଭାଗର ଇଚ୍ଛାବସର ପ୍ରାଧ୍ୟାପକ । ଉଲ୍ଲେଖନୀୟ କୃତି- *ମନିକାର ପ୍ରିୟ, ଟ୍ରକ୍ ଡାଲାରେ ସନାତନ, ଖରାରେ ବାଙ୍ଗରା ଲୋକ, ବଚ୍ଛାପାଣିର ଦାନ୍ତ, ଅସୁର, ପୂର୍ବାଞ୍ଚଳୀୟ ଲୋକ ମିଥ୍* ଇତ୍ୟାଦି ।

**ରାୟଶ୍ରୀ ଉପେନ୍ଦ୍ର ପ୍ରସାଦ ନାୟକ (୧୯୩୬) :** ସାମ୍ବାଦିକ, ସାହିତ୍ୟିକ, ସାହିତ୍ୟ-ସଂଗଠକ । ଦୈନିକ ଓଡ଼ିଆ ସମ୍ବାଦପତ୍ର କାଳାନ୍ତରର ସ୍ୱନାମଧନ୍ୟ ସମ୍ପାଦକ । ଉତ୍ତର ଓଡ଼ିଶା ସାହିତ୍ୟ ସଂସ୍କୃତି ପରିଷଦର ପ୍ରତିଷ୍ଠାତା ସଭାପତି । ପ୍ରକାଶିତ ଗ୍ରନ୍ଥ - *ସତୀ ଶିରୋମଣି, ପ୍ରେମ ଓ ପରିଣୟର କାବ୍ୟ* ।

**ଶ୍ରୀ ଚନ୍ଦ୍ର ଶେଖର ପଦରଜ ମହାପାତ୍ର :** ଅବସରପ୍ରାପ୍ତ ଇଂରାଜୀ ଅଧ୍ୟାପକ । ପତ୍ରପତ୍ରିକାରେ ବିଭିନ୍ନ ଲେଖା ପ୍ରକାଶିତ ।

**ଡକ୍ଟର ବିଭୂତି ପଟ୍ଟନାୟକ (୧୯୩୭) :** ବିଶିଷ୍ଟ ଔପନ୍ୟାସିକ, ସାହିତ୍ୟ ସମୀକ୍ଷକ । ଓଡ଼ିଆ ଭାଷା-ସାହିତ୍ୟର ପ୍ରାକ୍ତନ ପ୍ରାଧ୍ୟାପକ । ଉଲ୍ଲେଖନୀୟ ଗ୍ରନ୍ଥ କତିପୟ - *ବଧୂ ନିରୁପମା, ଛବିର ମଣିଷ, ଅଶ୍ୱମେଧର ଘୋଡ଼ା, ସେ ଏକ ପ୍ରଗଳଭା ନଦୀ (କବିତା), ସାହିତ୍ୟର ସୂଚୀପତ୍ର, ବିଶ୍ୱ ସାହିତ୍ୟର ବିଶ୍ୱକର୍ମା, ସାଂପ୍ରତିକ ସାହିତ୍ୟ ଇତ୍ୟାଦି ।*

**ଡକ୍ଟର ଧନେଶ୍ୱର ମହାପାତ୍ର (୧୯୩୨) :** ସ୍ୱନାମଧନ୍ୟ ପ୍ରାବନ୍ଧିକ, ସମାଲୋଚକ, ଅନୁବାଦକ । ରେଭେନ୍ସା କଲେଜର ଭାଷା-ସାହିତ୍ୟ ବିଭାଗର ପ୍ରାକ୍ତନ ଅଧ୍ୟାପକ । ପ୍ରକାଶିତ ଗ୍ରନ୍ଥ - *ସାରଳା ମହାଭାରତର ଭାଷାତାତ୍ତ୍ୱିକ ଅଧ୍ୟୟନ, ସାହିତ୍ୟତତ୍ତ୍ୱ, କାଳିଦାସ ଗ୍ରନ୍ଥାବଳୀ (ସଂ), ରମ୍ୟ-ଅରମ୍ୟ* ଇତ୍ୟାଦି ।

**ଶ୍ରୀ ରମେଶ ଚନ୍ଦ୍ର ମଲ୍ଲିକ (୧୯୭୭) :** ଯୁବସମୀକ୍ଷକ, ବିଭିନ୍ନ ପତ୍ରପତ୍ରିକାରେ ଲେଖନ୍ତି । ସଂପ୍ରତି ଭାଷାବିଜ୍ଞାନରେ ହାଇଦ୍ରାବାଦ ବିଶ୍ୱବିଦ୍ୟାଳୟରେ ଗବେଷଣାଛାତ୍ର ।

**ଶ୍ରୀମତୀ ଲୋପାମୁଦ୍ରା ଦାସ ନାୟକ (୧୯୬୫) :** ଉଦୀୟମାନ ଗାଳ୍ପିକା, ସମାଲୋଚିକା । କଟକ କୁସୁମଦେବୀ ମହିଳା କଲେଜର ଓଡ଼ିଆ ଅଧ୍ୟାପକ । ଲକ୍ଷ୍ମୀଧର ନାୟକଙ୍କ ସାହିତ୍ୟାନୁଶୀଳନରେ ବ୍ରତୀ ଗବେଷିକା ।



# ଡକ୍ଟର କ୍ଷେତ୍ରବାସୀ ନାୟକଙ୍କ ଜୀବନ-ପଞ୍ଜି

୧୯୩୯ ଅକ୍ଟୋବର ୪-ତତ୍କାଳୀନ ବାଲେଶ୍ୱର ଜିଲ୍ଲାର ଭଦ୍ରକଠାରେ ଜନ୍ମ ।
୧୯୫୬- ଭଦ୍ରକ ହାଇସ୍କୁଲରୁ ଉଚ୍ଚ ଇଂରାଜୀ ଶିକ୍ଷାର ସଫଳ ସମାପ୍ତି ।
୧୯୬୦- ଭଦ୍ରକ କଲେଜରେ ପଢ଼ି ଉତ୍କଳ ବିଶ୍ୱବିଦ୍ୟାଳୟରୁ କଳାରେ ସ୍ନାତକ ଉପାଧି ଲାଭ । ଉତ୍କଳ ଛାତ୍ର ୟୁନିୟନର ମୁଖପତ୍ର 'ରଶ୍ମି'ର ସଂପାଦନା ସହ ସଂପୃକ୍ତ ।
୧୯୬୩- ରେଭେନ୍‌ସା କଲେଜରେ ଓଡ଼ିଆ ଏମ୍.ଏ. ପଢ଼ା ଶେଷରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପ୍ରଥମ ଶ୍ରେଣୀରେ ସ୍ନାତକୋତ୍ତର ଉପାଧି ଲାଭ । 'ଭଦ୍ରକ ଲେଖକ ସମ୍ମେଳନ'ର ସଂପାଦକ ।
୧୯୬୪- ସମ୍ବଲପୁରସ୍ଥ ଗଙ୍ଗାଧର ମେହେର କଲେଜରେ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗରେ ଅଧ୍ୟାପନା । ଭଦ୍ରକରୁ ସାହିତ୍ୟ ପତ୍ରିକା 'ଶତରୂପା' ସଂପାଦନା । ଲାବଣ୍ୟ ଦେବୀଙ୍କ ସହ ବିବାହ ।
୧୯୬୬- ବଲାଙ୍ଗିର ରାଜେନ୍ଦ୍ର କଲେଜରେ ଅଧ୍ୟାପନା ।
୧୯୬୭- ବଲାଙ୍ଗିର ଠାରେ 'ଆତ୍ମପ୍ରକାଶନୀ' ସାହିତ୍ୟାନୁଷ୍ଠାନ ପ୍ରତିଷ୍ଠା । ଗଳ୍ପଗ୍ରନ୍ଥ 'ଫୁଲର କବର' ପ୍ରକାଶ ।
୧୯୬୮- 'ପ୍ରବନ୍ଧ ଓ ପ୍ରାବନ୍ଧିକ' ସଂକଳନ ଏବଂ 'ଅଳଙ୍କାର ଓ ଅଳଙ୍କାରତତ୍ତ୍ୱ' ଗ୍ରନ୍ଥ ପ୍ରକାଶ । ମିଳିତ ରଚନା 'ବିଫଳତା ସପକ୍ଷରେ' କବିତା ଗ୍ରନ୍ଥ ପ୍ରକାଶ ।
୧୯୬୯- ସ୍ୱରଚିତ କବିତା ଗ୍ରନ୍ଥ 'ଉଚ୍ଚାରଣ' ପ୍ରକାଶ - କବିତା ପାଇଁ 'ପ୍ରଜାତନ୍ତ୍ର ପ୍ରଚାର ସମିତି'ର ବିଷୁବ ପୁରସ୍କାର ଲାଭ । ବଲାଙ୍ଗିରଠାରେ ଅନୁଷ୍ଠିତ 'ଓଡ଼ିଆ ଯୁବଲେଖକ ସମ୍ମେଳନ' ଅଭ୍ୟର୍ଥନା ସମିତିର ସାଧାରଣ ସଂପାଦକ ।
୧୯୭୦- 'ସାହିତ୍ୟର ସାମାନ୍ୟ କଥନ' ଏବଂ 'ସାହିତ୍ୟିକ ବୀକ୍ଷା ଓ ନିରୀକ୍ଷା' ସମୀକ୍ଷା ଗ୍ରନ୍ଥ ପ୍ରକାଶ । ଲାବଣ୍ୟଙ୍କ ସହ 'ପ୍ରବନ୍ଧ-ବିଚିତ୍ରା' ଏବଂ ଓଡ଼ିଶାର ସର୍ବପ୍ରଥମ 'ପୋଷ୍ଟର୍ କବିତା' ସଂପାଦନା ।
୧୯୭୧- ବ୍ରହ୍ମପୁରସ୍ଥ ଖଲିକୋଟ କଲେଜରେ ଅଧ୍ୟାପନା ।
୧୯୭୨- 'କବି ନୀଳକଣ୍ଠ' ସମୀକ୍ଷା ଗ୍ରନ୍ଥ ପ୍ରକାଶ । ବ୍ରହ୍ମପୁରଠାରେ 'ସମୀକ୍ଷା ସଂସଦ' ସାହିତ୍ୟାନୁଷ୍ଠାନ ପ୍ରତିଷ୍ଠା ।
୧୯୭୩- ଶ୍ରୀନିବାସ ଉଦ୍‌ଗାତାଙ୍କ ସହ 'ସାଂପ୍ରତିକ ଓଡ଼ିଆ ସାହିତ୍ୟ ସଂପର୍କରେ' ସମୀକ୍ଷା ଗ୍ରନ୍ଥ ସଂପାଦନା ଓ ପ୍ରକାଶ ।
୧୯୭୪- 'ରାଧାନାଥ ଗ୍ରନ୍ଥାବଳୀ', 'ଶ୍ରୀ ଜଗନ୍ନାଥ ପଦ୍ୟାବଳୀ'(୧ମ ଭାଗ) ସଂପାଦନା ଓ ପ୍ରକାଶ ।
୧୯୭୬- 'ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ' ସଂଦର୍ଭ ପାଇଁ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ପିଏଚ୍. ଡି. ଡିଗ୍ରୀ ଲାଭ ।
୧୯୭୭- 'ଫକିରମୋହନ କଥା ସାହିତ୍ୟ' ସଂପାଦନା । ପିଏଚ୍. ଡି. ଥିସିସ୍ ଗ୍ରନ୍ଥ ରୂପେ ପ୍ରକାଶ ।
୧୯୭୮- ରେଭେନ୍‌ସା କଲେଜରେ ଅଧ୍ୟାପନା । 'ନାରୀକବି ଅନ୍ନପୂର୍ଣ୍ଣା ରଚନାଶ୍ରୀ', 'ଶ୍ରୀ ଜଗନ୍ନାଥ ପଦ୍ୟାବଳୀ' (୨ୟ ଓ ୩ୟ ଭାଗ) ସଂପାଦନା ଓ ପ୍ରକାଶ ।
୧୯୭୯- 'ଆଲୋଚନା ପତ୍ର' ସମୀକ୍ଷା ଗ୍ରନ୍ଥ ପ୍ରକାଶ ।
୧୯୮୦ ଅକ୍ଟୋବର ୨୫-'ଓଡ଼ିଆ ଗବେଷଣା ପରିଷଦ' ପ୍ରତିଷ୍ଠା ଓ 'ଏଷଣା' ପତ୍ରିକା ସଂପାଦନା । ଶ୍ରୀ ଜଗନ୍ନାଥ ପଦ୍ୟାବଳୀ (୪ର୍ଥ ଭାଗ) ସଂପାଦନା ଓ ପ୍ରକାଶ ।
୧୯୮୧- 'ଭାରତୀୟ କାବ୍ୟତତ୍ତ୍ୱ' ଓ 'ସାହିତ୍ୟ ଚର୍ଚ୍ଚା', ସମୀକ୍ଷା ଗ୍ରନ୍ଥ ପ୍ରକାଶ ।
୧୯୮୨ ଓ ୧୯୮୩-ଯଥାକ୍ରମେ 'କବି ଓ କାମିନୀ' ଏବଂ 'କବି ଅର୍ଜୁନ ଦାସ' ସମୀକ୍ଷା ଗ୍ରନ୍ଥ ପ୍ରକାଶ ।
୧୯୮୪- ଲାବଣ୍ୟଙ୍କ ସହ 'କବିତାର କଥା' ସମୀକ୍ଷା-ପୁସ୍ତିକା ରଚନା ଓ ପ୍ରକାଶ ।
୧୯୮୬ ଜାନୁୟାରୀ ୨୫ (ପୌଷ ପୂର୍ଣ୍ଣିମା)- ପରଲୋକ ।





ଅଧ୍ୟାପକ ଡ. କ୍ଷେତ୍ରବାସୀ ନାୟକ(୧୯୩୯-୮୬) ଆମ ଆଧୁନିକ ସାହିତ୍ୟର ଏକ ଆଖ୍ୟାତ ନାମ । ସ୍ୱଳ୍ପ ଜୀବନ-କାଳ ମଧ୍ୟରେ ସେ ଯେଉଁ ପ୍ରବନ୍ଧ, ଆଲୋଚନା, ଗଳ୍ପ, କବିତାଦି ସୃଷ୍ଟି କରି ଯାଇଛନ୍ତି, ତାହା ସହୃଦୟ ଗ୍ରାହକସମାଜ ପାଇଁ ଆହରଣର ତଷ୍ଟ ହୋଇ ରହିଛି । ମାତ୍ର ଏଯାବତ୍ ଏହି ସ୍ରଷ୍ଟାଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର ଉପଯୁକ୍ତ କଳନା କରାଯାଇ ନାହିଁ, ତଥା ତାଙ୍କ ସୃଷ୍ଟି ସମ୍ଭାରର ଯଥାଯଥ ସମୀକ୍ଷା କରାଯାଇ ପାରି ନାହିଁ ।

ତେଣୁ 'ଓଡ଼ିଆ ଗବେଷଣା ପରିଷଦ'ର ପ୍ରାଣପ୍ରତିଷ୍ଠାତା ଡ. ନାୟକଙ୍କ କୃତିତ୍ୱ ସଂପର୍କରେ ଏହି 'କ୍ଷେମଙ୍କର କ୍ଷେତ୍ରବାସୀ' ଗ୍ରନ୍ଥରେ ଯଥାସମ୍ଭବ ସର୍ବଦିଗସ୍ପର୍ଶୀ ଆଲୋଚନା କରାଯାଇଛି । ଆଲୋଚନାରେ ବହୁ ଶିଷ୍ଟ ବିଶିଷ୍ଟ ବ୍ୟକ୍ତିଙ୍କର ସ୍ୱାକ୍ଷର । ଗ୍ରନ୍ଥଟିର ସଂପାଦନା କରିଛନ୍ତି ସୁପରିଚିତ ସମୀକ୍ଷକତ୍ରୟୀ- ଡ. ହରେକୃଷ୍ଣ ପାତ୍ର, ଶ୍ରୀ ସୁଧୀରଚନ୍ଦ୍ର ବେହୁରା ଓ ଡ. ଲାବଣ୍ୟ ନାୟକ ।